# କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ଶ୍ରୀ ନରସିଂହ ମିଶ୍ର



# ପ୍ରକାଶକୀୟ

'କୁରୁକ୍ଷେତ୍ରରେ କୃଷ୍ଣପକ୍ଷ' ମହାଭାରତର କାଳଜୟୀ ଗାଥା ଉପରେ ଆଧାରିତ ଏକ ମନନଶୀଳ ଉପନ୍ୟାସ । ସମଗ୍ର ମହାଭାରତର ବିପୁଳ ବିଭାବ, ଏହି ଉପନ୍ୟାସଟିର ସୀମିତ ପରିଧିରେ ଅକ୍ଷୁର୍ଣ୍ଣ ରଖାଯାଇଛି ।

ଉପନ୍ୟାସରେ ଆଦ୍ୟ ପାନ୍ତରେ ଥିବା ମହାଭାରତ ଚରିତ୍ରଗୁଡ଼ିକର ସଂକ୍ଷିପ୍ତ ଆଲୋଚନା ତାତ୍ପର୍ଯ୍ୟପୂର୍ଣ୍ଣ । ସଂଗ୍ରାମଶୀଳ ମଣିଷ ପ୍ରତିମୁହୂର୍ତ୍ତରେ କିଭଳି ବାଦ୍ଧେଣା ହୁଏ, ମୋହାନ୍ଧ ମଣିଷ ସ୍ୱାର୍ଥ ଓ କ୍ଷମତାର ବ୍ୟୁହ ଭିତରେ କିପରି ନୈତିକତାର ନୟନ ମଣି ହରାଏ, ବିଷାଦ ଗ୍ରସ୍ତ ମଣିଷ କିପରି ହତାଶା ତଥା ଉଦ୍ବେଗ ମଧ୍ୟରେ ଜର୍ଜରିତ ହୁଏ ଏବଂ ଚେତନାଶୀଳ ମଣିଷ ଜୀବନରେ କିପରି ଦିବ୍ୟ ମୁହୂର୍ତ୍ତ ସନ୍ଧାନ ପାଏ, ତାହାହିଁ ହେଉଛି ଉପନ୍ୟାସଟିର ଅନ୍ତର୍ନିହିତ ସ୍ୱର ।

ମହାଭାରତର ପ୍ରତ୍ୟେକ ଚରିତ୍ର ଗୋଟିଏ ଗୋଟିଏ ରହସ୍ୟମୟ ଲୁକ୍କ ପେଡ଼ି । ଚରିତ୍ରଗୁଡ଼ିକ ସହିତ ପାଠକର ସମପ୍ରାଣତା ସୃଷ୍ଟିହେଲେ, ଅନ୍ତର୍ନିହିତ ଭାବାବେଗ ଅନୁଭବ କରିବା ସମ୍ଭବ ହୁଏ ।

ଶ୍ରୀ ନରସିଂହ ମିଶ୍ର ଓଡ଼ିଆ ଉପନ୍ୟାସ ସାହିତ୍ୟର ଏକ ପ୍ରତିଷ୍ଠିତ ପ୍ରତିଭା । ତାଙ୍କର ଏହି ସାରସ୍ୱତ ଅର୍ଘ୍ୟ 'କୁରୁକ୍ଷେତ୍ରରେ କୃଷ୍ଣପକ୍ଷ' ଆମେ ଆଜି ବିଦଗ୍ଧ ପାଠକମାନଙ୍କ ହାତରେ ଶ୍ରଦ୍ଧାର ସହିତ ଅର୍ପଣ କରି ଗଭୀର ଆନନ୍ଦ ଅନୁଭବ କରୁଛୁ ।

# କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

(ମହାଭାରତ ଆଧାରିତ ଉପନ୍ୟାସ)

ଶ୍ରୀ ନରସିଂହ ମିଶ୍ର

ପ୍ରକାଶକ :
ବି.ଦାସ. ଆଣ୍ଡ କମ୍ପାନୀ
ଏଫ-ଥ୍ରୀ/ଜି-୬୨, ଇନ୍ଦ୍ରଧନୁ ମାର୍କେଟ
ଆଇ.ଆର.ସି. ଭିଲେଜ, ଭୁବନେଶ୍ୱର - ୧୫
ଫୋନ୍- (୦୬୭୪): ୨୫୫୧୨୫୯

ପ୍ରଚ୍ଛଦ :- ଶ୍ରୀ ବଳଦେବ ମହାରଥୀ

ପ୍ରଥମ ସଂସ୍କରଣ : ୨୦୦୪

ମୂଲ୍ୟ: ଟ ୧୭୫/-

Kurukhetra re Krushna Pakhya

*By*

Sri Narasingha Mishra

Published by:
B.Das & Company
F3/G- 62,
Indradhanu Market.
Bhubaneswar -15
Phone- (0674) 2551259
Cover Design:-
Shri Baladeb Maharatha
First Edition- 2004
Printed at:-
Shivani Art Press,
Shadara,
Delhi 110032

Price: 175/-

# ଆଦ୍ୟପାଦ

ମହାଭାରତ ମାନବ ସଭ୍ୟତାର ଏକ ମହନୀୟ କୀର୍ତ୍ତି । ପୃଥିବୀର ବିଭିନ୍ନ ସାହିତ୍ୟରେ ଏ ପର୍ଯ୍ୟନ୍ତ ଯେତେ ଗ୍ରନ୍ଥ ପ୍ରକାଶିତ ହୋଇଛି, କଳେବର ଦୃଷ୍ଟିରୁ ଏହା ଯେପରି ସର୍ବବୃହତ୍ ସେପରି ବିପୁଳ ମଧ୍ୟ । ଏହା ବିଶ୍ୱସାହିତ୍ୟର ଏକ ଶ୍ରେଷ୍ଠତମ ପ୍ରାଚୀନ ଗ୍ରନ୍ଥ । ପ୍ରାୟ ପାଞ୍ଚହଜାର ବର୍ଷତଳେ ଏହା ରଚିତ ହୋଇଥିଲେ ମଧ୍ୟ ସବୁ ସମୟରେ, ନୂଆ ପରି ଲାଗେ । ଦୀର୍ଘ ସମୟସ୍ରୋତ ମଧ୍ୟରେ ଏହା ଅସୁମାର ଜନ ମାନସକୁ ଏକାନ୍ତ ଭାବରେ ଆକର୍ଷଣ କରିଛି ।

ରାମାୟଣ ଓ ମହାଭାରତ ପ୍ରାଚୀନ ଆର୍ଯ୍ୟ ଜୀବନ ଧାରାର ପ୍ରାମାଣିକ ଗ୍ରନ୍ଥ । ପ୍ରଥମଟି ଆର୍ଯ୍ୟମାନଙ୍କର ପରିବାର ଶାସ୍ତ୍ର, ଦ୍ୱିତୀୟଟି ସମାଜଶାସ୍ତ୍ର । ଆର୍ଯ୍ୟ ସଂସ୍କୃତିର ପ୍ରାଣସତ୍ତା ଏଥିରେ ନିହିତ ଅଛି । ମାନବଜ୍ଞାନର ପ୍ରତ୍ୟେକ ବିଭାଗକୁ ଏହି ଅମୂଲ୍ୟଗ୍ରନ୍ଥ ଦୁଇଟି ପ୍ରତିନିଧିତ୍ୱ କରୁଛନ୍ତି । କାଳ କାଳ ଧରି ଭାରତୀୟ ଆର୍ଯ୍ୟ ସମାଜକୁ, ବହୁ ବିଭିନ୍ନତା, ବିରୋଧାଭାଷ, ବିଚ୍ଛିନ୍ନତା ଓ ବ୍ୟତିକ୍ରମ ମଧ୍ୟରେ, ରାମାୟଣ ଓ ମହାଭାରତ ବାନ୍ଧି ରଖିଛନ୍ତି ଏକତା ସୂତ୍ରରେ । ଏ ସୂତ୍ର ଅତୁଟ ଓ ଅଲଙ୍ଘନୀୟ । ଏଥିରେ ପ୍ରଚାରିତ ମହାନ୍ ବାଣୀ, ଯୁଗଯୁଗ ଧରି ପ୍ରତି ପ୍ରାଣରେ ଅମୃତ ପରିବେଷଣ କରିଛି ।

ପ୍ରାଚୀନ ଆର୍ଯ୍ୟସମାଜର ଅସରନ୍ତି ଜନଶ୍ରୁତି, ବିକ୍ଷିପ୍ତ ଭାବରେ ଲୋକ ଲୋଚନର ଅନ୍ତରାଳରେ ଥିଲା । କୃଷ୍ଣଦ୍ୱୈପାୟନ ବ୍ୟାସ, ସେ ସବୁ ସଂଗ୍ରହକରି ମହାଭାରତ ଭିତରେ ଆନୀତ କରିଛନ୍ତି, ତାହା ହେଉଛି ଇତିହାସର ଆଧାର । ସେଇ ଐତିହାସିକ ଅବଲମ୍ବନକୁ ନେଇ ମହାକାବ୍ୟ ରଚିତ ହୋଇଛି ।

ଭାରତୀୟ ଧର୍ମଧାରଣା, ବିଶ୍ୱାସ, ତର୍କ, ପ୍ରଥା ଓ ପରମ୍ପରା, ନିଜସ୍ୱ ଚିନ୍ତା, ସାମାଜିକତା, ଆଚାର ବିଚାର ଓ ଅସୁମାର ଚିତ୍ର, ଚରିତ୍ରକୁ ନେଇ ଯେଉଁ ବାଙ୍ମୟ-ବିଗ୍ରହ ପ୍ରତିଷ୍ଠିତ ହୋଇଛି, ତାହା ମହାନତାର ମହାମନ୍ତ୍ର ନେଇ ନାମିତ ହୋଇଛି "ମହାଭାରତ" ନାମରେ । ଏହା ହେଉଛି ଏକ ମହାନ୍ ଜାତିର ଇତିବୃତ୍ତ। ଏକ ମହାନ୍ ସଭ୍ୟତାର ସୁଧାଭଣ୍ଡାର ।

ଜ୍ଞାନର ଗରିମା, ଭକ୍ତିର ମହିମା, କର୍ମର ଶ୍ଲାଘିମାକୁ ନେଇ ସମୃଦ୍ଧ ହୋଇଛି ମହାଭାରତ । ସେଥିପାଇଁ ଏହି ମହାଗ୍ରନ୍ଥ ସାର୍ବଜନୀନ ଓ ସାର୍ବଜାତିକ । ମହାଭାରତକୁ ମାନବ ଚରିତ୍ରର ଚିତ୍ରଶାଳା ବୋଲି କୁହାଯାଏ । ମଣିଷର ଈର୍ଷା, କ୍ରୋଧ, ଅହଂକାର, ଗର୍ବ, ଅଭିମାନ ଓ କପଟତାର କ୍ରୁର ରୂପ ଯେପରି ଚରମ ପର୍ଯ୍ୟାୟରେ ପହଞ୍ଚିଛି, ତା'ର ମହତ୍ ମାନବିକ ଗୁଣ, ନ୍ୟାୟ, ଧର୍ମ ଓ ସତ୍ୟାନୁରକ୍ତି, ଶ୍ରଦ୍ଧା, କରୁଣା, ସେବା, ସମ୍ମାନବୋଧ ଓ ନୀତି ନିଷ୍ଠା, ସେପରି ପରମ ପରମାର୍ଥରୂପ ଗ୍ରହଣ କରିଛି । ମହାଭାରତର ଚରିତ୍ରଗୁଡ଼ିକୁ ଅଧ୍ୟୟନ କଲେ ଜଣାଯାଏ, ସେମାନେ ମଣିଷର ନିର୍ଦ୍ଦିଷ୍ଟ ଗୋଟିଏ ଗୋଟିଏ ଗୁଣ ବା ପ୍ରକୃତିର ପ୍ରତୀକାତ୍ମକ ପ୍ରତିନିଧି । ମଣିଷ ଜାତି ଥିବା ପର୍ଯ୍ୟନ୍ତ ମହାଭାରତ ମାନବ ସଭ୍ୟତାର ସାମାଜିକ ସାରସ୍ୱତ ସତ୍ତା ରୂପେ ଜୀବିତ ରହିବ । ମହାଭାରତ ହେଉଛି ଚରମ ଓ ପରମର ମିଳନସ୍ଥଳୀ । ଚରମ ଉତ୍କର୍ଷତା, ଅଲୌକିକତା, ଅନୁରକ୍ତି,

ଅଭିନ୍ନତା, ନୈପୁଣ୍ୟ, ପରାକାଷ୍ଠା ପ୍ରଭୃତି ସଦ୍‌ଗୁଣ ଯେପରି ଦେଖିବାକୁ ମିଳେ, ସେପରି ଚରମ ଅବିବେକିତା, ଈର୍ଷା, କ୍ରୋଧ, ଅହଂକାର ଓ ଅବିମୃଶ୍ୟକାରିତା ଦେଖିବାକୁ ମିଳିଥାଏ । ପରମ ଭକ୍ତ, ପରମ ଯୋଗୀ, ପରମ ନୀତିନିଷ୍ଠ ପୁରୁଷ, ପରମ ଦୟାଳୁ ଓ ପରମ ପ୍ରେମିକ ମହାଭାରତରେ ଅଛନ୍ତି । ଅଛି ମଧ୍ୟ ପରମ ସତୀତ୍ୱ, ଭ୍ରାତୃତ୍ୱ, ଆଦର୍ଶ, ତ୍ୟାଗ, ମାତୃତ୍ୱ ତଥା ପରମ ପୁରୁଷାର୍ଥର କାଳଜୟୀ କାହାଣୀ ।

ମହାଭାରତ ଯୁଗରେ, ନାରୀ ସ୍ୱାଧୀନତା ତଥା ନାରୀଶିକ୍ଷାର ଚରମ ଉନ୍ନତି ସଂଘଟିତ ହୋଇଥିଲା । ନାରୀମାନେ ଥିଲେ ଶାସ୍ତ୍ର ନିପୁଣା, ବେଦଜ୍ଞା, ଯୋଗ ତଥା ତପୋମୟୀ । ସ୍ୱୟଂ ଗାନ୍ଧାରୀ ଥିଲେ ଅର୍ଥଶାସ୍ତ୍ର ନିପୁଣା ଓ ମନୋବିଜ୍ଞାନୀ । ସୁଲଭା ଥିଲେ ଯୋଗଶାସ୍ତ୍ର ନିପୁଣା, ଯେ କି ମହାଯୋଗୀମାନଙ୍କୁ ନିଜର ସାଧନା ବଳରେ ଚମତ୍କୃତ କରିପାରୁଥିଲେ । ଅର୍ଜୁନଙ୍କ ପତ୍ନୀ, ନାଗକନ୍ୟା ଉଲୁପୀ, ମୃତସଞ୍ଜୀବନୀ ମନ୍ତ୍ର ଜାଣିଥିଲେ । ସେ ମୃତସଞ୍ଜୀବନୀ ମଣିସ୍ପର୍ଶରେ ରଣ ନିହତ ଅର୍ଜୁନ ଓ ପୁତ୍ର ବଭ୍ରୁବାହନଙ୍କୁ ପ୍ରାଣଦାନ କରିଥିଲେ । ଦ୍ରୌପଦୀ ଥିଲେ ଅଯୋନି ସମ୍ଭୂତା । ଯଜ୍ଞକୁଣ୍ଡରୁ ତାଙ୍କର ଜନ୍ମ । ପୂର୍ବଜନ୍ମରେ ସେ ଥିଲେ ସ୍ୱର୍ଗଲକ୍ଷ୍ମୀ । ମାନବଜନ୍ମ ପାଇ ମଧ୍ୟ ସେ ଦେବ ଲୋକର ପ୍ରଜ୍ଞା, ପ୍ରତିଭା, ମାନସଶକ୍ତି ଓ ପୁଣ୍ୟ ଶକ୍ତିର ଅଧିକାରିଣୀ ଥିଲେ । ସ୍ୱୟଂବର ପରେ ମା' କୁନ୍ତୀଙ୍କ ଆଦେଶରେ ସେ ପଞ୍ଚପତିଙ୍କୁ ବରଣ କରିଥିଲେ । ସେ ସ୍ୱୀୟ ଆଧିଦୈବିକ ଶକ୍ତିବଳରେ ସୂଚନା ମାତ୍ରେ ଜାଣିପାରିଥିଲେ ଯେ, ପଞ୍ଚପାଣ୍ଡବ ହେଉଛନ୍ତି ପଞ୍ଚଇନ୍ଦ୍ର । ଯେଉଁମାନେ ଏକ ଇନ୍ଦ୍ରଶକ୍ତିର ପାଞ୍ଚଟିଶରୀର ବା ପାଞ୍ଚଟି ପ୍ରକାଶ । ନଚେତ୍‌ବା ଦ୍ରୌପଦୀଙ୍କ ପରି ନୀତିନିପୁଣା ବିପ୍ଳବିଣୀ ନାରୀ, ଏ ପ୍ରକାର ସମାଜ ବିରୋଧୀ, ନାରୀ ଧର୍ମବିରୋଧୀ ପ୍ରସ୍ତାବକୁ କେବେହେଲେ ସମର୍ଥନ କରି ନ ଥାନ୍ତେ।

ଅନ୍ୟଦୃଷ୍ଟିରୁ ବିଚାର କଲେ ପଞ୍ଚପାଣ୍ଡବ ଥିଲେ ଦ୍ରୌପଦୀଙ୍କର ପଞ୍ଚ ଇନ୍ଦ୍ରିୟ ପରି । ଅର୍ଜୁନ ଥିଲେ ତାଙ୍କର ଦର୍ଶନେନ୍ଦ୍ରିୟ, ରାଜା ଯୁଧିଷ୍ଠିର ଥିଲେ ତାଙ୍କର ଶ୍ରବଣେନ୍ଦ୍ରିୟ ଭୀମସେନ ଥିଲେ ରସନେନ୍ଦ୍ରିୟ । ନକୁଳ ଥିଲେ ସ୍ପର୍ଶେନ୍ଦ୍ରିୟ ଓ ସହଦେବ ଥିଲେ ଘ୍ରାଣେନ୍ଦ୍ରିୟ ପରି ।

ମହାଭାରତ ଯୁଗରେ ଅନ୍ୟକୁ ଅଭିଶାପ ଦେବାର ମାନସିକ ଶକ୍ତି ଏବଂ ଆଧ୍ୟାତ୍ମିକ ସାମର୍ଥ୍ୟ ନାରୀମାନଙ୍କର ମଧ୍ୟ ଥିଲା, ଏହାହିଁ ତପୋବଳର ପ୍ରଭାବ । ଏହା ନଥିଲା ଅବଳାର ଅସ୍ତ୍ର ବରଂ ଶକ୍ତିମୟୀ ନାରୀର ପଶୁଶକ୍ତି ବିରୁଦ୍ଧରେ ପାଶୁପତ ଅସ୍ତ୍ର । ଅନେକ କ୍ଷେତ୍ରରେ, ଏହି ଶକ୍ତିର ଅପବ୍ୟବହାର ଦୃଷ୍ଟାନ୍ତ ମଧ୍ୟ ମିଳେ ।

ମହାଭାରତରେ ନାରୀ ପୁରୁଷର ପ୍ରେମ ଏକ ସ୍ୱଚ୍ଛନ୍ଦ ଗତିଧାରା ମଧ୍ୟରେ ପ୍ରବହମାନ । ସତେ ଯେପରି ଏକ ପ୍ରାକୃତିକ ନଦୀ ବିରାଟ ବପୁ ବିସ୍ତାର କରି ବହୁ ଗିରିନିର୍ଝରିଣୀକୁ ନିଜଭିତରେ ଲୀନକରି, ବିପୁଳାୟତନ ମଧ୍ୟରେ ସାଗର ସଙ୍ଗମ ପାଇଁ ଆଗେଇ ଯାଇଛି । ମହାଭାରତ ପ୍ରଣୟ ନଦୀରେ ବ୍ୟଭିଚାରର ବର୍ଣ୍ଣବିନ୍ୟାସ ଘଟିଛି । ଛଳଛଳ କଳକଳ ସ୍ୱଚ୍ଛନ୍ଦ ପ୍ରେମ ସ୍ରୋତରେ ନରନାରୀ, ଉଭୟେ ପ୍ରାଣଭରି ଅବଗାହନ କରିଛନ୍ତି । ସମାଜର କ୍ରୋଧାରୁଣ ଚକ୍ଷୁ ସେମାନଙ୍କୁ ଶାସନ କରିପାରିନାହିଁ । ଶାସନ କରିବାକୁ ପ୍ରଚେଷ୍ଟା କରି ନାହିଁ ମଧ୍ୟ । ସମାଜର ଏହି ଉଦାରତା କିମ୍ବା ଅସହାୟତାର ସୁଯୋଗ ନେଇ, ପ୍ରେମିକ ପ୍ରେମିକାମାନେ ସ୍ୱେଚ୍ଛାଚାରିତା ଅବଲମ୍ବନ କରିଛନ୍ତି । ତା'ର ଫଳଶ୍ରୁତି ହେଉଛି ମହାଭାରତର ପ୍ରମୁଖ ଚରିତ୍ରଗଣ, ପଞ୍ଚପାଣ୍ଡବଗଣ, କର୍ଣ୍ଣ ଆଉ ଏପରି ଅନେକ ଚରିତ୍ର । ବ୍ୟଭିଚାରର ବିଭତ୍ସତା ଭିତରେ ମଧ୍ୟ ପ୍ରଣୟପଙ୍କରୁ ପୁଣ୍ୟପଦ୍ମ ସୃଷ୍ଟି ହୋଇଛି । ସତ୍ୟବତୀ ଓ କୁନ୍ତୀ ପ୍ରଭୃତି ମହିୟସୀ ମହିଳାମାନେ ଅନୀତିକୁ ନୀତିର ସ୍ୱୀକୃତି ଦେଇ ଯେଉଁ ଚିରଞ୍ଜୀବୀ ଯୁଗପୁରୁଷମାନଙ୍କୁ ଜନ୍ମ ଦେଇଛନ୍ତି, ସେମାନେ ନୀତିଧର୍ମର ମହାନ୍ ପ୍ରବକ୍ତା । ଅନୀତିର ନୀତି ସ୍ୱିତ୍ୱରୂପ

ମହାଭାରତରେ ଯଥାର୍ଥ ଭାବରେ ରୂପାୟିତ ହୋଇଛି । ତତ୍କାଳୀନ ସାମାଜିକ ପ୍ରଥା ଓ ପରମ୍ପରାର ନିରବ ସମର୍ଥନ ଏହାକୁ ସ୍ୱୀକୃତି ଦେଇଛି ।

ବିବାହିତା ନାରୀର ସଂଯମ, ଶୃଙ୍ଖଳା, ପତି ପ୍ରେମରେ ଐକାନ୍ତିକତା ଓ ପାତିବ୍ରତ୍ୟର ପଟାନ୍ତର ନାହିଁ । ସେଇ ପବିତ୍ର ଯଜ୍ଞକୁଣ୍ଡର ଧୂମକୁଣ୍ଡଳୀ ଭିତରେ ମହାଭାରତର ମନସ୍ୱିନୀ ମହିଳାମାନେ ପବିତ୍ରତା ଲାଭ କରିଛନ୍ତି ।

ବଂଶରକ୍ଷା ପାଇଁ ମହାଭାରତକାଳୀନ ନିଯୋଗପ୍ରଥା ଯେତେ ନିୟମ ଭଙ୍ଗ କରୁନା କାହିଁକି, ତାହା ବହୁ ପରୋକ୍ଷ ଓ ପ୍ରତ୍ୟକ୍ଷ ବିରୋଧ ଭିତରେ ତଥାପି ଗୃହୀତ ହୋଇଛି । ଅମ୍ବିକାଙ୍କ ସହିତ ବ୍ୟାସଦେବଙ୍କର ନିୟୋଗାତ୍ମକ ଘୃଣିତ ମିଳନ, ସନ୍ତାନକୁ ଚକ୍ଷୁହୀନ କରିଛି । ଧୃତରାଷ୍ଟ୍ର ଅନୀତିର ମୂକସାକ୍ଷୀ ଓ ନୀତିର ପ୍ରତୀକ । ପାଣ୍ଡୁ, ମାତା ଅମ୍ବାଳିକାଙ୍କ ଘୃଣା ଓ ବିରୋଧ ଭାବର ବର୍ଦ୍ଧିତ ବିଭବ । ମହାଭାରତରେ ଭୋଗ, ତ୍ୟାଗ, ନୀତି, ଅନୀତି, ପ୍ରବୃତ୍ତି ଓ ନିବୃତ୍ତି, ଇନ୍ଦ୍ରିୟ ଓ ଅତିନ୍ଦ୍ରିୟର ସମୀକରଣ ହୋଇଛି ।

ମହାଭାରତର ମହାପୀଠରେ ଯାହା କିଛି ସଂଘଟିତ ହୋଇଛି, ମଣିଷର ଯୁଗଯାତ୍ରା ପାଇଁ ତାହା ଯୁଗ ବୁକୁରେ ଏକ ବିଶାଳ ଗତି ପଥ ଖୋଲି ଦେଇଛି । ଏ ଯାତ୍ରା ପଥର ପଥିକ ମଣିଷ, କାଳେ କାଳେ ଏହି ଯୁଗବାର୍ତ୍ତାକୁ ଗ୍ରହଣ କରିପାରିବ । ଯୁଗଯୁଗ ଧରି ସାମଗ୍ରିକ ମାନବିକ ସତ୍ତାକୁ, ଉପଲବ୍ଧି କରିପାରିବ । ସେ ଏଥିରୁ ପାଇବ ସତ୍ୟଯୁଗର ସୌନ୍ଦର୍ଯ୍ୟ ଓ ସାତ୍ତ୍ୱିକତା, ତ୍ରେତୟାଯୁଗର ତ୍ୟାଗ ଓ ତପଶ୍ଚର୍ଯ୍ୟା,ଦ୍ୱାପର ଯୁଗର ଭକ୍ତି ଓ ପ୍ରେମଲୀଳା, କଳିଯୁଗର କାମ ଓ କଳୁଷତା । ମହାଭାରତ ଏକ ଯୁଗଗ୍ରନ୍ଥ । ଏଥିରେ ମଣିଷର ଯୁଗପତ୍ ଅଭୀପ୍ସା ପ୍ରସ୍ଫୁଟିତ ହୋଇଛି । ସେଇଥିପାଇଁ ଏହାର ଜନପ୍ରିୟତା ଯୁଗୋତ୍ତର ।

ଉତ୍ଥାନ ପତନ, ଧର୍ମ ଅଧର୍ମ, ପାପ ପୁଣ୍ୟ ଭିତରେ ମହାଭାରତର ଚରିତ୍ରମାନଙ୍କର ଯେଉଁ ଉତ୍ତରଣ ଘଟିଛି ତାହା ମାନବିକତାର ମଧୁପର୍କ । ସେଥିପାଇଁ ଅନ୍ୟାୟ ପରେ ଅନୁଶୋଚନା, ମୂଢତା ପରେ ମର୍ମଦାହ, କଠୋରତା ଭିତରେ କୋମଳତା, ଅଭକ୍ତି ଓ ଅବିଶ୍ୱାସ ଭିତରେ ଚରମ ଭକ୍ତି ଓ ବିଶ୍ୱାସ, ଆତ୍ମାଭିମାନ ଭିତରେ ଆତ୍ମସମର୍ପଣ ଦେଖିବାକୁ ମିଳେ ।

ମହାଭାରତ ସର୍ବଧର୍ମର ମିଳନ ପୀଠ । କୌଣସି ଗୋଟିଏ ଧର୍ମର ପରାକାଷ୍ଠା ପ୍ରତିପାଦନ କରିବାକୁ ଯାଇ ଅନ୍ୟ ଏକ ଧର୍ମକୁ ନିନ୍ଦା କରାଯାଇନାହିଁ । ଏଥିରେ ମାନବ ଧର୍ମର ପ୍ରଚାର ହୋଇଛି । ସେଥିପାଇଁ ମହାଭାରତରେ ଅଛି

''ଧର୍ମ ଯୋ ବାଧତେ ଧର୍ମ ନ ସଃ ଧର୍ମ କୁଧର୍ମତଃ
ଅବିରୋଧୀତୁ ଯୋ ଧର୍ମ, ସଃ, ଧର୍ମ ସତ୍ୟ ବିକ୍ରମ ।''

ଏହାର ଅର୍ଥ, ଯେଉଁ ଧର୍ମ ଅନ୍ୟଧର୍ମକୁ ବିରୋଧ କରେ ତାହା କୁଧର୍ମ, ଯେଉଁ ଧର୍ମ ଅନ୍ୟଧର୍ମକୁ ବିରୋଧ କରେନାହିଁ ତାହା ହିଁ ସତ୍ୟଧର୍ମ । ମହାଭାରତ ସେହି ମହାନ୍ ଧର୍ମର ପ୍ରଚାର କରେ ।

ହଜାର ହଜାର ବର୍ଷ ତଳର ସାରସ୍ୱତ ମହାଭାରତରେ ଯେଉଁ ଭାରତବର୍ଷ ପରିଦୃଶ୍ୟମାନ, ଆଜିର ଭାରତବର୍ଷ ସତେ ଯେପରି ତାର ଏକ ଅବିକଳ ଛବି । ଭାରତର ସ୍ୱାଧୀନତା ସଂଗ୍ରାମ ଆଉ ଏକ ମହାସମର । ଏହାର ରଣ କୌଶଳ ଥିଲା ଅନନ୍ୟ ଏବଂ ବିଶ୍ୱ ସାମରିକ ଇତିହାସର ଏକ ବିରଳ ଘଟଣା । ମହାଭାରତୀୟ ସଂସ୍କୃତି, ପରମ୍ପରା ସେ ଯୁଗରୁ ଏ ଯୁଗ ପର୍ଯ୍ୟନ୍ତ ଏକ ଅଖଣ୍ଡ ପ୍ରବାହ ପରି ପ୍ରବାହିତ ହେଉଛି । ହାର ମାନିଛି ସମୟର ଦୀର୍ଘତା, ରାଜନୈତିକ ଘଟାଟୋପ, ପ୍ରାଚ୍ୟ ସଭ୍ୟତାରେ ସ୍ୱେଚ୍ଛାଚାରିତାର ଅନୁପ୍ରବେଶ ।

ମହାଭାରତର ପ୍ରଥିତଯଶା ଚରିତ୍ରଗଣ ଗୋଟିଏ ଗୋଟିଏ ମହାସତ୍ୟର କାଳଜୟୀ ପ୍ରତିନିଧି । ମହାସମର ମହାଶୂନ୍ୟତାର ପ୍ରତୀକ ଭାବରେ ପ୍ରମାଣିତ ହୋଇଛି । ଦୃପ୍ତଅହମିକାର ସାମୟିକ ତୃପ୍ତି ବ୍ୟତୀତ ଯୁଦ୍ଧ ଆଉ କାହାକୁ କିଛି ଦିଏନାହିଁ । କେବଳ ମଣିଷର ଆଦିମକ୍ଷୁଧା କିଛିଟା ଉପଶମ କରେ ।

ସମୟର ମହାପୃଷ୍ଠାରେ ମହାଚରିତ୍ରମାନଙ୍କର ଲାଭକ୍ଷତିର ହିସାବ ସରିଯାଇଛି । ଏକ ମାନବ ବିରୋଧୀ କାର୍ଯ୍ୟ ପାଇଁ ଭାଗ୍ୟର ଅନୁକୂଳତା କାହାକୁ ମିଳିନି । ବୀରଗଣ ସାମଗ୍ରିକ ଭାବରେ ବିଫଳତା ଏବଂ ଅସନ୍ତୋଷର ପାଥେୟ ନେଇ ବୀରଗତି ଲାଭ କରିଛନ୍ତି ।

ପ୍ରଥମେ ବିଚାର କରିବା ପ୍ରମୁଖ ନାୟକ 'ଶ୍ରୀକୃଷ୍ଣ'ଙ୍କ କଥା । ସବୁଠାରୁ ଅଧିକ ସୁବିଧାଜନକ ସ୍ଥିତିରେ ସେ ନିଜ କର୍ତ୍ତବ୍ୟ ତୁଲାଇଛନ୍ତି । ଲକ୍ଷ୍ୟ ସିଦ୍ଧି ପାଇଁ କେଉଁଠାରେ ଦେବତାକୃଷ୍ଣ, ମଣିଷ ଭିତରକୁ ପଶିଆସିଛନ୍ତି ତ, ଆଉ କେଉଁଠାରେ ମାନବକୃଷ୍ଣ, ଦେବତାକୃଷ୍ଣଙ୍କ ଭିତରେ ଆତ୍ମଗୋପନ କରିଛନ୍ତି । ତାଙ୍କ ଦେବତ୍ୱ ଲକ୍ଷ୍ୟ ସାଧନର ଆୟୁଧ ହୋଇଛି । ସବୁକ୍ଷେତ୍ରରେ ଶ୍ରୀକୃଷ୍ଣଙ୍କର ମାନବିକମୂଲ୍ୟ ଓ ଆବେଦନ ବିଫଳ ହୋଇଛି । ଏହାର ପରିଣତି ସ୍ୱରୂପ ସେ ବରଣ କରିଛନ୍ତି ପୁତ୍ରଶୋକ । ବିଧୁରା ଗାନ୍ଧାରୀଙ୍କ ଚରମ ଅଭିଶାପରେ, ଶେଷରେ ଯଦୁବଂଶ ଧ୍ୱଂସ ହୋଇଛି ।

ଧର୍ମରାଜ 'ଯୁଧିଷ୍ଠିର' ପରିସ୍ଥିତିର ତାଡନାରେ, ବୌଦ୍ଧିକବାକ୍ୟ ବିନ୍ୟାସ ଭିତରେ ମିଥ୍ୟା କଥା କହି ନିଜର ଅସ୍ତ୍ରଗୁରୁ, ନୈତିକଗୁରୁ, ଦ୍ରୋଣାଚାର୍ଯ୍ୟଙ୍କୁ ହତ୍ୟା କରିଛନ୍ତି । ସାରା ଜୀବନ ବହନ କରିଛନ୍ତି ଅଧର୍ମରାଜର କଳଙ୍କ ଓ ଅନ୍ତର୍ଦ୍ୱନ୍ଦ୍ୱ ସର୍ବଦା ତାଙ୍କୁ ଅପରାଧବୋଧ ଭିତରେ ଅଶାନ୍ତ କରିଛି ।

'ଦୁର୍ଯ୍ୟୋଧନ' ନିଜର ଉଚ୍ଚାଭିଳାଷ ଓ ଅହଂକାରକୁ ଅତୁଟ ରଖିବାକୁ ଯାଇ ସର୍ବନାଶକୁ ନିମନ୍ତ୍ରଣ କରିଛନ୍ତି । ନିଜ ଉପରେ ଅତୁଟ ଆସ୍ଥା ଓ ବିଶୃଙ୍ଖଳିତ ଆଚରଣ ତାଙ୍କ ପତନର କାରଣ ହେଲା । ଶୁଭେଚ୍ଛୁମାନଙ୍କର ଉପଦେଶ ଗ୍ରହଣ କରିଥିଲେ, ଏକ ମଧୁରତମ ଜୀବନର ଅଧିକାରୀ ହୋଇପାରିଥାନ୍ତେ ।

'ଅର୍ଜୁନ' ମହାଭାରତର ସର୍ବଶ୍ରେଷ୍ଠ ବୀର । ସେ କର୍ମ ଓ ଭକ୍ତି ଯୋଗର ଯୁଗପୁରୁଷ, ତ୍ୟାଗ ଓ ବୈରାଗ୍ୟର ବିରଳ ବ୍ୟକ୍ତିତ୍ୱ । ତଥାପି ସେ ଭାଗ୍ୟର କ୍ରୀଡ଼ନକ, ସମୟ ହାତରେ ଦୟାର ପାତ୍ର । ଯୁଧିଷ୍ଠିରଙ୍କ ଅବିବେକିତାକୁ ମୁଣ୍ଡପାତି ବରଣ କରିନେବା,ଅନ୍ଧାନୁସରଣ ବ୍ୟତୀତ ଆଉକିଛି ନୁହେଁ । ଏହା ସର୍ବନାଶର ପଥ ପରିଷ୍କାର କରିଦେଲା । ବୀରତା ଜିତିଯାଇ, ଦକ୍ଷ ଖେଳୁଆଡ଼ର ସ୍ୱୀକୃତି ଦେଲା । ବିବେକ ହାରିଯାଇ ଚରମ ବିପର୍ଯ୍ୟୟର ସୂତ୍ରପାତ କଲା । ପାର୍ଥସାରଥିଙ୍କ ବିନା, ପାର୍ଥଙ୍କର ପାର୍ଥିବ ସ୍ଥିତି ଏକ ସ୍ୱତନ୍ତ୍ର ସତ୍ତା ।

'ଭୀମସେନ' କରାଳ କାଳର ଜୀବନ୍ତ ପ୍ରତିମୂର୍ତ୍ତି ହେଲେ ମଧ, ଦେହବଳ ବିଫଳ ହେଲା । ଦୁର୍ଯ୍ୟୋଧନଙ୍କୁ ଅନ୍ୟାୟ ଭାବରେ ମାରି, ଗାନ୍ଧାରୀଙ୍କ ଅଭିଶାପରୁ ରକ୍ଷା ପାଇଗଲେ, ମା'ଙ୍କ ପାଖରେ ନିଜର ଦୋଷସ୍ୱୀକାର କରି । ସେ ହୋଇଗଲେ କରୁଣାମୟୀ ମା' ଗାନ୍ଧାରୀଙ୍କ କ୍ଷମାର ପାତ୍ର, ନୀତି ଦୃଷ୍ଟିରୁ ହେଲେ କୃଷ୍ଣଙ୍କର କରୁଣାର ପାତ୍ର । ଦ୍ରୋଣାଚାର୍ଯ୍ୟଙ୍କ ଦୃଷ୍ଟିରେ ଅବିଶ୍ୱାସର ପାତ୍ର, ଧୃତରାଷ୍ଟ୍ରଙ୍କ ପାଖରେ ଘୃଣାର ପାତ୍ର । ଏତେ ଅପାତ୍ରତା ଭିତରେ ସେ ପାଣ୍ଡବମାନଙ୍କ ପାଇଁ ଥିଲେ ଅଶୀର୍ବାଦର ପାତ୍ର ।

କୁରୁ ସମ୍ରାଟ ଧୃତରାଷ୍ଟ୍ର ଥିଲେ, ଏକ ବିଲକ୍ଷଣ ବ୍ୟକ୍ତିତ୍ୱର ଅଧିକାରୀ । ପରିସ୍ଥିତିକୁ ଆଖିଆଗରେ ରଖି, ସେ ନିଜ ରୂପ ପରିବର୍ତ୍ତନ କରୁଥିଲେ । ସେ ସବୁ ଦିଗରୁ ଅନ୍ଧ ଥିଲେ । ନେତ୍ରାନ୍ଧ, ନୈତିକ ଅନ୍ଧ, ପୁତ୍ରାନ୍ଧ, କାମାନ୍ଧ, ମୋହାନ୍ଧ । ଅନ୍ଧତ୍ୱ ତାଙ୍କର ସମଗ୍ର ବ୍ୟକ୍ତିସତ୍ତାକୁ ଗ୍ରାସ କରିଥିଲା । ରାଜଶକ୍ତି ସେ ପ୍ରୟୋଗ କରିଥିଲେ କୁଳବଧୂ ଦ୍ରୌପଦୀଙ୍କ ବିବସନ ପରି ନାରକୀୟ ଘଟଣା ଘଟିନଥାନ୍ତା । ଅସାମର୍ଥ୍ୟକୁ ଅସ୍ତ୍ର ଏବଂ ଅସହାୟତାକୁ ଢାଲ ରୂପେ ଧରି ସେ ବହୁ ଅବିବେକି କାର୍ଯ୍ୟ କରିଛନ୍ତି ।

'ଭୀଷ୍ମଦେବ' ଶପଥ ସର୍ବସ୍ୱ ନୀତିମାନ୍ ପ୍ରଜ୍ଞା ପୁରୁଷ । ସେଥିଲେ ଧର୍ମର ପ୍ରଖ୍ୟାପକ । ମହାଭାରତ ଯୁଦ୍ଧର ସମର୍ଥକ ନ ଥିଲେ । କୁରୁରାଜସିଂହାସନକୁ ଜୀବନ ବିନିମୟରେ ରକ୍ଷା କରିବାକୁ ପିତାଙ୍କ ପାଖରେ ଶପଥ କରିଥିଲେ, ଫଳରେ ପାଣ୍ଡବ ପକ୍ଷକୁ ସମର୍ଥନ କରିପାରିଲେ ନାହିଁ । ସେଥିଲେ ସମସ୍ତଙ୍କ ସଙ୍କଟ ବେଳର ସାଥୀ କିନ୍ତୁ ତାଙ୍କ ମାନସିକ ସଙ୍କଟରେ ସାଥୀ କେହି ନଥିଲେ । କୁଳବଧୂ ଦ୍ରୌପଦୀଙ୍କ ନିର୍ଯ୍ୟାତନା ବେଳେ ପିତାମହ ଭୀଷ୍ମଦେବଙ୍କର ମୌନତା ଥିଲା ବୋଧହୁଏ ଚରମ ଅବିବେକିତା । ସେଇ ମୁହୂର୍ତ୍ତରୁ ତାଙ୍କର ମହାପ୍ରୟାଣ ପ୍ରକ୍ରିୟା ଆରମ୍ଭ ହୋଇଯାଇଥିଲା । ଧର୍ମରାଜ ଯୁଧିଷ୍ଠିରଙ୍କୁ ଶରଶଯ୍ୟାରେ ସେ ଦେଇଥିବା ଉପଦେଶ ମହାଭାରତ ଆମ୍ରବାଣୀ ।

ଆଚାର୍ଯ୍ୟ 'ଦ୍ରୋଣ' କୁରୁ ପାଣ୍ଡବଙ୍କର ଶିକ୍ଷା ଓ ଦୀକ୍ଷାଗୁରୁ । ସେ ରାଜାନ୍ନରେ ପ୍ରତିପାଳିତ ହେଲେ ମଧ ଦୁର୍ଯ୍ୟୋଧନଙ୍କ ଅସଙ୍ଗତ କାର୍ଯ୍ୟକୁ ସର୍ବଦା ବିରୋଧ କରିଛନ୍ତି । ସେ ନିଃସଙ୍ଗ ପିତାମହଙ୍କର ଥିଲେ ଏକମାତ୍ର ସାଥୀ । ତାଙ୍କର ଏକମାତ୍ର ଦୁର୍ବଳତା ହେଉଛି ପୁତ୍ର ସ୍ନେହରେ ସେ ଅନ୍ଧଥିଲେ । ଅର୍ଜୁନଙ୍କୁ ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ବୀର ରୂପେ ଗଢ଼ି, ପୁତ୍ର ଅଶ୍ୱତ୍ଥାମାକୁ ନାରାୟଣୀ ଅସ୍ତ୍ରର ଅଧିକାରୀ ରୂପେ ଅଜେୟ କରିଥିଲେ । ଏହାବ୍ୟତୀତ ଏକଲବ୍ୟଙ୍କ ଅକଳ୍ପନୀୟ ପରାକ୍ରମକୁ ପ୍ରତିହତ କରିବା ପାଇଁ, ତାଙ୍କ ଭାବପ୍ରବଣତାର ସୁଯୋଗ ନେଇ ହାତର ବୃଦ୍ଧାଙ୍ଗୁଳି ଛିନ୍ନ କରାଇଲେ । ଏକ ପ୍ରଚଣ୍ଡ ପ୍ରତିଭାର ରାହୁଗ୍ରାସ ହୋଇଗଲା । ଗୁରୁପରମ୍ପରାରେ କଳଙ୍କ ଲାଗିଲା । ଏକଲବ୍ୟ ବିକଳାଙ୍ଗ ହୋଇନଥିଲେ ଆର୍ଯ୍ୟଶକ୍ତି ପ୍ରତି ଏକ ଆହ୍ୱାନ ରୂପେ ଛିଡ଼ାହେବାର ଆଶଙ୍କା ଥିଲା ।

ମହାଭାରତରେ 'କର୍ଣ୍ଣ' ଏକ ବର୍ଣ୍ଣାଢ଼୍ୟ ଚରିତ୍ର । ପ୍ରତିଶ୍ରୁତି ପାଳନ ଦିଗରେ ତାଙ୍କର ଅବିଚଳିତ ନିଷ୍ଠା ଏବଂ ଦାନଶୀଳତା ତାଙ୍କୁ ମହନୀୟ କରିଛି । ବନ୍ଧୁବତ୍ସଳତା, ବିଶ୍ୱସ୍ତତା ଓ କୃତଜ୍ଞତା ପ୍ରକାଶ ପାଇଁ ସେ ଦୁର୍ଯ୍ୟୋଧନଙ୍କ ଅନ୍ୟାୟକୁ ମଧ ସମର୍ଥନ କରିଛନ୍ତି । ସମ୍ମାନ ଦାନରେ ସେ ସିଦ୍ଧହସ୍ତ । କୁରୁରାଜସଭାରେ ଦୌପଦୀଙ୍କ ପ୍ରତି ସମ୍ଭ୍ରମହୀନ ମନ୍ତବ୍ୟ ଏବଂ ନିର୍ଲଜ ଆଚରଣ ତାଙ୍କର ସବୁ ସୁଗୁଣକୁ କଳଙ୍କିତ କରିଛି । ଅନ୍ୟଦିଗରୁ ବିଚାରକଲେ କର୍ଣ୍ଣ ଏକ ଉପେକ୍ଷିତ ଚରିତ୍ର । ସେ ଜନ୍ମଦାତ୍ରୀ ଜନନୀର ଅବିଚାର ଭୋଗିଛନ୍ତି । ଜନନୀର ଦୁର୍ଭାବନା, କ୍ରୁରତା, ଦ୍ୱନ୍ଦ୍ୱ, ଅସଙ୍ଗତି ଓ ଅସଂଯମତା ଏବଂ ପିତାଙ୍କର ବୀରତା, ତେଜସ୍ୱିତା ତଥା ମହନୀୟତା ପ୍ରତିଫଳିତ ହୋଇଛି କର୍ଣ୍ଣଙ୍କ ଚରିତ୍ରରେ । ତଥାପି ସେ ମହାବୀର, ମହାଦାନୀ ଓ ମହାତେଜସ୍ୱୀ ।

'ବିଦୁର ଓ ସଞ୍ଜୟ' ମହାଭାରତର ଦୁଇଟି ଅନନ୍ୟ ଚରିତ୍ର । ବିଦୁର ଧୃତରାଷ୍ଟ୍ରଙ୍କ ଜ୍ଞାନ ନେତ୍ର । ସେ ଦୁହେଁ ତାଙ୍କ ବିବେକର ପ୍ରହରୀ । ଉଭୟେ ନୀତି ଓ ଧର୍ମକୁ ପ୍ରତିନିଧିତ୍ୱ କରିଛନ୍ତି । 'ଶକୁନି' ମୁଖ୍ୟନାୟକ ଶ୍ରୀକୃଷ୍ଣଙ୍କ ପ୍ରତିପକ୍ଷ ନାୟକ । ଖଳନାୟକ ଭାବରେ ସେ ଶଠତାର ସମୃଦ୍ଧ ପୁରୁଷ ଏବଂ ସେ ବହୁ ବିଭାଜିତ ବ୍ୟକ୍ତିତ୍ୱର ଅଧିକାରୀ । ତାଙ୍କ ଭିତରେ ଥିଲା ପ୍ରଚଣ୍ଡ ପ୍ରତିଭା । ଅର୍ଥଶାସ୍ତ୍ର, ମନସ୍ତତ୍ତ୍ୱ, ଶକୁନଶାସ୍ତ୍ରରେ ତାଙ୍କର ଥିଲା ଗଭୀର ମନୀଷା । ହସ୍ତିନାର ରାଜଶକ୍ତିକୁ ନିଜର ହାତ ମୁଠାରେ ରଖିବା ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ସେ କୁରୁ ସାମ୍ରାଜ୍ୟର ଅଘୋଷିତ ସମ୍ରାଟ ହେବାପାଇଁ ସମସ୍ତ କୂଟ କପଟର ମାୟାଜାଲ ବିସ୍ତାର କରିଥିଲେ । ଦୁର୍ଯ୍ୟୋଧନଙ୍କ ଉତ୍‌ଥାନ ପତନ ତାଙ୍କ ଭିତରେ ବିଶେଷ କିଛି ପ୍ରଭାବ ପକାଇ ନଥିଲା । ଅନ୍ୟଦିଗରୁ ବିଚାର କଲେ ସେ ବିରୋଧୀ ଭକ୍ତିର ମହାନ୍ ଭକ୍ତ ଥିଲେ । ସେ ଶଠତାର ପୂର୍ଣ୍ଣବିନିଯୋଗ କରି, ଦୁଷ୍ଟ ନିବାରଣ ପକ୍ରିୟାରେ ସହଯୋଗ କରିଛନ୍ତି ଶ୍ରୀକୃଷ୍ଣଙ୍କୁ । ତାଙ୍କର ପ୍ରତିକୂଳ ଭକ୍ତି, ଅନୁକୂଳ ଲକ୍ଷ୍ୟ ସାଧନର ସହାୟକ ହୋଇଛି ।

ମହାଭାରତର ନାରୀ ଚରିତ୍ରଗୁଡ଼ିକ ବ୍ୟର୍ଥତାର ଚାରଣ ଭୂମି । ସେମାନେ ମଧ୍ୟ ପୁରୁଷ ଚରିତ୍ର ପରି ଭାଗ୍ୟର ଆଶୀର୍ବାଦ ପାଇ ନାହାନ୍ତି ।

ପ୍ରଥମେ 'ସତ୍ୟବତୀ' - ସେ ନିଜ ନାମର ମର୍ଯ୍ୟାଦା ରଖିପାରିଲେ ନାହିଁ । ମିଥ୍ୟା ଥିଲା ତାଙ୍କ ଭାଗ୍ୟର ନିର୍ଣ୍ଣାୟକ । ତାଙ୍କ ସ୍ୱାର୍ଥରକ୍ଷା ପାଇଁ ଦେବବ୍ରତ, ଭୀଷ୍ମରେ ପରିଣତ ହୋଇ ଚିରକୁମାର ରହିଗଲେ । ଲୁପ୍ତ ହୋଇଗଲା ପୁଣ୍ୟସ୍ରୋତ । ବିଧିର ବିଡ଼ମ୍ବନା, କୁଳରକ୍ଷା ପାଇଁ କୁଳବଧୂମାନଙ୍କର ସତୀତ୍ୱ ଲୁଣ୍ଠନ କଲେ ନିୟୋଗ ପ୍ରଥାର ଆଶ୍ରୟ ନେଇ । କାନୀନପୁତ୍ର ବ୍ୟାସଦେବଙ୍କୁ ଏହି ପାପକର୍ମର ନିମିତ୍ତ କରି ତାଙ୍କର କୁଳୀନତା ମଧ୍ୟ ନଷ୍ଟକଲେ । ନଷ୍ଟକଲେ ତାଙ୍କର ଜ୍ୟେଷ୍ଠତା, ଶ୍ରେଷ୍ଠତା ଏବଂ ସମ୍ଭ୍ରାନ୍ତ ପଣ । ଯେଉଁ ବଂଶଲତାକୁ ଏତେ ଅନ୍ୟାୟ ଭିତରେ ବଢ଼ାଇଲେ, ତାହା ଶେଷରେ ଧ୍ୱଂସ ହୋଇଗଲା ପାପବିଷରେ ।

'ଗାନ୍ଧାରୀ' ମହାଭାରତର ଏକ ବିସ୍ମୟ । ସେ ଜଣେ ବ୍ରହ୍ମବାଦିନୀ ବିଦୁଷୀ । ରାଜନୀତି, ଅର୍ଥନୀତି, ମନସ୍ତତ୍ତ୍ୱରେ ତାଙ୍କର ଗଭୀର ଦଖଲ ଥିଲା । ଅନ୍ଧସ୍ୱାମୀର ଅନ୍ଧତ୍ୱକୁ ନିଜେ ବରଣ କରିନେଇ ପାତିବ୍ରତ୍ୟ ପାଳନ କଲେ । ଏହି ଚରମ ଦୁଃଖଦ ନିଷ୍ପତ୍ତି ନେଇନଥିଲେ ମହାଭାରତର ଘଟଣା ପ୍ରବାହ ଅନ୍ୟ ଏକ ମୋଡ଼ ନେଇଥାନ୍ତା । ଅନ୍ଧପୁଟୁଳି ଭିଡ଼ିନଥିଲେ ଧୃତରାଷ୍ଟ୍ରଙ୍କର ହୋଇଥାନ୍ତେ ନୟନମଣି । ଦୁର୍ଦ୍ଧର୍ଷ ପୁତ୍ରମାନଙ୍କୁ ମାତୃତ୍ୱର ମହାନ୍ ସ୍ପର୍ଶରେ ମହିମାମଣ୍ଡିତ କରିପାରିଥାନ୍ତେ । ଶକୁନି ଓ କର୍ଣ୍ଣଙ୍କର ଭୂମିକା ଗୌଣ ହୋଇଯାଇଥାନ୍ତା । ମହାପ୍ରଳୟ ସୃଷ୍ଟି ହୋଇନଥାନ୍ତା । ତେବେ ଦେବ ଇଚ୍ଛା ପୂରଣ ହୋଇଛି, ସେ ତାର ନିମିତ୍ତ ହୋଇଛନ୍ତି ।

'କୁନ୍ତୀ' ମହାଭାରତରେ ଏକ ଗତାନୁଗତିକ ନାରୀ ଚରିତ୍ର । ଭାଗ୍ୟର ବିଡ଼ମ୍ବନା, ପିତାଙ୍କ ଅବିଚାର ଭୋଗି, ରାଜା କୁନ୍ତଭୋଜଙ୍କର ସେ ହେଲେ ପାଳିତା କନ୍ୟା । ପିଲାଟି ଦିନରୁ ନିଜର ମାତୃ ପିତୃସ୍ନେହରୁ ସେ ବଞ୍ଚିତା ହେଲେ । ତାଙ୍କ ଭିତରେ ଆବେଗାତ୍ମକ ବିକାଶ ଠିକ୍ ଭାବରେ ହୋଇପାରିଲାନାହିଁ, ତାହା ବ୍ୟକ୍ତିତ୍ୱ ଗଠନ ଉପରେ କୁପ୍ରଭାବ ପକାଇଲା । କନ୍ୟା ଅବସ୍ଥାରେ ଲାଭ କରିଥିବା ପୁତ୍ରକୁ, ଗଙ୍ଗା ଧାରରେ ବିସର୍ଜନ କଲେ । ଶିଶୁ ପୁତ୍ରର ଜୀବନ ରକ୍ଷାହେଲା ଜଣେ ନିଃସନ୍ତାନ ସୂତଦମ୍ପତି ଦ୍ୱାରା । ପିଲାଟି ମହାବୀର 'କର୍ଣ୍ଣ' ନାମରେ ପରିଚିତ ହେଲା । କୁନ୍ତୀ ନିଜ ପୁତ୍ରମାନଙ୍କର ଜୀବନରକ୍ଷା ପାଇଁ, କର୍ଣ୍ଣଙ୍କ କରୁଣାଭିକ୍ଷା କରିଥିଲେ ନିଭୃତରେ । ପାଣ୍ଡବମାନଙ୍କୁ ଶେଷ ପର୍ଯ୍ୟନ୍ତ କର୍ଣ୍ଣଙ୍କ ଜନ୍ମରହସ୍ୟ ଜଣାଇ ନଥିଲେ । ଯୁଧିଷ୍ଠିର, କର୍ଣ୍ଣଙ୍କୁ ନିଜର ଭାଇ ବୋଲି ଜାଣିଥିଲେ ଏତେବଡ଼ ସର୍ବଗ୍ରାସୀ ଝଡ଼ ସୃଷ୍ଟି ହୋଇନଥାନ୍ତା । ଶାଶୂ ଭାବରେ ନିଜର ଅସାବଧାନ ମନ୍ତବ୍ୟ, 'ଯାହା ଆଣିଛ ବାଣ୍ଟିକରି ନିଅ', ଦ୍ରୌପଦୀଙ୍କ ଭାଗ୍ୟରେ ବ୍ୟତିକ୍ରମ ସୃଷ୍ଟିକଲା । ସେ ଅନ୍ତର ଦେଇ ବରଣ କରିଥିବା ମହାବୀର ଅର୍ଜୁନଙ୍କୁ ଏକାନ୍ତ ଭାବରେ ନିଜର ସ୍ୱାମୀରୂପେ ପାଇଲେ ନାହିଁ । ପଞ୍ଚସ୍ୱାମୀଙ୍କ ଭିତରେ ବିଭାଜିତ ପ୍ରେମ, ତାର କୁଳୀନତା ହରାଇଲା ।

'ଦ୍ରୌପଦୀ' ମହାଭାରତ ଯୁଦ୍ଧର କେନ୍ଦ୍ରବିନ୍ଦୁ । ସର୍ବଗ୍ରାସୀ ପ୍ରଳୟର ଆଦି ଉତ୍ସ । ତାଙ୍କର ପ୍ରକୃତ ପିତୃପରିଚୟ କିଛି ନାହିଁ । ଯଜ୍ଞକୁଣ୍ଡରୁ ତାଙ୍କର ଜନ୍ମ ବୋଲି ତାଙ୍କ ନାମ ଯାଜ୍ଞସେନୀ । ଯଜ୍ଞକୁଣ୍ଡ ତାଙ୍କର ଜନ୍ମଦାତ୍ରୀ ଜନନୀ । ଦ୍ରୌପଦୀଙ୍କ ଚରିତ୍ରରେ ତାଙ୍କ ଜନନୀର ଚରିତ୍ର ଫୁଟିଉଠିଛି । ତାଙ୍କ ଭିତରେ ଥିଲା ହୋମାଗ୍ନିର ଉଜ୍ଜ୍ୱଳତା ଓ ପବିତ୍ରତା, ହୋମ ଶିଖାର ଦର୍ପ, ଧୂମପଟଳର ଜ୍ୱାଳା ଏବଂ ହୋମକୁଣ୍ଡର କୃଷ୍ଣିମା । ଜୀବନ ପଥରେ ଯେଉଁଠାରେ ଯେଉଁ ଗୁଣର ଆବଶ୍ୟକତା ପଡ଼ିଛି, ସେ ସେଠାରେ ତାହା ପ୍ରୟୋଗ କରିଛନ୍ତି ।

ପଞ୍ଚାଳ ରାଜା ଦ୍ରୁପଦଙ୍କର କନ୍ୟା ଭାବରେ ସେ ପରିପାଳିତା ଏବଂ ପରିଚିତା, ତେଣୁ ତାଙ୍କ ନାମ ଦ୍ରୌପଦୀ । ତାଙ୍କ ଭିତରେ ରାଜକନ୍ୟାର ଅହଂକାର ଥିଲା । ସେଇ ଅହଂକାର ଦୁର୍ଯ୍ୟୋଧନଙ୍କୁ କରିଥିଲା ଅଧିକ ପ୍ରତିଶୋଧ ପରାୟଣ ।

ଦ୍ରୌପଦୀ ଧୃତରାଷ୍ଟ୍ରଙ୍କ ରାଜସଭାରେ କୁଳବଧୂର ମର୍ଯ୍ୟାଦାରୁ ବଞ୍ଚିତା ହେଲେ । ତାଙ୍କ ନାରୀତ୍ୱ ପ୍ରତି ଅପମାନ, ତାଙ୍କୁ ଅଗ୍ନିମୁଖୀ । ଆଗ୍ନେୟଗିରିରେ ପରିଣତ କରିଥିଲା । ସେ ଲାଭା ସ୍ରୋତରେ କୁରୁବଂଶ ପ୍ରାୟ ଧ୍ୱଂସ ହୋଇଗଲା । କୃଷ୍ଣ, କୃଷ୍ଣାଙ୍କୁ ଅସହାୟ ମୁହୂର୍ତ୍ତରେ ଦେବଦୁର୍ଲଭ ସହାୟତା ଦେଇ ରକ୍ଷା କରିଛନ୍ତି ।

ମହାଭାରତରେ ମହାନ୍ ଚରିତ୍ରଗୁଡ଼ିକର ବ୍ୟର୍ଥତ, ଅଧିକ ଭାବରେ ଜନମାନସକୁ ଆଲୋଡ଼ନ କରିଥାଏ । ସେଇ ଚରିତ୍ରଗୁଡ଼ିକର ଉଜ୍ଜ୍ୱଳତମ ଦିଗଟି ବହୁ ଦିଗରୁ ଆକର୍ଷଣୀୟ ହେଲେ ମଧ୍ୟ ତାହା ବିରୋଧାଭାସ ମଧ୍ୟରେ ସର୍ବଦା ମେଘୁଆ ହୋଇ ରହିଛି । କୁରୁବଂଶର ମହିୟସୀ ମହିଳାମାନେ ସବୁ ବ୍ୟତିକ୍ରମ ଭିତରେ ନିଜର ମହିମାରେ ମହିମା ମଣ୍ଡିତା । ସତ୍ୟବତୀ କର୍ତ୍ତବ୍ୟମୟୀ, ଗାନ୍ଧାରୀ ମହିମାମୟୀ, କରୁଣାମୟୀ, କୁନ୍ତୀ ସେବାମୟୀ ଏବଂ ଦ୍ରୌପଦୀ ସ୍ନେହମୟୀ ।

ମହାଭାରତ ଯୁଦ୍ଧ ମାର୍ଗଶିର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ଆରମ୍ଭ ହୋଇଥିଲା । କୁରୁକୁଳ, ଶୁକ୍ଳପକ୍ଷର ଶୁଭ୍ରତା, ଉଜ୍ଜ୍ୱଳତା ଏବଂ ପବିତ୍ରତାରୁ କିଛି ସୁଯୋଗ ଆହରଣ କରିପାରିଲା ନାହିଁ । ଅହଂକାର ଭିତରେ ବରଣ କରିନେଲା ସାରା କୃଷ୍ଣପକ୍ଷର କଳଙ୍କ କାଳିମା । ଘୋଟି ଆସିଲା କୁରୁବଂଶ ଓ କୁରୁକ୍ଷେତ୍ରରେ ମହାପ୍ରଳୟର ଘନ ଅନ୍ଧକାର । କୁରୁବଂଶ ଧ୍ୱଂସ ହେଲା, ତାକୁଇ ନେଇ ପୁସ୍ତକର ନାମକରଣ **"କୁରୁକ୍ଷେତ୍ରରେ କୃଷ୍ଣପକ୍ଷ"**।

ଆଜିର ଏହି ପୁସ୍ତିକଟିର ଜନ୍ମତିଥିରେ ବିଶିଷ୍ଟ ଅତିଥିରୂପେ ସମସ୍ତ ସମ୍ମାନର ମାନ୍ୟତା ଲାଭ କରିଛନ୍ତି ମୋର ସାରସ୍ୱତ ବନ୍ଧୁ ଡକ୍ଟର ଧରଣୀଧର ପାଣିଗ୍ରାହୀ । ସେ ଅନ୍ଧକାର ଭିତରୁ ଏହି ପାଣ୍ଡୁଲିପିଟିକୁ ଆବିଷ୍କାର କରି ପ୍ରକାଶନର ବ୍ୟବସ୍ଥା କରାଇଛନ୍ତି । ମୁଁ ତାଙ୍କୁ ମୋର ଗଭୀର କୃତଜ୍ଞତା ଜଣାଉଛି ।

ସଂସ୍କୃତ ମହାଭାରତର ଅବଲମ୍ବନରେ ଏହା ଲିଖିତ । ମହାଭାରତ ଉପରେ ଆଧାରିତ ବହୁ ପୁସ୍ତକ, ପତ୍ରପତ୍ରିକା ତଥ୍ୟ, ତତ୍ତ୍ୱ, ବିଚାର ଧାରା, ଦର୍ଶନ ମୋତେ ପ୍ରଭାବିତ କରିଛି ଏବଂ ଅନୁପ୍ରେରିତ ହୋଇ ମୁଁ ସେ ସବୁ ନିଜ ଲେଖାରେ ଗ୍ରହଣ କରିଛି । ସେ ସବୁର ଲେଖକ, ସମ୍ପାଦକ ଏବଂ ସମାଲୋଚକଙ୍କ ପାଖରେ ମୁଁ ଋଣୀ । ଏହି ସାରସ୍ୱତ ପୃଷ୍ଠାରେ ମୁଁ ସେମାନଙ୍କୁ ମୋର ଗଭୀର ସମ୍ମାନ ଜଣାଉଛି ।

ବି. ଦାସ ଏଣ୍ଡ କମ୍ପାନୀର ସ୍ୱତ୍ୱାଧିକାରୀ ଶ୍ରୀମାନ୍ ଧନଞ୍ଜୟ ରାୟ ଆଗ୍ରହର ସହିତ ଏହି ବ୍ୟୟବହୁଳ ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ, ମୁଁ ତାଙ୍କୁ ସାଧୁବାଦ ଜଣାଉଛି ।

ରାମନବମୀ
୨୦୦୩
ଏନ. ୧/୨୬୬, ଭୁବନେଶ୍ୱର-୧୫

ବିନୀତ
**ନରସିଂହ ମିଶ୍ର**

━━━━━━━━━━━━━━━━━━━━━━━━━━━━ ଏକ

## ।। କଚ ।।

ଦ୍ୱାପର ଯୁଗର କଥା ।

ଦେବ ଅସୁରଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଲାଗିଥାଏ । ଅସୁରମାନଙ୍କ ରାଜା ବୃଷପର୍ବା । ସେମାନଙ୍କର ଗୁରୁ ଶୁକ୍ରାଚାର୍ଯ୍ୟ । ସେ ଏକମାତ୍ର ହେଉଛନ୍ତି ସଞ୍ଜୀବନୀ ଶକ୍ତିର ଅଧିକାରୀ । ଏ ଶକ୍ତି ଆଉ କାହାରି ପାଖରେ ନାହିଁ । ଏପରିକି ଦେବଗୁରୁ ବୃହସ୍ପତି ମଧ୍ୟ ଏ ସୌଭାଗ୍ୟର ଅଧିକାରୀ ନୁହନ୍ତି । ଶୁକ୍ରାଚାର୍ଯ୍ୟ ଜ୍ଞାନର ସାଗର, ମହାନ୍ ତପସ୍ୱୀ ।

ଯୁଦ୍ଧରେ ଯେତେ ଅସୁର ମରୁଥିଲେ, ସେମାନେ ପୁଣି ଜୀବନ ଲାଭ କରୁଥିଲେ ଶୁକ୍ରାଚାର୍ଯ୍ୟଙ୍କ 'ଜୀବନ୍ୟାସ' ବଳରେ । ଦେବତାମାନଙ୍କ ମଧ୍ୟରେ ଭାଳେଣି ପଡ଼ିଗଲାଣି, ସେମାନଙ୍କ ଭିତରେ ଅଶାନ୍ତିର ଝଡ଼ । ବେଳ ଥାଉଥାଉ ଆଉ କିଛି ଉପାୟ ସ୍ଥିର କରିବାକୁ ହେବ । ସମସ୍ତେ ଯାଇ ପହଞ୍ଚିଲେ ବୃହସ୍ପତିଙ୍କ ପୁତ୍ର 'କଚ'ଙ୍କ ପାଖରେ । ଶୁକ୍ରାଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରି, ମୃତସଞ୍ଜୀବନୀ ମନ୍ତ୍ର ଆୟତ୍ତ କରିବାକୁ ତାଙ୍କୁ ଅନୁରୋଧ କଲେ । ଦେବତାମାନଙ୍କର ଅନୁରୋଧକୁ ଆଦେଶ ରୂପେ ଗ୍ରହଣ କଲେ 'କଚ' । କଥା ପରି କାମଟା ତ ଏଡ଼େ ସହଜ ନୁହେଁ, ତଥାପି ସେ ଗଲେ । ଗୁରୁଙ୍କୁ ନିଜର ପରିଚୟ ଦେଇ ତାଙ୍କର ମନକଥା ପ୍ରକାଶ କଲେ । କହିଲେ, ''ପ୍ରଭୋ! ଆପଣଙ୍କ ପାଦରେ ନିଜକୁ ସମର୍ପଣ କରିବା ପାଇଁ ମୁଁ ଆସିଛି । ମୋତେ, ଆପଣଙ୍କର ଶିଷ୍ୟରୂପେ ଗ୍ରହଣ କରି, ମୋ ଅଭିଳାଷ ପୂରଣ କରନ୍ତୁ । ମୁଁ ଆପଣଙ୍କର ଆଶୀର୍ବାଦ ଚାହେଁ ।''

ଶୁକ୍ରାଚାର୍ଯ୍ୟ କଚଙ୍କ ସମର୍ପଣକୁ ଶ୍ରଦ୍ଧାର ସହିତ ଗ୍ରହଣ କଲେ । ଦେବଗୁରୁଙ୍କ ସନ୍ତାନ ବୋଲି, ସେ ଅନୁଦାର ହେଲେ ନାହିଁ । ଜ୍ଞାନଲିପ୍ସୁକୁ ଜ୍ଞାନଦାନ କରିବା ଗୁରୁର ଧର୍ମ । ଦେବତାଙ୍କ ମଧ୍ୟରେ ଖେଳିଗଲା ଆନନ୍ଦ କଳରୋଳ ।

ଲକ୍ଷ୍ୟ ପୂରଣ ହୋଇଛି ।

କଚ, ମୁନି ଆଶ୍ରମରେ ରହିଲେ । ଶୁକ୍ରାଚାର୍ଯ୍ୟଙ୍କର ଅଲିଅଳି କନ୍ୟା, ନୟନପିତୁଳି, ଦେବଯାନୀ । ଅପରୂପ ସୌନ୍ଦର୍ଯ୍ୟର ଅଧିକାରିଣୀ ସେ । ଯେପରି ରୂପବତୀ ସେପରି ଗୁଣବତୀ ମଧ୍ୟ । କଚ, ତାଙ୍କର ଆଶ୍ରମ ସାଥୀ । ଦୀର୍ଘଦିନର ନିଃସଙ୍ଗତା ପରେ ମନଲାଖି ସାଥିଟିଏ ମିଳିଛି ଦେବଯାନୀଙ୍କୁ । ସେ ଅତ୍ୟନ୍ତ ଆନନ୍ଦିତା ।

ଆଶ୍ରମର ସବୁ କାମ କରନ୍ତି କଚ । ପ୍ରାଭାତିକ ଯଜ୍ଞ ପାଇଁ ବ୍ୟବସ୍ଥା କରିବାଠାରୁ ଆଶ୍ରମର ଧେନୁପଲକୁ ନେଇ ବଣରେ ଚରାଇବା ପର୍ଯ୍ୟନ୍ତ ।

ଭିତରେ ଭିତରେ ଅସୁରମାନେ କଚଙ୍କ ଉପରେ ଅତ୍ୟନ୍ତ କ୍ଷୁବ୍ଧ । ସମସ୍ତଙ୍କ ଘୋର ସନ୍ଦେହ, ଦିନେନା ଦିନେ 'କଚ' ସେମାନଙ୍କର ଦୁଃଖର କାରଣ ହେବେ । ପ୍ରତିଶୋଧ ନେବା ପାଇଁ ସମସ୍ତେ ତତ୍ପର ହୋଇଉଠିଲେ ।

ଦିନକର ଘଟଣା ।

କଚ ବଣରେ ଗାଈ ଚରାଉଥାନ୍ତି । ଅସୁରମାନେ ତାଙ୍କୁ ମାରି, ଖଣ୍ଡ ଖଣ୍ଡ କରି ଫୋପାଡ଼ିଦେଲେ । ଭାବିଲେ, କଣ୍ଟକ ନିର୍ମୂଳ ହୋଇଗଲା, ମନଭାରି ଖୁସି । ସୂର୍ଯ୍ୟାସ୍ତ ହୋଇଗଲାଣି । କି ଆଶ୍ଚର୍ଯ୍ୟ କଥା! ଗାଈମାନେ ବଣରୁ ଫେରିଲେଣି ଅଥଚ କଚ ଫେରିନାହାନ୍ତି । ଦେବଯାନୀ ଚିନ୍ତାକୁଳିତା । ସେ ବ୍ୟସ୍ତ ହୋଇ ବାପାଙ୍କୁ କହିଲେ, ''ବାପା ! କଚ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି । ଅସୁରମାନେ ବୋଧହୁଏ ତାଙ୍କୁ ମାରିଦେଇଛନ୍ତି । ଆପଣ ତାଙ୍କୁ ରକ୍ଷା କରନ୍ତୁ ।''

ପ୍ରାଣସମା କନ୍ୟାର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ ଶୁକ୍ରାଚାର୍ଯ୍ୟ । ଯୋଗବଳରେ ସେ ସମସ୍ତ ଘଟଣା ଜାଣିପାରିଲେ । ବଣକୁ ଯାଇ ଦେଖିଲେ, କଚଙ୍କର ଛିନ୍ନ ଅଙ୍ଗପ୍ରତ୍ୟଙ୍ଗ ଏଣେ ତେଣେ ପଡ଼ିଛି । ସେ ମୃତସଞ୍ଜୀବନୀ ମନ୍ତ୍ରବଳରେ ତାଙ୍କୁ ଜୀବନ୍ୟାସ ଦେଲେ । କଚ ନିଦରୁ ଉଠିଲା ପରି, ଆଖିମଳିମଳି ଉଠି ବସିଲେ । ଗୁରୁଙ୍କୁ ପ୍ରଣାମ କରି କହିଲେ, ''ପ୍ରଭୁ! କ୍ଷମା ଦିଅନ୍ତୁ । ଶୋଇପଡ଼ିଥିଲି, ଗାଈମାନେ ଆଶ୍ରମକୁ ଫେରିଗଲେଣି ବୋଧହୁଏ । ନା..ତ, କଲ୍ୟାଣୀ କାହିଁ ଯାଇନି.. ଛିଡା ହୋଇଚି । ଅପେକ୍ଷା କରିଛି ବୋଧହୁଏ ।'' ଶୁକ୍ରାଚାର୍ଯ୍ୟ ହସି ହସି କହିଲେ, ''ଆସ! ଆଶ୍ରମକୁ ଫେରିବା।'' ଗୁରୁଙ୍କ ପଛେ ପଛେ ସେମାନେ ଗଲେ ।

ଦେବଯାନୀଙ୍କର ଆନନ୍ଦ କହିଲେ ନସରେ । କଚ, ଫେରିଆସିଛନ୍ତି । ଅସୁରମାନଙ୍କର କ୍ରୋଧ, ଘୃତାଗ୍ନି ପରି ପ୍ରଜ୍ଜ୍ୱଳିତ ହେବାକୁ ଲାଗିଲା । ପ୍ରତ୍ୟକ୍ଷରେ କୌଣସି ଅଘଟନ ସୃଷ୍ଟିକରିବାକୁ ସେମାନେ ସାହସ କରିପାରିଲେ ନାହିଁ । ଶୁକ୍ରାଚାର୍ଯ୍ୟ ଅସନ୍ତୁଷ୍ଟ ହେଲେ ରାକ୍ଷସରାଜ ବୃଷପର୍ବା ତାଙ୍କର ଆଶୀର୍ବାଦରୁ ବଞ୍ଚିତ ହେବେ । ସମସ୍ତେ ହେବେ ଘୋର ବିପର୍ଯ୍ୟୟର ସମ୍ମୁଖୀନ । ଯାହାକିଛି କରିବା କଥା, ତାଙ୍କ ଅଲକ୍ଷ୍ୟରେ କରିବାକୁ ହେବ ।

ଅସୁରମାନେ କଚଙ୍କୁ ଗୋଡ଼େଗୋଡ଼େ ଜଗିଥାନ୍ତି । ଦିନେ କୌଶଳ କରି ତାଙ୍କୁ ଧରିନେଇ, ମାରିଦେଲେ । ସାରାଶରୀରକୁ ମୋଡ଼ିମାଡ଼ି ଚୂନା କରିଦେଇ ସମୁଦ୍ରରେ ପକାଇଦେଲେ । ଭାବିଲେ, ଏଥର ଶୁକ୍ରାଚାର୍ଯ୍ୟ ବୋଧହୁଏ କଚଙ୍କୁ ବଞ୍ଚାଇ ପାରିବେ ନାହିଁ । ସେମାନଙ୍କର ସ୍ୱପ୍ନ କିନ୍ତୁ ସ୍ୱପ୍ନରେ ରହିଗଲା । ଶୁକ୍ରାଚାର୍ଯ୍ୟ ସଞ୍ଜୀବନୀ ଶକ୍ତି ବଳରେ କଚଙ୍କୁ ଜୀବଦାନ କଲେ । ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ ଦେବଯାନୀ ।

କ୍ରୋଧରେ, ବୈଶାଖୀ ଘୂର୍ଣ୍ଣିପରି ମାତି ଉଠିଲେ ଅସୁରମାନେ । ପ୍ରଚ୍ଛନ୍ନ ପ୍ରତିଶୋଧ ପାଇଁ ସମସ୍ତେ ପାଗଳ । ଦିନେ କଚଙ୍କୁ ମାରି ସୋମରସ ସହିତ ମିଶାଇ ସେମାନେ କୌଶଳ କ୍ରମେ ଶୁକ୍ରାଚାର୍ଯ୍ୟଙ୍କୁ ପାନ କରିବାକୁ ଦେଇ ଦେଲେ । ସନ୍ଦେହ ନ କରି ସେ ଆନନ୍ଦରେ ତାହା ପାନକଲେ ।

ଦେବଯାନୀ ପାଗଳିନୀ ପରି ଖୋଜୁଥାନ୍ତି । କାନ୍ଦି କାନ୍ଦି ଭୂଇଁରେ ଲୋଟିଯାଉଥାନ୍ତି । ତାଙ୍କରପୂରା ସନ୍ଦେହ, କଚଙ୍କୁ ଅସୁରମାନେ ନିଶ୍ଚୟ ମାରି ଦେଇଛନ୍ତି । ତାଙ୍କୁ ନ ପାଇଲେ ସେ ପ୍ରାଣ ବିସର୍ଜନ କରିବେ ।

ଶୁକ୍ରାଚାର୍ଯ୍ୟ ଝିଅକୁ ଜନ୍ମ ମୃତ୍ୟୁର ରହସ୍ୟ ବୁଝାଇ କହିଲେ, ''ଏ ସଂସାରରେ ସମସ୍ତେ ମୃତ୍ୟୁର ଅଧୀନ । ଦିନେନାଦିନେ ପ୍ରତ୍ୟେକଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିବ । ଜୀବନର ସାର୍ବଜନୀନ ଭାଗ୍ୟ ହେଉଛି ମୃତ୍ୟୁ । ବ୍ୟସ୍ତ ହେବାର କିଛି ନାହିଁ ।''

ଦେବଯାନୀର ଶୋକାକୁଳିତା ହୃଦୟ, ପିତାଙ୍କର ଏ ଦର୍ଶନତତ୍ତ୍ୱ ଆଦୌ ଗ୍ରହଣ କରିପାରିଲା ନାହିଁ । ସେ କହିଲେ, ବାପା! କଚଙ୍କୁ ଜୀବଦାନ ନ କଲେ ମୁଁ ବରଂ ମୃତ୍ୟୁବରଣ କରିବି, ଅନ୍ନ, ଜଳ, ସ୍ପର୍ଶ କରିବିନାହିଁ ।'' ସ୍ନେହସିକ୍ତ ପିତାର ହୃଦୟକୁ କଥାଟା ଭାରି ସ୍ପର୍ଶ କଲା ।

ଶୁକ୍ରାଚାର୍ଯ୍ୟ ଅସୁରମାନଙ୍କର ଆଚରଣରେ କ୍ଷୁବ୍ଧ ହୋଇଉଠିଲେ । ସ୍ଥିରକଲେ, ସେ ଏଥର ଦେବଯାନୀଙ୍କୁ ସହଯୋଗ କରିବେ । ଅସୁରମାନଙ୍କର ବିବେକ ନାହିଁ, ହିତାହିତ-ଜ୍ଞାନ ନାହିଁ । ସେମାନେ ଧ୍ୱଂସ ହୋଇଯାଆନ୍ତୁ । ଦୁଃଖ କରିବାର କିଛି ନାହିଁ । ରାକ୍ଷସରାଜ ବୃଷପର୍ବା ଗୁରୁଦେବଙ୍କୁ ଶାନ୍ତ କରିବା ପାଇଁ, ତାଙ୍କ ପାଖରେ ଶରଣ ପଶିଲେ । ଶାନ୍ତ ହେଲେ ଶୁକ୍ରାଚାର୍ଯ୍ୟ । ଧ୍ୟାନବଳରେ ସେ ଜାଣିଲେ, କଚ ତାଙ୍କର ପେଟ ଭିତରେ ଅଛନ୍ତି । ଅସୁରମାନଙ୍କ ଚକ୍ରାନ୍ତରେ ସେ ହତବାକ୍ ହୋଇଗଲେ । ନିଜକୁ ନିଜେ ଭର୍ତ୍ସନା କରି କହିଲେ, ''ଏଥିପାଇଁ କେବଳ ଅସୁରମାନେ ଦାୟୀ ନୁହଁନ୍ତି, ମୁଁ ନିଜେ ମଧ୍ୟ । ମଦିରାସକ୍ତ ହୋଇନଥିଲେ ଏ ଅଘଟନ କେବେହେଲେ ଘଟି ନ ଥାନ୍ତା । ନିଶାସକ୍ତ ବ୍ୟକ୍ତି ଜୀବନରେ କି ଦୁର୍ଯୋଗ ସୃଷ୍ଟି କରି ନ ପାରେ ! ଭାବିଲେ, ସେ ନିଜ ସହିତ ସାରା ସଂସାର ପାଇଁ ଏକ ଅଭିଶାପ ।''

ଶୁକ୍ରାଚାର୍ଯ୍ୟ ଗଭୀର ଆତ୍ମଗ୍ଲାନି ମଧ୍ୟରେ ବ୍ୟଥିତ ହୋଇ କହିଲେ, ''କଚ ! ମୁଁ ତୁମକୁ ମୃତସଞ୍ଜୀବନୀ ମନ୍ତ୍ର ଶିଖାଇ ଦେଉଛି । ତୁମେ ତାହା ଶିଖି, ମୋ'ର ଗର୍ଭ ଛିନ୍ନ କରି ବାହାରିଆସ । ମୁଁ ତ ମୃତ୍ୟୁମୁଖରେ ପଡ଼ିଥିବି, ତୁମେ ସେଇ ମନ୍ତ୍ର ଶକ୍ତି ବଳରେ ମୋତେ ମଧ୍ୟ ଜୀବନ ଦାନ କରିବ ।''

ତାହାହିଁ ହେଲା । କଚ, ମୃତସଞ୍ଜୀବନୀ ମନ୍ତ୍ର ଶିଖିବା ପରେ, ଗୁରୁଙ୍କ ଗର୍ଭ ବିଦାରଣ କରି ବାହାରି ଆସିଲେ । ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ସେଇ ମନ୍ତ୍ରବଳରେ ଜୀବନଦାନ କଲେ । ତାଙ୍କ ଚରଣ ସ୍ପର୍ଶକରି ପ୍ରଣାମ ଜଣାଇ କହିଲେ, ''ହେ ଗୁରୁଦେବ ! ଆପଣ ମୋର ପିତା ଏବଂ ଗର୍ଭରେ ଧାରଣ କରିଥିବାରୁ ମାତା ମଧ୍ୟ । ମୋତେ ଆଶୀର୍ବାଦ ଦିଅନ୍ତୁ ।''

ଅଧ୍ୟୟନ କାଳ ସମାପ୍ତ ହେଲା । କଚ, ସ୍ୱର୍ଗପୁରକୁ ଫେରିବା ପାଇଁ ପ୍ରସ୍ତୁତ ହେଲେ ।

ଦେବଯାନୀ ସତେ ଯେପରି ଶିଶିରସ୍ନାତ ଶିରୀଷ କୁସୁମଟିଏ । ମର୍ମବେଦନା ମଧ୍ୟରେ ମଉଳିଯାଇଥାଆନ୍ତି । ସେ ବିକଳ କଣ୍ଠରେ କହିଲେ, ''କଚ ! ତୁମେ ମୋ ପ୍ରାଣର ପ୍ରାଣ, ପ୍ରୀତିର ପରମତୀର୍ଥ । ମୁଁ ତୁମକୁ ଜୀବନ ସାଥୀ ରୂପେ ବରଣ କରିଛି । ମୋତେ ନିରାଶ କରନି, ଗ୍ରହଣ କର କଚ !'' ଅଶ୍ରୁମୁଖୀ ଦେବଯାନୀର ବିକଳ ନିବେଦନ, କଚଙ୍କ ମନକୁ ସ୍ପର୍ଶ କରିପାରିଲା ନାହିଁ । ସେ କହିଲେ, ''ଦେବଯାନୀ ! ତୁମେ କେବଳ ମୋର ଗୁରୁକନ୍ୟା ନୁହଁ, ତୁମ ପିତାଙ୍କ ଗର୍ଭରୁ ମୁଁ ପୁନର୍ଜନ୍ମ ପାଇଥିବାରୁ, ତୁମେ ମଧ୍ୟ ମୋର ପୁଣ୍ୟଶୀଳା ଭଉଣୀ । କେବଳ ଭଉଣୀର ସମ୍ମାନ ଦେବା ବ୍ୟତୀତ, ମୁଁ ଅନ୍ୟ କୌଣସି ଭାବରେ ତୁମକୁ ଗ୍ରହଣ କରି ପାରିବି ନାହିଁ । ମୁଁ ଜାଣେ, କେବଳ ତୁମରି ପାଇଁ ମୋର ପୁନର୍ଜୀବନ ଲାଭ ସମ୍ଭବ ହୋଇଛି । ଏ ଋଣ ଅପରିଶୋଧ୍ୟ, ଜନ୍ମ ଜନ୍ମାନ୍ତର ପାଇଁ ଏ ଋଣବୋଝ ନେଇ ବିଦାୟ ନେଉଛି । ମୋତେ କ୍ଷମାଦିଅ ଦେବଯାନୀ । କ୍ଷମାଦିଅ ।''

# ।। ଦେବଯାନୀ ଓ ଶର୍ମିଷ୍ଠା ।।

ମହାତ୍ମା ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ । ଅସୁରରାଜା ବୃଷପର୍ବାଙ୍କ ରାଜଦୁଲାଳୀ ଶର୍ମିଷ୍ଠା । ଉଭୟଙ୍କ ମଧ୍ୟରେ ବନ୍ଧୁତା ଖୁବ୍ ନିବିଡ଼ । ତେବେ ସ୍ୱାଭିମାନ ବି କମ୍ ନୁହେଁ । ଆତ୍ମମର୍ଯ୍ୟାଦା ଦୃଷ୍ଟିରୁ, ଉଭୟେ ଗୋଟିଏ ଗୋଟିଏ ସରଳରେଖା, ଲମ୍ବିଯିବେ ସିନା ଲଇଁବେ ନାହିଁ । ସେଇଥିପାଇଁ ଉଭୟଙ୍କ ଜୀବନରେ ସୃଷ୍ଟି ହୋଇଛି ଅଶାନ୍ତ ଝଡ଼ ।

ଦେବଯାନୀ ଭଲ ରୂପେ ଜାଣିଥିଲେ, ଅସୁରରାଜ ବୃଷପର୍ବାଙ୍କ ଏହି ରାଜଶିରୀ ଓ ଅଖଣ୍ଡ ଆଧିପତ୍ୟ କେବଳ ତାଙ୍କ ପିତା ଶୁକ୍ରାଚାର୍ଯ୍ୟଙ୍କ ପାଇଁ । ସେ ସମର୍ଥନ ପ୍ରତ୍ୟାହାର କରିନେଲେ, ବୃଷପର୍ବା ନିଜର ରାଜସିଂହାସନ ହରାଇବେ । ଅସୁରମାନେ ଅକଥନୀୟ ଯନ୍ତ୍ରଣା ଭୋଗ କରିବେ । ଗୁରୁ ଶୁକ୍ରାଚାର୍ଯ୍ୟ ଅସୁର ଜାତିର ଭାଗ୍ୟବିଧାତା ।

ଶୁକ୍ରାଚାର୍ଯ୍ୟଙ୍କର ହୃଦୟକୁ ଜୟ କରିଥିଲେ ତାଙ୍କ କନ୍ୟା ଦେବଯାନୀ । ପରୋକ୍ଷରେ ସେ ରାକ୍ଷସ କୁଳର ଭାଗ୍ୟକୁ ନିୟନ୍ତ୍ରଣ କରୁଥିଲେ । ଦୁଇ ସଖୀ ସେଦିନ ରାଜଉଦ୍ୟାନରେ ବୁଲୁଥାନ୍ତି । ବର୍ଣ୍ଣାଢ୍ୟ ପୁଷ୍ପସମ୍ଭାର ଭିତରେ ଘୂରିବୁଲୁଥାନ୍ତି ପ୍ରଜାପତି ପରି । ତା'ରି ଭିତରେ ଲୁଚକାଳି ଖେଳ । ଫୁଲ ପାଖୁଡ଼ାକୁ ଆଉଁଶି ଆଉଁଶି ତୋଳୁଥାନ୍ତି ମଧୁଗୁଞ୍ଜନର ଆସର । ମଧୁପିଆ ଭ୍ରମରକୁ ଇଙ୍ଗିତ କରି କେତେକଥା କହୁଥାନ୍ତି, ମହୁଲିମନର ଟାହୁଲି କଥା । ରାଜ ଉଦ୍ୟାନ ହସଖୁସି କଳରୋଳରେ ଚହଲି ଉଠୁଥାଏ ।

ଦିନେ ସଖିଏ ମିଳି ନଗର ଉପାନ୍ତ ବଣକୁ ଯାଇଥିଲେ ଆମୋଦ କରିବେ ବୋଲି । ନିକଟରେ ଗୋଟିଏ କ୍ଷୁଦ୍ର ପୁଷ୍କରିଣୀ । କାଚକେନ୍ଦୁପରି ନିର୍ମଳ ଜଳ । ତା'ରି ମଧ୍ୟରେ ଯୁବତୀଗଣ ସ୍ନାନରତା । ସେମାନଙ୍କର ବପୁବଲ୍ଲୀର ବିପୁଳ ବିକାଶରେ ବିହ୍ୱଳ ହୋଇ, ଇନ୍ଦ୍ର ଦେବତା ବାୟୁ ରୂପ ଧାରଣ କଲେ । ନୟନ ପିପାସା ଚରିତାର୍ଥ ହେଲା । ବନ୍ଧ ଉପରେ ଥିବା ଲୁଗାପଟା ପୋଷାକ ପରିଚ୍ଛଦ, ପବନରେ ଏପାଖ ସେପାଖ ହୋଇଗଲା ।

ପ୍ରଥମେ ପୋଖରୀ ଜଳରୁ ଉଠିଆସିଲେ ଶର୍ମିଷ୍ଠା । ଭ୍ରମବଶତଃ ଦେବଯାନୀଙ୍କ ପାଟଳ ପାଟବସ୍ତ୍ର ପରିଧାନ କଲେ । ଅଙ୍ଗରେ ଅନଙ୍ଗର ଅଙ୍ଗନ ତୋଳି, ଜଳଭାଗରୁ ବାହାରି ଆସିଲେ ଦେବଯାନୀ । ''ଏଁ.... ମୋର ପାଟପତନି କାଇଁ ! ଏଇତ କଣ ଶର୍ମିଷ୍ଠା ପିନ୍ଧିଛି !''

ରାଗରେ ତମ ତମ ହୋଇ ଉଠିଲେ ଦେବଯାନୀ ।

''ସାହସତ କିଛି କମ୍ ନୁହେଁ । ତୁ' ଗୋଟିଏ ଅସୁରକନ୍ୟା ହୋଇ ମୋର ପବିତ୍ର ବସ୍ତ୍ର ପିନ୍ଧିପକାଇଲୁ ! ଯେତେହେଲେ ବି ମୁଁ ଗୁରୁକନ୍ୟା । ତୋତେ ଲାଜ ଲାଗୁନି, ସାଧାରଣ ଶିଷ୍ଟାଚାରବି ଭୁଲିଗଲୁ ।''

ଶର୍ମିଷ୍ଠା କ୍ରୋଧ ଜର୍ଜରିତ ହୋଇ କହିଲେ, ''କଣ କହିଲୁ !! ମୁଁ ଅସୁରକନ୍ୟା ?? କିନ୍ତୁ ମନେରଖ, ତୁ କାହାର କନ୍ୟା ସେ ବିଷୟରେ ପରିଚୟ ଦେବାକୁ ତୋର କିଛି ନାହିଁ । ମୋ ବାପା ଅସୁରମାନଙ୍କର ରାଜା, ମୁଁ ରାଜକନ୍ୟା । ତୁ କିନ୍ତୁ ରାଜ ଅନ୍ନରେ ପ୍ରତିପାଳିତା ଗୋଟିଏ ଭିକାରି ବ୍ରାହ୍ମଣର କନ୍ୟା । ଭିକ୍ଷା ହିଁ ତମର ବୃତ୍ତି । ରାଜାଙ୍କର ମନତୁଷ୍ଟି କରିବା ତମର ଏକମାତ୍ର ଧର୍ମ । ରାଜାନୁକମ୍ପା ତମ ଜୀବନର ଏକମାତ୍ର ଅବଲମ୍ବନ । ତୁ ଚାତର ଦେଖାଉଛୁ ! ଭଲ ମଙ୍ଗଳ ଥିଲେ ସୀମା ଭିତରେ ରହି କଥାବାର୍ତ୍ତାକର ।''

ଉଭୟଙ୍କ ଭିତରେ ଯୁକ୍ତି ତର୍କ ଓ କଳହର ଘନଘଟା ବଢ଼ିବାକୁ ଲାଗିଲା । ରାଜକନ୍ୟା ଶର୍ମିଷ୍ଠା କ୍ରୋଧାନ୍ଧ ହୋଇ ଅନ୍ୟ ସଖୀ ଓ ପରିଚାରିକାମାନଙ୍କ ସାହାଯ୍ୟରେ ଦେବଯାନୀଙ୍କୁ ନେଇ ଗୋଟିଏ ଗଭୀର କୂପ ମଧ୍ୟରେ ନିକ୍ଷେପ କଲେ । ଆତ୍ମାଭିମାନର ଉଗ୍ରତା, ବିଚାର ବୁଦ୍ଧି ନଷ୍ଟ କରିଦେଲା ।

ସମସ୍ତେ ରାଜପୁରୀକୁ ଫେରିଗଲେ । ଶର୍ମିଷ୍ଠାର ଧାରଣା, ଦେବଯାନୀ ନିଶ୍ଚୟ ମୃତ୍ୟୁମୁଖରେ ପଡ଼ିଥିବ ।

କୂପଟି ଗଭୀର ହେଲେ ବି ଜଳର ଗଭୀରତା ନ ଥିଲା ।

ଆବକ୍ଷ ଜଳ ଭିତରେ ଛଟପଟ ହେଉଥାନ୍ତି ଦେବଯାନୀ । ଆତ୍ମରକ୍ଷାର ଉପାୟ ନାହିଁ । ଟିକିଏ କ୍ରୋଧ ସମ୍ବରଣ କରିଥିଲେ ବୋଧହୁଏ ଏ ପରିଣତି ଘଟି ନଥାନ୍ତା । ଅନୁତାପ ଏବଂ ପ୍ରତିଶୋଧ ଅଗ୍ନିରେ ଦଗ୍ଧିଭୂତ ଦେବଯାନୀ ।

''ଏଁ.. ଏକଣ ଶୁଣାଯାଉଛି ! କ୍ରନ୍ଦନର କରୁଣ ସ୍ୱର । କିଏ କାନ୍ଦୁଛି? ନିର୍ଜନ ବନପ୍ରଦେଶରେ ଏ କାହାର ସ୍ୱର?''

ମୃଗୟାକ୍ଲାନ୍ତ ରାଜା ଯଯାତି ଚାରିଆଡ଼କୁ ଚାହିଁଲେ । କୂପ ମଧ୍ୟକୁ ଦୃଷ୍ଟି ପକାଇଲେ, ଗୋଟିଏ ରୋରୁଦ୍ୟମାନା ନବ ଯୁବତୀ କାତର କଣ୍ଠରେ କହୁଚି, ''ରକ୍ଷାକର, ରକ୍ଷାକର ।'' ଯଯାତି କୂପ ମଧ୍ୟରେ ପ୍ରବେଶ କରି, ତାର ଡାହାଣ ହାତକୁ ଧରି ଆସ୍ତେ ଆସ୍ତ ଉପରକୁ ଉଠାଇ ଆଣିଲେ ।

ରକ୍ଷା ପାଇଗଲେ ଦେବଯାନୀ ।

ମୁହଁପୋତି ରାଜାଙ୍କ ସମ୍ମୁଖରେ ଛିଡ଼ା ହେଲେ ଦେବଯାନୀ । ପ୍ରସ୍ଫୁଟିତ ପଦ୍ମପରି ଲଜ୍ଜା ଲୋହିତ ମୁଖମଣ୍ଡଳ । ପଟୋଳଚିରା ନୟନ । ତାରି ଭିତରେ କୁରଙ୍ଗୀର ଚାହାଣୀ । ସୁଠାମ ସୁଢ଼ଳ ବପୁ ବଲ୍ଲୀରେ ଝିନବସ୍ତ୍ରର ଆର୍ଦ୍ର ଉତ୍ତରୀ । ସତେ ଯେପରି, ଯୌବନ ଜଳରୁ ଅବଗାହନ ସାରି, ସଦ୍ୟ ଉଠି ଆସିଛନ୍ତି ସେ ।

''ତୁମେ କିଏ ?'' ପଚାରିଲେ ସମ୍ରାଟ ଯଯାତି ।

''ମୁଁ..ମୁଁ..!!'' ପୁଣି ମୁହଁ ପୋତି ଭୂଇଁ ଉପରେ ବୁଢ଼ା ଅଙ୍ଗୁଳିରେ ଗାର କାଟିଲେ ଦେବଯାନୀ ।

''କହୁନ ଯେ... ପରିଚୟ ଦେବାରେ କଣ କିଛି ଅସୁବିଧା ଅଛି?''

''ଏ ଅଭାଗିନୀର ତ୍ରାଣକର୍ତ୍ତା ଏବଂ ଭର୍ତ୍ତାଙ୍କ ପାଖରେ, ନିଜର ପରିଚୟ ଦେବାରେ ଅସୁବିଧା କାହିଁକି ରହିବ ? ମୁଁ ହେଉଛି ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ।''

''ଦେ..ବ..ଯା..ନୀ..? ବିଶ୍ୱଗୁରୁ ମହାମୁନି ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ମହିୟସୀ କନ୍ୟା ଦେବଯାନୀ ?? ହଁ.. ତୁମେ...''

''ମୋର ସଖୀ ଅସୁରରାଜ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା, ମୋତେ ଏହି ଦଣ୍ଡ ଦେଇଛି । ମୁଁ ଆଉ ଅସୁର ରାଜ୍ୟକୁ ଫେରିବି ନାହିଁ ମହାରାଜ ! ଆପଣ ମୋର ପାଣିଗ୍ରହଣ କରିଛନ୍ତି, ଦକ୍ଷିଣ ହସ୍ତର ଅଧିକାରୀ । ମୁଁ ଆପଣଙ୍କୁ କେବଳ ହସ୍ତଦାନ କରିନାହିଁ, ମନଦାନ କରିଛି ମଧ୍ୟ । ଆପଣ ମୋତେ ଗ୍ରହଣ କରନ୍ତୁ ସମ୍ରାଟ ।''

ଯଯାତି ଶ୍ରଦ୍ଧାଭରାକଣ୍ଠରେ କହିଲେ; ''ଦେବଯାନୀ ! ଗୋଟିଏ ଆବେଗିକ ମୁହୂର୍ତ୍ତର ଆବେଶ ମଧ୍ୟରେ, ତୁମେ ମୋହାଚ୍ଛନ୍ନ ହୋଇଉଠିଛ । ଏ ପ୍ରକାର ଭାବବେଗ ଶୋଭନୀୟ ନୁହେଁ । ମନେରଖ

ତୁମେ ବ୍ରାହ୍ମଣକନ୍ୟା, ମୁଁ କ୍ଷତ୍ରିୟ । ସମାଜିକ ବିଧିବିଧାନ ଅନୁସାରେ, ଏ ପ୍ରକାର ପ୍ରତିଲୋମ ବିବାହ ଶାସ୍ତ୍ରସମ୍ମତ ନୁହେଁ । ତୁମେ ତୁମ ପିତାଙ୍କର ପାଖକୁ ଯାଅ । ମନକୁ ସଂଯତ ଓ ଶୃଙ୍ଖଳିତ କର । ଋଷିପୁତ୍ର ହିଁ ତମର ଯୋଗ୍ୟ ସ୍ୱାମୀ, ରାଜା କିମ୍ବା ରାଜପୁତ୍ର ନୁହନ୍ତି । ଫେରିଯାଅ, ଦେବଯାନୀ, ଫେରିଯାଅ ।''

ଯଯାତି ବିଦାୟ ନେଲେ ।

ଘୋର ଚିନ୍ତାମଗ୍ନ ଶୁକ୍ରାଚାର୍ଯ୍ୟ । ଝିଅ ଏ ପର୍ଯ୍ୟନ୍ତ ଘରକୁ ଫେରିଲା ନାହିଁ । ଖୋଜିବା ପାଇଁ ଦାସୀମାନେ ଯାଇଛନ୍ତି । 'ଘୂର୍ଣ୍ଣିକା' ଦୂରରୁ ଦେବଯାନୀଙ୍କୁ ଦେଖି ଧଇଁ ସଇଁ ହୋଇ ପହଞ୍ଚିଲା ତାଙ୍କ ପାଖରେ । ଉଚ୍ଛୁଳା ନଈର ଉଚ୍ଛ୍ୱାସ ନେଇ କାନ୍ଦିପକାଇଲେ ଦେବଯାନୀ । ଯାହାସବୁ ଘଟିଛି, ଟିକିନିଖି ସବୁକଥା କହିଲେ । ''ରାକ୍ଷସୀ ଶର୍ମିଷ୍ଠା ମୋତେ ଶେଷ କରିବାକୁ ବସିଥିଲା । ତୃଷାର୍ତ୍ତ ସମ୍ରାଟ ଯଯାତି, ଦେବଦୂତ ପରି ଆସି ମୋତେ ରକ୍ଷାକଲେ । 'ଘୂର୍ଣ୍ଣିକା ! ତୁମେ ଯାଇ ବାପାଙ୍କୁ ମୋର ଦୁର୍ଦ୍ଦଶାକଥା କୁହ । ତାଙ୍କୁ ଜଣାଇଦିଅଯେ ମୁଁ ସେ ରକ୍ଷାସପୁରୀକୁ ଫେରିବି ନାହିଁ । ଅସୁରରାଜ ବୃଷପର୍ବାର ରାଜ୍ୟରେ ରହିବାକୁ ମୁଁ ଇଚ୍ଛା କରେ ନାହିଁ ।

ଶୁକ୍ରାଚାର୍ଯ୍ୟ ଦାସୀଠାରୁ ସବୁକଥା ଶୁଣି ଅଥୟ ହୋଇ ଦଉଡ଼ିଲେ । ଦେବଯାନୀ ଅଶ୍ରୁଗଦ୍ ଗଦ୍ କଣ୍ଠରେ ବାପାଙ୍କ ପାଖରେ ସମସ୍ତ ଘଟଣା ବର୍ଣ୍ଣନା କଲେ । ''ବାପା ! ଶର୍ମିଷ୍ଠା କହିଲା, ତା' ପିତାଙ୍କର ଭିକ୍ଷାନ୍ନରେ  ଆମେ ପ୍ରତିପାଳିତ । ରାଜାନୁକମ୍ପା ବ୍ୟତୀତ, ଜୀବନ ଧାରଣର ଉପାୟ ଆମ ପାଖରେ କିଛି ନାହିଁ ।

ଗର୍ଜ୍ଜନ କରି ଉଠିଲେ, ଶୁକ୍ରାଚାର୍ଯ୍ୟ । ''ପ୍ରତିଶୋଧ ନେବି, ପ୍ରତିଶୋଧ । ନିଜର ସମର୍ଥନ ପ୍ରତ୍ୟାହାର କରିବି । ଅସୁରମାନେ ମରନ୍ତୁ । ଅସୁରକୁଳ ଧ୍ୱଂସ ହେଉ ।''

ରାଜା ବୃଷପର୍ବା ଏକଥା ଶୁଣି ଶୁକ୍ରାଚାର୍ଯ୍ୟଙ୍କ ପାଖରେ ଶରଣ ପଶିଲେ । ଦେବଯାନୀଙ୍କୁ ପ୍ରଣାମ କରି, ଝିଅର ଦୋଷ ପାଇଁ କ୍ଷମାଭିକ୍ଷା କଲେ । ଦେବଯାନୀଙ୍କ ଉପରେ ଏହାର କିଛି ପ୍ରଭାବ ପଡ଼ିଲା ନାହିଁ । ସେ ଅବିଚଳିତ କଣ୍ଠରେ କହିଲେ, ''ଯେ ମୋର ପ୍ରାଣନାଶ କରିବାକୁ ଯାଇଥିଲା, ତା' ପାଇଁ ଦଣ୍ଡ ଆବଶ୍ୟକ, କ୍ଷମା ନୁହେଁ । ତେବେ ମୁଁ ତା' ପରି ଏତେ ତଳକୁ ଖସି ଯାଇ ପ୍ରାଣଦଣ୍ଡ ଦେବାକୁ ଚାହେଁ ନାହିଁ ।''

ବୃଷପର୍ବା ଆଶ୍ୱସ୍ତ ହୋଇ କହିଲେ, ''ଆପଣ କଣ ଚାହାନ୍ତି ମନ ଖୋଲି କହନ୍ତୁ ।'' ''ମୁଁ ଚାହେଁ, ଶର୍ମିଷ୍ଠା ଆଜୀବନ ମୋର ଦାସୀ  ହୋଇ ରହିବ । ତାହା ହିଁ ହେବ ତା' ପାପର ପ୍ରାୟଶ୍ଚିତ୍ତ ।''

ବୃଷପର୍ବା କରୁଣ ନୟନରେ ଚାହିଁଲେ ଦେବଯାନୀ ଏବଂ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ । ଶର୍ମିଷ୍ଠା, ପିତା ଏବଂ ଅସୁରକୁଳକୁ ଧ୍ୱଂସ ମୁଖରୁ ରକ୍ଷା କରିବା ପାଇଁ କହିଲେ, ''ପିତା ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ସମସ୍ତଙ୍କର ମଙ୍ଗଳଦୃଷ୍ଟିରୁ ମୁଁ ଆନନ୍ଦରେ ଏ ଦଣ୍ଡ ବରଣ କରୁଛି'' । ତାହାହିଁ ହେଲା ।

ଶର୍ମିଷ୍ଠା ଦେବଯାନୀଙ୍କର ଦାସୀରୂପେ ରହିଲେ । ଗୋଟାଏ ମହାପ୍ରଳୟରୁ ସମସ୍ତେ ରକ୍ଷାପାଇଗଲେ । ଆହତ ସ୍ୱାଭିମାନର ନିର୍ମମ ନକ୍ସାଟିଏ ଆଙ୍କି ହୋଇଗଲା କାଳବକ୍ଷରେ ।



# ।। ଯଯାତି ଓ ଦେବଯାନୀ ।।

ଅନେକଦିନ ପରର ଘଟଣା ।

ଦିନେ ରାଜା ଯଯାତି ବଣକୁ ମୃଗୟା ପାଇଁ ଆସିଥିଲେ । ଦେବଯାନୀ ସେତେବେଳେ ଦାସୀ ପରିଚାରିକା ଓ ଶର୍ମିଷ୍ଠା ଗହଣରେ ବନ ବିହାର କରୁଥାନ୍ତି । ସହସା ସେଠାରେ ଆସି ଉପସ୍ଥିତ ହେଲେ ରାଜା ଯଯାତି । ସବୁରି ଭିତରେ ଚଞ୍ଚଳତା ଓ ଉଲ୍ଲାସର ଶିହରଣ ।

''ଆପଣ କିଏ ? ଜଣେ ରାଜା ଓ ଋଷି ପୁତ୍ର ପରି ମନେ ହେଉଛନ୍ତି ? ପଚାରିଲେ ଲାସ୍ୟମୟୀ ଦେବଯାନୀ ।''

''ମୁଁ ଯଯାତି । ରୂପ ଗଗନର ଦୀପ୍ତିମୟୀ ତାରକା ଦୁଇଟିର, ପରିଚୟ ପାଇ ପାରିବିକି ?''
''ଓଃ ଆପଣ ହସ୍ତିନାପୁର ନରପତି? ଅନେକଦିନ ତଳେ, ଏଇ ବନଭୂମିରେ, ଏକ ସମର୍ପିତା, ଯୁବତୀର ଦକ୍ଷିଣହସ୍ତ ଧାରଣ କରି ପାଣିଗ୍ରହଣ କରିଥିଲେ ନା ! ମୁଁ ସେଇ ଅପେକ୍ଷମାଣା ଦେବଯାନୀ ଦେବର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା । ସେ ହେଉଛି ମୋର ସଖୀ ଓ ଦାସୀ, ଅସୁରରାଜ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା । ମୋତେ ଆପଣ ଗ୍ରହଣ କରି, ଶର୍ମିଷ୍ଠା ପରି ସହସ୍ର ଦାସୀଙ୍କୁ ଲାଭ କରନ୍ତୁ ।''

ଯଯାତିଙ୍କର ଅତୀତର ସମସ୍ତ ଘଟଣା ମନେପଡ଼ିଲା । ସେ ଗମ୍ଭୀର ହୋଇ କହିଲେ, 'ଦେବଯାନୀ ! ଅତୀତରେ ମୁଁ ଯେଉଁ ନିଷ୍ପତ୍ତି ନେଇସାରିଛି, ତାର ପରିବର୍ତ୍ତନ କଣ କରିପାରିବି? ଶାସ୍ତ୍ର ସମ୍ମତ ବିଧି ବିଧାନ ଲଙ୍ଘନ କରିବା ସମୀଚୀନ ନୁହେଁ ।

''ବିଶ୍ୱବରେଣ୍ୟ ବୈଧାନିକ, ନୀତିଶାସ୍ତ୍ର ନିପୁଣ ମୋର ପିତା ଶୁକ୍ରାଚାର୍ଯ୍ୟ ଯଦି ଏ ଶୁଭ ପ୍ରସ୍ତାବରେ ସଶ୍ରଦ୍ଧ ସମ୍ମତି ଦିଅନ୍ତି ତାହେଲେ ସମ୍ରାଟ ଅକୁଣ୍ଠ ଚିତ୍ତରେ ଏହାକୁ ଗ୍ରହଣ କରିବେ ବୋଲି ମୁଁ ଆଶା କରେ । ମହର୍ଷି ଶୁକ୍ରାଚାର୍ଯ୍ୟଙ୍କର ସମ୍ପ୍ରଦାନ ଆପଣ କଣ ସ୍ୱୀକାର କରିବେ ନାହିଁ ??

ସମ୍ରାଟ ଯଯାତିଙ୍କର ଅଧର ଉପକଣ୍ଠରେ ସମ୍ମତିର ସ୍ମିତରେଖା । ଦେବଯାନୀଙ୍କ ଇଙ୍ଗିତରେ ଏକ କଳା ନିପୁଣା ଦାସୀ ଯାଇ ଶୁକ୍ରାଚାର୍ଯ୍ୟଙ୍କ ସମକ୍ଷରେ ସମସ୍ତ ବିଷୟ ବର୍ଣ୍ଣନା କଲା । ମହର୍ଷି ଏ ସମ୍ବାଦ ପାଇ ସେଠାରେ ଆସି ଉପସ୍ଥିତ ହେଲେ ।

ନତମୁଖରେ ଦଣ୍ଡାୟମାନ ହୋଇଥାନ୍ତି ସମ୍ରାଟ ଯଯାତି ଓ କନ୍ୟା ଦେବଯାନୀ । ଉଭୟେ ଭକ୍ତିଭରା ପ୍ରଣାମ ଜଣାଇଲେ ।

''କଲ୍ୟାଣୀ ମାଆ ମୋର ! ମୁଁ ଯେଉଁ ସମ୍ବାଦ ପାଇଛି ତା'ର କଣ କିଛି ସତ୍ୟତା ଅଛି ?''

''ହଁ ବାପା ! ରାକ୍ଷସୀ ଶର୍ମିଷ୍ଠା ଯେତେବେଳେ ମୋର ପ୍ରାଣନାଶ ପାଇଁ ମୋତେ କୂଅରେ ପକାଇ ଦେଇ ଚାଲିଗଲା, ସେତେବେଳେ ଦେବଦୂତ ପରି ହସ୍ତିନାରାଜ ଆସି ମୋର ଦକ୍ଷିଣହସ୍ତ ଧରି ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା କରିଥିଲେ । ସେଇ ମୁହୂର୍ତ୍ତରୁ ମୁଁ ଗ୍ରହଣ କରିନେଇଛି, ସେ ମୋର ପାଣିଗ୍ରହଣ କରିଛନ୍ତି ବୋଲି । ତାଙ୍କ ପଦତୀର୍ଥରେ ନିଜକୁ ସମର୍ପଣ କରିଛି ବାପା । ଆପଣ ଅନୁମତି ଦେଲେ ସେ ମୋତେ ଗ୍ରହଣ କରିବେ ବୋଲି ଆଶା କରୁଛି ।''

ଶୁକ୍ରାଚାର୍ଯ୍ୟ, ପ୍ରାଣାଧିକା କନ୍ୟାର ସମର୍ପଣ, ଶାସ୍ତ୍ର ସମ୍ମତିର ଊର୍ଦ୍ଧ୍ୱରେ ବୋଲି ଅନୁଭବ କଲେ । ରାଜର୍ଷି ଯଯାତିଙ୍କୁ ମଧୁର କଣ୍ଠରେ କହିଲେ, ''ହେ ସମ୍ରାଟ ! ମୋର କନ୍ୟା ଆପଣଙ୍କୁ ଏକାନ୍ତ ଭାବରେ

ପତି ରୂପେ ବରଣ କରିଥିବାରୁ ମୁଁ ତାକୁ ଆପଣଙ୍କ ହସ୍ତରେ ସମର୍ପଣ କରୁଛି । ଆପଣ ତାକୁ ନିଜର ରାଜ ମହିଷୀରୂପେ ଗ୍ରହଣ କରନ୍ତୁ । ଏ ବିବାହ ଜନିତ ଦୋଷାଦୋଷ ମୁଁ ହରଣ କରୁଛି । ଆଶଙ୍କାର କାରଣ କିଛି ନାହିଁ ।''

'' ଆପଣଙ୍କର ଏହି ଆଶୀର୍ବାଦ ଆମ ପାଇଁ ଶୁଭଙ୍କର ହେଉ ଏହାହିଁ ଏକମାତ୍ର କାମନା ।'' ନମିତ ନୟନରେ କହିଲେ ଯଯାତି ।

ଶୁକ୍ରାଚାର୍ଯ୍ୟ ଆଶୀର୍ବାଦ ଦେଇ କହିଲେ, ''ରାଜନ୍ ! ଦେବଯାନୀ ସହିତ ତାର ସଖୀ ଓ ସେବିକା ଅସୁରରାଜ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା ଆପଣଙ୍କ ରାଜପୁରୀକୁ ଯିବ । ଆପଣ ତା'ପ୍ରତି ଶ୍ରଦ୍ଧା ତଥା ଉଦାର ଭାବ ପୋଷଣ କରିବେ । ଯଥୋଚିତ ସମ୍ମାନ ଲାଭରୁ ତାକୁ ବଞ୍ଚିତ କରିବେ ନାହିଁ, କିନ୍ତୁ ମନେ ରଖନ୍ତୁ, ତାକୁ ଜୀବନରେ କେବେ ଶଯ୍ୟାସାଥୀ, ହେବା ପାଇଁ ନିମନ୍ତ୍ରଣ କରିବେ ନାହିଁ । ଭବିଷ୍ୟତ ମଙ୍ଗଳପାଇଁ ଏ ବାରଣ ମାନିବାକୁ ହେବ ।'' ଯଯାତି ନତମସ୍ତକ ହେଲେ ।

ଦେବଯାନୀ ଓ ଯଯାତି, ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ପଦରେ ପ୍ରଣତି ଢାଳି ରାଜପୁରୀକୁ ବିଦାୟ ନେଲେ । ତାଙ୍କ ଗହଣରେ ଗଲେ ଶର୍ମିଷ୍ଠା ଓ ଅନ୍ୟାନ୍ୟ ଦାସୀ ପରିଚାରିକା ମଧ୍ୟ । ଉତ୍ସବ ମୁଖରିତ ହେଲା ହସ୍ତିନାପୁର ରାଜପୁରୀ । ପରମ ସମ୍ମାନନୀୟା ରାଜମହିଷୀ ରୂପେ ଅନ୍ତପୁରକୁ ପ୍ରବେଶ କଲେ ଦେବଯାନୀ ।

ରାଜପୁରୀର ଅନତି ଦୂରରେ ଅଶୋକ ଉଦ୍ୟାନ । ରାଣୀ ଦେବଯାନୀଙ୍କ ନିର୍ଦ୍ଦେଶରେ ସେଠାରେ ନିର୍ମିତ ହେଲା ଏକ ସୁରମ୍ୟ ରାଜପ୍ରାସାଦ, ରାଜକନ୍ୟା ଶର୍ମିଷ୍ଠାଙ୍କ ପାଇଁ । ସେଠାରେ ସହସ୍ର ଦାସୀ ପରିବେଷ୍ଟିତା ହୋଇ ସେ, ଅବସ୍ଥାନ କଲେ । ଗ୍ରହଣ କରିନେଲେ ରାଜରାଣୀ ଦେବଯାନୀଙ୍କର ସମସ୍ତ ବିଧିବ୍ୟବସ୍ଥା । ଶର୍ମିଷ୍ଠା ସଖୀ ଭାବରେ ନିଜର ସହାଯ୍ୟ ଦେଇ ଦେବଯାନୀଙ୍କ ସେବାରେ ସର୍ବଦା ତତ୍ପର ଥିଲେ । ଉଭୟଙ୍କ ମଧ୍ୟରେ ପୁଣି ଶ୍ରଦ୍ଧାର ସେତୁ ଗଢ଼ି ଉଠିଲା । ଦୁଇଟି ଉଗ୍ର ଅହଂକାର ମଧ୍ୟ ଆସ୍ତେ ପ୍ରଶମିତ ହୋଇଆସିଲା ସମର୍ପଣ ଭିତରେ ।

ଏଥି ଭିତରେ ବିତିଯାଇଛି ଅନେକ ଦିନ ।

ଦିନେ ଦେବଯାନୀ ସମ୍ରାଟ, ଯଯାତିଙ୍କ ସହିତ ଅଶୋକବନକୁ ଆସିଲେ ବନବିହାର ପାଇଁ । ଆଖିରେ ପଡ଼ିଲା ତିନୋଟି ସୌମ୍ୟ ଶିଶୁ । ସତେ ଯେପରି କନ୍ଦର୍ପ ସନ୍ତାନ । ସ୍ୱର୍ଗର ଦେବଶିଶୁ ମର୍ତ୍ତ୍ୟମାଟିକୁ ଓହ୍ଲାଇ ଆସିଛନ୍ତି ଅବା । ସାଥିରେ ଥିଲେ ଶିଶୁ ସନ୍ତାନ ଯଦୁ ଓ ତୁର୍ବସୁ । ଶିଶୁ ସୁଲଭ ମମତାର ଆକର୍ଷଣୀ ନେଇ ସେମାନେ ଯାଇ ତାଙ୍କ ଗହଣରେ ଛିଡ଼ା ହେଲେ । ପ୍ରଶ୍ନଭରା ନୟନରେ ଚାହିଁ ରହିଲେ ଦେବଯାନୀ । ଯଯାତିଙ୍କ ମୁଖମଣ୍ଡଳରେ ସ୍ମିତହାସର ଆଲେଖ୍ୟ । ''ପିଲାଏ ! ତୁମମାନଙ୍କ ନାଁ କଣ?''

ମୋ ନାଁ, ଦ୍ରୁହ୍ୟୁ, ତା ନା ଅନୁ, ଏଇ ମୋର ସାନ ଭାଇର ନାଁ ପୁରୁ ।''

''ତୁମର ବାପା ମା କିଏ ?''

ତିନୋଟି ଯାକ ପିଲା ହାତଠାରି ଯଯାତି ଓ ମାତା ଶର୍ମିଷ୍ଠାଙ୍କୁ ଦେଖାଇ ଦେଲେ । ହସହସ ମୁହଁରେ ଚାହିଁ ରହିଲେ ଉଭୟଙ୍କ ଆଡ଼କୁ ।

ଦେବଯାନୀ ଉଦ୍‌ଫଣ ସର୍ପିଣୀ ପରି ଗର୍ଜନ କରି ଉଠିଲେ ।

''ରାକ୍ଷସୀ ପାପିନୀ ଶର୍ମିଷ୍ଠା ! ବିଶ୍ୱାସଘାତକତା କରି ତୁ ମୋ ଉପରେ ପ୍ରତିଶୋଧ ନେଇଛୁ । ମୁଁ ଏ ପର୍ଯ୍ୟନ୍ତ ଜାଣିଥିଲି ଯେ ଗୋଟାଏ ବିଷଧର ସର୍ପକୁ ମୁଁ କ୍ଷୀର ଖୁଆଇ ଉଆସ ଭିତରେ ସାଇତି ରଖିଛି ।'' ଶର୍ମିଷ୍ଠା ନମ୍ର କଣ୍ଠରେ କହିଲେ,''ସେପରି ଭାବନ୍ତୁ ନାହିଁ ରାଜମହିଷୀ! ଶର୍ମିଷ୍ଠା ଆପଣଙ୍କର ସଖୀ,

କାୟା ଆଉ ଛାୟାର ସମ୍ପର୍କ । ଆପଣ ଯେତେବେଳେ ସମ୍ରାଟଙ୍କୁ ନିଜର ପତିରୂପେ ବରଣ କରିଥିଲେ, ସଖୀ ଭାବରେ ମୋତେ ମଧ ଅର୍ପଣ କରିଥିଲେ ତାଙ୍କର ପାଦପଦ୍ମରେ । ମୁଁ ମନେମନେ ମହାଆନନ୍ଦରେ ଗ୍ରହଣ କରିଥଲି । ଏ ହେଉଛି ସେଇ ସମର୍ପଣର ପୁଣ୍ୟମୟୀ ଫଳ । ସେମାନେ ମଧ ଆପଣଙ୍କର ସନ୍ତାନ କୋଳକୁ ନିଅନ୍ତୁ ।

ଦେବଯାନୀ ଝଡ଼ ବେଗରେ ବାହାରି ଗଲେ ଅଶୋକବନରୁ । ଯଯାତି ଭୟାର୍ତ୍ତ ନୟନରେ ଚାହିଁ ରହିଲେ ଗତିପଥକୁ । ଆଖି ଆଗରେ ନାଚିଉଠିଲା, ମହର୍ଷି ଶୁକ୍ରାଚାର୍ଯ୍ୟଙ୍କର ମୁଖମଣ୍ଡଳ । କାନେ କାନେ ପ୍ରତିଧ୍ୱନିତ ହେଲା ତାଙ୍କର ସେଇ କଠୋର ବାରଣ, ''ଶର୍ମିଷ୍ଠାଙ୍କୁ ଶ୍ରଦ୍ଧା ଦେବେ କିନ୍ତୁ ଶଯ୍ୟାକୁ ନିମନ୍ତ୍ରଣ କରିବେ ନାହିଁ ।''

ସମୟକ୍ରମେ ଦେବଯାନୀ ଶୁକ୍ରାଚାର୍ଯ୍ୟଙ୍କୁ ସମସ୍ତ ଘଟଣା ଯାଇ କହିଲେ । କନ୍ୟାର ଆତ୍ମଯନ୍ତ୍ରଣାରେ ଅତିଷ୍ଠ ହୋଇ ଅଭିଶାପ ଦେଲେ ମହର୍ଷି । ''ହେ ରାଜନ ! ତୁମେ ମୋର ବାରଣ ମାନିନାହିଁ । କାମାକୁଳିତ ହୋଇ ନୀତି ଗର୍ହିତ କାମ କରିଛ । ଆଜିଠାରୁ ତୁମକୁ ଅକାଳ ଜରା ଗ୍ରାସ କରିବ ।

ଚାହିଁ ଚାହୁଁ ଯଯାତିଙ୍କର ରୂପଯୌବନ ମଉଳିଗଲା । ସେ ଦିଶିଲେ ଜରାଜୀର୍ଣ୍ଣ ରକ୍ତହୀନ ପାଣ୍ଡୁର, ଶ୍ଳଥଚର୍ମ କୋଟରଗତ ଚକ୍ଷୁ ।

ରାଜର୍ଷି ଯଯାତି, ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ପାଦତଳେ ପଡ଼ି କରୁଣକଣ୍ଠରେ କହିଲେ, ''ପ୍ରଭୋ ! ମୋତେ କ୍ଷମା କରନ୍ତୁ । କାମାକୁଳିତ ହୋଇ ଏ ଭୁଲ କରିନାହିଁ, ବରଂ ଆଦର୍ଶ ରକ୍ଷାର କଠୋର ମନୋଭାବ ନେଇ ଏପରି କରିଛି । ଜୀବନରେ କାହାରି ସମର୍ପଣ ଭାବକୁ ମୁଁ ଅସମ୍ମାନିତ କରିନାହିଁ । ସମର୍ପିତାକୁ ସମ୍ମାନ ଦେଇ କର୍ତ୍ତବ୍ୟ ପାଳିଛି । ଶାନ୍ତ ହୁଅନ୍ତୁ, ମହର୍ଷି ! ମୋତେ ଶାପମୁକ୍ତ କରନ୍ତୁ ।'' ''ହେ ରାଜନ୍ ! ମୋର ବାକ୍ୟ ଅନ୍ୟଥା ହେବନାହିଁ, ତେବେ ତୁମର ବାର୍ଦ୍ଧକ୍ୟ ଯଦି ଅନ୍ୟ କେହି ଗ୍ରହଣ କରିପାରେ, ତେବେ ତୁମେ ତୁମର ପୂର୍ଣ୍ଣ ଯୌବନ ଫେରିପାଇବ ।'' ଏଥି ଭିତରେ ଅନେକ ଦିନ ବିତି ଯାଇଛି । ଜରାକ୍ଲିଷ୍ଟ ଯଯାତି ନିଜର ପୁଅମାନଙ୍କୁ ଯୌବନ ମଣ୍ଡିତ ହୋଇଥିବାର ଦେଖିଛନ୍ତି । ମନରେ ଆଶା ନୈରାଶ୍ୟର ଲୁଚକାଳି ।

ଯଯାତି ପ୍ରଥମେ ଯାଇ ନିଜର ଜ୍ୟେଷ୍ଠପୁତ୍ର ଯଦୁଙ୍କୁ ଅନୁରୋଧ କଲେ ବାର୍ଦ୍ଧକ୍ୟ ବଦଳରେ ଯୌବନ ଦାନ ପାଇଁ । ସେ ଅସ୍ୱୀକାର କଲେ । କହିଲେ, ''ଜୀବନଠାରୁ ବଳି ପ୍ରିୟ ଯୌବନକୁ ମୁଁ ଆପଣଙ୍କୁ ଦେଇପାରିବି ନାହିଁ । ତୁର୍ବସୁଙ୍କର ମଧ ସେଇ ଗୋଟିଏ କଥା । ଜୀବନରେ ସବୁ କିଛି ଦିଆଯାଇପାରେ, କିନ୍ତୁ ଯୌବନ କାହାକୁ ଦିଆଯାଇ ପାରେନା । କାହିଁକି ବା ଜଣେ ଯୌବନଦୀପ୍ତ ଯୁବକ, ଜରାକ୍ଲିଷ୍ଟ ବ୍ୟକ୍ତିର ଦୁର୍ଦ୍ଦଶା ବରିନେଇ, ତାର ମହାଧନ ଅର୍ପଣ କରିବ ।''

ଯାଚନାର ଭିକ୍ଷାଥାଳ ନେଇ ଯଯାତି ପହଞ୍ଚିଲେ ଅନ୍ୟ ତିନିପୁତ୍ରଙ୍କ ପାଖରେ । ଦ୍ରୁହ୍ୟୁ ଓ ଅନୁ ନିଜର ଅକ୍ଷମତା ପ୍ରକାଶ କଲେ । 'ପୁରୁ' ଥିଲେ ସେମାନଙ୍କ ମଧରେ ଏକମାତ୍ର ବ୍ୟତିକ୍ରମ । ପିତାଙ୍କର କାତର ନିବେଦନକୁ ସମ୍ମାନର ସହିତ ଗ୍ରହଣ କରି, ଅକୁଣ୍ଠ ଚିତ୍ତରେ ନିଜର ଯୌବନ ଦାନକଲେ ।

ଆଖିପିଛୁଳାକେ ଯଯାତି ଅପହୃତ ଯୌବନ ଫେରି ପାଇଲେ । ସୌମ୍ୟ, ଶାନ୍ତ ସ୍ନିଗ୍ଧ, ଯୌବନଭରା ଯଯାତି । ବାର୍ଦ୍ଧକ୍ୟ ବିଗଳିତ ହେଲେ ବପୁଷ୍ମାନ୍ ପୁରୁ, ପିତାଙ୍କର ତୁଷ୍ଟି ସାଧନ ପାଇଁ ପୁତ୍ରର ସଶ୍ରଦ୍ଧ ସମର୍ପଣ ।

ଯଯାତି ଦୀର୍ଘ ଏକଶହବର୍ଷ ନିଜର ଉଦ୍ଦାମ ଯୌବନ ଉପଭୋଗ କଲେ । ତଥାପି ତାହା ଚରିତାର୍ଥ ହେଲାନାହିଁ । ଉପଭୋଗ ଉତ୍କଣ୍ଠା ବଢିଲାପଛକେ କମିଲା ନାହିଁ । ସେ ଅନୁଭବ କଲେ, ଜୀବନ ସରିଯିବ କିନ୍ତୁ ବାସନାର ଦୀପ ଲିଭିବ ନାହିଁ । ସେ ଜୀବନରେ ମହାସତ୍ୟକୁ ଉପଲବ୍ଧି କଲେ । ଦିନେ ପୁରୁଙ୍କୁ ଡାକି କହିଲେ, ''ବତ୍ସ! ତୁମର ତ୍ୟାଗହିଁ ମୋତେ ଦିବ୍ୟଜ୍ଞାନର ସନ୍ଧାନ ଦେଇଛି । ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରୀତ । ତୁମେ ତୁମର ଯୌବନ ଫେରାଇନିଅ । ମହାନ୍ ଦାନର ପ୍ରତିଦାନ ସ୍ୱରୂପ, ତୁମ ହାତରେ ମୁଁ ମୋର ରାଜସିଂହାସନ ଅର୍ପଣ କରୁଛି । ମୋର ଶୁଭ ଆଶୀର୍ବାଦ ନେଇ ଶାନ୍ତିରେ ପ୍ରଜାପାଳନ କର ।''

ପରିପୂର୍ଣ୍ଣ ଯୌବନର ଅଧିକାରୀ ହେଲେ ପୁରୁ ଯଯାତି ନିଜର ଅଭିଶପ୍ତ ଜରାଜୀର୍ଣ୍ଣ ବିଗ୍ରହ ନେଇ ତପସ୍ୟା ପାଇଁ ହିମାଳୟକୁ ଚାଲିଗଲେ ।

ମହର୍ଷି ଶୁକ୍ରାଚାର୍ଯ୍ୟଙ୍କର ବରଦାନ ଥିଲା, ''ଯେଉଁ ପୁତ୍ର ପିତାର ଅନୁବର୍ତ୍ତୀ ହେବ ସେ ରାଜ ସିଂହାସନ ଲାଭ କରିବ ।'' କନିଷ୍ଠ ହୋଇ ମଧ ପୁରୁ ରାଜ୍ୟ ଲାଭ କଲେ । ପୁରୁଙ୍କ ଠାରୁ ଆରମ୍ଭ ହେଲା ପୌରବ ବଂଶ । ଯଦୁଙ୍କ ଠାରୁ ଯଦୁ ବଂଶ ଆରମ୍ଭ ହେଲା ।

## ।। ଦୁଷ୍ମନ୍ତ ଓ ଶକୁନ୍ତଳା ।।

''ମୋତେ କ୍ଷମାଦିଅନ୍ତୁ ଦେବରାଜ, ମୋତେ କ୍ଷମା ଦିଅନ୍ତୁ । ଆପଣଙ୍କ ନିର୍ଦ୍ଦେଶରେ ମୁଁ ଅଗଣିତ ମୁନିଋଷିଙ୍କର ଧ୍ୟାନ ଭଙ୍ଗ କରିଛି । କଠୋର ତପସ୍ୟାରେ ମଗ୍ନ ତପସ୍ୱୀମାନଙ୍କର ତପଶ୍ଚର୍ଯ୍ୟା ବିଫଳ କରିଛି । ଆଜି କିନ୍ତୁ ମୁଁ ମୋର ସେଇ ପ୍ରଜ୍ଜ୍ୱଳିତ ଯୌବନକୁ ନେଇ ମଧ, ନିଜକୁ ଅସମର୍ଥ ମନେକରୁଛି । ପାରିବିନି... ମୋତେ ଭୟଲାଗୁଛି ।''

''ଭୟ !! କାହାକୁଭୟ? କାହିଁକି ଭୟ? ସ୍ୱର୍ଗ ସୁନ୍ଦରୀ ଲାବଣ୍ୟମୟୀ ମେନକାଙ୍କର ପୁଣିଭୟ!''

''ମୋର ଭୟ ସେଇ ମହାତପା, ମହାକ୍ରୋଧୀ ବିଶ୍ୱାମିତ୍ରଙ୍କୁ । ବ୍ରହ୍ମର୍ଷି ବଶିଷ୍ଠଙ୍କ ଶତପୁତ୍ରଙ୍କୁ ଯେ ସଂହାର କରିଛନ୍ତି । ଜଳାଭିଷେକ ପାଇଁ କୌଶିକ ନଦୀକୁ ଯିଏ ତପ ପ୍ରଭାବରେ ନିଜ ଆଶ୍ରମ ନିକଟକୁ ଟାଣିନେଇ ଆସିଛନ୍ତି । ତାଙ୍କ କୋପାନଳରେ ମୁଁ ଯେ ଭସ୍ମ ନ ହେବି କିଏ କହିବ ।''

''ମହିୟସୀ ମେନକାଙ୍କ ଆଶଙ୍କା ଅମୂଳକ । ତୁମକୁ ସାହାଯ୍ୟ କରିବା ପାଇଁ ମୁଁ ମରୁତଙ୍କୁ ଅନୁରୋଧ କରୁଛି । ସେ ବିଶ୍ୱାମିତ୍ରଙ୍କ କୋପାନଳ ନିର୍ବାପନ କରିବେ । ଯାଅ.. ଆନନ୍ଦରେ ଯାଅ । ତାଙ୍କ ତପସ୍ୟାରେ ମୋ ଆସନ ଟଳମଳ ହେବାକୁ ବସିଲାଣି । ମୋର ଇନ୍ଦ୍ରପଦ ରକ୍ଷା ଦିଗରେ ସାହାଯ୍ୟ କର ମେନକା ।''

ମେନକା ବିଦାୟ ନେଲେ । ଆସି ପହଞ୍ଚିଲେ ବିଶ୍ୱାମିତ୍ରଙ୍କ ଆଶ୍ରମରେ । ତପୋନିଷ୍ଠ ମହର୍ଷି ବିଶ୍ୱାମିତ୍ରଙ୍କୁ ସେ ପ୍ରଣାମ କଲେ । ସଙ୍ଗୀତର ତାଳେ ତାଳେ ନୃତ୍ୟର ରୁମ୍ ଝୁମ୍ ଝଙ୍କାର । ନିନାଦିତ ହୋଇଉଠିଲା ମଧୁର ନୂପୁର ନିକ୍ୱଣ । ତା' ସହିତ ମିଶିଲା ବନବିହଙ୍ଗୀର କାନ୍ତ କୂଜନ । ଚହଲି ଉଠିଲା ଶାନ୍ତ ସମୀର । ବକ୍ଷ ଉତ୍ତରୀ ଉତାଳ ହୋଇଉଠିଲା, କୁଞ୍ଚୁକବନ୍ଧନ ମାନିଲା ନାହିଁ । ପୀନ ପୟୋଧର ଛନ୍ଦାୟିତ ହେଲା । ମତୁଆଲା ପବନରେ ଅନ୍ମୋଚିତ ହେଲା କଟିବସ୍ତ୍ର । ଋଷିଙ୍କର ଧ୍ୟାନଭଙ୍ଗ ହେଲା ।

ନୟନ ଅୟନରେ ସ୍ୱପ୍ନର ଆବେଶ । ଗମ୍ଭୀର ମୁଖମଣ୍ଡଳରେ ମୋହଗ୍ରସ୍ତ ମୃଦୁ ମୃଦୁହସର ହିଲ୍ଲୋଳ । ମେନକାଙ୍କ ଉଦ୍‌ଘାଟିତ ଯୌବନ, ମହର୍ଷିଙ୍କୁ ଉନ୍ମାଦିତ କଲା । ନୟନ ଇଙ୍ଗିତରେ ଆକର୍ଷଣ କଲେ ମଧୁମୟୀ ମେନକାଙ୍କୁ । ନିର୍ଜନବନର ପୁଷ୍ପ ବେଦିରେ, ଲତାପତ୍ରର ଶ୍ୟାମଶେଯରେ ଦୁହେଁ ମିଶିଗଲେ ।

ଯୌବନର ସର୍ବିତ ବିଜୟ, ଲାଳସାର ଲୋହିତ ରୂପଶ୍ରୀ, କାହାକୁ ଅନ୍ଧ ନକରିଛି! କିଏ ବା ରକ୍ଷାପାଇଛି । ମହର୍ଷି ବିଶ୍ୱାମିତ୍ରଙ୍କର କଠୋର ତପସ୍ୟା ଭଙ୍ଗହେଲା, ଦେବରାଜ, ଇନ୍ଦ୍ର,ନିଜରପଦଲାଳସା ଚରିତାର୍ଥ କଲେ । କେବଳ ପୂର୍ଣ୍ଣ ହେଲା ଲାଳସା, ଜଣକର ପ୍ରୀତି ଲାଳସା.. ଆଉ ଜଣକର ପଦଲାଳସା ।

ମେନକାଙ୍କର ଲକ୍ଷ୍ୟ ପୂରଣ ହୋଇଛି । ସେ ମୁନିଙ୍କଠାରୁ ବିଦାୟ ନେଇ ମାଳିନୀ ନଦୀ ତଟରେ ଜନ୍ମ ଦେଲେ, ଶିଶୁ ମେନକାଟିଏ । ନବଜାତ ଶିଶୁକୁ ବନଦେବୀଙ୍କୁ ସମର୍ପଣ କରି ସେ ଇନ୍ଦ୍ରପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । କୋମଳ ପଲ୍ଲବ ଶଯ୍ୟାରେ ଶୋଇଥିବା ଶିଶୁଟିକୁ ଡେଣା ମେଲାଇ ସୁରକ୍ଷା ଦେଲେ ଶକୁନ୍ତ ବା ପକ୍ଷୀଗଣ ।

ମହର୍ଷି କଣ୍ୱ ମାଳିନୀ ନଦୀରେ ସ୍ନାନ ତର୍ପଣ ସାରି ନିଜ ଆଶ୍ରମକୁ ଫେରିଥାନ୍ତି । ହଠାତ୍ ଶୁଣିଲେ ନବଜାତ ଶିଶୁର କ୍ରନ୍ଦନ... କୁଆଁ... କୁଆଁ... କୁଆଁ । ସେ ପାଖକୁ ଗଲେ । ଆଡ଼େଇ ହୋଇଗଲେ ପକ୍ଷୀମାନେ । ଶିଶୁଟି ଦିଶୁଛି ନନ୍ଦନବନର ନବ ମୁକୁଳିତ ପାରିଜାତ ପରି । ଅସହାୟା ଶିଶୁକନ୍ୟାଟିକୁ ସେ କୋଳକୁ ଉଠାଇ ନେଇ ଆଶ୍ରମକୁ ଫେରି ଆସିଲେ । ଶକୁନ୍ତ ପାଳିତା କନ୍ୟାଟିର ନାମ ଦେଲେ ଶକୁନ୍ତଳା ।

ଆଶ୍ରମର ଧାତ୍ରୀ ଶିଶୁକନ୍ୟାଟିର ଲାଳନ ପାଳନ କଲେ । ଶୁକ୍ଳପକ୍ଷର ଚନ୍ଦ୍ରମା ପରି ତାର ରୂପଗୁଣ ବିକଶିତ ହେଲା । କଣ୍ୱମୁନି ପିତାପରି ତାକୁ ପିତୃତ୍ୱ ଦାନ କଲେ । ମୁନିକନ୍ୟା, ଶକୁନ୍ତଳାଙ୍କ ସୌରଭରେ ଆମୋଦିତ ହେଲା ଆଶ୍ରମବନ।ଆଶ୍ରମର ଆଦରିଣୀ ଲତିକା ଶକୁନ୍ତଳା, ପ୍ରୀତି ପଲ୍ଲବରେ ଲତାୟିତହେଲା ।

ରାଜା ଦୁଷ୍ମନ୍ତ ସେ ଦିନ ଆସିଥାନ୍ତି ମୃଗୟା ପାଇଁ । ବନ ଭୂମିରେ ମୃଗୟାର କୋଳାହଳ । ଏକ ପଳାତକ ମୃଗର ପଛେ ପଛେ ଅଶ୍ୱଚାଳନା କରୁଥାନ୍ତି ତାକୁ ଶରବିଦ୍ଧ କରିବା ପାଇଁ । ମୃଗ, ପ୍ରାଣ ବିକଳରେ ବିଦ୍ୟୁତ ବେଗରେ ଘଞ୍ଚ ଅରଣ୍ୟ ଭିତରେ କେଉଁଠାରେ ଲୁଚିଗଲା । ଦୁଷ୍ମନ୍ତ ତାକୁ ଖୋଜୁ ଖୋଜୁ ଦେଖିଲେ ଏକ ମୁନି ଆଶ୍ରମ । ଆଶ୍ରମ ଉପବନରେ ସଖୀ ଗହଣରେ ବସିଛି ଏକ ଅପରୂପ ରୂପସୀ । ତା କୋଳରେ ଏକ ହରିଣ ଶାବକ, ସତେ ଅବା, ତା'ର ଖେଳ କଣ୍ଢେଇ ।

ରାଜାଦୁଷ୍ମନ୍ତ ଆଶ୍ରମ ମଧ୍ୟରେ ପ୍ରବେଶକଲେ । ସଖୀମାନେ ଦୂରେଇଗଲେ । ମୁନିକନ୍ୟା ରାଜାଙ୍କୁ ପ୍ରଣାମ କରି ତାଙ୍କର ଆତିଥ୍ୟସ୍ୱୀକାର କଲେ । ରାଜା ନିଜର ପରିଚୟଦେବାକୁ ଯାଇ କହିଲେ,

''ମୁଁ ହେଉଛି ରାଜା ଦୁଷ୍ମନ୍ତ । ମୃଗୟା ପାଇଁ ବନ ମଧ୍ୟରେ ବିଚରଣ କରୁଥିଲି । ଆଶ୍ରମର ପବିତ୍ର ବାତାବରଣ ମୋତେ ଆକୃଷ୍ଟକଲା । ମୁଁ ମୁନିଙ୍କୁ ଦର୍ଶନ କରିବାକୁ ଚାଲି ଆସିଲି । ପରିଚୟ ଦେଲେ ଆନନ୍ଦିତ ହେବି ।

''ହେ ରାଜନ୍ ! ମୁଁ ହେଉଛି କଣ୍ୱ ମୁନିଙ୍କକନ୍ୟା ଶକୁନ୍ତଳା । ମୁଁ ତାଙ୍କର ପାଳିତା କନ୍ୟା । ମୋର ପ୍ରକୃତ ପିତା ହେଉଛନ୍ତି ମହର୍ଷି ବିଶ୍ୱାମିତ୍ର ଓ ମାତା ହେଉଛନ୍ତି ମହିୟସୀ ମେନକା । ସେ ମୋତେ ଜନ୍ମ ଦେବା ପରେ ଇନ୍ଦ୍ରଙ୍କ ସଭାକୁ ଚାଲିଗଲେ । ମହର୍ଷି କଣ୍ୱ ପିତୃତ୍ୱ ଦାନ କରି ମୋତେ ପାଳନ କରୁଛନ୍ତି । ମୁଁ ନିୟମତଃ ତାଙ୍କର କନ୍ୟା । ସେ ବର୍ତ୍ତମାନ ଆଶ୍ରମରେ ନାହାନ୍ତି । ସମିଧ ସଂଗ୍ରହ ପାଇଁ ବନକୁ ଯାଇଛନ୍ତି ।''

''ମୁନିକନ୍ୟା ଶକୁନ୍ତଳା ! ତୁମେ ମଧ ରାଜକନ୍ୟା । ମହର୍ଷି ବିଶ୍ୱାମିତ୍ର ମଧ ରାଜର୍ଷି, ମୁଁ ତୁମକୁ ମୋର ରାଜ ମହିଷୀ ରୂପେ ବରଣ କରୁଛି । ମୋର ଅନୁରୋଧ, ତୁମେ ମୋତେ ଗନ୍ଧର୍ବ ରୀତିରେ ପତିରୂପେ ଗ୍ରହଣ କର ।''

ମୁଖନତ କଲେ ଶକୁନ୍ତଳା । ମୁଖମଣ୍ଡଳରେ ଲଜ୍ଜାର ଲାଲିମା ଖେଳିଗଲା । ନୟନ ପତା ସଙ୍କୁଚିତ ହୋଇଆସିଲା । ଅଧର ଥରି ଉଠିଲା । ତଥାପି ସେ କିଛି କରିପାରିଲେ ନାହିଁ । କୁଣ୍ଠିତ କଣ୍ଠର କଂପନ ଅଧର ଉପକଣ୍ଠରେ ଅଟକି ଗଲା ।

''ମୁଁ ତୁମ ମନର ଆବେଗ ବୁଝୁଛି ଶ୍ରେୟସୀ । ରାଜକନ୍ୟା ରାଜାଙ୍କୁ ବରଣ କରିବ, ଏଥିରେ ପିତାଙ୍କର ଅସମ୍ମତି ଆଶଙ୍କା କରୁଛନ୍ତି କାହିଁକି?'' ଠିକ୍ ଏତିକିବେଳେ ଏକସଖୀ, ଲତା ଅନ୍ତରାଳରୁ ବାହାରିଆସି, ହାତରେ ଧରାଇ ଦେଲା ଏକ ମଲ୍ଲୀମାଳା । ତା'ପରେ ସେ ଚାଲିଗଲା । ଶକୁନ୍ତଳା ଏଥର ଆନତ ଆନନକୁ ଉପରକୁ ଟେକି, ପ୍ରୀତି ପୁଲକିତ ନୟନରେ ଚାହିଁଲେ ରାଜା ଦୁଷ୍ମନ୍ତଙ୍କୁ । ଆଖିରେ ଆଖି ମିଶିଗଲା । ହୃଦୟ ସହିତ ହେଲା ହୃଦୟର ମିଳନ । ଶକୁନ୍ତଳା ବରଣମାଳା ଲମ୍ବାଇ ଦେଲେ ।

ଦୁଷ୍ମନ୍ତ ପ୍ରୀତି ପୁଷ୍ପକୁ ଗଳା ଭରଣ କରି କହିଲେ, '' ପ୍ରିୟତମା ! ମୁଁ ତୁମ ଚରଣରେ ମୋ ରାଜ୍ୟକୁ ସମର୍ପଣ କରୁଛି । ତୁମେ ଆଉ କଣ ଚାହଁ?''

''ମୁଁ ଚାହେଁ ମୋର ସନ୍ତାନ ଯୁବରାଜ ପଦରେ ଅଭିଷିକ୍ତ ହେବ ।''

''ପ୍ରତିଜ୍ଞା କରୁଛି, ତୁମ ଇଚ୍ଛା ପୂରଣ ହେବ । ମୁଁ ନିକଟରେ ତୁମକୁ ରାଜପୁରୀକୁ ନେଇଯିବି ।''

ଉଭୟେ କୁଞ୍ଜ ନିକୁଞ୍ଜ ଭିତରେ ସ୍ନେହସିକ୍ତ ଜୀବନକୁ ଉପଭୋଗ କଲେ । ବନ ମଣ୍ଡପରେ ପ୍ରୀତି ଚନ୍ଦନର ଚର୍ଚ୍ଚା । ଉଭୟେ ମାଦକ ମୋହିତ । କିଛି ସମୟ ପରେ ରାଜା ଦୁଷ୍ମନ୍ତ ବିଦାୟ ନେଲେ । ଶକୁନ୍ତଳାଙ୍କ ନୟନରେ ଉଦ୍‌ଗତ ଅଶ୍ରୁର ଆଲେଖ୍ୟ । ଦୁଷ୍ମନ୍ତ ନିଜ ହାତରେ ପୋଛି ଦେଇ ବାଷ୍ପଭିଜା କଣ୍ଠରେ କହିଲେ, ''ଖୁବ୍ ଶୀଘ୍ର ଆଶ୍ରମ ପୁରୀରୁ ତୁମେ ରାଜପୁରୀକୁ ଚାଲିଯିବ । ଲକ୍ଷ୍ମୀକୁ ପାଇ ମୋର ରାଜପୁରୀ ହେବ ଲକ୍ଷ୍ମୀପୁର, ଆସୁଛି ।''

କିଛି ସମୟ ପରେ ମହର୍ଷି କଣ୍ୱ ଆସି ପହଞ୍ଚିଲେ ଆଶ୍ରମରେ । ଆଶ୍ରମର ଗହଳଚହଳ ଏକ ଅସ୍ୱାଭାବିକ ନୀରବତା ମଧରେ ନୀରବି ଯାଇଛି । ସତେଯେପରି କିଛି ଗୋଟାଏ ଗର୍ହିତ ଘଟଣା ଘଟିଛି ।

''ମା ଶକୁନ୍ତଳା ! ତୋ ପାଟି କାହିଁକି ଶୁଣାଯାଉନି । ଦେହ କ'ଣ ଭଲ ନାହିଁକି ମା ?''

ଶକୁନ୍ତଳା ଲଜ୍ଜା ମଥିତା । ଆସି ମୁହଁ ପୋତି ଛିଡ଼ା ହେଲେ ମୁନିଙ୍କ ସମ୍ମୁଖରେ । ପିତାଙ୍କୁ ଚାହିଁପାରିଲେନି । କଣ୍ୱ ମୁନି କନ୍ୟାର ମାନସିକ ଅବସ୍ଥା ଅନୁଧ୍ୟାନ କରି, କିଛି ସମୟ ପାଇଁ ଧ୍ୟାନମଗ୍ନ ହେଲେ । ସେତେବେଳକୁ ଶକୁନ୍ତଳାଙ୍କ ସାରା ଶରୀର ସ୍ୱେଦ ସିକ୍ତ । ତଥାପି ସେ ପିତାଙ୍କ ମୁଖ ମଣ୍ଡଳର ଆଭାକୁ ଲକ୍ଷ୍ୟ କରି ନିଜ ଭାଗ୍ୟ ଲେଖା ପଢୁଥାନ୍ତି । ଏଇତ, ମୁଖମଣ୍ଡଳ ଉଜ୍ଜ୍ୱଳ ଦେଖାଯାଉଛି । ଶକୁନ୍ତଳାଙ୍କ ଅଧରଧାର ଆଲୋକିତ ହୋଇଉଠିଲା ।

''ମା... ମୁଁ ଧ୍ୟାନବଳରେ ସବୁ ଜାଣି ପାରିଲିଣି । ତୁ ନୀତି ବିରୁଦ୍ଧ କାର୍ଯ୍ୟ କରିନାହୁଁ । ଲକ୍ଷ୍ମୀଶୀଳା ମା' ଦୁଷ୍ମନ୍ତଙ୍କ ପରି ଜଣେ ଧର୍ମାତ୍ମା, ମହାନ୍ ରାଜାଙ୍କୁ ବରଣ କରିଛି । ତାହାହିଁ ଆନନ୍ଦର କଥା । ଏହା ପଛରେ ଅଛି ମୋର ନୈତିକ ସମର୍ଥନ ଓ ଆନ୍ତରିକ ସଦିଚ୍ଛା । ମୋର ପରମ କର୍ତ୍ତବ୍ୟ ଓ ଦାୟିତ୍ୱ, ଏପରି ଏକ ମଙ୍ଗଳ ରୂପ ନେବ ବୋଲି ମୁଁ ପୂର୍ବରୁ ସୂଚନା ପାଇଥିଲି । ଆଜି ତାର ପରିପୂର୍ତ୍ତି ମୋତେ ଶାନ୍ତି ଓ ଆନନ୍ଦ ଦେଇଛି ।''

ଶକୁନ୍ତଳା ପିତାଙ୍କ ଚରଣରେ ପ୍ରଣାମ କଲେ । ଅପରାଧ ବୋଧ ତଥାପି ମଧ ତାଙ୍କୁ ବିଚଳିତ କରୁଥିଲା ।

''ମୁଁ ଜାଣିପାରିଛି ମା ! ତୁ ହେବୁ ରାଜ ଚକ୍ରବର୍ତ୍ତୀ ଜନନୀ । ସେଇ ଭାବୀ ଶିଶୁ ସମ୍ରାଟକୁ ତୁ ତୋ ଜଠରରେ ଧାରଣ କରିଛି । ଯାଠାରୁ ବଳି ଶୁଭସମ୍ବାଦ ମୋ ପାଇଁ ଆଉ କଣ ଅଛି । ମୁଁ ଆଶୀର୍ବାଦ ଦେଉଛି, ତୁମ ଜୀବନ ପୁଷ୍ପିତ ହେଉ ।''

ନିର୍ଦ୍ଦିଷ୍ଟ ସମୟପରେ ଶକୁନ୍ତଳା ସୂର୍ଯ୍ୟ ପ୍ରତିମ ଏକ ଦିବ୍ୟ ସନ୍ତାନ ଲାଭକଲେ । ଆଶ୍ରମରେ ଉଉରଳ ଉଲ୍ଲାସର ଉଲ୍ଲୋଳନ । ଶିଶୁଟି ସକଳ ରାଜଚିହ୍ନ ଧାରଣ କରିଛି, ହସ୍ତ, ପଦ, ନୟନ ଓ କପାଳରେ । କରରେ ଅଙ୍କିତ ହୋଇଛି ରାଜଚକ୍ରବର୍ତ୍ତୀର ଚିହ୍ନ । ପଦରେ ପଦ୍ମକଳି ରେଖା । ଉନ୍ନତ କପାଳରେ ଉଜ୍ଜ୍ୱଳ ଆଭା । ଆୟତ ନୟନରେ ଦୃପ୍ତିର ଗରିମା । ସତେ ଯେପରି 'ଶିଶୁ ଦୁଷ୍ମନ୍ତ'ଟିଏ ।

ବୟସ ବୃଦ୍ଧି ସହିତ ଶିଶୁର ପରାକ୍ରମ ବିକଶିତ ହେଲା । ବଣର ହିଂସ୍ର ଜନ୍ତୁମାନେ ମେଣ୍ଢା ପରି ଭୟାର୍ତ୍ତ ହୋଇଉଠିଲେ । ସେ ସମସ୍ତଙ୍କୁ ଦମନ କରି ପାରିଲେ ବୋଲି ତାଙ୍କର ନାମ ରଖାଗଲା ସର୍ବଦମନ ।

ରାଜା ଦୁଷ୍ମନ୍ତ ଏ ପର୍ଯ୍ୟନ୍ତ ଶକୁନ୍ତଳାଙ୍କୁ ରାଜପୁରୀକୁ ନେଇ ନାହାନ୍ତି । ରାଜପୁରୀର ବିଳାସ ବନ୍ୟା ଭିତରେ ଉବୁଟୁବୁ ଦୁଷ୍ମନ୍ତ । ମୃଗୟା କାଳୀନ ସମ୍ଭୋଗକୁ, ସେ ସୋଡ଼କାଏ ସୁରାପରି ବୋଧହୁଏ ଉପଭୋଗ କରିଛନ୍ତି । କାହିଁକି ବା ସେଇ କ୍ଷଣିକ ଉତ୍ତାପକୁ ଏତେଟା ସମ୍ମାନ ଦେବେ । ଭାବନାର ଅତୁଆ ସୂତାମୁଣ୍ଡା ସେଇପରି ଅତୁଆ ହୋଇ ରହିଯାଇଛି ।

ମଙ୍ଗଳ ମୁହୂର୍ତ୍ତ ସ୍ଥିର କରି ମହର୍ଷି କଣ୍ୱ କନ୍ୟା ଶକୁନ୍ତଳାଙ୍କୁ ପତି ଗୃହକୁ ପଠାଇଦେଲେ । ମଙ୍ଗଳଯାତ୍ରା ଆରମ୍ଭ ହେଲା । ଆଶ୍ରମର ମୁନିମଣ୍ଡଳୀ ଶକୁନ୍ତଳା ଓ ତାଙ୍କ ପୁତ୍ରଙ୍କୁ ନେଇ ବାହାରିଲେ ହସ୍ତିନାପୁରକୁ । ସାଥିରେ ଗଲେ ସଖୀ ଓ ଧାତ୍ରୀଗଣ । ସମସ୍ତେ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଗଲେ ।

କଣ୍ୱ ମୁନିଙ୍କ କନ୍ୟା ରାଜପୁରୀକୁ ଆସିଛନ୍ତି । ରାଜା ଦୁଷ୍ମନ୍ତ ତାଙ୍କର ଆତିଥ୍ୟ ଗ୍ରହଣ କଲେ । ଫେରି ଆସିଲେ ଆଶ୍ରମପୁରୀକୁ ଆଶ୍ରମବାସୀ । ଶକୁନ୍ତଳାଙ୍କୁ ରାଜ ମହିଷୀର ସମ୍ମାନ ମିଳିଲା ନାହିଁ । ଦୁଃଖାବେଗରେ ଅସ୍ଥିର ହୋଇ ଶକୁନ୍ତଳା ଦିନେ ରାଜାଙ୍କୁ କହିଲେ, ''ରାଜନ୍ ! ଆପଣ କ'ଣ ନିଜର ପ୍ରତିଜ୍ଞା ଭୁଲିଗଲେ । ଆପଣଙ୍କର ଏ ଶିଶୁ ସନ୍ତାନକୁ ଏ ପର୍ଯ୍ୟନ୍ତ ଆପଣ ପିତାର ଶ୍ରଦ୍ଧା ଓ ଆଶୀର୍ବାଦ ଦେଇନାହାନ୍ତି । କଣ୍ୱ କନ୍ୟା ଶକୁନ୍ତଳା ଯେ ଆପଣଙ୍କର ପଟ୍ଟମହିଷୀ, ଆପଣ ସେ ସମ୍ମାନ ତାକୁ ଦେଉ ନାହାନ୍ତି କାହିଁକି?''

''ପଟ୍ଟମହିଷୀ ! ମୋର ସନ୍ତାନ !! ଶକୁନ୍ତଳା !!! ପ୍ରତିଜ୍ଞା!!! ଏ ଶବ୍ଦଗୁଡ଼ିକ ସହିତ ମୋର ଆଦୌ ପରିଚିତି ନାହିଁ । ତୁମେ ଏସବୁ କ'ଣ କହୁଛ ମୁନିକନ୍ୟା?''

''ହେ ରାଜନ୍ ! ନାରୀର ସେବା ଓ ପୁରୁଷର ପ୍ରତିଜ୍ଞା ସହିତ ପରିଚୟ ତା'ର ଜନ୍ମ ମୁହୂର୍ତ୍ତରୁ । ଆପଣ ନରଶ୍ରେଷ୍ଠ, ରାଜଶ୍ରେଷ୍ଠ, ପ୍ରତିଜ୍ଞାପୁରୁଷ । ଆପଣ ନିଜର ପ୍ରତିଜ୍ଞା ଭୁଲିଗଲେ କିପରି? ମୋତେ ପଟ୍ଟମହିଷୀ ରୂପେ ଆପଣ ବନାଶ୍ରମରେ ବରଣ କରିଛନ୍ତି । ଆପଣଙ୍କର ଏ ସନ୍ତାନକୁ ଯୁବରାଜ ପଦରେ ଅଭିଷେକ କରିବାକୁ ଆପଣ ମୋ ପାଖରେ ବଚନବଦ୍ଧ । ମୋର ଧାରଣା, ରାଜାଙ୍କ ବଚନ, ବଞ୍ଚନା ନୁହେଁ, ବର୍ଜନୀୟ ନୁହେଁ । ରାଜବଚନ ଓ ରାଜଧର୍ମ ଭିତରେ ମୁଁ କିଛି ପ୍ରଭେଦ ଦେଖି ପାରୁନାହିଁ । ମୁଁ

''ମୁନିକନ୍ୟା ଶକୁନ୍ତଳା ! ତୁମେ ମଧ ରାଜକନ୍ୟା । ମହର୍ଷି ବିଶ୍ୱାମିତ୍ର ମଧ ରାଜର୍ଷି, ମୁଁ ତୁମକୁ ମୋର ରାଜ ମହିଷୀ ରୂପେ ବରଣ କରୁଛି । ମୋର ଅନୁରୋଧ, ତୁମେ ମୋତେ ଗନ୍ଧର୍ବ ରୀତିରେ ପତିରୂପେ ଗ୍ରହଣ କର ।''

ମୁଖନତ କଲେ ଶକୁନ୍ତଳା । ମୁଖମଣ୍ଡଳରେ ଲଜ୍ଜାର ଲାଲିମା ଖେଳିଗଲା । ନୟନ ପତା ସଙ୍କୁଚିତ ହୋଇଆସିଲା । ଅଧର ଥରି ଉଠିଲା । ତଥାପି ସେ କିଛି କରିପାରିଲେ ନାହିଁ । କୁଣ୍ଠିତ କଣ୍ଠର କଂପନ ଅଧର ଉପକଣ୍ଠରେ ଅଟକି ଗଲା ।

''ମୁଁ ତୁମ ମନର ଆବେଗ ବୁଝୁଛି ଶ୍ରେୟସୀ । ରାଜକନ୍ୟା ରାଜାଙ୍କୁ ବରଣ କରିବ, ଏଥିରେ ପିତାଙ୍କର ଅସମ୍ମତି ଆଶଙ୍କା କରୁଛନ୍ତି କାହିଁକି?'' ଠିକ୍ ଏତିକିବେଳେ ଏକସଖୀ, ଲତା ଅନ୍ତରାଳରୁ ବାହାରିଆସି, ହାତରେ ଧରାଇ ଦେଲା ଏକ ମଲ୍ଲୀମାଳା । ତା'ପରେ ସେ ଚାଲିଗଲା । ଶକୁନ୍ତଳା ଏଥର ଆନତ ଆନନକୁ ଉପରକୁ ଟେକି, ପ୍ରୀତି ପୁଲକିତ ନୟନରେ ଚାହିଁଲେ ରାଜା ଦୁଷ୍ମନ୍ତଙ୍କୁ । ଆଖିରେ ଆଖି ମିଶିଗଲା । ହୃଦୟ ସହିତ ହେଲା ହୃଦୟର ମିଳନ । ଶକୁନ୍ତଳା ବରଣମାଳା ଲମ୍ବାଇ ଦେଲେ ।

ଦୁଷ୍ମନ୍ତ ପ୍ରୀତି ପୁଷ୍ପକୁ ଗଳା ଭରଣ କରି କହିଲେ, '' ପ୍ରିୟତମା ! ମୁଁ ତୁମ ଚରଣରେ ମୋ ରାଜ୍ୟକୁ ସମର୍ପଣ କରୁଛି । ତୁମେ ଆଉ କଣ ଚାହଁ?''

''ମୁଁ ଚାହେଁ ମୋର ସନ୍ତାନ ଯୁବରାଜ ପଦରେ ଅଭିଷିକ୍ତ ହେବ ।''

''ପ୍ରତିଜ୍ଞା କରୁଛି, ତୁମ ଇଚ୍ଛା ପୂରଣ ହେବ । ମୁଁ ନିକଟରେ ତୁମକୁ ରାଜପୁରୀକୁ ନେଇଯିବି ।''

ଉଭୟେ କୁଞ୍ଜ ନିକୁଞ୍ଜ ଭିତରେ ସ୍ନେହସିକ୍ତ ଜୀବନକୁ ଉପଭୋଗ କଲେ । ବନ ମଣ୍ଡପରେ ପ୍ରୀତି ଚନ୍ଦନର ଚର୍ଚ୍ଚା । ଉଭୟେ ମାଦକ ମୋହିତ । କିଛି ସମୟ ପରେ ରାଜା ଦୁଷ୍ମନ୍ତ ବିଦାୟ ନେଲେ । ଶକୁନ୍ତଳାଙ୍କ ନୟନରେ ଉଦ୍‌ଗତ ଅଶ୍ରୁର ଆଲେଖ୍ୟ । ଦୁଷ୍ମନ୍ତ ନିଜ ହାତରେ ପୋଛି ଦେଇ ବାଷ୍ପଭିଜା କଣ୍ଠରେ କହିଲେ, ''ଖୁବ୍ ଶୀଘ୍ର ଆଶ୍ରମ ପୁରୀରୁ ତୁମେ ରାଜପୁରୀକୁ ଚାଲିଯିବ । ଲକ୍ଷ୍ମୀକୁ ପାଇ ମୋର ରାଜପୁରୀ ହେବ ଲକ୍ଷ୍ମୀପୁର, ଆସୁଛି ।''

କିଛି ସମୟ ପରେ ମହର୍ଷି କଣ୍ୱ ଆସି ପହଞ୍ଚିଲେ ଆଶ୍ରମରେ । ଆଶ୍ରମର ଗହଳଚହଳ ଏକ ଅସ୍ୱାଭାବିକ ନୀରବତା ମଧ୍ୟରେ ନୀରବି ଯାଇଛି । ସତେଯେପରି କିଛି ଗୋଟାଏ ଗର୍ହିତ ଘଟଣା ଘଟିଛି ।

''ମା ଶକୁନ୍ତଳା ! ତୋ ପାଟି କାହିଁକି ଶୁଣାଯାଉନି । ଦେହ କ'ଣ ଭଲ ନାହିଁକି ମା ?''

ଶକୁନ୍ତଳା ଲଜ୍ଜା ମଥିତା । ଆସି ମୁହଁ ପୋତି ଛିଡ଼ା ହେଲେ ମୁନିଙ୍କ ସମ୍ମୁଖରେ । ପିତାଙ୍କୁ ଚାହିଁପାରିଲେନି । କଣ୍ୱ ମୁନି କନ୍ୟାର ମାନସିକ ଅବସ୍ଥା ଅନୁଧ୍ୟାନ କରି, କିଛି ସମୟ ପାଇଁ ଧ୍ୟାନମଗ୍ନ ହେଲେ । ସେତେବେଳକୁ ଶକୁନ୍ତଳାଙ୍କ ସାରା ଶରୀର ସ୍ୱେଦ ସିକ୍ତ । ତଥାପି ସେ ପିତାଙ୍କ ମୁଖ ମଣ୍ଡଳର ଆଭାକୁ ଲକ୍ଷ୍ୟ କରି ନିଜ ଭାଗ୍ୟ ଲେଖା ପଢୁଥାନ୍ତି । ଏଇତ, ମୁଖମଣ୍ଡଳ ଉଜ୍ଜ୍ୱଳ ଦେଖାଯାଉଛି ! ଶକୁନ୍ତଳାଙ୍କ ଅଧରଧାର ଆଲୋକିତ ହୋଇଉଠିଲା ।

''ମା... ମୁଁ ଧ୍ୟାନବଳରେ ସବୁ ଜାଣି ପାରିଲିଣି । ତୁ ନୀତି ବିରୁଦ୍ଧ କାର୍ଯ୍ୟ କରିନାହୁଁ । ଲକ୍ଷ୍ମୀଶୀଳା ମା' ଦୁଷ୍ମନ୍ତଙ୍କ ପରି ଜଣେ ଧର୍ମାତ୍ମା, ମହାନ୍ ରାଜାଙ୍କୁ ବରଣ କରିଛି । ତାହାହିଁ ଆନନ୍ଦର କଥା । ଏହା ପଛରେ ଅଛି ମୋର ନୈତିକ ସମର୍ଥନ ଓ ଆନ୍ତରିକ ସଦିଚ୍ଛା । ମୋର ପରମ କର୍ତ୍ତବ୍ୟ ଓ ଦାୟିତ୍ୱ, ଏପରି ଏକ ମଙ୍ଗଳ ରୂପ ନେବ ବୋଲି ମୁଁ ପୂର୍ବରୁ ସୂଚନା ପାଇଥିଲି । ଆଜି ତାର ପରିପୂର୍ତ୍ତି ମୋତେ ଶାନ୍ତି ଓ ଆନନ୍ଦ ଦେଇଛି ।''

ଶକୁନ୍ତଳା ପିତାଙ୍କ ଚରଣରେ ପ୍ରଣାମ କଲେ । ଅପରାଧ ବୋଧ ତଥାପି ମଧ ତାଙ୍କୁ ବିଚଳିତ କରୁଥିଲା ।

''ମୁଁ ଜାଣିପାରିଛି ମା ! ତୁ ହେବୁ ରାଜ ଚକ୍ରବର୍ତ୍ତୀ ଜନନୀ । ସେଇ ଭାବୀ ଶିଶୁ ସମ୍ରାଟକୁ ତୁ ତୋ ଜଠରରେ ଧାରଣ କରିଛି । ଯାଠାରୁ ବଳି ଶୁଭସମ୍ବାଦ ମୋ ପାଇଁ ଆଉ କଣ ଅଛି । ମୁଁ ଆଶୀର୍ବାଦ ଦେଉଛି, ତୁମ ଜୀବନ ପୁଷ୍ପିତ ହେଉ ।''

ନିର୍ଦ୍ଦିଷ୍ଟ ସମୟପରେ ଶକୁନ୍ତଳା ସୂର୍ଯ୍ୟ ପ୍ରତିମ ଏକ ଦିବ୍ୟ ସନ୍ତାନ ଲାଭକଲେ । ଆଶ୍ରମରେ ଉତ୍ତରଳ ଉଲ୍ଲାସର ଉଲ୍ଲୋଳନ । ଶିଶୁଟି ସକଳ ରାଜଚିହ୍ନ ଧାରଣ କରିଛି, ହସ୍ତ, ପଦ, ନୟନ ଓ କପାଳରେ । କରରେ ଅଙ୍କିତ ହୋଇଛି ରାଜଚକ୍ରବର୍ତ୍ତୀର ଚିହ୍ନ । ପଦରେ ପଦ୍ମକଳି ରେଖା । ଉନ୍ନତ କପାଳରେ ଉଜ୍ଜ୍ୱଳ ଆଭା । ଆୟତ ନୟନରେ ଦୃପ୍ତିର ଗରିମା । ସତେ ଯେପରି 'ଶିଶୁ ଦୁଷ୍ମନ୍ତ'ଟିଏ ।

ବୟସ ବୃଦ୍ଧି ସହିତ ଶିଶୁର ପରାକ୍ରମ ବିକଶିତ ହେଲା । ବଣର ହିଂସ୍ର ଜନ୍ତୁମାନେ ମେଣ୍ଢା ପରି ଭୟାର୍ତ୍ତ ହୋଇଉଠିଲେ । ସେ ସମସ୍ତଙ୍କୁ ଦମନ କରି ପାରିଲେ ବୋଲି ତାଙ୍କର ନାମ ରଖାଗଲା ସର୍ବଦମନ ।

ରାଜା ଦୁଷ୍ମନ୍ତ ଏ ପର୍ଯ୍ୟନ୍ତ ଶକୁନ୍ତଳାଙ୍କୁ ରାଜପୁରୀକୁ ନେଇ ନାହାନ୍ତି । ରାଜପୁରୀର ବିଳାସ ବନ୍ୟା ଭିତରେ ଉବୁଟୁବୁ ଦୁଷ୍ମନ୍ତ । ମୃଗୟା କାଳୀନ ସମ୍ଭୋଗକୁ, ସେ ସୋଡ଼କାଏ ସୁରାପରି ବୋଧହୁଏ ଉପଭୋଗ କରିଛନ୍ତି । କାହିଁକି ବା ସେଇ କ୍ଷଣିକ ଉତ୍ତାପକୁ ଏତେଟା ସମ୍ମାନ ଦେବେ । ଭାବନାର ଅଦୁଆ ସୂତାମୁଣ୍ଡା ସେଇପରି ଅଦୁଆ ହୋଇ ରହିଯାଇଛି ।

ମଙ୍ଗଳ ମୁହୂର୍ତ୍ତ ସ୍ଥିର କରି ମହର୍ଷି କଣ୍ୱ କନ୍ୟା ଶକୁନ୍ତଳାଙ୍କୁ ପତି ଗୃହକୁ ପଠାଇଦେଲେ । ମଙ୍ଗଳଯାତ୍ରା ଆରମ୍ଭ ହେଲା । ଆଶ୍ରମର ମୁନିମଣ୍ଡଳୀ ଶକୁନ୍ତଳା ଓ ତାଙ୍କ ପୁତ୍ରଙ୍କୁ ନେଇ ବାହାରିଲେ ହସ୍ତିନାପୁରକୁ । ସାଥିରେ ଗଲେ ସଖୀ ଓ ଧାତ୍ରୀଗଣ । ସମସ୍ତେ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଗଲେ ।

କଣ୍ୱ ମୁନିଙ୍କ କନ୍ୟା ରାଜପୁରୀକୁ ଆସିଛନ୍ତି । ରାଜା ଦୁଷ୍ମନ୍ତ ତାଙ୍କର ଆତିଥ୍ୟ ଗ୍ରହଣ କଲେ । ଫେରି ଆସିଲେ ଆଶ୍ରମପୁରୀକୁ ଆଶ୍ରମବାସୀ । ଶକୁନ୍ତଳାଙ୍କୁ ରାଜ ମହିଷୀର ସମ୍ମାନ ମିଳିଲା ନାହିଁ । ଦୁଃଖାବେଗରେ ଅସ୍ଥିର ହୋଇ ଶକୁନ୍ତଳା ଦିନେ ରାଜାଙ୍କୁ କହିଲେ, ''ରାଜନ୍ ! ଆପଣ କ'ଣ ନିଜର ପ୍ରତିଜ୍ଞା ଭୁଲିଗଲେ । ଆପଣଙ୍କର ଏ ଶିଶୁ ସନ୍ତାନକୁ ଏ ପର୍ଯ୍ୟନ୍ତ ଆପଣ ପିତାର ଶ୍ରଦ୍ଧା ଓ ଆଶୀର୍ବାଦ ଦେଇନାହାନ୍ତି । କଣ୍ୱ କନ୍ୟା ଶକୁନ୍ତଳା ଯେ ଆପଣଙ୍କର ପଟ୍ଟମହିଷୀ, ଆପଣ ସେ ସମ୍ମାନ ତାକୁ ଦେଉ ନାହାନ୍ତି କାହିଁକି?''

''ପଟ୍ଟମହିଷୀ ! ମୋର ସନ୍ତାନ !! ଶକୁନ୍ତଳା !!! ପ୍ରତିଜ୍ଞା!!!! ଏ ଶବ୍ଦଗୁଡ଼ିକ ସହିତ ମୋର ଆଦୌ ପରିଚିତି ନାହିଁ । ତୁମେ ଏସବୁ କ'ଣ କହୁଛ ମୁନିକନ୍ୟା?''

''ହେ ରାଜନ୍ ! ନାରୀର ସେବା ଓ ପୁରୁଷର ପ୍ରତିଜ୍ଞା ସହିତ ପରିଚୟ ତା'ର ଜନ୍ମ ମୁହୂର୍ତ୍ତରୁ । ଆପଣ ନରଶ୍ରେଷ୍ଠ, ରାଜଶ୍ରେଷ୍ଠ, ପ୍ରତିଜ୍ଞାପୁରୁଷ । ଆପଣ ନିଜର ପ୍ରତିଜ୍ଞା ଭୁଲିଗଲେ କିପରି? ମୋତେ ପଟ୍ଟମହିଷୀ ରୂପେ ଆପଣ ବନାଶ୍ରମରେ ବରଣ କରିଛନ୍ତି । ଆପଣଙ୍କର ଏ ସନ୍ତାନକୁ ଯୁବରାଜ ପଦରେ ଅଭିଷେକ କରିବାକୁ ଆପଣ ମୋ ପାଖରେ ବଚନବଦ୍ଧ । ମୋର ଧାରଣା, ରାଜାଙ୍କ ବଚନ, ବଞ୍ଚନା ନୁହେଁ, ବର୍ଜନୀୟ ନୁହେଁ । ରାଜବଚନ ଓ ରାଜଧର୍ମ ଭିତରେ ମୁଁ କିଛି ପ୍ରଭେଦ ଦେଖି ପାରୁନାହିଁ । ମୁଁ

ଆପଣଙ୍କର ବିବାହିତା ପତ୍ନୀ । କଣ୍ୱ ମୁନିଙ୍କ ଆଶ୍ରମରେ ନିୟମସିଦ୍ଧ ଗନ୍ଧର୍ବ ରୀତିରେ ଆମର ପରିଣୟ ହୋଇଛି । ଏ ସନ୍ତାନ ଆପଣଙ୍କ ଔରସ ଓ ମୋ ଗର୍ଭଜାତ ସନ୍ତାନ ।''

''ମୁନିକନ୍ୟା ! ତୁମେ କଥନ ପଟୁ । କଥାର କପଟତାରେ ରାଜମନ ବିଭ୍ରାନ୍ତ ହୁଏନାହିଁ । ରାଜସଭା ଧର୍ମସଭା ସହିତ ସମାନ । ସଭାସଦ ଓ ଦେବଦୂତ ଭିତରେ କିଛି ପ୍ରଭେଦ ନାହିଁ । ଧର୍ମତଃ ନ୍ୟାୟତଃ ତୁମ କଥା ତୁମକୁ ପ୍ରମାଣ କରିବାକୁ ହେବ । ଯଦି ତୁମେ ସତ୍ୟ ଓ ଧର୍ମରରେ ଥିବ, ସେଇ ସତ୍ୟ ଓ ଧର୍ମ ତୁମ ଭାଗ୍ୟର ନିଷ୍ପତ୍ତି କରିବ । ପ୍ରମାଣ ଦେଇପାରିବ ?''

''ମୋର ପିତାହିଁ ମୋର ପ୍ରମାଣ । ସେ ଯୋଗସିଦ୍ଧ ପୁରୁଷ । ଯୋଗବଳରେ ଆମ ଦୁହିଁଙ୍କର ପରିଣୟରେ ଅଶୀର୍ବାଦ ଦାନ କରିଛନ୍ତି । ମୁଁ ତାଙ୍କୁ ସ୍ମରଣ କରୁଛି । ସ୍ମରଣ କରୁଛି ପିତା ବ୍ରହ୍ମର୍ଷି ବିଶ୍ୱାମିତ୍ର ଓ ମାତା ମେନକାଙ୍କୁ । ତଥାପି ଆପଣ ସନ୍ତୁଷ୍ଟ ନ ହେଲେ ମୁଁ ମୋ ପିତାଙ୍କଆଶ୍ରମକୁ ଫେରିଯିବି ।''

ଶକୁନ୍ତଳା ଅଶ୍ରୁ ଗଦ୍ ଗଦ୍ ନୟନରେ ଆକାଶମାର୍ଗକୁ ଚାହିଁଲେ । ଆକାଶବାଣୀ ଶୁଣାଗଲା, ରାଜନ୍! ମୁନିକନ୍ୟା ଶକୁନ୍ତଳା ତୁମର ଧର୍ମପତ୍ନୀ, ରାଜମହିଷୀ ଏବଂ ତାଙ୍କର ଏ ସନ୍ତାନ ତୁମର ଔରସ ଜାତ । ରାଜଚକ୍ରବର୍ତ୍ତୀର ଚିହ୍ନରେ ଏହି ମହାନ୍ ଜ୍ୟୋତିର୍ମୟ ଶିଶୁ ଜନ୍ମ ଗ୍ରହଣ କରିଛି । ତା' ନାମ ରଖିବେ ଭରତ ।''

ଦୁଷ୍ମନ୍ତଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇଉଠିଲା । ସେ ଆଚାର୍ଯ୍ୟଙ୍କ ଆଡ଼କୁ ଚାହିଁଲେ । କୁଳଗୁରୁ ମୃଦୁ କଣ୍ଠରେ କହିଲେ, ରାଜନ୍ ! 'ଭର' ଅର୍ଥ, ଚିର ଦୀପ୍ତିର ଉତ୍ସ, 'ରତ' ଅର୍ଥ ନିମଜ୍ଜନ । ରାଜପୁତ୍ର ଜ୍ୟୋତି ବା ଦୀପ୍ତିର ପୂଜକ । ସତ୍ୟର ଜୟ ହୋଇଛି । ଧର୍ମ ପ୍ରତିଷ୍ଠିତ ହୋଇଛି ।''

ଦୁଷ୍ମନ୍ତ ପୁତ୍ରକୁ କୋଳକୁ ନେଇ ଗଭୀର ଆଲିଙ୍ଗନ ଦେଲେ । ଚୁମ୍ବନରେ ତାର ଗଣ୍ଡଦେଶ ପ୍ଲାବିତ ହେଲା । ଶକୁନ୍ତଳାଙ୍କ ନୟନରୁ ବହିଆସିଲା ଦୁଇଟି ଅଶ୍ରୁଧାର । ମୁଖମଣ୍ଡଳ ପ୍ରଶାନ୍ତ, ଗମ୍ଭୀର ଓ ଅଶ୍ରୁବୋଳା ।

ପରବର୍ତ୍ତୀ କାଳରେ ଭରତଙ୍କ ନାମ ଅନୁସାରେ ତାଙ୍କ ରାଜ୍ୟର ନାମ ହେଲା **''ଭାରତବର୍ଷ''** ଯେଉଁ ଦେଶ ଚିରକାଳ ଦୀପ୍ତି ଓ ଦ୍ୟୁତିର ପୂଜା କରୁଛି । ଭରତଙ୍କ ଠାରୁ **ଭରତ ବଂଶ** ଆରମ୍ଭହେଲା ।

# ।। ସୂର୍ଯ୍ୟ ତନୟା ତପତୀ ।।

ବିଶ୍ୱପ୍ରାଣ ତପନଙ୍କର, ବିଶ୍ୱପ୍ରାଣତାର ପ୍ରତିନିଧି କନ୍ୟା, ତପତୀ । ସେ ତେଜୋମୟୀ, ପ୍ରତିଭାମୟୀ, ସେବାମୟୀ, ଆଦର୍ଶମୟୀ । ନୀତି ଆଉ ପ୍ରୀତିର ପୁଣ୍ୟ ପ୍ରଭାରେ ସେ ଦୀପ୍ତିମୟୀ । ତପତୀ ସାବିତ୍ରୀଙ୍କର କନିଷ୍ଠା ଭଉଣୀ । ତପସ୍ୟା ବଳରେ ଅମାପ ଆଧ୍ୟାତ୍ମିକ ଶକ୍ତିର ସେ ଅଧିକାରିଣୀ ଥିଲେ । ତ୍ରିଭୁବନ ସୁନ୍ଦରୀ ତପତୀଙ୍କ ସୌନ୍ଦର୍ଯ୍ୟ ଥିଲା ଅନନ୍ୟ ଓ ଅନୁପମ । ସ୍ୱର୍ଗର ଅପ୍ସରୀମାନେ ତାଙ୍କର ରୂପବିଭା ପାଖରେ ମ୍ଳାନ ଦିଶୁଥିଲେ । ରୂପଗୁଣ ଓ ଆଧ୍ୟାତ୍ମିକ ବିଭବରେ ବିଭାମୟୀ ତପତୀଙ୍କ ପାଇଁ ଏକ ଉପଯୁକ୍ତ ପାତ୍ରର ସଂଧାନରେ ଥିଲେ ସୂର୍ଯ୍ୟଦେବ । ସର୍ବଗୁଣ ସମ୍ପନ୍ନ, କୀର୍ତ୍ତିଶୀଳ ତେଜୋଦୀପ୍ତ ତରୁଣଟିଏ ମିଳିବା କଷ୍ଟକର । ତଥାପି ଏକ ପରମ ଶିଷ୍ୟର ରୂପଶ୍ରୀ ଆଖିଆଗରେ ସର୍ବଦା ଝଲସି ଉଠେ । ସତେ ଯେପରି ତାଙ୍କ କଳ୍ପନା ସହିତ ସେଇ ମାନସ ମୂର୍ତ୍ତିର ସମ୍ବନ୍ଧ ଅତିନିବିଡ଼ । ସେ ଛବି, ମନ ଅଗଣାରୁ ବଚନ ବନକୁ ବାହାରି ଆସେନାହିଁ । ମନକଥା ମନରେ ଥାଏ ।

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ନରପତି ସମ୍ବରଣ ହସ୍ତିନାପୁରୀରୁ ସେଦିନ ତାଙ୍କର ବନଯାତ୍ରା ଆରମ୍ଭ କରିଥିଲେ ମୃଗୟା ପାଇଁ । ଦୃଷ୍ଟିପଥରେ ପଡ଼ିଛି ଏକ ଦୃପ୍ତ ମୃଗରାଜ । କି ଲୋଭନୀୟ ରୂପ, ରାଜକୀୟ ଠାଣି । ମସ୍ତକରେ ରାଜମୁକୁଟ ପରି, ଚିତ୍ର ବହଳ ଲୋଭନୀୟ ଶୃଙ୍ଗ । ପ୍ରଲୁବ୍ଧ ହେଲେ ନରପତି । ହାତ ଉଠିଲାନି ତାକୁ ଶରବିଦ୍ଧ କରିବା ପାଇଁ ସେ ମୃଗରାଜକୁ ବନ୍ଦୀ କରିବେ । ନିଜର ପ୍ରମୋଦ ଉଦ୍ୟାନକୁ ନେଇଯିବେ ବିରହ ବ୍ୟଥିତା ବନ୍ଦିନୀ ହରିଣୀମାନଙ୍କ ପାଇଁ । ତାକୁ ହତ୍ୟା ନ କରି କୌଣସିମତେ ପାଶବଦ୍ଧ କରିବେ ।

ସୈନ୍ୟମାନଙ୍କୁ ସୂଚନା ଦେଲେ ।

ମୃଗରାଜ ବୋଧହୁଏ ସେମାନଙ୍କ ମନର ଗନ୍ଧ ବାରିପାରିଲା । ସେମାନେ ଚତୁର୍ଦ୍ଦିଗରୁ ତା ପାଖକୁ ମାଡ଼ିଆସିବା ପୂର୍ବରୁ, ସେ ବିଜୁଳି ବେଗରେ ଘଞ୍ଚ ବନାନୀ ମଧ୍ୟରେ ନିଜକୁ ହଜାଇ ଦେଲା । ରାଜାସମ୍ବରଣ ସେଇ ଦିଗକୁ ଅଶ୍ୱଚାଳନା କଲେ । ଅଶ୍ୱର ଏତେ ବେଗ ! କ୍ଷୁରା ଭୂମିସ୍ପର୍ଶ କରୁନଥିଲା । ସୈନ୍ୟମାନେ ଗହନ ବନରେ କୁଆଡ଼େ ହଜି ଗଲେଣି । ରାଜାଙ୍କର ଅଶ୍ୱ, ଗୋଟାଏ ଲତାପତ୍ର ଆଚ୍ଛାଦିତ ବିରାଟ ଶିଳାଶଯ୍ୟାରେ ଆଘାତ ପାଇ ମୃତ୍ୟୁବରଣ କଲା । ବିପରୀତ ଦିଗକୁ ଛିଟିକି ପଡ଼ିଲେ ରାଜା ସମ୍ବରଣ । ଘନ ଲତା ପାଶରେ ଅଟକିଗଲେ । ରକ୍ଷା ହୋଇଗଲା, କିଛିକ୍ଷତିହୋଇନି ।

ପାଖରେ କେହି ନାହାନ୍ତି । ଶୋଷରେ ତଣ୍ଟି ଶୁଖିଗଲାଣି । ଭୋକରେ ପେଟ ଜଳୁଛି । ଆଖିରୁ ନିଆଁ ବାହାରି ଆସୁଛି । କଣ କରିବେ କିଛି ଭାବିପାରିଲେ ନାହିଁ । ଚାଲି ଚାଲି ଆଗକୁ ଆଗେଇଲେ । ଜଳ ସଂଧାନରେ ଆଗେଇଥାନ୍ତି । ଓଠ ଶୁଖି ଆସିଲାଣି । ସେ ଜିଭରେ ଓଠ ଚାଟୁଥାନ୍ତି । ସତେକଣ ହସ୍ତିନାର ନୃପତି ଚରମ ଅସହାୟତା ମଧ୍ୟରେ ଭାଗ୍ୟଫଳ ଭୋଗ କରିବେ !! ନିକଟରେ ଏକ ବିରାଟ ଦ୍ରୁମ, ଖୁବ୍ ଝଙ୍କାଳିଆ ।

ସମ୍ବରଣ ତରୁ ଛାୟାରେ ବିଶ୍ରାମ ନେଲେ । ଶୀତଳ ସୁଲୁସୁଲୁ ପବନରେ ଆଖିପତା ବୁଜିହୋଇ ଆସିଲା । ଲତାପତ୍ର ପଲ୍ଲବ ଶଯ୍ୟାରେ ସେ ନିଦ୍ରାଭିଭୂତ । ଠିକ୍ ଏତିକି ବେଳେ ସେଠାରେ ଉଭାହେଲେ ଏକ ତେଜୋମୟୀ ନାରୀ । ମୁଖ ମଣ୍ଡଳରେ ନବ ପ୍ରଭାତର ଅରୁଣିମା । ଆୟତ ନୟନ ଯୁଗଳ ଦିଶୁଛି କନ୍ଦର୍ପ ଶାୟକ ପରି । ସତେଅବା ବସନ୍ତର ବିପୁଳ ବନଶ୍ରୀ ଠୁଳ ହୋଇଛି ସେଇ ବନଲକ୍ଷ୍ମୀଙ୍କ ଭିତରେ । ହାତରେ କମଣ୍ଡଳୁ । ସେ ଧ୍ୟାନ ବଳରେ ନିର୍ଜନ ଅତିଥିଙ୍କର ପରିଚୟ ପାଇଗଲେ । ରାଜା ସମ୍ବରଣ ମୃଗୟା ବିନୋଦରେ ଆସି ଶୋଚନୀୟ ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି । କମଣ୍ଡଳରୁ ପାଣି ଆଣି ରାଜାଙ୍କର ମୁଖମଣ୍ଡଳରେ ସିଞ୍ଚନକଲେ । ପତ୍ରପାତ୍ରରେ ପାଣିନେଇ ଓଠଧାରରେ ଲଗାଇ ଦେଲେ । ଜଳଧାର ମୁଖମଧ୍ୟରେ ପ୍ରବେଶ କଲା । ତୃଷାର୍ତ୍ତ କଣ୍ଠହେଲା ଜଳସିକ୍ତ । ଜୀବନ ସଂଚାର ହେଲା । ସତେ ଯେମିତି ଥମି ଥମି ଆସୁଥିବା ଦୀପଶିଖାଟା ପୁଣି ଦିକ୍ ଦିକ୍ ହୋଇ ଜଳି ଉଠିଲା । ଆଖିଖୋଲିଲେ ନୃପତି ସମ୍ବରଣ । ସେ ବୁଝିପାରୁନାହାନ୍ତି, ବାସ୍ତବତା ଭିତରେ ଅଛନ୍ତି କି ତନ୍ଦ୍ରିଳ ଆବେଶ ମଧ୍ୟରେ ସ୍ୱପ୍ନାଭିଭୂତ । କିଏ ସେହି ନାରୀ, ସ୍ନେହମୟୀ, ପ୍ରାଣମୟୀ, ମମତାମୟୀ ! ଭାବିଲେ, ତାଙ୍କୁ ହାତଟେକି ନମସ୍କାର କରିବେ । ମୁଣ୍ଡପାତି ପ୍ରଣାମକରିବେ । ପଦସ୍ପର୍ଶକରି ଶିରନତ କରିବେ ।

କିନ୍ତୁ କିଛି କରିପାରିଲେନି । ବିହ୍ୱଳଭାବାବେଶ ମଧ୍ୟରେ ଅପଲକ ନୟନରେ ତାଙ୍କୁ ଚାହିଁ ରହିଲେ ।

ବହୁଦିନରୁ ଶୂନ୍ୟ ହୋଇ ପଡ଼ିଥିବା ହୃଦୟ ସିଂହାସନଟା, ଆଖିଜଳରେ ପୋଛିପାଛି ସଫା କରିଦେଲେ । ମନେମନେ ନେଇ ବସାଇଦେଲେ ସେଇ ବନଲକ୍ଷ୍ମୀଙ୍କୁ ।

ଆଦରରେ ? ନୁହେଁ !

ଅନୁରାଗରେ ? ନୁହେଁ !

ପ୍ରେମାନୁରଞ୍ଜନ ଭିତରେ? ନୁହେଁ

କେବଳ ହୃଦୟର ସମର୍ପଣ ଭିତରେ । ତନ୍ମୟ, ତଦ୍‌ଗତ ନୃପତି ସମ୍ବରଣ । କ୍ଷୁଧା ତୃଷା ଦୂରହୋଇଗଲା । ସେ ପରମ ସନ୍ତୋଷଲାଭ କଲେ । କି ତୃପ୍ତି କି ଆନନ୍ଦ । ସେ ପଚାରିଲେ, ''ହେ କଲ୍ୟାଣମୟୀ ! ତୁମେ କିଏ? ଏହି ନିର୍ଜନ ବନ ପ୍ରଦେଶରେ ମୋତେ ତୁମେ ଆକସ୍ମିକ ବିପଦକୁ ରକ୍ଷା କରିଛ । ତୁମର ପରିଚୟ ଦିଅ ଦେବି ।''

ଆଖି ପିଛୁଳାକେ ସେଇ ନାରୀମୂର୍ତ୍ତି ଆଲୋକର ସ୍ରୋତରୂପେ ଆଲୋକ ଭିତରେ ଲୀନ ହୋଇଗଲେ । ହସ୍ତିନାରାଜ ପାଗଳଙ୍କ ପରି ପଛେ ପଛେ ଦଉଡ଼ିଲେ । ନୟନରୁ ଗଡ଼ି ଆସିଲା ଅବାରିତ ଅଶ୍ରୁଧାର । କଣ୍ଠରେ କ୍ରନ୍ଦନର କୋଳାହଳ ।

''ହେ ମମତାମୟୀ ! ହେ କରୁଣାମୟୀ ! ହେ ପ୍ରାଣମୟୀ ! ତୁମେ ମୋ ଭିତରେ ପ୍ରାଣ ସଂଚାର କରି ପୁଣି ମୋର ପ୍ରାଣକୁ ଲୁଣ୍ଠନ କରି ଚାଲିଯାଇଛ । ମୁଁ ତୁମର ପ୍ରାଣପୂର୍ଣ୍ଣ ଉପହାର ପାଇଛି ଅଥଚ କୃତଜ୍ଞତା ଜଣାଇବା ପୂର୍ବରୁ ତୁମେ ମୋତେ ସେ ସୁଯୋଗରୁ ବଞ୍ଚିତ କରିଛ । ମୁଁ ତ କିଛି ଅପରାଧ କରିନି, ହସ୍ତିନାରାଜା ସମ୍ବରଣ କୃତଘ୍ନ ନୁହେଁ । ତାର ସ୍ୱାଭିମାନକୁ ସମ୍ମାନ ଦିଅ ଦେବି ! ଯେଉଁ ପ୍ରାଣକୁ ପଲ୍ଲବିତ କରିଛ, କୃତଜ୍ଞତା ଜଣାଇବାକୁ ତାକୁ ସୁଯୋଗ ଦିଅ । ମନେରଖ, ତୁମକୁ ଦର୍ଶନ ନ କରିବା ପର୍ଯ୍ୟନ୍ତ ହସ୍ତିନାପୁରୀକୁ ଫେରିବି ନାହିଁ ।''

ରାଜା ଗଭୀର ବେଦନାହତ । ବନ ପ୍ରଦେଶରେ ପାଗଳଙ୍କ ପରି ଘୂରି ବୁଲିଲେ । ଆସି ପହଞ୍ଚିଲେ ଏକ ନଦୀ କୂଳରେ । ଘଞ୍ଚ ତରୁଛାୟା ଘେରା ତଟ ପ୍ରଦେଶ । ସୁପକ୍ୱ ସୁମଧୁର ଫଳସମ୍ଭାରରେ ପରିପୂର୍ଣ୍ଣ ବୃକ୍ଷରାଜି । ରାଜା ଶୁଭ୍ର ଶିଳାଶଯ୍ୟା ଉପରେ ବସି ବନର ମଧୁର ଫଳମୂଳ ଭକ୍ଷଣକଲେ । ବିଶିଷ୍ଟ ଅତିଥି ହସ୍ତିନାରାଜାଙ୍କୁ ବନ ଦେବୀଙ୍କର ଏଇ ବନଚର୍ଚ୍ଚା ବହୁତ ଆନନ୍ଦ ଦେଲା ।

ରାଜା ସେଇ ମଧୁର ପରିବେଶ ମଧ୍ୟରେ, ବ୍ୟଥିତମନର ଅସରନ୍ତି ଗ୍ଲାନି ପଖାଳି ଦେଲେ । ଆଖି ଆଗରେ ନାଚିଉଠିଲା ସେଇ ନାରୀମୂର୍ତ୍ତି । ସେ ତନ୍ମୟ ହୋଇ ସେଇ କଳ୍ପନାର କଳାମୟୀ ମୂର୍ତ୍ତିକୁ ଚାହିଁଥାନ୍ତି । ପଛରୁ ଶୁଣାଗଲା, ''ହେ ହସ୍ତିନା ନରେଶ ! ମୁଁ ପୁଣି ଆସିଛି ରାଜା ସମ୍ବରଣଙ୍କର ମୋହଭଙ୍ଗ କରିବା ପାଇଁ । ପ୍ରଥମ ଦର୍ଶନରେ ଯେଉଁ ନାରୀ କଲ୍ୟାଣମୟୀ ରୂପରେ ଉଭା ହୋଇଥିଲା, ତାଙ୍କ ଆଖିରେ ସେ ହୋଇଗଲା ପ୍ରାଣମୟୀ, ହୃଦୟହାରିଣୀ? ଏ ପ୍ରକାର ମାନସିକ ସ୍ଖଳନ କାହିଁ କି? ରାଜା ଦୃଷ୍ଟିରେ କଣ ନାରୀ କେବଳ କାମନାର କ୍ଷୁଧା! ଭୋଗର ଭଣ୍ଡାର, ଲାଳସାର ଲୀଳାମୟୀ ମୂର୍ତ୍ତି । ମୁଁ ସେଥିପାଇଁ ଜାଣିଜାଣି ନିଜର ପରିଚୟ ନ ଦେଇ ଚାଲିଯାଇଥିଲି । ଆପଣଙ୍କର ଉତ୍କଣ୍ଠା ପୁଣି ମୋତେ ଟାଣିଆଣିଲା । ବର୍ତ୍ତମାନ ପରିଚୟ ଦେଉଛି । ମୁଁ ହେଉଛି ସୂର୍ଯ୍ୟ ତନୟା ତପତୀ ।''

''ଏଁ... ତୁମେ... ତୁମେ ତେଜୋମୟୀ ତପତୀ ! ତପନ ତନୟା ତପତୀ ! ରାଜା ସମ୍ବରଣର ଏକମାତ୍ର ସ୍ୱପ୍ନମୟୀ...ପ୍ରାଣମୟୀ... ଅନୁରାଗମୟୀ ତପତୀ ! କ୍ଷମାଦେବ ତପତୀ, ତୁମେ ମୋର ମନ, ହୃଦୟ, ପ୍ରାଣ, ଅନ୍ତର, ବିବେକ, ବୁଦ୍ଧି ସବୁ ଜୟ କରିଛ । ବର୍ଷ ବର୍ଷ ଧରି ମୁଁ ଗଭୀର ନିଷ୍ଠା ଭିତରେ ସୂର୍ଯ୍ୟଦେବତାଙ୍କୁ ପୂଜା କରିଛି । ତାଙ୍କୁ ତପସ୍ୟା ଭିତରେ ସନ୍ତୁଷ୍ଟ କରିଛି । ତାଙ୍କର ତେଜ ଓ ଆଲୋକର ଆଶୀର୍ବାଦ ମୋତେ ମିଳିଛି । ମୁଁ ସ୍ପଷ୍ଟ ଭାବରେ କହିଦେବାକୁ ଚାହେଁ, ତପତୀ ହିଁ ମୋର ତପସ୍ୟା ।

ମୋ ରାଜଶକ୍ତିର ଆଲୋକପୀଠ । ତପତୀଙ୍କୁ ଲାଭ କରିବା ପାଇଁ ଏ ପର୍ଯ୍ୟନ୍ତବିବାହ ନ କରି ଅପେକ୍ଷା କରିଛି । ତୁମେ ମୋତେ ଗାନ୍ଧର୍ବ ରୀତିରେ ଗ୍ରହଣ କର ତପତୀ, ହତାଶ କରନି ।''

''କ୍ଷମାଦେବେ ନରଶ୍ରେଷ୍ଠ । କନ୍ୟା ସ୍ୱେଚ୍ଛାଚାରିଣୀ ହେଲେ ସାମାଜିକ ସଂହତି ନଷ୍ଟ ହୋଇଯିବ । ମୁଁ ମୋ ପିତାଙ୍କ ଅଧୀନ । ତାଙ୍କ ଇଚ୍ଛାହିଁ ତପତୀର ଇଚ୍ଛା । ସେ ନିଜ କନ୍ୟାକୁ କାହାହାତରେ ସମ୍ପ୍ରଦାନ କରିବେ, ସେ ନିଷ୍ପତ୍ତି ସେ ନିଜେ ନେବେ, ମୁଁ ଆସୁଛି ।'' ଆକାଶର ଜ୍ୟୋତିର୍ମଣ୍ଡଳ ଭିତରେ ଲୀନ ହୋଇଗଲା ଏକ ଜ୍ୟୋତିସ୍ରୋତ ।

ରାଜା ଚିତ୍କାର କରି ଉଠିଲେ... ''ତପତୀ । ତପତୀ !! ଜ୍ୟୋତିର୍ମୟୀ ତପତୀ । ଫେରିଆସ । ଫେରିଆସ ।''

ରାଜା ସମ୍ବରଣ ଭଗ୍ନମନ ନେଇ ପୁଣି ଘୂରିବୁଲିଲେ ବନ ପ୍ରଦେଶରେ । ସୈନ୍ୟ ଓ ସଚିବଗଣ ତାଙ୍କର ସଂଧାନ ପାଇ ହତବାକ୍ ହୋଇଗଲେ । ରାଜାଙ୍କର ଅବସ୍ଥା କଣ ହୋଇଛି ! ସେମାନେ ତାଙ୍କୁ ଅନୁରୋଧ କଲେ ହସ୍ତିନାକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ । ରାଜା ପ୍ରଧାନ ସଚିବଙ୍କୁ କହିଲେ, ''ତୁମେ ସମସ୍ତେ ଫେରିଯାଅ, ମୁଁ ଏହି ଗିରି ଗହ୍ୱରରେ କିଛିଦିନ ପାଇଁ ତପସ୍ୟା କରିବି । କୁଳଗୁରୁ ବଶିଷ୍ଠଙ୍କୁ ମୁଁ ଭେଟିବାକୁ ଚାହେଁ । ତାଙ୍କୁ ପଠାଇଦିଅ । ମୋ ପାଖରେ କେହି ରହିବାର ଆବଶ୍ୟକତା ନାହିଁ । ରାଜ୍ୟର ଶାସନଶୃଙ୍ଖଳା ଯେପରି ବ୍ୟାହତ ନ ହେବ, ସେଥିପ୍ରତି ସତର୍କ ରହିବ ।''

ସମସ୍ତେ ବିଦାୟ ନେଲେ ।

ରାଜା ସମ୍ବରଣ, ପତ୍ନୀ ପ୍ରାପ୍ତିର କଠୋରବ୍ରତ ପାଳନ କଲେ । ଆଚାର୍ଯ୍ୟ ବଶିଷ୍ଠ ଆସି ଅପେକ୍ଷା କରିଥାନ୍ତି । ବାରଦିନ ପରେ ବ୍ରତ ଉଦ୍‌ଯାପିତ ହେଲା । ସେ କୁଳଗୁରୁଙ୍କୁ ପ୍ରଣାମ କରି ନିରବ ରହିଲେ । ବଶିଷ୍ଠ କହିଲେ, ''ହେ ରାଜନ୍ ! ମୁଁ ଯୋଗ ବଳରେ ଆପଣଙ୍କ ମାନସିକ ପରିବେଶ ଅନୁଧ୍ୟାନ କରିଛି । ହସ୍ତିନାର ଭାବୀ ରାଜମହିଷୀ ତପନ ତନୟା ତପତୀ, ଆପଣଙ୍କ ହସ୍ତରେ ସୂର୍ଯ୍ୟଦେବଙ୍କ ଦ୍ୱାରା ସମର୍ପିତ ହୋଇସାରିଛନ୍ତି । ବ୍ୟସ୍ତ ହେବାର କିଛି ନାହିଁ । ମୁଁ ସୂର୍ଯ୍ୟଦେବଙ୍କ ପାଖକୁ ଯାଉଛି, ଆପଣ ସୂର୍ଯ୍ୟଙ୍କ ଉପାସନରେ ରହନ୍ତୁ ।''

ସମ୍ବରଣଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇଉଠିଲା । କମ୍ପିତ କଣ୍ଠରେ ସେ କହିଲେ ''ମୁଁ ଆପଣଙ୍କର ଆଶୀର୍ବାଦ ଭିକ୍ଷାକରେ ।'' ବଶିଷ୍ଠ ଆଶୀର୍ବାଦ ମୁଦ୍ରାରେ କହିଲେ, ''ମନୋବାଞ୍ଛା ପୂର୍ଣ୍ଣହେଉ ।'' ସେ ବିଦାୟ ନେଇ ଚାଲିଆସିଲେ । ରାଜା ସୂର୍ଯ୍ୟଦେବତାଙ୍କ ଆରାଧନାରେ ବସିଗଲେ ।

ବ୍ରହ୍ମର୍ଷି ବଶିଷ୍ଠ ଦିବ୍ୟଧାମରେ ପହଞ୍ଚି କୃତାଞ୍ଜଳି ପୂର୍ବକ ନିଖିଳ ବିଶ୍ୱର ପ୍ରାଣାଧାର ସହସ୍ରାଂଶୁଙ୍କୁ ପ୍ରଣାମ କରି କହିଲେ, ''ହେ ବିବସ୍ୱନ୍ ! ଆପଣଙ୍କ ଦର୍ଶନ ପାଇଁ ଆସିଥିଲି । ମୋର ଅନ୍ତର ଦିବ୍ୟାନନ୍ଦରେ ପରିପୂର୍ଣ୍ଣ ହୋଇଛି ।

''ହେ ମହାତେଜା ମୁନିଶ୍ରେଷ୍ଠ । ଆପଣଙ୍କର ଶୁଭାଗମନ ମୋତେ ଆନନ୍ଦ ଦେଇଛି, ଯାହାକିଛି ଇପ୍‌ସିତ ପ୍ରକାଶ କରନ୍ତୁ, ମୁଁ ମୁକ୍ତ ମନରେ ତାହା ପ୍ରଦାନ କରିବି ।''

''ହେ ବିଭାବସୁ ! ଆପଣଙ୍କର କନ୍ୟା ମନସ୍ୱିନୀ ତପତୀଙ୍କୁ ଧର୍ମଜ୍ଞ, ଦେବଜ୍ଞ, କୀର୍ତ୍ତିମାନ ହସ୍ତିନାରାଜ ସମ୍ବରଣଙ୍କ ନିମିତ୍ତ ବରଣ କରୁଛି । ଆପଣଙ୍କର ଶୁଭସମ୍ମତି ଏ ପ୍ରସ୍ତାବକୁ ଶୁଭମୟ କରୁ ।''

''ହେ ମହର୍ଷି ! ଆପଣ ଋଷିଶ୍ରେଷ୍ଠ, ହସ୍ତିନାରାଜ ନୃପଶ୍ରେଷ୍ଠ ଏବଂ ମୋ କନ୍ୟା ତପତୀ, ନାରୀଶ୍ରେଷ୍ଠ । ଶ୍ରେଷ୍ଠ ଓ ଶ୍ରେଷ୍ଠାର ମିଳନକୁ ମୁଁ ଅଗ୍ରାହ୍ୟ କରିବି କାହିଁକି ! ବିଶ୍ୱର ମଙ୍ଗଳ ବିଧାନ ପାଇଁ ମୁଁ ମୋ କନ୍ୟା ତପତୀଙ୍କୁ ନରଶ୍ରେଷ୍ଠ ସମ୍ବରଣଙ୍କ ଉଦ୍ଦେଶ୍ୟରେ ସମ୍ପ୍ରଦାନ କରୁଛି ।''

ରାଜା ସମ୍ବରଣ ସେତେବେଳେ ଥିଲେ ତପସ୍ୟାରତ ।

ଏକ ସମୟରେ ଦୁଇଟି ରଥ ପ୍ରସ୍ତୁତ ହେଲା । ଗୋଟିକରେ ବସିଲେ ସୂର୍ଯ୍ୟତନୟା ହସ୍ତିନାର ଭାବୀ ରାଜବଧୂ ତପତୀ ଓ ସେବିକାଗଣ । ଅନ୍ୟ ରଥଟିରେ ବସିଲେ ବ୍ରହ୍ମର୍ଷି ବଶିଷ୍ଠ । ଅଗ୍ନି ଦେବତାଙ୍କ ସହିତ ଅନ୍ୟ ଦେବତାମାନେ ନିଜ ନିଜ ରଥରେ ବସି ବଧୂଯାତ୍ରାରେ ଯୋଗଦେଲେ । ଆକାଶ ପଥରେ ଆଲୋକ ପୁଞ୍ଜର ପଟୁଆର । ସମ୍ବରଣ ଯେଉଁ ଗିରିଶିଖରରେ ତପସ୍ୟାରତ ଥିଲେ ତା'ରି ଉପରେ ଆକାଶମାର୍ଗରେ ରଥସବୁ ଅଟକିଗଲା । ଆକାଶରୁ ପୁଷ୍ପ ବୃଷ୍ଟିହେଲା ରାଜାଙ୍କ ଉପରେ । ତପସ୍ୟା ସମାପ୍ତ ହୋଇଛି । ସେ ଆକାଶକୁ ଚାହିଁ ଗୁରୁ ଓ ଦେବତାମାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ । ସୂର୍ଯ୍ୟଦେବ ଓ ଛାୟା ଦେବୀ ଶୂନ୍ୟପଥରେ ବିରାଜମାନ ।

ଆକାଶମାର୍ଗରୁ ମହର୍ଷି ବଶିଷ୍ଠଙ୍କ ରଥ ଗିରି ଶିଖରକୁ ଓହ୍ଲାଇ ଆସିଲା । ରାଜା ସମ୍ବରଣ ତାଙ୍କୁ ପ୍ରଣାମ ଜଣାଇଲେ । ଗିରି ଶିଖରରେ ପରିଣୟ ବେଦି ପ୍ରସ୍ତୁତ ହେଲା । କୁଳଗୁରୁ ବିହିତ ବ୍ୟବସ୍ଥା କରି ବେଦି ଉପରକୁ ସମସ୍ତ ଦେବାଦେବୀଙ୍କୁ ନିମନ୍ତ୍ରଣ କଲେ । ବେଦିର ଯଜ୍ଞକୁଣ୍ଡକୁ ଆସିବା ପାଇଁ ଆବାହନ କଲେ ଅଗ୍ନିଦେବତାଙ୍କୁ । ଆକାଶମାର୍ଗକୁ ଚାହିଁ, ପରିଣୟ ପାଇଁ ବେଦିକୁ ନିମନ୍ତ୍ରଣ ଜଣାଇଲେ ଦେବୀ ତପତୀଙ୍କୁ । ସେ ଆକାଶମାର୍ଗରୁ ଓହ୍ଲାଇ ଆସିଲେ । ମାତା ଛୟାଦେବୀ ଆକାଶରେ ଟାଣିଦେଲେ ଛାୟାର ଛତରୀ, ବିପୁଳଛାୟା ବିତାନ ।

ପରିଣୟ ଯଜ୍ଞ ଆରମ୍ଭ ହେଲା ।

ଯଜ୍ଞ ପରିଚାଳନା କଲେ ଆଚାର୍ଯ୍ୟ ବଶିଷ୍ଠ । ଦେବଗୁରୁ ବୃହସ୍ପତି ତାଙ୍କୁ ସାହାଯ୍ୟ କଲେ । ଦେବତାମାନେ ଆସି ଯଜ୍ଞ ଭାଗ ଗ୍ରହଣ କଲେ । ବେଦମନ୍ତ୍ର ଓ ଓଁକାର ଝଙ୍କାରରେ ବନପ୍ରଦେଶ ଝଙ୍କୃତ ହେଲା । ଅରଣ୍ୟର ବୃକ୍ଷଲତା, ଫଳ, ପତ୍ର, ପୁଷ୍ପ ଅର୍ପଣ କଲେ । ଗିରି ନିର୍ଝରିଣୀ ସୁଶୀତଳ ମଧୁରଜଳ ଯୋଗାଇ ଦେଲେ । ଚତୁଃପାର୍ଶ୍ୱରେ କାନଟେକି ଛିଡ଼ାହୋଇଥାନ୍ତି ଭୁକ୍ତ ମୁଗ୍ଧ ମୃଗଯୂଥ । ଅନତି ଦୂରରେ ଛିଡ଼ାହୋଇଥାଏ ସେଇ ମୃଗରାଜ । ମସ୍ତକରେ ତାର ବିଶାଳ ଶୃଙ୍ଗମୁକୁଟ । ରାଜା ସମ୍ବରଣ ମନେ ମନେ ତାକୁ ପ୍ରଣାମ ଜଣାଇଲେ ମହାନ୍ ଅତିଥିଭାବି । କହିଲେ, "ମୃଗରାଜ୍ ! ତୁମର ଦୁର୍ଗତି ମଧ୍ୟରୁ ମୁଁ ଏଇ ସୂର୍ଯ୍ୟତନୟା ତପତୀଙ୍କୁ ରାଜମହିଷୀ ରୂପେ ଲାଭ କଲି । ମୁଁ ତୁମକୁ କ୍ରୂରତା ଦେଇଛି, ତୁମେ ପ୍ରତିଦାନରେ ଆଶୀର୍ବାଦ ଦେଇଛ । ଆଜି ଏଇ ମହାନ୍ ଦିବସରେ ଯଜ୍ଞକୁଣ୍ଡର ଅଗ୍ନିଦେବତାଙ୍କୁ ସାକ୍ଷୀରଖି ପ୍ରତିଜ୍ଞା କରୁଛି, ମୋ ରାଜ୍ୟରେ ଆଜିଠାରୁ ମୃଗୟା ବନ୍ଦ ହେବ । ସାଧାରଣ ପ୍ରଜାମାନଙ୍କ ପରି ବନପ୍ରଦେଶରେ ପଶୁପକ୍ଷୀ ଆନନ୍ଦରେ ରହିବେ । ଆଜିପରି ପୁଣ୍ୟ ଦିବସର ଏହାହିଁ ହେବ ମୋର ପୁଣ୍ୟସ୍ମୃତି ।"

ପରିଣୟ ସମ୍ପନ୍ନ ହେଲା ।

ସମସ୍ତେ ବିଦାୟନେଲେ । ରାଜା ସମ୍ବରଣ ସେଇ ବନପୁରୀରେ କୁଳଗୁରୁଙ୍କ ଅନୁମତି ନେଇ କିଛିଦିନ ଦାମ୍ପତ୍ୟ ଜୀବନ ଅତିବାହିତ କଲେ । ହଠାତ୍ ଦିନେ ସମ୍ବାଦ ମିଳିଲା, ରାଜାଙ୍କ ଅନୁପସ୍ଥିତିରେ ରାଜ୍ୟରେ ବର୍ଷା ହେଉନି । ଦୁର୍ଭିକ୍ଷ ପଡ଼ିଛି । ପ୍ରଜାମାନେ ଅସହ୍ୟ ଦୁଃଖ ଭୋଗକରୁଛନ୍ତି । କୁଳଗୁରୁ ବଶିଷ୍ଠ ରାଜଦମ୍ପତିଙ୍କୁ ରାଜପୁରୀକୁ ନେଇଯିବାକୁ ଆସିଛନ୍ତି । ରାଜା ଓ ରାଜମହିଷୀ ହସ୍ତିନାକୁ ଫେରିଗଲେ । ଆକାଶରେ ମେଘ ଘନେଇ ଆସିଲା । ବର୍ଷାରେ ଭରପୂର ହୋଇଗଲା, ନଈନାଳ, ପୋଖରୀ । ଦୁର୍ଭିକ୍ଷ ଅପସରିଗଲା । ହସିଉଠିଲା ହସ୍ତିନାପୁରୀ । ରାଜଲକ୍ଷ୍ମୀଙ୍କ ଆଶୀର୍ବାଦରେ ରାଜ୍ୟରେ ସୁଖସମୃଦ୍ଧି ସମୃଦ୍ଧ ହେଲା । ତପତୀଙ୍କ ଗର୍ଭରୁ ଏକ ମହାନ୍ ସନ୍ତାନ ଜନ୍ମଗ୍ରହଣ କଲେ । ତାଙ୍କ ନାମ 'କୁରୁ', ତାଙ୍କଠାରୁ ଆରମ୍ଭ ହେଲା କୁରୁବଂଶ । କୁରୁବଂଶର ବଂଶଧର କୌରବ ନାମରେ ପରିଚିତ ହେଲେ ।

—————————————— ଦୁଇ

## ॥ ଶାନ୍ତନୁ ॥

ପୁରୁବଂଶରେ ବହୁ ପୁଣ୍ୟଶୀଳ ମହାନ୍ ସମ୍ରାଟ ଜନ୍ମ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ ଦୁଷ୍ମନ୍ତ ଅନ୍ୟତମ । ଦୁଷ୍ମନ୍ତଙ୍କଠାରୁ ଶକୁନ୍ତଳାଙ୍କ ଗର୍ଭରେ ଜନ୍ମଲାଭ କରିଥିଲେ ଭରତ । କଣ୍ୱମୁନିଙ୍କ କନ୍ୟା ଶକୁନ୍ତଳା ଓ ରାଜା ଦୁଷ୍ମନ୍ତଙ୍କର ପରିଣୟ କାହାଣୀ ଯୁଗଯୁଗର । ଦେବବାଣୀ ଶୁଣି ରାଜା ଦୁଷ୍ମନ୍ତ, ଶକୁନ୍ତଳା ଓ ତାଙ୍କର ଶିଶୁପୁତ୍ରକୁ ଗ୍ରହଣ କରିଥିଲେ । ଦେବ ନିର୍ଦ୍ଦେଶ ''ଭରଣ'' ବା ପୂରଣ କରିଥିବାରୁ ସ୍ମୃତି ରକ୍ଷାପାଇଁ, ଶିଶୁପୁତ୍ରର ନାମ ରଖାଗଲା **'ଭରତ'** । ସେ ଭବିଷ୍ୟତରେ ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ତାଙ୍କ ନାମ ଅନୁସାରେ ଏହାର ନାମ ହେଲା **''ଭାରତବର୍ଷ''** ।

ଭରତଙ୍କ ନାତିଙ୍କ ନାମ ସୁହୋତ୍ର । ତାଙ୍କର ପୁତ୍ରଙ୍କ ନାମ ହସ୍ତୀ । ସେ ହସ୍ତିନାପୁର ପ୍ରତିଷ୍ଠା କରିଥିଲେ । ସେହି ବଂଶର ରାଜା, ''ସମ୍ବରଣ'' ସୂର୍ଯ୍ୟଙ୍କ କନ୍ୟା ତପତୀଙ୍କୁ ବିବାହ କରିଥିଲେ । ତାଙ୍କର ପୁତ୍ରଙ୍କ ନାମ କୁରୁ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ବଂଶ ''କୁରୁବଂଶ'' । ସେ ମଧ୍ୟ କୁରୁକ୍ଷେତ୍ର ସ୍ଥାପନ କରିଥିଲେ ।

ଏହି ବଂଶର ଅନ୍ୟତମ ବିପୁଳଯଶା ରାଜା ହେଉଛନ୍ତି 'ଶାନ୍ତନୁ' । ସେ ରାଜର୍ଷି ପ୍ରତୀପଙ୍କର ପୁତ୍ର । ତାଙ୍କର ମାତା ହେଉଛନ୍ତି ଶୈବରାଜନନ୍ଦିନୀ 'ସୁନନ୍ଦା' । ରାଜା ପ୍ରତୀପଙ୍କର ତିନୋଟି ପୁତ୍ର । ଦେବାପି, ଶାନ୍ତନୁ ଓ ବାହ୍ଲିକ । ଅତି ପିଲାଟି ଦିନରୁ ଦେବାପି ରାଜ ଶିରୀ ଓ ଭୋଗଲାଳସା ପରିତ୍ୟାଗ କରି ବନଚାରୀ ହୋଇଥିଲେ । ପିତାଙ୍କ ପରେ ରାଜ୍ୟଭାର ଗ୍ରହଣକଲେ ଶାନ୍ତନୁ । ସେ ଥିଲେ ପ୍ରବଳ ପ୍ରତାପୀ, ତ୍ରିଭୁବନ ବିଜୟୀ ଓ ଅତୀବ ଓ ଧର୍ମପରାୟଣ । ଅପରର ଶାନ୍ତି ଓ ସମୃଦ୍ଧି ପାଇଁ ସତେ ଯେପରି ସେ ଥିଲେ ବିଧି ପ୍ରେରିତ । ଯାହାକୁ ସେ ନିଜ ହସ୍ତରେ ସ୍ପର୍ଶ କରୁଥିଲା ସେ ହେଉଥିଲା ପରମ ସୁଖର ଅଧିକାରୀ । ବୃଦ୍ଧ ମଧ୍ୟ ତାଙ୍କର କରସ୍ପର୍ଶରେ ନବଯୌବନ ଲାଭ କରୁଥିଲେ । ଏହା ଥିଲା ଶାନ୍ତନୁ ନାମର ବୈଶିଷ୍ଟ୍ୟ । ସେ ଯେପରି ଜଣେ ମହାନ୍ ରାଜା, ସେପରି ଏକ ମହାନ୍ ଋଷି । ନୀତି, ନ୍ୟାୟ, ନିଷ୍ଠା ଥିଲା ତାଙ୍କ ରାଜ୍ୟ ଶାସନର ମୂଳମନ୍ତ୍ର । ଦେବାସୁର ଯୁଦ୍ଧବେଳେ ଶାନ୍ତନୁ ଦେବତାମାନଙ୍କ ସପକ୍ଷରେ ଲଢୁଥିଲେ ।

ସେ ଦିନଟି ଥିଲା ଜୀବନର ଏକ ସ୍ମରଣୀୟ ଦିବସ ।

ରାଜର୍ଷି ଶାନ୍ତନୁ ରାଜଉଦ୍ୟାନରେ ପରିଭ୍ରମଣ କରୁଥାନ୍ତି । ହଠାତ୍ ତାଙ୍କର ଦୃଷ୍ଟିରେ ପଡ଼ିଲେ ଏକ ଅନୁପମା ଯୁବତୀ । ଅନିର୍ବଚନୀୟ, ତାଙ୍କର ରୂପ ସମ୍ଭାର । ଅଲୌକିକ, ତାଙ୍କର କମନୀୟ କାନ୍ତି । ଶରୀର ମଧ୍ୟରୁ ପ୍ରତିଭାତ ହେଉଥାଏ ଦିବ୍ୟଜ୍ୟୋତି । ସାରା ଶରୀରରେ ପ୍ରବାହିତ ହେଉଛି

ତରୁଣ୍ୟର ତରଙ୍ଗ । ଶାନ୍ତନୁ ମୋହାବିଷ୍ଟ ହୋଇ ତାଙ୍କୁ ଚାହିଁ ରହିଲେ । ନୟନ ସହିତ ନୟନର ମିଳନ ହେଲା । ସେ ତାଙ୍କୁ ପାଖକୁ ଯାଇ ପ୍ରେମାପ୍ଲୁତ କଣ୍ଠରେ କହିଲେ, ''ହେ ମହୀୟସୀ ଦେବି ! ତୁମେ କିଏ ? ପରିଚୟ ପାଇ ପାରିବିକି ? ଲଜ୍ଜା ଲୋହିତା ଲାସ୍ୟମୟୀ ତରୁଣୀ ମଥା ଅବନତ କଲା । କିଛି ସମୟ ନିରବ ରହିବା ପରେ କହିଲା, ''ହେ ସମ୍ରାଟ ! ଏକ ଅନୂଢ଼ା କନ୍ୟାର ପରିଚୟ ସେ ନିଜେ । ଆଉ ଅଧିକ ପରିଚୟର କି ଆବଶ୍ୟକତା ଅଛି ''?

''ତୁମେ ସମ୍ରାଟ ଶାନ୍ତନୁର ରାଜରାଣୀ ହେବା ପାଇଁ ଯୋଗ୍ୟା । ତାହାହିଁ ହେଉ ତୁମର ଶ୍ରେଷ୍ଠ ପରିଚୟ । ଏ ସଶ୍ରଦ୍ଧ ନିବେଦନ ରକ୍ଷା କରିପାରିବ ?''

ହିଁ ରକ୍ଷା କରିପାରିବି । ତେବେ ଏଥିପାଇଁ ଅଛି ଏକ କଠୋର ସର୍ତ୍ତ, ଆପଣ କଣ ତାହା ପାଳନ କରିପାରିବେ ?''

''କି ସର୍ତ୍ତ ! କୁହ.. କୁହ, ଜୀବନ ବିନିମୟରେ ମୁଁ ସମସ୍ତ ସର୍ତ୍ତ ପୂରଣ କରିବାକୁ ପ୍ରସ୍ତୁତ । ସମର୍ପଣରେ କଠୋରତା କୋମଳତା ରୂପ ନିଏ । ପ୍ରକାଶ କର ଦେବି ! ମୋର ଉତ୍କଣ୍ଠା ଆଉ ବଢ଼ାଅନାହିଁ ।''

''ସର୍ତ୍ତ ଏଇଥିପାଇଁ କଠୋର ଯେ, ଆପଣ ଜୀବନରେ କେବେ ମୋର ପ୍ରକୃତ ପରିଚୟ ପଚାରିବେ ନାହିଁ । ଆପଣଙ୍କର ପରିଚୟରେ ହିଁ ମୁଁ ପରିଚିତ ହେବି । ପୁଣି ସର୍ତ୍ତ ଆହୁରି କଠୋର ଯେ, ଆପଣ ମୋର ଶୁଭାଶୁଭ କାମରେ ବାରଣ କରିବେ ନାହିଁ କିମ୍ବା କେବେ ଅପ୍ରୀତିକର କଥା କହିବେ ନାହିଁ । ଯେଉଁ ଦିନ ଏହାର ବ୍ୟତିକ୍ରମ ହେବ, ସେଦିନ ମୁଁ ଆପଣଙ୍କ ଠାରୁ ବିଦାୟ ନେବି । ଫେରିଯିବି ମୋ ପଥକୁ । ବିଚାର କରନ୍ତୁ, ଆପଣ ଯେଉଁ ସମ୍ମାନ ମୋତେ ଦେଉଛନ୍ତି ତାହାକୁ ରକ୍ଷା କରିବାର ଦାୟିତ୍ୱ ଆପଣଙ୍କର । ପାରିବେ ତ ?''

ଶାନ୍ତନୁ ଶପଥ କଲେ । ସର୍ତ୍ତରକ୍ଷା ସେ ନିଶ୍ଚୟ କରିବେ । ସେହି ରହସ୍ୟମୟୀ ହେଲେ ରାଜଚକ୍ରବର୍ତ୍ତୀ ଶାନ୍ତନୁଙ୍କର ପଟ୍ଟମହିଷୀ । ଶାନ୍ତି, ସୁଖ, ସମ୍ଭୋଗ ଓ ଧର୍ମକର୍ମରେ ସମୟ ଅତିବାହିତ ହେଲା । ସେ ହେଲେ ସନ୍ତାନବତୀ । ଶାନ୍ତନୁଙ୍କର ଆନନ୍ଦ କହିଲେ ନସରେ । କିନ୍ତୁ ହାୟ ନିଜର ସଦ୍ୟଜାତ ସନ୍ତାନଟିକୁ ମା' ନେଇ ଗଙ୍ଗାଜଳରେ ନିକ୍ଷେପ କଲେ । ''ହେ ଗଙ୍ଗାଦେବି ! ମୋର ଏ ବିସର୍ଜନ ତୁମର ତୃପ୍ତି ପାଇଁ ଉଦ୍ଦିଷ୍ଟ, ଗ୍ରହଣ କର ।''

ଶପଥର ବଜ୍ର ନିର୍ଦ୍ଦେଶ ଶାନ୍ତନୁଙ୍କୁ ବାରଣ କଲା, ସେ କିଛି କହିଲେନାହିଁ । ବର୍ଷାଭିଜା ମାଟି କାନ୍ଥରୁ ପୁଡ଼ାପୁଡ଼ା ମାଟି ଖସିବା ପରି, ପ୍ରାଣ ପିଣ୍ଡଟା ବିଦୀର୍ଣ୍ଣ ହେବାକୁ ଲାଗିଲା । ଭିତର ଅଶାନ୍ତ । ବାହାରଟା ଖୁବ୍ ଶାନ୍ତ, ଗମ୍ଭୀର ଓ ସମାହିତ । ମା' ଜନ୍ମିତ ଶିଶୁକୁ ଜଳରେ ବିସର୍ଜନ କରିପାରେ !!!

ସମୟକ୍ରମେ ଏଇ କ୍ରୂରଜନନୀ ସାତଟି ଶିଶୁ ସନ୍ତାନ ଜନ୍ମଦେଇ ସମସ୍ତଙ୍କୁ ଗଙ୍ଗାଗର୍ଭରେ ବିସର୍ଜନ କରିଥିଲେ । ଅଷ୍ଟମସନ୍ତାନର ବିସର୍ଜନ ପାଇଁ ଉଦ୍ୟତ ହେବା ସମୟରେ, ଶାନ୍ତନୁ ଧୈର୍ଯ୍ୟ ରକ୍ଷା କରିପାରିଲେ ନାହିଁ । ଦୁଃଖାର୍ତ୍ତ ଚିତ୍ତରେ ସନ୍ତାନର ଜୀବନରକ୍ଷା ପାଇଁ ତାଙ୍କୁ ଏହି ଅପକର୍ମରୁ କ୍ଷାନ୍ତ ହେବାକୁ ନିର୍ଦ୍ଦେଶ ଦେଲେ । ଏଠାରେ ରାଜା ତାଙ୍କର ପ୍ରକୃତ ପରିଚୟ ଜାଣିବାକୁ ଚାହିଁଲେ । ରାଜମହିଷୀ ଗମ୍ଭୀର କଣ୍ଠରେ କହିଲେ, ''ହେ ରାଜନ୍ ! ଆପଣଙ୍କର ଅଭିଳାଷ ପୂର୍ଣ୍ଣ ହେଉ । ମୁଁ ନବଜାତ ଶିଶୁଟିକୁ ଗଙ୍ଗା ସ୍ରୋତରେ ବିସର୍ଜନ କରିବି ନାହିଁ । ଆମ ଦୁହିଁଙ୍କର ସନ୍ତକ ସ୍ୱରୂପ ଏ ପୁତ୍ର ଜୀବିତ ରହୁ । ମୁଁ ଜହ୍ନୁ ଋଷିଙ୍କର କନ୍ୟା 'ଗଙ୍ଗା' ଆଠଜଣଙ୍କଯାକ ସନ୍ତାନ ହେଉଛନ୍ତି ସ୍ୱର୍ଗର ଦେବତା, ''ଅଷ୍ଟବସୁ'' । ବଶିଷ୍ଠ ଋଷିଙ୍କ ଆଶ୍ରମ ଧେନୁ ନନ୍ଦିନୀକୁ ଚୋରିକରି, ତାଙ୍କ ଦ୍ୱାରା ସେମାନେ ଅଭିଶାପଗ୍ରସ୍ତ

ହୋଇଥିଲେ । ସେଥିପାଇଁ ସେମାନଙ୍କୁ ମର୍ତ୍ତ୍ୟର ମାନବ ଦେହ ଧାରଣ କରିବାକୁ ପଡ଼ିଲା । ମୋ ଗର୍ଭରେ ସେମାନେ ଜନ୍ମ ହେବାକୁ ଅନୁରୋଧ କରିଥିଲେ । ଜନ୍ମହେବା ମାତ୍ରେ ସେମାନଙ୍କୁ ଗଙ୍ଗା ଜଳରେ ନିକ୍ଷେପ କରି, ମାନବଜନ୍ମରୁ ରକ୍ଷା କରିବା ପାଇଁ ମୁଁ ପ୍ରତିଜ୍ଞା କରିଥିଲି । ଏ ବିସର୍ଜନ ସେ ପ୍ରତିଜ୍ଞାର ପରିପୂରକ ମାତ୍ର । ଦେବତାମାନଙ୍କର ଅଭିଳାଷ ପୂର୍ଣ୍ଣ ପାଇଁ ମୁଁ ମାନବ ଶରୀର ଗ୍ରହଣ କରିଥିଲି । ଆପଣଙ୍କ ପରି ମର୍ତ୍ତ୍ୟର ଏକ ମହାନ୍ ଆତ୍ମା ସହିତ ମୋର ସାଂସାରିକ ସମ୍ପର୍କ ଥିଲା ବିଧି ନିର୍ଦ୍ଦିଷ୍ଟ । ଏ ସନ୍ତାନ ଏକ ଦେବଶିଶୁ ଅଷ୍ଟବସୁ ମଧ୍ୟରୁ ଅନତ୍ୟମ । ମୁଁ ତାକୁ ସାଥିରେ ନେଇଯାଉଛି । ଲାଳନପାଳନ ଓ ଶିକ୍ଷାଦୀକ୍ଷା ପାଇବା ପରେ, ଆପଣଙ୍କ ପାଖକୁ ଏ ଶିଶୁ ଫେରିଆସିବ । ମୋର ମର୍ତ୍ତ୍ୟଲୀଳା ସମାପ୍ତ ହୋଇଛି, ମୋତେ ବିଦାୟ ଦିଅନ୍ତୁ ।''

ଆଖିପିଛୁଳାକେ ଅନନ୍ତ ଗଗନର ତେଜ ପୁଞ୍ଜମଧ୍ୟରେ ଏକ ଉଦ୍ଭାସ ଲୀନ ହୋଇଗଲା । ଶାନ୍ତନୁ ସେହି ମହାସରାର ମହାମିଳନକୁ ଆବେଗାକୁଳିତ ନୟନରେ ଚାହିଁରହିଲେ । ଶୋକାର୍ତ୍ତ ଶାନ୍ତନୁ, ସ୍ମୃତିକୁ ପାଥେୟ କରି ରାଜ ପୁରୀକୁ ଏକା ପ୍ରତ୍ୟାବର୍ତ୍ତନ କଲେ ।

ମାନସିକ ଚାପରେ ଅସ୍ଥିର, ସମ୍ରାଟ ଶାନ୍ତନୁ । କଣ କରିବେ, କିଛି ସ୍ଥିର କରିପାରୁ ନଥାନ୍ତି । ବିଧିର ବିଡମ୍ବନା,କେବଳ ରୂପର ମୋହରେ ଏକ ଅଜ୍ଞାତ ନାରୀକୁ ପତ୍ନୀ ଭାବରେ ଗ୍ରହଣ କଲେ । ସେ ଥିଲା ପୁଣି ସର୍ତ୍ତ ସର୍ବସ୍ୱ ମଣିଷଟିଏ । ସର୍ତ୍ତମୟ ପାରିବାରିକ ଜୀବନ ଜୀବନ ନୁହେଁ । ସ୍ତ୍ରୀର ବଂଶ ପରିଚୟ ଶେଷ ପର୍ଯ୍ୟନ୍ତ ଅନ୍ଧକାର ମଧ୍ୟରେ ପ୍ରଚ୍ଛନ୍ନ ରହିଲା । ଏପରିକି ସେ ନିଜର ନାମ ମଧ୍ୟ ପ୍ରକାଶ କଲାନାହିଁ । ସ୍ନେହ ସଂପ୍ରୀତି, ସର୍ତ୍ତମାନେନାହିଁ । ଶେଷରେ ସର୍ତ୍ତଭଙ୍ଗ ହେଲା, ସ୍ୱାମୀ ସ୍ତ୍ରୀର ସଂପର୍କ ଛିନ୍ନ ହେଲା । ନିଜର ଔରସଜାତ ସନ୍ତାନ ଉପରେ ପିତାର ଅଧିକାରରୁ ସେ ବଞ୍ଚିତ ହୋଇଥିଲେ । ସ୍ତ୍ରୀର ଦୟାରେ ଯେଉଁ ଶିଶୁ ସନ୍ତାନଟି ବଞ୍ଚିଗଲା, ସେ ମଧ୍ୟ ପାଖରେ ନାହିଁ, ବହୁତ ଦୂରରେ । ସେ ତାକୁ ଫେରି ପାଇବେକି ନାହିଁ ସନ୍ଦେହ । ବିଚିତ୍ର ଏ ବନ୍ଧନ ।

ପ୍ରତିଦିନ ଶାନ୍ତନୁ ଗଙ୍ଗାକୂଳକୁ ପରିଭ୍ରମଣରେ ଆସନ୍ତି । ଭାବନାରେ ଭାସିଯାନ୍ତି ଦୂର ଅତୀତକୁ । ଏଇ ଗଙ୍ଗା ସ୍ରୋତରୁ ମାନସୀଗଙ୍ଗା,ଆତ୍ମପ୍ରକାଶ କରି,ରାଜବଧୂ ରୂପରେ ତାଙ୍କ ପ୍ରାଣସଙ୍ଗିନୀ ହୋଇଥିଲେ। ଦେବ ଇଚ୍ଛା ପୂରଣ ପରେ ଏଇ ଗଙ୍ଗା ଗର୍ଭରେ ସେ ଲୀନ ହୋଇଗଲେ । ପୁଣି ଭାବୁଥାନ୍ତି, ତାଙ୍କର ଜୀବନ୍ତ ସନ୍ତାନଟି ଆକସ୍ମିକ ଭାବରେ ହୁଏତ ଏଇ ଗଙ୍ଗାସ୍ରୋତରୁ ବାହାରି ଆସି ତାଙ୍କୁ ଚକିତ କରିଦେବ, ସେ ତାକୁ କଣ ଚିହ୍ନିପାରିବେ ! ପିଲାଟି ତାର ପରିଚୟ କିପରି ଦେବ !! ରାଜବଧୂ ଗଙ୍ଗା ସତରେ କଣ ବିଗ୍ରହ ମଣ୍ଡିତ ହୋଇ ତାଙ୍କ ପାଖରେ ଉଭାହେବେ, ହସିହସି ତାଙ୍କ ହାତକୁ ବଢ଼ାଇ ଦେବେ ଶିଶୁଟିକୁ । ମନଭିତରେ ଅସୁମାର ଭାବନା ସୃଷ୍ଟି କରିଛି ଏକ ଅତୀନ୍ଦ୍ରିୟ ଆବେଶ । କରୁଣ ହେଲେ ବି କେତେ ମଧୁର ।

ସେ ପ୍ରତିଦିନ ଆସନ୍ତି... ଏଇପରି ଅନେକକଥା ଭାବନ୍ତି । ଭାବନା ସରେନା, ତା ପଣତ କାନିଟା ଲମ୍ବାଇଦିଏ ରାଜ ଉଆସ ପର୍ଯ୍ୟନ୍ତ । ନେଇଯାଏ ସୁବର୍ଣ୍ଣ ପଲଙ୍କର ପୁଷ୍ପ ଶଯ୍ୟାକୁ । ଶୋଇଶୋଇ ଅତୀତ ସ୍ମୃତିସବୁ ରୋମନ୍ଥନ କରନ୍ତି ସମ୍ରାଟ ଶାନ୍ତନୁ ।

ସବୁଦିନ ପରି ସେଦିନ ମଧ୍ୟ ସେ ଗଙ୍ଗାକୂଳରେ ବିଚରଣ କରୁଥିଲେ । ଚମକିପଡିଲେ ଏକ ଅଦ୍ଭୁତ ଦୃଶ୍ୟ ଦେଖି । ଗଙ୍ଗାର ପ୍ରବହମାନ ସ୍ରୋତ ଅଟକିଯାଇଛି କାହିଁକି ? ନଦୀଶଯ୍ୟାରେ ପାଣି ଫୁଲିଫୁଲି ଉଠୁଛି । ଆଉ କିଛି ସମୟପରେ ନଦୀ,କୂଳ ଲଙ୍ଘନ କରିବ । ସମ୍ରାଟ ଶାନ୍ତନୁ ବ୍ୟସ୍ତ ଓ ବିବ୍ରତ ହୋଇ କାରଣ ଅନୁସନ୍ଧାନ କଲେ ।

ଏଇତ, ଅଳ୍ପଦୂରରେ ଛିଡାହୋଇଛି ଏକ ଜ୍ୟୋତିର୍ମୟ କିଶୋର । ସେ ଶରନିକ୍ଷେପ କରିଛି ଗଙ୍ଗାମଧ୍ୟକୁ । ଶରବିଦ୍ଧ କରି, ନଦୀ ସ୍ରୋତକୁ ଅଟକାଇ ଦେଇଛି । ବିସ୍ମିତ ହୋଇଗଲେ ଶାନ୍ତନୁ । କିଏ ସେହି ଜ୍ୟୋତିର୍ମୟ ଦେବ ଶିଶୁ ।

ତା ପାଖକୁ ଯାଇ ଠିଆ ହେଲେ । ରୋମାଞ୍ଚିତ ଶରୀର। ନବଯୁବକ ନୟନରେ ଶିଶୁ ସୁଲଭ ପ୍ରଶ୍ନବାଚୀ । ସମ୍ରାଟଙ୍କୁ ପ୍ରଣାମ ଜଣାଇ ସେ ସସ୍ମିତ ବଦନରେ ଚାହିଁରହିଲା ।

''ବତ୍ସ ! ତୁମର ଅପୂର୍ବ ବୀରତ୍ୱ ମୋତେ ମୁଗ୍ଧ କରିଛି । ଏ ପ୍ରକାର ବୀରତାର ପଟାନ୍ତର ନାହିଁ । ମର୍ତ୍ତ୍ୟର କୌଣସି ଶକ୍ତି ଗଙ୍ଗାର ପ୍ରବଳ ସ୍ରୋତକୁ ଶର ସନ୍ଧାନକରି ଅଟକାଇ ଦେଇ ପାରିବ ନାହିଁ । ଦେବ ଶକ୍ତି ବଳରେ ଏହା କେବଳ ସମ୍ଭବ । ତୁମେ ତୁମର ପରିଚୟ ଦେଇ ପାରିବକି ? ମୁଁ ହସ୍ତିନାର ସମ୍ରାଟ ଶାନ୍ତନୁ ।'' କିଶୋର ଯୁବକଟି ଭୂମିଲଗ୍ନ ପ୍ରଣାମ ଜଣାଇ କହିଲା, ''ହେ ରାଜନ୍ ! ମାତାଙ୍କଠାରୁ ଶୁଣିଛି, ମର୍ତ୍ତ୍ୟର ଦେବତା ସମ୍ରାଟ ଶାନ୍ତନୁ ହେଉଛନ୍ତି, ମୋର ପିତା, ମୋର ମାତା ହେଉଛନ୍ତି ଜହ୍ନୁ ଋଷିଙ୍କ କନ୍ୟା ଗଙ୍ଗାଦେବୀ । ମାତାଙ୍କ ନିର୍ଦ୍ଦେଶରେ ମୁଁ ପିତାଙ୍କ ପାଖକୁ ଫେରୁଛି । ଗଙ୍ଗାସ୍ରୋତ ଅତିକ୍ରମ କରିବା ପାଇଁ ମୁଁ ତାକୁ ଅଟକାଇ ଦେଇଛି ? ''

ଠିକ୍ ଏତିକି ବେଳେ ଗଙ୍ଗା ଦେବୀ ଗଙ୍ଗାସ୍ରୋତରୁ ଉଦ୍‌ଥିତ ହୋଇ କହିଲେ,''ହେ ସମ୍ରାଟ ! ମୁଁ ସେଦିନ ନବଜାତ ଶିଶୁଟିକୁ ନେଇଯାଇଥିଲି । ତାର ବାଲ୍ୟଶିକ୍ଷା ସମାପ୍ତ କରିବି ବୋଲି । ସେ ଦାୟିତ୍ୱ ତୁଲାଇ ସାରିଛି । ଅସ୍ତ୍ରବିଦ୍ୟାରେ ଆପଣଙ୍କ ସନ୍ତାନ ପର୍ଶୁରାମଙ୍କଠାରୁ ଆଉରି ନିପୁଣ । ଏଣିକି ତାକୁ ରାଜନୀତି ଶିକ୍ଷାଦେବେ । ଆପଣ ଆପଣଙ୍କର ସନ୍ତାନକୁ ଏଥର ଗ୍ରହଣ କରନ୍ତୁ । ତାର ନାମ ''ଦେବବ୍ରତ''। ଆଖି ପିଛୁଳାକେ ପାଣି ଭିତରେ ମିଶିଗଲେ ଗଙ୍ଗାଦେବୀ । ସ୍ୱପ୍ନିଳ ଆବେଶ ମଧ୍ୟରେ ସ୍ତବ୍ଧ ଚକିତ ଶାନ୍ତନୁ। ପୁତ୍ରକୁ କୋଳାଗ୍ରତ କରି କହିଲେ,'' ବତ୍ସ ! ତୁମ ବୀରତା ତ୍ରିଭୁବନରେ ସମସ୍ତ ବୀରଙ୍କୁ ବିସ୍ମିତ କରିଛି, ଶର ପ୍ରତ୍ୟାହାର କର । ଗଙ୍ଗା ସ୍ରୋତ ମୁକ୍ତିଲାଭ କରୁ ।''

ପିତାଙ୍କ କୋଳରୁ ଉଠିଯାଇ ଦେବବ୍ରତ ଶର ପ୍ରତ୍ୟାହାର କଲେ । ଗଙ୍ଗା ସ୍ରୋତ ପୁଣି ଛଳଛଳ ହୋଇ ପ୍ରବାହିତ ହେଲା ପୂର୍ବପରି । ଶାନ୍ତନୁଙ୍କର ଆନନ୍ଦ ସ୍ରୋତ ତା ସହିତ ତାଳଦେଇଛି । ପୁତ୍ରକୁ ସାଥିରେ ନେଇ ସେ ରାଜପୁରୀକୁ ଫେରିଆସିଲେ । ରାଜପୁରୀରେ ଅପୂର୍ବ ଉନ୍ମାଦନାର କୋଳାହଳ । ରାଜପୁତ୍ର ଫେରିଆସିଛନ୍ତି ।

ଏଥିଭିତରେ ବିତିଯାଇଛି ଅନେକ ଦିନ ।

ବିରହ ବିବଶ ସମ୍ରାଟ ଦିନେ ଯମୁନା କୂଳରେ ବିଚରଣ କରୁଥାନ୍ତି । ହଠାତ୍ ମଧୁଗନ୍ଧରେ ଆମୋଦିତ ହୋଇ ଉଠିଲେ । ଅଦୂରରୁ ଭାସିଆସୁଛି ନୌକାଟିଏ । ତାହା ଯେତିକି ନିକଟତର ହେଉଛି,ସେହି ମଧୁଗନ୍ଧ ସେତିକି ଉଚ୍ଛଳା କରୁଛି ତାଙ୍କ ମନକୁ । ଲକ୍ଷ୍ୟ କଲେ, ଏହି ମଧୁଗନ୍ଧର ଉତ୍ସ ହେଉଛି ନୌକା ବାହୁଥିବା ରୂପବତୀ ତରୁଣୀ । ନାଁ ତା'ର ଯୋଜନଗନ୍ଧା ସତ୍ୟବତୀ । ବୁଝିଲେ, ସେ କୈବର୍ତ୍ତ ରାଜାଙ୍କ କନ୍ୟା । ସତ୍ୟବତୀଙ୍କ ଶରୀର ସୁଗନ୍ଧର ସାଗରଟିଏ । ପାଖକୁ ଯାଇ ବିରହ ତପ୍ତ ସମ୍ରାଟ ମଧୁକଣ୍ଠରେ କହିଲେ, ''ହେ ମଧୁମୟୀ ରୂପସି ! ମୁଁ ତୁମକୁ ମୋର ରାଜମହିଷୀ କରିବାକୁ ଚାହେଁ । ମୁଁ ହେଉଛି ହସ୍ତିନା ସମ୍ରାଟ ଶାନ୍ତନୁ । ତୁମର ମତ କଣ ?''

ଲଜ୍ଜାଶୀଳା ଝିଅଟି ପ୍ରଣାମ ଜଣାଇ କହିଲା, ''ହେ ସମ୍ରାଟ ! ମୁଁ ସ୍ୱାଧୀନ ନୁହେଁ । ମୁଁ ଏକ ଅନୂଢା କୁମାରୀ । ଆପଣଙ୍କୁ କି ପ୍ରତିଶ୍ରୁତି ଦେବି । ପିତା ଯଦି ମୋତେ ଆପଣଙ୍କ ହସ୍ତରେ ଅର୍ପଣ କରିବେ, ମୁଁ ନିଜକୁ ଭାଗ୍ୟବତୀ ମନେକରିବି । ପିତାଙ୍କ ମତ ହିଁ ମୋର ମତ'' ।

ଶାନ୍ତନୁ,ଦାସରାଜାଙ୍କ ପାଖକୁ ଗଲେ । ନିଜର ପରିଚୟ ଦେଇ ମନର ଅଭିଳାଷ ପ୍ରକାଶ କଲେ । ଦାସରାଜା ଆନନ୍ଦିତ ହୋଇ କହିଲେ, ''ହେ ସମ୍ରାଟ ! ମୋର କନ୍ୟା ପାଇଁ ଆପଣ ନିଶ୍ଚିତ ଭାବରେ ଉପଯୁକ୍ତ ପାତ୍ର, ମୋ କନ୍ୟାର ପୁତ୍ରକୁ ଯଦି ଭବିଷ୍ୟତରେ ହସ୍ତିନା ରାଜସିଂହାସନ ପାଇବାର ଅଧିକାର ଦେବେ, ତେବେ ଏ ବିବାହ ସମ୍ଭବ ହେବ ।''

ଶାନ୍ତନୁ ଏଥିରେ ଏକମତ ହୋଇପାରିଲେ ନାହିଁ । ଗଭୀର ଆତ୍ମଗ୍ଲାନି ମଧ୍ୟରେ ପ୍ରତ୍ୟାବର୍ତ୍ତନ କଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଦେବବ୍ରତ ଥାଉଥାଉ କନିଷ୍ଠକୁ ରାଜସିଂହାସନ ଅର୍ପଣ କରିପାରିବେ ନାହିଁ । ଗଙ୍ଗାଦେବୀଙ୍କର ବିଚ୍ଛେଦ ପରେ ସେ ବିରହ ଅନଳରେ ଦଗ୍ଧ ହେଉଥାନ୍ତି । ପ୍ରୀତିପୁଷ୍ପିତା ସତ୍ୟବତୀର ସାନିଧ୍ୟ ମଧ୍ୟ ତାଙ୍କୁ ମିଳିଲା ନାହିଁ । ଦିନକୁ ଦିନ ସେ ଦୁଷ୍ଚିନ୍ତାର ଦଂଶନରେ ଦୁର୍ବଳ ହେବାକୁ ବସିଲେ ।

ପିତାଙ୍କର ମାନସିକ ତଥା ଶାରୀରିକ ଅବସ୍ଥାର ବିପର୍ଯ୍ୟୟରେ ବ୍ୟଥିତ ହୋଇ ଉଠିଲେ ଦେବବ୍ରତ। ପ୍ରକୃତ କାରଣ କଣ ଜାଣି ପାରିଲେ ନାହିଁ । ପିତାଙ୍କ ପାଖକୁ ଆସି ବିନୟାବନତ ହୋଇ ସ୍ୱାସ୍ଥ୍ୟଭଙ୍ଗର କାରଣ ପଚାରିଲେ ।

ଶାନ୍ତନୁ ମରମ ତଳର ଗଭୀରକ୍ଷତ ପୁଅକୁ ଦେଖାଇବେ କିପରି ? ଶ୍ରଦ୍ଧାସିକ୍ତ କଣ୍ଠରେ କହିଲେ ''ବତ୍ସ ! ତୁମେ ମୋର ଏକମାତ୍ର ସନ୍ତାନ । ଏହି ବିଶାଳ ସାମ୍ରାଜ୍ୟର ଭାର ତୁମ ଉପରେ ନିର୍ଭର କରେ । ତୁମେ କିନ୍ତୁ ସଦାସର୍ବଦା ଯୁଦ୍ଧ ସହିତ ସମ୍ପୃକ୍ତ । ମୁଁ ଅତ୍ୟନ୍ତ ଆଶଙ୍କା ଗ୍ରସ୍ତ । ଏ ବିଶାଳ ସାମ୍ରାଜ୍ୟକୁ ସମ୍ଭାଳିବ କିଏ ?

ଦେବବ୍ରତ ଆଶ୍ୱସ୍ତ ହେଲେ । ବୃଦ୍ଧ ମନ୍ତ୍ରୀଙ୍କ ଠାରୁ ସତ୍ୟବତୀଙ୍କ ବିଷୟରେ ସେ ସମସ୍ତ ଘଟଣା ଜାଣିଲେ । ନିଜେ ଦାସ ରାଜାଙ୍କ ପାଖକୁ ଯାଇ, ତାଙ୍କ ପିତାଙ୍କ ସହିତ ସତ୍ୟବତୀଙ୍କ ପରିଣୟ ପ୍ରଶ୍ନ ଉଠାଇଲେ । ଧୀବର ରାଜା, ନିଜର ପୂର୍ବ ସର୍ତ୍ତ ଆରୋପ କରିବାରୁ, ଦେବବ୍ରତ କହିଲେ,''ମୁଁ ପ୍ରତିଜ୍ଞା କରୁଛି, ଜୀବନରେ କେବେ ସିଂହାସନ ଦାବି କରିବି ନାହିଁ ।''

''କିନ୍ତୁ ଆପଣଙ୍କର ପିଲାମାନେ ଏ ସିଂହାସନ ପାଇଁ ଭବିଷ୍ୟତରେ ନିଶ୍ଚୟ ସଂଘର୍ଷ କରିବେ । ଏଥିପାଇଁ କି ପ୍ରତିକାର ଅଛି ?''

''ପ୍ରତିକାର ଖୁବ୍ ସହଜ । ମୁଁ ସର୍ବ ସମକ୍ଷରେ ପୁଣି ପ୍ରତିଜ୍ଞା କରୁଛି ଯେ, ଜୀବନରେ ବିବାହ କରିବି ନାହିଁ । ସତ୍ୟବତୀଙ୍କର ସନ୍ତାନମାନେ ହେବେ ହସ୍ତିନାର ସର୍ବମୟକର୍ତ୍ତା ''

ଲୋକମାନେ ତାଙ୍କୁ ସାଧୁ ସାଧୁ ବୋଲି ପ୍ରଶଂସା କଲେ । ଅଟଳ ପ୍ରତିଜ୍ଞା ପାଇଁ ସେ ଭୀଷ୍ମ ନାମରେ ନାମିତ ହେଲେ । ଏହାପରେ ଶାନ୍ତନୁଙ୍କର ସତ୍ୟବତୀଙ୍କ ସହିତ ମହା ସମାରୋହରେ ବିବାହ ସମ୍ପନ୍ନ ହେଲା । ଭୀଷ୍ମ ତାଙ୍କୁ ଭକ୍ତିର ସହିତ ମା' ଭାବରେ ସେବା କଲେ । ଶାନ୍ତନୁ ଏହି ପିତୃଭକ୍ତିର ପୁରସ୍କାର ସ୍ୱରୂପ ଦେବବ୍ରତଙ୍କୁ ''ଇଚ୍ଛାମୃତ୍ୟୁ'' ବର ପ୍ରଦାନ କଲେ ।



# ।। ଅମ୍ବା ଅମ୍ବିକା ଅମ୍ବାଳିକା ।।

ସତ୍ୟବତୀ ଦୁଇଟି ସନ୍ତାନର ଜନନୀ । ଚିତ୍ରାଙ୍ଗଦ ଓ ବିଚିତ୍ର ବିର୍ଯ୍ୟ । ଆଦ୍ୟ ଯୌବନରେ ଚିତ୍ରାଙ୍ଗଦ ଜଣେ ଗନ୍ଧର୍ବ ଦ୍ୱାରା ନିହତ ହେଲେ । ଭୀଷ୍ମ ବିଚିତ୍ର ବୀର୍ଯ୍ୟଙ୍କୁ ରାଜସିଂହାସନରେ ଅଭିଷେକ କଲେ । ଏହାଦ୍ୱାରା ତାଙ୍କର ପ୍ରତିଜ୍ଞା ପାଳିତ ହେଲା । ରାଜ୍ୟ ପରିଚାଳନାରେ ଭୀଷ୍ମଦେବ ଭାଇଙ୍କୁ ସାହାଯ୍ୟକଲେ ।

ଅନେକଦିନ ପରର ଘଟଣା । ସମ୍ବାଦ ପ୍ରଚାରିତ ହେଲା,କାଶୀ ନରପତି, ତାଙ୍କର ଅନିନ୍ଦ୍ୟ ସୁନ୍ଦରୀ ତିନି କନ୍ୟାଙ୍କର ସ୍ୱୟଂବର ଉତ୍ସବ ପାଳନ କରିବେ । ଅମ୍ବା, ଅମ୍ବିକା, ଅମ୍ବାଳିକା -ରୂପଗୁଣରେ ପ୍ରତ୍ୟେକେ ଅନନ୍ୟା । ରାଜ୍ୟର ପ୍ରତିଟି କୋଣରେ ଉତ୍ସବର ଉଲ୍ଲାସ । ନିର୍ଦ୍ଦିଷ୍ଟ ତିଥିରେ ଭୀଷ୍ମ ସ୍ୱୟଂବର ସଭାରେ ଉପସ୍ଥିତ ହେଲେ । ସମବେତ ରାଜନ୍ୟମଣ୍ଡଳୀ ମଧ୍ୟରେ ପ୍ରଚ୍ଛନ୍ନ ବିଦ୍ରୁପର ଶିହରଣ । ''ଅପରାଜେୟ ଭୀଷ୍ମଙ୍କୁ ବୋଧହୁଏ କନ୍ଦର୍ପ ବାଣ ବ୍ୟତିବ୍ୟସ୍ତ କରିଛି । କାମବାଣ ଜର୍ଜରିତ ବୃଦ୍ଧ ଭୀଷ୍ମଙ୍କ ଶୁଷ୍କ ମନତରୁରେ,କାମନାର ନବ ପଲ୍ଲବ ମୁକୁଳିତ ହୋଇଛି । ସଂଭୋଗର ଦକ୍ଷିଣା ପବନରେ ବୃଦ୍ଧ ଉଡି ଆସିଛନ୍ତି ସ୍ୱୟଂବର ସଭାକୁ । '' ଏମିତି କେତେକଣ କଥା, ଅସରନ୍ତି ଆକ୍ଷେପ ।

ଭୀଷ୍ମ ସମସ୍ତଙ୍କର ଆଶଙ୍କାକୁ ଦୂରକରି ନିଜର ଲକ୍ଷ୍ୟ ପ୍ରକାଶ କଲେ,''ଉପସ୍ଥିତ ରାଜନ୍ୟ ମଣ୍ଡଳୀକୁ ମୁଁ ଆହ୍ୱାନ ଦେଉଛି । ସେମାନଙ୍କର ଶକ୍ତିଥିଲେ ପ୍ରତିରୋଧ କରନ୍ତୁ । ମୁଁ ବଳ ପ୍ରୟୋଗ କରି ରାଜକନ୍ୟାମାନଙ୍କୁ ନେଇଯିବି ହସ୍ତିନାର ନରପତି ବିଚିତ୍ର ବିର୍ଯ୍ୟଙ୍କ ରାଜମହିଷୀ ରୂପେ ରାଜପୁରୀ ମଣ୍ଡନ କରିବା ପାଇଁ ।''

ଆରମ୍ଭ ହେଲା ତୁମୁଳ ସଂଘର୍ଷ । ଅନେକ ରାଜା ପରାଜିତ ହେଲେ । କେତେକ ପ୍ରାଣ ଭୟରେ ଆତ୍ମଗୋପନ କଲେ । ରାଜକନ୍ୟାମାନଙ୍କୁ ରଥରେ ବସାଇ ସେ ନେଇଆସିଲେ । ପଥ ମଧ୍ୟରେ ବାଧାଦେଲେ ସୌବଳ ରାଜା ଶାଲ୍ୱ । ରାଜକନ୍ୟା ଅମ୍ବାଙ୍କ ପ୍ରତି ତାଙ୍କର ଥିଲା ଗଭୀର ଆକର୍ଷଣ । ଯୁଦ୍ଧରେ ଶାଲ୍ୱ ପରାସ୍ତ ହେଲେ । ଅମ୍ବାଙ୍କର ଅନୁରୋଧ କ୍ରମେ, ଭୀଷ୍ମ ତାଙ୍କୁ ହତ୍ୟା ନକରି କ୍ଷମା ଦେଇଥିଲେ ।

ରାଜପୁରୀକୁ ଫେରି ଆସିବା ପରେ ଯଥାରୀତିରେ ବିବାହ ଉତ୍ସବର ଆୟୋଜନ କରାଗଲା । ଅମ୍ବା ଭୀଷ୍ମଙ୍କୁ କହିଲେ, ''ହେ ତ୍ରିଭୁବନ ବିଜୟୀ କ୍ଷତ୍ରିୟବୀର ! ଆପଣ କେବଳ ବୀର ନୁହଁନ୍ତି, ଦୟାଶୀଳ ଓ ବିଚାରବନ୍ତ ମଧ୍ୟ । ମୁଁ ମୋର ମନ ଓ ଶରୀରକୁ ଶାଲ୍ୱଙ୍କ ପଦରେ ଅର୍ପଣ କରିସାରିଛି । ଯାହା ଥରେ ସମର୍ପିତ ତାକୁ ବଳ ପ୍ରୟୋଗ କରି କରାଗତ କରିବାର କିଛି ଅର୍ଥନାହିଁ । ମୋତେକ୍ଷମା ଦିଅନ୍ତୁ ।''

ଭୀଷ୍ମଙ୍କ ମନକୁ କଥାଟା ଭାରି ସ୍ପର୍ଶ କଲା । ସେ ସମ୍ମାନ ସହ ତାଙ୍କୁ ଶାଲ୍ୱଙ୍କ ପାଖକୁ ପଠାଇ ଦେଲେ । ଅମ୍ବା ମହା ଆନନ୍ଦରେ ଫେରିଯାଇ ଶାଲ୍ୱଙ୍କୁ ସମସ୍ତ ଘଟଣା କହିଲେ, ବିବାହର ଆୟୋଜନ ପାଇଁ ଅନୁରୋଧ କଲେ ।

ଶାଲ୍ୱ କୁଣ୍ଠିତ କଣ୍ଠରେ କହିଲେ, ''ଅମ୍ବା ! ତୁମେ ସତରେ ମୋର ପ୍ରାଣାଧିକା । ତୁମକୁ ପତ୍ନୀ ଭାବରେ ସମ୍ମାନିତ ଢଙ୍ଗରେ ପାଇଥିଲେ ନିଜକୁ ଧନ୍ୟ ମନେ କରିଥାନ୍ତି । ତୁମର ଅନୁରୋଧରେ ମୋର ପ୍ରାଣରକ୍ଷା ହୋଇଛି । ମୁଁ ଭୀଷ୍ମଙ୍କର ଦୟାର ପାତ୍ର । ତୁମେ ଭୀଷ୍ମଙ୍କର ଦୟାର ପାତ୍ରୀ ଭାବରେ ମୋ ପାଖକୁ ମଧ୍ୟ ଫେରି ଆସିଛ । ତମକୁ ପତ୍ନୀ ଭାବରେ ଗ୍ରହଣ କରି ଚିରଦିନ ଦୟାର ପରାଭବରେ ଜର୍ଜରିତ ହେବାକୁ ମୁଁ ଚାହେଁନାହିଁ । ତୁମେ ତାଙ୍କ ପାଖକୁ ଫେରିଯାଅ । ତାଙ୍କର ନିର୍ଦ୍ଦେଶ ମତେ କାମ କର । ମୁଁ ଗ୍ରହଣ କରିପାରିବି ନାହିଁ ।''

ଅମ୍ବା ଅସହାୟ ହୋଇ ଫେରି ଆସିଲେ । ଭୀଷ୍ମଙ୍କୁ ସମସ୍ତ ଘଟଣା କହିଲେ । ଭୀଷ୍ମ ଅନ୍ୟ ଉପାୟ ନ ଦେଖି ଭାଇ ବିଚିତ୍ରବୀର୍ଯ୍ୟଙ୍କୁ କହିଲେ, ‘‘ତୁମ ରାଜମହିଷୀ ହେବା ପାଇଁ ମୁଁ ଅମ୍ବାକୁ ସ୍ୱୟଂବର ସଭାରୁ ନେଇ ଆସିଥିଲି । ତୁମେ ତାଙ୍କୁ ଗ୍ରହଣ କର ।’’ ବିଚିତ୍ରବୀର୍ଯ୍ୟ ସାନୁନୟ କଣ୍ଠରେ କହିଲେ, ‘‘ଭାଇ ଆପଣଙ୍କର ଆଦେଶ ମୋ ପାଇଁ ଏକ ପବିତ୍ର କର୍ତ୍ତବ୍ୟ, କିନ୍ତୁ ଯେଉଁ ନାରୀ ନିଜକୁ ଅନ୍ୟପଦରେ ଅର୍ପଣ କରିସାରିଛି, କେଉଁ ପ୍ରତ୍ୟୟର ପ୍ରୀତିଭୂମି ଉପରେ ମୁଁ ପତ୍ନୀ ରୂପେ ତାଙ୍କୁ ଗ୍ରହଣ କରିବି?’’

ଭୀଷ୍ମ ବାଧ କରିପାରିଲେ ନାହିଁ । ଅମ୍ବା କହିଲେ, ‘‘ହେ ବୀର ! ମୋତେ ଯେତେବେଳେ କେହି ଗ୍ରହଣ କରିବାକୁ ସମ୍ମତ ନୁହନ୍ତି, ଆପଣ ତା’ହେଲେ ଗ୍ରହଣ କରନ୍ତୁ । ଆପଣ ମୋତେ ଅପହରଣ କରି ଆଣିନଥିଲେ ମୁଁ ମୋ ଅଭିଳଷିତ ପତିଙ୍କୁ ବରଣ କରି ପାରିଥାନ୍ତି । ଆପଣ ମୋର ଲକ୍ଷ୍ୟଭ୍ରଷ୍ଟ କରିଛନ୍ତି । ତେଣୁ ଆପଣ ହିଁ ମୋର ଭର୍ତ୍ତା । ମୋତେ ଗ୍ରହଣ କରନ୍ତୁ ।’’

ଭୀଷ୍ମ ଏ ନିବେଦନ ଗ୍ରହଣ କରିପାରିଲେ ନାହିଁ । କହିଲେ, ‘‘ତୁମେ ପୁଣିଥରେ ଯାଇ ଶାଲ୍ୱକୁ ଅନୁରୋଧ କର । କୁହ, ମୁଁ ତୁମକୁ ପଠାଇଛି ବୋଲି ।’’ ଗଭୀର ଆତ୍ମଦାହ ମଧ୍ୟରେ ଅମ୍ବା ଯାଇ ଶାଲ୍ୱଙ୍କୁ ନିଜର ଅଭିପ୍ରାୟ ପୁଣି ପ୍ରକାଶ କଲେ । ଶାଲ୍ୱ କୌଣସି ଆନ୍ତରିକତା ନ ଦେଖାଇ, ସେଇ ପୂର୍ବକଥା କହି ଫେରାଇଦେଲେ ।

ସୌନ୍ଦର୍ଯ୍ୟ ଓ ସଦ୍‌ଗୁଣର ପରମ ଅଧିକାରିଣୀ ଅମ୍ବା, ଦୈବ ଦୋଷରୁ ଭାଗ୍ୟର ବିଡ଼ମ୍ବନା ଭୋଗ କଲେ । ଗଭୀର ଅନୁତାପ ମଧ୍ୟରେ ତିଳେ ତିଳେ ସେ ଦଗ୍ଧିଭୂତ ହେଲେ । ତାଙ୍କ ଦୁର୍ଭାଗ୍ୟର ସୂତ୍ରଧର ଭୀଷ୍ମଙ୍କ ପ୍ରତି ସେ ପ୍ରତିଶୋଧପରାୟଣା ହୋଇଉଠିଲେ ।

ଅମ୍ବା, ନିଜ ଦୁର୍ଦ୍ଦଶାର କାହାଣୀ ଯାହାକୁ କହିଲେ, ସେ କେବଳ ବାଚନିକ ସହାନୁଭୂତି ଜଣାଇଲେ । ପ୍ରତ୍ୟକ୍ଷରେ ଭୀଷ୍ମଙ୍କ କ୍ରୋଧର ଶରବ୍ୟ ହେବାକୁ କେହି ସମ୍ମତ ହେଲେନାହିଁ । ଗଭୀର ଯନ୍ତ୍ରଣା ମଧ୍ୟରେ ଅମ୍ବା ବୀରଶ୍ରେଷ୍ଠ ପର୍ଶୁରାମଙ୍କ ଶରଣ ପଶିଲେ । ନିଜର କରୁଣ କାହାଣୀ ତାଙ୍କୁ ଜଣାଇଲେ । ପର୍ଶୁରାମ କହିଲେ ‘‘ଅମ୍ବା ! ମୁଁ ଶାଲ୍ୱକୁ ଅନୁରୋଧ କରୁଛି । ତମେ ଯାଅ, ସେ ତୁମକୁ ଗ୍ରହଣ କରିବେ ।’’

‘‘ହେ ପ୍ରଭୋ ! ସେ ତାଙ୍କ ଅନିଚ୍ଛା ପ୍ରକାଶ କରିସାରିଛନ୍ତି । ମୁଁ ଏ ଜୀବନରେ ଆଉ ବିବାହ କରିବାକୁ ଚାହେଁ ନାହିଁ । ସୌଭାଗ୍ୟ ମୋଠାରୁ ବହୁତ ଦୂରରେ । ଯେଉଁ ଭୀଷ୍ମର ଅବିଚାର ପାଇଁ ମୋତେ ଏତେ ଦୁଃଖ ନିର୍ଯାତନା ଭୋଗ କରିବାକୁ ପଡ଼ିଲା, ମୁଁ ତାଙ୍କ ଉପରେ ପ୍ରତିଶୋଧ ନେବାକୁ ଚାହେଁ । ଆପଣ ମୋତେ ନିଜର କନ୍ୟା ଭାବି ସାହାଯ୍ୟ କରନ୍ତୁ ’’।

ପର୍ଶୁରାମ କ୍ଷତ୍ରିୟ ବିରୋଧୀ । ଏ ପ୍ରସ୍ତାବ ତାଙ୍କର ଭାବକୁ ଉଦ୍ଦୀପିତ କଲା । ଦିନେ ନିଜର ଶିଷ୍ୟଥିବା ଗଙ୍ଗାପୁତ୍ର ଭୀଷ୍ମଙ୍କ ସହିତ, ତାଙ୍କର ଭୀଷଣ ଯୁଦ୍ଧ ହେଲା । ପର୍ଶୁରାମ ଭୀଷ୍ମଙ୍କୁ ପରାଜିତ କରିପାରିଲେ ନାହିଁ । ଶିଷ୍ୟ ପାଖରେ ଗୁରୁର ପରାଜୟକୁ ସେ ଗୌରବ ବୋଲି ମନେକଲେ ।

ଅନୁତପ୍ତ ଅମ୍ବା ହିମାଳୟକୁ ଚାଲିଗଲେ । ବହୁବର୍ଷ ତପସ୍ୟା କରିବା ପରେ ଶିବ ସନ୍ତୁଷ୍ଟ ହେଲେ । ପରଜନ୍ମରେ ଅମ୍ବା ଭୀଷ୍ମଙ୍କୁ ମାରିପାରିବେ ବୋଲି ବର ପ୍ରଦାନ କଲେ । ପରଜନ୍ମ !!! ଏତେଦିନ ଅପେକ୍ଷା କରିବାକୁ ପଡ଼ିବ ? ନା.. ଅସହ୍ୟ ଏ ପ୍ରତୀକ୍ଷା । ଅମ୍ବା ଅଗ୍ନିରେ ପ୍ରବେଶ କରି, ପରଜନ୍ମକୁ ଶୀଘ୍ର ଆମନ୍ତ୍ରଣ କଲେ ।

ପରଜନ୍ମର ପରିଣତି ।

ଦ୍ରୁପଦ ରାଜାଙ୍କ କନ୍ୟାଭାବରେ ଅମ୍ବା ଜନ୍ମଗ୍ରହଣ କଲେ । ନାମ ରହିଲା ଶିଖଣ୍ଡିନୀ । ସେ ଦେଖିଲେ ପିତାଙ୍କ ରାଜଭବନ ସମକ୍ଷରେ ଏକ ଅକ୍ଷତ ଅମଳିନ ପୁଷ୍ପହାର ଝୁଲୁଛି । ମନେପଡ଼ିଲା, ସେଇ ହାରଟିକୁ ସେ ପୂର୍ବେ ଶିବଙ୍କ ଠାରୁ ପାଇଥିଲେ । ଏହାକୁ ଯେ ପିନ୍ଧିବ ସେ ଭୀଷ୍ମଙ୍କର ଶତ୍ରୁ ହେବ ବୋଲି ବର ମିଳିଥିଲା । ପୂର୍ବଜନ୍ମରେ ଅମ୍ବା ଦ୍ରୁପଦରାଜାଙ୍କର ଦୟାଭିକ୍ଷା କରିବାକୁ ଆସି ବିଫଳ ହୋଇ ହାରଟିକୁ ଏଠାରେ ଲମ୍ବାଇ ଦେଇ ଯାଇଥିଲେ । ଏ ହାରଟି ସେଇଦିନୁ ଏଠାରେ ଅଛି । ଭୀଷ୍ମଙ୍କର ଶତ୍ରୁ ହେବା ଭୟରେ ତାକୁ କେହି ଛୁଇଁନାହାନ୍ତି । ଏ ଜନ୍ମରେ ସେ ସେହି ହାରଟିକୁ ଆଣି ନିଜଗଳାରେ ଲମ୍ବାଇ ଦେଲେ । ପିତା କ୍ରୋଧ ଜର୍ଜରିତ ହୋଇ ଭୀଷ୍ମଙ୍କ ଭୟରେ କନ୍ୟାକୁ ନିଜ ଉଆସକୁ ବହିଷ୍କାର କଲେ । ଶିଖଣ୍ଡିନୀ ଚାଲିଗଲେ ବଣକୁ । କଠୋର ତପସ୍ୟା କରି ପୁରୁଷତ୍ୱ ଲାଭ କଲେ ଏବଂ 'ଶିଖଣ୍ଡୀ' ନାମରେ ଅଭିହିତ ହେଲେ । ମହାଭାରତର ଯୁଦ୍ଧରେ ଅର୍ଜୁନଙ୍କ ପୁରୋଭାଗରେ ରହି, ସେ ଭୀଷ୍ମଙ୍କ ଉପରେ ପ୍ରତିଶୋଧ ନେଇଥିଲେ ।

ବିଚିତ୍ରବୀର୍ଯ୍ୟ ସୁରା, ନାରୀ ଓ ସମ୍ଭୋଗ ଭିତରେ ସର୍ବଦା ଲିପ୍ତ ଥାନ୍ତି । ମୁକ୍ତ ଯୌନାଚାର ଓ ଅସଂଯତ ଜୀବନ ଭିତରେ ତାଙ୍କର ସ୍ୱାସ୍ଥ୍ୟ ହାନିହେଲା । ଶେଷରେ ସେ ଅକାଳ ମୃତ୍ୟୁବରଣ କଲେ । ସିଂହାସନରେ ଅଭିଷିକ୍ତ ନ ହେଲେ ମଧ, ରାଜ୍ୟଭାର ବୁଝିବାକୁ ବାଧ ହେଲେ ଭୀଷ୍ମଦେବ । ମର୍ମଦାହ ଭିତରେ ଭାଙ୍ଗିପଡ଼ିଲେ ସତ୍ୟବତୀ!

ଭାଗ୍ୟର ବିଡ଼ମ୍ବନା । ନିଜର ପୁତ୍ରମାନେ ସିଂହାସନର ଅଧିକାରୀ ହେବେ ବୋଲି, ଜ୍ୟେଷ୍ଠପୁତ୍ର ଦେବବ୍ରତ ଭୀଷ୍ମ, ରାଜପଦରୁ ବଞ୍ଚିତ ହେଲେ । ଭାଗ୍ୟ ସତ୍ୟବତୀଙ୍କ ସ୍ୱପ୍ନ ସଫଳ କଲା ନାହିଁ । ସବୁଠାରୁ ଅତି ଦୁଃଖଦାୟକ ଘଟଣା ହେଉଛି, ବର୍ତ୍ତମାନ ପରିସ୍ଥିତିରେ ଭରତ ବଂଶର ଚିହ୍ନ ଲୋପ ହୋଇଯିବ । ନିଜର ଦୁଇପୁତ୍ର ଅପୁତ୍ରିକ ହୋଇ ସଂସାର ତ୍ୟାଗ କଲେ । ଭୀଷ୍ମ ବିବାହ କରିବେ ନାହିଁ ବୋଲି ପ୍ରତିଜ୍ଞାବଦ୍ଧ । ଯୌବନଭରା ଦୁଇପୁତ୍ରବଧୂଙ୍କୁ ବୈଧବ୍ୟ ଯନ୍ତ୍ରଣା ଭିତରେ ସାରାଜୀବନ ଜର୍ଜରିତ ହେବାକୁ ପଡ଼ିବ । ସତ୍ୟବତୀଙ୍କ ମନ ଅସ୍ଥିର ହୋଇଉଠିଲା ।

ପୁତ୍ରବଧୂମାନଙ୍କୁ ବଂଶଲୋପର ସୂଚନା ଦେଇ ସତ୍ୟବତୀ ଗଭୀର ଉତ୍କଣ୍ଠା ପ୍ରକାଶ କଲେ । ସାମାଜିକ ପ୍ରଥା ଅନୁସାରେ ବଂଶ ରକ୍ଷା ପାଇଁ ପୁତ୍ର ସନ୍ତାନ ସୃଷ୍ଟି କରିବାକୁ ସେ ରାଜବଧୂମାନଙ୍କୁ ପ୍ରବର୍ତ୍ତାଇଲେ । ଭୀଷ୍ମଙ୍କୁ ଅନୁରୋଧ କଲେ, ବଂଶରକ୍ଷାର ନିମିତ୍ତ ହେବାକୁ । ଭୀଷ୍ମ ନିଜର ପ୍ରତିଜ୍ଞାଭଙ୍ଗ କରିବାକୁ ସମ୍ମତ ହେଲେ ନାହିଁ । ସତ୍ୟବତୀ କହିଲେ, "ପୁତ୍ର ! ମୁଁ ଗଭୀର ଧର୍ମସଂକଟ ଭିତରେ ପଡ଼ିଛି । ତୁମେ ଯଦି ଆଦେଶ ଦେବ, ତା'ହେଲେ ମୁଁ ବ୍ୟାସ ମୁନିଙ୍କୁ ସ୍ମରଣ କରିବି । ସେ ମଧ ତୁମ ପରି ମୋର ପୁତ୍ର । ବଂଶରକ୍ଷା ପାଇଁ ତାଙ୍କର ମଧ ଦାୟିତ୍ୱ ଓ ଅଧିକାର ଅଛି । ମୁଁ ଅବିବାହିତା ଥିଲାବେଳେ ନୌକା ବାହୁଥିଲି ପିତାଙ୍କୁ ସାହାଯ୍ୟ କରିବି ବୋଲି । ମୋ ରୂପଗୁଣରେ ବିମୋହିତ ହୋଇ ମହର୍ଷି ପରାଶର ମୋ ଠାରେ ଏକ ପୁତ୍ରସନ୍ତାନ ସୃଷ୍ଟି କରିଥିଲେ । ସେ ସନ୍ତାନଟି ଦ୍ୱୀପରେ ଜନ୍ମ ହୋଇଥିଲା ବୋଲି, ତାଙ୍କ ନାମ ଦ୍ୱୈପାୟନ । କୃଷ୍ଣଙ୍କ ପରି ରୂପ ଓ ଗୁଣର ଅଧିକାରୀ ହୋଇଥିବାରୁ ତାଙ୍କୁ ମଧ କୃଷ୍ଣ କୁହାଯାଏ । ବେଦକୁ ସେ ବ୍ୟାସ ବା ଭାଗ କରିବାରୁ, ତାଙ୍କୁ ବେଦବ୍ୟାସ କୁହାଯାଏ । ଜାତ ହେବାମାତ୍ରେ ତପସ୍ୟା

କରିବାକୁ ପିତାଙ୍କ ସହିତ ସେ ବନକୁ ଚାଲିଗଲେ । ମୋତେ ବର ମିଳିଛି, ମୁଁ ତାଙ୍କୁ ଯେତେବେଳେ ସ୍ମରଣ କରିବି, ସେ ସଙ୍ଗେ ସଙ୍ଗେ ଆସି ମୋର ମନକାମନା ପୂର୍ଣ୍ଣ କରିବେ । ତୁମେ ଇଚ୍ଛାକଲେ ମୁଁ ତାଙ୍କୁ ସ୍ମରଣ କରିବି । ବଂଶରକ୍ଷା ପାଇଁ ଅନୁରୋଧ କରିବି ।''

ଭୀଷ୍ମ ଏ ପ୍ରସ୍ତାବରେ ଏକମତ ହେଲେ । ସେହି ମୁହୂର୍ତ୍ତରେ ସତ୍ୟବତୀ ବ୍ୟାସଦେବଙ୍କୁ ସ୍ମରଣ କଲେ । ବ୍ୟାସଙ୍କର ଆବିର୍ଭାବ ଦେଖି ସେ ଆନନ୍ଦରେ ବିହ୍ୱଳ ହୋଇଉଠିଲେ । ମାତାଙ୍କ ଦର୍ଶନରେ ମହର୍ଷି ବ୍ୟାସଙ୍କର ମଧ୍ୟ ସୃଷ୍ଟି ହେଲା ଅପାର ଆନନ୍ଦ । ତତ୍ପରେ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ ସତ୍ୟବତୀ । ବଂଶରକ୍ଷା ପାଇଁ ପୁତ୍ରବଧୂମାନଙ୍କୁ ପୁତ୍ର ସମ୍ଭବା କରିବା ନିମିତ୍ତ ଅନୁରୋଧ କଲେ ।

ବଂଶରକ୍ଷା ତଥା ରାଜ୍ୟରକ୍ଷା ପାଇଁ ମାତାଙ୍କ ଆଦେଶକୁ ପାଳନ କଲେ ବ୍ୟାସଦେବ । ସତ୍ୟବତୀ ବୋହୂମାନଙ୍କୁ ସନ୍ତାନ ସୃଷ୍ଟି ପାଇଁ ଆଦେଶ ତଥା ଅନୁମତି ଦେଲେ । ଅମ୍ବିକା, ମୁନିଙ୍କର କୃଷ୍ଣରୂପ, ବିପୁଳ ଜଟାଭାର, ବର୍ଦ୍ଧିତ ଶ୍ମଶ୍ରୁରାଶି, ହୋମ ଧୂମସିକ୍ତ ଶରୀରର ଉଗ୍ରଗନ୍ଧ ସହ୍ୟ କରି ପାରିଲେ ନାହିଁ । ମୁନିଙ୍କର ଅଭିଗମନ ସମୟରେ ଭୟରେ ସେ ଆଖିବୁଜି ଦେଲେ । ଏହା ଫଳରେ ଅମ୍ବିକା ଯେଉଁ ପୁତ୍ର ଲାଭ କଲେ, ସେ ଅମିତ ଶକ୍ତି ସମ୍ପନ୍ନ ହେଲେ ମଧ୍ୟ ଥିଲେ ଆଜନ୍ମ ଅନ୍ଧ । ଯାହାଙ୍କ ନାମ ହେଲା 'ଧୃତରାଷ୍ଟ୍ର' ।

ଅନ୍ଧପୁତ୍ର ରାଜଗାଦି ନିମିତ୍ତ ଯୋଗ୍ୟ ନୁହେଁ, ତେଣୁ ଦ୍ୱିତୀୟ ସନ୍ତାନ ପାଇଁ ସତ୍ୟବତୀ ତାଙ୍କୁ ଅନୁରୋଧ କଲେ । ଅମ୍ବାଳିକା ହେବେ ଏ ସନ୍ତାନର ଜନନୀ । ରାଜବଧୂ ଅମ୍ବାଳିକା ଋଷିଙ୍କର ରୂପ ଦର୍ଶନରେ ପାଣ୍ଡୁର ଓ ବିଷର୍ଣ୍ଣ ଦେଖାଗଲେ ଫଳରେ, ତାଙ୍କ ଗର୍ଭରୁ ଯେଉଁ ସନ୍ତାନ ଜାତ ହେଲା ସେ ସର୍ବଗୁଣ ସମ୍ପନ୍ନ ହେଲେ ମଧ୍ୟ ପାଣ୍ଡୁର ଦେଖାଗଲା । ତାର ନାମ ହେଲା ''ପାଣ୍ଡୁ'' । ଅମ୍ବିକାଙ୍କ ଗର୍ଭରୁ ଆଉ ଏକ ନିଖୁଣ ସନ୍ତାନ ପାଇଁ ଅଳିକଲେ ମା' ସତ୍ୟବତୀ । ସନ୍ତାନଟି ହେବ ତ୍ରୁଟିଶୂନ୍ୟ ଓ ସର୍ବଗୁଣ ସମ୍ପନ୍ନ ।

ଅମ୍ବିକା ପ୍ରଥମ ଥର ଏତେ ଭୟଭୀତ ହୋଇ ଯାଇଥିଲେ ଯେ ଅଭିଗମନ ପାଇଁ ନିଜକୁ ପ୍ରସ୍ତୁତ କରିପାରିଲେ ନାହିଁ । ନିଜର ବିଶ୍ୱସ୍ତ ଦାସୀକୁ ନିଜ ବେଶରେ ସଜ୍ଜିତ କରି ମୁନିସମାଗମ ପାଇଁ ପଠାଇଦେଲେ । ତା ଗର୍ଭରୁ ଯେଉଁ ପୁତ୍ର ସନ୍ତାନ ଜାତ ହେଲା, ସେ ହେଲେ ସର୍ବଗୁଣ ସମ୍ପନ୍ନ ସର୍ବବିଦ୍ୟା ପାରଙ୍ଗମ । ଧର୍ମରାଜ ଯମ, ମାଣ୍ଡବ୍ୟ ଋଷିଙ୍କ ଦ୍ୱାରା ଅଭିଶପ୍ତ ହୋଇ ଏହି ଦାସୀ ଗର୍ଭରେ ଜନ୍ମଗ୍ରହଣ କଲେ । ତାଙ୍କ ନାଁ ହେଲା 'ବିଦୁର' ।

ଧୃତରାଷ୍ଟ୍ର, ପାଣ୍ଡୁ , ବିଦୁର ଓ ଭୀଷ୍ମଙ୍କ ତତ୍ତ୍ୱାବଧାନରେ ପାଳିତ ହେଲେ ।



──────────────── ତିନି

## ।। ଗାନ୍ଧାରୀ ।।

ଗାନ୍ଧାର ଓ ହସ୍ତିନା ମଧ୍ୟରେ ବନ୍ଧୁତା ନିବିଡ଼ । ଆଜି ଗାନ୍ଧାର ରାଜପୁରୀରେ ହସ୍ତିନାର ବିଶିଷ୍ଟ ଅତିଥି ଆସି ପହଞ୍ଚିଛନ୍ତି । ରାଜପୁରୀ ଆନନ୍ଦରେ ଉଛୁଳୁଛି କିନ୍ତୁ ଭିତରେ ଭିତରେ ଖେଳୁଛି ଏକ ଚାପା ଗୁଞ୍ଜରଣ । ସେ ଭାଷା, ଗାନ୍ଧାରରାଜା ସୁବଳ ଓ ରାଜରାଣୀଙ୍କ ପାଇଁ ଯେତିକି ବେଦନାଦାୟକ, ସେତିକି ଆନନ୍ଦଦାୟକ ମଧ୍ୟ । ଉଭୟଙ୍କ ମୁହଁରେ ମାଖି ହୋଇଯାଇଛି ଆନନ୍ଦ ଏବଂ ବିଷାଦର ଏକ ଅବ୍ୟକ୍ତରାଗ ।

ହସ୍ତିନାର ମନ୍ତ୍ରୀ ସଞ୍ଜୟ ଆସିଛନ୍ତି ଏକ ବିଶେଷ ବାର୍ତ୍ତା ନେଇ । ମହାରଥୀ ଭୀଷ୍ମ ଗାନ୍ଧାର ରାଜାଙ୍କ ପାଖକୁ ଏକ ଶୁଭସମ୍ବାଦ ପଠାଇଛନ୍ତି । ସେ ଚାହାନ୍ତି ଗାନ୍ଧାର ରାଜକନ୍ୟା ଗାନ୍ଧାରୀ ହସ୍ତିନାର ରାଜବଧୂ ହେବେ, ହସ୍ତିନାରାଜ ଧୃତରାଷ୍ଟ୍ରଙ୍କୁ ବରଣକରି । ପ୍ରସ୍ତାବଟି ପାଇଲାକ୍ଷଣି ରାଜା ସୁବଳଙ୍କ ହସ ଉଛୁଳା ମୁହଁରେ ନିରବତାର ପାତଳ ପର୍ଦାଟିଏ ଢ଼ାଙ୍କି ହୋଇଗଲା, ତାପରେ ପରେ ସେ ନିଜକୁ ସଂଯତ କରିନେଇ ସ୍ୱାଭାବିକ ପରିବେଶ ସୃଷ୍ଟିକଲେ । ଚତୁର ସଞ୍ଜୟ ତାଙ୍କ ମନର କଥାଟିକୁ ଛଡ଼ାଇନେଇ କହିଲେ, "ଆପଣ ଯୁବରାଜ ଧୃତରାଷ୍ଟ୍ରଙ୍କୁ ଚକ୍ଷୁହୀନ ବୋଲି ହୁଏତ କିଛି ଭାବୁଥିବେ, କିନ୍ତୁ ମନେରଖନ୍ତୁ ଏ ପ୍ରସ୍ତାବ ଏକ ସାଧାରଣ ପ୍ରସ୍ତାବ ନୁହେଁ । ସର୍ବଦର୍ଶୀ ଭୀଷ୍ମଦେବ ଏକ ଦୈବୀ ସଂକେତ ପାଇ ପ୍ରସ୍ତାବଟିକୁ ପଠାଇଛନ୍ତି । ପ୍ରଥମ କଥା ହେଲା, ଦୃଷ୍ଟିହୀନ ଧୃତରାଷ୍ଟ୍ର ତୃତୀୟ ନୟନର ଅଧିକାରୀ, ଏହା ଏକ ବିରଳ ସୌଭାଗ୍ୟ । ଗାନ୍ଧାର ରାଜକନ୍ୟା ତାଙ୍କୁ ବିବାହ କଲେ ସେ ହେବେ ତାଙ୍କର 'ନେତ୍ରମଣି', ହସ୍ତିନା ସାମ୍ରାଜ୍ୟର ନେତ୍ରମଣି ମଧ୍ୟ । ପ୍ରଜ୍ଞାଚକ୍ଷୁ ଯୁକ୍ତ ଧୃତରାଷ୍ଟ୍ରଙ୍କର ଶାରୀରିକ ଚକ୍ଷୁହେବେ ରାଜନନ୍ଦିନୀ ଗାନ୍ଧାରୀ ।

ଆଉ ଏକ ଗୂଢ଼ କଥା, ରାଜକନ୍ୟା ଗାନ୍ଧାରୀ ମତୀଦେବୀଙ୍କ ମର୍ତ୍ତ୍ୟ ଭୂମିକାରେ ଦେବଅଂଶରେ ଜାତ । ଭୀଷ୍ମଦେବ ଜାଣିଛନ୍ତି, ଧୃତରାଷ୍ଟ୍ର ମର୍ତ୍ତ୍ୟରେ ମତୀଦେବୀଙ୍କୁ ବିବାହ କରିବେ । ସେ ମଧ୍ୟ ଶହେ ସନ୍ତାନ ଲାଭ କରିବା ପାଇଁ ଶିବଙ୍କ ବର ପାଇଛନ୍ତି । ଧୃତରାଷ୍ଟ୍ର, ତାର ନିମିତ୍ତ ହେବା ପାଇଁ ବିଧି ପ୍ରେରିତ । ଏ ପରିଣୟ ପ୍ରସ୍ତାବ ବିଧିର ବିଧାନ ବୋଲି ଭାବିବାକୁ ହେବ । ଏହି ଶୁଭମୟ ବନ୍ଧନ ପାରିବାରିକ, ସାମାଜିକ, କୂଟନୈତିକ ଏବଂ ସାମାଜିକ ସମୃଦ୍ଧି ଦିଗରେ ସହାୟକ ହେବ । ଆପଣ ଏଥର ବିଚାର କରନ୍ତୁ ରାଜନ୍ ।"

ରାଜା ସୁବଳ, ଅଲିଅଳୀ କନ୍ୟାର ମତ ବିରୁଦ୍ଧରେ ହଠାତ୍ କିଛି କରିପାରିବେ ନାହିଁ । ପିତା ମାତା ଉଭୟେ ଗାନ୍ଧାରୀଙ୍କର ମତ ନେଲେ । ଯୁବରାଜ ଶକୁନିଙ୍କର ମଧ୍ୟ ମତ ଲୋଡ଼ାଗଲା । ଗାନ୍ଧାରୀ କହିଲେ, ''ବିଭୁ ଇଚ୍ଛା ପୂରଣ ହେଉ । ଆଶଙ୍କାର କଳାମେଘ ଦୂରେଇ ଗଲା ।

ଦ୍ୱିତୀୟ ପ୍ରସ୍ତାବ ହେଲା, ସ୍ୱୟଂବର ସଭା ଅନୁଷ୍ଠିତ ହେବ ନାହିଁ ଗାନ୍ଧାର ରାଜ୍ୟରେ । ଅନେକ କାରଣ ଏଥିପାଇଁ ଦାୟୀ । ପରିଣୟ ଉତ୍ସବ ହସ୍ତିନାରେ ଯଥା ବିଧିରେ ଅନୁଷ୍ଠିତ ହେବ । ଏହା ଏକ ବେଦନା ଦାୟକ ପ୍ରସ୍ତାବ ହେଲେ ମଧ୍ୟ ରାଜା ସୁବଳ ଗ୍ରହଣ କଲେ ପରିସ୍ଥିତି ଦୃଷ୍ଟିରୁ ।

ନିର୍ଦ୍ଦିଷ୍ଟ ତିଥିରେ ପୁଣ୍ୟ କାର୍ଯ୍ୟ ସମ୍ପାଦିତ ହେଲା । ଗାନ୍ଧାରୀଙ୍କ ଅସହାୟ ଉଜୁଡ଼ା ମନକୁ ସଜାଡ଼ି ନେବାପାଇଁ, ସାଥିରେ ଗଲେ ଭାଇ ଶକୁନି, ଗାନ୍ଧାର ଯୁବରାଜ । ସେ କିଛିଦିନ ସେଠାରେ ରହିବେ ଭଉଣୀ ପାଖରେ । ସେ ମନ ସ୍ଥିର କରିନେଇ ସାରିବା ପରେ ଫେରିଆସିବେ ଗାନ୍ଧାରକୁ ।

ଗାନ୍ଧାରୀ ହସ୍ତିନାପୁରରେ ପହଞ୍ଚିବା ପରେ ଅନ୍ଧସ୍ୱାମୀଙ୍କୁ ଦେଖି ତାଙ୍କ ଭିତରେ ଏକ ଭାବାନ୍ତର ସୃଷ୍ଟିହେଲା । ସ୍ୱାମୀ ଭକ୍ତି ଦୃଷ୍ଟିରୁ, ତାଙ୍କପରି ଅନ୍ଧ ଜୀବନ ଯାପନ କରିବାକୁ ଆଖିରେ 'ଅନ୍ଧପୁଟୁଳି' ଭିଡ଼ିଦେଲେ । ଅବଶ୍ୟ ଏ ସିଦ୍ଧାନ୍ତ, ଥିଲା ଅନ୍ୟମାନଙ୍କ ପାଇଁ ରହସ୍ୟମୟ । କିଏ କେତେ ପ୍ରକାର ଅର୍ଥ ଆରୋପ କରୁଥିଲେ ନିଭୃତରେ... ମନେ ମନେ । ତେବେ ବିଶ୍ୱର ବହୁ ବିରଳ ଘଟଣା ଏଇ ପରି ରହସ୍ୟମୟ ।

ଗାନ୍ଧାରୀ କାଳକ୍ରମେ ଶତପୁତ୍ର ଲାଭ କଲେ । ତାହା ମଧ୍ୟ ରହସ୍ୟମୟ ଏବଂ ରୋମାଞ୍ଚକର । ତାଙ୍କର ଜ୍ୟେଷ୍ଠ ପୁତ୍ର ଦୁର୍ଯ୍ୟୋଧନ । ମହାଭାରତର ଏକ ମହାନ୍ ବିତର୍କିତ ଚରିତ୍ର । ତଥାପି ମହାକାବ୍ୟର ଅନ୍ୟ ଏକ ମହାନାୟକ ଦୁର୍ଯ୍ୟୋଧନ ।

ଗାନ୍ଧାରୀଙ୍କର ଏକ ମାତ୍ର କନ୍ୟା ଥିଲା, ତାର ନାମ ଦୁଃଶଳା । ଦୁର୍ଯୋଧନଙ୍କର କନିଷ୍ଠା ଭଗିନୀ । ସେ ସିନ୍ଧୁରାଜ୍ୟର ରାଜା ଜୟଦ୍ରଥଙ୍କୁ ବିବାହ କରିଥିଲେ ।

ସବୁଠାରୁ କୌତୂହଳ ପୂର୍ଣ୍ଣ ବିଷୟ ହେଉଛି, ଦୁର୍ଯ୍ୟୋଧନ ସମେତ ଶହେଭାଇଙ୍କ ନାମର ଆଦ୍ୟବର୍ଣ୍ଣ ହେଉଛି 'ଦ' । ଦୁଃଶାସନ ତାଙ୍କର ଦ୍ୱିତୀୟ ଭାଇ ଏବଂ ସମସ୍ତ ଅପଚିନ୍ତନ ଏବଂ ଅପକର୍ମର ସୂତ୍ରଧର । ସବୁଭାଇଙ୍କର ମନ ଓ ପ୍ରକୃତି ଏକ । ଦୁର୍ଯ୍ୟୋଧନ ସେମାନଙ୍କର ନେତା । 'ମଣିଷ ଗୋଟିକେ ପ୍ରକୃତି ଗୋଟିଏ ସତେ ଯେପରି ଏହି ମନସ୍ତାତ୍ତ୍ୱିକ ମହାସତ୍ୟ, ସେମାନଙ୍କଠାରେ କେତେକାଂଶରେ ଭୁଲ୍ ପ୍ରମାଣିତ ହୋଇଛି ।

## ।। କୁନ୍ତୀ ।।

ଶୂରସେନ ଯଦୁବଂଶର ରାଜା, ବସୁଦେବ ତାଙ୍କର ପୁତ୍ର । ପୃଥା ଏବଂ ଶ୍ରୁତଶ୍ରବା ତାଙ୍କର କନ୍ୟା । ରାଜା କୁନ୍ତିଭୋଜ ଶୂରସେନଙ୍କର ପିଉସୀପୁଅ ଭାଇ ଓ ସେ ନିଃସନ୍ତାନ ଥିଲେ । ତାଙ୍କର ଅନୁରୋଧ କ୍ରମେ ଶୂରସେନ ନିଜର କନ୍ୟାକୁ ପରିପାଳନ ପାଇଁ ତାଙ୍କୁ ସମର୍ପଣ କରିଥିଲେ । ପାଳକ ପିତା କୁନ୍ତିଭୋଜଙ୍କ ନାମ ଅନୁସାରେ ପୃଥାଙ୍କର ଅନ୍ୟନାମ ହେଲା 'କୁନ୍ତୀ' । ସେ ଶ୍ରୀକୃଷ୍ଣଙ୍କର ପିଉସୀ । 'ଚେଦି' ରାଜାଶ୍ରୁତଶ୍ରବାଙ୍କୁ ବିବାହ କରିଥିଲେ, ଶିଶୁପାଳ ତାଙ୍କର ସନ୍ତାନ ।

# କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

କୁନ୍ତୀଙ୍କ ପିଲାବେଳର କଥା । ଥରେ ମୁନିଶ୍ରେଷ୍ଠ ଦୁର୍ବାସା ତାଙ୍କର ରାଜପୁରୀର ଅତିଥି ହୋଇଥିଲେ । ମହାକ୍ରୋଧୀ ଦୁର୍ବାସାଙ୍କ ପ୍ରତି ସମସ୍ତଙ୍କର ଭାରି ଭୟ । କୁନ୍ତୀ ତାଙ୍କର ସେବା ଓ ପରିଚର୍ଯ୍ୟାରେ ନିଯୁକ୍ତ ଥାଆନ୍ତି । ଦୀର୍ଘ ଏକ ବର୍ଷ ସେ ମୁନିଙ୍କର ସେବାକରି ତାଙ୍କର ସନ୍ତୋଷ ଲାଭ କଲେ । ଦୁର୍ବାସା ଅତ୍ୟନ୍ତ ସନ୍ତୁଷ୍ଟ ।

ମୁନି ଯୋଗବଳରେ ଜାଣିପାରିଲେ, କୁନ୍ତୀ ଭବିଷ୍ୟତରେ ହେବେ ସନ୍ତାନହୀନା । ଏହି ଦୁର୍ଯୋଗରୁ ରକ୍ଷା କରିବା ପାଇଁ ସେ ରାଜକନ୍ୟାଙ୍କୁ ଅଭିଚାରଯୁକ୍ତ ମନ୍ତ୍ର ପ୍ରଦାନ କଲେ । କହିଲେ, ''ଏହିମନ୍ତ୍ର ଆବୃତ୍ତି କରି ତୁମେ ଯେଉଁ ଦେବତାଙ୍କୁ ସ୍ମରଣ କରିବ, ସେ ତୁମ ପାଖକୁ ଆସିବେ ଓ ତାଙ୍କ ସାନିଧ୍ୟରୁ ତୁମେ ପୁତ୍ର ସନ୍ତାନ ଲାଭ କରିପାରିବ ।''

କୁମାରୀକନ୍ୟା କୁନ୍ତୀ । ମନ୍ତ୍ରର ତାତ୍ପର୍ଯ୍ୟ ବୁଝିବାର ଶକ୍ତି ତାଙ୍କ ପାଖରେ ନାହିଁ । ସେ ଅତ୍ୟନ୍ତ ଭାବପ୍ରବଣା ଓ କୌତୂହଳ ପରାୟଣା । ମନ୍ତ୍ର ଶକ୍ତିର ସତ୍ୟତା ପରୀକ୍ଷା କରିବା ପାଇଁ ସେ ସୂର୍ଯ୍ୟ ଦେବତାଙ୍କୁ ସ୍ମରଣ କରି ମନ୍ତ୍ର ଆବୃତ୍ତି କଲେ । ସଙ୍ଗେ ସଙ୍ଗେ ଉଜ୍ଜ୍ୱଳ ଆକାଶ, ଅନ୍ଧକାର ହୋଇଗଲା । ସୂର୍ଯ୍ୟଦେବତା ତାଙ୍କର ସ୍ୱର୍ଣ୍ଣରଥରେ ଆସି ପହଞ୍ଚିଲେ । କୁନ୍ତୀଙ୍କୁ ଦେଖି ବିହ୍ୱଳ ହୋଇଉଠିଲେ ସୂର୍ଯ୍ୟଦେବ । ସତେ ଅବା ସ୍ୱର୍ଗର ସୁରସୁନ୍ଦରୀ । କୁନ୍ତୀ ହାତଯୋଡ଼ି କହିଲେ, ''ହେ ମହାନ୍ ଦେବତା, ଦୟାକରି ଆପଣଙ୍କର ପରିଚୟ ଦିଅନ୍ତୁ ।''

''ହେ ରାଜକୁମାରି ! ତୁମେ କଣ ମୋତେ ଚିହ୍ନିପାରୁନ । ତୁମର ନିମନ୍ତ୍ରଣ ପାଇ ମୁଁ ଆସିଛି । ସନ୍ତାନ ଲାଭ ପାଇଁ ତୁମେ ମନ୍ତ୍ରପାଠ କରି ମୋତେ କାମନା କରିଥିଲ । ଲକ୍ଷ୍ୟପୂରଣ କର ।''

''ଦୟାକରି କ୍ଷମା କରନ୍ତୁ ଦେବ । ମୁଁ ଏକ ଅବୋଧ ବାଳିକା, ଅନୂଢ଼ା ମଧ୍ୟ । ପିତାଙ୍କ ଇଚ୍ଛାରେ ପରିଚାଳିତ । ମନ୍ତ୍ରଶକ୍ତି ପରୀକ୍ଷା କରିବା ପାଇଁ କୌତୂହଳ ବଶତଃ ଆପଣଙ୍କୁ ଧ୍ୟାନ କରିଥିଲି । ମୋତେ କ୍ଷମା ଦିଅନ୍ତୁ । କୁମାରୀ ଅବସ୍ଥାରେ ମାତା ହେବାର ଦୋଷରେ ମୋତ ଦୂଷିତ କରନ୍ତୁ ନାହିଁ ।''

ସୂର୍ଯ୍ୟଦେବତା କହିଲେ, ''ବ୍ୟସ୍ତ ହୁଅନି , ମୁଁ ତୁମକୁ ତୁମ କୁମାରିତ୍ୱ ଫେରାଇଦେବି । ମନ୍ତ୍ରଶକ୍ତି ଅନ୍ୟଥା ହେବନାହିଁ । ନିନ୍ଦିତ ହେବାର ପ୍ରଶ୍ନ ଉଠୁନାହିଁ । ଆସ ଲକ୍ଷ୍ୟ ପୂରଣ କର ।''

ସେହି ମୁହୂର୍ତ୍ତରେ ତାଙ୍କର ଗର୍ଭ ସଂଚାର ହେଲା ଓ ପରମୁହୂର୍ତ୍ତରେ ଏକ ଅଭିନବ କୁମାର ଜନ୍ମ ହେଲା । ସତେ ଯେପରି ସୂର୍ଯ୍ୟଦେବତା ଶିଶୁ ବେଶରେ ଓହ୍ଲାଇ ଆସିଛନ୍ତି ତାଙ୍କ କୋଳକୁ । ଜନ୍ମରୁ କବଚ ଓ କୁଣ୍ଡଳରେ ଶିଶୁଟି ଭୂଷିତ ଥିଲା । ସୂର୍ଯ୍ୟଦେବ ବିଦାୟ ନେଲେ । କୁନ୍ତୀ ତାଙ୍କର କୁମାରୀତ୍ୱ ଫେରି ପାଇଲେ ।

ସେ ଜନନୀ ହେଲେ ବି, ଜନନୀର ସମାଜିକ ସ୍ୱୀକୃତି ଲାଭ କରିନାହାନ୍ତି । ଅପକର୍ମରୁ ରକ୍ଷା ପାଇବା ପାଇଁ, ସେ ସୋଇରେ ଗୋଟିଏ ଭାସମାନ ବାକ୍ସ ପ୍ରସ୍ତୁତ କଲେ । ସେଥିରେ କୋମଳ ଶଯ୍ୟା ପାରି ପ୍ରାଣପ୍ରିୟ ସନ୍ତାନଟିକୁ ଶୁଆଇ ଗଙ୍ଗା ସ୍ରୋତରେ ଭସାଇ ଦେଲେ । ପରିତ୍ୟକ୍ତ ଅବୋଧ ଶିଶୁଟି ଭାଗ୍ୟର କ୍ରୀଡ଼ନକ ହୋଇ ଭାସିଗଲା । କୁନ୍ତୀ, ଗଭୀର ଆତ୍ମବେଦନା ମଧ୍ୟରେ ଜର୍ଜ୍ଜରିତା । ସେ ଅଭିନୟ କଲେ, ସତେ ଯେପରି କିଛି ଘଟିନାହିଁ ।

ଭାସମାନ ବାକ୍ସଟି ପାଇଲେ ସାରଥି 'ଅଧିରଥ' ଓ ତାଙ୍କ ସ୍ତ୍ରୀ 'ରାଧା', ଉଭୟେ ଆନନ୍ଦରେ ବିହ୍ୱଳ ହୋଇଉଠିଲେ । ନିଃସନ୍ତାନଙ୍କୁ ସନ୍ତାନ ମିଳିଯାଇଛି । ଈଶ୍ୱରଙ୍କର ପରମ କରୁଣା । କବଚ କୁଣ୍ଡଳ ମଣ୍ଡିତ ଶିଶୁକୁ ଦେଖି ସେମାନେ ଭାବିଲେ, ଏ ଶିଶୁଟି ନିଶ୍ଚୟ ଏକ ଦେବଶିଶୁ । ରହସ୍ୟାବୃତ୍ତ ଏହାର

ଜନ୍ମ-ଜାତକ । ରାଧାଙ୍କର ପାଳିତ ପୁତ୍ର ଭାବରେ ଏହି ଶିଶୁଟିର ନାମ ହେଲା 'ରାଧେୟ' । ଦେବବାଣୀ ଅନୁସାରେ, ମହାବୀର ଓ ମହାଦାନୀ 'କର୍ଣ୍ଣ' ନାମରେ, ସେ ହେଲେ ପୃଥିବୀ ବିଖ୍ୟାତ ।

ରାଜକୁମାରୀ କୁନ୍ତୀଙ୍କର ବିବାହ ବୟସ ଉପସ୍ଥିତ ହେଲା । ରାଜା କୁନ୍ତିଭୋଜ କନ୍ୟାର ସ୍ୱୟଂବର ପାଇଁ ବ୍ୟବସ୍ଥା କଲେ । ବିଭିନ୍ନ ରାଜା ଓ ରାଜପୁତ୍ରମାନେ ଅପରୂପ ରୂପସୀ ପୃଥାଙ୍କୁ ଲାଭ କରିବା ପାଇଁ ସ୍ୱୟଂବର ସଭାକୁ ଆସିଲେ । କୁନ୍ତୀ, ଭରତ ବଂଶର କୁଳପ୍ରଦୀପ ପାଣ୍ଡୁଙ୍କ ଗଳାରେ ବରଣମାଳା ଲମ୍ବାଇଦେଲେ । ସେ ହେଲେ କୁରୁ ବଂଶର କୁଳବଧୂ । ପାଣ୍ଡୁଙ୍କ ପତ୍ନୀ କୁନ୍ତୀଦେବୀ ।

## ।। ପାଣ୍ଡୁ ।।

ଧୃତରାଷ୍ଟ୍ର ଅନ୍ଧ ଥିବାରୁ ହସ୍ତିନାର ସିଂହାସନ ଲାଭ କରିପାରିଲେ ନାହିଁ । ହସ୍ତିନାର ସମ୍ରାଟ ପଦରେ ଅଭିଷିକ୍ତ ହେଲେ ପାଣ୍ଡୁ । ସେ ମଦ୍ରରାଜାଙ୍କ ଭଗ୍ନୀ ମାଦ୍ରୀଙ୍କୁ ବିବାହ କରିଥିଲେ ଦ୍ୱିତୀୟ ପତ୍ନୀ ଭାବରେ ।

ରାଜମହିଷୀ ଅପରୂପା ରୂପବତୀ କୁନ୍ତୀ ଓ ମାଦ୍ରୀ । କାମନାର ଦୁଇଟି ପ୍ରସ୍ଫୁଟିତ କଳିକା । ସଂଭୋଗସୁରାମତ୍ତ ପ୍ରମତ୍ତ ପାଣ୍ଡୁ, କୁରୁବଂଶର କୀର୍ତ୍ତି ରକ୍ଷା ପାଇଁ ଦିଗ୍‌ବିଜୟ ପଥରେ ବାହାରିଲେ । ବାହୁବଳରେ ପରାଜିତ ରାଜ୍ୟସବୁ କରାଗତ କଲେ । ସେ ହେଲେ ବିପୁଳ ବିଭବର ଅଧିକାରୀ । ବିଜିତ ରାଜ୍ୟର ଅଜସ୍ର ବିଭବ ତାଙ୍କ ରାଜକୋଷକୁ ଆସିଲା ।

ଦିନକର ଘଟଣା ।

ସମ୍ରାଟ ପାଣ୍ଡୁ ମହାଆନନ୍ଦରେ ମୃଗୟା କରିବା ପାଇଁ ବଣକୁ ଗଲେ । ଦେଖିଲେ ଏକ ସୁନ୍ଦର ମୃଗ, ପ୍ରଣୟିନୀ ମୃଗୀ ସହିତ ମୈଥୁନରତ । ସେ ବାଣବିଦ୍ଧ କରି, ତାକୁ ହତ୍ୟା କଲେ । ମୁମୂର୍ଷୁ ମୃଗ କହିଲା, ''ହେ ରାଜନ୍ ! ମୁଁ ଏକ ମୁନି ଓ ମୋର ନାମ 'କିମିଦମ' । ମୃଗ ବେଶରେ ମୃଗୀ ସହିତ କାମାବିଷ୍ଟ ଥିଲି । ତୁମେ ମୋତେ ହତ୍ୟା କରିଥିବାରୁ ଏଇ ଅଭିଶାପ ଦେଉଛି, କାମାକୁଳିତ ହୋଇ ପ୍ରିୟା ସହିତ ସଂଯୁକ୍ତ ହେଲେ, ତୁମେ ମଧ୍ୟ ମୃତ୍ୟୁ ବରଣ କରିବ ।'

ବିଷାଦ ବିମଥିତ ସମ୍ରାଟ ପାଣ୍ଡୁ ରାଜପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । ମନରେ ଶାନ୍ତି ନାହିଁ ଜୀବନର ସରସତା ମରିଯାଇଛି । କୁନ୍ତୀ ଓ ମାଦ୍ରୀଙ୍କୁ ନେଇ ସେ ବଣକୁ ଚାଲିଗଲେ ତପସ୍ୟା କରିବେ ବୋଲି । ରାଜ୍ୟଭାର ଭୀଷ୍ମ ଓ ବିଦୁରଙ୍କ ହାତରେ ଦେଇଦେଲେ । ଧୃତରାଷ୍ଟ୍ରଙ୍କ ତରଫରୁ ସେମାନେ ରାଜ୍ୟ ପରିଚାଳନା କରିବେ ।''

ପ୍ରବ୍ରଜ୍ୟାଶ୍ରମରେ ଚାଲିଗଲେ ମହାତ୍ମା ପାଣ୍ଡୁ ।

ଥରେ ମୁନିଋଷିମାନେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ଦର୍ଶନ କରିବା ପାଇଁ ସ୍ୱର୍ଗପୁରକୁ ଯିବାକୁ ମନସ୍ଥ କଲେ । ପାଣ୍ଡୁ ନିଃସନ୍ତାନ ଦୋଷରୁ, ସେ ଅଧିକାରରୁ ବଞ୍ଚିତ ହେଲେ । ସେ ମୁନିମାନଙ୍କୁ ନିଜର ଦୁଃଖ କହିଲେ । ମୁନିଋଷିମାନେ କହିଲେ, ''ରାଜନ୍ ! ବ୍ୟସ୍ତ ହୁଅନ୍ତୁ ନାହିଁ । ଦେବୋପମ ସନ୍ତାନ ଜାତ ହେବାର ସମ୍ଭାବନା ଅଛି । ଆମ୍ଭେ ଦିବ୍ୟ ଚକ୍ଷୁବଳରେ ଦେଖିପାରୁଛୁ ଓ ଜାଣିପାରୁଛୁ ଯେ ରାଜମହିଷୀ କୁନ୍ତୀ ଦୁର୍ବାସାଙ୍କଠାରୁ ଅଭିଚାର ଯୁକ୍ତ ମନ୍ତ୍ର ଶିକ୍ଷାଲାଭ କରିଛନ୍ତି । ସେ ଯେତେବେଳେ ଯେଉଁ ଦେବତାଙ୍କୁ ସେଇ ମନ୍ତ୍ରରେ ସ୍ମରଣ କରିବେ, ସେ ଆସି ତାଙ୍କର ମନ କାମନା ପୂର୍ଣ୍ଣ କରିବେ ।

ବଂଶରକ୍ଷା ପାଇଁ ମହାତ୍ମା ପାଣ୍ଡୁ, କୁନ୍ତୀଙ୍କୁ ଅନୁରୋଧ କଲେ । ପୁତ୍ରଲାଭ କାମନା ପରିପୂର୍ଣ୍ଣ ପାଇଁ ମହାନ୍ ଦେବତାମାନଙ୍କୁ ସ୍ମରଣ କରିବାକୁ ଅନୁମତି ଦେଲେ । ସେତେବେଳେ ତାହାହିଁ ଥିଲା ସାମାଜିକ ବିଧି ବ୍ୟବସ୍ଥା, ଆବଶ୍ୟକ ହେଲେ ଅଭିପ୍ରେତ ବ୍ୟକ୍ତି ଦ୍ୱାରା ପୁତ୍ର ସନ୍ତାନ ସୃଷ୍ଟି କରିବା ପ୍ରଥା, ସମାଜରେ ପ୍ରଚଳିତ ଥିଲା ।

କୁନ୍ତୀ ବ୍ରତ ଆଚରଣ ପୂର୍ବକ ମନ୍ତ୍ରଶକ୍ତି ବଳରେ ପ୍ରଥମେ ଧର୍ମ ଦେବତାଙ୍କୁ ସ୍ମରଣ କରି ସନ୍ତାନ ଭିକ୍ଷାକଲେ । ଧର୍ମଦେବତାଙ୍କ ଧର୍ମ ପ୍ରଭାବରୁ କୁନ୍ତୀ ଧର୍ମରାଜ ଯୁଧିଷ୍ଠିରଙ୍କୁ ପୁତ୍ରରୂପେ ଲାଭ କଲେ । ତା'ପରେ ବାୟୁଦେବତାଙ୍କୁ ସ୍ମରଣ କରିବାରୁ ତାଙ୍କ ପ୍ରଭାବରୁ ମହାବାହୁ ଭୀମ ଜନ୍ମ ଗ୍ରହଣ କଲେ । ଭୀମ ଯେଉଁଦିନ ଜନ୍ମ ହେଲେ ହସ୍ତିନାରାଣୀ ଗାନ୍ଧାରୀଙ୍କ ଗର୍ଭରୁ ଦୁର୍ଯ୍ୟୋଧନ ମଧ ସେହିଦିନ ଜନ୍ମଲାଭ କରିଥିଲେ ।

ମହାତ୍ମା ପାଣ୍ଡୁ ଉଗ୍ର ତପସ୍ୟାରେ ଇନ୍ଦ୍ର ଦେବତାଙ୍କୁ ସନ୍ତୁଷ୍ଟ କଲେ ଓ ତାଙ୍କୁ ସ୍ମରଣ କରିବାକୁ କୁନ୍ତୀଙ୍କୁ ଆଦେଶ ଦେଲେ । କୁନ୍ତୀ ଇନ୍ଦ୍ରଦେବଙ୍କ କୃପାରୁ ପରମ ପରାକ୍ରମଶାଳୀ ମହାବୀର ଅର୍ଜୁନଙ୍କୁଲାଭ କଲେ ।

ମହାତ୍ମା ପାଣ୍ଡୁଙ୍କ ଅନୁରୋଧ କ୍ରମେ କୁନ୍ତୀ ମାଦ୍ରୀଙ୍କୁ ମନ୍ତ୍ରଦାନ କଲେ । ମାଦ୍ରୀ ଅଶ୍ୱିନୀକୁମାର ଯୁଗଳଙ୍କୁ ସ୍ମରଣ କରିବାରୁ, ତାଙ୍କ ଔରସରୁ ଦୁଇଟି ଯମଜ ସନ୍ତାନ ଜାତ ହେଲେ । ସେମାନଙ୍କର ନାମ ହେଲା ନକୁଳ ଓ ସହଦେବ । ଶତଶୃଙ୍ଗ ମୁନି ଆଶ୍ରମରେ ଶିଶୁ ସନ୍ତାନଗୁଡ଼ିକର ବାଲ୍ୟ ଜୀବନ ଅତିବାହିତ ହେଲା । ମୁନି ଋଷିମାନଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ସେମାନଙ୍କର ଶିଶୁ ସନ୍ତାନ ଗୁଡ଼ିକର ବାଲ୍ୟଶିକ୍ଷା ଆରମ୍ଭ ହେଲା ।

ଦୈବୀ ବଳରୁ ପୁତ୍ରସନ୍ତାନ ଲାଭ କରିବା ପରେ ପାଞ୍ଚଟିଯାକ ପିଲା ପାଣ୍ଡୁଙ୍କ ପୁତ୍ର ଭାବରେ ପରିଚିତ ହେଲେ । ସେମାନେ ହେଲେ ପଞ୍ଚପାଣ୍ଡବ । ଶିଶୁଗୁଡ଼ିକ ସତେଯେପରି ଦେବତାମାନଙ୍କର ଅବତାର । ରୂପ, ଗୁଣ, ଶକ୍ତି ସାମର୍ଥ୍ୟ ଓ ତେଜରେ କେହି କାହାକୁ ଊଣା ନୁହନ୍ତି । ପାଣ୍ଡୁଙ୍କ ଆନନ୍ଦର ସୀମା ନାହିଁ । ଆନନ୍ଦ ଆତିଶଯ୍ୟରେ ମଣିଷ ସମୟେ ସମୟେ ଅକ୍ଷମଣୀୟ ଅପରାଧ କରିପକାଏ ।

କିଛିଦିନ ପରର ଘଟଣା । ବନପ୍ରଦେଶରେ ଋତୁରାଜ ବସନ୍ତର ଉତ୍ସବ । ତରୁଲତା ନବପଲ୍ଲବର ପାଟଳ ପାଟରେ ପରିଶୋଭିତା । ପୁଷ୍ପ ସୌରଭରେ ବନଭୂମି ମାଦକିତ । ଫୁଲେ ଫୁଲେ ମଧୁପିଆ ଭ୍ରମରର ମଧୁ ଗୁଞ୍ଜନ । ରତିସିକ୍ତ ପରିବେଶର ଆକର୍ଷଣୀରେ ଅଥୟ ହୋଇଉଠିଲେ ପାଣ୍ଡୁ । କାମାର୍ତ୍ତ ପାଣ୍ଡୁ ପ୍ରୀତିମୟୀ ମାଦ୍ରୀଙ୍କ ସହିତ ସଂଭୋଗରତ ହେଲେ । କୌଣସି ବାରଣ ମାନିଲେ ନାହିଁ । ଉନ୍ମାଦନାର ଉତ୍ତାପରେ ଅଭିଶାପ ଭୟ ଉଭେଇଗଲା । ତାଙ୍କ ଅଙ୍ଗ ସ୍ପର୍ଶ କଲାକ୍ଷଣି ଦେହତ୍ୟାଗ କଲେ ପାଣ୍ଡୁ ।

ଶୋକାକୁଳା ମାଦ୍ରୀ ଅପରାଧ ଯନ୍ତ୍ରଣାରୁ ନିଜକୁ ରକ୍ଷା କରିବା ପାଇଁ, ସ୍ୱାମୀଙ୍କ ଚିତାରେ ପ୍ରବେଶ କରି ମୃତ୍ୟୁବରଣ କଲେ । ପିଲାଙ୍କ ଦାୟିତ୍ୱ ବହନ କଲେ କୁନ୍ତୀଦେବୀ । ଶୋକ ସମ୍ବାଦ ହସ୍ତିନାରେ ପହଞ୍ଚିଲା । ଭୀଷ୍ମ, ବିଦୁର ଧୃତରାଷ୍ଟ୍ର ଏବଂ ପୁରନାରୀଙ୍କ ମଧରେ ଖେଳିଗଲା ଶୋକରଛାୟା । ସାରା ହସ୍ତିନା ଶୋକପର୍ବ ପାଳନ କଲା ।

କିଛିଦିନ ପରେ, ସତ୍ୟବତୀ ନିଜର ପୁତ୍ରବଧୂ ଅମ୍ବିକା ଓ ଅମ୍ବାଳିକାକୁ ନେଇ ତପଶ୍ଚାରଣ ପାଇଁ ବନଗମନ କଲେ । ସେଠାରେ ସେମାନଙ୍କର ଦେହାନ୍ତ ହେଲା । ମୁନିଋଷିମାନେ କୁନ୍ତୀ ଓ ପାଞ୍ଚଟିଯାକ ପିଲାଙ୍କୁ ଆଣି ହସ୍ତିନାରେ ଛାଡ଼ିଦେଇଗଲେ ।

ସେମାନଙ୍କର ନିରାପତ୍ତା ଓ ପରିପାଳନ ଭାର ଭୀଷ୍ମଦେବ, ବିଦୁର ଓ ଧୃତରାଷ୍ଟ୍ର ବହନ କଲେ ।

ପାଣ୍ଡୁଙ୍କ ମହାପ୍ରୟାଣ ପରେ ଧୃତରାଷ୍ଟ୍ର ହସ୍ତିନାର ରାଜସିଂହାସନ ଆରୋହଣ କଲେ ।

# ।। ବିଷବୀଜ ।।

ପାରିବାରିକ ପରିଚୟ ଦୃଷ୍ଟିରୁ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ 'କୌରବ' ଓ ପାଣ୍ଡୁଙ୍କର ପୁତ୍ରମାନଙ୍କୁ 'ପାଣ୍ଡବ' କୁହାଗଲା । ମୁଖ୍ୟତଃ ଉଭୟେ କୌରବ ବଂଶର ଦାୟାଦ । ହସ୍ତିନାର ରାଜପ୍ରାସାଦରେ, ଧୃତରାଷ୍ଟ୍ରଙ୍କ ପିଲାମାନଙ୍କ ଗହଣରେ, ପଞ୍ଚପାଣ୍ଡବ ମହାଆନନ୍ଦରେ ବାଲ୍ୟଜୀବନ କଟାଇଲେ । ପିତାମହ ଭୀଷ୍ମ ସେମାନଙ୍କର ଅଭିଭାବକ ରୂପେ କାମ କଲେ । ଧୃତରାଷ୍ଟ୍ର ନିଜର ସନ୍ତାନମାନଙ୍କ ପରି ସେମାନଙ୍କୁ ପାଳନ କଲେ । ସମୟ ଆନନ୍ଦରେ ଅତିବାହିତ ହେଲା ।

ରାଜପୁତ୍ରମାନଙ୍କର ଶୈଶବ କୋଳାହଳରେ ରାଜପୁରୀ ଚହଲି ଉଠିଲା । ହସ, ଖେଳ, ନାଚକୁଦ, ଶିଶୁସୁଲଭ ଚପଳାମିରେ ମୁଖରିତ ରାଜପୁରୀ । ଦ୍ୱିତୀୟ ପାଣ୍ଡବ ଭୀମ । ସବୁରି ଭିତରେ ଶକ୍ତିଶାଳୀ । ତାଙ୍କ ଚଗଲାମିରେ ସମସ୍ତେ ଅତିଷ୍ଠ । ବଡ଼ଭାଇ ଯୁଧିଷ୍ଠିର ଶାନ୍ତ, ସରଳ ଓ ବ୍ୟବହାର ଅତ୍ୟନ୍ତ ମଧୁର । ନିଜ ପରି ସେ ଦୁନିଆର ସମସ୍ତଙ୍କୁ ସରଳ, ନ୍ୟାୟବାନ ଓ ନୀତିପରାୟଣ ବୋଲି ମନେ କରନ୍ତି ।

ଭୀମ, ଚଗଲାମିରେ କୌରବ ଭାଇମାନଙ୍କୁ ଗଙ୍ଗାରେ ଗାଧୋଇବା ବେଳେ ପାଣିରେ ବୁଡ଼ାଇ ଦିଅନ୍ତି । କାଖ ତଳେ ଜଣେ ଦି'ଜଣଙ୍କୁ ଜାକି ଧରି ପବନ ବେଗରେ ପହଁରିଯାନ୍ତି । ସେମାନେ ପାଣିପିଇ ଅଣନିଶ୍ୱାସୀ ହୋଇ ଦରମରା ହୋଇଯାଆନ୍ତି । ଭୀମ କାହାକୁ ଶୂନ୍ୟ ଶୂନ୍ୟେ ଟେକିଦେଇ ଛାଡ଼ିଦିଅନ୍ତି । କିଏ ଗଛ ଉପରେ ଚଢ଼ିଥିଲେ ଗଛକୁ ଏମିତି ହଲାଇ ଦିଅନ୍ତି ଯେ ସତେ ଯେମିତି ଏହା ଉପୁଡ଼ି ପଡ଼ିବ । ସେମାନେ ଗଛରୁ ତଳକୁ ଛିଟିକି ପଡ଼ନ୍ତି । କୌରବମାନେ ପ୍ରତିଦିନ ହୁଅନ୍ତି ଖଣ୍ଡିଆ ଖାବରା, ଇହୁଲୁହାଣ । ପ୍ରତିଦିନ ରାଜପୁରୀରେ ମାମଲା । ଯୁଧିଷ୍ଠିରଙ୍କ ତାଡ଼ନାରେ ମହାବଳୀ ଭୀମ ଟିକିଏ ଶାନ୍ତ ହୋଇଯାଆନ୍ତି । ପର ମୁହୂର୍ତ୍ତରେ ଆରମ୍ଭ ହୁଏ ପୁଣି ପ୍ରଳୟ ପର୍ବ ।

ଭୀମ ଦୁର୍ଯ୍ୟୋଧନ ଏକାଦିନ ଜନ୍ମ । ଦୁହିଁଙ୍କ ଭିତରେ ବିରୁଦ୍ଧଭାବ ଅଧିକା ଜଣକର ଛାଇ ଦେଖିଲେ ଅନ୍ୟର ନାହି ତିଏଁ । କୌଣସି ଦିଗରେ ଦୁର୍ଯ୍ୟୋଧନ ଭୀମଙ୍କର ସମାନସ୍କନ୍ଧ ନୁହନ୍ତି । ନା ଶାରୀରିକ ଶକ୍ତିରେ ନା ଅସ୍ତ୍ର ଚାଳନାରେ । କୌରବମାନଙ୍କର ନେତାଥିଲେ ଦୁର୍ଯ୍ୟୋଧନ ଓ ପାଣ୍ଡବମାନଙ୍କର ଯୁଧିଷ୍ଠିର । ଭୀମ କିନ୍ତୁ ସବୁ କାମରେ ନେତୃତ୍ୱ ନେଉଥିଲେ ।

କୌରବମାନଙ୍କର ଗଭୀର ଘୃଣାର ପାତ୍ର ହେଲେ ପାଣ୍ଡବମାନେ । କ୍ରମେ ଦୁଇଟି ଶକ୍ତି ଦୁଇଟି ଶିବିରରେ ପରିଣତ ହେଲା । ଦୁର୍ଯ୍ୟୋଧନର ସର୍ବଦା ଚିନ୍ତାର କାରଣ ଥିଲେ ଭୀମ । ଅନ୍ଧପିତାଙ୍କର ଅସହାୟତା ପାଇଁ ସେ ସର୍ବଦାବ୍ୟସ୍ତ ଥିଲେ । ମନରେ ସବୁବେଳେ ଦୁଶ୍ଚିନ୍ତା ଘାରୁଥିଲା । ଭାବୁଥିଲେ, ପାଣ୍ଡୁ ହସ୍ତିନାର ସମ୍ରାଟ ଥିଲେ, ଦିନେନା ଦିନେ ଯୁଧିଷ୍ଠିର ଉତ୍ତରାଧିକାରୀ ସୂତ୍ରରେ ରାଜସିଂହାସନ ଦାବି କରିବେ । ସେତେବେଳେ ତାଙ୍କ ଅବସ୍ଥା କଣ ହେବ ।

ଯୁଧିଷ୍ଠିର କୁରୁପାଣ୍ଡବଙ୍କ ମଧ୍ୟରେ ଥିଲେ ଜ୍ୟେଷ୍ଠ । ସମସ୍ତଙ୍କ ପ୍ରତି ସମବ୍ୟବହାର, ସ୍ନେହ ଶ୍ରଦ୍ଧା ଓ ସମ୍ମାନ ସେ ଦେଖାଉଥିଲେ । ତାଙ୍କ ଆଖିରେ କୌରବ ପାଣ୍ଡବ ଏକ । ତାଙ୍କ ଆଚରଣରୁ ପ୍ରଜାମାନେ ଧାରଣା କରିଥିଲେ ଯେ ସେ ହେଉଛନ୍ତି ନୀତିନିପୁଣ ଧର୍ମପରାୟଣ ରାଜା ଓ ନ୍ୟାୟରେ ପ୍ରଜାପାଳନ କରିବେ । ହସ୍ତିନାର ଭାବୀ ସମ୍ରାଟ ସମ୍ମାନ ତାଙ୍କୁ ମିଳୁଥିଲା । ଏହା ଥିଲା ଦୁର୍ଯ୍ୟୋଧନଙ୍କ ପାଇଁ ଗଭୀର ଯନ୍ତ୍ରଣାର କାରଣ । ପାଣ୍ଡବମାନଙ୍କ ହାତକୁ ହସ୍ତିନାର ରାଜପଣ ଫେରିଯିବ, ଏକଥା ସେ ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନ ଥିଲେ ।

"ପାଣ୍ଡବମାନଙ୍କର ଅମାପ ଶକ୍ତିର ନାଭିକେନ୍ଦ୍ର ଭୀମ । ତାକୁ କୌଣସି ମତେ ହତ୍ୟାକରି ଦେଲେ ବାଟ ପରିଷ୍କାର ହୋଇଯାଆନ୍ତା । ସେ କାଳ କଣ୍ଟାଟା ଥିବାଯାଏ ସ୍ୱପ୍ନଟା ସ୍ୱପ୍ନରେ ରହିଯିବ ।" ଦୁର୍ଯ୍ୟୋଧନ ଅନବରତ ଏକଥା ଭାବୁଥିଲେ ।

କୌରବମାନଙ୍କ ମନ ଭିତରେ ବିଷବୀଜ ବପନ କରାଗଲା । ଦୁର୍ଯ୍ୟୋଧନ ନିଜର ଶହେ ଭାଇଙ୍କୁ ନେଇ ଷଡ଼ଯନ୍ତ୍ରର ପୀଠ ପ୍ରସ୍ତୁତ କଲେ । ପାପାବର୍ତ୍ତର ପ୍ରସ୍ତୁତି ଦିଗରେ ପ୍ରଧାନ ସହାୟକ ହେଲେ ଦୁଃଶାସନ ଓ ମାମୁ ଶକୁନି ।

ଗଙ୍ଗାକୂଳର ସେ ସ୍ଥାନଟି ନାଁ 'ପ୍ରମାଣ କୋଟି' । ସେଠାରେ ଦୁର୍ଯ୍ୟୋଧନ ତିଆରି କଲେ ଏକ କପଟ କ୍ରୀଡ଼ାଗୃହ । ବହୁ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରାଗଲା । ପାଣ୍ଡବ ଓ କୌରବ କୁମାର ମହାଆନନ୍ଦରେ ସେଠାକୁ ଗଲେ ଖେଳିବା ପାଇଁ । କ୍ରୀଡ଼ା ଶେଷରେ ସମସ୍ତେ ଖାଇବାକୁ ଗଲେ । ଜଣେ ଆଉଜଣକୁ ଆନନ୍ଦରେ ଖୁଆଇଦେଲେ । ଦୁର୍ଯ୍ୟୋଧନ ବିଷଲଡୁ ଖୁଆଇ ଦେଲେ ମହାବଳୀ ଭୀମଙ୍କୁ । ଭୀମସେନ ମହା ଆନନ୍ଦରେ ତାହା ଭକ୍ଷଣ କଲେ । ଖାଦ୍ୟ ଲୋଭୀ ଭୀମ ହଠାତ୍ କିଛି ଅସୁବିଧା ଅନୁଭବ କରିପାରିଲେ ନାହିଁ । ଖାଇସାରି ଭୀମ ବିଶ୍ରାମ ଭବନକୁ ଚାଲିଗଲେ ବିଶ୍ରାମ ପାଇଁ । ଅନ୍ୟଭାଇମାନେ ଘରକୁ ଫେରିଆସିଲେ । କିଛି ସମୟପରେ ସାରା ଶରୀରରେ ଆରମ୍ଭ ହେଲା ବିଷକ୍ରିୟା । ଭୀମ ଚେତା ହରାଇଲେ । ଦୁର୍ଯ୍ୟୋଧନଙ୍କ ଆନନ୍ଦ କହିଲେ ନସରେ । ସେ ତାଙ୍କର ଅନ୍ୟ ଭାଇମାନଙ୍କ ସାଥିରେଭୀମଙ୍କୁ ଟେକିନେଇ ଗଙ୍ଗାସ୍ରୋତରେ ନିକ୍ଷେପ କଲେ । ଆନନ୍ଦରେ ଫେରିଆସିଲେ ରାଜପୁରୀକୁ । ସେମାନଙ୍କର ଧାରଣା, ଭୀମ ନିଶ୍ଚୟ ମୃତ୍ୟୁବରଣ କରିବ । ରାଜ୍ୟଲାଭର ସ୍ୱପ୍ନ ସେମାନଙ୍କର ସଫଳ ହେବ ।

ସଂଜ୍ଞାହୀନ ଭୀମ ଭାସିଭାସି ଯାଇ ପହଞ୍ଚିଲେ ନାଗପୁରୀରେ । ବିଷଧର ନାଗମାନଙ୍କ ଦ୍ୱାରାଦଂଶିତ ହେଲେ । ଭୀମଙ୍କ ଶରୀରରେ ଥିବା 'ସ୍ଥାବର' ବିଷ ସର୍ପମାନଙ୍କର 'ଜଙ୍ଗମ' ବିଷ ଦ୍ୱାରା ଦୂର ହୋଇଗଲା । ସଂଜ୍ଞା ଫେରିଆସିଲା । ନାଗରାଜା ବାସୁକି ଭୀମଙ୍କୁ ସମ୍ଭାଷଣ ଜଣାଇଲେ । ତାଙ୍କୁ ଅମାପ ଶକ୍ତିର ଉତ୍ସ ଦିବ୍ୟରସ, ପାନ କରିବାକୁ ଦେଲେ । ସେ ତାହା ପାନ କରି ଅସୁମାର ଶକ୍ତିର ଅଧିକାରୀ ହେଲେ ।

ଯୁଧିଷ୍ଠିର ପ୍ରଭୃତି ଭାଇମାନେ ଭୀମଙ୍କୁ ଖୋଜିବାରେ ଲାଗିଥାନ୍ତି । ଦୁର୍ମତି ଦୁଷ୍ଟ ଦୁର୍ଯ୍ୟୋଧନ ନିଶ୍ଚୟ କିଛି ଅଭିସନ୍ଧି କରିଛି ବୋଲି କୁନ୍ତୀ ପ୍ରକାଶ କଲେ । ବିଦୁର କହିଲେ, "ହେ କଲ୍ୟାଣି ! ବ୍ୟସ୍ତ ହେବାର କିଛି ନାହିଁ । ନିରାପଦରେ ଭୀମ ନିଶ୍ଚୟ ଘରକୁ ଫେରିବେ । ଦୁର୍ଯ୍ୟୋଧନଙ୍କ କାନରେ ଆପଣଙ୍କର ଅଭିଯୋଗ ପଡ଼ିଲେ, ସେ ପ୍ରତି ଅଭିଯୋଗମାନ ବାଢ଼ିବେ । ଫଳରେ କନ୍ଦଳ ବଢ଼ିବ । ଆପଣତ ସବଳପକ୍ଷ । ସେମାନେ ପ୍ରକୃତରେ ଦୁର୍ବଳ । ଅପରାଗତା ଓ ଅପକର୍ମ ଦୁର୍ବଳର ସାଥୀ । ଧୈର୍ଯ୍ୟ ଧରନ୍ତୁ, ଅପେକ୍ଷା କରନ୍ତୁ । ଭୀମ ନିଶ୍ଚୟ ଫେରିବେ । କିଛିଦିନ ପରେ ଭୀମ ଘରକୁ ଫେରିଆସିଲେ । ଚାରିଆଡ଼େ ଚହଳ ପଡ଼ିଗଲା, ଭୀମ ଫେରିଛନ୍ତି, ଭୀମ ଫେରିଛନ୍ତି । ଦୁର୍ଯ୍ୟୋଧନ ବିସ୍ମିତ ହୋଇଗଲେ ଭାବିଲେ ବିଷ ମଧ୍ୟ ଭୀମଙ୍କୁ ମାରିପାରିଲା ନାହିଁ । ତାଙ୍କ ମନର ସରସତା ମରିଗଲା । କୌରବ ଭାଇମାନଙ୍କର ମୁହଁ ମଉଳିଗଲା । ପାଣ୍ଡବମାନେ ଆନନ୍ଦରେ ଚହଲି ଉଠିଲେ ।

## ।। ରାଜପୁତ୍ରମାନଙ୍କର ବାଲ୍ୟ ଶିକ୍ଷା ।।

ଭାଇଭଉଣୀ ଦୁଇଟି ଅସହାୟ ଅବସ୍ଥାରେ ବଣବୁଦାରେ ପଡିଥାନ୍ତି । ଶିଶୁସନ୍ତାନ ଦୁଇଟିର ଲାଳନ ପାଳନ ପାଇଁ ପାଖରେ ବାପା ମା' କେହି ନାହାନ୍ତି । ମୃଗୟା ପାଇଁ ଆସିଥିବା ରାଜା ଶାନ୍ତନୁ ପିଲାଦୁଇଟିକୁ

ଦେଖିଲାକ୍ଷଣି ବିଚଳିତ ହୋଇପଡିଲେ । ଭାବିଲେ, ଏହା ନିଶ୍ଚୟ ରୂପଜୀବୀ ଅପ୍‌ସରାର କାମ । କୌଣସି ମୁନିଋଷିଙ୍କୁ କାମାସକ୍ତ କରି ତାଙ୍କର ଧ୍ୟାନ ଭଙ୍ଗ କରିଛି ଏବଂ ଶିଶୁଦୁଇଟି ସେଇ ଋଷିଙ୍କ ଔରସଜାତ ସନ୍ତାନ । ସେ କୃପାକରି ଶିଶୁଦୁଇଟିକୁ ନିଜ ଉଆସକୁ ନେଇଯାଇ ପାଳନ କଲେ । ରାଜକୃପାରେ ପିଲାଦୁଇଟି ପାଳିତ ହୋଇଥିବାରୁ ପୁଅଟିର ନାମ ହେଲା 'କୃପାଚାର୍ଯ୍ୟ' ଓ ଝିଅଟିର ନାମ 'କୃପୀ' । ଅନୁସନ୍ଧାନରୁ ଜଣାଗଲା ସେମାନଙ୍କର ପ୍ରକୃତପିତା ମାତା ହେଉଛନ୍ତି ଋଷି, ଶାରଦ ବତ୍ ଏବଂ 'ଅପ୍‌ସରା ଜାନପଦୀ '। ସନ୍ଦେହର କଳାମେଘ ଅପସରିଗଲା ।

କୃପାଚାର୍ଯ୍ୟ ଧନୁର୍ବିଦ୍ୟାରେ ଯେପରି ଧୁରୀଣ ଶସ୍ତ୍ର ବିଦ୍ୟାରେ ସେପରି ନିପୁଣ । ଭୀଷ୍ମଦେବ ଓ ରାଜ ଧୃତରାଷ୍ଟ୍ର, କ୍ରୀଡାଚପଳ ରାଜପୁତ୍ର ମାନଙ୍କର ବାଲ୍ୟଶିକ୍ଷା ଭାର କୃପାଚାର୍ଯ୍ୟଙ୍କୁ ଦେଲେ । ସେ ହେଲେ ରାଜପୁତ୍ରମାନଙ୍କର ଶିକ୍ଷାଗୁରୁ । ତାଙ୍କ ଭଉଣୀ କୃପୀ, ମହର୍ଷି ଭରଦ୍ୱାଜଙ୍କ ପୁତ୍ର ଦ୍ରୋଣାଚାର୍ଯ୍ୟଙ୍କୁ ବିବାହ କଲେ ।

ଦିନକର ଘଟଣା । କୌରବ ଓ ପାଣ୍ଡବମାନେ ବଣରେ ଥିଲେ କ୍ରୀଡ଼ାରତ । ଗୋଟିଏ ସୁନେଲିପେଣ୍ଡୁ ଖେଳୁ ଖେଳୁ ନିକଟରେ ଥିବା କୂଅରେ ପଡ଼ିଗଲା । କୂଅର ପାଣିଥିଲା କାଚକେନ୍ଦୁ ପରି ନିର୍ମଳ । ପେଣ୍ଡୁଟି ସ୍ପଷ୍ଟଭାବରେ ଉପରକୁ ଦେଖାଯାଉଥିଲା । ସମସ୍ତେ ଚେଷ୍ଟା କଲେ ପେଣ୍ଡୁଟିକୁ ବାହାର କରିବା ପାଇଁ । ସବୁ ଚେଷ୍ଟା ବିଫଳ ହେଲା । ମନଦୁଃଖରେ ସମସ୍ତେ କୂଅ ଚାରିପାଖରେ ଠିଆହୋଇଥାନ୍ତି । ସେତେବେଳେ ଜଣେ ବ୍ରାହ୍ମଣ ନିଜର ସ୍ତ୍ରୀ ଓ ଶିଶୁପୁତ୍ରକୁ ସାଥିରେ ନେଇ ସେଇବାଟ ଦେଇ ଯାଉଥିଲେ । ରାଜପୁତ୍ରମାନଙ୍କୁ ଦେଖି ଘଟଣା କଣ ବୋଲି ସେ ପଚାରିଲେ । ମୁହଁରେ ଥିଲା ତାଙ୍କର ଚେନାଏ ହସ । ଆଖିରେ ଆତ୍ମ ପ୍ରତ୍ୟୟର ଆଲୋକ । ସ୍ୱରରେ ଥିଲା ଦୃଢ଼ତା ତଥା ମଧୁରତା ।

ରାଜପୁତ୍ରମାନେ ଉତ୍ସାହିତ ହୋଇ, ସେମାନଙ୍କର ଦୁର୍ଦଶାର କାରଣ ପ୍ରକାଶ କଲେ । ବ୍ରାହ୍ମଣ ହସି ହସି କହିଲେ, ''ଆପଣମାନେ ଭରତ ବଂଶର ବୀର ରାଜପୁତ୍ର । ହସ୍ତିନାର ଭାବୀ ଶାସକ । ଧନୁର୍ବିଦ୍ୟାରେ ନିପୁଣ ଶର ସନ୍ଧାନ କରି ପେଣ୍ଡୁଟିକୁ ଆଣି ପକାଉନାହାନ୍ତି କାହିଁକି ?''

''ଆଚ୍ଛା ମୁଁ ବାହାର କରିଦେଉଛି ।''

ବ୍ରାହ୍ମଣ ଶରମୁଣିରୁ ଶର ବାହାର କରି କୂଅ ଭିତରର ପେଣ୍ଡୁଟି ଉପରକୁ ନିକ୍ଷେପ କଲେ । ଗୋଟିଏ ପରେ ଗୋଟିଏ ଶରଯାଇ ଅନ୍ୟ ଶର ସହିତ ଯୋଡି ହୋଇଗଲା । ଆଖି ପିଛୁଳାକେ ବ୍ରାହ୍ମଣ ପେଣ୍ଡୁଟି ଟାଣିଆଣି ସେମାନଙ୍କ ହାତକୁ ବଢାଇ ଦେଲେ । ପୂର୍ବରୁ ଯୁଧିଷ୍ଠିରଙ୍କର ସୁନାମୁଦିଟି ସେଇ କୂଅରେ ପଡିଯାଇଥିଲା । ତାହା ନେଇ ଅସିବାକୁ, ସେ ତାଙ୍କୁ ଅନୁରୋଧ କଲେ । ବ୍ରାହ୍ମଣ କେରାଏ ଦୂବ ଆଣି ଅଭିମନ୍ତ୍ରିତ କରି କୂଅ ଭିତରକୁ ପକାଇ ଦେଲେ । ତାହା ସଙ୍ଗେ ସଙ୍ଗେ ମୁଦିଟିକୁ ଟାଣିଆଣି ଯୁଧିଷ୍ଠିରଙ୍କ ଆଙ୍ଗୁଠିରେ ପିନ୍ଧାଇଦେଲା । ସମସ୍ତେ ଆଶ୍ଚର୍ଯ୍ୟରେ ଅଭିଭୂତ, କି ଅଲୌକିକ ଘଟଣା ।

ରାଜପୁତ୍ରମାନେ ଆସି ତାଙ୍କୁ ଭକ୍ତିର ସହିତ ପ୍ରଣାମ କଲେ । ମୁନିଙ୍କ ମହାନତାର ଜୟଗାନ କରି ପରିଚୟ ପଚାରିଲେ, ବ୍ରାହ୍ମଣ ହସିହସି କହିଲେ, ''ମୋର ପରିଚୟ ପିତାମହ ଭୀଷ୍ମଙ୍କଠାରୁ ମିଳିବ । ମୋ ନିଜକଥା ମୁଁ ନିଜେ କଣ କହିବି ।'' ବ୍ରାହ୍ମଣ ବିଦାୟ ନେଲେ । ରାଜପୁତ୍ରମାନେ ଫେରିଆସିଲେ ରାଜପୁରୀକୁ । ଭୀଷ୍ମଦେବ ରାଜପୁତ୍ରମାନଙ୍କ ଠାରୁ ସବୁ ବର୍ଣ୍ଣନା ଶୁଣିବା ପରେ ଭାବିଲେ,ମହର୍ଷି ଦ୍ରୋଣଙ୍କ ବ୍ୟତୀତ ସେ ଆଉ କେହି ନୁହନ୍ତି । ରାଜପୁରୀକୁ ଆସିବା ପାଇଁ ତାଙ୍କ ପାଖକୁ ନିମନ୍ତ୍ରଣ ପଠାଗଲା । ନିର୍ଦ୍ଦିଷ୍ଟ ସମୟରେ ଆସି ପହଁଞ୍ଚିଲେ ଦ୍ରୋଣାଚାର୍ଯ୍ୟ । ଭୀଷ୍ମଦେବ ସ୍ୱାଗତ ସମ୍ଭାଷଣ ଜଣାଇ ତାଙ୍କୁ ପାଖରେ

ବସାଇଲେ । କହିଲେ, ''ହେ ଋଷିଶ୍ରେଷ୍ଠ ! ମହର୍ଷି କୃପାଚାର୍ଯ୍ୟ ରାଜପୁତ୍ର ମାନଙ୍କର ବାଲ୍ୟଶିକ୍ଷାର ଦାୟିତ୍ୱ ବହନ କରି ତାଙ୍କର କର୍ତ୍ତବ୍ୟ ପାଳନ କରିଛନ୍ତି । ଆପଣ ଦୟାକରି ସେମାନଙ୍କର ପରବର୍ତ୍ତୀ ଶିକ୍ଷା ଦାୟିତ୍ୱ ଗ୍ରହଣ କରନ୍ତୁ । ଆପଣଙ୍କୁ ପାଇଲେ ହସ୍ତିନାପୁରୀ ଧନ୍ୟହେବ ।''

ଦ୍ରୋଣାଚାର୍ଯ୍ୟ ଏଥିରେ ସମ୍ମତ ହେଲେ । କୃପାଚାର୍ଯ୍ୟ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ନିଜର ଭିଣୋଇ ଦ୍ରୋଣାଚାର୍ଯ୍ୟ ରାଜପୁତ୍ରମାନଙ୍କର ଗୁରୁ ହେବାର ସମ୍ମାନ ପାଇଛନ୍ତି । ଭୀଷ୍ମ ରାଜପୁତ୍ର ମାନଙ୍କ ପାଇଁ କେବଳ ଯେ ଜଣେ ଯୋଗ୍ୟ ଗୁରୁଙ୍କୁ ପାଇଲେ ତାନୁହେଁ, ସେ ନିଜ ପାଇଁ ଜଣେ ଉପଯୁକ୍ତ ବନ୍ଧୁ ମଧ ପାଇଲେ । ଆଳାପ, ଆଲୋଚନା,ମତବିନିମୟ ଶ୍ରଦ୍ଧା ଓ ସାନିଧ ପାଇଁ ଏହା ଏକ ସୁଯୋଗ । ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଉଭୟ ସ୍ନେହାନୁବନ୍ଧନ ମଧରେ ବାନ୍ଧିହୋଇ ରହିଲେ । ମହର୍ଷି ଦ୍ରୋଣାଚାର୍ଯ୍ୟ, ରାଜା ଏବଂ ରାଜଶକ୍ତିର ହେଲେ ପଥପ୍ରଦର୍ଶକ ।

ଦ୍ରୋଣଙ୍କର ଧନୁର୍ବିଦ୍ୟାରେ ଥିଲା ଅସମ୍ଭବ ପ୍ରକାରର ଦକ୍ଷତା । ସମର ବିଦ୍ୟାରେ ସେ ଥିଲେ ସେ ସମୟର ଜଣେ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ । ପାଣ୍ଡବ ଓ କୌରବମାନେ ତାଙ୍କଠାରୁ ଉନ୍ନତ ଅସ୍ତ୍ରବିଦ୍ୟା ଶିକ୍ଷାକଲେ । ଅର୍ଜୁନ ଥିଲେ ସେମାନଙ୍କ ମଧରେ ଅନନ୍ୟ । ସେ ଉଭୟ ହସ୍ତରେ ଅସ୍ତ୍ରଚାଳନା କରିପାରୁଥିଲେ । ତେଣୁ ତାଙ୍କର ଅନ୍ୟନାମ ଥିଲା 'ସବ୍ୟସାଚୀ' ।

ଶିକ୍ଷା ସମାପ୍ତିପରେ ଆଚାର୍ଯ୍ୟ ଦ୍ରୋଣ ଅର୍ଜୁନଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କୁ 'ବ୍ରହ୍ମଶର' ପ୍ରଦାନ କଲେ । କହିଲେ,'ହେ ମଧମ ପାଣ୍ଡବ ! ଏ ଶର ଅମୋଘ ଓ ପୃଥିବୀ ଦହନ କରିବାର ଶକ୍ତି ଏହାର ଅଛି । ଏହାର ଅଧିକାରୀ ଯେ କୌଣସି ବ୍ୟକ୍ତି ହୋଇପାରିବେ ନାହିଁ, ଅନୁରୂପ ଶକ୍ତିର ଯେ ଅଧିକାରୀ କେବଳ ସେ ଏହାକୁ ପାଇବା ପାଇଁ ଯୋଗ୍ୟ । ଯେକୌଣସି ବ୍ୟକ୍ତି ଉପରେ ଓ ଯେକୌଣସି ପରିସ୍ଥିତିରେ ଏହାର ପ୍ରୟୋଗ ନିଷିଦ୍ଧ । ମୋର ଏହି ମହାଦାନ ପାଇଁ, ତୁମକୁ ଉପଯୁକ୍ତ ଗୁରୁଦକ୍ଷିଣା ଦେବାକୁ ହେବ ।''

ଅର୍ଜୁନ ବଦ୍ଧହସ୍ତ ଓ ନମିତ ମସ୍ତକ ହୋଇ ବିନୀତ କଣ୍ଠରେ କହିଲେ,''ମହାଭାଗ ! କର୍ତ୍ତବ୍ୟ ତୁଲାଇବା ପାଇଁ ଏ ଦୀନ ଅକିଞ୍ଚନକୁ ଶକ୍ତି ଓ ଆଶୀର୍ବାଦ ଦିଅନ୍ତୁ ।''

''ହଁ, ତୁମେ ସମସ୍ତଙ୍କ ସମକ୍ଷରେ ଶପଥ କର, ଜୀବନରେ କେବେ ରଣ କ୍ଷେତ୍ରରେ ତୁମ ସହିତ ସଂଗ୍ରାମ କରିବାକୁ ମୁଁ ଅଗ୍ରସର ହେଲେ, ମୋ ସହିତ ତୁମେ ପ୍ରତିଯୁଦ୍ଧ କରିବ । ଏହାହିଁ ହେବ ତୁମର ଗୁରୁ ଦକ୍ଷିଣା । ପ୍ରତିଶ୍ରୁତି ଦିଅ ।

ଅର୍ଜୁନ ଅଶ୍ରୁସିକ୍ତ ନୟନରେ ତାଙ୍କର ଚରଣ ଯୁଗଳରେ ପ୍ରଣାମ ଢାଳି ନିଜର ସମ୍ମତି ଜଣାଇଲେ ।

ଦ୍ରୋଣାଚାର୍ଯ୍ୟଙ୍କ ଠାରୁ ଭୀମ ଗଦାଯୁଦ୍ଧ ଶିକ୍ଷାକଲେ । ସହଦେବ ସମସ୍ତ ନୀତିଶାସ୍ତ୍ର, ଶକୁନଶାସ୍ତ୍ର ଅଧୟନ କଲେ । ନକୁଳ ଧନୁର୍ବିଦ୍ୟା ଶିକ୍ଷାକରି ଅତିରଥ ନାମରେ ବିଖ୍ୟାତ ହେଲେ । ସେତେବେଳେ ରାଧାନନ୍ଦନ କର୍ଣ୍ଣ ଓ ଅନ୍ୟ ରାଜପୁତ୍ରଙ୍କ ସହିତ ନିଜପୁତ୍ର ଅଶ୍ୱତ୍ଥାମା ମଧ ଅସ୍ତ୍ରଶିକ୍ଷା କରୁଥିଲେ । କିନ୍ତୁ ବ୍ରହ୍ମଶର ଲାଭ କରିବାର ପରମ ସୌଭାଗ୍ୟ ଅନ୍ୟ କାହାକୁ ମିଳିଲା ନାହିଁ ।

ଅତୀତର ଘଟଣା ।

ପଞ୍ଚାଳର ରାଜପୁତ୍ର ଦ୍ରୁପଦ ଓ ଆଚାର୍ଯ୍ୟ ଦ୍ରୋଣ, ଦିନେ ସହପାଠୀ ଥିଲେ । ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ଉଭୟେ ଧନୁର୍ବିଦ୍ୟା ଶିକ୍ଷା କରୁଥିଲେ । ପରେ ଦ୍ରୁପଦ, ରାଜ ସିଂହାସନ ଲାଭକଲେ । ଦ୍ରୋଣ ସେଇପରି ଏକ ଦରିଦ୍ର ବ୍ରାହ୍ମଣ ଭାବରେ ରହିଗଲେ । ଥରେ ସେ ଅଭାବ ଅନଟନ ମଧରେପଡି,ମହାଦାନୀ

ପର୍ଶୁରାମଙ୍କ ପାଖକୁ ଧନ ପ୍ରାପ୍ତି ଆଶାରେ ଗଲେ । ପର୍ଶୁରାମ କହିଲେ, ''ମୁଁ ସମସ୍ତ ଅର୍ଥ ଦାନକରି ସାରିଛି । ତପସ୍ୟା ପାଇଁ ହିମାଳୟକୁ ଯିବାକୁ ବାହାରୁଥିଲି । ଦୁଃଖରକଥା,ଧନଦାନ କରି ତୁମ ସେବାକରିବାର ସୁଯୋଗରୁ ବଞ୍ଚିତ ହେଲି । ମୋର ଏକମାତ୍ର ଧନ, ବର୍ତ୍ତମାନ କେବଳ ଏ ଶରୀର ଓ ମୋର ଧନୁର୍ବିଦ୍ୟା । ତୁମେ ଯାହା ଚାହିଁବ ତାହା ଦେଇପାରିବି ।

ଦ୍ରୋଣ ତାଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷାକଲେ । ପର୍ଶୁରାମ ମଧ୍ୟ ତାଙ୍କୁ ବ୍ରହ୍ମାସ୍ତ୍ର ଦାନକଲେ । ଶିକ୍ଷାଗତ ସମୃଦ୍ଧି ମିଳିଲା କିନ୍ତୁ ଧନ ଦାରିଦ୍ର୍ୟ ଦୂର ହେଲା ନାହିଁ । ସେ ନିଜର ବାଲ୍ୟବନ୍ଧୁ ଦ୍ରୁପଦ ରାଜାଙ୍କ ପାଖକୁ ଯାଇ ଦୁଃଖ ଜଣାଇଲେ । ରାଜା ତାଙ୍କୁ ସମ୍ମାନ ଓ ଅର୍ଥ ସାହାଯ୍ୟ ଦେବା ଦୂରର କଥା, ବାଲ୍ୟସାଥୀ ଭାବରେ ଗ୍ରହଣ କଲେ ନାହିଁ । କହିଲେ, ''ଜଣେ ଦରିଦ୍ର ବ୍ରାହ୍ମଣ, ରାଜାଙ୍କର ବନ୍ଧୁ ହୋଇ ନ ପାରେ । ରାଜାର ବନ୍ଧୁ କେବଳ ରାଜା ।'' ଏହା ଦ୍ରୋଣାଚାର୍ଯ୍ୟଙ୍କ ମନରେ ଗଭୀର ଆଘାତ ଦେଇଥିଲା ।''

ଦ୍ରୋଣ ନିଜ ସ୍ତ୍ରୀ କୃପୀ ଓ ପୁତ୍ର ଅଶ୍ୱତ୍ଥାମା ସହିତ ଦୁଃଖରେ କାଳାତିପାତ କରୁଥିବା ସମୟରେ, ହସ୍ତିନାପୁରରୁ ନିମନ୍ତ୍ରଣ ଆସିଥିଲା । ପର୍ଶୁରାମଙ୍କ ଆଶ୍ରମସାଥୀ ଭୀଷ୍ମ ଦେବଙ୍କ ସହିତ ହସ୍ତିନା ରାଜପୁରୀରେ ସେ ଆନନ୍ଦରେ ରହିଲେ । ପୁତ୍ର ଅଶ୍ୱତ୍ଥାମା ରାଜପୁତ୍ରପରି ସମ୍ମାନିତ ହେଲେ । ଦ୍ରୁପଦ ରାଜାଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ଦ୍ରୋଣାଚାର୍ଯ୍ୟ ସୁଯୋଗ ଖୋଜୁଥିଲେ । ଶିକ୍ଷା ସମାପ୍ତି ପରେ ରାଜପୁତ୍ରମାନେ ମହାନ୍ ଗୁରୁଙ୍କୁ ଗୁରୁଦକ୍ଷିଣା ଦେବାକୁ ଚାହିଁଲେ । ଦ୍ରୋଣାଚାର୍ଯ୍ୟ କହିଲେ, ''ରାଜା ଦ୍ରୁପଦଙ୍କୁ ଆଣି ମୋ ହାତରେ ଅର୍ପଣ କଲେ, ତାହାହିଁ ହେବ ଶ୍ରେଷ୍ଠ ଗୁରୁଦକ୍ଷିଣା ।''

ଅର୍ଜୁନ ଉତ୍ସାହର ସହିତ ଆଗେଇ ଗଲେ । ରାଜା ଦ୍ରୁପଦଙ୍କୁ ଯୁଦ୍ଧରେ ପରାସ୍ତ କରି ବନ୍ଦିକରି ନେଇ ଆସିଲେ । ଦ୍ରୋଣାଚାର୍ଯ୍ୟ ତାଙ୍କୁ ଦେଖି ହସିହସି କହିଲେ,''ହେ ରାଜନ ! ମୁଁ ତୁମକୁ ହତ୍ୟା କରିବାକୁ ଚାହେଁନା, କିମ୍ବା ତୁମକୁ ରାଜ୍ୟଭୋଗରୁ ବଞ୍ଚିତ କରିବାକୁ ଇଚ୍ଛା କରେ ନାହିଁ । ମୁଁ ଯେତେବେଳେ ତୁମକୁ ବନ୍ଧୁଭାବରେ ସମ୍ବୋଧନ କରିଥିଲି, ସେତେବେଳେ ତୁମେ କହିଥିଲନା 'ରାଜାର ବନ୍ଧୁ ରାଜା' ,ଜଣେ ଦରିଦ୍ର ବ୍ରାହ୍ମଣ ନୁହେଁ । ମୁଁ ଜୀବନରେ ତମର ସଖା ହୋଇ ରହିବାକୁ ଚାହେଁ । ତୁମେ ମୋର ବନ୍ଦୀ । ତୁମରାଜ୍ୟକୁ ମୁଁ ଜୟ କରିଛି ;ମୁଁ ଏହାର ରାଜା ! ତେବେ ତୁମେ ଏ ସାମ୍ରାଜ୍ୟର ଦକ୍ଷିଣାର୍ଦ୍ଧ ଫେରାଇ ନିଅ । ମୁଁ ଉତ୍ତରାର୍ଦ୍ଧର ରାଜା ହୋଇ ରହିବି ତୁମର ବନ୍ଧୁତା ପାଇବି ବୋଲି । ତୁମ ସ୍ୱାଭିମାନ ଆଉ ଆହତ ହେବନି କାରଣ ରାଜାର ବନ୍ଧୁ ରାଜା । ଜଣେ ଗରିବ ବ୍ରାହ୍ମଣ ନୁହେଁ ।''

ଦ୍ରୁପଦ ମୁକ୍ତିଲାଭ କଲେ । ରାଜଦର୍ପ ପାଇଁ ରାଜ୍ୟର ଉତ୍ତରାର୍ଦ୍ଧ ତାଙ୍କୁ ହରାଇବାକୁ ପଡିଲା । ଚରମ ଆତ୍ମଗ୍ଲାନି ଭିତରେ ସେ ଜର୍ଜରିତ ହେଲେ । ମନଭିତରେ ପ୍ରତିଶୋଧର ଅଗ୍ନି ଉଦ୍ଦୀପିତ ହେଲା । ଲକ୍ଷ୍ୟପୂରଣ ପାଇଁ ସେ ଏକ ଯଜ୍ଞ କରି ଦେବତାମାନଙ୍କୁ ସନ୍ତୁଷ୍ଟ କଲେ । ସେହି ଯଜ୍ଞକୁଣ୍ଡରୁ ଗୋଟିଏ ପୁତ୍ର ଓ ଏକ କନ୍ୟା ଜାତ ହେଲେ । ପୁତ୍ରରନାମ ହେଲା ଯାଜ୍ଞସେନ ଓ କନ୍ୟାଟିର ନାମ ଯାଜ୍ଞସେନୀ । କନ୍ୟାଟି ଶ୍ୟାମଳୀ ଥିବାରୁ ତାର ଅନ୍ୟନାମ ହେଲା କୃଷ୍ଣା । ଦ୍ରୁପଦ ରାଜାଙ୍କ କନ୍ୟା ବୋଲି 'ଦ୍ରୌପଦୀ'ଯାଜ୍ଞସେନଙ୍କ ଅନ୍ୟନାମ ଧୃଷ୍ଟଦ୍ୟୁମ୍ନ । 'ଧୃଷ୍ଟ' ଶବ୍ଦର ଅର୍ଥ ପ୍ରଗଲ୍‌ଭ ।''ଦ୍ୟୁମ୍ନ''ଶବ୍ଦର ଅର୍ଥ କବଚ କୁଣ୍ଡଳସହ ଜନ୍ମ । ସେ କବଚ କୁଣ୍ଡଳ ସହ ଜନ୍ମ ହୋଇଥିଲେ ଓ ଜନ୍ମରୁ ପ୍ରଗଲ୍‌ଭ ଥିଲେ । ଏଣୁ ତାଙ୍କ ନାମ ଧୃଷ୍ଟଦ୍ୟୁମ୍ନ ହୋଇଥିଲା । ଦ୍ରୁପଦ ରାଜାଙ୍କର ଅର୍ଦ୍ଧେକ ରାଜ୍ୟଲାଭ କରିଥିବାରୁ ଦ୍ରୋଣ ପ୍ରତ୍ୟୁପକାର ପାଇଁ ଧୃଷ୍ଟଦ୍ୟୁମ୍ନଙ୍କୁ ଅସ୍ତ୍ରଶିକ୍ଷା ଦେଇଥିଲେ । ମହାଭାରତ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟ ଧୃଷ୍ଟଦ୍ୟୁମ୍ନଙ୍କ ଦ୍ୱାରା ନିହତ ହୋଇଥିଲେ ।

# ।। କର୍ଣ୍ଣ ।।

ଠିକ୍ ହେଲା, ରାଜାପୁତ୍ରମାନଙ୍କର ଧନୁର୍ବିଦ୍ୟା ପରୀକ୍ଷା ହେବ । ଦିନ ସ୍ଥିର ହୋଇଗଲା । ଏକ ବିରାଟ ପ୍ରଦର୍ଶନ ମଣ୍ଡପର ଆୟୋଜନ ସରିଗଲା । ଧୃତରାଷ୍ଟ୍ର, ଗାନ୍ଧାରୀ, କୁନ୍ତୀ, ପିତାମହ ଭୀଷ୍ମ ଓ ରାଜପରିବାର ସମସ୍ତେ ଏଥିରେ ଯୋଗ ଦେଲେ । ରାଜ୍ୟର ବିଶିଷ୍ଟ ଲୋକମାନଙ୍କୁ ଏଥିରେ ନିମନ୍ତ୍ରଣ କରାଗଲା । ଏକ ବିରାଟ ଜନସମାଗମ ।

ଶଙ୍ଖ ବାଜି ଉଠିଲା । ଆରମ୍ଭ ହେଲା ଅସ୍ତ୍ରବିଦ୍ୟାର ପରୀକ୍ଷା । ସମସ୍ତେ ନିଜେ ନିଜର ଅସ୍ତ୍ର କୌଶଳ ପ୍ରଦର୍ଶନ କଲେ । ଅର୍ଜୁନଙ୍କର ଆଲୌକିକ ଅସ୍ତ୍ର ଚାଳନା, ସମସ୍ତଙ୍କୁ ବିସ୍ମିତ କଲା । ଦୁର୍ଯ୍ୟୋଧନଙ୍କ ମୁହଁ କଳାପଡ଼ିଗଲା । ଧୃତରାଷ୍ଟ୍ରଙ୍କର ମନର ସରସତା ଉଭେଇ ଗଲା । ନିଜ ପୁତ୍ରମାନଙ୍କ ତୁଳନାରେ ପାଣ୍ଡୁ ପୁତ୍ରମାନଙ୍କର ପାରଦର୍ଶିତା ଅଧିକ । ଏହା ହିଁ ତାଙ୍କର ଚିନ୍ତାର କାରଣ ।

ଦର୍ଶକମଣ୍ଡଳୀ ଭିତରେ ଚହଳ ପକାଇ ଏକ ବଜ୍ରନିର୍ଘୋଷ ସ୍ୱର ଶୁଣାଗଲା । ମଞ୍ଚ ଉପରକୁ ଉଠିଆସିଲେ ଏକ ତେଜୋଦୀପ୍ତ ବ୍ୟକ୍ତି । ବାହାସ୍ଫୁଟ ମାରି କହିଲେ "ଅର୍ଜୁନଙ୍କର ଅସ୍ତ୍ର କୌଶଳରେ ଆନନ୍ଦିତ ବା ବିସ୍ମିତ ହେବାର କିଛି ନାହିଁ । ସୁଯୋଗ ଦେଲେ, ମୁଁ ମଧ୍ୟ ଅନୁରୂପ କୌଶଳ ଦେଖାଇପାରିବି । ମୋ ପକ୍ଷରେ ଏ ସବୁ ନିହାତି ମାମୁଲି କଥା । ଆଚାର୍ଯ୍ୟ ଦ୍ରୋଣ ମଧ୍ୟ ମୋର ଗୁରୁ । ମୁଁ ତାଙ୍କୁ ମୋର ପ୍ରଣତି ଜଣାଉଛି ।" ପାଣ୍ଡବମାନେ ଏଥିରେ ପ୍ରତିବାଦ କଲେ । କହିଲେ "ତୁମେ ଜଣେ ସୂତପୁତ୍ର । ରାଜପୁତ୍ରମାନଙ୍କର ଅସ୍ତ୍ର ପ୍ରତିଯୋଗିତାରେ ଭାଗ ନେବାର ଅଧିକାର ତୁମର ନାହିଁ । ତୁମେ ସଭାମଞ୍ଚରୁ ଅପସରି ଯାଅ । ରାଜାର ସମାନସ୍କନ୍ଧ କେବଳ ଜଣେ ରାଜା । ଅନ୍ୟ କେହି ନୁହେଁ ।" ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ଲକ୍ଷ୍ୟ କରି କହିଲେ, " ହେ ମହାନ ବୀର ! ମୁଁ ତୁମ ପାଖରେ ମୋର ସମସ୍ତ ବିଭବ ସମର୍ପଣ କରୁଛି । ରାଜପଦ ଲାଭ ପାଇଁ ମୁଁ ତୁମକୁ ଅଙ୍ଗରାଜ୍ୟର ଅଧୀଶ୍ୱର ରୂପେ ଘୋଷଣା କରୁଛି । ଆସ, ରାଜମୁକୁଟ ଗ୍ରହଣ କର । ମୁଁ ସର୍ବ ସମକ୍ଷରେ ତୁମ ହସ୍ତରେ ଅଙ୍ଗରାଜ୍ୟ ଅର୍ପଣ କଲି । ଆଜିଠାରୁ ତୁମେ ଅଙ୍ଗରାଜ୍ୟର ରାଜା ଓ ମୋର ପରମବନ୍ଧୁ । ପାଣ୍ଡବମାନେ ଅଙ୍ଗର ଅଧିପତିଙ୍କୁ ସୂତପୁତ୍ର ବୋଲି ଆଉ ସମ୍ବୋଧନ କରିପାରିବେ ନାହିଁ । ରାଜାର ସମାନସ୍କନ୍ଧ ରାଜା ଭାବରେ ତୁମେ ଅସ୍ତ୍ରକୌଶଳ ପ୍ରଦର୍ଶନ କର । ଏ ଅଧିକାର କ୍ଷତ୍ରିୟର, ରାଜାର, ବୀରର ଏବଂ ସର୍ବୋପରି ଅଙ୍ଗାଧୀପତିଙ୍କର । ଦ୍ୱନ୍ଦ ଯୁଦ୍ଧ ପାଇଁ ଅର୍ଜୁନ୍ କର୍ଣ୍ଣ ପ୍ରସ୍ତୁତ ହୋଇଗଲେ ।

କୁନ୍ତୀ, ନିଜର ଜ୍ୟେଷ୍ଠ ଓ କନିଷ୍ଠ ପୁତ୍ର ମଧ୍ୟରେ ସଂଘର୍ଷ ହେବାର ଭାବନାରେ ମଉଳି ଗଲେ । କୃପାଚାର୍ଯ୍ୟ ଉଭୟ ବୀରଙ୍କୁ ଲକ୍ଷ୍ୟ କରି କହିଲେ, "ଦ୍ୱନ୍ଦ ଯୁଦ୍ଧର ନୀତି ଅନୁସାରେ, ପ୍ରଥମେ ନିଜର ବଂଶ ପରିଚୟ ଦେବାକୁ ହେବ । ପିତାମାତାଙ୍କର ପରିଚୟ ଅନୁସାରେ ଅର୍ଜୁନଙ୍କ ପିତା ପାଣ୍ଡୁ ଓ ମାତା କୁନ୍ତୀ, ତୁମେ ତୁମର ପିତାମାତାଙ୍କର ନାମ ପ୍ରକାଶକର, କର୍ଣ୍ଣ ।

ରାଜପୁତ୍ରମାନେ ରାଜାବଂଶର ବ୍ୟକ୍ତି ବ୍ୟତୀତ ଅନ୍ୟ କୌଣସି ସାମାନ୍ୟ କୂଳର ବୀରଙ୍କ ସହିତ ଯୁଦ୍ଧ କରନ୍ତି ନାହିଁ ।

ଠିକ୍ ଏତିକିବେଳେ ସାରଥି ଅଧିରଥ, ଅଙ୍ଗରାଜ୍ୟର ଅଧୀଶ୍ୱର ଭାବରେ ପୁତ୍ରକୁ ସଂଭାଷଣ ଜଣାଇ ଆଲିଙ୍ଗନ କଲେ । କର୍ଣ୍ଣ ପିତାଙ୍କୁ ଭକ୍ତି ଗଦ୍ ଗଦ୍ ହୋଇ ପ୍ରଣାମ ଜଣାଇଲେ ।

ଭୀମ ବ୍ୟଙ୍ଗ କରି କହିଲେ, ''ପିତା,ମାତାଙ୍କର ପରିଚୟର ଆବଶ୍ୟକତା ଆଉନାହିଁ । ସୂତପୁତ୍ରର ପରିଚୟ ଠିକ୍ ସମୟରେ ମିଳିଗଲା । ସାରଥିର ପୁତ୍ର ସାରଥି ସେବା ପାଇଁ ଯୋଗ୍ୟ । ଅଙ୍ଗରାଜ୍ୟର ରାଜପଣ ପାଇଁ ନୁହେଁ ।''

ମହାବୀର କର୍ଣ୍ଣଙ୍କର ମୁଖ ମଳିନ ହୋଇଗଲା । ଦୁର୍ଯ୍ୟୋଧନ ପ୍ରତିବାଦ କରି କହିଲେ, ''ତୁମର ପିତୃପରିଚୟ  ମଧ କାହାକୁ ଅଗୋଚର ନୁହେଁ । କବଚ କୁଣ୍ଡଳଧାରୀ ଆଦିତ୍ୟସମ ଏହି ବୀର, ତୁମ ପ୍ରଶ୍ନର ବହୁ ଉର୍ଦ୍ଧ୍ୱରେ । ବହୁ ଋଷି, ରାଜା, ମହାରାଜ, ଦେବର୍ଷି ଓ ବ୍ରହ୍ମର୍ଷିମାନଙ୍କର ପିତୃପରିଚୟ ଓ ବଂଶ ଗୋତ୍ର ଖୋଜିଲେ ବିସ୍ମିତ ହେବାକୁ ପଡ଼େ । ସେମାନଙ୍କର ଜନ୍ମ ରହସ୍ୟମୟ ତଥାପି ସେମାନେ ଅନନ୍ତ ଶକ୍ତିର ଅଧିକାରୀ । ଏହା କହି ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ନେଇ ସଭାମଣ୍ଡପରୁ ବିଦାୟ ନେଲେ । କର୍ଣ୍ଣ କହିଲେ, ''ହେ କୁରୁଶ୍ରେଷ୍ଠ ! ଆପଣତ ମୋତେ ଅଙ୍ଗରାଜ୍ୟ ପ୍ରଦାନ କଲେ, ପ୍ରତିଦାନର କର୍ତ୍ତବ୍ୟ ତୁଲାଇବା ପାଇଁ ମୋତେ ସୁଯୋଗ ଦିଅନ୍ତୁ ।''

''ମୁଁ ତୁମଠାରୁ କିଛି ଚାହେଁନା, ଚାହେଁ ତୁମର ସଖାପଣିଆ ବନ୍ଧୁ ! ତାହାହିଁ ମୋର ଚିରଜୀବନର ପ୍ରାପ୍ୟ ।''

କର୍ଣ୍ଣ ଦୁର୍ଯ୍ୟୋଧନଙ୍କୁ ନିବିଡ଼ ଭାବରେ ଆଲିଙ୍ଗନ କରି କହିଲେ, ''ପ୍ରାଣ ବିନିମୟରେ ଉଭୟଙ୍କ ଅନ୍ତରର ଏ ନିବିଡ଼ତାକୁ ମୁଁ ରକ୍ଷା କରିବି ।''

ଦେବରାଜ ଇନ୍ଦ୍ର ଜାଣିଥିଲେ, ସୂର୍ଯ୍ୟପୁତ୍ର କର୍ଣ୍ଣ ଓ ତାଙ୍କ ପୁତ୍ର ଅର୍ଜୁନଙ୍କ ମଧ୍ୟରେ ଦିନେନା ଦିନେ ଭୟାବହ ଯୁଦ୍ଧ ହେବ । ସେ ଏକ ବ୍ରାହ୍ମଣ ବେଶରେ ଯାଇ ପହଞ୍ଚିଲେ ମହାଦାନୀ କର୍ଣ୍ଣଙ୍କ ପାଖରେ । ତାଙ୍କୁ କବଚ ଓ କୁଣ୍ଡଳ ଭିକ୍ଷାକଲେ । କର୍ଣ୍ଣ ଏ ପ୍ରକାର ଏକ ଅଘଟଣ ଘଟିବ ବୋଲି ପୂର୍ବରୁ ଜାଣିଥିଲେ ମଧ, ବ୍ରାହ୍ମଣଙ୍କୁ ହତାଶ କଲେ ନାହିଁ । ସେ ଆନନ୍ଦରେ ତାହା ଦାନ କଲେ ।

ବ୍ରାହ୍ମଣ ବେଶୀ ଇନ୍ଦ୍ର, କର୍ଣ୍ଣଙ୍କର ମହାନୁଭବତାରେ ଏତେ ବିହ୍ୱଳ ହୋଇଗଲେ ଯେ, ସଙ୍ଗେ ସଙ୍ଗେ କହିଲେ, ''ଆପଣଙ୍କର ଏ ଦାନରେ ମୁଁ ଅତ୍ୟନ୍ତ ଆନନ୍ଦିତ । ଯାହାଇଚ୍ଛା ଏକ ବର ମାଗନ୍ତୁ, ମୁଁ ଦେବି ।'' କର୍ଣ୍ଣ ଛଦ୍ମବେଶୀ ଇନ୍ଦ୍ରଙ୍କୁ ଠିକ୍ ଭାବରେ ଚିହ୍ନିପାରିଥିଲେ ।

ସେ ନମ୍ର କଣ୍ଠରେ କହିଲେ, ''ଆପଣ ଯଦି ସନ୍ତୁଷ୍ଟ, ତେବେ ମୋତେ ନିଜର, ''ବାସବାସ୍ତ୍ର'' ପ୍ରଦାନ କରନ୍ତୁ ।'' ଇନ୍ଦ୍ର ନିଜ ରୂପ ପ୍ରକାଶ କରି କହିଲେ, ''ମୁଁ ଏଇ ସର୍ତ୍ତରେ ଏହି ବରପ୍ରଦାନ କରୁଛି ଯେ ତୁମେ କେବଳ ଏହା ମାଧମରେ ଯେ କୌଣସି ଜଣେ ଶତ୍ରୁକୁ ସଂହାର କରିପାରିବ ଓ ତାପରେ ଏହା ମୋ ପାଖକୁ ଫେରିଆସିବ ।''

ଇନ୍ଦ୍ର ଅନ୍ତର୍ଦ୍ଧାନ ହୋଇଗଲେ ।

କିଛିଦିନ ପରର ଘଟଣା । କର୍ଣ୍ଣ ଶୁଣିଲେ, କ୍ଷତ୍ରିୟ ବିଦ୍ୱେଷୀ ମହର୍ଷି ପର୍ଶୁରାମ ହିମାଳୟରେ ତପସ୍ୟା କରିବା ପାଇଁ ଚାଲିଯିବେ । ସେ ତାଙ୍କର ଧନ ସମ୍ପତ୍ତି ଦାନ କରିସାରିଲେଣି । ତାଙ୍କ ପାଖରେ ଥିବା ଅମୋଘ ଅସ୍ତ୍ର ସବୁ ଦାନ କରିବାକୁ ଉପଯୁକ୍ତ ପାତ୍ର ଖୋଜୁଛନ୍ତି । କର୍ଣ୍ଣ ତାଙ୍କ ପାଖକୁ ଯାଇ ନିଜକୁ ବ୍ରାହ୍ମଣ ସନ୍ତାନ ବୋଲି ପରିଚୟ ଦେଲେ, ପର୍ଶୁରାମଙ୍କର ଶିଷ୍ୟତ୍ୱ ଭିକ୍ଷାକଲେ । ପର୍ଶୁରାମ ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରି ନାନା ଅସ୍ତ୍ରବିଦ୍ୟା ଶିକ୍ଷା ଦେଲେ ।

ବ୍ରହ୍ମାସ୍ତ୍ର ପ୍ରୟୋଗର ବିଧି ବିଧାନ ଓ ମନ୍ତ୍ରଶିକ୍ଷା ଦେଲେ । ଦିନେ ଗୁରୁଦେବ ପର୍ଶୁରାମ ତାଙ୍କ କୋଳରେ ମୁଣ୍ଡଦେଇ ଶୋଇଥାନ୍ତି, ହଠାତ୍ ଏକ କୀଟର ତୀବ୍ର ଦଂଶନରେ କର୍ଣ୍ଣଙ୍କ ଜଙ୍ଘରୁ ରକ୍ତସ୍ରାବ

ହେଲା । ଗୁରୁଙ୍କର ନିଦ୍ରାଭଙ୍ଗ ଭୟରେ ସେ ହଲଚଲ ହେଲେନାହିଁ । ପର୍ଶୁରାମ ଉଠିବା ପରେ କର୍ଣ୍ଣଙ୍କର ଏ ଅବସ୍ଥା ଦେଖି ବ୍ୟସ୍ତ ହୋଇ ଉଠିଲେ ଏବଂ ପର ମୁହୂର୍ତ୍ତରେ କ୍ରୋଧ ଜର୍ଜରିତ ହୋଇ କହିଲେ, ''ତୁମେ କେବେହେଲେ ବ୍ରାହ୍ମଣ ପୁତ୍ର ନୁହଁ । ଜଣେ ବ୍ରାହ୍ମଣ ଏତେ ଜ୍ୱାଳା ସହ୍ୟ କରିପାରିବ ନାହିଁ । ତୁମେ ନିଶ୍ଚୟ ଜଣେ କ୍ଷତ୍ରିୟ । ବ୍ରାହ୍ମଣର ପରିଚୟ ଦେଇ ମୋର ଶିଷ୍ୟତ୍ୱ ଗ୍ରହଣ କରିଛ, ଭୁଲ କହୁଛି ?'' କର୍ଣ୍ଣ ନିଜର ଦୋଷ ସ୍ୱୀକାର କରି ପରିଚୟ ଦେଲେ । ପର୍ଶୁରାମ କହିଲେ, ''ତୁମେ ତୁମର ଗୁରୁଙ୍କୁ ପ୍ରତାରଣା କରିଥିବାରୁ ବ୍ରହ୍ମାସ୍ତ୍ର ପ୍ରୟୋଗ କରିବାର କୌଶଳ ଓ ମନ୍ତ୍ର ଜୀବନର ଘଡ଼ିସନ୍ଧି ମୁହୂର୍ତ୍ତରେ ଭୁଲିଯିବ ।'' ଏହାପରେ ପର୍ଶୁରାମ ତାଙ୍କୁ ପରିତ୍ୟାଗ କଲେ । ବିଫଳ ମନୋରଥ ହୋଇ ଫେରିଆସିଲେ କର୍ଣ୍ଣ ।

## ।। ଏକଲବ୍ୟଙ୍କ ଗୁରୁଦକ୍ଷିଣା ।।

ପାଣ୍ଡବ ଓ କୌରବ ରାଜପୁତ୍ରମାନେ ମୃଗୟା ପାଇଁ ବଣକୁ ଯାଇଥାନ୍ତି । ସାଥିରେ ଥାଆନ୍ତି ଗୁରୁ ଦ୍ରୋଣାଚାର୍ଯ୍ୟ । ନିଘଞ୍ଚ ଅରଣ୍ୟ ମଧ୍ୟରେ ସେମାନେ ଘୂରି ବୁଲୁଥାନ୍ତି ମୃଗର ସଂଧାନ ପାଇଁ । ସାଥିରେ ଯାଇଛି କୁକୁରଟିଏ । ହଠାତ୍ କୁକୁର ଭୁକି ଉଠିଲା ।

ଗର୍ଜନ କରି ବଣ ଉଚ୍ଛୁଳାଇ ଦେଲା । ଦେଖାଗଲା, ଅନତିଦୂରରେ ଏକ କିମ୍ଭୂତକିମାକାର ମଣିଷ, କେନ୍ଦୁକାଠ ପରି ଦେହର ରଙ୍ଗ, ମୁଣ୍ଡରେ ଜଟା ଭାର, ବଳିଲା ବଳିଲା ହାତ ଗୋଡ଼ । ଆଖି ଦୁଇଟା ଲାଲ ଲାଲ । ଶାଳଗଛ ପରି ଚେହେରା । ଅଣ୍ଟାରେ କୌପୁନି । ଲୋକଟାକୁ ଦେଖି କୁକର ଭୁକୁଛି । ସେ ଆଖି ପିଛୁଳାକେ ଶରମାରି କୁକୁର ମୁହଁକୁ ବନ୍ଦ କରିଦେଲା । ରାଜପୁତ୍ରମାନେ ଦଉଡ଼ି ଆସିଲେ ତା'ପାଖକୁ । ପଚାରିଲେ ''ହେ ବୀର ! ତୁମେ କିଏ ? ତୁମର ବୀରତା ଆମ୍ଭଙ୍କୁ ବିସ୍ମିତ କରିଛି । ଶର ନିକ୍ଷେପ କରି କୁକୁରର ପାଟିକୁ ବନ୍ଦ କରି ଦେଇଛ ଅଥଚ ସେ ରକ୍ତାକ୍ତ ହୋଇନି । ଏ ପ୍ରକାର ଅସ୍ତ୍ର କୌଶଳ ତୁମେ କାହାଠାରୁ ଶିକ୍ଷାଲାଭ କଲ? ତୁମର ସେ ମହନୀୟ ଗୁରୁ କିଏ ଦୟାକରି କୁହ ।''

''ମୁଁ...ମୁଁ ହେଉଛି ନିଷାଦରାଜ ହିରଣ୍ୟଧନଙ୍କ ପୁତ୍ର 'ଏକଲବ୍ୟ' । ବିଶ୍ୱ ବନ୍ଦନୀୟ ମହର୍ଷି ଦ୍ରୋଣାଚାର୍ଯ୍ୟ ହେଉଛନ୍ତି ମୋର ପୂଜ୍ୟଗୁରୁ । ଏଇ ଯେଉଁ ମୂର୍ତ୍ତି ଆପଣମାନେ ସମ୍ମୁଖରେ ଦେଖୁଛନ୍ତି ଏହା ତାଙ୍କର ପ୍ରତିମୂର୍ତ୍ତି । ପ୍ରଥମେ ମୁଁ ତାଙ୍କୁ ଗୁରୁ ରୂପେ ବରଣ କରିଥିଲି । ସେ ମୋତେ ନୀଚକୁଳସମ୍ଭୂତ ନିଷାଦ ତନୟ ବୋଲି କୃପାରୁ ବଞ୍ଚିତ କଲେ । ବଣକୁ ଫେରିଆସିବା ପରେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରି ଗୁରୁ ରୂପେ ପୂଜା କରୁଛି । ତାଙ୍କୁ ସ୍ମରଣ କରି ମୁଁ ଏହି ଅସ୍ତ୍ରବିଦ୍ୟା ଶିକ୍ଷା କରିଛି । ଏହାହିଁ ତାଙ୍କରି ଦାନ, ଆପଣମାନେ?''

''ଆମ ସବୁ ହସ୍ତିନାପୁରରୁ ବନ ବିହାର ପାଇଁ ଆସିଥିଲୁ । ମହର୍ଷି ଦ୍ରୋଣାଚାର୍ଯ୍ୟ ମଧ୍ୟ ଆମର ଗୁରୁ । ସେ ଆମ ଗହଣରେ ଅଛନ୍ତି । ଅଳ୍ପ ସମୟ ମଧ୍ୟରେ ସେ ଅନ୍ୟମାନଙ୍କ ସହିତ ବୋଧହୁଏ ଆସି ଏଠାରେ ପହଞ୍ଚିବେ ।''

ଗୁରୁଙ୍କୁ ଦର୍ଶନ କରିବାର ସୁଯୋଗ ଆଜି ତାଙ୍କ ପାଖରେ ପହଞ୍ଚିଛି । ଏକଲବ୍ୟ ଆନନ୍ଦରେ ଅଧୀର । ଏଥିଭିତରେ ଅର୍ଜୁନ ଯାଇ ଦ୍ରୋଣଙ୍କ ପାଖରେ ପହଞ୍ଚିଲେ । ଏକଲବ୍ୟ ବିଷୟରେ ସବିଶେଷ ଘଟଣା ପ୍ରକାଶ କଲେ । ଅଭିମାନ ଭରା କଣ୍ଠରେ କହିଲେ, ''ହେ ଗୁରୁଦେବ ! ଆପଣ ଦିନେ ପରମ ପରିତୋଷ

ମଧ୍ୟରେ ମୋତେ ଆଶୀର୍ବାଦ ଦେଇ କହିଥିଲେ, ''ମୋ ଶିଷ୍ୟମାନଙ୍କ ମଧ୍ୟରେ ତୁମେ ସର୍ବଶ୍ରେଷ୍ଠ, ଅଜେୟ । ଆଜି କିନ୍ତୁ ମୁଁ ଯାହା ଦେଖିଲି, ନିଜ ଆଖିକୁ ବି ବିଶ୍ୱାସ କରି ହେଲାନାହିଁ । ଆପଣଙ୍କର ପରମଶିଷ୍ୟ ନିଷାଦପୁତ୍ର ଏକଲବ୍ୟ, ମୋଠାରୁ ବହୁଗୁଣରେ ଶ୍ରେଷ୍ଠ । ତାଙ୍କର ବୈଶିଷ୍ଟ୍ୟରେ ସେ ଅପ୍ରତିଦ୍ୱନ୍ଦ୍ୱୀ । ମୋ ପ୍ରତି ଆପଣଙ୍କର ଶୁଭ ଆଶୀର୍ବାଦ କଣ ବିଫଳ ହେବ ।''

ଦ୍ରୋଣାଚାର୍ଯ୍ୟ ଗମ୍ଭୀର ହୋଇଗଲେ । ଅର୍ଜୁନଙ୍କୁ ସାଥିରେ ନେଇ ସେଠାରେ ଆସି ପହଞ୍ଚିଲେ । ଦ୍ରୋଣଙ୍କୁ ଦେଖି ଏକଲବ୍ୟ ଆନନ୍ଦରେ ଅଭିଭୂତ ହୋଇ ପ୍ରଣାମ ଜଣାଇଲେ । ଭକ୍ତିର ସହିତ ଗୁରୁଙ୍କର ପଦକମଳକୁ ନିଜ ହାତରେ ଧୋଇ ଦେଇ ପୋଛି ଦେଲେ । ଦିବ୍ୟ ଆସନରେ ବସାଇ ପଦବନ୍ଦନା କଲେ । କହିଲେ, ''ହେ ପ୍ରଭୁ ! ଆପଣଙ୍କୁ ମୁଁ ଗୁରୁ ରୂପେ ବରଣ କରିଛି । ଆପଣଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରି ଅସ୍ତ୍ରବିଦ୍ୟା ଶିକ୍ଷା କରିଛି । ଆପଣଙ୍କ ପଦସ୍ପର୍ଶରେ ମୋର ଏଇ ଅସ୍ତ୍ରଶାଳା ଏବଂ ଅସ୍ପୃଶ୍ୟ ବନଭୂମି ପବିତ୍ର ହୋଇଛି । ମୋତେ ଆଶୀର୍ବାଦ ଦିଅନ୍ତୁ ପ୍ରଭୁ ।''

ଦ୍ରୋଣ ହସି ହସି କହିଲେ, ''ତମର ସାଧନା ଓ ସିଦ୍ଧି ପାଇଁ ମୁଁ ଆନନ୍ଦିତ ।'' ଏକଲବ୍ୟ କହିଲେ, ''ହେ ଗୁରୁଦେବ ! ଆଜି ମୁଁ ଅପୂର୍ବ ସୁଯୋଗ ପାଇଛି । ଗୁରୁଦକ୍ଷିଣା ଦେଇ ମୋର ବହୁଦିନର କାମନା ପୂର୍ଣ୍ଣ କରିବି । କି ଦକ୍ଷିଣା ଦେବି ଦୟାକରି ପ୍ରକାଶ କରନ୍ତୁ । ଏ ସୁଯୋଗରୁ ମୋତେ ବଞ୍ଚିତ କରନ୍ତୁ ନାହିଁ ପ୍ରଭୁ !''

''ତୁମର ଧନୁର୍ବିଦ୍ୟା ଶିକ୍ଷା ପଛରେ ମୋର କି ଅବଦାନ ଅଛି ତାହା ମୁଁ ଜାଣେନା । ଗୁରୁଦକ୍ଷିଣା ଲାଭ କରିବା ପାଇଁ ମୁଁ କେତେଦୂର ଯୋଗ୍ୟ, ତାହା ମଧ୍ୟ ମୋର ଧାରଣାର ଅତୀତ । ତୁମେ ତ ରାଜପୁତ୍ର ନୁହଁ, ମୋତେ କି ଦକ୍ଷିଣା ଦେଇପାରିବ ?''

''କିଛି ନ ହେଲେ ତ ଜୀବନ ଦେଇପାରିବି ପ୍ରଭୁ । ଆଦେଶ ଦିଅନ୍ତୁ ।'' ''ତେବେ ତୁମର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳି ମୋତେ ଦାନ କର ।'' ଏକଲବ୍ୟ ଆଖିପିଛୁଳାକେ ନିଜର ବୃଦ୍ଧାଙ୍ଗୁଳି କାଟି ଗୁରୁଙ୍କ ପାଦତଳେ ଅର୍ପଣ କଲେ ।

ହାତରୁ ବାହାରୁ ଥାଏ ଥପ୍ ଥପ୍ ରକ୍ତ । ମୁହଁରେ କିନ୍ତୁ ଗଭୀର ପରିତୃପ୍ତିର ସ୍ମିତ ହସ । ପାଣ୍ଡବ ଓ କୌରବମାନେ ବିସ୍ମିତ ହୋଇ ତାଙ୍କୁ ଚାହିଁଥାନ୍ତି । ଆଚାର୍ଯ୍ୟ ଦ୍ରୋଣ ତାଙ୍କୁ ଆଶୀର୍ବାଦ ଦେଲେ । ଏକଲବ୍ୟ ଭାବ ଗଦ୍ ଗଦ୍ କଣ୍ଠରେ କହିଲେ,

''ହେ ପ୍ରଭୁ ! ଆପଣ ମୋର ଏଇ ପତ୍ରକୁଡ଼ିଆରେ ପାଦଦେବେ, ଏକଥା ସ୍ୱପ୍ନରେ ଭାବି ନ ଥିଲି । ମୁଁ ଆଜି କୃତାର୍ଥ ହୋଇଛି । ମୋ ଦକ୍ଷିଣହସ୍ତର ବୃଦ୍ଧାଙ୍ଗୁଳିଟା ହିଂସା କ୍ରୁରତା ଓ ପାପପୂର୍ଣ୍ଣ ଜୀବନର ଆଧାର ଥିଲା । ଧନୁର୍ବିଦ୍ୟା, ଦ୍ୱନ୍ଦ୍ୱ, ସଂଘର୍ଷ ପରଶ୍ରୀକାତରତା ଓ ଅସହିଷ୍ଣୁତା ବୃଦ୍ଧି କରିବାରେ ସାହାଯ୍ୟ କରୁଥିଲା । ଆପଣ ମୋତେ ଆଜି ସେଇ ପାପ, ଅନ୍ୟାୟ ଓ ଆତଙ୍କରୁ ମୁକ୍ତି ଦେଇଛନ୍ତି । ମୁଁ ପୁନର୍ଜନ୍ମ ଲାଭ କରିଛି । ସାମାନ୍ୟ ବୃଦ୍ଧାଙ୍ଗୁଳି ବଦଳରେ ମୋତେ ମିଳିଛି ଯୁଗଯୁଗର ଅଲଭ୍ୟ ବସ୍ତୁ । ଆପଣଙ୍କର ଶିଷ୍ୟମାନଙ୍କ ମଧ୍ୟରେ ମୁଁ ସବୁଠାରୁ ଭାଗ୍ୟବାନ ଓ ବରଦାନର ଅଧିକାରୀ, ଏହା ଆପଣଙ୍କ କୃପା ।''

ଅର୍ଜୁନଙ୍କ ମୁହଁ ଭାବାବେଗ ମଧ୍ୟରେ ବିବର୍ଣ୍ଣ ଦେଖାଗଲା । ଭୀମ ଓ ଦୁର୍ଯ୍ୟୋଧନ ରହସ୍ୟମୟ ଦୃଷ୍ଟିରେ ତାଙ୍କୁ ଚାହିଁଥିଲେ । ସବୁଠାରୁ ଅଧିକ ରହସ୍ୟମୟ ଜଣାଯାଉଥିଲେ ଦ୍ରୋଣାଚାର୍ଯ୍ୟ । ରଣବିଦ୍ୟାର ଗୁପ୍ତ ରହସ୍ୟ ଭେଦ କରିଥିବା ଏକ ଦୁର୍ଜୟ ଶକ୍ତିକୁ ସେ କୌଶଳରେ ଚିରଦିନ ପାଇଁ ଦୁର୍ବଳ କରିଦେଇପାରିଲେ ।

ଦ୍ରୋଣାଚାର୍ଯ୍ୟ ଏକ ଅପ୍ରକାଶ୍ୟ ଯନ୍ତ୍ରଣା ନେଇ ହସ୍ତିନାପୁରକୁ ଫେରିଆସିଲେ । ସେ ଭଲ ରୂପେ ଜାଣିଥିଲେ, ଏକଲବ୍ୟଙ୍କ ପିତା ହିରଣ୍ୟଧନୁ, ପଞ୍ଚାଳରାଜ ଦ୍ରୁପଦଙ୍କର ପରମବନ୍ଧୁ । ଦ୍ରୁପଦ ତାଙ୍କର ଶତ୍ରୁ । ପ୍ରତାପୀ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ମହାପ୍ରତାପୀ ଏକଲବ୍ୟ ମିଶିଯାଇଥିଲେ ଅବସ୍ଥା ଅସମ୍ଭାଳ ହୋଇଥାନ୍ତା । ଭବିଷ୍ୟତ ଆତ୍ମରକ୍ଷା ପାଇଁ ଏକଲବ୍ୟଙ୍କୁ ସେ ଦୁର୍ବଳ କରିଦେଲେ । ଗୁରୁଦକ୍ଷିଣା ଆଳରେ ଦ୍ରୋଣାଚାର୍ଯ୍ୟଙ୍କର ହୀନ ଚକ୍ରାନ୍ତ ଚରମ ସ୍ୱାର୍ଥପରତାର ଚିହ୍ନ ।

## ।। ମନ୍ତ୍ରୀକଣିକଙ୍କର ଉପଦେଶ ।।

ହସ୍ତିନାରାଜ ଧୃତରାଷ୍ଟ୍ର ଗଭୀର ମାନସିକ ଉଦ୍‌ବେଗ ଭିତରେ ଥାଆନ୍ତି । ସେ ସ୍ପଷ୍ଟଭାବରେ ବିଭାଜନ ରେଖାଟିକୁ ଦେଖି ପାରିଲେଣି । ସେ ଫାଟକୁ ଯୋଡ଼ିବାର ଆଉ କୌଣସି ଉପାୟ ନାହିଁ । ପାଣ୍ଡବମାନେ ପ୍ରଜାମାନଙ୍କ ମଧ୍ୟରେ ଅଧିକ ଲୋକପ୍ରିୟ । ତାଙ୍କ ପୁତ୍ରମାନେ ଶକ୍ତି କେନ୍ଦ୍ରରୁ ଆସ୍ତେ ଆସ୍ତେ ଦୂରେଇ ଯାଉଛନ୍ତି । ନିଜର ରାଜପଣ ଆଉ ଅଧିକ ଦିନ ରହିପାରିବକି ନାହିଁ, ସେ ଆଶଙ୍କା ଗ୍ରସ୍ତ । ମହାମନ୍ତ୍ରୀ ବିଦୁରଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ ପାଣ୍ଡବମାନଙ୍କ ପାଇଁ ଥିବାର ସେ ଅନୁମାନ କରୁଛନ୍ତି । କେତେବେଳେ କି ଅଘଟଣ ଘଟିବ, ସେ ଚିନ୍ତା କରି ପାରୁ ନଥାନ୍ତି । କୂଟନୀତିଜ୍ଞ ମନ୍ତ୍ରୀ କଣିକ ହୁଏତ ଏହି ଦୁଃସମୟରେ କିଛି ପରାମର୍ଶ ଦେଇପାରନ୍ତି । ତାଙ୍କୁ ଡକାଇ, ମନର ନିଭୃତ କଥାଗୁଡ଼ିକ କହି ସେ ପରାମର୍ଶ ଲୋଡ଼ିଲେ ।

ମନ୍ତ୍ରୀ କଣିକ ହସ୍ତିନାରାଜଙ୍କୁ ଆଶ୍ୱାସନା ଦେଇ କହିଲେ, ''ହେ ରାଜନ୍ ! ଥରେ ମନ ଭିତରେ ଦୁଃଶ୍ଚିନ୍ତା ପ୍ରବେଶ କଲେ, ତାହା ମହାଦ୍ରୁମରେ ପରିଣତ ହୁଏ । ଅଙ୍କୁରିତ ଅବସ୍ଥାରେ ତାକୁ ଉପାଡ଼ି ଦେବାକୁ ହେବ । ଆପଣଙ୍କର ରାଜୋଚିତ ପ୍ରାଜ୍ଞତା, ଯେ କୌଣସି ପରିସ୍ଥିତିକୁ ସମ୍ମୁଖୀନ ହେବା ପାଇଁ ଯଥେଷ୍ଟ । ଏଥିପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । କ୍ଷମତା କନ୍ଦଳ ରାଜନୀତିର ଏକ ସ୍ୱାଭାବିକ ଘଟଣା । କୂଟନୈତିକ ଉପଚାର ଦ୍ୱାରା ଏହା ଶାନ୍ତ କରାଯାଇପାରେ । ଏ ଦିଗରେ ମୁଁ କେତୋଟି ମୌଳିକ କଥା ଆପଣଙ୍କୁ କହୁଚି, ଦୟାକରି ଶୁଣନ୍ତୁ ।

''ପ୍ରତ୍ୟେକ ବ୍ୟକ୍ତି 'ଛିଦ୍ରଭେଦ' ପ୍ରତି ସର୍ବଦା ସତର୍କ ରହିବା ଉଚିତ । ରାଜା ଶତ୍ରୁମାନଙ୍କର ଛିଦ୍ର, ଚତୁରତା ସହିତ ଅନୁସନ୍ଧାନ କରିବେ । ତାହା ମିଳିଗଲେ, ଶତ୍ରୁକୁ ପରାସ୍ତ କରିବାର ପଥ ପରିଷ୍କାର ହୋଇଯିବ । ଏହା ଏକ ସରଳ ସତ୍ୟ, ତେବେ ଅତ୍ୟନ୍ତ ସତର୍କ ହେବାକୁ ପଡ଼ିବ ଯେପରି ଶତ୍ରୁ ନିଜ ଛିଦ୍ରର ସୁରାକ ପାଇପାରିବ ନାହିଁ ।''

''ମଣିମା ! ଯେ କୌଣସି କାର୍ଯ୍ୟ କରାଯିବା ପୂର୍ବରୁ, ବିଚାର ଆଲୋଚନା ଓ ଅନୁସନ୍ଧାନ ପାଇଁ ଯଥେଷ୍ଟ ସମୟ ନିଆଯିବା ଉଚିତ । ବିଚାର ପାଇଁ ବିଦ୍ୟା ଅପେକ୍ଷା ଜ୍ଞାନର ଆବଶ୍ୟକତା ଅଧିକ । ବିଦ୍ୟା ସର୍ବଦା ଶାସ୍ତ୍ର ସମ୍ଭୂତ କିନ୍ତୁ ଜ୍ଞାନ ବିବେକ ସମ୍ଭୂତ । ବିହିତ ବିଚାର ପରେ କୌଣସି କାର୍ଯ୍ୟ ଆରମ୍ଭ କରାଗଲେ ତାକୁ ଶେଷ ନକରି ନିବୃତ୍ତ ହେବା ଉଚିତନୁହେଁ । ବିଳମ୍ବ କଲେ କାର୍ଯ୍ୟଭେଦର ଆଶଙ୍କା ଥାଏ ।''

''କଣ୍ଟାକୁ ପୂରା ବାହାର କରି ନ ଦେଲେ କିଛିଅଂଶ ଦେହରେ ରହିଯାଇ କ୍ଷତ ସୃଷ୍ଟି କରେ । ଏଥିପାଇଁ ଜୀବନସାରା ଦୁଃଖ ଭୋଗ କରିବାକୁ ପଡ଼ିଥାଏ । ନିଷ୍କଣ୍ଟକ ହେବାପାଇଁ, ପଥକୁ ସର୍ବଦା ପରିଷ୍କାର କରିବାକୁ ପଡ଼ିବ ।''

''ରିପୁକୁ ଦୁର୍ବଳ ବୋଲି ଭାବି କେବେହେଲେ ଅବହେଳା କରିବା ଉଚିତ ନୁହେଁ । ସାମାନ୍ୟ ଅଗ୍ନିଝୁଲ ମଧ୍ୟ, ଟିକିଏ ପବନ ପାଇଲେ ପ୍ରଳୟ ସୃଷ୍ଟ କରିଦେଇ ପାରେ ।''

''ଶତ୍ରୁ ଶରଣାଗତ ହେଲେ ମଧ୍ୟ, ଭାବପ୍ରବଣତା ମଧ୍ୟରେ ତା'ପ୍ରତି ଅନାବଶ୍ୟକ ଦୟା ଓ ସହାନୁଭୂତି ପ୍ରଦର୍ଶନ କରିବା ଉଚିତ ନୁହେଁ । ଏହା ହୁଏତ ଚରମ ପରିଣତି ସୃଷ୍ଟି କରିପାରେ । ଏଥିପାଇଁ ସର୍ବଦା ସତର୍କ ରହିବାକୁ ପଡ଼ିବ । ଅଯାଚିତ ଦୟା, ଅପରିମିତ ଦୁଃଖର କାରଣ । ମନେରଖିବାକୁ ହେବ ଶତ୍ରୁର କାତର ପ୍ରାର୍ଥନ ତାର ସ୍ୱାର୍ଥସିଦ୍ଧି ପାଇଁ ଉଦିଷ୍ଟ ।''

''ସାମ, ଦାନ, ଦଣ୍ଡ ଓ ଭେଦନୀତି ପ୍ରୟୋଗ ଦ୍ୱାରା ଶତ୍ରୁକୁ କରାଗତ କରାଯାଇପାରେ । ଯିଏ ଯେଉଁଥିପାଇଁ ଯୋଗ୍ୟ ତାକୁ ତାହାହିଁ ଦିଆଯିବା ଉଚିତ । ଭୟାଳୁକୁ ଭୟ ଦେଖାଇ, ନିଜଠାରୁ ଅଧିକ ଦକ୍ଷବ୍ୟକ୍ତି ପାଖରେ ନମନୀୟ ହୋଇ, ଲୋଭୀକୁ ଧନଦାନ କରି ଓ ସମାନସ୍କନ୍ଧ ତଥା ନିଜଠାରୁ ନ୍ୟୁନବ୍ୟକ୍ତିକୁ ନିଜର ଦୀପ୍ତି ଦେଖାଇ ବଶୀଭୂତ କରିବା ଉଚିତ । କେବଳ କୂଟନୀତି ଦୃଷ୍ଟିରୁ ନୁହେଁ, ସାମାଜିକ ତଥା ପାରିବାରିକ ଜୀବନରେ ମଧ୍ୟ ଏହାର ତାତ୍ପର୍ଯ୍ୟ ରହିଛି ।

''ହେ ରାଜନ୍ ! ଅନ୍ୟର ସ୍ୱାର୍ଥସିଦ୍ଧି ଏକାଥରରେ କରିଦେବା ଉଚିତ ନୁହେଁ । କିଛି କିଛି ବାକିରଖି, ତାକୁ ଆଶା ଭିତରେ ବନ୍ଧାଇ ରଖିଲେ ଲୋକଟି ସବୁବେଳେ ଆୟତ୍ତରେ ରହିବ ।''

ନୀତିଜ୍ଞ ଲୋକର କାମକୁ ଶତ୍ରୁ କିମ୍ବା ମିତ୍ର ସହଜରେ ଭେଦ କରିପାରନ୍ତି ନାହିଁ । ଫଳାଫଳ ଦେଖିବା ପରେ ସମ୍ୟକ୍ ଧାରଣା ସୃଷ୍ଟି ହୋଇଥାଏ । ଆକଳନ କରାଯାଇ ପାରୁନଥିବା ପର୍ଯ୍ୟନ୍ତ ଶତ୍ରୁ ତା'ର ପ୍ରତିପକ୍ଷକୁ ଭୟ କରେ । ଥରେ ଆକଳିତ ହୋଇଗଲେ, ଭୟ ଦୂରେଇଯାଏ ।''

ହସ୍ତିନାରାଜ ଆନନ୍ଦିତ ହୋଇ କହିଲେ, ''କଣିକ ! ଅନ୍ଧକାର ଭିତରେ ତୁମେ ମୋତେ ବାଟ ଦେଖାଇଛ । ମୁଁ ରାଜଧର୍ମ ପାଳନ କରିବି । ମୁଁ ତୁମକୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।''



## ଚାରି

# ।। ଜତୁଗୃହ ।।

ମହାରାଜ ଧୃତରାଷ୍ଟ୍ର ଅନୁଭବ କଲେ, ହସ୍ତିନାପୁରରେ ଆଜି ଦୁଇଟି ପରସ୍ପର ବୈରାଧୀ ଶିବିର ମୁଣ୍ଡ ଟେକିଛି । ଗୋଟିଏ ପାଖରେ ପାଣ୍ଡବ, ଆରପାଖରେ କୌରବ । ଏହା ତାଙ୍କର ଗଭୀର ଚିନ୍ତାର କାରଣ ।

ସେଦିନ ଦୁର୍ଯ୍ୟୋଧନ ଆସି, ଏକାନ୍ତରେ ପିତାଙ୍କ ପାଖରେ ତାଙ୍କର ପ୍ରଚ୍ଛନ୍ନ ପ୍ରତିକ୍ରିୟା ପ୍ରକାଶ କଲେ । କହିଲେ, ''ହେ ପିତା ! ଛଦ୍ମବେଶରେ ସାରାରାଜ୍ୟରେ ବୁଲିବୁଲି ପ୍ରଜାମାନଙ୍କର ଦୃଢ଼ ମତାମତ ଓ ମନୋଭାବ ପରୀକ୍ଷା କରୁଥିଲି । ସମସ୍ତେ କହୁଛନ୍ତି, '' ଜଣେ ଅନ୍ଧ ରାଜପଣ କରିବା ପାଇଁ ଆଉ ଅଧିକ ସମୟ ଦେବା ଉଚିତ ନୁହେଁ । ସେମାନେ ଯୁଧିଷ୍ଠିରଙ୍କୁ 'ଧର୍ମରାଜ' ପଦ ଦେଇଛନ୍ତି । ସମସ୍ତଙ୍କର ଇଛା, ଯେତେଶୀଘ୍ର ସମ୍ଭବ ସେ ରାଜଗାଦି ଫେରିପାଆନ୍ତୁ । ରାଜ୍ୟରେ ସୁଖଶାନ୍ତି ଆନନ୍ଦ ଭରିଉଠିବ । କିନ୍ତୁ ସେମାନେ କେହି ବୁଝୁନାହାଁନ୍ତି ଯେ, ଯୁଧିଷ୍ଠିର କ୍ଳୀବ ନପୁଂସକ ଠାରୁ ଆହୁରି ହୀନ । ତାଙ୍କର ଏ ଭଲ ପଣିଆ ଦୁର୍ବଳତାର ଏକ ଆବରଣ । ସେ ରାଜା ହେଲେ, ପ୍ରକୃତରେ ରାଜପଣ କରିବ ଦୁର୍ଦାନ୍ତ ଅବିବେକୀ ଭୀମ । ପ୍ରଜାଗଣ ଘୋର ଦୁର୍ଦ୍ଦଶାର ସମ୍ମୁଖୀନ ହେବେ । ରାଜ୍ୟର ଅରାଜକତା ବୃଦ୍ଧି ପାଇବ । ଆପଣଙ୍କୁ ଓ ମା'ଙ୍କୁ ସେମାନେ ବନ୍ଦୀ କରିରଖିବେ । ଆମେ ସବୁ ତାଙ୍କର ଦୟାର ପାତ୍ର ହୋଇରହିବୁ ସାମାନ୍ୟ ଅନ୍ନ ମୁଠାଏ ପାଇଁ । ଏହାର ଆଶୁ ପ୍ରତିକାର ଆବଶ୍ୟକ ।

ଧୃତରାଷ୍ଟ୍ର ନିବିଷ୍ଟଭାବରେ ସବୁ ଶୁଣୁଥାନ୍ତି । ଏକ ଦୀର୍ଘନିଶ୍ୱାସ ତ୍ୟାଗ କରି କହିଲେ, ''ଏହା ଯଦି ସତ୍ୟ ହୁଏ ତାର ପରିଣତି କଥା ମୁଁ ଚିନ୍ତା କରିପାରୁନି ।'' ଦୁର୍ଯ୍ୟୋଧନ କହିଲେ, ''ଏଥିପାଇଁ ଆପଣ ହିଁ ଦାୟୀ । ଯୁଧିଷ୍ଠିରଙ୍କୁ ଆପଣ ଯୁବରାଜ ପଦରେ ଅଭିଷିକ୍ତ କରି ନଥିଲେ, ଏ ପ୍ରକାର ଧାରଣା କାହାରି ଭିତରେ ସୃଷ୍ଟି ହୋଇ ନଥାନ୍ତା । ଆପଣ ରାଜା, ଆପଣଙ୍କର ଜ୍ୟେଷ୍ଠପୁତ୍ର ଯୁବରାଜ ପଦରେ ଅଭିଷିକ୍ତ ହୋଇଥାନ୍ତା । ଆଜି ଯେଉଁ ଭୁଲ କରିଛନ୍ତି ସେଥିପାଇଁ କୌରବ କୁଳର କେହି ରାଜସିଂହାସନ ପାଇ ପାରିବେ ନାହିଁ । ପ୍ରଜାମାନଙ୍କ ସହିତ ଜଣେ ହୋଇ ତାଙ୍କ ଦ୍ୱାରା ଶାସିତ ହେବେ । କୁରୁକୁଳ ଧ୍ୱଂସ ହୋଇଯିବ । ଆପଣ ଜ୍ୟେଷ୍ଠ... ସିଂହାସନ ଆପଣଙ୍କର, ଆମର ମଧ୍ୟ ।''

''ପୁତ୍ର ଦୁର୍ଯ୍ୟୋଧନ ! ମୁଁ ଭାବୁଛି ଭୁଲ କରିନାହିଁ ବୋଲି । ନିୟତି ମୋତେ ରାଜପଣରୁ ବଞ୍ଚିତ କରିଥିଲା ଚକ୍ଷୁହୀନ କରି । ଧର୍ମବଳରୁ ମୋତେ ରାଜସିଂହାସନ ମିଳିଲା । ମହାତ୍ମା ପାଣ୍ଡୁ ରାଜନୀତି ଦୃଷ୍ଟିରୁ ସିଂହାସନ ଲାଭ କରିଥିଲେ । ଦୀର୍ଘଦିନର ରାଜପଣ ଭିତରେ ସେ ପ୍ରଜାମାନଙ୍କର ହୃଦୟ ଜୟ କରିଛନ୍ତି । ତାଙ୍କ ପରେ ତାଙ୍କ ପୁତ୍ର ରାଜପଣ କରିବା କଥା । ସେମାନେ ନାବାଳକ ଥିଲେ ବୋଲି ମୁଁ ତାଙ୍କ ତରଫରୁ ରାଜ୍ୟ ଶାସନ କରୁଥିଲି । ଯୁଧିଷ୍ଠିରଙ୍କ ବୟପ୍ରାପ୍ତି ପରେ ସେ ଯୁବରାଜ ହେବାର କୌଣସି ଅସଙ୍ଗତି ନାହିଁ । ତାହା ନ କରିଥିଲେ, ପ୍ରଜାମାନେ ବିଦ୍ରୋହ କରିଥାନ୍ତେ । ଯୁବରାଜ ଯୁଧିଷ୍ଠିର ସିଂହାସନ

ଲାଭ କରିବା ପରେ, ଅବିଚାର କରିବେ ନାହିଁ ବୋଲି ମୋର ଧାରଣା । ସେ ନୀତିବାନ୍ ତାଙ୍କ ଆଖିରେ ସମସ୍ତେ ସମାନ । ତୁମେ ବୃଥା ଆଶଙ୍କା କରନାହିଁ ।''

ଦୁର୍ଯ୍ୟୋଧନ କହିଲେ, ''ପିତା ! ଲୋକଙ୍କ ମନରେ ଅତୀତ କଥା ବେଶିଦିନ ରହେନାହିଁ । ସେମାନେ ବର୍ତ୍ତମାନ ସର୍ବସ୍ୱ । ବର୍ତ୍ତମାନକୁ ନେଇ ତାଙ୍କର ବିଚାର । ଆପଣଙ୍କ ରାଜପଣରେ ପ୍ରଜାମାନେ ସନ୍ତୁଷ୍ଟ ବୋଲି କୁହାଯାଇପାରିବ ନାହିଁ । ପିତାମହ ଭୀଷ୍ମ ଓ କାକା ବିଦୁରଙ୍କ ବ୍ୟତୀତ ଅନ୍ୟ କେହି ପାଣ୍ଡବମାନଙ୍କ ସପକ୍ଷରେ ନାହାନ୍ତି । ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଆମର ବିରୋଧ କରିବେ ନାହିଁ, ସେ ଯେଉଁଠାରେ ଦ୍ରୋଣ ମଧ୍ୟ ସେଠାରେ । ସେ ରହିବେ ଆମ ପକ୍ଷରେ । ମାମୁ ଶକୁନି ଅତି ଆତ୍ମୀୟ ଓ ତାଙ୍କର ମନ୍ତ୍ରଣା ଉଚ୍ଚକୋଟୀର । ପ୍ରବଳ ପରାକ୍ରାନ୍ତ ତ୍ରିଭୁବନ ବିଜୟୀ ମହାବୀର କର୍ଣ୍ଣ ଆମର ସଖା । ବିଦୁର ରାଜାନ୍ନରେ ପ୍ରତିପାଳିତ ତେଣୁ ପ୍ରତ୍ୟକ୍ଷ ସମର୍ଥନ ସେ ପାଣ୍ଡବମାନଙ୍କୁ ଦେବେ ନାହିଁ । ଉଭୟପକ୍ଷର ଶାନ୍ତି ଆବଶ୍ୟକ । ଆପଣ ଏତିକି ଅନୁମତି ଦିଅନ୍ତୁ, କିଛିଦିନ ପାଇଁ ପାଣ୍ଡବମାନେ ବାରଣାବତ ନଗରୀରେ ଯାଇ ବାସ କରିବେ । ପରିସ୍ଥିତିର ପରିବର୍ତ୍ତନ ହେଲେ ସେମାନେ ପୁଣି ହସ୍ତିନାପୁରକୁ ଫେରିଆସିବେ ।''

ଧୃତରାଷ୍ଟ୍ର ଏ ପ୍ରସ୍ତାବରେ ଏକମତ ହେଲେ । ଠିକ୍ କଲେ, ବାରଣାବତ ନଗରରେ ଶିବଙ୍କର ଏକ ଉତ୍ସବ ପାଳିତ ହେବ । ଏଥିପାଇଁ ପାଣ୍ଡବମାନଙ୍କୁ ନିମନ୍ତ୍ରଣ କରାଯିବ । ତା ପୂର୍ବରୁ ସେଠାରେ ଏକ ସୁରମ୍ୟ ରାଜପ୍ରାସାଦ ନିର୍ମିତ ହେଲା । ପାଣ୍ଡବମାନେ ମହାଆନନ୍ଦରେ ସେଠାରେ କିଛିଦିନ ରହିବେ । ସେ ନଗରର ସୌନ୍ଦର୍ଯ୍ୟ ବିଷୟରେ ଏପରି ପ୍ରଚାର କରାଗଲା ଯେ ପାଣ୍ଡବମାନେ ଆପେ ଆପେ ସେଠାକୁ ଯିବାକୁ ଆକର୍ଷିତ ହେଲେ । ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ଡାକି କହିଲେ, ''ବିଶ୍ରାମ ଓ ମନ ପରିବର୍ତ୍ତନ ପାଇଁ ମା'ଙ୍କୁ ନେଇ ବାରଣାବତ ନଗରରେ କିଛିଦିନ ଅତିବାହିତ କର, ତା'ପରେ ହସ୍ତିନାପୁରକୁ ସମସ୍ତେ ଫେରିଆସିବ ।'' ଯୁଧିଷ୍ଠିର ଆନ୍ତରିକତା ଅନୁଭବ କଲେ, ଭାବିଲେ ପ୍ରସ୍ତାବ ମନ୍ଦ ନୁହେଁ । କିଛିଦିନ ବାହାରେ ରହିଲେ ନିଶ୍ଚୟ ଆନନ୍ଦ ମିଳିବ । ସେମାନେ ବାରଣାବତ ନଗରକୁ ଯିବାକୁ ପ୍ରସ୍ତୁତ ହେଲେ ।

ପାଣ୍ଡବମାନେ ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ର, ଗାନ୍ଧାରୀ ପ୍ରଭୃତିଙ୍କ ଠାରୁ ବିଦାୟ ନେଲେ । ବିଦୁରଙ୍କ ଠାରୁ ବିଦାୟ ନେବା ବେଳେ ସେ ଦୁର୍ଯ୍ୟୋଧନଙ୍କ ଚକ୍ରାନ୍ତ ବିଷୟରେ ଯୁଧିଷ୍ଠିରଙ୍କୁ ସୂଚନା ଦେଲେ । କହିଲେ, ''ସାବଧାନ ରହିବ । କୁନ୍ତୀଙ୍କ ସହ ତୁମମାନଙ୍କୁ ମାରି ଦେବା ପାଇଁ ଦୁର୍ଯ୍ୟୋଧନ ଏ ବ୍ୟବସ୍ଥା କରିଛି । ତାଙ୍କର ମନ୍ତ୍ରୀ 'ପୁରୋଚନ' ତୁମମାନଙ୍କୁ ଦଗ୍ଧ କରିବା ପାଇଁ ଏକ ଜତୁଗୃହ ନିର୍ମାଣ କରିଛି । ଜଣେ ବିଶ୍ୱସ୍ତ ଦୂତକୁ ତୁମ ଗତିବିଧି ଉପରେ ଲକ୍ଷ୍ୟ ରଖିବାକୁ କୁହାଯାଇଛି । ତୁମେମାନେ ଏପରି ବ୍ୟବହାର ଦେଖାଇବ, ଯେପରି ସେମାନଙ୍କ ମନରେ ଧାରଣା ହେବ ଯେ, ତୁମେ ସବୁ ଖୁସିରେ ଅଛ ଏବଂ ସେମାନଙ୍କ ଚକ୍ରାନ୍ତ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ମୁଁ ତୁମକୁ ରକ୍ଷା କରିବା ପାଇଁ

ଆପ୍ରାଣ ଚେଷ୍ଟା କରିବି ।'' ଏହା ଶୁଣି ଯୁଧିଷ୍ଠିର ମର୍ମାହତ ହେଲେ ମଧ୍ୟ, ବାହ୍ୟ ଆଚରଣରେ ତାହା ପ୍ରକାଶିତ ହେଲାନାହିଁ ।

କୁନ୍ତୀ ପାଞ୍ଚପୁଅକୁ ନେଇ ବାରଣାବତ ନଗରୀରେ ପହଞ୍ଚିଲେ । ଯୁଧିଷ୍ଠିର ପ୍ରଭୃତି ପଞ୍ଚପାଣ୍ଡବଙ୍କୁ ନଗରୀର ଲୋକମାନେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ । ନଗର ମଧ୍ୟରେ ପ୍ରବେଶ କଲାକ୍ଷଣି କୋଠରିଗୁଡ଼ିକର କାନ୍ଥରୁ ବାହାରୁଥିବା ଘୃତମିଶ୍ରିତ ଜତୁଗନ୍ଧ ବାରି ହୋଇଗଲା । ଏ ଗୃହଟି ଆଗ୍ନେୟ ତଥା ବାମାଚାରୀ ତାନ୍ତ୍ରିକ ପଦ୍ଧତିରେ ନିର୍ମିତ ବୋଲି ଯୁଧିଷ୍ଠିର ଗୋପନରେ ଅର୍ଜୁନ ଓ ଭୀମଙ୍କଠାରେ ପ୍ରକାଶ କଲେ । ବିଦୁରଙ୍କ ଠାରୁ ପାଇଥିବା, ଦୁର୍ଯ୍ୟୋଧନଙ୍କ ଚକ୍ରାନ୍ତରେ ସବିଶେଷ ବିବରଣୀ ସେମାନଙ୍କୁ ଜଣାଇଲେ । କହିଲେ, ''ଆମେ ସତର୍କ ରହିବା, ଆମ ସତର୍କତାର ସୂଚନା ସେମାନେ ଯେପରି ପାଇବେ ନାହିଁ । ସେଥିପାଇଁ ସଜାଗ ରହିବା ।

ଆନନ୍ଦର ଅଭିନୟ ସୁନ୍ଦର ଭାବେ ଚାଲିଲା । ଦୈନନ୍ଦିନ ଚଳଣିର କ୍ରମିକତାରେ ସତର୍କତାର ସୂଚନା ରହିଲାନାହିଁ । ସମସ୍ତେ ସମ୍ପୂର୍ଣ୍ଣ ଭାବରେ ସତର୍କ ଥିଲେ ମାନସିକ ସ୍ତରରେ ପଞ୍ଚପାଣ୍ଡବ ମୃଗୟା କରିବାକୁ ଯାଆନ୍ତି । ଆନନ୍ଦରେ ମୃଗୟାରୁ ଫେରନ୍ତି । ନଗର ଦ୍ୱାରରେ ରହୁଥିବା ମନ୍ତ୍ରୀ ପୁରୋଚନ, ଭକ୍ତି ଓ ଆନ୍ତରିକତାର ଅଭିନୟ କରେ । ଯୁଧିଷ୍ଠିର ତା' ଦକ୍ଷତାର ଭୂୟସୀ ପ୍ରଶଂସା କରନ୍ତି । ଆନନ୍ଦରେ ସେ ଭିତରେ ଭିତରେ ଚହଲି ଉଠେ । ଦିନେ ଗୋପନରେ ଜଣେ ବ୍ୟକ୍ତି ଆସି ପହଞ୍ଚିଲେ । ସେ କହିଲେ ମୋତେ ବିଦୁର ପଠାଇଛନ୍ତି, ମୁଁ ହେଉଛି 'ଖନକ', କଣ କରିବି କହନ୍ତୁ ।'' ଯୁଧିଷ୍ଠିର ତାଙ୍କୁ ଆଦର ସମ୍ଭାଷଣ ଜଣାଇ ଗୋଟିଏ ଗୁପ୍ତ ସୁଡ଼ଙ୍ଗ ନିର୍ମାଣ କରିବାକୁ ଅନୁରୋଧ କଲେ । ଖନକ ଖୁବ୍ ସତର୍କତାର ସହିତ ସବୁରି ଅଲକ୍ଷ୍ୟରେ ଏହି ଦୁରୂହ କାର୍ଯ୍ୟ ସମ୍ପାଦନ କରି ବିଦାୟ ନେଲେ । ପାଣ୍ଡବମାନଙ୍କର ଆତ୍ମରକ୍ଷାରପଥ ପରିଷ୍କାର ହୋଇଗଲା । କଣ୍ଟାକୁ କଣ୍ଟାରେ କାଢ଼ିବାକୁହେବ । ଭୀମ ସୁଯୋଗ ଖୋଜୁଥିଲେ । ପୁରୋଚନ ପାଣ୍ଡମମାନଙ୍କୁ ସଂହାର କରିବା ପାଇଁ, ଦୁର୍ଯ୍ୟୋଧନଙ୍କ ସହିତ ମନ୍ତ୍ରଣା କରି ଯେଉଁଦିନ ସ୍ଥିର କରିଥିଲେ, ଭୀମ ତା' ପୂର୍ବରୁ ଦେଖିଲା କାମ କରିଦେଲେ । ଖାନା, ପିନା, ଭୋଜି ଭାତ ଭିତରେ ଏକ ଉତ୍ସବର ବ୍ୟବସ୍ଥା ହେଲା । ପୁରୋଚନ ଆକଣ୍ଠ ସୁରାପାନ କରି ଚେତାଶୂନ୍ୟ ହୋଇଗଲା । ଠିକ୍ ଏତିକିବେଳେ ଜତୁଗୃହରେ ଅଗ୍ନି ସଂଯୋଗ କଲେ ଭୀମ । ଆଖିପିଛୁଳାକେ ବନାଗ୍ନି ପରି ତାହା ବ୍ୟାପିଗଲା । କୁନ୍ତୀଙ୍କ ସହିତ ପଞ୍ଚପାଣ୍ଡବ ସୁଡ଼ଙ୍ଗ ମାର୍ଗରେ ବାହାରି ଗଲେ । ଅଗ୍ନିଦାହ ଭିତରେ ମନ୍ତ୍ରୀ ପୁରୋଚନର ମୃତ୍ୟୁ ହେଲା ।

ସକାଳ ହେବାପୂର୍ବରୁ ପାଣ୍ଡବମାନେ ଅରଣ୍ୟ ମଧ୍ୟରେ ଯାଇ, ପହଞ୍ଚିଲେ, ଗଙ୍ଗାନଦୀ ତଟରେ । ସେଠାରେ ଏକ ନୌକାରେ ନଦୀ ପାର ହେଲେ । ବିଦୁର ଏଇ ନୌକାଟିକୁ ପୂର୍ବରୁ ବ୍ୟବସ୍ଥା କରିଥିଲେ ପାଣ୍ଡବମାନଙ୍କର ସୁରକ୍ଷା ପାଇଁ ।

ବାରଣାବତ ନଗରରେ ଭୟଙ୍କର କୋଳାହଳ ।

ଗୃହଦାହ ସମ୍ବାଦ ପ୍ରଚାରିତ ହୋଇଗଲାଣି । ପାଣ୍ଡବମାନେ ଦଗ୍ଧ ହୋଇଥିବା ଭାବି, ବିଳାପ କରୁଥାନ୍ତି, ନଗରବାସୀ । ସମ୍ବାଦ ହସ୍ତିନାରେ ପହଞ୍ଚିଗଲା । ପାଣ୍ଡବମାନଙ୍କର ସନ୍ଧାନ ମିଳୁନି । ସମସ୍ତେ ଭସ୍ମୀଭୂତ ହୋଇଯାଇଛନ୍ତି ବୋଧହୁଏ ।

ବିଷାଦ ବିବର୍ଣ୍ଣ ଧୃତରାଷ୍ଟ୍ର । ସତେଯେପରି ବେଦନା ବିକ୍ଷୁବ୍ଧ ଏକ ଶୋକସାଗର । ଉପର ଅଶାନ୍ତ ଭିତର ଶାନ୍ତ ଓ ଉଲ୍ଲସିତ । ହସ୍ତିନା ରାଜପୁରୀରେ ବିଳାପ ବନ୍ୟା । ନୀତି ଦୃଷ୍ଟିରୁ ଦାନ ଧର୍ମର ବ୍ୟବସ୍ଥା କରାଗଲା । ଅନ୍ତ୍ୟେଷ୍ଟିକ୍ରିୟା ଯଥାରୀତିରେ ସମ୍ପନ୍ନ ହେଲା । ଦୁର୍ଯ୍ୟୋଧନ ଶାନ୍ତିରେ ନିଶ୍ୱାସ ମାରିଲେ । ମୃଷ୍ଟ କଣ୍ଠରେ କହିଲେ ''ହେ ପ୍ରଭୋ ! ତୁମେ ମହାନ୍, ତୁମେ ସର୍ବଶକ୍ତିମାନ, ତୁମେ ବିଶ୍ୱର ଶ୍ରେଷ୍ଠ ବିଚାରକ । ମଣିଷର ହୀନ ବିଚାରରେ, ପିତା ମୋର ରାଜସିଂହାସନରୁ ବଞ୍ଚିତ ହୋଇଥିଲେ, ତୁମେ ତାର ସମାଧାନ ଏଥର କରିଦେଲ । ରାଜାର ଜ୍ୟେଷ୍ଠ ସନ୍ତାନ ବଞ୍ଚିତର ପରାଭବରେ ସାରାଜୀବନ ଯନ୍ତ୍ରଣାଗ୍ରସ୍ତ ହୋଇଥାନ୍ତା । ଆଜି ତୁମେ ଠିକ୍ ବିଚାର ଦେଇଛ ହେ ପ୍ରଭୁ ! ଠିକ୍ ବିଚାର ଦେଇଛ । ନ୍ୟାୟ ଲାଭ ପାଇଁ ମୋର ଉଦ୍ୟମ ସଫଳ ହୋଇଛି ।'' ଭାବୀ ସମ୍ରାଟର ଭାବମୂର୍ତ୍ତି ରକ୍ଷା ପାଇଁ ଦୁର୍ଯ୍ୟୋଧନ କ୍ରନ୍ଦନ ରୋଳରେ ହସ୍ତିନାପୁର ଉଛୁଳାଇ ଦେଲେ । ''ହେ ବିଧାତା ! ତୁମେ କେତେ ନିଷ୍ଠୁର । ଧର୍ମାତ୍ମାମାନଙ୍କୁ ତୁମେ ନେଇଗଲ । ଆମକୁ ଏ ଦାରୁଣ ଦୁଃଖ ଭୋଗ କରିବାକୁ ଥିଲା । ଆହା, କୁରୁବଂଶ ପାଇଁ ଦୈବୀ ଦୁର୍ବିପାକ ଭୋଗିବାକୁ ଥିଲା ।

# ।। ପାଣ୍ଡବମାନଙ୍କର ପଳାୟନ ।।

କୁନ୍ତୀ ଓ ପାଣ୍ଡବ ମାନଙ୍କର ଅକାଳ ବିୟୋଗର ସମ୍ବାଦ ପିତାମହ ଭୀଷ୍ମଙ୍କୁ ନିର୍ବାକ କରିଦେଲା । ସେ ସ୍ଥାଣୁ ପାଲଟି ଗଲେ । ତାଙ୍କପରି ପଳିତପତ୍ର ଥାଉଥାଉ ଗଛର କଅଁଳ ପତ୍ରସବୁ ଝଡିପଡିଲେ । ବିଧିର ବିଡମ୍ବନା, ପୂର୍ବରୁ ବିଚିତ୍ର ବିର୍ଯ୍ୟ, ପାଣ୍ଡୁ, ମାଦ୍ରୀ ଯାଇଥିଲେ । ନିଷ୍ପାପ ଅଙ୍କୁର ଗୁଡିକୁ ମଧ କାଳ ମୋଡି ମାଡ଼ି ଶେଷକରି ଦେଲା । ପଳିତ ପତ୍ରଟା ଏ ଯନ୍ତ୍ରଣାର ଝାଞ୍ଜିପବନରେ କେତେଦିନ ଆଉ ରହିବ । ଭାଗ୍ୟହିଁ ବଳବାନ୍ ।

ବେଦନା ବିବଶ ଭୀଷ୍ମଙ୍କ ନିକଟରେ ଆସି ପହଞ୍ଚିଲେ ମହାମନ୍ତ୍ରୀ ବିଦୁର । ସମ୍ପଦ, ବିପଦରେ ତାଙ୍କର ଥାଏ ଦାର୍ଶନିକ ଦୃଷ୍ଟିଭଙ୍ଗୀ । ମୁଖର ଆକୃତିରୁ ମନର ମ୍ଳାନିମା ମାପିବା ସହଜ ନୁହେଁ । ଭୀଷ୍ମ ତାଙ୍କ ମୁହଁକୁ ନୀରବରେ ଚାହିଁ ରହିଲେ । ନୟନରୁ ଗଡି ଆସିଲା ଅଶ୍ରୁଧାର ।

ବିଦୁର ଖୁବ୍ ପାଖରେ ବସି ଗମ୍ଭୀର କଣ୍ଠରେ କହିଲେ, ''ବ୍ୟସ୍ତ ହୁଅନ୍ତୁ ନାହିଁ, ପାଣ୍ଡବମାନେ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଇ ଯାଇଛନ୍ତି । ଆତ୍ମଗୋପନ କରି ସେମାନେ ଘୂରିବୁଲୁଛନ୍ତି, ବିପଦ ସଂକୁଳ ଅରଣ୍ୟ ଭିତରେ । ତାଙ୍କର କିଛି ଅସୁବିଧା ହୋଇନି ।

ଭୀଷ୍ମଦେବ ଆଶ୍ୱସ୍ତ ହେଲେ । ଅଶ୍ରୁପ୍ଲୁତ ନୟନଯୁଗ ଉଦ୍ଭାସିତ ହୋଇଉଠିଲା । ତା'ପରେ ଚାଲି ଆସିଲେ ବିଦୁର । ଭୀଷ୍ମ ଭାବିଲେ, ତଥାପି ପାଣ୍ଡବ ମାନଙ୍କର ଜୀବନ, ବିପଦ ମୁକ୍ତ ନୁହେଁ । ଭଗବାନ ସେମାନଙ୍କର ସହାୟ ହୁଅନ୍ତୁ ।

ପାଣ୍ଡବମାନେ ଘୋର ଅରଣ୍ୟ ଭିତରେ ବୁଲିବୁଲି ପଥଶ୍ରାନ୍ତ । ସୂର୍ଯ୍ୟାସ୍ତ ହୋଇଗଲାଣି, ଅନ୍ଧକାର ମାଡି ଆସିଲାଣି । ହିଂସ୍ର ଜୀବଜନ୍ତୁମାନଙ୍କର ଭୟଙ୍କର ଶବ୍ଦ ପ୍ରତିଧ୍ୱନିତ ହେଉଛି । ଗୋଟିଏ ଗଛମୂଳରେ ସମସ୍ତେ ବିଶ୍ରାମ ନେଲେ । ଶୋଷରେ ଅଥୟ ହୋଇ ଉଠିଲେ କୁନ୍ତୀ । ତଣ୍ଟି ଶୁଖି ଗଲାଣି । ସେ ବିକଳ ହୋଇ ପାଣିପାଣି ବୋଲି ଚିତ୍କାର କଲେ । ଭୀମ ଚାଲିଗଲେ ସେଇ ଅନ୍ଧକାର ମଧ୍ୟରେ ଜଳର ସଂଧାନ ପାଇଁ । ଜଳ ନେଇ ଫେରିଲେ । ସମସ୍ତଙ୍କର ତୃଷା ନିବାରିତ ହେଲା । କ୍ଷୁଧା ଓ ପଥଶାନ୍ତି ଭିତରେ ସମସ୍ତେ ସୁପ୍ତ ।

ଅଦୂରରୁ ଶୁଣାଗଲା ଏକ ବିକଟାଳ ଶବ୍ଦ । ରାକ୍ଷସ ହିଡ଼ିମ୍ବ ନରମାଂସର ଗନ୍ଧପାଇ ଆନନ୍ଦରେ ବିହ୍ୱଳ ହୋଇ ଉଠିଛି । ପଠାଇଛି ତାର ଭଉଣୀ ରାକ୍ଷସୀ ହିଡ଼ିମ୍ବାକୁ ଅନୁସଂଧାନ ପାଇଁ । ସେ ଆସି ଅହଞ୍ଚିଛି ସେଠାରେ । କୁନ୍ତୀ ଓ ତାଙ୍କର ଅନ୍ୟ ଚାରି ପୁତ୍ର ଶୋଇଛନ୍ତି । ଭୀମ ଜାଗ୍ରତ ଅଛନ୍ତି । ତାଙ୍କର ସୁଦୀର୍ଘ ଶରୀର ଓ ଅନୁପମ ସୌନ୍ଦର୍ଯ୍ୟ ଦେଖି ହିଡ଼ିମ୍ବା ବିହ୍ୱଳ ହୋଇ ଉଠିଲା । ଏକ ସୁନ୍ଦରୀ ମନ ମୋହନୀ ନାରୀ ରୂପରେ ଆସି ପହଞ୍ଚିଲା ଭୀମଙ୍କ ପାଖରେ । ନିଜର ପରିଚୟ ଦେଇ କହିଲା, ''ହେ ମହାନ୍ ! ତୁମେ ଯିଏ ହୁଅନା କାହିଁକି, ପ୍ରଥମ ଦର୍ଶନରେ ତୁମେ ମୋତେ ସମ୍ପୂର୍ଣ୍ଣ ଭାବରେ ବିମୋହିତ କରିଛ । ମୁଁ ମୋ ଭାଇର ନିର୍ମମ ଆଦେଶ ପାଳନ କରି ତୁମମାନଙ୍କୁ ହତ୍ୟା କରି ପାରିବି ନାହିଁ । ମୁଁ ତୁମକୁ ମୋର ପତିଦେବ ରୂପେ ମନମଧ୍ୟରେ ବରଣ କରିଛି । ମୋର ପ୍ରାର୍ଥନା ପୂର୍ଣ୍ଣକର ।''

ଭୀମ ନିଜର ଅସାମର୍ଥ୍ୟ ପ୍ରକାଶକଲେ । ଭଉଣୀର ବିଳମ୍ବ ଦେଖି ଠିକ୍ ଏତିକି ବେଳେ ଆସି ପହଞ୍ଚିଲା ହିଡିମ୍ବ । ବିକଟାଳ ରୂପ, ଆଁ କରି ମାଡି ଆସିଲା ତାକୁ ଗିଳିଦେବ ବୋଲି । ଭୀମ ତାକୁ ସିଂହାର କଲେ । ହିଡ଼ିମ୍ବା ବ୍ୟଥିତ ହେଲେମଧ୍ୟ କାକୁତି ମିନତି ହୋଇ କହିଲା, ''ଅଳ୍ପ ସମୟ ପାଇଁ

ହେଉ ପଛେକେ ତୁମକୁ ମୁଁ ନ ପାଇଲେ, ପ୍ରାଣ ବିସର୍ଜନ କରିବି ।'' ଠିକ୍ ଏତିକି ବେଳେ କୁନ୍ତୀଙ୍କର ନିଦ୍ରା ଭଙ୍ଗ ହୋଇଛି । ସେ ଆସି ଘଟଣାଟା ଜାଣିଲେ ଏବଂ ବନସୁନ୍ଦରୀର ବ୍ୟାକୁଳତା ଅନୁଭବ କରି ପୁତ୍ରକୁ ଅନୁମତିଦେଲେ । କହିଲେ, ଯାଅ, ଯଥାଶୀଘ୍ର ଫେରି ଆସିବ ।''

ହିଡ଼ିମ୍ବା ଆନନ୍ଦରେ ବିହ୍ୱଳ ହୋଇଗଲା । ମା' କୁନ୍ତୀଦେବୀଙ୍କୁ ପ୍ରଣାମ କରି କହିଲା, ''ମା ! ଆଜିର ଆତ୍ମବନ୍ଧନ ଚିରଦିନ ପାଇଁ ଅତୁଟ ରହୁ ।'' ମା'ଙ୍କ ଅନୁମତି ଏବଂ ଆଶୀର୍ବାଦ ନେଇ ଉଭୟେ ଚାଲି ଆସିଲେ । ବନ ପ୍ରଦେଶର ସୁରମ୍ୟ ପ୍ରାକୃତିକ ପରିବେଶ ମଧ୍ୟରେ ହେଲା, ବାସର ମିଳନ । ପରେ ପରେ ହିଡ଼ିମ୍ବା ଏକ ପୁତ୍ର ସନ୍ତାନ ଜନ୍ମ ଦେଲେ । ସତେଅବା ସେ ଦ୍ୱିତୀୟ ଭୀମ । ଯେପରି ସୌମ୍ୟ ସେପରି ସମ୍ମୁନ୍ନତ । ତାକୁ ଦେଖି ଉଭୟେ ଭୀମ ଓ ହିଡ଼ିମ୍ବା ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ଶିଶୁଟିର 'କଚ' ଅର୍ଥାତ କେଶ, ଘଟପରି ଉର୍ଦ୍ଧ୍ୱମୁଖୀ ଥିବାରୁ, ତାର ନାଁ ଦିଆଗଲା ''ଘଟୋତ୍କଚ'' । ଶିଶୁଟି ସଙ୍ଗେସଙ୍ଗେ ବୟଃପ୍ରାପ୍ତି ହେଲା ଓ ପିତାଙ୍କ ଚରଣରେ ପ୍ରଣାମ ଢାଳି କହିଲା, ''ହେ ପିତଃ ! ଠିକ୍ ସମୟରେ ବିପଦବେଳେ ମୁଁ ଯାଇ ଆପଣଙ୍କ ପାଖରେ ପହଞ୍ଚିବି । ଆମକୁ ଏଥର ବିଦାୟ ଦିଅନ୍ତୁ ।'' ଭୀମ ପୁତ୍ରକୁ ଆଲିଙ୍ଗନ କଲେ ।ହିଡ଼ିମ୍ବା ଅଶ୍ରୁସ୍ନିତ ନୟନରେ ଚାହିଁ ରହିଲେ ଏଦୃଶ୍ୟକୁ ।

ଭୀମ, ହିଡିମ୍ବା ଓ ଘଟୋକଚଙ୍କୁ ବିଦାୟ ଦେଇ, ଭାଇମାନଙ୍କ ପାଖକୁ ଯଥା ସମୟରେ ଫେରି ଆସିଲେ । ଏହି ଆକସ୍ମିକ ଘଟଣାଟି ଥିଲା ବିଧି ପ୍ରେରିତ ।ଦେବରାଜ ଇନ୍ଦ୍ର, କର୍ଣ୍ଣଙ୍କ ପ୍ରତିଯୋଦ୍ଧା ରୂପେ ଘଟୋତ୍କଚଙ୍କୁ ଅଭିପ୍ରେତ କରି ଏ ସଂଘଟନର ସୂତ୍ରପାତ କରିଥିଲେ ।

## ॥ ଏକଚକ୍ରପୁର ନଗରୀରେ ପଞ୍ଚପାଣ୍ଡବ ॥

ଘୋର ବନସ୍ତ ଭିତରେ ପାଣ୍ଡବମାନେ ମା'ଙ୍କ ସହିତ ଘୂରି ବୁଲୁଥିଲେ । ବଣର ଫଳମୂଳ ଥିଲା ସେମାନଙ୍କର ଆହାର । କୁନ୍ତୀ ଦେବୀ ବୁଲିବୁଲି ପଥଶ୍ରାନ୍ତ ହେଲେ ଭୀମ ତାଙ୍କୁ କାନ୍ଧରେ ବସାଇ ନେଇ ଯାଆନ୍ତି । ଦିନେ ବୁଲୁବୁଲୁ ହଠାତ୍ ସେମାନଙ୍କର ସାକ୍ଷାତ ହେଲା ବ୍ୟାସ ଦେବଙ୍କ ସହିତ । ସମସ୍ତେ ଆନନ୍ଦରେ ଅଭିଭୂତ ହେଲେ । କୁନ୍ତୀ କାନ୍ଦିକାନ୍ଦି ସେମାନଙ୍କର ଦୁର୍ଦ୍ଦଶାର କାହାଣୀ କହିଲେ । ମହର୍ଷି ବ୍ୟାସଦେବ ଆଶ୍ୱାସନା ଦେଇ କହିଲେ,

''ସୁଖ ଦୁଃଖ ମଣିଷର ସାଥୀ । ଏ ସଂସାରରେ କେହି ଚିର ସୁଖୀ କିମ୍ବା ଚିରଦୁଃଖୀ ନୁହଁନ୍ତି । ଜଣେ ବ୍ୟକ୍ତି ସର୍ବଦା ଧର୍ମ ମଧରେ ଅଟଳ ରହି ପାରିବ ନାହିଁ କିମ୍ବା ଚିରଦିନ ପାପରେ ବୁଡି ରହିବ ନାହିଁ । ପରିସ୍ଥିତି ନେଇ ପାପ ପୁଣ୍ୟ ଭଲ ମନ୍ଦର ପ୍ରଭାବ ମଣିଷ ଉପରେ ପଡିଥାଏ ।

ମଣିଷ ନିଜର କର୍ମଫଳ ଭୋଗ କରେ । ଯାହା ଭୋଗକରିବା ପାଇଁ ଅଭିପ୍ରେତ ତାହାକୁ ମଣିଷ ପରିହାର କରିପାରିବ ନାହିଁ । ଏଥିପାଇଁ ଦୁଃଖ କରିବାର କିଛି ନାହିଁ । ତୁମେ ସବୁ ଏକଚକ୍ରପୁର ନଗରୀକୁ ଯାଅ । ସେଠାରେ ସୌଭାଗ୍ୟର ଦିନ ତମମାନଙ୍କୁ ଅପେକ୍ଷା କରିଛି । ଦୁର୍ଦ୍ଦିନ ଦୂର ହୋଇଯିବ ।'' ସମସ୍ତଙ୍କର ମାନସିକ ଅଶାନ୍ତି ଦୂର ହୋଇଗଲା । ବ୍ୟାସଦେବ ବିଦାୟ ନେଲେ ।

ପାଣ୍ଡବମାନେ ବୁଲିବୁଲି ଆସି ପହଞ୍ଚିଲେ ଏକଚକ୍ରପୁର ନଗରୀରେ । ଜଣେ ବ୍ରାହ୍ମଣଘରେ ସେମାନେ ଆଶ୍ରୟ ଗ୍ରହଣ କଲେ । ବ୍ରାହ୍ମଣ ବେଶରେ ଭିକ୍ଷାକରି, ଭିକ୍ଷାନ୍ନରେ ଉଦର ପୋଷାଣ କଲେ ।

ଭିକ୍ଷାଲବ୍ଧ ଖାଦ୍ୟକୁ କୁନ୍ତୀ ସମାନ ଦୁଇଭାଗ କରି ଏକଭାଗ ଭୀମଙ୍କୁ ଦିଅନ୍ତି ଓ ଅପର ଭାଗ ଅନ୍ୟ ସମସ୍ତେ ବାଣ୍ଟି ଖାଆନ୍ତି । ତଥାପି ଭୀମଙ୍କ ପାଇଁ ଏହାମଧ୍ୟ ଯଥେଷ୍ଟ ହୁଏନାହିଁ ।

ଦିନେ ଅନ୍ୟସବୁ ଭାଇ ଭିକ୍ଷାପାଇଁ ବାହାରକୁ ଯାଇଥିଲେ । ଘରେଥିଲେ ମା' କୁନ୍ତୀ ଓ ପୁତ୍ର ଭୀମ । ବ୍ରାହ୍ମଣଙ୍କ ଘରୁ ହଠାତ୍ ଆର୍ତ୍ତ ଚିତ୍କାର ଶୁଣାଗଲା, ବ୍ରାହ୍ମଣ ବୋଧହୁଏ ବିପତ୍ତିର ସମ୍ମୁଖୀନ ହୋଇଛନ୍ତି । କୁନ୍ତୀ ଦେବୀ ଯାଇ, ସମସ୍ତ ଘଟଣା ବୁଝିଲେ ।

''ଏକଚକ୍ରପୁର ନଗରୀର ପୂର୍ବରାଜା ଆଉନାହାନ୍ତି । ସେଠାରେ 'ବକ' ନାମକ ଏକ ରାକ୍ଷସ ରାଜପଣ କରୁଛି । ସେ ଗୋଟିଏ ଗୁମ୍ଫାରେ ରହେ । ଯେତେବେଳେ ଇଚ୍ଛା ସେତେବେଳେ ନଗର ଭିତରକୁ ପଶିଆସି ମନଇଚ୍ଛା ଲୋକମାନଙ୍କୁ ମାରି ଖାଇଯାଏ । ତା ହାବୁଡରେ ଯେ ପଡେ ତାର ଆଉ ନିସ୍ତାର ନାହିଁ । ସମସ୍ତେ ଅତିଷ୍ଠ ହୋଇ ଉଠିଲେଣି, କଣ କରିବେ ! ବକାସୁର ସହିତ ନଗରବାସୀ ଗୋଟାଏ ବୁଝାମଣାରେ ପହଞ୍ଚିଲେ । ଠିକ୍‌ହେଲା ପ୍ରତିସପ୍ତାହରେ ଥରେ, ସେମାନେ ତା' ପାଖକୁ ଶଗଡ଼େ ଖାଦ୍ୟ ପଠାଇବେ । ଶଗଡ଼ ସହିତ ଯାଇଥିବା ମଣିଷ ଓ ପଶୁମଧ୍ୟ ସେ ଖାଇବ । ରାକ୍ଷସରାଜ 'ବକ' ଏପ୍ରସ୍ତାବରେ ସମ୍ମତ ହେଲା ।

ପିଠା, ପଣା, ଦୁଧ, ଦହି, ଘିଅ, ଫଳମୂଳ ସହ ପ୍ରତିଘରୁ ଜଣେ ଲେଖାଏଁ ତାର ମଣୋହି ପାଇଁ ଯାଆନ୍ତି । ଆଜି ବ୍ରାହ୍ମଣ ଘରର ପାଳି । ବ୍ରାହ୍ମଣ କହୁଛନ୍ତି, ମୁଁ ଯିବି । ବ୍ରାହ୍ମଣୀ ପ୍ରତିବାଦ କରି କହୁଛନ୍ତି, ତୁମେ ଗଲେ ଆମେ ଅନାଥ ହୋଇଯିବୁ, ମୁଁ ଯାଉଛି । ଏଥିରେ ବାପା ଓ ପିଲାଏ ପ୍ରତିବାଦ କରୁଛନ୍ତି । ପୁଅ, ଝିଅ କହୁଛନ୍ତି, ଆମେ ଯିବୁ । ପିତାମାତା କାନ୍ଦିକାନ୍ଦି କହୁଛନ୍ତି, ଆମେ ବଞ୍ଚି ପାରିବୁନି ।'' ଏଇଥିପାଇଁ କାନ୍ଦଣାର ଲହରି ଛୁଟିଛି ।

କୁନ୍ତୀ ଭୀମଙ୍କ ସହିତ ପରାମର୍ଶ କରିବାପରେ, ବ୍ରାହ୍ମଣଙ୍କୁ କହିଲେ, ''ହେ ବ୍ରାହ୍ମଣ ଠାକୁର ! ତୁମେ ଆମର ଅଶେଷ ଉପକାର କରିଛ । ଆମେ ତୁମର ପ୍ରତିଉପକାର କିଛିକରିନାହୁଁ । ଆଜି ଆମକୁ ଗୋଟାଏ ସୁଯୋଗ ମିଳିଛି । ତୁମ ଭିତରୁ କେହି ଅସୁର ପାଖକୁ ଯିବା ଦରକାର ନାହିଁ, ମୋ ପୁଅ ଶଗଡ଼ ନେଇ ଯିବ । ବକାସୁର ମଧ ମୋ ପୁଅକୁ ମାରିବା ସହଜ କଥା ନୁହେଁ । ଲଢ଼େଇ ହେଲେ ସେ ଅସୁରକୁ ମାରିଦେଇପାରେ । ଶଗଡ ପ୍ରସ୍ତୁତ କର, ସେ ଯିବ ।''

ଠିକ୍ ଏତିକି ବେଳେ ଭିକ୍ଷାରୁ ଫେରିଲେ ଛଦ୍ମବେଶୀ ଯୁଧିଷ୍ଠିର ଓ ଭାଇମାନେ । ଭୀମଙ୍କୁ ପ୍ରସ୍ତୁତ ହେଉଥିବାର ଦେଖି, ମା'ଙ୍କୁ ପଚାରି ସବୁକଥା ବୁଝିଲେ । ବ୍ୟସ୍ତ ହୋଇ କହିଲେ, ''ମା ଏଇ ଦୁର୍ଦ୍ଦିନରେ ଭୀମ ଆମର ଏକମାତ୍ର ସହାୟ । ସେ ଦୁର୍ଦାନ୍ତ ଅସୁର ମୁହଁକୁ ଯିବାପାଇଁ ତମେ ତାଙ୍କୁ ଅନୁମତି ଦେଉଛ କିପରି ? ''

ମା' କୁନ୍ତୀ ହସିଲେ ।

କହିଲେ, ''ତୁମର କଣ ଭୀମଙ୍କ ଭୀମତ୍ୱ ଉପରେ ଭରସା ନାହିଁ । ଏତେ ଅନ୍ୟାୟ ଅନୀତି ଓ ଅଧର୍ମ ଆମ ଆଖି ଆଗରେ ଘଟିବ, ଆମେ ସହିବା ! ନ୍ୟାୟ, ନୀତି ଓ ଧର୍ମରକ୍ଷା ପାଇଁ ତୁମେ ଧର୍ମ ପୁରୁଷ । ତାଙ୍କ ଉପରେ ଆସ୍ଥାରଖ, ସେ କ୍ଷତ୍ରିୟ ଧର୍ମ ପାଳନ କରନ୍ତୁ । ବ୍ରାହ୍ମଣ ତଥା ପ୍ରଜାବର୍ଗଙ୍କୁ ରକ୍ଷା କରିବା କ୍ଷତ୍ରିୟର କର୍ତ୍ତବ୍ୟ । ଭୀମ ନିଶ୍ଚୟ ବକାସୁରକୁ ବଧ କରି ଶାନ୍ତ ପ୍ରତିଷ୍ଠା କରି ପାରିବେ । ମୋର ଆଶୀର୍ବାଦ ଅଛି, ଭୀମଙ୍କର କିଛି ଅସୁବିଧା ହେବନି ।''

ଯୁଧିଷ୍ଠିର ଶାନ୍ତ ହେଲେ ।

ଲୋକମାନେ ନିଜ ନିଜର ଭାଗ ଖାଦ୍ୟ ପଦାର୍ଥ ଶଗଡ଼ରେ ବୋଝେଇକରି, ଆସି ପହଞ୍ଚିଲେ ବ୍ରାହ୍ମଣଙ୍କ ଘରେ । ଭୀମ ଯାଇ ଗାଡିରେ ବସିଲେ ଅସୁର ପାଖକୁ ଯିବେବୋଲି । ଲୋକେ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ ଭୀମଙ୍କୁ । ସେ ହେଉଛନ୍ତି ଏକଚକ୍ରା ନଗରୀର ସ୍ନେହ ତାକରେ ସମସ୍ତଙ୍କ ମାମୁ । କାହାରି ମନରେ ସୁଖ ନାହିଁ । ଲୋକମାନେ ଅଶ୍ରୁପ୍ଳୁତ ନୟନରେ ଭୀମଙ୍କୁ ବିଦାୟ ଦେଲେ । ଭୀମସେନ ସମସ୍ତଙ୍କୁ ଆଶ୍ୱାସନା ଦେଇ କହୁଥାନ୍ତି, 'ବ୍ୟସ୍ତ ହୁଅନି... ସେ କଣ ମୋତେ ମାରିବ, ମୁଁ ତାକୁ ମାରିଦେବି । ନଗରବାସୀ ଏକ ବିରାଟ ଶୋଭାଯାତ୍ରାରେ ତାଙ୍କୁ ନେଇ ଗୁମ୍ଫାଠାରୁ ଅଳ୍ପ ଦୂରରେ ଛାଡିଦେଇ ଆସିଲେ ।

ଶଗଡ଼ ନାନାପ୍ରକାର ସୁମିଷ୍ଟ ଖାଦ୍ୟ ସାମଗ୍ରୀରେ ପୂର୍ଣ୍ଣ ହୋଇଛି । ଭୀମ ଅନେକ ଦିନରୁ ପେଟଭରି ଭୋଜନ ପାଇ ନାହାନ୍ତି । ଭାବିଲେ, ଏ ଅପୂର୍ବ ସୁଯୋଗ ହାତଛଡା କରିବାର ନୁହେଁ । ଅସୁର ସହିତ ଯୁଦ୍ଧ କରିବା ପୂର୍ବରୁ ଖାଦ୍ୟତକ ଖାଇଦେଲେ କାମ ତୁଟି ଯିବ ।

ଗାଡ଼ି ଅଟକାଇ ଭୀମ, ଗୋଟିଏ ଗଛମୂଳରେ ବସିଲେ । ମହାଆନନ୍ଦରେ ସବୁତକ ଖାଦ୍ୟଖାଇଲେ । ଆଃ କି ତୃପ୍ତି, ଯୁଦ୍ଧପାଇଁ ମଧ୍ୟ ବଳ ମିଳିଗଲା । ତେଣେ ବକାସୁର ଭୋକରେ ଛଟପଟ ହେଲାଣି ।

ସେ ଗୁମ୍ଫାରୁ ବାହାରି ଚାରିଆଡ଼କୁ ଚାହିଁଲା । ଶଗଡ କାଇଁ ? ଆଜି ଏତେ ବିଳମ୍ବ କାହିଁକି ? ଦେଖିଲା, ଅଳ୍ପଦୂରରେ ଗଛମୂଳରେ ଶଗଡ଼ ଫିଟିଛି । କେହିଜଣେ ବସି ଖାଦ୍ୟତକ ଖାଉଛି । ଗର୍ଜନ କରି ମାଡ଼ିଆସିଲା ବକାସୁର । ପାଟି ଆଁ କରି ଝାମ୍ପ ଦେଲା । ଭୀମ ଭୋଜନରୁ ଉଠି ଗଛଟାଏ ଓପାଡି ତା' ଉପରକୁ ମାଡ଼ି ଆସିଲେ । ଉଭୟଙ୍କ ଗର୍ଜନରେ ଅରଣ୍ୟ ପ୍ରଦେଶ କମ୍ପି ଉଠିଲା । ସତେ ଯିମିତି ଆକାଶ ଫାଟି ପଡ଼ିବ ।ଲଢ଼େଇ ଚାଲିଥାଏ, ଶେଷରେ ଭୀମ ତାକୁ ତଳେ ପକାଇ ଛାତିରେ ପାଦଦେଇ ଚାପିଦେଲେ । ବକାସୁର ରକ୍ତବାନ୍ତିକରି ଛଟଛଟ ହୋଇ ସେଇଠାରେ ଟଳି ପଡ଼ିଲା । ହାଃ....ହାଃ...ହାଃ, ହସି ଉଠିଲେ ପାଣ୍ଡବବୀର । ବୀରଦର୍ପରେ ସେ ଏକଚକ୍ରପୁର ନଗରୀକୁ ଫେରି ଆସିଲେ ।

ସାରା ନଗରୀରେ ଆନନ୍ଦ ଉଲ୍ଲାସର ପ୍ରବାହ । ନଗରର ପ୍ରବେଶ ଦ୍ୱାରରେ ନିର୍ମିତ ହେଲା ଏକ ବିରାଟ ତୋରଣ । ପ୍ରତ୍ୟେକ ଘର ସୁସଜ୍ଜିତ ହେଲା ଦୀପମାଳାରେ, ବିଜୟ ଉଲ୍ଲାସରେ ବାହାରିଲା ଶୋଭାଯାତ୍ରା । ମାମୁ ଭୀମ ସେନଙ୍କୁ ସମସ୍ତେ ସ୍ୱାଗତ ଜଣାଇ ନଗର ପରିକ୍ରମା କଲେ । ଗୀତ, ବାଦ୍ୟ, ନାଚ ଜୟନାଦରେ ଚହଲି ଉଠିଲା ଏକଚକ୍ର ପୁର ନଗରୀ ।

## ।। ଦ୍ରୌପଦୀ ସ୍ୱୟଂମ୍ବର ।।

କାମ୍ପିଲ୍ୟ, ପଞ୍ଚାଳର ରାଜଧାନୀ । ରାଜାଦ୍ରୁପଦ, ନିଜର ଦୁଇପୁତ୍ର ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ, ଉଚ୍ଚ ରାଜ କର୍ମଚାରୀ ଏବଂ ମନ୍ତ୍ରୀ ମାନଙ୍କୁ ଡ଼ାକି ଏକ ମନ୍ତ୍ରଣା ସଭାର ଆୟୋଜନ କଲେ । ଉଦାସ ଗମ୍ଭୀର ରାଜା ଦ୍ରୁପଦ । କିଛି ଗୋଟାଏ ଦୃଢ଼ ନିଷ୍ପତ୍ତି ନେବାକୁ ହେବ ।

ଜତୁଗୃହରେ ପଞ୍ଚପାଣ୍ଡବ ଦଗ୍ଧ ହୋଇଛନ୍ତି । ତ୍ରିଭୁବନ ବିଜୟୀବୀର ଅର୍ଜୁନଙ୍କୁ ନିଜର ଜାମାତାରୂପେ ପାଇବାର ସ୍ୱପ୍ନ ତାଙ୍କର ମଉଳି ଯାଇଛି । ସେ ଦ୍ରୌପଦୀଙ୍କ ବିନିମୟରେ ଅର୍ଜୁନଙ୍କୁ ପାଇଥିଲେ ଦ୍ରୋଣଙ୍କପରି ଅଜେୟ ଶତ୍ରୁକୁ ଜୟକରି ପାରିଥାନ୍ତେ । ଅର୍ଜୁନ ଦ୍ରୋଣଙ୍କର ପ୍ରିୟ ଶିଷ୍ୟ । ତାଙ୍କରି ମାଧ୍ୟମରେ ଏହି ଉଦ୍‌ଫଣ ସର୍ପକୁ ହୁଏତ ବଶୀଭୂତ କରାଯାଇ ପାରିଥାନ୍ତା । ସେ ସ୍ୱପ୍ନ ସପ୍ନରେ ରହିଗଲା ।

ଏବେ ସାରାରାଜ୍ୟରେ ଖେଳିଯାଇଛି ଗୁଜବର ଗୁଞ୍ଜରଣ । 'ପାଣ୍ଡବମାନେ ଛଦ୍ମବେଶରେ ଖସିଚାଲି ଯାଇଛନ୍ତି । କାଳପୁରୁଷ ପୁରୋଚନ ଅଗ୍ନିଶିଖାରେ ଦଗ୍ଧ ହୋଇଛି ।' ଗୁଜବର ଗୁଞ୍ଜନରେ ସତ୍ୟତାରସ୍ୱରଆଦୌ ନଥାଏ ବୋଲିକହି ହେବନାହିଁ । ତେବେ ଆଉ ଅଧିକଦିନ ଅପେକ୍ଷା କରିବା ସମ୍ଭବ ନୁହେଁ । ଦ୍ରୌପଦୀ ବିବାହଯୋଗ୍ୟା । ସ୍ୱୟଂବର ବ୍ୟବସ୍ଥା କରିବାକୁ ହେବ । ହୁଏତ ଏ ସମ୍ବାଦ ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇଯିବା ପରେ,ପାଣ୍ଡବମାନେ ସ୍ୱୟଂବର ସଭାରେ ଯୋଗଦେଇ ପାରନ୍ତି ।

ଦିନ ସ୍ଥିର ହୋଇଗଲା ।

ବିଜୁଳି ବେଗରେ ସ୍ୱୟଂବର ସମ୍ବାଦ ପ୍ରଚାରିତ ହେଲା । ଭାରତବର୍ଷର ସମସ୍ତ ରାଜାମାନଙ୍କୁ ନିମନ୍ତ୍ରଣ କରାଗଲା । ଦ୍ରୁପଦ ରାଜକନ୍ୟା ଅପରୂପା ରୂପସୀ ଲାବଣ୍ୟମୟୀ ଦୌପଦୀଙ୍କୁ ପାଇବାପାଇଁ ସମସ୍ତେ ବ୍ୟାକୁଳ । ବର୍ଷୀୟାନ୍ ରାଜା ମହାରାଜାମାନଙ୍କ ମନ ଅରଣ୍ୟରେ ଉଠିଲା ତାରୁଣ୍ୟର ମହକ । ସବୁରି ଭିତରେ ଏକ ଅପୂର୍ବ ଉନ୍ମାଦନା । ପାଞ୍ଚାଳୀଙ୍କୁ ପତ୍ନୀରୂପେ ପାଇବାର ଅଦମ୍ୟ ଲାଳସା ସମସ୍ତଙ୍କୁ ବିଭୋର କରିଛି ।

ଏକଚକ୍ରପୁର ନଗରୀର ବ୍ରାହ୍ମଣମାନେ ଆନନ୍ଦରେ ନାଚୁଥାନ୍ତି । ଦାନ, ଦକ୍ଷିଣା, ଉପହାର, ଉପଢୌକନ, ତୃପ୍ତିକର ଭୋଜନ ଓ ସମ୍ମାନ ମିଳିବ । ସମସ୍ତେ ଗୋଡଟେକି ଅପେକ୍ଷା କରିଥାନ୍ତି ନିର୍ଦ୍ଦିଷ୍ଟ ଦିନକୁ ।

ପାଣ୍ଡବ ଭାଇମାନଙ୍କ ମଧ୍ୟରେ ମନ୍ତ୍ରଣା ଚାଲିଲା । ପିତାମହ ବ୍ୟାସଦେବ ଏଥିମଧ୍ୟରେ ସେମାନଙ୍କୁ ସୂଚାଇ ଦେଇଛନ୍ତି, ସେମାନେ ପଞ୍ଚାଳ ରାଜ୍ୟକୁ ଯିବେ । ସେଠାରେ ସେମାନଙ୍କୁ ସୌଭାଗ୍ୟ ଅପେକ୍ଷା କରିଛି । ମା'ଙ୍କୁ ମନକଥା ପ୍ରକାଶ କରିବା ପୂର୍ବରୁ କୁନ୍ତୀ ପିଲାମାନଙ୍କର ମନୋଭାବ ଜାଣିପାରି ଯୁଧିଷ୍ଠିରଙ୍କୁ କହିଲେ ''ଗୋଟିଏ ସ୍ଥାନରେ ବହୁଦିନ ରହିବା ଉଚିତ ନୁହେଁ । ସମୟ ଆସିବ ଯେତେବେଳେ ଭିକ୍ଷାନ୍ନ ମଧ୍ୟ ଯଥେଷ୍ଟ ମିଳିବ ନାହିଁ । ପଞ୍ଚାଳରାଜ୍ୟ ଧନ ଧାନ୍ୟରେ ପରିପୂର୍ଣ୍ଣ । ଏହାର ପ୍ରାକୃତିକ ଶୋଭା ଅତ୍ୟନ୍ତ ମନୋରମ । ଲୋକଙ୍କର ଆତିଥ୍ୟ ମଧ୍ୟ ଯଥେଷ୍ଟ ଉତ୍ସାହପ୍ରଦ । ମହର୍ଷି ବ୍ୟାସଦେବତ ପୂର୍ବରୁ ସୂଚନା ଦେଇଛନ୍ତି, ଗଲେ କିମିତି ହୁଅନ୍ତା !''

ମା'ଙ୍କ ପ୍ରସ୍ତାବରେ ସମସ୍ତେ ଖୁସି ହୋଇଗଲେ ।

ଯିବାର ବ୍ୟବସ୍ଥାକରାଗଲା ।

ପାଣ୍ଡବ ଭାଇମାନଙ୍କ ମଧ୍ୟରେ ଆନନ୍ଦର କଲରୋଳ । ଏକଚକ୍ରପୁର ନଗରୀର ବ୍ରାହ୍ମଣ ମାନଙ୍କ ଗହଣରେ ଛଦ୍ମବେଶୀ ପାଣ୍ଡବମାନେ ଯାଇ ପହଞ୍ଚିଲେ କାମ୍ପିଲ୍ୟ ନଗରରେ । ଗଙ୍ଗାକୂଳରେ ଅବସ୍ଥିତ ପଞ୍ଚାଳରାଜପୁରୀ । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ।

ଗୋଟିଏ କୁମ୍ଭାର ଘରେ ସେମାନେ ରହିବାର ବ୍ୟବସ୍ଥା କଲେ । ନୂତନ ପରିବେଶ ବେଶ୍ ଉପଭୋଗ୍ୟ ହେଲା । କାମ୍ପିଲ୍ୟ ନଗର ଜାକଜମକ, ସାଜସଜ୍ଜା ଧୁମଧାମ୍ ଭିତରେ ମୁଖରିତ । ରାଜା ଦ୍ରୁପଦଙ୍କ ନିର୍ଦ୍ଦେଶରେ ପ୍ରସ୍ତୁତ ହୋଇଛି ସ୍ୱୟଂବର ସଭାମଞ୍ଚ । ସତେ ଯେପରି ଇନ୍ଦ୍ରଙ୍କର ରାଜସଭା । ନଗର ସାରା ବର୍ଣ୍ଣାଢ୍ୟ ତୋରଣମାଳା । ମଣିମାଣିକ୍ୟର ମୟୂଖରେ ଉଦ୍ଭାସିତ ସଭାମଞ୍ଚ । ଉଭୟ ପାର୍ଶ୍ୱରେ ସୁସଜ୍ଜିତ ଆସନ । ମଞ୍ଚ ସମ୍ମୁଖରେ ରାଜା ଦ୍ରୁପଦଙ୍କର ସ୍ୱର୍ଣ୍ଣାସନ ।

ସଭାମଞ୍ଚର ଗୋଟିଏ ପାଖରେ ଖୁବ୍ ଉଚ୍ଚରେ ରଖା ଯାଇଛି ଏକ ମତ୍ସ୍ୟଯନ୍ତ୍ର । ଏହାକୁ 'ବିହାୟସ ଚକ୍ର' ଅଥବା 'ରାଧାଚକ୍ର' ବୋଲି କୁହାଯାଏ । ସେଥିରେ ଖଞ୍ଜାଯାଇଥାଏ କାଠ ନିର୍ମିତ ମାଛଟିଏ । ବହୁ

ରନ୍ଧ୍ରଯୁକ୍ତ ଚକ୍ରଟି ଘୂରୁଥାଏ । ଚକ୍ରଦଣ୍ଡତଳେ ରଖାଯାଇଥାଏ ଜଳଭରା କୁଣ୍ଡଟିଏ । ସେଥିରେ ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଉଥାଏ ଉପରର ମତ୍ସ୍ୟଯନ୍ତ୍ର । ସେଇ ଯନ୍ତ୍ରଟି ହେବ ମହାଦର୍ପୀ ରାଜା ମାନଙ୍କର ଭାଗ୍ୟନିର୍ଣ୍ଣାୟକ ।

ନିର୍ଦ୍ଦିଷ୍ଟ ସମୟରେ ସ୍ୱୟଂବର ସଭା ଆରମ୍ଭ ହେଲା । ଆଗରୁ କସ୍ତୁରୀ ଓ ଧୂପ ଗନ୍ଧରେ ମହକିତ ସଭାସ୍ଥଳୀ । ରାଜା ଦ୍ରୁପଦ କନ୍ୟାର ସ୍ୱୟଂବର କର୍ମ ଆରମ୍ଭ ହେବାପାଇଁ ଘୋଷଣାକଲେ ।

ଉଭୟ ପାର୍ଶ୍ୱରେ ସମାସୀନ ରାଜନ୍ୟ ମଣ୍ଡଳୀ । ମଣିମାଣିକ୍ୟ ଖଚିତ ପୋଷାକ ପରିଚ୍ଛଦ ଆଖି ଝଲସାଇ ଦେଉଛି । ମହାରାଜା ଦ୍ରୁପଦ, ନିମନ୍ତ୍ରିତ ରାଜାମାନଙ୍କୁ ସାଦର ସମ୍ଭାଷଣ ଜଣାଇଲେ । ତୂର୍ଯ୍ୟନାଦରେ ପ୍ରକମ୍ପିତ ହେଲା କାମ୍ପିଲ୍ୟ ନଗରୀ ।

ଭାରତର ବିଭିନ୍ନ ରାଜ୍ୟର ରାଜା ମହାରାଜା ମାନଙ୍କ ଗହଣରେ କୁରୁରାଜ ଦୁର୍ଯ୍ୟୋଧନ ଓ ତାଙ୍କର ଭାଇମାନଙ୍କୁ ଦେଖିବାକୁ ମିଳିଲା । ଗାନ୍ଧାର ରାଜପୁତ୍ର ଶକୁନି, ସୌବଳ, ବୃଷକ ବୃହଦ୍‌ବଳ ସେମାନଙ୍କ ଗହଣରେ ଥିଲେ । କଳିଙ୍ଗ, କୋଶଳ, ସିନ୍ଧୁ, ମଦ୍ର, ମଗଧ ପ୍ରଭୃତି ରାଜ୍ୟର ରାଜାଧିରାଜ ଗଣ ଉପସ୍ଥିତ ଥିଲେ । ସମଗ୍ର ଆର୍ଯ୍ୟାବର୍ତ୍ତର ମହାନ୍ ରାଜାଗଣ ସଭାମଣ୍ଡନ କରିଛନ୍ତି । ବ୍ରାହ୍ମଣ ମାନଙ୍କ ଗହଣରେ ବ୍ରାହ୍ମଣବେଶରେ ଅଛନ୍ତି ଛଦ୍ମବେଶୀ ପାଣ୍ଡବମାନେ ।

କୁଳପୁରୋହିତ ମନ୍ତ୍ରପାଠ କରି ଯଜ୍ଞବେଦିରେ ଘୃତାହୁତି ପ୍ରଦାନକରୁଥାନ୍ତି । ସର୍ବାଳଙ୍କାର ଭୂଷିତା ଦ୍ରୌପଦୀ ହାତରେ ବରଣମାଳ ଧରି ସଖିଗହଣରେ ସ୍ୱୟଂବର ସଭାରେ ଉପସ୍ଥିତ ହେଲେ । ତାଙ୍କ ଶରୀରରୁ ପ୍ରତିଭାତ ହେଉଥିଲା ଏକ ଅପୂର୍ବ ଜ୍ୟୋତି । ନୟନରେ ସ୍ମିତ ସମ୍ଭ୍ରମ ଚାହାଣି । ଆନତ ମୁଖମଣ୍ଡଳ । ରୂପ ସମ୍ଭାର ମଧ୍ୟରେ ଦିଶୁଛନ୍ତି ଦ୍ରୌପଦୀ ଦେବକନ୍ୟାପରି । ପୁରୋହିତଙ୍କ ଇଙ୍ଗିତରେ ଯୁବରାଜ ଧୃଷ୍ଟଦ୍ୟୁମ୍ନ, ସଭାଗୃହର ମଧ୍ୟଭାଗକୁ ଦ୍ରୌପଦୀଙ୍କୁ ନେଇଗଲେ । ସେ ବର୍ତ୍ତମାନ ଉତ୍ସବର କେନ୍ଦ୍ରବିନ୍ଦୁ । ସବୁରି ନୟନମଣି ।

ରାଜାଦ୍ରୁପଦ ବଜ୍ରଗମ୍ଭୀର କଣ୍ଠରେ ଘୋଷଣାକଲେ, "ହେ ମହାନ୍ କୁଳସମ୍ଭୂତ ପବିତ୍ର ଆର୍ଯ୍ୟାବର୍ତ୍ତର ରାଜା ଓ ରାଜାଧିରାଜଗଣ ! ମୁଁ ଆପଣମାନଙ୍କୁ ସ୍ୱାଗତ ଜଣାଉଛି । ଯଜ୍ଞ ସମ୍ଭୂତା ମୋର କନ୍ୟା ଯାଜ୍ଞସେନୀ, ସ୍ୱୟଂବର ସଭାରେ ତାର ଉପଯୁକ୍ତ ବରକୁ ବରଣ କରିବାପାଇଁ ଅପେକ୍ଷା କରିଛି । ଯେଉଁ ଭାଗ୍ୟବାନ ମହାପରାକ୍ରମୀ ବୀର ପୁରୁଷ, ଜଳକୁଣ୍ଡରେ ପ୍ରତିବିମ୍ବିତ ହେଉଥିବା ମତ୍ସ୍ୟର ନୟନକୁ, ଚଳମାନ ଚକ୍ରର ରନ୍ଧ୍ରଭେଦକରି ବିଦ୍ଧକରିପାରିବେ, ପାଞ୍ଚାଳୀଙ୍କ ପବିତ୍ର ପାଣିଗ୍ରହଣ ପାଇଁ ସେ କେବଳ ଯୋଗ୍ୟ ବିବେଚିତ ହେବେ ।"

ଏହି କଠୋର ସର୍ତ୍ତ ରାଜାମାନଙ୍କ ମଧ୍ୟରେ ଚହଳ ପକାଇ ଦେଲା । ତାପରେ ଆରମ୍ଭ ହେଲା କ୍ରମ ଅନୁସାରେ ରାଜାମାନଙ୍କର କୁଳ ଗୋତ୍ର ବଂଶପରିଚୟ ଏବଂ କୀର୍ତ୍ତି କୀର୍ତ୍ତନ । ଲାସ୍ୟମୟୀ ଦ୍ରୌପଦୀ ସମ୍ଭ୍ରମଭରା ଚାହାଣିରେ ସେମାନଙ୍କୁ ସାଦର ପ୍ରଣାମ ଓ ସମ୍ମାନ ଜଣାଉଥାନ୍ତି । ପ୍ରତିଯୋଗୀ ମାନଙ୍କ ମଧ୍ୟରେ ଅପୂର୍ବ ଉନ୍ମାଦନା ଏବଂ ଅବ୍ୟକ୍ତ କରୁଣତା ।

ଜଣକପରେ ଜଣେ ବୀରଦର୍ପରେ ଆଗେଇଗଲେ ନିଜର ଭାଗ୍ୟପରୀକ୍ଷା ପାଇଁ । ପ୍ରବଳ ପରାକ୍ରାନ୍ତ ବୀରମାନଙ୍କ ମଧ୍ୟରୁ ଜଣେ ହେଲେ ସଫଳତା ହାସଲ କରି ପାରିଲେନାହିଁ । ମହାପରାକ୍ରମୀ ଜରାସନ୍ଧ, ଶଲ୍ୟ, ଦୁର୍ଯ୍ୟୋଧନ, ଶିଶୁପାଳ ପ୍ରଭୃତି ବ୍ୟର୍ଥତାର ଆତ୍ମ ଯନ୍ତ୍ରଣା ମଧ୍ୟରେ ଅସ୍ଥିର ହୋଇ ଉଠିଲେ ।

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ଏଥର ଛିଡାହେଲେ ମହାପରାକ୍ରମୀ ବୀର କର୍ଣ୍ଣ । ସମସ୍ତଙ୍କର ଧାରଣା, ସେ ନିଶ୍ଚୟ କୃତକାର୍ଯ୍ୟ ହେବେ । ସୂତପୁତ୍ରର ପରିଚୟ ପାଇ ନମ୍ରତାର ସହିତ କହିଲେ ପାଞ୍ଚାଳୀ, ''ହେ ବୀରଶ୍ରେଷ୍ଠ ! କୁଳ ଗୋତ୍ରହୀନ ଏକ ସୂତପୁତ୍ରକୁ ବରଣ କରିବା ରାଜପରାମ୍ପରା ବିରୋଧୀ ।'' ପ୍ରତ୍ୟାଖ୍ୟାନ ପରାଭବରେ ପୀଡ଼ିତ କର୍ଣ୍ଣ, ଏକ ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ ନେଇ ଫେରି ଆସିଲେ ନିଜର ଆସନକୁ । କେହି କେହି କହିପକାଇଲେ, ''ଏହା ସ୍ୱୟଂବର ସଭାନୁହେଁ, ଅସମ୍ଭବ ସର୍ତ୍ତକୁ ଆରୋପ କରାଯାଇ, ରାଜାମାନଙ୍କୁ ଅପମାନିତ କରିବା ପାଇଁ ଏକ ଷଡ଼ଯନ୍ତ୍ର । ହଠାତ୍ ଜନସମୁଦ୍ର ଭେଦକରି, ମଞ୍ଚର ମଧ ଭାଗକୁ ଚାଲିଆସିଲେ ଜଣେ ବ୍ରାହ୍ମଣ ଯୁବକ । ନମ୍ର କଣ୍ଠରେ କହିଲେ, ''ମୁଁ ଏଥିରେ ଅଂଶଗ୍ରହଣ କରିବାକୁ ଚାହେଁ । ଜଣେ ବ୍ରାହ୍ମଣ ଯୁବକକୁ ଭାଗ୍ୟପରୀକ୍ଷା ପାଇଁ ସୁଯୋଗ ଦେବାକୁ ଅନୁରୋଧ କଲେ । ମୋର ଏକମାତ୍ର ପରିଚୟ ମୁଁ ଜଣେ ବ୍ରାହ୍ମଣ ।''

''ନିଶ୍ଚୟ ଦିଆଯିବ ! ତୁମର ବଳିଷ୍ଠ ସୌମ୍ୟରୂପ ଓ କୁଳୀନ କାନ୍ତି ବଂଶର କୁଳିନତା ଓ ସମ୍ଭ୍ରାନ୍ତ ପଣର ସୂଚନା ଦିଏ । ବ୍ରାହ୍ମଣ ହେଲେ ମଧ ଶର ସଂଧାନରେ ସଫଳ ହେଲେ, କୃଷ୍ଣାଙ୍କର ପାଣିଗ୍ରହଣ ପାଇଁ ଯୋଗ୍ୟ ବିବେଚିତ ହେବ । ଭାଗ୍ୟ ପରୀକ୍ଷା କର ।'' ପିତାଙ୍କ ଇଙ୍ଗିତରେ ଦୃଢ଼ କଣ୍ଠରେ ଘୋଷଣା କଲେ ଯୁବରାଜ ଧୃଷ୍ଟଦ୍ୟୁମ୍ନ । ରାଜାମାନେ ଏହାର ପ୍ରତିବାଦ କଲେ ।

ତୁମୁଳ ହଟଗୋଳ ମଧ୍ୟରେ ବ୍ରାହ୍ମଣ ଯୁବକ ଧନୁ ପାଠକୁ ଆଗେଇଗଲେ । ଆଖିପିଛୁଳାକେ ଶର ନିକ୍ଷେପ କରି ସର୍ତ୍ତପୂରଣ କଲେ । ବ୍ରାହ୍ମଣମାନଙ୍କ ମଧରେ ଆନନ୍ଦ କୋଳାହଳ ଖେଳିଗଲା । ଦ୍ରୌପଦୀ ସସ୍ମିତ ବଦନରେ ଯୁବକ ବ୍ରାହ୍ମଣଙ୍କ ଗଳାରେ ଲମ୍ୱାଇ ଦେଲେ ବରଣମାଳା । ରାଜାଦ୍ରୁପଦ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । କ୍ଷତ୍ରିୟ ରାଜାମାନଙ୍କ ମଧରେ ପୁଣି ଶୁଣାଗଲା ଗଭୀର ପ୍ରତିବାଦର ସ୍ୱର । ସେମାନେ କହିଲେ, ''ସ୍ୱୟଂବର ବିବାହ ପଦ୍ଧତି କେବଳ କ୍ଷତ୍ରିୟ ରାଜା ମାନଙ୍କ ମଧରେ ପ୍ରଚଳିତ । କ୍ଷତ୍ରିୟ କନ୍ୟା କ୍ଷତ୍ରିୟ ବୀରକୁ ବରଣ କରିବା ଶାସ୍ତ୍ର ସମ୍ମତ । ଆଜିର ଏ ବିବାହ ଶାସ୍ତ୍ର, ତଥା କ୍ଷତ୍ରିୟ ଧର୍ମ ବିରୋଧୀ । ଏଥିରେ କ୍ଷତ୍ରିୟ ରାଜାମାନଙ୍କୁ ଅବଜ୍ଞା ଏବଂ ଅପମାନିତ କରାଯାଇଛି । ଅସମ୍ଭବ ସର୍ତ୍ତକୁ କୋହଳ କରି, ନୀତିରକ୍ଷା କରାଯାଇ ପରିଥାନ୍ତା । ଜଣେ ଗରିବ ବ୍ରାହ୍ମଣକୁ ବରଣ କରିବା ଅପେକ୍ଷା, ଦ୍ରୌପଦୀ ଅଗ୍ନିରେ ଝାସ ଦେଇଥିଲେ ବରଂ ଶ୍ରେୟସ୍କର ହୋଇଥାନ୍ତ । କ୍ଷତ୍ରିୟର ମହତ୍ତ୍ୱ ରହିଲା କେଉଁଠି ?''

ଏ ବିବାହ ସପକ୍ଷରେ ବ୍ରାହ୍ମଣମାନେ ଶାସ୍ତ୍ର ସମ୍ମତ ମତାମତ ଦେଲେ । ବାଦାନୁବାଦ ତୀବ୍ରତର ହେଲା । ଗୋଟାଏ ପାଖରେ ବ୍ରାହ୍ମଣ ଓ ଗୋଟାଏ ପାଖରେ କ୍ଷତ୍ରିୟ ରାଜାମାନେ ସଂଘର୍ଷ ପାଇଁ ଆଗେଇ ଗଲେ । ଠିକ୍ ଏତିକିବେଳେ ଶ୍ରୀକୃଷ୍ଣ ଓ ବଳରାମ ସଭାମଞ୍ଚକୁ ଚାଲିଆସି ଉଭୟ ପକ୍ଷକୁ ଶାନ୍ତ କରିବାକୁ ଚେଷ୍ଟାକଲେ । ସେ ଦୁହେଁ ଛଦ୍ମବେଶୀ ପାଣ୍ଡବ ମାନଙ୍କୁ ବ୍ରାହ୍ମଣମାନଙ୍କ ଗହଣରେ ଠିକ୍ ଭାବେ ଚିହ୍ନି ପାରିଥିଲେ । ତାଙ୍କର ଯୁକ୍ତିଥିଲା ''ବୀରତାହିଁ କ୍ଷାତ୍ରଧର୍ମର ମୂଳଧାର । ଯେଉଁ ସର୍ତ୍ତ ଆରୋପକରାଯାଇଥିଲା, ତାହା କଠୋର ହେଲେ ମଧ ନୀତି ବିରୁଦ୍ଧ ନୁହେଁ । ନିଷ୍ପାପର କ୍ଷତ୍ରିୟ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି ପକ୍ଷରେ ଏ ସଫଳତା ହାସଲ କରିବା ସମ୍ଭବ ନୁହେଁ । ଆପଣମାନେ ଶାନ୍ତ ହୁଅନ୍ତୁ । ଏ ରହସ୍ୟ ଉଦ୍‌ଘାଟିତ ହେବାକୁ ବେଶି ସମୟ ଲାଗିବ ନାହିଁ । ସମୟ ସମସ୍ୟାର ସମାଧାନ କରିବ । ସେହି ଭାଗ୍ୟବାନ ବ୍ରାହ୍ମଣ ଯୁବକ ବୃତ୍ତିଦିଗରୁ ନିଶ୍ଚୟ ଜଣେ ସମ୍ଭ୍ରାନ୍ତ କ୍ଷତ୍ରିୟ । କ୍ଷତ୍ରିୟର ସଂଜ୍ଞା ସଂକୀର୍ଣ୍ଣ ନୁହେଁ । ଯେ ବୀର ସେ କ୍ଷତ୍ରିୟ, ସେଠାରେ ଜାତିର ଜଞ୍ଜାଳ ନାହିଁ'' । କୋଳାହଳ ଶାନ୍ତ ହେଲା ସିନା, ମନର ମ୍ଳାନିମା ଦୂର ହେଲା ନାହିଁ ।

ପରିସ୍ଥିତିର ତାଡନାରେ ଉଭୟପକ୍ଷ ହୋଇ ଉଠିଲେ ସ୍ୱର୍ଶକାତର ।

ଏକ ଅଜ୍ଞାତ ବ୍ରାହ୍ମଣ ଯୁବକ ହାତରେ, ନିଜର ପ୍ରଣସମା ଭଉଣୀଙ୍କୁ, ବୀରତାର ମୂଲ୍ୟ ବିନିମୟରେ ଅର୍ପଣ କରି, ସନ୍ତୁଷ୍ଟ ହୋଇପାରିଲେ ନାହିଁ ଧୃଷ୍ଟଦ୍ୟୁମ୍ନ । ଦ୍ରୌପଦୀଙ୍କର ଭାଗ୍ୟର ପରିଣତି କଣ ତାହା ଜାଣିବା ପାଇଁ ଛଦ୍ମ ବେଶରେ ସେ ତାଙ୍କୁ ଅନୁସରଣ କଲେ । ଯାହା ଦେଖିଲେ ସେଥିରେ ତାଙ୍କର ହୃଦୟ ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠିଲା । ଫେରିଆସି ଉଦ୍‌ବିଗ୍ନ ପିତାଙ୍କର ଉଦ୍‌ବେଗ ଶାନ୍ତକଲେ । ''ହେ ପିତା ମୋର ମନେହେଉଛି ସେମାନେ ନିଶ୍ଚୟ ପଞ୍ଚପାଣ୍ଡବ । ସାଥିରେ ଅଛନ୍ତି ତାଙ୍କର ମାତା କୁନ୍ତୀ ଦେବୀ । ଦ୍ରୌପଦୀ ବୋଧ ହୁଏ ଅର୍ଜୁନଙ୍କୁ ବରଣ କରିଛନ୍ତି ।''

ଦ୍ରୁପଦଙ୍କ ମୁଖମଣ୍ଡଳ ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠିଲା । ସେ ନିଜର ରାଜପ୍ରାସାଦକୁ ସେମାନଙ୍କୁ ନିମନ୍ତ୍ରଣ କଲେ । ପାଣ୍ଡବମାନେ କ୍ଷତ୍ରିୟ ବେଶରେ ନିଜକୁ ସଜ୍ଜିତ କରି, ଆସି ପହଞ୍ଚିଲେ କାମ୍ପଲ୍ୟ ନଗରୀରେ । ଦ୍ରୁପଦ, ଧୃଷ୍ଟଦ୍ୟୁମ, ଶ୍ରୀଖଣ୍ଡି ଓ ରାଜପରିବାରର ସମସ୍ତେ ସେମାନଙ୍କୁ ଉଚ୍ଛ୍ୱସିତ ଅଭିନନ୍ଦନ ଜଣାଇଲେ । ଯୁଧିଷ୍ଠିର ପରିଚୟ ଦେଇ କହିଲେ ''ଆମେ ସବୁ ପଞ୍ଚପାଣ୍ଡବ । ଦ୍ରୌପଦୀଙ୍କୁ ପାଣ୍ଡବବଧୂ ରୂପେ ପାଇ, ଆମେ ଅତ୍ୟନ୍ତ ଆନନ୍ଦିତ ।

ଦ୍ରୁପଦ ଆନନ୍ଦରେ ଉଜ୍ଜୀବିତ ହୋଇ ଉଠିଲେ । ଦ୍ରୌପଦୀଙ୍କର ଆନୁଷ୍ଠାନିକ ବିବାହ ପାଇଁ ଆୟୋଜନ କଲେ । ଯୁଧିଷ୍ଠିର କହିଲେ ''ଦ୍ରୌପଦୀଙ୍କୁ ଆମେ ପାଞ୍ଚଭାଇ ପତ୍ନୀରୂପେ ଗ୍ରହଣ କରିବୁ । ଦ୍ରୁପଦ ଆଶ୍ଚର୍ଯ୍ୟ ହୋଇଗଲେ । ନିଜର ପ୍ରତିକ୍ରିୟା ପ୍ରକାଶ କରି କହିଲେ'' ନୀତିଧର୍ମ ଓ ରାଜପରମ୍ପରା ଦୃଷ୍ଟିରୁ ଏହା ଆଦୌ ସଙ୍ଗତ ନୁହେଁ । ଯେଉଁ ଯୁଧିଷ୍ଠିର ଧର୍ମର ଅବତାର, ସେ ଏପ୍ରକାର ନୀତି ଗର୍ହିତ କଥାକୁ ସମର୍ଥନ କଲେ କିପରି ?

ଯୁଧିଷ୍ଠିର କହିଲେ , ଏହାବିଧି ନିର୍ଦ୍ଦିଷ୍ଟ ଓ ଆମର ଶପଥ ମଧ । ଯାହାପାଇବୁ ନିଜମଧରେ ସମାନ ଭାବରେ ବାଣ୍ଟି ଭୋଗ କରିବୁ । ଏହା ଆମ ମାଙ୍କର ନିର୍ଦ୍ଦେଶ । ଦ୍ରୌପଦୀଙ୍କର ମତାମତ ନିଆଯାଇପାରେ ।

ଦ୍ରୁପଦ କନ୍ୟାର ମନୋଭାବ ଗୋପନରେ ବୁଝିଲେ । ଦ୍ରୌପଦୀଙ୍କର ସମ୍ମତି ଲାଭ ପରେ ଅନୁଷ୍ଠାନିକ ବିବାହ ବ୍ୟବସ୍ଥା କରାଗଲା । ବଡ଼ରୁ ସାନ କ୍ରମରେ ପାଞ୍ଚଭାଇ ବେଦିରେ ଦ୍ରୌପଦୀଙ୍କର ପାଣିଗ୍ରହଣ କଲେ ।

## ପାଞ୍ଚ

# ।। ଘର ବାହୁଡ଼ା ।।

ଫୁଲଫୁଟିଲେ ମହକ ଲୁଚି ରହେ ନାହିଁ । ପାଣ୍ଡବମାନଙ୍କ ସହିତ ଦ୍ରୌପଦୀଙ୍କ ବିବାହ ସମ୍ବାଦ ବିଜୁଳି ବେଗରେ ପ୍ରଚାରିତ ହୋଇଗଲା । ବିଦୁର ଏ ସମ୍ବାଦ ପାଇ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ପ୍ରଥମେ ସେ ଏହି ଶୁଭ ସମ୍ବାଦ ଦେଲେ ରାଜା ଧୃତରାଷ୍ଟ୍ରଙ୍କୁ । କହିଲେ, ''ହେ ରାଜନ୍ ! ପରମ ଆନନ୍ଦର ବିଷୟ ଯେ ପଞ୍ଚାଳର ରାଜକନ୍ୟା ପାଞ୍ଚାଳୀ ଭରତ ବଂଶର ରାଜବଧୂ ହେବାର ସମ୍ମାନ ଲାଭ କରିଛନ୍ତି ।''

''ସାଧୁ ! ସାଧୁ ! ଶୁଭ ସମ୍ବାଦ.....ଶୁଭ ସମ୍ବାଦ । ଧୃତରାଷ୍ଟ୍ର ଅନ୍ଧ ହେଲେବି ତା' ପୁତ୍ରବଧୂର ଶୁଭରୂପ ମନଶ୍ଚକ୍ଷୁରେ ଦେଖିବାକୁ ପାଉଛି । ହେ ଧର୍ମଜ୍ଞ ବିଦୂର ! ପାଞ୍ଚାଳୀଙ୍କର ଶୁଭାଗମନପାଇଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନାର ବ୍ୟବସ୍ଥାକର । ହସ୍ତିନା ପୁରରେ ଏ ଶୁଭ ସମ୍ବାଦ ପ୍ରଚାର କରାଯାଉ । ନଗର ପୁରପଲ୍ଲୀ ସୁଶୋଭିତ ହେଉ । ପାରମ୍ପାରିକ ଉତ୍ସବାନୁଷ୍ଠାନ ପାଇଁ କୁଳପୁରୋହିତଙ୍କ ପରାମର୍ଶ କରି ଶୁଭଦିନ ସ୍ଥିର କରାଯାଉ । ବ୍ରାହ୍ମଣଙ୍କର ଅଭ୍ୟର୍ଥନା ଓ ଦୁଃଖୀ ଦରିଦ୍ର ମାନଙ୍କର ସେବା ନିର୍ମିତ ରାଜକୋଷ ମୁକ୍ତ ରଖିବାକୁ ଆଦେଶ ଦିଅ । କୁରୁ ପଞ୍ଚାଳ ସମ୍ପର୍କ, ଉଭୟ ପକ୍ଷର ସ୍ଥିତି ଓ ସୌଭାଗ୍ୟକୁ ସୁଦୃଢ଼ କରିବ । ପୁତ୍ର ଦୁର୍ଯ୍ୟୋଧନକୁ ମୋର ଆଶୀର୍ବାଦ ଜଣାଇ ଦିଆଯାଉ । ତାର ସଫଳତାରେ ମୁଁ ଅତ୍ୟନ୍ତ ଆନନ୍ଦିତ ।''

ବିଦୁର ତତ୍‌କ୍ଷଣାତ୍ ଧୃତରାଷ୍ଟ୍ରଙ୍କ ଭୁଲଧାରଣା ବୁଝିପାରିଲେ, ଠିକ୍ ଭାବରେ ତାଙ୍କୁ ବୁଝାଇ କହିଲେ, ''ହେ ରାଜନ୍ ! ପାଣ୍ଡବମାନେ ବଞ୍ଚିଛନ୍ତି । ଅର୍ଜୁନ, ରାଜା ଦ୍ରୁପଦଙ୍କ ପଣ ରକ୍ଷା କରି ଲକ୍ଷ୍ୟ ଭେଦ କରିବାରୁ, ଦ୍ରୌପଦୀ, ସ୍ୱୟଂବର ସଭାରେ ତାଙ୍କୁ ବରଣ କଲେ । ତାପରେ ବୈଦିକ ରୀତିରେ ସବୁ ଭାଇ ଦ୍ରୁପଦ ଦୁଲାଳୀକୁ ବିବାହ କରିଛନ୍ତି । ବର୍ତ୍ତମାନ ସେମାନେ ପଞ୍ଚାଳରାଜ ଦ୍ରୁପଦଙ୍କ ରାଜଭବନରେ ଅବସ୍ଥାନ କରୁଛନ୍ତି ।''

''ଏଁ ପାଣ୍ଡବମାନେ ତା'ହେଲେ ଅଛନ୍ତି ? କେତେ ବଡ଼ ଶୁଭ ସମ୍ବାଦ ମୋତେ ଦେଇଛ ବିଦୁର । କେତେବେଡ଼ ଶୁଭ ସମ୍ବାଦ । ପବିତ୍ର କୁରୁବଂଶର ଧର୍ମବଳ ସେମାନଙ୍କୁ ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷାକରି ଦେଇଛି ।''

କୁରୁରାଜ ଧୃତରାଷ୍ଟ୍ର, ମନଭିତରର ଅଶାନ୍ତ ଝଡ ଓ ଚରମ ନୈରାଶ୍ୟକୁ କୌଣସି ମତେ ଚାପିରଖିଲେ । ମୁହଁରେ ଛଳନାର ଛବିଳ ହାସ୍ୟ ରେଖାଟିଏ ଟାଣି ଗଦ୍ ଗଦ୍ ହୋଇ କହିଲେ, ''ବିଦୁର ! ମୁଁ ଅତ୍ୟନ୍ତ ଆନନ୍ଦିତ । ଏହା ଆମର ପରମ ସୌଭାଗ୍ୟ, ପାଞ୍ଚାଳୀ ଆଜି କୁରୁବଂଶର କୁଳବଧୂ । ତାଙ୍କୁ ସମ୍ମାନର ସହ ପାଣ୍ଡବମାନଙ୍କ ଗହଣରେ ହସ୍ତିନାପୁରୀକୁ ନେଇ ଆସିବାକୁ ବ୍ୟବସ୍ଥା କର । ସେମାନେ କୁରୁକୁଳର ପ୍ରଦୀପ । ବଧୂ ଯାତ୍ରା ପାଇଁ ହସ୍ତିନାପୁରକୁ ଇନ୍ଦ୍ରପୁରୀ ପରି ସଜାଇ ଦିଅ । ପାଣ୍ଡବମାନଙ୍କ ବାହୁଡ଼ା ଯାତ୍ରାକୁ ଉତ୍ସବରୂପେ ପଳନକର । ପରିବର୍ତ୍ତିତ ପରିସ୍ଥିତିକୁ ଦୃଷ୍ଟିରେ ରଖି ଅନ୍ତଃପୁରର ପୁନର୍ବିନାସ କରାଯାଉ । କୁଳଗୁରୁଙ୍କ ସହିତ ପରାମର୍ଶ କରି ବଧୂ ପ୍ରବେଶର ମଙ୍ଗଳ ମୁହୂର୍ତ୍ତ ସ୍ଥିରକର । ମୁଁ ସେ ସୌଭାଗ୍ୟ ଦେଖିବା ପାଇଁ ଅତ୍ୟନ୍ତ ବ୍ୟଗ୍ର । ତୁମେ ପାଞ୍ଚାଳ ରାଜ୍ୟକୁ ନିଜେ ଯାଇ ମୋର ଶୁଭେଚ୍ଛା ଜଣାଇ ସେମାନଙ୍କୁ ସାଥିରେ ନେଇଆସ ।''

ଦୁର୍ଯ୍ୟୋଧନ, ପାଣ୍ଡବମାନଙ୍କର ବଞ୍ଚିଥିବା ସମ୍ବାଦପାଇ, ନିଜ କାନକୁ ବିଶ୍ୱାସ କରିପରିଲେନାହିଁ । ତାଙ୍କ ମନର ମାନସୀ ଦ୍ରୌପଦୀ ପୁଣି ପାଣ୍ଡବମାନଙ୍କ ହାତକୁ ଚାଲିଗଲା । ଏ ଅପମାନ ମୃତ୍ୟୁଠାରୁ ଆଉରି କଷ୍ଟଦାୟକ । ଦୁର୍ଯ୍ୟୋଧନ, ଦୁଃଶାସନ, ମାମୁ ଶକୁନି ଓ କର୍ଣ୍ଣ ଏହି ଚାରି ଦୁଷ୍ଟଗ୍ରହ ଆଶାନ୍ତ ହୋଇ ଉଠିଲେ । ସେମାନେ କେବେହେଲେ ଭାବିନଥିଲେ ଯେ ପାଣ୍ଡବମାନେ ତାଙ୍କ ଚକ୍ରାନ୍ତରୁ ରକ୍ଷାପାଇଯିବେ । ବିଫଳ ହୋଇଗଲା ଏକ ବିରାଟ ଷଡ଼ଯନ୍ତ୍ର । ଏହା ଦିବା ଲୋକ ପରି ସ୍ପଷ୍ଟଯେ, ପାଣ୍ଡବମାନେ ଜତୁଗୃହରେ ନିଆଁ ଲଗାଇ ଖସିପଳାଇଛନ୍ତି । କିନ୍ତୁ ଅପଯଶର କଳଙ୍କ ଚିରଦିନ ପାଇଁ କୌରବମାନଙ୍କୁ ମୁଣ୍ଡାଇବାକୁ ପଡିଲା । ଭାଗ୍ୟର ବିଡ଼ମ୍ବନା, ସେମାନଙ୍କୁ ହସ୍ତିନାକୁ ନିମନ୍ତ୍ରଣ କରି ସାରା ଜୀବନ ଆନ୍ତରିକତାର ଅଭିନୟ କରିବା, ଅତ୍ୟନ୍ତ ଯନ୍ତ୍ରଣା ଦାୟକ । ଦୁର୍ଯ୍ୟୋଧନ ଓ କର୍ଣ୍ଣ ଧୃତରାଷ୍ଟ୍ରଙ୍କ ପାଖକୁ ଯାଇ ବ୍ୟଥିତ କଣ୍ଠରେ ପଚାରିଲେ, ''ହେ ରାଜନ୍ ! ଆପଣ ସତରେ କ'ଣ ପାଣ୍ଡବ ମାନଙ୍କୁ ହସ୍ତିନାପୁରକୁ ନେଇ ଆସିବା ପାଇଁ ବିଦୁରଙ୍କୁ ପଞ୍ଚାଳ ରାଜ୍ୟକୁ ପଠାଇଛନ୍ତି ?''

ହଁ ପଠାଉଛି । ଏହା ବ୍ୟତୀତ ଅନ୍ୟକିଛି ସମ୍ମାନିତ ପନ୍ଥା ନାହିଁ ।'' ଦୁର୍ଯ୍ୟୋଧନ କହିଲେ, ''କିନ୍ତୁ ମନେରଖନ୍ତୁ ପିତା ! ମୁଁ ସେହି ବିଷଧର ସର୍ପମାନଙ୍କ ଗହଣରେ ଆଦୌରହି ପାରିବି ନାହିଁ । ସେମାନଙ୍କୁ ହସ୍ତିନାପୁରକୁ ଫେରାଇଆଣିବା ଯାହା, ମୃତ୍ୟୁକୁ ନିୟନ୍ତ୍ରଣ କରିବା ତାହା । ପାଣ୍ଡବମାନଙ୍କର ଶୁଭ ସମ୍ବାଦ ପାଇ ଆପଣ କୁଆଡେ ଖୁବ ଆନନ୍ଦିତ । କୁରୁକୁଳର ଏହା ପୁଣି ପରମ ସୌଭାଗ୍ୟ । ଠିକ୍ ଅଛି, ଏ ସୌଭାଗ୍ୟ ଓ ଆନନ୍ଦରୁ ଆପଣଙ୍କୁ ଆମେ ବଞ୍ଚିତ କରିବାକୁ ଚାହୁଁନାହୁଁ । ଯଦି ଆମ ମାନଙ୍କ ପ୍ରତି ଆପଣଙ୍କର ଶ୍ରଦ୍ଧା ଓ ସହାନୁଭୂତି ତିଳେମାତ୍ର ନାହିଁ, ତା' ହେଲେ ଆମେ ଆମର ପୌରୁଷ ଓ ଭାଗ୍ୟ ଉପରେ ଭରସା ରଖି ଏଠାରୁ ଚାଲିଯିବୁ । ଆପଣ ଆପଣଙ୍କର ପ୍ରିୟ ପାଣ୍ଡୁପୁତ୍ର ମାନଙ୍କୁ ନେଇ ହସ୍ତିନାରେ ରହନ୍ତୁ । ଆମେ ଭାବିବୁ, ଆମେ ସବୁ ମାତୃପିତୃହରା ସନ୍ତାନ ।''

''ବତ୍ସ ଦୁର୍ଯ୍ୟୋଧନ ! ରାଜନୀତିର ଦର୍ପଣରେ କୁତ୍ସିତ ମୁହଁଟା ସମୟରେ ଖୁବ୍ ସୁନ୍ଦର ଦେଖାଯାଏ । ମାନ ଅଭିମାନର ତରାଜୁରେ ମନକୁ ମପାଯାଏନା । ମୁଁ କଣ ବିଦୁରଙ୍କ ପାଖରେ ମୋ ମନର ପ୍ରକୃତ ନକ୍ସାଟା ଖୋଲି ଦେଇଥାନ୍ତି ଓ ତୁହେଁ ସେଥିରୁ କିଛି ଲାଭ ଉଠାଇ ଥାନ୍ତେ !! ତୁମର ଚିନ୍ତା ଓ ମୋର ଚିନ୍ତା ଭିତରେ ବିଶେଷ କିଛି ଅମେଳ ନାହିଁ । ରାଜନୀତି ଦୃଷ୍ଟିରୁ କେବଳ କାର୍ଯ୍ୟର ପ୍ରଭେଦ ମାତ୍ର । ଭାବପ୍ରବଣତା ରାଜନୀତିର ପରିପନ୍ଥୀ । ରାଜନୈତିକ ଆବଶ୍ୟକତା ଦୃଷ୍ଟିରୁ ସବୁ ବିଚାର କରିବା ଉଚିତ ।''

କର୍ଣ୍ଣ କହିଲେ ''କୁରୁରାଜ ! ଦୁର୍ଯ୍ୟୋଧନଙ୍କର ଆଶଙ୍କା ଯଥାର୍ଥ । ବର୍ତ୍ତମାନ ପାଣ୍ଡବମାନେ ପ୍ରତିଶୋଧ ପରାୟଣ । କୁରୁବଂଶର ଶତ୍ରୁ ଦ୍ରୁପଦଙ୍କର ଶକ୍ତି ସାମର୍ଥ୍ୟ ସେମାନଙ୍କୁ ମିଳି ଯାଇଛି । ପୂର୍ବଅପେକ୍ଷା ସେମାନଙ୍କର ସ୍ଥିତି ସୁଦୃଢ଼ । ଶ୍ରୀକୃଷ୍ଣ ସେମାନଙ୍କୁ ସାହାଯ୍ୟ ଓ ସମର୍ଥନ ଦେବା ପୂର୍ବରୁ, ଆମେ ସଙ୍ଗେ ସଙ୍ଗେ ପଞ୍ଚାଳ ରାଜ୍ୟ ଆକ୍ରମଣ କରିଦେଲେ ଭଲହୁଅନ୍ତା । ତ୍ରିଶକ୍ତିର ମିଳନ ହେବା ପୂର୍ବରୁ ଯୁଦ୍ଧ ଲାଗିଗଲେ ଆମେ ନିଶ୍ଚୟ ଜୟଲାଭ କରନ୍ତେ ।''

ଦୁର୍ଯ୍ୟୋଧନ କହିଲେ, ''ଠିକ୍ କହିଛନ୍ତି ଅଙ୍ଗରାଜ କର୍ଣ୍ଣ । ବର୍ତ୍ତମାନ ପରିସ୍ଥିତିରେ କୌରବ ଓ ପାଣ୍ଡବ ଏକତ୍ର ରହି ପାରିବେ ନାହିଁ । ଯୁଦ୍ଧ ହେଲେ, ମହାଧନୁର୍ଦ୍ଧର ପିତାମହ ଭୀଷ୍ମ ନିଶ୍ଚୟ ଆମ ପକ୍ଷ ସମର୍ଥନ କରିବେ । ଦ୍ରୋଣ ନିଜର ପୂର୍ବ ଶତ୍ରୁ ଦ୍ରୁପଦଙ୍କ ବିପକ୍ଷରେ ଯୁଦ୍ଧ କରିବେ । ଆମ ଅନ୍ନରେ ପ୍ରତିପାଳିତ ବିଦୁର, ପାଣ୍ଡବଙ୍କ ପକ୍ଷ ସମର୍ଥନ କରି ପାରିବେ ନାହିଁ । ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ମହାରଥୀ

ଭୀଷ୍ମ, ମହାରଥୀ କର୍ଣ୍ଣ, ଶକୁନି, ପ୍ରଭୃତି କୁରୁକୁଳର ପକ୍ଷ ସମର୍ଥନ ପାଇଁ ସର୍ବଦା ପ୍ରସ୍ତୁତ । ପରାଜୟ ପ୍ରଶ୍ନ ଉଠୁ ନାହିଁ । ଆପଣ ବିଚାରକରି ଆଦେଶ ଦିଅନ୍ତୁ ପିତା । ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ପନ୍ଥାରେ ଏ ସମସ୍ୟାର ସମାଧାନ ସମ୍ଭବ ନୁହେଁ ।''

''ତୁମର ଉଦ୍‌ବେଗ ମୁଁ ବୁଝି ପାରୁଛି ବତ୍ସ ! ତେବେ ଭୀଷ୍ମ ଦେବ, ଦ୍ରୋଣ, ବିଦୁର ପ୍ରଭୃତିଙ୍କ ସହିତ ମୁଁ ପରାମର୍ଶ କରେ । ମନେରଖ, ଯୁଦ୍ଧ କୌଣସି ପରିସ୍ଥିତିର ପ୍ରତିକାର ନୁହେଁ, ଏହା ଏକ ଚରମ ଅସ୍ତ୍ର । ଯେ ପ୍ରୟୋଗକରେ ଏବଂ ଯାହାପ୍ରତି ପ୍ରୟୋଗ କରାଯାଏ, ଉଭୟ କ୍ଷତିଗ୍ରସ୍ତ ହୁଅନ୍ତି ।''

ଭୀଷ୍ମଦେବ, ଗୁରୁଦ୍ରୋଣାଚାର୍ଯ୍ୟ ଓ ମନ୍ତ୍ରୀ ବିଦୁରଙ୍କୁ ସଙ୍ଗେ ସଙ୍ଗେ ମନ୍ତ୍ରଣା କକ୍ଷକୁ ନିମନ୍ତ୍ରଣ କରାଗଲା । ଧୃତରାଷ୍ଟ୍ର ସମସ୍ତ ଘଟଣା ସେମାନଙ୍କ ସମ୍ମୁଖରେ ପ୍ରକାଶ କଲେ ।ଭୀଷ୍ମଦେବ ଗମ୍ଭୀର କଣ୍ଠରେ କହିଲେ, ''ପାଣ୍ଡବମାନେ ବଞ୍ଚିଥିବା ଶୁଣି ସମସ୍ତଙ୍କ ସହିତ ମୁଁ ଅତ୍ୟନ୍ତ ଆନନ୍ଦିତ । ପଞ୍ଚାଳ ରାଜାଙ୍କ ସହିତ ଆମର ପାରିବାରିକ ସମ୍ପର୍କ, ଦୀର୍ଘଦିନର ଆବଶ୍ୟକତା ପୂରଣ କଲା । ଆମପାଇଁ ଏକ ଶୁଭ ସମୟ ଆସିଛି । ପୁତ୍ରବଧୂ ପାଞ୍ଚାଳୀ ଓ ପାଣ୍ଡବମାନଙ୍କୁ ସମ୍ମାନ ସହିତ ହସ୍ତିନାପୁରକୁ ନେଇ ଆସିବାକୁ ମୁଁ ସମର୍ଥନ କରୁଛି । ଆଉମଧ ପାଣ୍ଡବ ମାନଙ୍କୁ ରାଜ୍ୟର ଅର୍ଦ୍ଧେକ ଦେଇ ଦେବା ବିଜ୍ଞତାର କାର୍ଯ୍ୟ ହେବ । ଏହା ଫଳରେ କୁରୁପାଣ୍ଡବ ମଧରେ ଥିବା ତିକ୍ତତା ଦୂର ହୋଇଯିବ । ପରିବାରର ଏକତା ସୁଦୃଢ଼ ହେବ । କୁରୁ ଆଉ ପାଣ୍ଡବ ମୋର ଦୁଇଟି ଚକ୍ଷୁ । ଉଭୟେ ମୋ ଦୃଷ୍ଟିରେ ସମାନ । ଶାନ୍ତି, ଧର୍ମ, ନ୍ୟାୟ ପ୍ରତିଷ୍ଠା ପାଇଁ ମୁଁ ଏହି ଉପଦେଶ ଦେଉଛି । ଏହା କାର୍ଯ୍ୟକାରୀ ହେଲେ ପ୍ରଜାମାନଙ୍କର ଆଶା ଆକାଂକ୍ଷା ପୂରଣ ହେବ । ସନ୍ଦେହର କଳାମେଘ ଅପସରି ଯିବ । ବିରାଟ ବିପର୍ଯ୍ୟୟରୁ ରକ୍ଷାପାଇଯିବ କୁରୁକୁଳ ।

ଦ୍ରୋଣାଚାର୍ଯ୍ୟ କହିଲେ, ''ସାଧୁ...ସାଧୁ ! ଏହାଏକ ଉତ୍ତମ ପ୍ରସ୍ତାବ । ମୁଁ ଏଥିରେ ସମ୍ପୂର୍ଣ୍ଣ ଏକମତ । କୁରୁକୁଳର ଗୌରବ, ସଂହତି ଓ ବୈଶିଷ୍ଟ୍ୟ ଏଥିରେ ରକ୍ଷାକରାଯାଇ ପାରିବ । ଏକ ପ୍ରଳୟ ପର୍ବର ଅବସାନ ପାଇଁ ଏ ପ୍ରସ୍ତାବ ନିଶ୍ଚିତ ଭାବରେ ଅଭିନନ୍ଦନୀୟ ।''

''ଆପଣ ବନ୍ଦ କରନ୍ତୁ ଏ ରାଜନୀତି ମହାଭାଷ୍ୟ, ବନ୍ଦ କରନ୍ତୁ । କୁରୁରାଜ ଧୃତରାଷ୍ଟ୍ରଙ୍କର ଅନ୍ନରେ ପ୍ରତିପାଳିତ ହୋଇ ହସ୍ତିନାପୁରର ବିଭାଜନ ପାଇଁ ପରାମର୍ଶ ଦେଉଛନ୍ତି । ଏଥିପାଇଁ ଆପଣ ଟିକିଏ ବି ଲଜ୍ଜା ବୋଧ କରୁନାହାନ୍ତି । ପ୍ରଳୟ ବେଗରେ ପଶିଆସି କଠୋର କଣ୍ଠରେ କହିଲେ ଦୁର୍ଯ୍ୟୋଧନ ।''

ଏକ ଆଗ୍ନେୟ ଗିରିର ଉଦ୍‌ଗୀରଣ ପରି ଗର୍ଜନ କରି ଉଠିଲେ ଦ୍ରୋଣାଚାର୍ଯ୍ୟ । ''ଦୁର୍ଯ୍ୟୋଧନ ! ସୀମାଲଂଘନ କରିବା କଳାରେ ତୁମର ପାରଦର୍ଶିତା ଅଛି । ତାହାହିଁ ତୁମପାଇଁ ଓ କୁରୁକୁଳ ପାଇଁ ମହାକାଳର କାରଣ ହେବ । ମନେରଖ ପ୍ରଜାମାନଙ୍କ ମନମଧରେ ତୁମ ବିରୁଦ୍ଧରେ ଘୃଣା ବିଦ୍ୱେଷ, ସନ୍ଦେହ ଓ ଅସନ୍ତୋଷ ସୃଷ୍ଟି ହୋଇଛି । ପ୍ରଜାମାନଙ୍କର ଶୁଭେଚ୍ଛା ହରାଇ, ତୁମେ ଯୁଦ୍ଧ ପାଇଁ ପରାମର୍ଶ ଦେଇ, ରାଜାଙ୍କ ମନକୁ ବିଷାକ୍ତ କରୁଛ !''

''ବିଷାକ୍ତ ନୁହେଁ, ଏହା ସମୟୋଚିତ ପରାମର୍ଶ । ବର୍ତ୍ତମାନ ଯୁଦ୍ଧ ଓ ଆତ୍ମସମର୍ପଣ ମଧରୁ କୌଣସି ଗୋଟିକୁ ବାଛି ନେବାକୁ ହେବ । ଆଶଙ୍କା, ଗୁଜବ ଓ ଭାବପ୍ରବଣତାକୁ ସମ୍ମାନ ଦେବା କ୍ଷତ୍ରିୟର ଧର୍ମ ନୁହେଁ । ଯୁଦ୍ଧ ଅନିବାର୍ଯ୍ୟ । ଗର୍ଜନ କରି କହିଲେ ଦୁର୍ଯ୍ୟୋଧନ ।''

କର୍ଣ୍ଣ କହିବା ଆରମ୍ଭ କଲାକ୍ଷଣି ଧୃତରାଷ୍ଟ୍ରଙ୍କ ନିର୍ଦ୍ଦେଶକ୍ରମେ ସେ ନୀରବ ହୋଇଗଲେ ।

ଧର୍ମଜ୍ଞ ବିଦୁର ସବୁ ଶୁଣୁଥାନ୍ତି କିନ୍ତୁ କିଛି କହୁନଥାନ୍ତି, ସତେଯେପରି ଘନ କୁହୁଡି ଭିତରେ ସୂର୍ଯ୍ୟଦେବ ମୁହଁ ଲୁଚାଇଛନ୍ତି । ଧୃତରାଷ୍ଟ୍ର ବିଦୁରଙ୍କୁ ଅନୁରୋଧ କଲେ ନିଜର ମତାମତ ଦେବାପାଇଁ ।

ବିଦୁର କହିଲେ, ''ଭରତବଂଶ ଓ ହସ୍ତିନାପୁରର ରକ୍ଷକ ପିତାମହ ଭୀଷ୍ମ, କୁରୁକୁଳର ଶୁଭ ଚିନ୍ତକ । ତାଙ୍କର ମୂଲ୍ୟବାନ ମତାମତ, ବର୍ତ୍ତମାନର ଘଡ଼ିସନ୍ଧି ମୁହୂର୍ତ୍ତରେ ଏକମାତ୍ର ଗ୍ରହଣ ଯୋଗ୍ୟ । ମହର୍ଷି ଦ୍ରୋଣାଚାର୍ଯ୍ୟ ଗୁରୁ ଭାବରେ ତାଙ୍କର ସଦ୍ ପରାମର୍ଶ ଦେଉଛନ୍ତି । ପିତାମହଙ୍କ ମତାମତକୁ ସେ ଅନ୍ତରର ସହିତ ସମର୍ଥନ କରିଛନ୍ତି । ଆପଣ ବିବେକର ସହିତ ତାହା ଗ୍ରହଣ କରିବା ଉଚିତ । ଦୁର୍ଯ୍ୟୋଧନ ଓ କର୍ଣ୍ଣ ଆପଣଙ୍କୁ ଭୁଲ ପରାମର୍ଶ ଦେଉଛନ୍ତି । ସେମାନଙ୍କର ରାଜନୈତିକ ପରିପକ୍ୱତା ନାହିଁ । ସେମାନେ ଯୁବସୁଲଭ ଆବେଗ ଦ୍ୱାରା ପରିଚାଳିତ, ବିବେକ କିମ୍ବା ବିଚାର ଦ୍ୱାରା ନୁହେଁ । ନିଜର ପୁତ୍ରପରି ଯେଉଁ ପାଣ୍ଡୁ ପୁତ୍ର ମାନଙ୍କୁ ଆପଣ ପାଳନ କରିଛନ୍ତି ପିତୃତ୍ୱ ଦେଇ, ସେମାନଙ୍କୁ ଚରମ ଦୁର୍ଯୋଗ ମଧ୍ୟକୁ ଟାଣିନେବାର କୌଣସି ପ୍ରସ୍ତାବକୁ ଆପଣ ସମର୍ଥନ ଦିଅନ୍ତୁ ନାହିଁ । ଶ୍ରୀକୃଷ୍ଣ ପଞ୍ଚପାଣ୍ଡବ ଓ ରାଜା ଦ୍ରୁପଦଙ୍କ ମଧ୍ୟରେ ଯେଉଁ ନୂତନ ମେଣ୍ଟ ସୃଷ୍ଟିହେଲା ତାହା ଯୁଦ୍ଧ ଦ୍ୱାରା ଦୁର୍ବଳ କରାଯାଇ ପାରିବ ନାହିଁ । ସେମାନେ ଅଜେୟ । ଭୀଷ୍ମଦେବଙ୍କର ଉପଦେଶକୁ ବିବେକର ବାଣୀରୂପେ ଗ୍ରହଣ କରନ୍ତୁ । ଉଭୟପକ୍ଷର ଶାନ୍ତିପାଇଁ ଏହା ଏକମାତ୍ର ମଙ୍ଗଳପ୍ରଦ ପନ୍ଥା ।''

ଧୃତରାଷ୍ଟ୍ରଙ୍କର ମୁଖମଣ୍ଡଳ ଗମ୍ଭୀର ହୋଇଗଲା । ସେ ନିଜର ନିଷ୍ପତ୍ତି ଘୋଷଣା କରି କହିଲେ, ''ରାଜ୍ୟର ଅର୍ଦ୍ଧେକ ପାଣ୍ଡବମାନଙ୍କୁ ଦେବା ପାଇଁ ମୁଁ ସ୍ଥିର କରିଛି । ଶାନ୍ତି, ସହଯୋଗ ଓ କର୍ତ୍ତବ୍ୟ ପାଳନ ପାଇଁ ଏହା ଉଦ୍ଦିଷ୍ଟ । ବିଦୁର ପଞ୍ଚାଳ ଯାଇ କୁନ୍ତୀ, ପାଣ୍ଡୁପୁତ୍ର ଓ ପାଞ୍ଚାଳୀଙ୍କୁ ରାଜକୀୟ ସମ୍ମାନ ଭିତରେ ନେଇ ଆସନ୍ତୁ । ଏହା ରାଜାଦେଶ ।''

ପରଦିନ ବିଦୁର ବହୁ ମୂଲ୍ୟବାନ ଉପଢ଼ୌକନ ନେଇ, ସୈନ୍ୟ ସାମନ୍ତ ଗହଣରେ ଯାଇ ପହଞ୍ଚିଲେ କାମ୍ପିଲ୍ୟ ନଗରୀରେ । ପଞ୍ଚାଳରାଜ ଦ୍ରୁପଦଙ୍କୁ ଅଭିବାଦନ ଜଣାଇ କହିଲେ, ''ହେ ରାଜନ ! କୁରୁପତି ଧୃତରାଷ୍ଟ୍ରଙ୍କର ଅଭିନନ୍ଦନ ତଥା ପ୍ରୀତ୍ୟୁପହାର ଗ୍ରହଣ କରନ୍ତୁ । ସେ ଆପଣଙ୍କର ମଙ୍ଗଳକାମନା କରି, କୁଶଳ ଜିଜ୍ଞାସା କରିଛନ୍ତି । ମୋତେ ପଠାଇଛନ୍ତି, ରାଜାମାତା କୁନ୍ତୀ, ରାଜବଧୂ ଦ୍ରୌପଦୀ ଓ ପଞ୍ଚପାଣ୍ଡବଙ୍କୁ ସସମ୍ମାନ ପାଛୋଟି ନେବାକୁ । ସେମାନେ ମୋ ସହିତ ଫେରିଯିବା ପାଇଁ ଦୟାକରି ବ୍ୟବସ୍ଥା କରନ୍ତୁ । ମୁଁ ପ୍ରତିଶ୍ରୁତି ଦେଉଛି, କୌଣସି ପ୍ରକାର ପ୍ରତିକୂଳ ପରିସ୍ଥିତି ସୃଷ୍ଟି ହେବନାହିଁ । ମୋ ଉପରେ ଆସ୍ଥା ରଖନ୍ତୁ । ମଙ୍ଗଳବିଧାନ ପାଇଁ ମଙ୍ଗଳମୟଙ୍କର ଆଶୀର୍ବାଦ ଅଛି ।

ରାଜା ଦ୍ରୁପଦ କୁରୁବଂଶର କ୍ରୁରତା ବିଷୟରେ ଅବହିତ ଥିଲେ । ଧୃତରାଷ୍ଟ୍ରଙ୍କର ଆନ୍ତରିକତା ଉପରେ ତାଙ୍କର ସନ୍ଦେହଥିଲା । ସେ କହିଲେ, ''ପାଣ୍ଡବମାନଙ୍କର ମତାମତ ବିନା ମୋର କିଛି କରିବାର ନାହିଁ । ସିଦ୍ଧାନ୍ତ ସେମାନେ ନେବେ । ଏହା ସେମାନଙ୍କର ପାରିବାରିକ ଘଟଣା ।''

ପ୍ରଥମେଯାଇ ବିଦୁର କୁନ୍ତୀଙ୍କୁ ଭେଟିଲେ । ତାଙ୍କୁ ଗଭୀର ଆନ୍ତରିକତା ସହ ସମସ୍ତ ଘଟଣା କହିଲେ । ବିଦୁରଙ୍କୁ ଦେଖି କୁନ୍ତୀ ଧୈର୍ଯ୍ୟ ଧରିପାରିଲେ ନାହିଁ । ସେ ଅଶ୍ରୁସିକ୍ତ ନୟନ ଓ ବାଷ୍ପରୁଦ୍ଧ କଣ୍ଠରେ କହିଲେ, ''ହେ ମହାତ୍ମା ବିଦୁର ! ମୋ ପିତୃହରା ସନ୍ତାନମାନଙ୍କୁ ତୁମେ ନିଜର ସନ୍ତାନ ଭାବି ପାଳନ କରିଛ । ମହାବିପଦରୁ ତୁମେ ସେମାନଙ୍କର ପ୍ରାଣରକ୍ଷା କରିଛ । ତୁମେ ସେମାନଙ୍କର ପିତାଙ୍କ ପରି ଅଭୟ ଦାୟକ । ସେମାନଙ୍କ ଜୀବନର ଅବଲମ୍ବନ । ସ୍ନେହ, ଶ୍ରଦ୍ଧା ସେବା କରୁଣାର ପ୍ରତୀକ ।

ତୁମେ ପାଣ୍ଡବମାନଙ୍କର ଶୁଭ ଚିନ୍ତକ । ଏ ପରିସ୍ଥିତିରେ ମୁଁ ତୁମର ଉପଦେଶ ଚାହେଁ । କୁହ, ଧୃତରାଷ୍ଟ୍ରଙ୍କର ଏହା ଏକ ଚକ୍ରାନ୍ତ ନୁହେଁତ !''

''ମୋ ଉପରେ ଭରସା ରଖନ୍ତୁ ଦେବି ! ବିପଦର ସୂଚନାଥିଲେ ମୁଁ କେବେହେଲେ ନିଜେ ଆସିନଥାନ୍ତି । ହସ୍ତିନାକୁ ଫେରିଯିବା ଫଳରେ ଅନେକ ସମସ୍ୟାର ସମାଧାନ ହୋଇଯିବ । ରାଜ୍ୟର ଅର୍ଦ୍ଧେକ ପାଣ୍ଡବ ମାନଙ୍କୁ ଦେବାପାଇଁ କୁରୁରାଜ ଧୃତରାଷ୍ଟ୍ର ନିଷ୍ପତ୍ତି ନେଇଛନ୍ତି । ଅଭିମାନରେ ଆମ ଅଧିକାରକୁ ଗୋଡରେ କଣ ଆଡେଇ ଦେବା ! ଦୁର୍ଯ୍ୟୋଧନ ହୁଏତ ବାଧା ସୃଷ୍ଟିକରିପାରନ୍ତି । ସେତ ବିରୋଧ ମୂଳରୁ କରୁଥିଲେ ଏବଂ ଏହା ରହିବ ମଧ୍ୟ । ତଥାପି କୌରବମାନେ ଅବିବେକି ହୋଇ,ଯଦି ଯୁଦ୍ଧ ଲଢି ଦିଅନ୍ତି ତେବେ ନିଶ୍ଚିତ ଭାବରେ କୌରବକୁଳ ଧ୍ୱଂସ ହୋଇଯିବ । ମନେରଖନ୍ତୁ, ପାଣ୍ଡବମାନଙ୍କ ସପକ୍ଷରେ ସର୍ବଦା ଧର୍ମ ରହିଛି । ଧର୍ମର ଜୟ ହେବ । ବ୍ୟସ୍ତ ହେବାର କିଛି ନାହିଁ ।''

ସମସ୍ତଙ୍କ ସହିତ ଆଲୋଚନା କରିବା ପରେ ସ୍ଥିର ହେଲା, ପାଣ୍ଡବମାନେ ହସ୍ତିନାପୁରକୁ ଫେରିବେ । ମହାତ୍ମା ବିଦୁରଙ୍କ ଉପରେ ସମସ୍ତଙ୍କର ଆସ୍ଥା । ଶୁଭସମ୍ବାଦ ହସ୍ତିନାପୁରକୁ ପଠାଇ ଦିଆଗଲା । ପରଦିନ ଆରମ୍ଭ ହେଲା ବାହୁଡାଯାତ୍ରା । ରାଜା ଦ୍ରୁପଦ ବିହିତ ବ୍ୟବସ୍ଥାକଲେ । ଏକ ସୁସଜ୍ଜିତ ରଥରେ ପାଣ୍ଡବ ଭାଇମାନେ ବସିଲେ । ମଣିମୁକ୍ତା ମଣ୍ଡିତ ସୁବର୍ଣ୍ଣ ରଥରେ ବସିଲେ ମା' କୁନ୍ତୀ ଓ ପାଣ୍ଡବ ବଧୂ ଦ୍ରୌପଦୀ । ଉଭୟ ରଥର ସମ୍ମୁଖ ଭାଗରେ ଅଛନ୍ତି ମହାମନ୍ତ୍ରୀ ବିଦୁର ଏବଂ ସୈନ୍ୟଗଣ । ଦ୍ରୌପଦୀଙ୍କର ରଥର ପଛରେ ଅଛନ୍ତି ଦେହରକ୍ଷୀ ଏବଂ ଅଜସ୍ର ଧନରତ୍ନ, ମଣି ମାଣିକ୍ୟ ଭରା ସହସ୍ର ରଥ ଓ ସୈନ୍ୟଗଣ । ଜଣାଯାଉଛି ପାଣ୍ଡବମାନେ ଦିଗ୍‌ବିଜୟ କରି ଫେରୁଛନ୍ତି । ପାଖାପାଖି ଲାଗିଥିବା କୁରୁ ସମ୍ରାଜ୍ୟ ଓ ପଞ୍ଚାଳ ସୀମାପଥ, ତୋରଣ ମଣ୍ଡିତ ଓ ସୁସଜ୍ଜିତ ।

ହସ୍ତିନା ପଥମଧ୍ୟରେ ସିଞ୍ଚିତ ହେଉଛି ସୁବାସିତ ଜଳକଣା । ତୋରଣ ସବୁ ପୁଷ୍ପସ୍ତବକରେ ବିମଣ୍ଡିତ । ନାନାବିଧ ବାଦ୍ୟଯନ୍ତ୍ରର ସମ୍ମିଳିତ ସ୍ୱର ମୂର୍ଚ୍ଛନା, ପରିବେଶକୁ ଛନ୍ଦାୟିତ କରିଛି । ତାଳେ ତାଳେ ନିନାଦିତ ହେଉଛି ନର୍ତ୍ତକୀମାନଙ୍କର ନୃତ୍ୟଚପଳ ନୂପୁର ନିକ୍ୱଣ । ହସ୍ତିନା ନଗରର ପ୍ରବେଶ ଦ୍ୱାରରେ ଆସି ଅଟକିଗଲା ରଥ ସମୂହ । ଧୃତରାଷ୍ଟ୍ର ରଥରୁ ଅବତରଣ କରି ସେମାନଙ୍କୁ ଅଭିନନ୍ଦନ ଜଣାଇଲେ । ପୁରନାରୀଗଣ ବିପୁଳ ଉଲ୍ଲାସରେ ଗାନ୍ଧାରୀଙ୍କ ଗହଣରେ ଆସି ସେମାନଙ୍କୁ ପାଛୋଟିନେଲେ । ଘର ବାହୁଡା ପାଣ୍ଡବ ମାନଙ୍କ ପାଇଁ ରାଜପୁରୀରେ ଛୁଟିଛି ଆନନ୍ଦର ବନ୍ୟା । କୌରବ ଶିବିରରେମ୍ଳାନଚନ୍ଦ୍ରର ମ୍ଳାନିମା । ଧୃତରାଷ୍ଟ୍ର ରାଜ୍ୟର ଅର୍ଦ୍ଧେକ ଯୁଧିଷ୍ଠିରଙ୍କୁ ପ୍ରଦାନକରି ତାଙ୍କୁ ରାଜଗାଦିରେ ଅଭିଷେକ କରାଇଲେ । ପାଣ୍ଡବମାନଙ୍କର ଶୁଭ,ଶାନ୍ତି ଓ ସମୃଦ୍ଧି କାମନା କରି ନିର୍ବିଘ୍ନରେ ରାଜପଣ କରିବାକୁ ଆଶୀର୍ବାଦ ଦେଲେ । ଗାନ୍ଧାରୀ, କୁନ୍ତୀ ଓ ଦ୍ରୌପଦୀଙ୍କୁ ଆଲିଙ୍ଗନ କରି କହିଲେ, ''ମୋତେ ଆଜି କୋଟିନିଧି ମିଳିଛି ।''

ପାଣ୍ଡବମାନେ ହସ୍ତିନା ପୁରରେ କିଛି ଦିନ ରହିଲେ । ଇନ୍ଦ୍ର ପ୍ରସ୍ଥଠାରେ ପାଣ୍ଡବମାନଙ୍କ ପାଇଁ ନିର୍ମିତ ହେଲା ଏକ ନୂତନ ରାଜଧାନୀ । ଏଠାରେ ଥିଲା ତାଙ୍କ ପୁରୁଷଙ୍କ ରାଜଧାନୀ । ଇନ୍ଦ୍ରପ୍ରସ୍ଥ ଥିଲା ଖାଣ୍ଡବ ପ୍ରସ୍ଥର ନୂତନ ନାମ । ନୂତନ ରାଜପ୍ରାସାଦ ସ୍ୱର୍ଗର ଇନ୍ଦ୍ରଭୁବନ ଠାରୁ ଆଉରି ସୁନ୍ଦର ଥିଲା । ଇନ୍ଦ୍ରପୁରୀ ସଦୃଶ ଦେଖାଯାଉଥିଲା ନବନିର୍ମିତ ରାଜପୁରୀ । ମା କୁନ୍ତୀ ଓ ଦ୍ରୋପଦୀଙ୍କୁ ନେଇ ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥକୁ ଚାଲି ଆସିଲେ । ବଳରାମ ଓ କୃଷ୍ଣ ସେଠାକୁ ଆସି ପାଣ୍ଡବ ମାନଙ୍କ ଗହଣରେ କିଛିଦିନ

ବିତାଇଲେ । ମହର୍ଷି ନାରଦମଧ ସେଠାକୁ ଆସି ପାଣ୍ଡବ ମାନଙ୍କ ଗହଣରେ କିଛିଦିନ ରହିଲେ । ନିଜଭିତରେ ସୌହାର୍ଦ୍ଦ୍ୟ ଓ ସଂହିତ ରକ୍ଷାକରି ଚଳିବାକୁ ଉପଦେଶ ଦେଲେ । ଦ୍ରୌପଦୀଙ୍କ ପାଇଁ ଯେପରି କେବେହେଲେ ନିଜଭିତରେ ଭୁଲବୁଝାମଣା ସୃଷ୍ଟି ନହୁଏ, ସେଥିପାଇଁ ଏକ ଆଚରଣ ସଂହିତା ସ୍ଥିର କରି ଦେଲେ । କହିଲେ ସାରାଜୀବନ ପାଇଁ ପରସ୍ପର ସଦ୍ଭାବ ରକ୍ଷାଦିଗରେ ଏହା ସାହାଯ୍ୟ କରିବା ମନେରଖ ।

''ଦ୍ରୌପଦୀଙ୍କ ସହିତ ଏକାନ୍ତରେ ଜଣେ ଭାଇ ବାର୍ତ୍ତାଳାପ କରୁଥିବା ସମୟରେ, ଅନ୍ୟଜଣେ ସେଠାକୁ ପ୍ରବେଶ କରିବା ନିଷିଦ୍ଧ । ଏହାର ବିରୁଦ୍ଧା ଚରଣ କଲେ, ବନବାସ ଦଣ୍ଡ ବାରବର୍ଷ ପାଇଁ ଭୋଗ କରିବାକୁ ପଡିବ ।'' ଶାନ୍ତି ଓ ସଂହତି ରକ୍ଷାପାଇଁ ଏହି ଆଚରଣ ସଂହିତା ସର୍ବସମ୍ମତି କ୍ରମେ ।

# ॥ ଅର୍ଜୁନଙ୍କର ତୀର୍ଥାଟନ ॥

ସେଦିନର ସେଇ ଏକାନ୍ତ ମୁହୂର୍ତ୍ତ ।

ଯୁଧିଷ୍ଠିର ଦ୍ରୌପଦୀଙ୍କ ସହିତ ଅସ୍ତ୍ରଶାଳାରେ ମଧୁର ବାର୍ତ୍ତାଳାପରେ ମଗ୍ନ ଥିଲେ । ଜଣେ ବ୍ରାହ୍ମଣ ଇନ୍ଦ୍ରପ୍ରସ୍ଥ ରାଜପୁରୀକୁ ଆସି ଅର୍ଜୁନଙ୍କୁ ବିକଳ କଣ୍ଠରେ କହିଲେ, ''ହେ ବୀର ଧନଞ୍ଜୟ ! କେତେକ ଚୋର ଆସି ମୋର ଗାଈଗୁଡ଼ିକୁ ନେଇ ଯାଇଛନ୍ତି । ବନ୍ଧା ହୋଇଥିବା ଛୋଟଛୋଟ ବାଛୁରୀ ଗୁଡିକ ମା'କ୍ଷୀର ପାଇଁ ବିକଳ ଚିତ୍କାର କରୁଛନ୍ତି । ପାଣ୍ଡବମାନେ ଥାଉଥାଉ ଚୋର ତସ୍କର ମାନଙ୍କର ଉପଦ୍ରବ ଭୋଗିବାକୁ ପଡ଼ିବ ! ଦୟାକରି ଏ ବିପଦରୁ ମୋତେ ରକ୍ଷା କରନ୍ତୁ ।''

ଅସ୍ତ୍ରାଗାର ମଧ୍ୟକୁ ଯିବେକି ନାହିଁ ଅର୍ଜୁନ ଧର୍ମସଙ୍କଟରେ ପଡ଼ିଗଲେ । ସମ୍ଭ୍ରମ ଓ ନୀତିନିୟମକୁ ଉପେକ୍ଷାକରି ଅର୍ଜୁନ ବ୍ରାହ୍ମଣଙ୍କୁ ରକ୍ଷାକରିବା ପାଇଁ ଅସ୍ତ୍ରାଗାର ମଧରେ ପ୍ରବେଶ କଲେ । ସେ ଭଲରୂପେ ଜାଣିଥିଲେ ଯେ ଏଥିପାଇଁ ତାଙ୍କୁ ଦଣ୍ଡ ଭୋଗ କରିବାକୁ ପଡ଼ିବ ତଥାପି କର୍ତ୍ତବ୍ୟ ପଥରୁ ସେ ବିଚ୍ୟୁତ ହେଲେନାହିଁ । ଅସ୍ତ୍ରାଗାରରୁ ଅସ୍ତ୍ର ଆଣି ସେ ଚୋରମାନଙ୍କୁ ଅନୁସରଣ କଲେ । ସେମାନଙ୍କୁ ମାରି ବ୍ରାହ୍ମଣଙ୍କର ଗାଈମାନଙ୍କୁ ଉଦ୍ଧାର କଲେ । ବ୍ରାହ୍ମଣ ଆଶ୍ୱସ୍ତ ହୋଇ ଗାଈମାନଙ୍କୁ ନେଇ ମହା ଆନନ୍ଦରେ ଘରକୁ ଫେରିଗଲେ ।

ଫେରିବା ପରେ, ଅର୍ଜୁନ ଯୁଧିଷ୍ଠିରଙ୍କ ପାଖକୁ ଯାଇ କହିଲେ, ''ହେ ଧର୍ମରାଜ ! ମୁଁ କର୍ତ୍ତବ୍ୟ ଅନୁରୋଧରେ ନିୟମ ଭଙ୍ଗ କରିଛି । ଆଚରଣ ସଂହିତାର ସର୍ତ୍ତପୂରଣ ପାଇଁ ଦୟାକରି ମୋତେ ଅନୁମତି ଦିଅନ୍ତୁ, ମୁଁ ବାରବର୍ଷ ନିମିତ୍ତ ତୀର୍ଥାଟନରେ ଯିବି ।

ଯୁଧିଷ୍ଠିର ବାରଣ କରି କହିଲେ ''ଅର୍ଜୁନ ! ତୁମେ କିଛି ଭୁଲ କରିନାହଁ । ମୁଁ ତ ବୟସରେ ବଡ଼, କୃଷ୍ଣାଙ୍କ ଗହଣରେ ମୁଁ ଥିବା ବେଳେ ତୁମର ଆସିବାରେ କୌଣସି ଅସୁବିଧା ନାହିଁ । ତମେ ନିୟମ ଭଙ୍ଗ କରିନାହଁ ବରଂ ସର୍ତ୍ତର ବ୍ୟାଖ୍ୟା କରିବାରେ ଭୁଲ କରୁଚ ।''

''ଆପଣଙ୍କ ଉଦାରତା ତଥା ମହାନୁଭବତା ପାଇଁ ମୁଁ ନିଜକୁ ଧନ୍ୟ ମନେକରୁଛି । ନିଃସର୍ତ୍ତ ଭାବରେ ସର୍ତ୍ତପାଳନ କରିବାହିଁ ମୋର କର୍ତ୍ତବ୍ୟ, ରାଜୋଚିତ ଧର୍ମମଧ । ଆପଣ ରାଜାର ହୃଦୟ ନେଇ ଆଦେଶ ଦିଅନ୍ତୁ, କ୍ଷମାଶୀଳ ଭାଇର ହୃଦୟ ନେଇ ବିଚାର କରନ୍ତୁନି ।''

କତେକ ବେଦଜ୍ଞ ବ୍ରାହ୍ମଣଙ୍କୁ ସାଥିରେ ନେଇ ଅର୍ଜ୍ଜୁନ ତୀର୍ଥାଟନରେ ବାହାରିଲେ । ସେ ପ୍ରଥମେ ଯାଇ ପହଞ୍ଚିଲେ ହରଦ୍ୱାରରେ । ଆକାଶସ୍ପର୍ଶୀ ହିମାଳୟ । ଅଭିନବ ବନସ୍ପପ୍ରକୃତି । ତୁଷାର ଧବଳ ଶୈଳ ଶିର । ପାବିନୀ ଗଙ୍ଗା ଏଠାରେ ଶିବଙ୍କର ଜଟାଗହ୍ୱରରୁ ଲମ୍ଫଦେଇ ବହିଆସୁଛନ୍ତି ପୃଥିବୀକୁ ପବିତ୍ର କରିବା ପାଇଁ । ପ୍ରତିଦିନ ସେ ଗଙ୍ଗାର ପବିତ୍ର ଜଳରେ ସ୍ନାନ କରନ୍ତି । ବ୍ରାହ୍ମଣମାନଙ୍କ ଠାରୁ ବେଦଧ୍ୱନି ଶୁଣନ୍ତି ।

ଦିନକର ଘଟଣା !

ଅର୍ଜ୍ଜୁନ ଗଙ୍ଗାରେ ବୁଡଦେବା ସମୟରେ ତାଙ୍କର ରୂପ ପ୍ରତି ଆକର୍ଷିତ ହୋଇଥିଲେ ନାଗ ରାଜକନ୍ୟା ଉଲୁପୀ । ସେ ତାଙ୍କର ଅଦ୍ଭୁତ ଶକ୍ତିବଳରେ ପାତାଳପୁରୀକୁ ଟାଣିନେଲେ । ଅର୍ଜ୍ଜୁନ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲେ ''ହେ ସୁନ୍ଦରି ! ତୁମର ସାହସ ଓ ଶକ୍ତିକୁ ଶ୍ରଦ୍ଧାର ସହ ସମ୍ମାନ ଦେଉଛି । ତୁମର ପରିଚୟ କଣ ? କାହିଁକି ତୁମେ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନକୁ ଆକର୍ଷଣ କଲ ?

''ହେ ରାଜନ୍ ! ମୁଁ ହେଉଛି କୌରବୀ ନାମକ ନାଗରାଜାଙ୍କ କନ୍ୟା ଉଲ୍ଲୂପୀ । ଏହା ହେଉଛି ନାଗଲୋକ । ଏହାକୁ ପାତାଳ ପୁରୀ କୁହାଯାଏ । ନାଗରାଜାଙ୍କ ମହାମଣିମୟ ଭବନରେ ଆଜି ଆପଣ ଅତିଥି । ଉଲୂପୀର ସ୍ୱପ୍ନ ଆଜି ସାର୍ଥକ ହୋଇଛି । ସେ ତା'ମନର ମଣିଷକୁ ପାଇଛି । ସେ ଚାହେଁ, ଉଲୂପୀକୁ ମହାମହିମ ପାଣ୍ଡବ ବୀର, ପତ୍ନୀରୂପେ ଗ୍ରହଣ କରିବେ ।''

''କିନ୍ତୁ ଉଲୂପୀ ! ମୁଁ ତ ତୀର୍ଥାଟନରେ ବାହାରିଛି। ବାରବର୍ଷପରେ ଇନ୍ଦ୍ରପ୍ରସ୍ଥକୁ ଫେରିବି । ମୁଁ ବନଚର୍ଯ୍ୟାରେ ଦୀକ୍ଷିତ ହୋଇଛି । ବ୍ରହ୍ମଚର୍ଯ୍ୟ ପାଳନ ମୋର ଧର୍ମ । ବିବାହ ବନ୍ଧନ ପାଇଁ ଏହା ଉପଯୁକ୍ତ ସମୟ ନୁହେଁ । ମୁଁ ମଧ୍ୟ ତୀର୍ଥାଟନ ବନ୍ଦକରି ଏଠାରେ ରହିପାରିବି ନାହିଁ । ମୋତେ ବାଧା ଦିଅ ନାହିଁ ।''

''ହେ କୌନ୍ତେୟ ! ଦୀନ, ଅନାଥ ଓ ଆର୍ତ୍ତବ୍ୟକ୍ତିକୁ ରକ୍ଷା କରିବା ଆପଣଙ୍କର ଧର୍ମ୍ମ । ସର୍ବଦା ଆପଣ ଏହା ପାଳନ କରିଛନ୍ତି । ମୁଁ ଆପଣଙ୍କର ଶରଣାପନ୍ନ । ମୋର ଜୀବନକୁ ଆପଣଙ୍କ ପବିତ୍ର ପଦତୀର୍ଥରେ ସମର୍ପଣ କରିଛି । ଆପଣତ କାହାର ଯାଚନା ଅପୂର୍ଣ୍ଣ ରଖି ନାହାନ୍ତି । ମୋର ଏଇ ଶ୍ରଦ୍ଧାର ନୈବେଦ୍ୟକୁ ଗ୍ରହଣକରି ଧର୍ମ ପାଳନ କରନ୍ତୁ । ମୋତେ ମଧ ଧର୍ମପାଳନ ପାଇଁ ସୁଯୋଗ ଦିଅନ୍ତୁ ।''

''କିନ୍ତୁ କିପରି, ଶପଥ ଭଙ୍ଗ କରିବି କିପରି ?''

ଏକ ନିଷ୍ପାପ ତରୁଣୀର ଜୀବନରକ୍ଷା, ସହସ୍ର ସର୍ତ୍ତ ଓ ଶପଥ ଠାରୁ ଶ୍ରେୟସ୍କର । ବୋଧହୁଏ ସହୃଦୟତାର ସହିତ ଆପଣ ଏହା ବିଚାର କରିବେ ।''

ଅର୍ଜ୍ଜୁନ ନାଗରାଜାଙ୍କ ଭବନରେ ଉଲୂପୀ ସହିତ ରାତ୍ରି ଯାପନ କରି ତା' ପରଦିନ ବିଦାୟ ନେଇ ଫେରି ଆସିଲେ ହରଦ୍ୱାର । ବ୍ରାହ୍ମଣମାନେ ତାଙ୍କୁ ଦେଖି ଆନନ୍ଦିତ ହେଲେ ।

ତତ୍‌ପରେ ଅର୍ଜ୍ଜୁନ ବ୍ରାହ୍ମଣମାନଙ୍କ ଗହଣରେ ପୂର୍ବ ଦିଗକୁ ଗମନ କଲେ । ଅଙ୍ଗ, ବଙ୍ଗ, କଳିଙ୍ଗ ପ୍ରଭୃତି ଦେଶରେ ବିଭିନ୍ନ ତୀର୍ଥଭୂମି ପରିଭ୍ରମଣ କରିବା ପରେ ଆସି ପହଞ୍ଚିଲେ ମଣିପୁରରେ । ସେଠାରେ

ସେ ମଣିପୁରର ରାଜା ଚିତ୍ରବାହନଙ୍କ କନ୍ୟା ଚିତ୍ରାଙ୍ଗଦାଙ୍କୁ ବିବାହ କଲେ । ଏ ବିବାହ ଥିଲା ସର୍ତ୍ତମୂଳକ । ଚିତ୍ରାଙ୍ଗଦାଙ୍କ ଗର୍ଭରେ ତାଙ୍କ ଔରସରୁ ଯେଉଁ ପୁତ୍ର ସନ୍ତାନ ଜାତ ହେବ, ସେ ଚିତ୍ରବାହନଙ୍କର ପୋଷ୍ୟପୁତ୍ରରୂପେ ମଣିପୁରର ରାଜାଗାଦି ଲାଭ କରିବ । ଅର୍ଜ୍ଜୁନ ଏଥିରେ ସମ୍ମତ ହୋଇଥିଲେ । ବିବାହ ପରେ ଚିତ୍ରାଙ୍ଗଦା ଜନନୀ ହେବାର ସୌଭାଗ୍ୟ ଲାଭକଲେ ।

ଅର୍ଜ୍ଜୁନଙ୍କର ଏହି ପୁତ୍ରଙ୍କ ନାମ ବଭ୍ରୁବାହନ ।

ମଣିପୁରରେ କିଛିଦିନ ରହିବା ପରେ ଅର୍ଜ୍ଜୁନ, ପ୍ରିୟସଖା ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବା ପାଇଁ ଦ୍ୱାରକାପୁରକୁ ପ୍ରତ୍ୟାଗମନକଲେ । ରହିଗଲେ ଚିତ୍ରାଙ୍ଗଦା ଓ ପୁତ୍ର ବଭ୍ରୁବାହନ । ଚିତ୍ରବାହନଙ୍କ ପରେ ବଭ୍ରୁବାହନ ମଣିପୁର ରାଜ ସିଂହାସନ ଲାଭକଲେ ।

# ॥ ସୁଭଦ୍ରା ପରିଣୟ ॥

ପ୍ରଭାସ ତୀର୍ଥ ହେଲା ଶ୍ରୀକୃଷ୍ଣଙ୍କର ଶେଷ ଲୀଳା ସ୍ଥଳୀ । ଅର୍ଜ୍ଜୁନ ପ୍ରଥମେ ଆସି ପହଞ୍ଚିଲେ ପ୍ରଭାସତୀର୍ଥରେ । ସେଠାରେ ଶ୍ରୀକୃଷ୍ଣଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ପ୍ରଭାସରୁ କୃଷ୍ଣ ଅର୍ଜ୍ଜୁନ ଦ୍ୱାରକା ପୁରକୁ ଯାଇଥିଲେ । ଅର୍ଜ୍ଜୁନଙ୍କର ସ୍ୱାଗତ ସମ୍ଭାଷଣ ପାଇଁ ଦ୍ୱାରକାପୁର ସୁସଜ୍ଜିତ ହେଲା ।

ନିକଟରେ ରୈବତକ ପର୍ବତ । ନୈସର୍ଗିକ ସୌନ୍ଦର୍ଯ୍ୟ ଭରା ଅତୁଳନୀୟ ବନ ପ୍ରଦେଶ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସେଠାରେ ବାର୍ଷିକ ମହୋତ୍ସବର ବ୍ୟବସ୍ଥା କରାଗଲା । ଦ୍ୱାରକା ଓ ତାର ପୁରପଲ୍ଲୀର ଅଗଣିତ ଲୋକ ଉତ୍ସମୁଖର ରୈବତ୍ ପର୍ବତକୁ ଆସି ଉତ୍ସବରେ ଯୋଗଦେଲେ । ଚତୁର୍ଦ୍ଦିଗରେ ଆନନ୍ଦର କଳରୋଳ । ବଳରାମ ଶ୍ରୀକୃଷ୍ଣ ଉଭୟେ, ଅର୍ଜ୍ଜୁନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେଉଥାନ୍ତି ।

ସେଦିନ ବଳରାମ ଓ ଅର୍ଜ୍ଜୁନଙ୍କ ମଧ୍ୟରେ ବର୍ତ୍ତାଳାପ ଚାଲିଥାଏ । ବଳରାମଙ୍କ ଅନୁରୋଧରେ ଅର୍ଜ୍ଜୁନ ଭାରତର ବିଭିନ୍ନ ତୀର୍ଥ ମାହାତ୍ମ୍ୟ ଓ ପ୍ରାକୃତିକ ପରିବେଶ ବିଷୟରେ କହୁଥାନ୍ତି । ତାଙ୍କର ସଦ୍ୟ ଅନୁଭୂତିର ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ । ବଳରାମଙ୍କ ଇଚ୍ଛା ସେ ଭାରତର କେତେକ ପ୍ରଧାନ ପ୍ରଧାନ ସ୍ଥାନ ପରିଦର୍ଶନ କରିବେ । ଅର୍ଜ୍ଜୁନଙ୍କର ଅନୁଭୂତିରୁ ସେ, ସ୍ଥାନ ମାନଙ୍କ ବିଷୟରେ ସ୍ପଷ୍ଟ ଚିତ୍ର ଲାଭ କରୁଥାନ୍ତି ।

ବାର୍ଷିକ ମହୋତ୍ସବ ଚାଲିଥାଏ ।

ଦିନେ ଶ୍ରୀକୃଷ୍ଣଙ୍କର ଭଉଣୀ ପରମ ରୂପବତୀ ସୁଭଦ୍ରା ସଖୀମାନଙ୍କ ଗହଣରେ ଆସି ପହଞ୍ଚିଲେ ରୈବତକ ପର୍ବତରେ । ସେ ଦେଖାଯାଉଥିଲେ ତାରକା ବନରେ ପୁଷ୍ପିତା ଚନ୍ଦ୍ରମା ପରି । ଅର୍ଜ୍ଜୁନ ଗୈରିକ ବସନ ପରିଧାନ କରି ମୁନି ବେଶରେ ତାଙ୍କର ରୂପମାଧୁରୀ ପାନ କରୁଥିଲେ । ସୁଭଦ୍ରା, ସତେ ଅବା ମର୍ତ୍ତ୍ୟର ମେନକା । ସୌନ୍ଦର୍ଯ୍ୟ ଓ ସାତ୍ତ୍ୱିକତାର ଅପୂର୍ବ ମିଳନ ହୋଇଛି ସୁଭଦ୍ରାଙ୍କ ଠାରେ । ଫୁଲ ବନର ପ୍ରଜାପତିପରି ସେ ଉତ୍ସବ ବିପଣୀରେ ଘୂରିବୁଲୁଥାନ୍ତି । ନିର୍ନିମେଷ ନୟନରେ ଚାହିଁଥାନ୍ତି ଅର୍ଜ୍ଜୁନ । ଶ୍ରୀକୃଷ୍ଣ ଅଲକ୍ଷ୍ୟରେ ଦେଖୁଥାନ୍ତି ପୁଷ୍ପଶରାହତ ଅର୍ଜ୍ଜୁନଙ୍କୁ ।

ହସିହସି ପାଖରେ ଆସି ପହଞ୍ଚିଲେ ଶ୍ରୀକୃଷ୍ଣ । ଗଭୀର କୌତୂହଳ ଏବଂ ଶ୍ରଦ୍ଧାସ୍ନିଗ୍ଧ କଣ୍ଠରେ କହିଲେ,''ତୀର୍ଥବାସୀଙ୍କର ଏ ଅତୀର୍ଥ ଆଚରଣ କାହିଁକି ? ବିଚଳନ ଏବଂ ବେପଥୁର କାରଣ କଣ ? କେଉଁ ଅପୂର୍ବ ଦୃଶ୍ୟ ତାଙ୍କୁ ଏପରି ବିହ୍ୱଳ ଏବଂ ଅନ୍ୟମନସ୍କ କରିଛି ? ମିଛ କହିଲି ?''

''ନା..ନା ସିମିତି କିଛି ନୁହେଁ । ସୌନ୍ଦର୍ଯ୍ୟ ସବୁବେଳେ ମଣିଷକୁ ବିମୁଗ୍ଧ କରେ । ମୋତେ ଏକା କାହିଁକି, କାହାକୁ ବା ମୁଗ୍ଧ ନ କରିବ । ସବୁ ସୌନ୍ଦର୍ଯ୍ୟ ଏବଂ ମାଦକତାକୁ ଠୁଳକରି ପ୍ରକୃତିରାଣୀ ଜୀବନ୍ତରୂପ ଗ୍ରହଣ କରିଛି । ଏ ସାତ୍ତ୍ୱିକ ସୌନ୍ଦର୍ଯ୍ୟ ଯଦି ମୋ ଭିତରେ ବେପଥୁ ସୃଷ୍ଟି କରିଥିବ ତାହେଲେ ମୋର ତୀର୍ଥାଟନ ସଫଳ ହୋଇଛି ବୋଲି ଭାବିବି ।''

''ସଫଳତ ନିଶ୍ଚୟ ହୋଇଛି, ତେବେ ସେଇ ଚେଳୀଚଞ୍ଚଳା ପ୍ରକୃତିରାଣୀଙ୍କ ପୁଣ୍ୟପୁରୀର ଅତିଥିଙ୍କୁ, ମୁଁ ଆନ୍ତରିକ ଶ୍ରଦ୍ଧା, ସମ୍ମାନ, ସମ୍ମତି ଓ ସ୍ୱାଗତ ଜଣାଉଛି ।''

ଅର୍ଜୁନ କଥାର ଶ୍ଳେଷ ବୁଝିପାରି ଟିକିଏ ଲଜ୍ଜିତ ହେଲେ, ହସଭରା ନୟନରେ ଚାହିଁଲେ ସଖାଙ୍କ ମୁହଁକୁ । କୃଷ୍ଣ ହସି ହସି କହିଲେ, ଆଶାକରୁଚି, ପିତାଙ୍କର ସମ୍ମତି ମିଳିବାରେ କିଛି ଅସୁବିଧା ହେବନି । ମୋର ବିଶ୍ୱାସ ସେ ଏହି ମଙ୍ଗଳମୟ ପ୍ରସ୍ତାବଟିକୁ ଆନନ୍ଦରେ ଗ୍ରହଣ କରିବେ । ଲାଜରେ ଲଇଁ ଗଲେ ଅର୍ଜୁନ । ନୟନମୁଦ୍ରାରେ ଉଲ୍ଲସିତ ସମ୍ମତିର ଝଲକ । ଦୂତପଠାଇ ଯୁଧିଷ୍ଠିରଙ୍କ ଠାରୁ ଅନୁମତି ଭିକ୍ଷା କରାଗଲା । ଧର୍ମରାଜ ଯୁଧିଷ୍ଠିର ଏ ପ୍ରସ୍ତାବପ୍ରତି ନିଜର ଆନ୍ତରିକ ଅନୁମୋଦନ ଜଣାଇଲେ । ପରିସ୍ଥିତି କିନ୍ତୁ ଭିନ୍ନମୋଡନେଲା । ଶ୍ରୀକୃଷ୍ଣଙ୍କର ଇଚ୍ଛା, ସୁଭଦ୍ରା ଅର୍ଜୁନଙ୍କୁ ବିବାହ କରନ୍ତୁ କିନ୍ତୁ ବଳରାମଙ୍କ ଇଚ୍ଛା ଥିଲାଭିନ୍ନ । ଜ୍ୟେଷ୍ଠପୁତ୍ରର ଭାବପ୍ରବଣତା, ପିତା ମାତାଙ୍କ ଉପରେ ପ୍ରଭାବ ପକାଇଲା । ପରିସ୍ଥିତି ଯେତେ ସହଜ ବୋଲି ପ୍ରଥମେ ବିଚାର କରାଯାଉଥିଲା ତାହା ବଦଳିଗଲା । ସୁଭଦ୍ରାଙ୍କ ମତାମତ ବୁଝିବା ପାଇଁ ଶ୍ରୀକୃଷ୍ଣ ଚେଷ୍ଟା କଲେ ।

ସୁଭଦ୍ରା ନିଜର ଆନ୍ତରିକ ସମ୍ମତି ପରୋକ୍ଷରେ ଜଣାଇ ଦେଲେ ଶ୍ରୀକୃଷ୍ଣଙ୍କୁ । ଏହାଯଦି ସତ୍ୟରେ ପରିଣତି ହୋଇ ପାରିବ, ତା'ହେଲେ ସେ ନିଜକୁ ପରମ ଭାଗ୍ୟବତୀ ବୋଲି ମନେ କରିବେ ।''

ଅନ୍ତରାଳରେ ଭାଉଜ ରୁକ୍ମିଣୀ ସୁଭଦ୍ରାଙ୍କୁ ଉତ୍ସାହିତ କଲେ । ଗୋଟିଏ ଦିନ ସ୍ଥିର ହେଲା । ସୁଭଦ୍ରା ଦେବ ଦର୍ଶନ ପାଇଁ ସଖୀମାନଙ୍କ ଗହଣରେ ରଥରେ ଚଢ଼ି ମନ୍ଦିରକୁ ଗଲେ । ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଅର୍ଜୁନ, ପ୍ରତିବନ୍ଧକ ଦୂରକରିବା ପାଇଁ ସୁଭଦ୍ରାଙ୍କୁ ଅପହରଣ କରି ନେଇଗଲେ । ରାଜା ଓ କ୍ଷତ୍ରିୟ ମାନଙ୍କ ବିବାହ ପାଇଁ ସେତେବେଳେ ତାହାହିଁ ଥିଲା ଏକ ଶାସ୍ତ୍ରାନୁମୋଦିତ ପନ୍ଥା ।

ଏ ସମ୍ବାଦ ଦ୍ୱାରକା ପୁରରେ ପ୍ରଘଟିତ ହେଇଗଲା । ବଳରାମ ଉଦ୍‌କ୍ଷିପ୍ତ ହୋଇ ଉଠିଲେ ତାଙ୍କୁ ଅନୁଧାବନ କରିବାକୁ ପିତାଙ୍କ ସମ୍ମତିରେ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ । ସେ ଶ୍ରୀକୃଷ୍ଣଙ୍କ ଉପରେ ରୁଷ୍ଟହୋଇ କହିଲେ ''ତମପାଇଁ ତାଙ୍କୁ ଦ୍ୱାରକାରେ ସମ୍ମାନିତ ଅତିଥିରୂପେ ରଖାଗଲା । ସେ କିନ୍ତୁ ଅତିଥିର ଶିଷ୍ଟାଚାର ଭୁଲିଯାଇ ବିଶ୍ୱାସଘାତକତା କଲେ । ସମୁଚିତ ଶାସ୍ତି ତାଙ୍କୁ ଭୋଗ କରିବାକୁ ପଡିବ । ତୁମର ନିରବ ସମର୍ଥନ ନପାଇଥିଲେ ସେ ବୋଧହୁଏ ଏ ପ୍ରକାର ଦୁଃସାହସ ଏବଂ ଦୁଷ୍କର୍ମ କରିପାରି ନଥାନ୍ତେ ।''

ଶ୍ରୀକୃଷ୍ଣ ଶାନ୍ତଭାବରେ ପିତା, ମାତା ଓ ଭାଇଙ୍କୁ ପ୍ରକୃତ ଘଟଣା ବୁଝାଇଲେ । କହିଲେ, ''ସୁଭଦ୍ରା ମନେମନେ ଅର୍ଜୁନଙ୍କୁ ବରଣ କରିଥିଲ ବହୁ ପୂର୍ବରୁ । ଏହି ନାଟକୀୟ ପରିସ୍ଥିତି ମଧ୍ୟରେ ତାହା ରୂପଲାଭ କଲା । ଏଥିରେ ହସ୍ତକ୍ଷେପ କରିବା ଉଚିତ ନୁହେଁ । ବରଂ ସ୍ୱାଗତ ଜଣାଇବା ଉଚିତ । ବାସ୍ତବତାକୁ

ସ୍ୱୀକାର କରିନେଇ କୌଣସି ଅଘଟଣ ନ ଘଟାଇବା ଉଚିତ । ବିଶ୍ୱର ବିରଳ ବୀର ଅର୍ଜ୍ଜୁନ, ସୁଭଦ୍ରାଙ୍କ ପାଇଁ କ'ଣ ଉପଯୁକ୍ତ ପାତ୍ର ନୁହଁନ୍ତି ?

ସମସ୍ତେ ପରିସ୍ଥିତିକୁ ହୃଦୟଙ୍ଗମ କରି ସୈନ୍ୟଚାଳନାରୁ କ୍ଷାନ୍ତ ହେଲେ ।ପାଗବଦଳିଗଲା, ପରଦିନ ରାଜୋଚିତ ଉପଢ଼ୌକନ ଓ ଉପହାର, ଅର୍ଜ୍ଜୁନ ଓ ସୁଭଦ୍ରାଙ୍କ ପାଖକୁ ପଠାଗଲା । ଦ୍ୱାଦଶବର୍ଷ ପୂରିବା ପର୍ଯ୍ୟନ୍ତ ଅର୍ଜ୍ଜୁନ ପୁଷ୍କର ତୀର୍ଥରେ ସୁଭଦ୍ରାଙ୍କ ସହିତ ରହିଲେ । ଯଥା ସମୟରେ ପ୍ରତ୍ୟାବର୍ତ୍ତନ କଲେ ଇନ୍ଦ୍ରପ୍ରସ୍ଥକୁ । କୁନ୍ତୀ ଆଶୀର୍ବାଦ ଦେଲେ ଓ ପାଣ୍ଡବମାନେ ତାଙ୍କୁ ଅଭିନନ୍ଦନ ଜଣାଇଲେ । ଦ୍ରୌପଦୀ ତାଙ୍କୁ ଅଭିନନ୍ଦନ ଜଣାଇ ଆନନ୍ଦରେ ପାଛୋଟି ନେଲେ । କିଛିଦିନ ପରେ ସୁଭଦ୍ରାଙ୍କ ଗର୍ଭରୁ ଏକ ମହାବୀର ସନ୍ତାନ ଜନ୍ମଗ୍ରହଣ କଲା, ତାର ନାମ ଦିଆଗଲା 'ଅଭିମନ୍ୟୁ' ।

ଅଭି ଶବ୍ଦର ଅର୍ଥ ନିର୍ଭୟ ଓ ମନ୍ୟୁ ଶବ୍ଦର ଅର୍ଥ କ୍ରୋଧ ଯୁକ୍ତ । ଅଭିମନ୍ୟୁ ଧନଞ୍ଜୟଙ୍କ ପରି ବୀର ଥିଲେ । ଅର୍ଜ୍ଜୁନ ତାଙ୍କୁ ଧନୁର୍ବିଦ୍ୟାର ଗୂଢ଼ ରହସ୍ୟ ସବୁ ଶିଖାଇଦେଇଥିଲେ ।

## ।। ଖାଣ୍ଡବ ବନରେ ନିଆଁ ।।

ଇନ୍ଦ୍ରପ୍ରସ୍ଥର ନୂତନ ରାଜପୁରୀରେ ସେଦିନ କୃଷ୍ଣ ଓ ଅର୍ଜ୍ଜୁନ ବସି ଆଲୋଚନା କରୁଥାନ୍ତି । ରାଜପୁରୀ ସିନା ନିର୍ମିତହୋଇ ଗଲା, ଦୁର୍ଗମ ଖାଣ୍ଡବ ବନକୁ ସଫାକରି ସେଠାରେ ନଗର ନିର୍ମାଣ କରିବା ସମ୍ଭବ ହୋଇନି । ଅମାପ ଶକ୍ତି ଓ ବିପୁଳ ଅର୍ଥର ଆବଶ୍ୟକତା ରହିଛି । ହଠାତ୍ ଜଣେ ବ୍ରାହ୍ମଣ ଆସି ସେଠାରେ ପହଞ୍ଚିଲେ । କହିଲେ,''ଏଠାରେତ ନର ନାରାୟଣ ଉଭୟେ ଅଛନ୍ତି, ବ୍ରାହ୍ମଣର ମନ କାମନା ନିଶ୍ଚୟ ପୂରଣ ହେବ । ମୁଁ ଅନେକ ଦିନରୁ ଭୋକିଲା ଅଛି । ଦୟାକରି ବିପ୍ରକୁ ଭୂରିଭୋଜନ ଦେଇ ସନ୍ତୁଷ୍ଟ କରନ୍ତୁ ।''

ଅର୍ଜ୍ଜୁନ କହିଲେ, ''ଆପଣ କେଉଁ ପ୍ରକାର ଖାଦ୍ୟରେ ପରିତୃପ୍ତି ଲାଭ କରିବେ କୁହନ୍ତୁ, ନିଜର ପରିଚୟ ମଧ୍ୟ ଦିଅନ୍ତୁ ।''

''ଖାଦ୍ୟ ସମ୍ପର୍କରେ ମୋର ପରିଚୟ ବ୍ରାହ୍ମଣ, ଏହାକଣ ଯଥେଷ୍ଟ ନୁହେଁ । ତେବେ ମୁଁ 'ଅଗ୍ନିଦେବ' । ଏ ଖାଣ୍ଡବ ବନକୁ ଦଗ୍ଧ କରିବାକୁ ମୁଁ ଆସିଛି । ଏ ବନର ରକ୍ଷକ ହେଉଛନ୍ତି ଇନ୍ଦ୍ର । ମୁଁ ଚେଷ୍ଟା କରିମଧ ଏହାକୁ ଗ୍ରାସ କରି ପାରୁ ନଥିଲି, ଏହି ବିପଦ ଶଙ୍କୁଳ ଅସମତଳ ଅରଣ୍ୟକୁ ସମତଳ କରି ଏଠାରେ ନଗର ସ୍ଥାପନ କରିବାକୁ ଆପଣମାନେ ଇଚ୍ଛା କରିଛନ୍ତି । ଏହାହିଁ ମୋତେ ପ୍ରେରଣା ଦେଇଛି । ମୁଁ ଏହାକୁ ଅକ୍ଳେଶରେ ସଫାକରିଦେବି । ଆପଣଙ୍କର ସମ୍ମତି ଓ ସହଯୋଗ ଆବଶ୍ୟକ ।''

ଅର୍ଜ୍ଜୁନ କୃଷ୍ଣଙ୍କ ମୁହଁକୁ ଚାହିଁ ସମ୍ମତିର ସୂଚନାପାଇଲେ । କହିଲେ, ''ହେ ଅଗ୍ନିଦେବତା ! ଆପଣଙ୍କ କଥାରେ ଆମେ ଏକମତ । ଆମର ଲକ୍ଷ୍ୟ ପୂରଣ ଦିଗରେ ଆପଣ ସହାୟକ ହେବେ ଏବଂ ଏହା ଦ୍ୱାରା ଆପଣଙ୍କର ଲକ୍ଷ୍ୟମଧ ପୂରଣ ହୋଇପାରିବ । ଏହା ଏକ ଉତ୍ତମ ପ୍ରସ୍ତାବ । ତେବେ ଇନ୍ଦ୍ରଙ୍କୁ ବାରଣ କରିବାତ ସହଜ କଥା ନୁହେଁ । ଏଥିପାଇଁ ଦୈବୀଶକ୍ତି ସମ୍ପନ୍ନ ଅସ୍ତ୍ର ଆବଶ୍ୟକ । ଆମ ପାଖରେ ସେ ସବୁ ନାହିଁ । କାମରେ ଆଗେଇବା କିପରି ?

ଅଗ୍ନିଦେବତା ବରୁଣଙ୍କ ମାଧମରେ ତାଙ୍କୁ ଗାଣ୍ଡିବଧନୁ ପ୍ରଦାନ କଲେ । ଶ୍ରୀକୃଷ୍ଣଙ୍କୁ ସୁଦର୍ଶନଚକ୍ର ଦେଲେ । ବେଗଶାଳୀ ଅଶ୍ୱଯୁକ୍ତ ରଥ ତାଙ୍କୁ ମିଳିଗଲା । ଅଗ୍ନିଦେବତାଙ୍କୁ ଆହ୍ୱାନ କରି ଖାଣ୍ଡବ ବନରେ ଅଗ୍ନି ସଂଯୋଗ କଲେ ଅର୍ଜୁନ । ଅଗ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ଧୂମଶିଖା ଆକାଶ ଆଚ୍ଛନ୍ନ କଲା । ଏତିକିବେଳେ ଆକାଶ ହେଲା ମେଘାଚ୍ଛନ୍ନ । ବଜ୍ର, ବିଦ୍ୟୁତ ଓ ବାଦଲ ଶବ୍ଦରେ ଆକାଶ ମଣ୍ଡଳ ପ୍ରକମ୍ପିତ ହେଲା । ବର୍ଷା ନିଆଁକୁ ଲିଭାଇ ପାରିଲା ନାହିଁ ।

ମନ୍ଦପାଳ ନାମରେ ଜଣେ ଋଷି ପୂର୍ବଜନ୍ମରେ ସେହି ଖାଣ୍ଡବ ବନରେ ରହି ତପସ୍ୟା କରୁଥିଲେ । ସେ ଦେହ ତ୍ୟାଗ କଲାପରେ ସ୍ୱର୍ଗପୁରକୁ ଗଲେ । ସ୍ୱର୍ଗର ଦ୍ୱାରରକ୍ଷକ ତାଙ୍କୁ ଭିତରକୁ ଛାଡିଲାନାହିଁ । କହିଲା, ''ହେ ଋଷି ! ତୁମେ ଅପୁତ୍ରିକ ହୋଇଥିବାରୁ ସ୍ୱର୍ଗ ପୁରରେ ତୁମର ସ୍ଥାନ ନାହିଁ ।

ମନ୍ଦପାଳ ଫେରି ଆସିଲେ ମର୍ତ୍ତ୍ୟ ପୁରକୁ । ଏକ ପକ୍ଷୀ ବେଶ ଧାରଣ କରି 'ଜରିତା' ନାମକ ଏକ ପକ୍ଷିଣୀଙ୍କୁ ବିବାହ କଲେ । ଜରିତା ଚାରିଟି ଅଣ୍ଡା ଦେଲେ । ନିର୍ଦ୍ଦିଷ୍ଟ ସମୟରେ ତା ଭିତରୁ ଶିଶୁ ଶାବକମାନେ ବାହାରି ଆସିଲେ । ମନ୍ଦପାଳ ଜରିତାଙ୍କ ପାଖରେ ଶିଶୁ ସନ୍ତାନ ମାନଙ୍କୁ ଛାଡିଦେଇ ଆଉ ଏକ ବନସ୍ତକୁ ଉଡିଗଲେ । 'ଲପିତା' ନାମକ ଆଉ ଏକ ପକ୍ଷିଣୀ ସହିତ ସେ ସେଠାରେ ରହିଲେ ।

ଜରିତା ପିଲାଙ୍କୁ ନେଇ ଖାଣ୍ଡବ ବନରେ ଥାଏ । ଦେଖିଲା ନିଆଁ ମାଡିଆସୁଛି ଜିଭ ଲହଲହ କରି । ଅଳ୍ପ ସମୟ ମଧରେ ସମସ୍ତେ ଧ୍ୱଂସ ହୋଇଯିବେ । ବିକଳ ହୋଇ ତା ପିଲାମାନଙ୍କୁ କହିଲା, ''ତମ ମାନଙ୍କର ବାପା ଆମକୁ ଛାଡି ଚାଲି ଯାଇଛନ୍ତି । ମୁଁ ତମ ମାନଙ୍କୁ ନେଇ ଏ ବଣରେ ଏକା ପଡ଼ିଛି । ତମମାନଙ୍କୁ ଟେକିନେଇ ଉଡିଯିବାକୁ ମୋ ଡେଣାରେ ଶକ୍ତି ନାହିଁ । କଣ କରିବି କିଛି ଭାବି ପାରୁନି ।''

ପିଲାଏ କହିଲେ, ''ମା ! ତମେ ବ୍ୟସ୍ତ ହୁଅନି । ଏଠାରେ ସମସ୍ତେ କାହିଁକି ମରିବା ? ତମେ ଉଡି ପଳାଇଯାଅ । ଅନ୍ତତଃ ତମ ଜୀବନ ରକ୍ଷା ହୋଇଯିବ । ତମେ ବଞ୍ଚିଗଲେ, ତୁମେ ପିଲା ପାଇବ । ଆମଲାଗି ଏତେ ବ୍ୟସ୍ତ ହୁଅନି ।''

ଜରିତା ଗଡି ଆସୁଥିବା ଆଖିଲୁହକୁ ପୋଛି ଦେଇ କହିଲା, ''ମୁଁ ମଲେ ମରିବି ପଛକେ ତମମାନଙ୍କୁ ଛାଡି ଯାଇ ପାରିବିନି । ତମେ ମାନେହିଁ ମୋର ଜୀବନ । ମୋ କଥା ମାନ, ସେଇ ଗଛ ପାଖରେ ଥିବା ମୂଷାଗାତକୁ ଚାଲିଯିବା । ତା' ଭିତରେ ଥିବା । ନିଆଁ ଲିଭିବାପରେ ବାହାରିବା । ଆସ ଯିବା ।'' ପିଲାଏ କହିଲେ, ''ନା....ନା ତାଭିତରେ ମୂଷା ଅଛି, ସେ ଆମକୁ ଖାଇଯିବ ।''

''ମୁଁ ଦେଖିଛି, ସେ ମୂଷାକୁ ଚିଲ ନେଇଯାଇଛି ।''

ପିଲାଏ କହିଲେ, ''ଗୋଟାଏ ମୂଷାସିନା ମରିଛି, ତା'ଭିତରେ ଅନେକ ମୂଷା ଅଛନ୍ତି । ଯାହାହେଲେ ବି ରକ୍ଷା ନାହିଁ, ସେଠାକୁ ଯିବା କାହିଁକି ?''

ପକ୍ଷୀ ବେଶଧାରୀ ମନ୍ଦପାଳ ଋଷି 'ଲପିତା' ପାଖରେ ବସିଥିଲେ । ଖାଣ୍ଡବ ବନରେ ଅଗ୍ନିର ଲେଲିହାନ ଶିଖା ଦେଖି କହିଲେ, ''ଲପିତା ! ତମେ ଥାଅ, ମୁଁ ଯାଉଚି । ମୋ ପିଲାମାନେ ପ୍ରାଣରକ୍ଷା ପାଇଁ ଅସ୍ଥିର ହେଉଥିବେ । ଜରିତା ବା ସେମାନଙ୍କୁ କି ସାହାଯ୍ୟ କରିପାରିବ ।''

ଲପିତା ରାଗରେ ପାଚିଯାଇ କହିଲା, ''ତମ ସ୍ୱର୍ଗ ସେଇ 'ଜରିତା' ପାଖରେ ଅଛି । ସେ ତମକୁ ମୁକ୍ତି ଦେବ । ଲପିତା ପାଖରେ ଆଉକି କାମ ଅଛି ! କାମ ସରିଗଲେ କିଏ କାହାର !''

ମନ୍ଦପାଳ କହିଲେ, ''ଏଇଟା ଅଭିମାନର ବେଳନୁହେଁ । ଜୀବନ ମରଣ ସମସ୍ୟା। ମୁଁ ଯାଉଛି । ବ୍ୟସ୍ତ ହୁଅନି ।''

ସେ ଆସି ଆଖିପିଛୁଳାକେ ପହଞ୍ଚିଲେ ଜରିତା ପାଖରେ । ପିଲାଗୁଡିକ କୁଳୁକୁଳୁ ହୋଇ ବାହାରି ଆସିଲେ । ଚାହିଁରହିଲେ ତାଙ୍କ ମୁହଁକୁ । ସେ ସେମାନଙ୍କୁ କୋଳକୁ ନେଇଗଲେ । ପିଲାଏ ଅପରିଚିତର ଆତ୍ମୀୟତା ପାଇ ଆଶ୍ୱସ୍ତ ହେଲେ । ଜରିତା ଗମ୍ଭୀର ହୋଇ ସବୁ ଦେଖୁଥାଏ । କିଛି କହିଲାନି କିନ୍ତୁ ବାମ୍ଫଉତୁରା ହାଣ୍ଡିପରି ଚହଲି ଉଠୁଥାଏ ତା' ଭିତରଟା ।

''ତୁମେ ବ୍ୟସ୍ତ ହୁଅନି 'ଜରିତା' ମୁଁ ଦୂରରୁ ଅଗ୍ନିଶିଖାକୁ ଦେଖି ଚାଲିଆସିଲି ।ପୂର୍ବେ ଅଗ୍ନିଦେବତାଙ୍କଠାରୁ ମୁଁ ବର ପାଇଛି । ଅଗ୍ନିରେ ଆମେ ଦଗ୍ଧ ହେବାନାହିଁ । ମୋ ପିଲାଙ୍କର କିଛି ହେବନି ।''

ପିଲାମାନେ ନିଜ ପିତାଙ୍କର ପରିଚୟ ପାଇ କଳରୋଳରେ ମାତିଉଠିଲେ । ଜରିତା ଆଖିରୁ ଧାରଧାର ଲୁହ ବହିଗଲା । କଇଁ କଇଁ ହୋଇ କହିଲା ''ଏତେଦିନେକେ ଆମେ ମନେ ପଡିଲୁ । ଯାହାକୁ ପାସୋରାଯାଏ ସେ ମୃତ ସହିତ ସମାନ । ଲପିତାର ଇନ୍ଦ୍ରପୁରୀ ଛାଡି ଜରିତାର ଯମପୁରୀକୁ ଆସିଲ କାହିଁକି ?'' ମନ୍ଦପାଳ ନିଜର ଚଞ୍ଚୁକୁ ଜରିତାର ଚଞ୍ଚୁ ସହିତ ମିଶାଇଦେଇ କହିଲେ, ''ଯମକୁ ଦୂରେଇ ଦେବାପାଇଁ ଆସିଛି । ଦୂରରେ ରହିଲେ, ମଣିଷର ସ୍ନେହ ଅଧିକାରଟା ଦୂରେଇ ଯାଏନା ।''

—————— ଛଅ

# ।। ଜରାସନ୍ଧ ।।

ବୃହଦ୍ରଥ ଥିଲେ ମଗଧର ରାଜା ।

ସେତେବେଳେ ସେ ବୀରଭାବରେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ । କାଶୀ ରାଜାଙ୍କର ଯାଆଁଳା ଝିଅଙ୍କୁ ସେ ବିବାହ କରିଥିଲେ । ଉଭୟଙ୍କ ପ୍ରତି ତାଙ୍କର ମମତା ଥିଲା ଅମାପ । ସେ ଉଭୟ ରାଣୀଙ୍କୁ ସମାନ ଦୃଷ୍ଟିରେ ଦେଖିବେ ଏବଂ ଜୀବନର ସବୁ କ୍ଷେତ୍ରରେ ସମାନତାହିଁ ହେବ ସେମାନଙ୍କର ପ୍ରାପ୍ୟ, ଏହାହିଁ ଥିଲା ତାଙ୍କର ବୈବାହିକ ଶପଥ ।

ଅନେକ ଦିନ ବିତିଗଲେ ମଧ୍ୟ ସେ ସନ୍ତାନ ଲାଭ କରି ପାରିଲେ ନାହିଁ । ରାଜ୍ୟଭାର ମନ୍ତ୍ରୀମାନଙ୍କ ହସ୍ତରେ ଅର୍ପଣ କରି ରାଜା ଦୁଇପତ୍ନୀଙ୍କୁ ନେଇ ତପସ୍ୟା ପାଇଁ ବଣକୁ ଚାଲିଗଲେ । ଅନେକ ଦିନ ତପଶ୍ଚାରଣ ପରେ କୌଶିକ ଋଷିଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେ ତାଙ୍କର ପଦ ବନ୍ଦନା କରି ଆଶୀର୍ବାଦ ଭିକ୍ଷା କଲେ । କହିଲେ, ''ହେ ମୁନି ଶ୍ରେଷ୍ଠ ! ମୋ ଜୀବନର ସବୁଠାରୁ ବଡ଼ ଦୁଃଖ ହେଉଛି, ମୁଁ ନିଃସନ୍ତାନ । ସନ୍ତାନକାମନା କରି ରାଣୀମାନଙ୍କ ସହିତ ମୁଁ ବନଚର୍ଯ୍ୟା ପାଳନ କରୁଛି । ଆପଣ ମୋତେ ସନ୍ତାନ ଲାଭପାଇଁ ଆଶୀର୍ବାଦ ଦିଅନ୍ତୁ ।''

ମୁନି ରାଜାଙ୍କ ସମର୍ପଣ ଭାବରେ ସନ୍ତୋଷ ପ୍ରକାଶ କଲେ । ଠିକ୍ ଏତିକିବେଳେ ଗଛରୁ ଆମ୍ବଟିଏ ତାଙ୍କ ହାତକୁ ଖସି ପଡ଼ିଲା ।ସେ ସେହି ଆମ୍ବଟିକୁ ଅଭିମନ୍ତ୍ରିତ କରି ରାଜାଙ୍କ ହାତକୁ ବଢ଼ାଇ ଦେଲେ । କହିଲେ, ଏ ଫଳଟିକୁ ନେଇ ରାଣୀମାନଙ୍କୁ ଦିଅ । ଏହାହିଁ ଫଳ ଲାଭ ଦିଗରେ ସାହାଯ୍ୟ କରିବ ।''

ରାଜା ଫଳଟିକୁ ନେଇ ସମାନ ଦୁଇ ଭାଗକରି ଦୁଇରାଣୀଙ୍କୁ ଖାଇବାକୁ ଦେଲେ । ଏହାପରେ ସେମାନଙ୍କ ମଧ୍ୟରେ ଗର୍ଭୋଦୟ ହେଲା । ରାଜାଙ୍କର ଆନନ୍ଦ କହିଲେ ନସରେ । ମୁନିଙ୍କର ଆଶୀର୍ବାଦ ଫଳବତୀ ହୋଇଛି । ସେ ସନ୍ତାନ ଲାଭକରିବେ ।

ଯଥା ସମୟରେ ରାଣୀମାନେ ପ୍ରସବ ଯନ୍ତ୍ରଣା ଅନୁଭବ କଲେ ।

ଏଁ.... ଏକଣ ?

ସମସ୍ତଙ୍କର ଆନନ୍ଦ ନୈରାଶ୍ୟରେ ପରିଣତ ହେଲା । ରାଜା ବିସ୍ମିତ ହୋଇ ଚାହିଁରହିଲେ । ରାଣୀମାନେ ଭୟରେ ଚିତ୍କାର କରି ମୂର୍ଚ୍ଛିତ ହେଲେ । ଗୋଟିଏ ଶିଶୁର ଅର୍ଦ୍ଧାଂଶ ପ୍ରତ୍ୟେକେ ଜନ୍ମ ଦେଇଛନ୍ତି । ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଅର୍ଦ୍ଧଭାଗ । ଗୋଟିଏ ଆଖି, ଗୋଟିଏ କାନ, ଗୋଟିଏ ହାତ, ଗୋଟିଏ ଗୋଡ଼ । ରାଣୀମାନଙ୍କର ବିକଳ ବିଳାପରେ ରାଜପୁରୀ ବିଳପି ଉଠିଲା । ରାଜା ଆଦେଶଦେଲେ ଉଭୟ ଅଂଶକୁ କନାରେ ଗୁଡ଼ାଇ ବାହାରେ ନେଇ ଫେପାଡ଼ି ଦିଆଗଲା ।

ରାତି ଅଧ । ଗୋଟିଏ ରାକ୍ଷସୀ ବୁଲୁ ବୁଲୁ ଏହାକୁ ପାଇ ଭାରି ଖୁସି ହୋଇଗଲା । କୌତୂହଳ ହୋଇ ଦୁଇ ଅଂଶକୁ ଏକାଠି ଯୋଡ଼ିଦେଲା । ଆଶ୍ଚର୍ଯ୍ୟ କଥା, ଗୋଟିଏ ସୁନ୍ଦର କୁଲୁକୁଲିଆ ଛୁଆ ହସି ଉଠିଲା ରାକ୍ଷସୀର ମୁହଁକୁ ଚାହିଁ । ଖାଇବାପାଇଁ ସେ ତାକୁ ମାରି ପାରିଲାନାହିଁ । ନିଜେ ଏକ ସ୍ତ୍ରୀ ରୂପ

ଧାରଣ କରି ପିଲାଟିକୁ ନେଇ ରାଜାଙ୍କୁ ଦେଲା । ବୃହଦ୍ରଥ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ଦୁଇରାଣୀଙ୍କ ଆନନ୍ଦ କହିଲେ ନସରେ । ଗଲାବେଳେ, ଛଦ୍ମରୂପ ଧାରିଣୀ ରାକ୍ଷସୀ 'ଜରା' ନିଜର ପରିଚୟ ଦେଇ ରାଜାଙ୍କୁ କହିଲା, ''ହେ ରାଜନ! ଏ ଶିଶୁଟି ଭବିଷ୍ୟତରେ ଜଣେ ଦୁର୍ଦ୍ଧର୍ଷ ବୀର ହେବ ଓ ତାର ଶତ୍ରୁମାନଙ୍କୁ ସେ ବିନାଶ କରିବ । ତୁମେ ଅତ୍ୟନ୍ତ ଭାଗ୍ୟବାନ୍ ।'' ରାଜା, 'ଜରାର ' ସ୍ମୃତିରକ୍ଷା ପାଇଁ ପିଲାଟିର ନାଁ ଦେଲେ 'ଜରାସନ୍ଧ' ।

ବୃହଦ୍ରଥ କୃତଜ୍ଞତାରେ ଭରି ଉଠିଲେ । ତାଙ୍କ ସ୍ୱପ୍ନ ସାର୍ଥକ ହୋଇଛି । ବୟଃ ବୃଦ୍ଧି ସହିତ ଜରାସନ୍ଧ ଶକ୍ତି ଏବଂ ସାମର୍ଥ୍ୟରେ ହେଲେ ଅପ୍ରତିଦ୍ୱନ୍ଦ୍ୱୀ । ତଥାପି ତାଙ୍କ ଭିତରେ ଦେହର ସନ୍ଧି ସ୍ଥଳରେ ଦୁର୍ବଳତା ରହିଗଲା । ଅତ୍ୟଧିକ ଶକ୍ତି ପ୍ରୟୋଗ କରାଗଲେ ସେ ପୁଣି ଦୁଇଭାଗ ହୋଇଯିବାର ପ୍ରବଣତା ଦୂର ହେଲାନାହିଁ ।

ଜରାସନ୍ଧର ଏହି ଶରୀର ସନ୍ଧି ମହାଭାରତର ଏକ ମହାସତ୍ୟର ପ୍ରତୀକ । ଦୁଇଟି ବିଚ୍ଛିନ୍ନ ଅଂଶକୁ ଏକତ୍ର ସଂଯୋଗ କଲେ ପୁଣି ତାହା ଶକ୍ତି ପ୍ରୟୋଗରେ ବିଭାଜିତ ହୋଇଯାଏ । ଏହି ପ୍ରକ୍ରିୟାର ପ୍ରଭାବ ମଣିଷ ଜୀବନରେ ପ୍ରତିଫଳିତ ହୋଇ ଥାଏ । ମିଳନରେ ସର୍ବଦା ସନ୍ଧିଯୁକ୍ତ ଦୁର୍ବଳତା ଥାଏ, ଅଧିକ ଚାପ ପାଇଲେ ପୁଣି ବିଚ୍ଛିନ୍ନ ହୋଇଯାଇ ପାରେ । ରାଜନୀତିରେ ମଧ୍ୟ ଠିକ୍ ଏଇକଥା ।

ରାଜା ଭାବରେ ଜରାସନ୍ଧ ଥିଲେ ଏକ ଅଜେୟ ଶକ୍ତି । ଶ୍ରୀକୃଷ୍ଣ ମଧ୍ୟ ତାଙ୍କ ଦ୍ୱାରା ପରାଭୂତ ହୋଇଥିଲେ । ତାଙ୍କ ଦୌରାତ୍ମ୍ୟ ଯୋଗୁଁ ସେ ମଥୁରାରୁ ଦ୍ୱାରକାକୁ ନିଜ ରାଜଧାନୀ ପରିବର୍ତ୍ତନ କରିଥିଲେ ।

ରାଜସୂୟ ଯଜ୍ଞ କରିବା ପାଇଁ ଯୁଧିଷ୍ଠିରଙ୍କୁ ତାଙ୍କର ଭାଇ ଓ ଅନ୍ୟମାନେ ପ୍ରବର୍ତ୍ତାଇଲେ, ସେ ଏଥିରେ ସମ୍ମତି ପ୍ରଦାନ କଲେ ନାହିଁ । ତାଙ୍କର ଯୁକ୍ତି ଥିଲା, ଜରାସନ୍ଧ ପରି ଦୁର୍ଜୟ ବୀରମାନଙ୍କୁ କରାଗତ କରିବା ଦୁଃସାଧ୍ୟ । ''ସେ ମଧ୍ୟ ରାଜ ଚକ୍ରବର୍ତ୍ତୀ ଉପାଧି ପାଇଁ ଲାଳାୟିତ ନଥିଲେ । ଜାଣିଥିଲେ, ବଡ଼ିମାର ମର୍ଯ୍ୟାଦାପାଇଁ ବହୁ ମୂଲ୍ୟ ଦେବାକୁ ପଡ଼େ । ଏହା ରାଜାହଂକାର ଚରିତାର୍ଥ କରିବା ବ୍ୟତୀତ, ଆଉ କିଛି ଲାଭ ହେବ ନାହିଁ ।

ଭାଇମାନେ ପ୍ରତିବାଦର ସ୍ୱର ଉଠାଇଥିଲେ । ଭୀମ କହିଲେ, ''ଭାଇ ! ନିଜ ଶକ୍ତି ଉପରେ ଆସ୍ଥା ରଖିବା ଉଚିତ । ଜରାସନ୍ଧ ପାଇଁ ଯଦି ପାଣ୍ଡବମାନେ ଆତଙ୍କିତ, ତେବେ ରାଜପଣ କରିବେ କିପରି !''

ଅର୍ଜୁନ କହିଲେ, ''ଧର୍ମରାଜ ଯୁଧିଷ୍ଠିରଙ୍କର, ଦୁରାଚାରୀ ଜରାସନ୍ଧ ପ୍ରତି ଭୟ ରହିଲେ, ଧର୍ମରାଜ୍ୟ ପ୍ରତିଷ୍ଠିତ ହୋଇ ପାରିବ ନାହିଁ । ରାଜସୂୟ ଯଜ୍ଞ ହିଁ ହେବ ତା' ପ୍ରତି ଏକ ଆହ୍ୱାନ । ଆପଣ ଅନୁମତି ଦିଅନ୍ତୁ । ଆମେ ଏପ୍ରଶ୍ନକୁ ଆହ୍ୱାନ ରୂପେ ଗ୍ରହଣ କରିବୁ ।''

ଠିକ୍ ଅଛି, ତୁମେ ସମସ୍ତେ ଯଦି ଚାହୁଁଚ, ତା'ହେଲେ ମୋର ଆପତ୍ତି କରିବାର କିଛି ନାହିଁ । ତେବେ ସିଦ୍ଧାନ୍ତ ନେବା ପୂର୍ବରୁ ସଖା ଶ୍ରୀକୃଷ୍ଣଙ୍କର ମତାମତ ନେବା ଉଚିତ । ସେ ଯଦି ବାରଣ କରିବେ ତେବେ ଅକୁଣ୍ଠଚିତ୍ତରେ ଆମେ ତାହା ଗ୍ରହଣ କରିନେବା ଆବଶ୍ୟକ ।''

ସମସ୍ତେ ଏ ପ୍ରସ୍ତାବରେ ଏକମତ ହେଲେ ।

ଶ୍ରୀକୃଷ୍ଣ ଠିକ୍ ଏତିକିବେଳେ ଆକସ୍ମିକ ଭାବରେ ଆସିପହଞ୍ଚିଲେ । ଘଡ଼ିସନ୍ଧି ମୁହୂର୍ତ୍ତରେ ତାଙ୍କର ଉପସ୍ଥିତି ସମସ୍ତଙ୍କୁ ଆନନ୍ଦ ଦେଲା । ସେ ସମସ୍ତ ଘଟଣା ଶୁଣି କହିଲେ, ''ହେ ଧର୍ମରାଜ ! ମୁଁ ଭୀମ ଆଉ

ଅର୍ଜୁନଙ୍କର ଯୁକ୍ତିକୁ ଅନ୍ତରରୁ ସହିତ ସମର୍ଥନ କରୁଛି । ମଣିଷତ ମରଣଶୀଳ । ଦିନେ ନା ଦିନେ ସମସ୍ତେ ମରିବେ । ବୀରଗତି କ୍ଷତ୍ରିୟର ଧର୍ମ, ସେ ଧର୍ମ ପାଳନ କରି ନମରିବ କାହିଁକି । ମୋ ମତରେ ରାଜସୂୟ ଯଜ୍ଞ ପାଇଁ ଏହା ଉପଯୁକ୍ତ ସମୟ । କୌରବମାନେ ଦ୍ରୌପଦୀଙ୍କ ସ୍ୱୟଂବର ସଭାରେ ଯେଉଁ ଧକ୍କା ଖାଇଛନ୍ତି, ସେ କ୍ଷତ ଏପର୍ଯ୍ୟନ୍ତ ଲିଭିନାହିଁ । ବାରଣାବତରେ ସେମାନେ ଯେଉଁ ଜଘନ୍ୟ କାର୍ଯ୍ୟକଲେ ସେଥିପାଇଁ ଲୋକମାନଙ୍କ ମନରେ ଘୃଣାଭାବ ଓ ଅସନ୍ତୋଷ ନିଆଁ ଏପର୍ଯ୍ୟନ୍ତ ଜୁହୁଳୁଚି । ରାଜା ଧୃତରାଷ୍ଟ୍ରଙ୍କର ଆପଣଙ୍କ ପ୍ରତି ଯେଉଁ ଅତୁଟ ସ୍ନେହ ଅଛି ତାହା ଖୋଲାଖୋଲି ଭାବରେ ବିରୋଧରେ ବୋଧହୁଏ ପରିଣତ ହେବନାହିଁ । ଜରାସନ୍ଧ ବାଧା ସୃଷ୍ଟି କରିପାରେ । ସେ ବହୁରାଜାଙ୍କୁ ତାଠ ବନ୍ଦିଶାଳାରେ ବନ୍ଦିକରି ରଖିଛି । ଅନୁମାନ କରାଯାଉଛି, ସେ ପୂର୍ବପରି ପ୍ରତିଦିନ ଜଣକୁ ନେଇ ତାର ଆରାଧ୍ୟ ଦେବୀ ଭୈରବୀଙ୍କ ପାଖରେ ବଳିଦେବ । ଆମର ଏହି ରାଜସୂୟ ଯଜ୍ଞକୁ ବିଫଳ କରିବାପାଇଁ ସମସ୍ତ ଶକ୍ତି ଖଟାଇ ସେ ନିଶ୍ଚୟ ଛିଡ଼ା ହେବ । ତାହାହିଁ ହେବ ତାର ପତନର କାରଣ । ବନ୍ଦିଶାଳାରେ ମୃତ୍ୟୁକୁ ଅପେକ୍ଷାକରି ରହିଥିବା ନିରପରାଧ ରାଜାମାନେ ରକ୍ଷା ପାଇଯିବେ । ଏହାହିଁ ହେବ ରାଜସୂୟ ଯଜ୍ଞର ଚରମ ସଫଳତା । ଅଧର୍ମର ମୃତ୍ୟୁ ହେବ । ଧର୍ମର ଜୟ ହେବ ।''

ଯୁଧିଷ୍ଠିର କହିଲେ, ''ହେ ସଖା, ହେ ପ୍ରଭୁ ! ଆପଣଙ୍କର ପରାମର୍ଶ ମୋତେ ଯଥେଷ୍ଟ ମାନସିକ ଶକ୍ତି ଦେଇଛି । ମୋର ଭ୍ରମଧାରଣା ଦୂର ହୋଇଛି । ତେବେ ସ୍ୱୟଂ ନାରାୟଣ ଯାହାର ଶକ୍ତିକୁ ଅଜେୟ ବୋଲି ସ୍ୱୀକାର କରିଛନ୍ତି, ତାକୁ ପ୍ରତିରୋଧ କରିବାର ସାମର୍ଥ୍ୟ ଆମର ଅଛି ତ ?''

''ନିଶ୍ଚୟ ଅଛି । ଅସ୍ତ୍ରଶକ୍ତି ବଳରେ ସର୍ବଦା ବିଜୟ ହାସଲ କରାଯାଇ ପାରେ ନାହିଁ । ରଣନୀତିର ଅନ୍ୟ ଏକ ବଳିଷ୍ଠ ଦିଗ ହେଉଛି, ସମୟ ଉପଯୋଗୀ କୌଶଳ ପ୍ରୟୋଗ । ଶତ୍ରୁର ଦୁର୍ବଳତାକୁ ଲକ୍ଷ୍ୟକରି କୌଶଳ ପ୍ରୟୋଗ କଲେ,ଯେ କୌଣସି ଶକ୍ତିକୁ ଜୟ କରାଯାଇ ପାରିବ । ଜରାସନ୍ଧର ଦୁଇ ସେନାପତି ହଂସ ଓ ଡିବକ ମୃତ୍ୟୁବରଣ କରିବାପରେ, ତାର ପକ୍ଷଚ୍ଛେଦ ହୋଇ ଯାଇଛି । ସାମାନ୍ୟ କୌଶଳ ପ୍ରୟୋଗକଲେ ତାକୁ ସଂହାର କରାଯାଇ ପାରିବ । ଜରାସନ୍ଧର ଶାରୀରିକ ଗଠନ ଜନିତ ଦୁର୍ବଳତା ହେବ ତାର ମୃତ୍ୟୁର କାରଣ । ଆମେ କୌଶଳ କରି ମୁଷ୍ଟି ଯୁଦ୍ଧର ଆଶ୍ରୟ ନେଲେ ସଫଳତା ହାସଲ କରିପାରିବା ।''

ସେ ଦିନ ଜରାସନ୍ଧଙ୍କ ରାଜପୁରୀରେ ଉତ୍ସବ, ହୋମ, ଯଜ୍ଞ ଚାଲିଥାଏ । ଭୀମ, ଅର୍ଜୁନ ଓ ଶ୍ରୀକୃଷ୍ଣ ବ୍ରାହ୍ମଣବେଶରେ ଯାଇ ପହଞ୍ଚିଲେ ତାଙ୍କ ଉଆସରେ । ରାଜା, ଅତିଥି ଓ ବ୍ରାହ୍ମଣମାନଙ୍କୁ ଭକ୍ତିର ସହିତ ଅଭିବାଦନ ଜଣାଇଲେ । ଭୀମ ଅର୍ଜୁନ ସମ୍ଭାଷଣର ପ୍ରତ୍ୟୁତ୍ତର ନ ଦେଇ ନିରବ ରହିଲେ । ଜରାସନ୍ଧଙ୍କ ମନରେ ସନ୍ଦେହ ସୃଷ୍ଟି ହେଲା । ଶ୍ରୀକୃଷ୍ଣ ତାଙ୍କ ମନୋଭାବ ଜାଣିପାରି କହିଲେ, ''ସେ ଦୁହେଁ ମୌନବ୍ରତ ପାଳନ କରୁଛନ୍ତି । ଆଜି ରାତ୍ରି ଅଧରେ ତାଙ୍କର ବ୍ରତ ଉଦ୍‌ଯାପିତ ହେବ । ତା'ପରେ ଆପଣଙ୍କ ସହିତ କଥା ବାର୍ତ୍ତା କରିବାରେ ଅସୁବିଧା କିଛି ରହିବନାହିଁ ।''

ଠିକ୍ ରାତ୍ରର ମଧ୍ୟ ଭାଗରେ ଜରାସନ୍ଧ ସେମାନଙ୍କୁ ଡକାଇଲେ । ସେମାନେ ଉପସ୍ଥିତ ହେଲେ । ରାଜା କହିଲେ, ''ହେ ବପୁମାନ୍ ଯୁବକଗଣ ! ତୁମର ବଳିଷ୍ଠ ଚେହେରା ଓ ଚଳଣିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ତୁମେମାନେ ବ୍ରାହ୍ମଣ ନୁହଁ । ଠିକ୍ କରି କୁହ ତୁମେ ସବୁ କିଏ ? ମୋର ବନ୍ଧୁ ନା ଶତ୍ରୁ ।''

ଶ୍ରୀକୃଷ୍ଣ କହିଲେ, ''ଆମପ୍ରତି ଆପଣଙ୍କର ଆଭିମୁଖ୍ୟ ଉପରେ, ଏହା ନିର୍ଭର କରୁଛି । ଆମର ପ୍ରକୃତ ପରିଚୟ ମୁଁ ଦେଉଛି । ମୁଁ ହେଉଛି ଶ୍ରୀକୃଷ୍ଣ । ସେ ଦୁହେଁ ହେଉଛନ୍ତି ଭୀମ ଆଉ ଅର୍ଜୁନ । ଆମ ତିନିଜଣଙ୍କ ମଧ୍ୟରୁ ଆପଣ ଜଣକୁ ବାଛନ୍ତୁ, ଯେକି ଆପଣଙ୍କ ସହିତ ମୁଷ୍ଟି ଯୁଦ୍ଧ କରିବ ।''

ହା...ହା.... ହା.... ।' ହସି ଉଠିଲେ ଜରାସନ୍ଧ । କ୍ରୋଧ ଏବଂ ବିଦ୍ରୂପର ହସ । ତୁମେ ଗୁଡ଼ାକ ଏଡ଼େ ଭୀରୁ, କାପୁରୁଷ । ଚୋରଙ୍କ ପରି ଲୁଚି ଛପି ଛଦ୍ମ ବେଶରେ ମୋ ରାଜପୁରୀରେ ପ୍ରବେଶ କରିଛ । ହଁ ହଁ ମୁଁ ତମକୁ ଉପଯୁକ୍ତ ଶିକ୍ଷା ନ ଦେଇ ଛାଡ଼ିବି ନାହିଁ । କୃଷ୍ଣ, ତମେ ତ ଗୋଟାଏ ଛାର ଗୋପାଳ, ଅର୍ଜୁନତ ଗୋଟାଏ ମେଞ୍ଚଡ଼ ଟୋକା, ତମ ଦିହିଁଙ୍କ ସାଥିରେ ଯୁଦ୍ଧ କରିବାର ପ୍ରଶ୍ନ ଉଠୁନାହିଁ । ଯଦି କହୁଛ, ସେ ଭୀମଟା ସାଥିରେ ମୁଁ ଲଢ଼ିବି । ମୁଷ୍ଟିଯୁଦ୍ଧ ଚାହୁଁଛତ.... ଆସ ।''

ଯୁଦ୍ଧ ଚାଲିଲା, ମୁଷ୍ଟିଯୁଦ୍ଧ । ଭୟଙ୍କର ଏ ଯୁଦ୍ଧ । ସତେଯେପରି ଦୁଇଟା ମଦମତ୍ତ ହସ୍ତୀ ଲଢ଼େଇରେ ମାତିଛନ୍ତି । କେହି କାହାକୁ ଊଣା ନୁହଁନ୍ତି । କୃଷ୍ଣ ଅର୍ଜୁନ ଆଶା ଆଶଙ୍କା ମଧ୍ୟରେ ଦୋଳାୟମାନ । ଦିନରାତି ଅବିଶ୍ରାନ୍ତ ଯୁଦ୍ଧ ଚାଲିଛି । ଦିନେ ନୁହେଁ କି ଦୁଇଦିନ ନୁହେଁ, ଦୀର୍ଘ ତେରଦିନ ପର୍ଯ୍ୟନ୍ତ ଭୟଙ୍କର ଯୁଦ୍ଧ ଚାଲିଲା । ତା'ପରେ ଜରାସନ୍ଧଙ୍କ ଭିତରେ କ୍ଲାନ୍ତିର ଚିହ୍ନ ଫୁଟି ଉଠିଲା । ସୁଯୋଗ ନେଲେ ଭୀମ ।

ଆଖିପିଛୁଳାକେ ଜରାସନ୍ଧକୁ ଟେକି ଚଟାଣରେ କଚାଡ଼ି ଦେଲେ । ତଥାପି ଜରାସନ୍ଧ ଉଠି ଆସି ଆକ୍ରମଣ କଲେ ଭୀମକୁ । ଶ୍ରୀକୃଷ୍ଣ କୁଟା ଖଣ୍ଡେ ତଳୁଟେକି ନେଇ ଲମ୍ବ ଭାବରେ ଦୁଇ ଫାଳ କରି ଚିରି ଦେଲେ । ତାହାହିଁ ଥିଲା ଭୀମଙ୍କ ପ୍ରତି ତାଙ୍କର ନିରବ ସଂକେତ । ଭୀମ ଜରାସନ୍ଧଙ୍କର ଡାହାଣ ଗୋଡ଼କୁ ଧରି,ବାଁ ଗୋଡ଼କୁ ପାଦରେ ଚାପି ଜୋରରେ ଚିରି ଦେଇ ଫୋପାଡ଼ି ଦେଲେ । ଜରାସନ୍ଧ ପୁଣି ଥରେ ଯୋଡ଼ି ହୋଇଯାଇ ଭୀମଙ୍କୁ ଆକ୍ରମଣ କଲେ । ଭୀମ କ'ଣ କରିବେ କିଛି ଭାବିପାରିଲେ ନାହିଁ । ସେ ସଂକେତ ପାଇ ଚାହିଁ ରହିଲେ ଶ୍ରୀକୃଷ୍ଣଙ୍କୁ । ଶ୍ରୀକୃଷ୍ଣ କୁଟାକୁ ପୁଣିଥରେ ଚିରିଦେଇ ଦୁଇ ବିପରୀତ ଦିଗକୁ ଫୋପାଡ଼ି ଦେଲେ । ଭୀମ ଏଥର ଠିକ୍ ତାହାହିଁ କଲେ । ବିପରୀତ ଦିଗରେ ପଡ଼ି ରହିଲା ଜରାସନ୍ଧଙ୍କର ଶରୀରର ଦୁଇ ଅର୍ଦ୍ଧାଂଶ । ନିକଟବର୍ତ୍ତୀ ହେଲେ ମଧ୍ୟ ଆଉ ଯୋଡ଼ି ହୋଇ ପାରିଲାନାହିଁ । ଜରାସନ୍ଧଙ୍କର ମୃତ୍ୟୁ ହେଲା ।

ବନ୍ଦିଶାଳାରେ ସଢୁଥିବା ରାଜାମାନଙ୍କୁ ସଂଗେସଂଗେ ମୁକ୍ତି ଦିଆଗଲା । ଶ୍ରୀକୃଷ୍ଣ ଜରାସନ୍ଧଙ୍କ ପୁତ୍ର ସହଦେବଙ୍କୁ ମଗଧର ରାଜ ସିଂହାସନରେ ଅଭିଷିକ୍ତ କଲେ । ମୁକ୍ତିଲାଭ କରିଥିବା ରଜାମାନେ ପାଣ୍ଡବ ଶକ୍ତିପ୍ରତି ଅନୁଗତ୍ୟ ପ୍ରକାଶ କରି ନିଜ ନିଜ ରାଜ୍ୟକୁ ଫେରି ଯାଇ ରାଜପଣ କଲେ । ଯୁଧିଷ୍ଠିରଙ୍କୁ ଅମାପ ସହଯୋଗ ଓ ବିଶ୍ୱସ୍ତତା ମିଳିଗଲା ।

ଶ୍ରୀକୃଷ୍ଣ, ଭୀମ, ଅର୍ଜୁନ ଫେରି ଆସିଲେ ଇନ୍ଦ୍ରପ୍ରସ୍ଥକୁ । ଖେଳିଗଲା ଆନନ୍ଦ ଲହରୀ । ଧର୍ମରାଜା, ବିଜୟୀମାନଙ୍କୁ ଅଭିନନ୍ଦନ ଜଣାଇଲେ । ରାଜସୂୟ ଯଜ୍ଞର ବ୍ୟବସ୍ଥା କରାଗଲା ।

# ।। ରାଜସୂୟ ଯଜ୍ଞ ।।

ପଥ ପରିଷ୍କାର ହୋଇ ଯାଇଛି । ଯୁଧିଷ୍ଠିର ତାଙ୍କର ଚାରି ଭାଇଙ୍କୁ ଦିଗ ବିଜୟ ପାଇଁ ଚାରି ଦିଗକୁ ପଠାଇଲେ । ଅର୍ଜୁନ, ଅଗ୍ନିଦେବତା ଦେଇଥିବା ରଥ ଆରୋହଣ କରି, ଗାଣ୍ଡିବଧନୁ ହାତରେ ନେଇ ଉତ୍ତର ଦିଗକୁ ଜୟଯାତ୍ରା ଆରମ୍ଭ କଲେ । ପଥମଧ୍ୟରେ ବହୁ ରାଜାଙ୍କର ପ୍ରତିରୋଧର ସମ୍ମୁଖୀନ ହୋଇ ସେମାନଙ୍କୁ ଜୟ କଲେ । ଅନେକ ରାଜା ନିସର୍ତ୍ତ ସମର୍ଥନ ପ୍ରକାଶ କଲେ ।

ଭୀମସେନ ଗଲେ, ପୂର୍ବ ଦିଗକୁ ପଞ୍ଚାଳର ରାଜା ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କଲେ । ସେ ମିଥିଳାର ରାଜା ଜନକଙ୍କୁ ପରାସ୍ତ କଲେ । ଚେଦୀ ରାଜ୍ୟର ରାଜା ଶିଶୁପାଳ, ଭୀମଙ୍କୁ ବହୁ ଧନ ରତ୍ନ ଅର୍ପଣ କଲେ । ତାଙ୍କର ଆତିଥ୍ୟ ଓ ଅଭିନନ୍ଦନରେ ମୁଗ୍ଧ ହୋଇ ଉଠିଲେ ଭୀମସେନ । ତାପରେ ସେ କାଶୀ, ଅଯୋଧ୍ୟା, କୋଶଳ, ପ୍ରଭୃତି ରାଜ୍ୟକୁ ଯାଇ ସେମାନଙ୍କୁ ନିଜର କରାଗତ କଲେ ।

ସହଦେବ ଗଲେ ଦକ୍ଷିଣ ଦିଗକୁ । ବହୁ ସ୍ୱାଧୀନ ରାଜାମାନଙ୍କ ସହିତ ତାଙ୍କର ସଂଘର୍ଷ ହେଲା । ଅଳ୍ପସମୟ ମଧ୍ୟରେ ସେମାନେ ଆତ୍ମସମର୍ପଣ କଲେ । କେତେକ ରାଜା ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ । ସେ କଳିଙ୍ଗ, କୋଶଳ, କେରଳ, ପାଣ୍ଡ୍ୟ ପ୍ରଭୃତି ରାଜ୍ୟ ଜୟ କଲେ । ରାଜାମାନେ ଯୁଧିଷ୍ଠିରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରି ନିଜର ସମର୍ଥନ ଜଣାଇଲେ ।

ନକୁଳ ପଶ୍ଚିମ ଦିଗକୁ ତାଙ୍କର ଅଭିଯାନ ଚଳାଇଥିଲେ । ସେ ଏକ ବିଶାଳ ସୈନ୍ୟ ବାହିନୀ ନେଇ ବାହାରିଥିଲେ ନିଜର ଲକ୍ଷ୍ୟ ପଥରେ । ଦୂରରୁ ଜଣା ଯାଉଥିଲା, ସେତେ ଯେପରି ଏକ ମହାସମୁଦ୍ର ମାଡ଼ି ଆସୁଛି । ମଦ୍ର ଦେଶର ଅଧିପତି ଶଲ୍ୟ, ତାଙ୍କର ମାମୁ । ନକୁଳଙ୍କୁ ଦେଖିଲାକ୍ଷଣି ଆନନ୍ଦରେ ଉଚ୍ଛୁଳି ଉଠିଲେ । ତାଙ୍କୁ ଶ୍ରଦ୍ଧାର ସହିତ ବହୁ ଧନ ରତ୍ନ ଉପହାର ଦେଲେ । ମହିତକ, ପୁଷ୍କର, ସରସ୍ୱତୀ ସିନ୍ଧୁ ପ୍ରଭୃତିର ରାଜାମାନେ ବଶତା ସ୍ୱୀକାର କଲେ । ଇନ୍ଦ୍ରପ୍ରସ୍ଥକୁ ଫେରିବା ସମୟରେ ସେ ଅଜସ୍ର ଧନରତ୍ନ ସହିତ ବହୁ ଓଟ, ଅଶ୍ୱ, ହସ୍ତୀ ପ୍ରଭୃତି ନେଇ ଆସିଥିଲେ ।

ଦିଗ୍‌ବିଜୟ କାମ ସରିଗଲା ।

ଯୁଧିଷ୍ଠିର ତାଙ୍କର କୁଳ ପୁରୋହିତ ଧୌମ୍ୟଙ୍କୁ ଅନୁରୋଧ କଲେ ରାଜସୂୟ ଯଜ୍ଞ ପାଇଁ ବ୍ୟବସ୍ଥା କରିବାକୁ । ଏଥିରେ ଯୋଗଦେବାପାଇଁ ରାଜାମାନଙ୍କୁ ନିମନ୍ତ୍ରଣ କରାଗଲା । ଯଜ୍ଞ ପରିଚାଳନା ପାଇଁ ବିଖ୍ୟାତ ଋତ୍ୱିକ୍ ମାନଙ୍କୁ ଅଣାଗଲା । ରାଜକୀୟ ବ୍ୟବସ୍ଥା କରାଗଲା ରାଜାମାନଙ୍କର ଆତିଥ୍ୟ ସ୍ୱୀକାର ପାଇଁ ।

ଇନ୍ଦ୍ରପ୍ରସ୍ଥ ନଗରକୁ ଲାଗି ରାଜସୂୟ ଯଜ୍ଞପାଇଁ ସୁରମ୍ୟ ଅଟ୍ଟାଳିକା ନିର୍ମିହୋଇଛି । ଶ୍ରୀକୃଷ୍ଣ ଓ ବଳରାମ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଦ୍ୱାରକାରୁ ଆସି ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଯାଇଛନ୍ତି ।

ଖାଣ୍ଡବ ବନ ଦହନରୁ ବର୍ତ୍ତି ଯାଇଥିଲେ ମନ୍ଦପାଳ ଋଷିଙ୍କ ପକ୍ଷୀ ସନ୍ତାନମାନେ, ନାଗରାଜ ତକ୍ଷକଙ୍କର ପୁତ୍ର ଅଶ୍ୱସେନ ଏବଂ ଅସୁରମାନଙ୍କର ସ୍ଥପତି, 'ମୟ' । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ, ମୟ, ଇନ୍ଦ୍ରପ୍ରସ୍ଥରେ ରାଜସୂୟ ଯଜ୍ଞ ପାଇଁ ଏକ ସଭାଗୃହ ନିର୍ମାଣ କରିଥିଲେ । ଶିଳ୍ପ ନୈପୁଣ୍ୟରେ ତାହା ଥିଲା ଅତୁଳନୀୟ । ରାଜସୂୟ ଯଜ୍ଞ ପାଇଁ ଏହା ଥିଲା ତାଙ୍କର ବିଶେଷ ଉପହାର । ଏହାର ନାମଥିଲା ''ମୟସଭା'' । ଦେବରାଜ ଇନ୍ଦ୍ରଙ୍କ ସଭାଗୃହଠାରୁ ଏହାଥିଲା ଅଧିକ ଆକର୍ଷଣୀୟ ।

# କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ହସ୍ତିନାରୁ ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ, ବିଦୁର, ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ବହୁଧନ ରତ୍ନ ନେଇ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲେ । ବ୍ୟାସଦେବ ଅନ୍ୟାନ୍ୟ ଋଷିମାନଙ୍କ ଗହଣରେ ଉପସ୍ଥିତ ଥିଲେ । ଅସୁମାର ବ୍ରାହ୍ମଣ ଦୂରଦୂରାନ୍ତରୁ ଆସି ଧର୍ମରାଜ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଯୋଗ ଦେଇଥାନ୍ତି ।

ରାଜାମାନେ ଦେଇଥିବା ଉପହାର ସାମଗ୍ରୀ, ମଣିମାଣିକ୍ୟ, ସୁବର୍ଣ୍ଣ ଓ ରତ୍ନରାଜିରେ ଭରପୂର ହୋଇଉଠିଲା ରାଜକୋଷ । ଦୁଃଖୀ ଦରିଦ୍ର, ବ୍ରାହ୍ମଣମାନଙ୍କୁ ଅଜସ୍ର ଧନସମ୍ପତ୍ତି ଦିଆଗଲା । ସ୍ୱଞ୍ଚ ଆୟକାରୀ ରାଜାମାନଙ୍କୁ ମଧ୍ୟ ବହୁ ଉପହାର ବିତରଣ କରାଗଲା ।

ବ୍ୟାସବେଦ ଏ ଯଜ୍ଞର ଥିଲେ ପୁରୋଧା । ତାଙ୍କରି ଇଙ୍ଗିତରେ ମୁନିଋଷିମାନେ ବୈଦିକ ରୀତିରେ ଯଜ୍ଞକାର୍ଯ୍ୟ ସମ୍ପାଦନ କଲେ । ରାଜସଭାରେ ରାଜା ମହାରାଜାମାନେ ବସିଥାନ୍ତି । ରାଜୋଚିତ ଗାମ୍ଭୀର୍ଯ୍ୟ ସଭାଗୃହକୁ ଗମ୍ଭୀର କରିଥାଏ । ସମବେତ ରାଜନ୍ୟ ମଣ୍ଡଳୀଙ୍କୁ ସମ୍ମାନିତ କରିବାର ସମୟ ଉପସ୍ଥିତ ହେଲା । ଯୁଧିଷ୍ଠିର ନମ୍ର ଓ ବିନୀତ ଭାବରେ ଛିଡ଼ା ହୋଇଥାନ୍ତି । ପିତାମହ ଭୀଷ୍ମ ଆଦେଶ ଦେଲେ, 'ସମସ୍ତଙ୍କ ମଧ୍ୟରେ ଯେ ଅଧିକ ସମ୍ମାନନୀୟ ଓ ପୂଜାର୍ହ, ପ୍ରଥମେ ତାଙ୍କୁସମ୍ମାନ ପ୍ରଦର୍ଶନ କରିବାକୁ ବ୍ୟବସ୍ଥା କରାଯାଉ ।'

ଯୁଧିଷ୍ଠିର ନତ ମସ୍ତକରେ କହିଲେ, ''ହେ ପିତାମହ ! ଆପଣ ଏ କୁଳର ବୟୋବୃଦ୍ଧ ବ୍ୟକ୍ତି । ସମବେତ ରାଜନ୍ୟ ମଣ୍ଡଳୀ ମଧ୍ୟରେ ଆପଣ ମଧ୍ୟ ବର୍ଷୀୟାନ୍ । କାହାକୁ ପ୍ରଥମେ ସମ୍ମାନିତ କରିବାକୁ ହେବ, ଦୟାକରି ଆପଣ କୁହନ୍ତୁ ।

''କାହିଁକି, ଅସୁବିଧା କଣ ! ଯେଉଁ ରାଜ ସଭାରେ ମନୁଷ୍ୟରୂପୀ ସ୍ୱୟଂ ବିଷ୍ଣୁ ବିରାଜମାନ, ସେହି ଶ୍ରୀକୃଷ୍ଣଙ୍କୁ ପ୍ରଥମେ ସମ୍ମାନିତ କର ।'' ଯୁଧିଷ୍ଠିର ଅନ୍ତରର ସହିତ ତାହା ସମର୍ଥନ କଲେ । ସହଦେବ ଧୂପ, ଦୀପ, ଚନ୍ଦନ, ଫୁଲମାଳ ନୂଆପାଟବସ୍ତ୍ର, ସ୍ୱର୍ଣ୍ଣ ଓ ମଣିମାଣିକ୍ୟ ପ୍ରଭୃତି ଧରି ମଞ୍ଚରେ ପ୍ରବେଶକଲେ ।

ଚେଦିର ରାଜା ଶିଶୁପାଳ ସଭାମଞ୍ଚର ମଧ୍ୟ ଭାଗକୁ ଚାଲିଆସି ଗର୍ଜନକରି କହିଲେ, ଧର୍ମରାଜ ଯୁଧିଷ୍ଠିରଙ୍କର ଏ ସିଦ୍ଧାନ୍ତ ଆଦୌ ଗ୍ରହଣୀୟ କିମ୍ବା ସ୍ପୃହଣୀୟ ନୁହେଁ । ରାଜଧର୍ମର ଏହା ବିରୁଦ୍ଧାଚରଣ କରୁଛି । ସର୍ବପ୍ରଥମେ ସମ୍ମାନ ପାଇବା ପାଇଁ ଅଧିକାର ଅଛି କେବଳ ଜଣେ ରାଜାର, ଜଣେ ଗୋପାଳର ନୁହେଁ । ତାଙ୍କର ରାଜକୀୟ ପରମ୍ପରା ନାହିଁ, କୌଳିକ ଶ୍ରେଷ୍ଠତ୍ୱ ନାହିଁ । ସାମାଜିକ ସଂସ୍କାର ମଧ୍ୟ ନାହିଁ । କୂଟ, କପଟ, ପରଶ୍ରୀକାତରତା, ଚୌର୍ଯ୍ୟ ବୃତ୍ତି, ଏବଂ ଚାରିତ୍ରିକ ଦୁର୍ବଳତା ହିଁ ତାଙ୍କ ଦେବତ୍ୱର ଆଧାର ।

ପିତାମହ ଭୀଷ୍ମ ଭାବପ୍ରବଣତା ମଧ୍ୟରେ ନିଜର ବିଚାର ବୁଦ୍ଧି ହରାଇଛନ୍ତି । ମୂଢ଼, ଅବିବେକୀ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଦେବତ୍ୱ ଆରୋପ କରି ଚତୁରତାର ସହିତ ସେ ସମସ୍ୟାକୁ ଏଡ଼ାଇ ଦେଇ ପାରିଛନ୍ତି । ଯୁଧିଷ୍ଠିର କଣ ଏସବୁ ବୁଝିବାକୁ ଅକ୍ଷମ । ସେ ମନେ ରଖିବା ଉଚିତ୍ ଯେ, ତାଙ୍କୁ ଡରି କିମ୍ବା ଅନ୍ୟ କାହାକୁ ଭୟକରି ଆମେ ଏରାଜସଭାକୁ ଆସିନାହୁଁ । ଧର୍ମରାଜଙ୍କୁ ସମ୍ମାନ ଦେବାପାଇଁ ଆସିଥିଲୁ କିନ୍ତୁ ବର୍ତ୍ତମାନ ପ୍ରମାଣିତ୍ ହୋଇଗଲା, ଯୁଧିଷ୍ଠିର ଧର୍ମ ପାଳନ କରିବାକୁ ଯାଉନାହାନ୍ତି ।

ବୟସ ଦୃଷ୍ଟିରୁ ବିଚାରକଲେ ପିତାମହ ଭୀଷ୍ମ ନିଜେ ଏ ସମ୍ମାନର ପ୍ରଥମଅଧିକାରୀ ହୋଇଥାନ୍ତେ । ହୁଏତ ତାଙ୍କର ଜନ୍ମଗତ କାରଣ ନେଇ ସେ କୃଷ୍ଣଙ୍କୁ ସ୍ଥାପନ କରି ନିଜେ ଓହରିଗଲେ । ମଣିଷର ଧର୍ମ, ସେ ନିମ୍ନରୁ ଊର୍ଦ୍ଧ୍ୱମୁଖୀ ହେବ, ଊର୍ଦ୍ଧ୍ୱକୁଯିବ, ସେଥିପାଇଁ ତାନାଁ ଉତ୍ତାନପାଦ । ପିତାମହ,ଏକ ନଦୀପୁତ୍ର ତେଣୁ ଊର୍ଦ୍ଧ୍ୱରୁ ନିମ୍ନକୁ ଗତି କରିବା ତାଙ୍କର ସ୍ୱଭାବସିଦ୍ଧ କର୍ମ । ଏ କ୍ଷେତ୍ରରେ ସେ ଊର୍ଦ୍ଧ୍ୱକୁ ଦୃଷ୍ଟି ନିକ୍ଷେପନକରି ନିମ୍ନକୁ ଦୃଷ୍ଟି ପକାଇଲେ । ସର୍ବ କନିଷ୍ଠ ଓ ଅଯୋଗ୍ୟ, ଜ୍ୟେଷ୍ଠତାର ଯୋଗ୍ୟତା ପାଇଲା ।

ସମ୍ମାନ ଦୃଷ୍ଟିରୁ ବିଚାରକଲେ କୁରୁ ପାଣ୍ଡବଙ୍କର ସମ୍ମାନନୀୟ ହେଉଛନ୍ତି ଗୁରୁ କୃପାଚାର୍ଯ୍ୟ, ଓ ଦ୍ରୋଣଚାର୍ଯ୍ୟ । ସେମାନେ ଏ ସମ୍ମାନପାଇଁ ଯୋଗ୍ୟ । ତାଙ୍କ କଥା ମଧ୍ୟ ବିଚାରକୁ ନିଆଗଲା ନାହିଁ ।

ମହାନ୍ ଯୋଦ୍ଧା ଭାବରେ ପର୍ଶୁରାମଙ୍କ ଶିଷ୍ୟ କର୍ଣ୍ଣମଧ୍ୟ ଏଠାରେ ଉପସ୍ଥିତ ଅଛନ୍ତି । ତାଙ୍କୁ ମଧ୍ୟ ଏ ସମ୍ମାନ ଦିଆଯାଇ ପାରିଥାନ୍ତା ।

ସର୍ବଜ୍ଞାନର ଅଧିକାରୀ ବ୍ୟାସଦେବ ମଧ୍ୟ ଏଠାରେ ଉପସ୍ଥିତଅଛନ୍ତି । ତାଙ୍କୁ ଏ ସମ୍ମାନ ଦେଇଥିଲେ କାହାରି କିଛି ଆପତ୍ତି କରିବାର ନଥିଲା । ତାହା ଯଦି ନହେଲା, ଏଠାରେ ଅନେକ ରାଜା ମହାରାଜାଉପସ୍ଥିତ ଅଛନ୍ତି । ଦୁର୍ଯ୍ୟୋଧନଙ୍କପରି ମହାରଥୀ ମଧ୍ୟ ଏଠାରେ ଉପସ୍ଥିତ । ତାଙ୍କୁ ସମ୍ମାନ ଦେଇଥିଲେ କିଛି ଅସୁବିଧା ହୋଇନଥାନ୍ତା । କେଉଁ ବିଚାରରେ ଗୋଟାଏ ଅଯୋଗ୍ୟ ଅବିବେକୀ ଓ ପରିସ୍ଥିତିରୁ ସବୁବେଳେ ଫାଇଦା ଉଠାଇବା ଲୋକକୁ ଏସମ୍ମାନ ଦିଆଗଲା । ମୁଁ ଏ ଅପମାନ ସହ୍ୟ କରି ପାରିବିନାହିଁ । ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ମୋ ମତରେ ଏକମତ, ସେମାନେ ବାହାରି ଆସନ୍ତୁ । ଆମେ ଏ ସଭା ମଞ୍ଚ ଛାଡ଼ି ଚାଲିଯିବା ।

ତାଙ୍କ ସହିତ ଅନେକ ରାଜା ନିଜର ଆସନ ଛାଡ଼ି ବାହାରି ଆସିଲେ । ଯୁଧିଷ୍ଠିର ବିନୀତ କଣ୍ଠରେ ସେମାନଙ୍କୁ ବୁଝାଇଲେ । ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟ ପ୍ରକାଶକଲେ । ସେମାନେ କିଛି ଶୁଣିଲେ ନାହିଁ । ବରଂ ଶ୍ରୀକୃଷ୍ଣଙ୍କୁ ଏଥର ସିଧା ଆକ୍ରମଣର କଲେ । ଶିଶୁପାଳ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଶ୍ରୀକୃଷ୍ଣ ଶେଷରେ ନିଜର ସୁଦର୍ଶନ ଚକ୍ର ପଠାଇ ଶିଶୁପାଳକୁ ବଧ କଲେ ।

ରାଜସୂୟ ଯଜ୍ଞ ଯଥାବିଧି ପାଳନ କରାଗଲା ।

# ।। ବିଦ୍ୱେଷ ବୀଜ ବପନ ।।

ରାଜସୂୟ ଯଜ୍ଞ ଶେଷ ହେଲା ।

ଆଗନ୍ତୁକ ଅତିଥିମାନେ ବିଦାୟ ନେଲେ । ଶ୍ରୀକୃଷ୍ଣ ଭାଇ ବଳରାମଙ୍କ ସହିତ ଫେରି ଆସିଲେ ଦ୍ୱାରକାକୁ । ଯୁଧିଷ୍ଠିର ନିଜର ଗଭୀର କୃତଜ୍ଞତା ପ୍ରକାଶ କରି କହିଲେ, ''ହେ ମଧୁସୂଦନ ! ଆପଣଙ୍କ ଆଶୀର୍ବାଦରୁ ରାଜସୂୟ ଯଜ୍ଞ ସୁଚାରୁରୂପେ ସମ୍ପାଦିତ ହେଲା । ଆପଣ ମଙ୍ଗଳମୟ । ଯେଉଁଠାରେ ଥାଆନ୍ତୁ କିମ୍ବା ଯେତେ ଦୂରରେ ଥାଆନ୍ତୁନା କାହିଁକି, ଆପଣଙ୍କର ଆଶୀର୍ବାଦ ସର୍ବଦା ଆମର ମଙ୍ଗଳ କରିବ ।

ମହର୍ଷି ବ୍ୟାସ ଦେବ ବିଦାୟ ନେବାପାଇଁ ଉପସ୍ଥିତ ହେଲେ । ଯୁଧିଷ୍ଠିର ପିତାମହ ବ୍ୟାସଙ୍କର ପଦବନ୍ଦନା କରି କହିଲେ, ''ହେ ଦେବ ! ଏ ମହାନ୍ କର୍ତ୍ତବ୍ୟର ଆପଣ ହେଉଛନ୍ତି କର୍ତ୍ତା । ଏ ମହାପୁଣ୍ୟର ଆଧାର ହେଉଛନ୍ତି ଆପଣ । ଦୟାକରି ଭବିଷ୍ୟତ ପାଇଁ କିଛି ଦିଗଦର୍ଶନ ଦେଇଯାଆନ୍ତୁ । ଆପଣଙ୍କର ଆଲୋକ ହିଁ ଅନ୍ଧକାର ମଧ୍ୟରେ ଆମର ପଥ ପ୍ରଦର୍ଶକ ହେବ ।''

''ହେ କୁନ୍ତୀପୁତ୍ର ! ତୁମେ ଭାଗ୍ୟବାନ, ତୁମ ପାଖରେ ଯେଉଁ ଦିବ୍ୟ ଶକ୍ତି ଅଛି ତାହାହିଁ ତୁମ ଜୀବନର ପାଥେୟ । ତୁମେ ଆଜି ଏକଛତ୍ରାଧିପତି, ଏବଂ ଏହାହିଁ ତମର ଯୋଗ୍ୟତାର ପୁରସ୍କାର ।''

''ଶିଶୁପାଳ ଚମବାଟରୁ ଦୂରେଇଗଲେ ମଧ୍ୟ, ପଥ କଣ୍ଟକହୀନ ହୋଇନାହିଁ । ଆସନ୍ତା ତେରବର୍ଷ ପର୍ଯ୍ୟନ୍ତ ତୁମକୁ ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିବ । ତୁମର ଆତ୍ମୀୟ କୌରବମାନେ ଶତ୍ରୁରେ ପରିଣତ ହେବେ । ଏକ ମହାଯୁଦ୍ଧର ସୂତ୍ରପାତ ସାମାନ୍ୟ ଲଘୁ କଥାରୁ ହୋଇପାରେ । ନିଜକୁ ସଂଯତ ରଖିବ । କ୍ରୋଧର ବଶବର୍ତ୍ତୀ ହେବନାହିଁ । ମିଷ୍ଟ ବ୍ୟବହାର ଦ୍ୱାରା ଶତ୍ରୁକୁ ମିତ୍ରରେ ପରିଣତ କରିବ । କାହାରି ଆବେଗକୁ ଆଘାତ ଦେବନାହିଁ । ସର୍ବଦା ବିଚାର ଦ୍ୱାରା ପରିଚାଳିତ ହେବ । ପରିସ୍ଥିତି ଯେତେବେଳେ ଯାହା ହେଉନା କାହିଁକି, ନିଜକୁ ଦୃଢ଼ ରଖିବ । ଦୃଢ଼ତାହିଁ ଦୁଃଖର ଏକମାତ୍ର ମହୌଷଧି ।''

ଯୁଧିଷ୍ଠିରଙ୍କୁ ଆଶୀର୍ବାଦ ଦେଇ ବ୍ୟାସଦେବ ବିଦାୟ ନେଲେ ।

ଦୁର୍ଯ୍ୟୋଧନ ଓ ମାମୁ ଶକୁନି କିଛିଦିନ ଇନ୍ଦ୍ରପ୍ରସ୍ଥରେ ରହିଲେ । ମୟସଭା ଭବନର ନିର୍ମାଣ ଶୈଳୀ ଏହାର ଅନୁପମ କାରୁକାର୍ଯ୍ୟ, ମଣିମାଣିକ୍ୟ ଖଚିତ ଅନବଦ୍ୟ ରୂପଛାୟା ତାଙ୍କୁ ଯେତିକି ବିମୋହିତ କରୁଥିଲା, ତାଠାରୁ ଅଧିକ ଯନ୍ତ୍ରଣା ଦେଉଥିଲା । କୁରୁବଂଶର ଅନୁଗ୍ରହ ପ୍ରାର୍ଥୀ ପାଣ୍ଡବମାନଙ୍କର ଏତେବଡ଼ ଭାଗ୍ୟ । ଈର୍ଷାରେ ଛିନ୍ନ ହେଉଥିଲା ତାଙ୍କର ହୃଦୟ ତନ୍ତ୍ରୀ ।

ସେଦିନ ଦୁର୍ଯ୍ୟୋଧନ ସଭାଗୃହରେ ଏକା ପ୍ରବେଶ କଲେ । ମଣିମୁକ୍ତା ଖଚିତ କାନ୍ଥ, ବର୍ଣ୍ଣାଢ଼୍ୟ ମର୍ମରଖଚିତ ଚଟାଣ । ସେଥିରୁ ବିଚ୍ଛୁରିତ ହେଉଛି ମାୟାଲୋକର ଜଳତରଙ୍ଗ । ଚଟାଣଟା ଜଣା ପଡୁଛି ସତେଯେପରି ଏକ କୃତ୍ରିମ ହ୍ରଦ । ସେ ନିଜର ଗତିପଥ ବଦଳାଇ, ଚଟାଣ ସହିତ ସମତୁଲ ଏକ ସ୍ଥିର ଜଳଭଣ୍ଡାର ଭିତରକୁ ଖସି ଯାଇଛନ୍ତି । ରେଶମୀ ପାଟ ଓ ଉତ୍ତରୀ ତାଙ୍କର ଓଦା ହୋଇ ଯାଇଛି । ସ୍ଥିର ଜଳର ଉପର ଆସ୍ତରଣ, ନୀଳ ମାର୍ବଲ ଖଣ୍ଡପରି ଜଣାପଡ଼ିଲା ଫଳରେ ତାଙ୍କୁ ଏ ଦଶା ଭୋଗିବାକୁ ପଡ଼ିଲା ।

ସେଇ ବାଟ ଦେଇ ଯାଉଥିଲେ ଦ୍ରୌପଦୀ । ଦୁର୍ଯ୍ୟୋଧନଙ୍କର ଦୁର୍ଗତି ଦେଖି ଜୋରରେ ହସି ପକାଇଲେ । ଏକଲଘୁ ମନ୍ତବ୍ୟ ଦେଇ କହିଲେ, ''ଦିନର ଉଜ୍ଜ୍ୱଳ ଆଲୋକରେ ମଧ୍ୟ ପାଣିଟା ଦେଖାଗଲାନି । ତାଙ୍କ ସହିତ ଥିବା ଦାସୀ ମାନଙ୍କ ଅଧରଧାରରେ ଗୋପନ ହସର ବକ୍ରିଳ ରେଖାଟାଏ ଚହଲି ଗଲା । ଦ୍ରୌପଦୀ ଭିତରକୁ ଚାଲିଗଲେ । ସେ ପିନ୍ଧିବା ପାଇଁ ପାଟବସ୍ତ୍ର ଓ ଉତ୍ତରୀୟ ପ୍ରଭୃତି ପଠାଇଦେଲେ । ଯୁଧିଷ୍ଠିର ଆସି ତାଙ୍କୁ ଉଠାଇନେଲେ ଉପରକୁ । ଦୁର୍ଯ୍ୟୋଧନ ଉପରେ ହସୁଥିଲେ ମଧ୍ୟ ଭିତରେ ଭିତରେ ହୁତୁହୁତୁ ହୋଇ ଜଳୁଥିଲେ ।

ଦୁର୍ଯ୍ୟୋଧନଙ୍କର ଉତ୍ତୁଙ୍ଗ ଅଭିମାନ ଉପରେ ସତେଯେପରି ଏହାଥିଲା ଏକ ପ୍ରଚଣ୍ଡ ଆକ୍ରମଣ । ଦ୍ରୌପଦୀଙ୍କର ମନ ଖୋଲା ହସକୁ ସେ ଅବଜ୍ଞାର ଏକ ଅଟ୍ଟହାସ ବୋଲି ଅନୁଭବ କଲେ । ଅବମାନନାର ଦୁଃସହ ଯନ୍ତ୍ରଣା ନେଇ ସେ ଫେରି ଆସିଲେ ହସ୍ତିନା ପୁରକୁ । ଧର୍ମରାଜ ଯୁଧିଷ୍ଠିରଙ୍କର ସ୍ନେହ ସାନିଧ୍ୟ ଏବଂ ମଧୁର ବ୍ୟବହାର ତାଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରିଲାନାହିଁ ।

ଦୁର୍ଯ୍ୟୋଧନଙ୍କ ଦୁର୍ଗତିର ଦୁରନ୍ତ ରୂପକାର ମାମୁ ଶକୁନି । ଉଭୟଙ୍କ ମଧ୍ୟରେ ଏକାନ୍ତରେ ମନ୍ତ୍ରଣା ଚାଲି ଥାଏ । ଖୁବ୍ ନିବିଡ଼ । ଖୁବ୍ ଆତ୍ମୀୟତାର ଏକ ଅନ୍ତରଙ୍ଗ ଅଭିନୟ । ଶକୁନି ଗମ୍ଭୀର ହୋଇ ଆତ୍ମୀୟତାର ସ୍ୱରସୁଧା ଢ଼ାଳି କହିଲେ, ''ବତ୍ସ ଦୁର୍ଯ୍ୟୋଧନ ! ତୁମେ ମୋର ପ୍ରାଣର ପ୍ରାଣ । ଅନ୍ତରର ଅନ୍ତସଲିଳା ଫଲ୍ଗୁ । ମୁଁ ଲକ୍ଷ୍ୟ କରୁଛି, ତୁମେ ସତେ ଯେପରି ଯନ୍ତ୍ରଣାଗ୍ରସ୍ତ । ତମର ଶାରୀରିକ ଓ ମାନସିକ

ସ୍ୱାସ୍ଥ୍ୟ ଦିନକୁ ଦିନ ବିପନ୍ନ ହେବାକୁ ଯାଉଛି । କୁରୁକୁଳର ମଉଡ଼ମଣି, ବିମର୍ଷ ଓ ବିଚଳିତ ହେଲେ, ତାର ପ୍ରଭାବ, ପିତାମହ, ଆତ୍ମୀୟ ସ୍ୱଜନ ତଥା ପ୍ରଜାମାନଙ୍କ ଉପରେ ନିଶ୍ଚୟ ପଡ଼ିବ ।''

''ମାମୁ ! ଦୁର୍ଭାଗ୍ୟ ଏ ସବୁର ହିସାବ ରେଖନା । ସେ ଅସମୟରେ ଆସେ । ଆସେ ଏକ କ୍ଷୁଦ୍ର ମୂଷିକ ପରି । ଦାମ୍ଭିକତାର ଦଉଡ଼ାଟାକୁ ଦିଗଡ଼ କରି କାଟି ଦେଇପାରେନା ସିନା, କାଟେ ତାର ସୂକ୍ଷ୍ମ ତନ୍ତୁଗୁଡ଼ିକୁ । ସାରା ଶରୀର ତାର କ୍ଷତାକ୍ତ କରେ । ଦଉଡାଟା ଦୁର୍ବଳ ହୋଇଯାଏ ସଂପୂର୍ଣ୍ଣ ଭାବରେ । ମୋର ଅବସ୍ଥା ଆଜି ଠିକ୍ ସେଇପରି ହୋଇଛି । ଆପଣ ତ ଦେଖିଛନ୍ତି, ଯେଉଁ ପାଣ୍ଡବମାନେ କାଲି ଏକଚକ୍ରପୁରରେ ଭିକାରି ଥିଲେ, ଆଜି ସେମାନେ ଏକଛତ୍ରାଧିପତି'' । କିଏ ନଆସିଥିଲେ ସେଇ ରାଜସଭାକୁ, ନାରଦ ଋଷିଙ୍କଠାରୁ ଆରମ୍ଭ କରି ବ୍ୟାସଦେବଙ୍କ ପର୍ଯ୍ୟନ୍ତ । ଲକ୍ଷ ଲକ୍ଷ ଲୋକଙ୍କ ପାଇଁ ଖାଦ୍ୟ ପାନୀୟ ତଥା ଉପହାରର ବ୍ୟବସ୍ଥା କରାଯାଇଥିଲା । ଧନରତ୍ନ ମଣି ମାଣିକ୍ୟରେ ଉଚ୍ଛୁଳି ଉଠିଲା ରାଜପୁରୀ । କେତେ ଦାନ ଦକ୍ଷିଣା, କି ଆନନ୍ଦ ମଉଛବ । ହରିଶ୍ଚନ୍ଦ୍ରଙ୍କ ରାଜସୂୟ ଯଜ୍ଞକୁ ବଳିପଡ଼ିଲା ଏ ଯଜ୍ଞ । ଇନ୍ଦ୍ରପୁରୀ, ବରୁଣପୁରୀ ଏବଂ କୁବେର ପୁରୀକୁ ଚାଞ୍ଚଲ୍ୟ କରୁଛି ପାଣ୍ଡବଙ୍କର ମୟସଭା ।''

''କେବଳ ସେତିକ ନୁହେଁ, ସେତିକି ନୁହେଁ ପୁତ୍ର ଦୁର୍ଯ୍ୟୋଧନ ।''

ମାମୁ ! ସେ ସୌଭାଗ୍ୟର ବିପୁଳ ବିସ୍ତାର ଆପଣ ତ ସ୍ୱ ଚକ୍ଷୁରେ ଦେଖିଛନ୍ତି । ଦେଖିଛନ୍ତି ମଧ୍ୟ କୃଷ୍ଣଙ୍କର ଅହଂକାର । ଶିଶୁପାଳଙ୍କ ପରି ଜଣେ ସ୍ୱାଭିମାନୀ ରାଜାକୁ ଯେପରି ଅମାନୁଷିକ ଭାବରେ ହତ୍ୟା କରାଗଲା, ତାଠାରୁ ବଳି ଜଘନ୍ୟ କାମ ଆଉ କଣ ଥାଇପାରେ । ବିଧିର କି ବିଡ଼ମ୍ବନା । ଆପଣ ତ ଜାଣନ୍ତି, ମୋ ପିତାଙ୍କର ମନୋଭାବ, ପାଣ୍ଡବମାନଙ୍କ ପ୍ରତି ତାଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ ଓ ଶୁଭେଚ୍ଛା ମୋର ସମସ୍ତ ଆକାଂକ୍ଷାକୁ ଧୂଳିସାତ୍ କରି ଦେଇଛି ।''

ଶକୁନି ଆଶ୍ୱାସନା ଦେଇ କହିଲେ, ବାବୁ ଦୁର୍ଯ୍ୟୋଧନ ! ବ୍ୟସ୍ତ ହେବାର କିଛି ନାହିଁ । ପାଣ୍ଡବମାନଙ୍କ ତୁଳନାରେ ତମେତ କମ୍ ସୌଭାଗ୍ୟର ଅଧିକାରୀ ନୁହଁ । ତୁମର ପରମ ସୌଭାଗ୍ୟ ଯେ ତୁମ ପଛଆଡ଼କୁ ଆମେ ସମସ୍ତେ ଅଛୁ । ପିତାମହ ଭୀଷ୍ମ, ଆଚାର୍ଯ୍ୟ କୃପାଚାର୍ଯ୍ୟ ଗୁରୁଦ୍ରୋଣାଚାର୍ଯ୍ୟ, ଅଙ୍ଗରାଜ ଅରିନ୍ଦମ୍ କର୍ଣ୍ଣ, ମୁଁ ଏବଂ ଏକଶତ ଅନୁଗତ ଭ୍ରାତା । ଏ ସୁଯୋଗ ପାଣ୍ଡବ ମାନଙ୍କର ନାହିଁ । ତମେ ଚାହିଁଲେ ହସ୍ତିନା ପୁରରେ ''ମୟସଭା''ଠାରୁ ବଳି ସୁନ୍ଦର ସୁରମ୍ୟ ଅଟ୍ଟାଳିକା ଗଢ଼ାଯାଇ ପାରିବ । ପାଣ୍ଡବମାନେ କ୍ଷାତ୍ରବଳରେ ସାରା ଭାରତବର୍ଷ ଜୟ କରିପାରିଲେ ମଧ୍ୟ ମୁଁ ଚାହିଁଲେ ବିନାରକ୍ତ ପାତରେ କୌଶଳର ସହିତ ପାଣ୍ଡବମାନଙ୍କ ରାଜ୍ୟକୁ କରାଗତ କରି ଦେଇ ପାରିବି ।''

ଦୁର୍ଯ୍ୟୋଧନ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ମାମୁଙ୍କୁ କୁଣ୍ଢାଇ ପକାଇ କହିଲେ, 'ମାମୁ, ମୁଁ ପରମ ଭାଗ୍ୟବାନ ଯେ ଆପଣଙ୍କୁ ମାମୁ ରୂପେ ପାଇଛି । ଆପଣଙ୍କ ପରି ପକ୍ୱ ବିଚାରବନ୍ତ ରାଜନୀତିଜ୍ଞ, ସାରା ଭାରତବର୍ଷରେ ବିରଳ । ଆପଣ ଆମ ପ୍ରାଣର ସ୍ପନ୍ଦନ, ଶିରର ମୁକୁଟ । ଆପଣଙ୍କ ମନ୍ତ୍ରୀ କଣିକ ମୋର ପିତାଙ୍କୁ ଯେଉଁ ପରାମର୍ଶ ଦେଇଥିଲେ, ସେ ଯଦି ତାହା ଗ୍ରହଣ କରିଥାନ୍ତେ, ତା'ହେଲେ, ଆଜି ଏ ଦୁଃଖ ଭୋଗ କରିବାକୁ ଆମକୁ ପଡ଼ିନଥାନ୍ତା । କହନ୍ତୁ... କହନ୍ତୁ, ମାମୁ । ଏ ଦୁର୍ଦ୍ଦିନରେ ଆମକୁ କ'ଣ କରିବାକୁ ହେବ ।''

''ବତ୍ସ ଦୁର୍ଯ୍ୟୋଧନ ! ତୁମେ ତ ଜାଣ, ଭୀମ ଅର୍ଜୁନ ପ୍ରଭୃତି ଅସ୍ତ୍ରଚାଳନା ଶିକ୍ଷା କରିବାବେଳେ, ଯୁଧିଷ୍ଠିର ଯାଇ ପଶା ଖେଳରେ ବସି ଯାଆନ୍ତି । ସମର ବିଦ୍ୟା ଅପେକ୍ଷା ସେ ପଶାଖେଳକୁ ଅଧିକ ଭଲ ପାଆନ୍ତି । ଆମେ ତାଙ୍କୁ ପଶାଖେଳକୁ ଡକାଇବା । ସେଥିରେ ଲୋଭନୀୟ ବାଜିରଖିବା । ପଶାଖେଳରେ ସେ କାଲିର ପିଲା । ଭାରତବର୍ଷରେ ଏପରି କେହି ନାହିଁ, ଯେ ମୋତେ ପଶାଖେଳରେ ପରାସ୍ତ କରି ଦେଇ ପାରିବ । ମୋ ପଶା କାଠି, ଡାକିଲେ, 'ଓ' କରିବ । କେବଳ ଏତିକି କଥା, ତୁମେ ପ୍ରଥମରୁ ସର୍ତ୍ତରଖିବ ଯେ, ତମ ପାଇଁ ସବୁବେଳେ ମୁଁ ଖେଳିବି । ମୋ ପଶାକାଠିର କୁହୁକ ବଳରେ ପାଣ୍ଡବମାନେ ହେବେ ରାଜ୍ୟହରା । ସବୁ ତମରି ହାତକୁ ଚାଲିଆସିବ ଦୁର୍ଯ୍ୟୋଧନ, ସବୁ ଚାଲିଆସିବ । ଭାଗ୍ୟଲକ୍ଷ୍ମୀ ତୁମକୁ ଅପେକ୍ଷା କରିଛନ୍ତି । ଯାଅ ଉଠ ... ପିତାଙ୍କୁ ବୁଝାଇ ସୁଝାଇ ତାଙ୍କର ସମ୍ମତି ଆଣ, ସବୁଠିକ୍ ହୋଇଯିବ । ଏକଛତ୍ରାଧିପତି ପାଣ୍ଡବମାନଙ୍କର ଛତାରେ ଶତଛିଦ୍ର ସୃଷ୍ଟିକରି ଦେଇପାରିବ ମୋର ପଶାକାଠି ।'' ସେ ଠିକ୍ ଭାବରେ ଜାଣିଥିଲେ, ତାଙ୍କର ପଶାକାଠି ଏପରି ବୋଲ ମାନିଛିଯେ, ଯାହା ଡାକିବେ ତାହା ନିଶ୍ଚିତ ଭାବରେ ପଡ଼ିବ । ଟିକିଏ ବି ଭୁଲ ହେବନି । ପଶା ପାଶରେ ଧର୍ମରାଜାଙ୍କ ଧର୍ମ ଡଙ୍ଗାକୁ ଛନ୍ଦି ଦେଇ ପ୍ରଖରସ୍ରୋତ ମୁଖରେ ଛାଡ଼ି ଦେଲେ ତାହା ଅସହାୟଭାବରେ ଭାସିଆସି ଆଉଜି ପଡ଼ିବ କୁରୁ କୂଳରେ । ଦୀର୍ଘଦିନର ପଶା ସାଧନାର ତନ୍ତ୍ରାଚାର ବ୍ୟର୍ଥଯିବନି । ପଶା କାଠିରେ ଜୀବନ ଆରୋପକରିବ ଶକୁନି...ଶକୁନି ।

ଦୁର୍ଯ୍ୟୋଧନ ଆନନ୍ଦରେ ନାଚି ଉଠିଲେ । ଆଶା ଆକଶରେ ବନ୍ଧନହୀନ ବେଲୁନଟାଏ ପରି ମନ ତାଙ୍କର ଘୂରିବୁଲିଲା ।

ସେଯାଇ ପିତାଙ୍କୁ ସବୁକଥା କହିଲେ ।

ରାଜା ଧୃତରାଷ୍ଟ୍ର ଦୁର୍ଯ୍ୟୋଧନଙ୍କର ପ୍ରସ୍ତାବରେ ହଠାତ୍ ଏକମତ ହୋଇ ପାରିଲେ ନାହିଁ । ବିଦୁରଙ୍କର ପରାମର୍ଶ ନେବେବୋଲି କହିଲେ ।

ଦୁର୍ଯ୍ୟୋଧନ ରାଗିଯାଇ କହିଲେ, ''ଆପଣ କଣ ବିଦୁରଙ୍କୁ ଚିହ୍ନି ନାହାନ୍ତି । ପାଣ୍ଡବମାନଙ୍କ ପାଇଁ ତାଙ୍କର ହୃଦୟ ସବୁବେଳେ କାନ୍ଦୁଥାଏ । ସେ କଣ ପଶାଖେଳ ପାଇଁ ରାଜି ହେବେ ? ଆପଣ ଯଦି ମୋ ପ୍ରସ୍ତାବ ରକ୍ଷା କରିବେ ନାହିଁ, ତା ହେଲେ ମୁଁ ଅଗ୍ନିରେ ଝାସ ଦେଇ ପ୍ରାଣ ହରାଇବି ।'' ଧୃତରାଷ୍ଟ୍ର କହିଲେ, ''ଆଚ୍ଛା ମୁଁ ବିଚାରକରି ଦେଖିବି ।'' ତାପରେ କୁରୁରାଜ ଚିନ୍ତାକୁଳିତ ହୋଇ ନିଭୃତରେ ବିଦୁରଙ୍କର ପରାମର୍ଶ ନେଲେ । ପଶାଖେଳର ଭୟାବହ ପରିଣତି ବିଷୟରେ ମହାମନ୍ତ୍ରୀ ବିଦୁର ରାଜାଙ୍କୁ ବୁଝାଇଲେ । କହିଲେ, ''ଏହାହିଁ ହେବ କୁରୁକୁଳର ଧ୍ୱଂସର କାରଣ । ଆପଣ ଏ ପ୍ରକାର ପ୍ରସ୍ତାବକୁ ଆଦୌ ସମର୍ଥନ କରନ୍ତୁନାହିଁ । ଏହା ପ୍ରଳୟ ସୃଷ୍ଟି କରିବ ।''

କିଂକର୍ତ୍ତବ୍ୟ ବିମୂଢ଼ ଧୃତରାଷ୍ଟ୍ର । ଗୋଟାଏ ପାଖରେ ପୁତ୍ର ସ୍ନେହ, ଅନ୍ୟପାଖରେ କର୍ତ୍ତବ୍ୟ । ଶେଷରେ ସେ ବିଦୁରଙ୍କୁ ଆଦେଶ ଦେଇ କହିଲେ, ''ପଶାଖେଳରେ ଆମେ ଯେ ବିଜୟୀ ନହେବୁ ତାର କିଛି ଅର୍ଥ ନାହିଁ । ଭାଗ୍ୟପରୀକ୍ଷାରେ ପଛେଇ ଯିବାର କିଛି କାରଣ ନାହିଁ । ଏହା ଏକ ରାଜୋଚିତ କ୍ରୀଡ଼ା । ତୁମେ ପାଣ୍ଡବମାନଙ୍କୁ ପଶାଖେଳ ପାଇଁ ନିମନ୍ତ୍ରଣ କର ଏବଂ ଏଥିପାଇଁ ଏକ ସଭାମଞ୍ଚ ବ୍ୟବସ୍ଥାକର ।''

——————————————— ସାତ

## ।। ପଶାଖେଳ ।।

ବିଦୁର ଯାଇ ପହଞ୍ଚିଲେ ଇନ୍ଦ୍ରପ୍ରସ୍ଥରେ । ଗଭୀର ଗ୍ଳାନିରେ ଶୁଖିଯାଇଛି ମୁଖମଣ୍ଡଳ । ଯୁଧିଷ୍ଠିର ଓ ପାଣ୍ଡବ ଭାଇମାନେ ବିଦୁରଙ୍କୁ ଦେଖି ଆନନ୍ଦରେ ପ୍ରଣାମ ଜଣାଇଲେ । କୌରବମାନଙ୍କର କୁଶଳ ଜିଜ୍ଞାସା କଲେ ।

ମହାତ୍ମା ବିଦୁର କହିଲେ, ''ରାଜା ଧୃତରାଷ୍ଟ୍ର ଶୁଭେଚ୍ଛା ଓ ଶୁଭଆଶୀର୍ବାଦ ପଠାଇଛନ୍ତି । ତାଙ୍କର ସମସ୍ତ କୁଶଳ । କୁରୁପୁତ୍ରମାନେ ଭଲ ଅଛନ୍ତି । ଏଥିଭିତରେ ନିର୍ମିତ ହୋଇଛି ଏକ ଅନବଦ୍ୟ ସଭାଗୃହ । ଠିକ୍ ମୟସଭାର ଅଟ୍ଟାଳିକା ପରି । ଦ୍ୟୁତକ୍ରୀଡ଼ା ପାଇଁ ଏଠାରେ ସମସ୍ତ ବ୍ୟବସ୍ଥା କରାଯାଇଛି । ଏହି କ୍ରୀଡ଼ା ଶାଳାର ଶୁଭ ଉଦ୍‌ଘାଟନ ପାଇଁ ରାଜା ଧୃତରାଷ୍ଟ୍ର ନିମନ୍ତ୍ରଣ ପଠାଇଛନ୍ତି । ସେଠାରେ ଦ୍ୟୁତକ୍ରୀଡ଼ା ମଧ୍ୟ ହେବ । ପଞ୍ଚପାଣ୍ଡବ ଏଥିରେ ଅଂଶ ଗ୍ରହଣ କରିବାକୁ ସେ ଅନୁରୋଧ କରିଛନ୍ତି ।

ଯୁଧିଷ୍ଠିର କିଛି ସମୟ ନିରବ ରହିବାପରେ କହିଲେ, ''ହେ ପିତଃ ! ଆପଣତ ଆମର ଏକମାତ୍ର ଶୁଭଚିନ୍ତକ । ଆମମାନଙ୍କର ରକ୍ଷକ ଓ ପଥପ୍ରଦର୍ଶକ ମଧ୍ୟ । ବିପଦ ଆପଦ ଭଲମନ୍ଦ ସବୁକ୍ଷେତ୍ରରେ ଆପଣ ସୁଚିନ୍ତିତ ମତାମତ ଦେଇ ଆସିଛନ୍ତି । ବର୍ତ୍ତମାନ କହନ୍ତୁ ଉପସ୍ଥିତ କ୍ଷେତ୍ରରେ ଆମକୁ କ'ଣ କରିବାକୁ ହେବ । ପଶାଖେଳରେ ଆମେ ଯୋଗ ଦେବା ଉଚିତ୍ ହେବ ନା ନାହିଁ ।''

ବିଦୁର କହିଲେ, ''ପଶାଖେଳ ରାଜକୀୟ ହେଲେ ମଧ୍ୟ ଏହାର ନିଶା ମଣିଷକୁ ଗ୍ରାସ କରେ । ମଣିଷ ଏଥିରେ ଆସକ୍ତ ହୋଇ ପଡ଼ିଲେ ନିଜର ବିଚାର ବୁଦ୍ଧି ହରାଏ । ବିଭେଦ, ବିରୋଧ, ବିଚ୍ଛିନ୍ନତା, ତିକ୍ତତା, ସମ୍ମାନ ଓ ସମ୍ପତ୍ତିହାନୀ, ଏହାର ଚରମ ପରିଣତି । ରାଜା ଧୃତରାଷ୍ଟ୍ରଙ୍କୁ ଏହି କୁଫଳ ବିଷୟରେ ମୁଁ ସଚେତନ କରାଇ ଦେଲେ ମଧ୍ୟ ସେ ତାହା ଗ୍ରହଣ କରି ନାହାନ୍ତି । ତୁମେ କ'ଣ କରିବ ତାହା ତୁମ ଉପରେ ନିର୍ଭର କରୁଛି ।''

ଯୁଧିଷ୍ଠିର ବହୁ ବିଚାର ବିମର୍ଶ ପରେ ନିମନ୍ତ୍ରଣ ରକ୍ଷାକଲେ । କାନରେ ପ୍ରତିଧ୍ୱନିତ ହେଲା ବ୍ୟାସ ଦେବଙ୍କର ବିଦାୟ କାଳୀନ ସତର୍କବାଣୀ । କ୍ରୋଧ ପାଇଁ ରାଜ୍ୟ ଭ୍ରଷ୍ଟ ହେଇଯିବାର ସୂଚନା ଅଛି । ଆସନ୍ତା ତେର ବର୍ଷ ଘୋର ଦୁର୍ଦ୍ଦିନର ସମୟ । ଧୃତରାଷ୍ଟ୍ରଙ୍କ ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରି ତାଙ୍କ ଭିତରେ କ୍ରୋଧ ସୃଷ୍ଟି କରିବା ସମୀଚୀନ ହେବନାହିଁ । ଦୁର୍ଯ୍ୟୋଧନ ପ୍ରଭୃତି କ୍ରୋଧଶୀଳ ବ୍ୟକ୍ତିମାନଙ୍କ ଭାବପ୍ରବଣତା ଉପରେ ଆଘାତ ଆଣିବା ଉଚିତ ନୁହେଁ । ଶାନ୍ତି ଓ ସୌହାର୍ଦ୍ଦ୍ୟ ପାଇଁ ସେ ହସ୍ତିନାପୁରକୁ ଯିବା ବରଂ ଶ୍ରେୟସ୍କର ହେବ ।

ପତନର ପ୍ରବାହ, ବିଚାରର ବାଲି ବନ୍ଧକୁ ମାନେ ନାହିଁ । ଭାବାବେଗ ମଧ୍ୟରେ, ଅସହାୟ ପଳିତପତ୍ର ପରି ସ୍ରୋତ ମୁଖରେ ଭାସିଯାଏ ମଣିଷ । ଦୁର୍ଯୋଗ, ଏକ ଦୁର୍ଜ୍ଜୟ ଶତ୍ରୁପରି ଆକସ୍ମିକ ଭାବରେ ଆସି, ତାର ପ୍ରଳୟ ଆଲେଖ୍ୟ ଲେଖି ଦେଇଯାଏ । ଭବିତବ୍ୟ ମଣିଷର ବିଚାର ବୁଦ୍ଧିକୁ ପ୍ରଭାବିତ କରେ । ସେଥିପାଇଁ ବୋଧହୁଏ ଯୁଧିଷ୍ଠିର ବ୍ୟାସଦେବଙ୍କ କଥାକୁ ଭୁଲ ଭାବରେ ବ୍ୟାଖ୍ୟା କଲେ ।

ଯୁଧିଷ୍ଠିର ଭାବିଲେ, ପଶାଖେଳ ମଧ୍ୟ ଏକ ପ୍ରକାରର ଯୁଦ୍ଧ । ସେ ଯୁଦ୍ଧରୁ ଦୂରେଇ ରହିବା କ୍ଷତ୍ରିୟର ଧର୍ମ ନୁହେଁ । ଜଣେ ଏକଛତ୍ରାଧିପତି ବୀରପାଇଁ ବିରତି ଆଦୌ ସ୍ପୃହଣୀୟ ନୁହେଁ । ଏହି କ୍ରୀଡ଼ାଯୁଦ୍ଧ ନିମନ୍ତ୍ରଣକୁ, ସେ ଏଡ଼ାଇଦେଇ ପାରିବେ ନାହିଁ ।

ନିର୍ଦ୍ଦିଷ୍ଟ ଦିନ ଯୁଧିଷ୍ଠିର ନିଜର ଭାଇ ଓ ରାଜ ପରିଷଦର ସଭ୍ୟମାନଙ୍କୁ ନେଇ ହସ୍ତିନା ପୁରରେ ପହଞ୍ଚିଲେ । ସାଥିରେ ଥିଲେ ଦ୍ରୌପଦୀ ଓ କୁଳଗୁରୁ ଧୌମ୍ୟ । ପହଞ୍ଚିବାପରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା । ସେମାନେ ଯାଇ ରାଜା ଧୃତରାଷ୍ଟ୍ର ଓ ରାଣୀ ଗାନ୍ଧାରୀଙ୍କୁ ପ୍ରଣାମ ଜଣାଇଲେ ।

ହସ୍ତିନାପୁରରେ ନିର୍ମିତ ହୋଇଛି ଏକ ମଣିମୟ ଅକ୍ଷଶାଳା । ଏହାର ଗଠନଶୈଳୀ ମୟ ସଭାଠାରୁ କୌଣସି ଦିଗରେ କମ୍ ନୁହେଁ । ସଭାଗୃହରେ ନିମନ୍ତ୍ରିତ ରାଜା ଓ ମହାରାଜାମାନେ ବସି ଗଲେଣି । ପିତାମହ ଭୀଷ୍ମ, କୃପାଚାର୍ଯ୍ୟ ଦ୍ରୋଣାଚାର୍ଯ୍ୟ, ବିଦୁର, ଅଶ୍ୱତ୍ଥାମା ପ୍ରଭୃତି ମନ ଦୁଃଖରେ ବସିଥାନ୍ତି । ଦୁର୍ଯ୍ୟୋଧନ ଓ ତାଙ୍କର ଭାଇମାନେ ବସିଥାନ୍ତି ଶକୁନିଙ୍କ ଗହଣରେ । କ୍ରୀଡ଼ାମଞ୍ଚ ଉପରେ ପଶାପାଲି, ପଶାଗୋଟି, ପଶାକାଠି ଆଣି ରଖାଗଲା ।

ପ୍ରଥମେ ଯୁଧିଷ୍ଠିର ପଶାଖେଳର କୁପରିଣାମ ବିଷୟରେ ନାନା ଶାସ୍ତ୍ର ସମ୍ମତ ଉକ୍ତି ଉଦ୍ଧାର କରି ନିଜର ମତାମତ ପ୍ରକାଶ କଲେ । ଶକୁନି ଯୁଧିଷ୍ଠିରଙ୍କର ଅନ୍ତର୍ଦ୍ୱନ୍ଦ୍ୱ ଠିକ୍ ଭାବରେ ଠଉରାଇ ପାରିଥିଲେ । ପଶାଖୋର ଯୁଧିଷ୍ଠିର ଯାହା କହୁଛନ୍ତି ଏହା ତାଙ୍କ ହୃଦୟର ବାର୍ତ୍ତା ଅନୁରୂପ ନୁହେଁ । ପ୍ରକୃତରେ ପାଶାଖେଳ ପ୍ରତି ତାଙ୍କର ଅନୁରକ୍ତି ଓ ଦୁର୍ବଳତା ଅଧିକ । ଏ ଆଦ୍ୟ ଅଭିଭାଷଣଟା ଆତ୍ମ ପ୍ରତାରଣାର ଗୋଟିଏ ମୁଖା ।

ଶକୁନି କହିଲେ, ''ଠିକ୍ ଅଛି, ପଶାଖେଳର ଦୁର୍ଗୁଣ କହିଲେ ଅନେକତ ଅଛି କିନ୍ତୁ ଏହାର ବଳିଷ୍ଠ ଦିଗ ପ୍ରତି ଆଖିବୁଜି ଦେଲେ ଚଳିବନି । ପଶାଖେଳଟା ଏକପ୍ରକାର ଶକ୍ତି ଓ ସାମର୍ଥ୍ୟର ପ୍ରତିଯୋଗିତା । କ୍ଷାତ୍ରଧର୍ମ ଏହା ଉପରେ ପ୍ରତିଷ୍ଠିତ । ଦୁର୍ବଳ ଅସମର୍ଥ ହିଁ ପରାଜୟର ପରାଭବ ବରଣ କରେ । ଧର୍ମରାଜା ଯୁଧିଷ୍ଠିର ଯଦି ନିଜକୁ ଅକ୍ଷକ୍ରୀକ୍ଷା ପାଇଁ ସମର୍ଥ ବୋଲି ମନେକରୁ ଥାନ୍ତି, ତା'ହେଲେ ସେଥିପାଇଁ ଆଗେଇ ଆସିବା ଉଚିତ ।

''ହଁ, ମୁଁ ଅକ୍ଷକ୍ରୀଡ଼ା ପାଇଁ ପ୍ରସ୍ତୁତ । ମୋ ସହିତ କିଏଖେଳିବେ ? ଏଥିପାଇଁ କିଛି ପଣ ଅଛି ନା ନାହିଁ ?''

''ନିଶ୍ଚୟ ଅଛି, ବିନାପଣରେ କଣ ଅକ୍ଷକ୍ରୀଡ଼ା ହୁଏ ? କହିଲେ ଶକୁନି । ଏଥିପାଇଁ ସଂସାରର ସବୁକିଛି ପଣ ରଖାଯାଇପାରେ ।

ଦୁର୍ଯ୍ୟୋଧନ କହିଲେ, ''ମୁଁ ପଣଦାନ ପାଇଁ ପ୍ରସ୍ତୁତ କିନ୍ତୁ ମୋ ତରଫରୁ ମୋ ମାମୁ ଆପଣଙ୍କ ସହିତ ଖେଳିବେ ।''

ଯୁଧିଷ୍ଠିର ଏ ପ୍ରସ୍ତାବ ହଠାତ୍ ଗ୍ରହଣକରି ପାରିଲେ ନାହିଁ । କହିଲେ, 'ଜଣକ ପାଇଁ ଆଉ ଜଣେ କଣ ଖେଳିପାରେ ।''

ଶକୁନି କହିଲେ, ''କି ଆଶ୍ଚର୍ଯ୍ୟ କଥା । ଦୁଇଜଣ ରାଜାଙ୍କ ମଧ୍ୟରେ ଯେତେବେଳେ ଲଢ଼େଇ ହୁଏ ସେତେବେଳେ ଯୁଦ୍ଧରେ ତାଙ୍କ ପାଇଁ ଅନ୍ୟମାନେ ଲଢ଼ନ୍ତି ନା ନାହିଁ ? କିନ୍ତୁ ଫଳାଫଳର ଅଧିକାରୀ ଅଟନ୍ତି ସେଇ ଦୁଇ ରାଜଶକ୍ତି । ଯଦି ଖେଳିବା କଥା ଖେଳନ୍ତୁ । ପ୍ରତିକଥାରେ ଗୋଟାଏ 'କିନ୍ତୁ' ରଖିଲେ କାମ ଆଗେଇ ପାରିବ ନାହିଁ ।''

ଦ୍ୟୂତକ୍ରୀଡ଼ା ଆରମ୍ଭ ହେଲା । ଏକପାଖରେ ଦୁର୍ଯ୍ୟୋଧନଙ୍କର 'କା' ଶକୁନି ଓ ଅନ୍ୟ ପକ୍ଷରେ ଧର୍ମରାଜ ଯୁଧିଷ୍ଠିର । ଗଭୀର ଉତ୍କଣ୍ଠାମଧ୍ୟରେ ସମସ୍ତେ ଅପେକ୍ଷା କରିଥାନ୍ତି । ଯୁଧିଷ୍ଠିର ପ୍ରଥମେ ରତ୍ନ ଦେବାପାଇଁ ପଣକଲେ । ଶକୁନି ପଶାକାଠି ପକାଇ ଚିତ୍କାର କରି କହିଲେ, ''ମୁଁ ଜିତିଛି । ପୁଣି କଣ ପଣ ରଖୁଛନ୍ତି ରଖନ୍ତୁ । ଯୁଧିଷ୍ଠିର ନିଜର 'ରଥକୁ' ପଣ ରଖିଲେ, ଶକୁନି ପଶାକାଠି ପକାଇ ପୁଣିଥରେ ଚିତ୍କାର କରି ଉଠିଲେ.... ଜିତିଲି, ଜିତିଲି, ଏଥର ଆଉ କିଛି ବଡ଼ିଆ ପଣ ରଖାଯାଉ ।'' କୁରୁପୁତ୍ରମାନେ ଆନନ୍ଦରେ କୁରୁଳି ଉଠିଲେ ।

''ଠିକ୍ ଅଛି , ମୁଁ ଏଥର ମୋର ଆଜ୍ଞାନୁବର୍ତ୍ତିନୀ, ଚଉଷଠି କଳା ନିପୁଣା ନବ ତରୁଣୀ, ଦାସୀମାନଙ୍କୁ ବାଜି ରଖିଲି । ଶକୁନି ଆନନ୍ଦିତ ହୋଇ ପଶାକାଠିକୁ ଘଷି ଘଷି ଗୋଟାଏ ବିଦ୍ରୂପ ଚାହାଣୀ ହାଣି, ପଶାକାଠି ପକାଇଲେ ।

''ଏଥରବି ଜିତିଲି । ଧର୍ମରାଜ ଯୁଧିଷ୍ଠିର ! ଧର୍ମରକ୍ଷାପାଇଁ ନିଜର କର୍ତ୍ତବ୍ୟ ପଥରୁ ବିଚଳିତ ହୁଅନ୍ତୁ ନାହିଁ ।'' ହସିହସି କହିଲେ ଶକୁନି । ଦୁର୍ଯ୍ୟୋଧନ ହସି ହସି କହିଲେ, ''ଧର୍ମରାଜ ପଛେଇଯିବା ଲୋକ ନୁହଁନ୍ତି ।

ଏହାପରେ ଯୁଧିଷ୍ଠିର ନିଜର ଅଶ୍ୱଗଣ ଓ ସୈନ୍ୟବଳ ପଣକଲେ । କହିଲେ, ତୁମେ ଯଦି ଜିତିବ ସେସବୁ ପାଇବ । ଯଦି ହାରିଯିବ, ତା'ହେଲେ ସେତିକି ଅଶ୍ୱ ଓ ସୈନ୍ୟବଳ ସହିତ ଆମ ଧନରତ୍ନ ଫେରାଇ ଦେବ ।''

''ନିଶ୍ଚୟ ! ନିଶ୍ଚୟ ! ଏ ଖେଳ ଧର୍ମ ଉପରେଚାଲିଛି । ଆମେ ଆମ ଶପଥରୁ ଓହରିବୁ ନାହିଁ । ହେଇ..ଏଥରବି ଜିତିଲି । ଯଦି ଆଉ କିଛି ପଣ ଅଛି ରଖ, ନତୁବା ଏତିକିରେ ହାରିଯାଅ । ଖେଳ ବନ୍ଦ କରି ଦେବା ଦୃଢ଼କଣ୍ଠରେ କହିଲେ ଶକୁନି । ହଁ, ଖେଳବନ୍ଦ କରିଦେବା । ହାରିଗଲେ ବୋଲି ଧର୍ମରାଜ ପ୍ରକାଶ କରନ୍ତୁ ।

ସେତେବେଳେ ଧୃତରାଷ୍ଟ୍ରଙ୍କର ମୁହଁ ଆନନ୍ଦରେ ଉଜ୍ଜ୍ୱଳ ଦିଶୁଥାଏ । ଭୀଷ୍ମ, ଦ୍ରୋଣ, ବିଦୁର ପ୍ରଭୃତି ମନଦୁଃଖରେ ମୁହଁ ପୋତି ବସିଥାନ୍ତି । ପାଣ୍ଡବ ଭାଇମାନେ କ୍ରୋଧରେ ଲାଲ ପଡ଼ି ଗଲେଣି । ପରିସ୍ଥିତି ସଙ୍ଗିନ୍ ହୋଇ ଉଠିଲାଣି ।

ଯୁଧିଷ୍ଠିର ଅପମାନ ଓ କ୍ରୋଧରେ ଜର୍ଜରିତ ହେଲେ ମଧ୍ୟ ପ୍ରବୃତ୍ତିକୁ ପ୍ରଜ୍ୱଳିତ କରିବା ହେଉଛି ପଶାଖେଳର ରୀତି । ଥରକୁଥର ଜିତିବା ଆଶାନେଇ ମରିଚିକା ପଛରେ ଦଉଡ଼ିବା ସାରହୁଏ । ଯୁଧିଷ୍ଠିର ନିସ୍ୱ ହୋଇ ଯାଇଥିଲେ ମଧ୍ୟ ନିବୃତ୍ତ ହେଲେ ନାହିଁ । ବିଜୟ ଆଶାରେ ସେ ପୁଣି ଖେଳିଲେ । ଏଥର ନିଜର ଭାଇମାନଙ୍କୁ ପଣକଲେ; ଶେଷରେ ପରାସ୍ତ ହୋଇ ଗଭୀର ଆତ୍ମଯନ୍ତ୍ରଣା ମଧ୍ୟରେ ସ୍ଥିରକଲେ, ଭାଇମାନଙ୍କୁ ଛାଡ଼ି ସେ ଏକା ରହିପାରିବେ ନାହିଁ । ଏଥର ନିଜକୁ ପଣ କଲେ । ଭାଇମାନଙ୍କ ସହିତ ସମଦଶାପନ୍ନ ହୋଇ ରହିବା ଥିଲା ତାଙ୍କର ଲକ୍ଷ୍ୟ । ତାହାହିଁ ହେଲା । ଭାଗ୍ୟର କି ବିଚିତ୍ର ବିଡ଼ମ୍ବନା । ଏକଛତ୍ରାଧିପତି ଧର୍ମରାଜ ଯୁଧିଷ୍ଠିର, ନିଜର ଭାଇମାନଙ୍କ ସହିତ ଦୁର୍ଯ୍ୟୋଧନଙ୍କର ଏକପ୍ରକାର ଦାସାନୁଦାସ ହେବାକୁ ଯାଉଛନ୍ତି ।

ପରାଜିତ, ପରାହତ ଯୁଧିଷ୍ଠିର ଅନୁତାପର ଅଗ୍ନିରେ ଦଗ୍ଧୀଭୂତ ହେଉଥାନ୍ତି । ପାଣ୍ଡବ ଭାଇମାନଙ୍କ ମଧ୍ୟରେ କ୍ରୋଧର ସମୁଦ୍ର ଉଦ୍‌ଫଣ ହୋଇ ଉଠିଲେମଧ୍ୟ, ବିସ୍ତୃତ ବେଳାଭୂମି ପରି ବଡ଼ ଭାଇଙ୍କୁ, ଅତିକ୍ରମ କରିବାର ଧୃଷ୍ଟତା ସେମାନଙ୍କର ନଥିଲା ।

ଆନନ୍ଦରେ ଆତ୍ମହରା ଦୁର୍ଯ୍ୟୋଧନ, ମାମୁ ଶକୁନିଙ୍କର ହାତକୁ ଧରି ମୁଣ୍ଡରେ ଲଗାଇ ଦେଲେ । ମାମୁଙ୍କୁ ନିବିଡ଼ ଭାବରେ ଆଲିଙ୍ଗନ କରି କହିଲେ, ଏ ଅମୃତ ହାତଟା ଆଜି କୁରୁକୁଳକୁ ଅମୃତ ପରଷି ଦେଲା ।

ଶକୁନି ସଭାମଞ୍ଚର ମଧ୍ୟ ଭାଗକୁ ଚାଲିଆସି ଦର୍ପିତ କଣ୍ଠରେ କହିଲେ, ''ଏଇ ମୁହୂର୍ତ୍ତରୁ ପଞ୍ଚପାଣ୍ଡବ ଆମର ନିୟମତଃ ଦାସ । ଧର୍ମରାଜ ଯୁଧିଷ୍ଠିର ପଶାଖେଳର ଧର୍ମରକ୍ଷା କରିଛନ୍ତି । ମୋର ଧାରଣା ଥିଲା, ସେ କେବଳ ମାଦ୍ରୀଙ୍କର ଦୁଇପୁଅଙ୍କୁ ପଣ ରଖିବେ, ନିଜ ଭାଇ ମାନଙ୍କୁ ଏ ଦଣ୍ଡ ଦେବେନାହିଁ ।ମୋର ଆଶଙ୍କାକୁ ଅମୂଳକ ବୋଲି ସେ ପ୍ରମାଣ କରି ଦେଇଛନ୍ତି । ତେବେ ତାଙ୍କର ସାମାନ୍ୟ ବିଚାର ବିଭ୍ରାଟ ହୋଇଯାଇଛି । ନିଜକୁ ପଣ ରଖି ଭୁଲକରି ଦେଇଛନ୍ତି । ଦ୍ରୌପଦୀଙ୍କ କଥା ସେ ବିଚାରକୁ ନେଇନାହାନ୍ତି । ସମସ୍ତଙ୍କୁ ହରାଇବାପରେ, କାହାକୁ ଆଦରି ସେ ସାରା ଜୀବନ କଟେଇବେ ।''

କ୍ରୋଧ କମ୍ପିତ ଯୁଧିଷ୍ଠିର କହିଲେ, ''ମୁଁ ଏଥର ଦ୍ରୌପଦୀଙ୍କୁ ପଣ ରଖିଲି । ଖେଳ ବନ୍ଦ ହେବନାହିଁ ।

ଶିକୁନି ଉଲ୍ଲସିତ ହୋଇ କହିଲେ, ''ସାଧୁ ! ସାଧୁ ! ଯୁଧିଷ୍ଠିର । ଜୀବନର ସେଇ ଏକମାତ୍ର ବୋଝକୁ ଓହ୍ଲାଇ ପକାଇ ଲାଘବ କରିବା ଉଚିତ । ତା'ପରେ ଆପଣ ମୁକ୍ତ ହୋଇଯିବେ ରାଜ୍ୟ, ସିଂହାସନ, ସମ୍ପତ୍ତି, କ୍ଷମତା ଓ ପ୍ରଭୁତ୍ୱର ଅଯଥା ଜଞ୍ଜାଳରୁ ।''

ସଭାମଞ୍ଚରେ ବିଷାଦର ଗୁଞ୍ଜରଣ ଖେଳିଗଲା । ବୟସ୍କ ଗୁରୁଜନମାନେ ଏହାର ପ୍ରତିବାଦ କଲେ । ଭୀଷ୍ମ, ବିଦୁର, ଦ୍ରୋଣ, କୃପାଚାର୍ଯ୍ୟ ଧିକ୍କାର କଲେ । ଧୃତରାଷ୍ଟ୍ର ଅନ୍ତରର ଆବେଗ ସମ୍ଭାଳି ପାରିଲେ ନାହିଁ । ଆନନ୍ଦିତ ହୋଇ ପଚାରିଲେ, ଖେଳରେ ଆମର ଜୟହେଲା ତ ।

ଠିକ୍ ଏତିକିବେଳେ ଶକୁନି ପଶାକାଠି ଗଡ଼ାଇ ଦେଇ ଆନନ୍ଦରେ ନାଚିନାଚି କହିଲେ, ଲକ୍ଷ୍ୟ ପୂରଣ ହୋଇଗଲା । ଦୁର୍ଯ୍ୟୋଧନ, ଦୁଃଶାସନ ଧୃତରାଷ୍ଟ୍ର ପ୍ରଭୃତି ଆନନ୍ଦରେ ପାଗଳ ହୋଇ ଉଠିଲେ । ବିଦୁରଙ୍କୁ ଆଦେଶ ଦେଲେ ଦୁର୍ଯ୍ୟୋଧନ, ଦ୍ରୌପଦୀଙ୍କୁ ସଭା ସ୍ଥଳକୁ ନେଇ ଆସିବା ପାଇଁ । ବିଦୁର ଉପଦେଶ ଦେଇ ଏଥିରୁ ନିବୃତ୍ତ ହେବାକୁ ବୁଝାଇଲେ । ଧ୍ୱଂସ ପଥର ପଥିକ ଉପଦେଶର ଅମୃତ ଗ୍ରହଣ କରେନି ।

ବିଦୁର ସଭା ମଞ୍ଚରେ ଯୁକ୍ତିବାଢ଼ି କହିଲେ, ''ଯୁଧିଷ୍ଠିର ପରାସ୍ତ ହୋଇଯିବାପରେ ନିଜର ସ୍ୱାଧୀନତା ହରାଇଛନ୍ତି । ଏହା ଫଳରେ ସେ ତାଙ୍କ ଅଧିକାରରୁ ମଧ୍ୟ ବଞ୍ଚିତ । ଦ୍ରୌପଦୀଙ୍କୁ ବାଜି ରଖିବାର ଅଧିକାର ତାଙ୍କର ନାହିଁ ।'' ମୁଁ ଏ ନିର୍ଦ୍ଦେଶ ପାଳନ କରିପାରିବି ନାହିଁ ।

ଦୁର୍ଯ୍ୟୋଧନ ଗର୍ଜନ କରି କହିଲେ, ''ମୁଁ ପ୍ରଥମରୁ ଏହା ଜାଣିଥିଲି । ଜାଣିଥିଲି ଯେ, ଆପଣ ଠିକ୍ ମୁହୂର୍ତ୍ତରେ ନିଜର ରୂପ ପ୍ରକାଶ କରିବେ । ପାଣ୍ଡବମାନଙ୍କ ପ୍ରତି ଆପଣଙ୍କର ଅଯଥା ସହାନୁଭୂତି ଓ ଦରଦ କାହାକୁ ଅଜଣା ନୁହେଁ । ମୁଁ ଆପଣଙ୍କର ଦୟାର ପାତ୍ର ହେବାକୁ ଚାହେଁନାହିଁ । ପ୍ରତିକାମୀ ! ତମେ ଯାଅ । କୃଷ୍ଣାକୁ ଏଠାକୁ ନେଇ ଆସ ।

# ।। ଦ୍ରୌପଦୀଙ୍କ ଦୁର୍ଦ୍ଦଶା ।।

ସଞ୍ଜୟ ନନ୍ଦନ ସାରଥି ପ୍ରତିକାମୀ ଦ୍ରୌପଦୀଙ୍କ ପାଖରେ ପହଞ୍ଚି ଯୋଡ଼ ହସ୍ତରେ ତାଙ୍କୁ କହିଲେ, ''ଦେବି ! ଦ୍ୟୁତ କ୍ରୀଡ଼ାରେ ଧର୍ମ ନନ୍ଦନ ସବୁ ହରାଇବାପରେ ହାରି ଯାଇଛନ୍ତି । ଶେଷରେ ଆପଣଙ୍କୁ ସେ ପଣ ରଖିଥିଲେ । ଦୁର୍ଯ୍ୟୋଧନଙ୍କର ଆଦେଶ, ଆପଣ ତାଙ୍କ ଉଆସକୁ ଯାଇ ଦାସୀ ଭାବରେ ରହିବେ ଆସନ୍ତୁ ।''

ଦ୍ରୌପଦୀ ନିଜକାନକୁ ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ । ସେ କ'ଣ ଶୁଣୁଛନ୍ତି । କିଛି ସମୟ ନିରବ ରହି କହିଲେ, ''ତୁମେ ଯାଇ ଧର୍ମରାଜଙ୍କୁ ପଚାର, ସେ ନିଜକୁ ପ୍ରଥମେ ହାରିଲେ, ନା ମୋତେ ପ୍ରଥମେ ହାରିଲେ । ଉତ୍ତର ଶୁଣିସାରିବାପରେ ଉଚିତ୍ ମନେ କଲେ ମୁଁ ଯିବି । ଜଣେ ଜୁଆଡ଼ୀ, ଖେଳରେ ନିଜ ସ୍ତ୍ରୀକୁ ବାଜି ରଖିବା କାଳେକାଳେ ଶୁଣାଯାଇ ନଥିଲା ।''

ପ୍ରତିକାମୀ ଫେରି ଯାଇ ଯୁଧିଷ୍ଠିରଙ୍କୁ ଦ୍ରୌପଦୀଙ୍କର ବର୍ତ୍ତା ଦେବା ପରେ, ସେ ଗଭୀର ଦୁଃଖ ପରାଜୟ ଓ ଅପମାନ ଭିତରେ ବୁଡ଼ି ରହି ନିରୁତ୍ତର ରହିଲେ । 'ଦୁର୍ଯ୍ୟୋଧନ କହିଲେ, ''ଏହା ଏକ ନୀତିଗତ ପ୍ରଶ୍ନ । ତାଙ୍କୁ ଯାଇ କୁହ ଏ ସଭାକୁ ଆସି ଯାହା କହିବାର କହନ୍ତୁ । ଏଠାରେ ସମସ୍ତେ ଅଛନ୍ତି, ବିଚାର କରିବେ ।

ପ୍ରତିକାମୀ ଏ ସମ୍ବାଦ ଦେବାପରେ ଦ୍ରୌପଦୀ କ୍ରୋଧକମ୍ପିତ କଣ୍ଠରେ କହିଲେ, ''ଯାଅ... ତୁମେ ଫେରିଯାଅ । ପ୍ରଥମେ ସେ ସଭାରୁ ମୋ ପ୍ରଶ୍ନର ଉତ୍ତର ନେଇଆସ ।''

ସାରଥିଠାରୁ ଏହା ଶୁଣିବାପରେ ଦୁର୍ଯ୍ୟୋଧନ ନିଜର ମାନସିକ ଭାରସାମ୍ୟ ରକ୍ଷାକରି ପାରିଲେ ନାହିଁ । ପାଗଳଙ୍କ ପରି ଗର୍ଜ୍ଜନ କରି ଉଠିଲେ । ଦୁଃଶାସନକୁ ଯାଇ କହିଲେ, ''ତାଙ୍କ ଦ୍ୱାରା କିଛି ହେବନାହିଁ । ତୁମେ ଯାଅ, ଏ ସଭାକୁ ଆବଶ୍ୟକ ହେଲେ ତାଙ୍କୁ ଟାଣିଆଣ, ଅଧିଶ୍ୱରୀର ଅଭିମାନ ନିଶାଟା, ତାଙ୍କ ମୁଣ୍ଡରୁ ଖସି ନାହିଁ । ଯା...ଅ ।''

ଦୁଃଶାସନ ବୀରଦର୍ପରେ ଯାଇ ଦ୍ରୌପଦୀଙ୍କୁ କହିଲା, ''ଆଉ ବିଳମ୍ବ କାହିଁକି ? ଯୁଧିଷ୍ଠିର ପଶାଖେଳରେ ହାରିଯାଇ ଆମହାତରେ ତୁମକୁ ଅର୍ପଣ କରିଛନ୍ତି । ଅନ୍ୟାୟ ଭାବରେ ନୁହେଁ, ଧର୍ମ ନୀତିରେ ଆମେ ତୁମକୁ ଲାଭ  କରିଛୁ । ଆସ ଶୀଘ୍ର ଆସ ।''

ଦ୍ରୌପଦୀ ଭୟରେ ଦୌଡ଼ିଯାଇ ଗାନ୍ଧାରୀଙ୍କ ଆଶ୍ରୟଭିକ୍ଷା କରିବା ପୂର୍ବରୁ, ଦୁଃଶାସନ କୃଷ୍ଣାଙ୍କର କୃଷ୍ଣ କୁଂଚିତ କେଶ ପାଶକୁ ଖୁବ୍ ଜୋରରେ ଧରି ଟାଣି ଟାଣି ଆଣିଲା । ତାଙ୍କର ପ୍ରତିବାଦ ଓ ପ୍ରତିରୋଧକୁ ତିଳେମାତ୍ର ଖାତିର ନଥିଲା ଦୁଃଶାସନର  । ସତେଯେପରି ଏକ କ୍ଷୁଧିତ ସିଂହ, ଝାମ୍ପମାରି ଟେକି ନେଉଛି ଏକ ନିରୀହ କୃଷ୍ଣସାରକୁ ।

ବିପର୍ଯ୍ୟସ୍ତ ବେଶବାସ । କମ୍ପିତ କ୍ରନ୍ଦିତ କୃଷ୍ଣାଙ୍କୁ ଟାଣି ଟାଣି ନେଇ ସଭାମଞ୍ଚର ମଧ୍ୟ ଭାଗରେ ଛିଡ଼ାକରି ଦେଲା ଦୁଃଶାସନ । ଗୁରୁଜନମାନେ ସେ ଦୃଶ୍ୟ ଦେଖିପାରିଲେ ନାହିଁ । ଲଜ୍ଜା ଓ କ୍ରୋଧରେ ମୁହଁ ପୋତି ରହିଲେ ।

ଦ୍ରୌପଦୀ ଗର୍ଜ୍ଜନ କରି କହିଲେ, ''ଆପଣମାନେ କୁରୁକୁଳର ବୟସ୍କ ଗୁରୁଜନମାନେ ଏଠାରେ ବସିଛନ୍ତି । ଆପଣମାନେ ଠିକ୍ ଭାବରେ ବିଚାର କରନ୍ତୁ, ଧର୍ମପୁତ୍ରଙ୍କର ଏପ୍ରକାର ବାଜି ପକାଇବା ଅଧିକାର ଅଛି ନା ନାହିଁ । ଦୁର୍ଯ୍ୟୋଧନ ମୋତେ ଜିତିବା ପଛରେ ନୀତି ଧର୍ମ, ଔଚିତ୍ୟର ସମର୍ଥନକେତେ ରହିଛି । କୁରୁକୁଳର କୁଳବଧୂକୁ ଏହି ନିର୍ଲଜ ଦୁଃଶାସନ ସଭା ସ୍ଥଳୀରେ ଗୁରୁଜନମାନଙ୍କ ସମ୍ମୁଖରେ ଯେପରି ଅପମାନ ଦେଇଛି, ତାହା ଆପଣମାନେ ସହ୍ୟ କରିଛନ୍ତି କିପରି ? ଏ ସଂସାରରୁ ଧର୍ମ କଣ ଚାଲିଗଲା । ବୟସ୍କମାନେ କଣ ନିଜର ବଡ଼ ପଣିଆ ହରାଇଲେଣି । ସେମାନଙ୍କ କଣ ବିଚାର ବୋଧ ଓ ବୁଦ୍ଧିଭ୍ରଷ୍ଟ ହେଲାଣି । କାହିଁ କାହାରି ପାଟିରୁ ପ୍ରତିବାଦର ସ୍ୱର ବାହାରୁନାହିଁ । ଏ ନିର୍ଲଜ ଦୃଶ୍ୟ ସେମାନେ ଦେଖି ପାରୁଛନ୍ତି କିପରି ? ଏ ପାପର ପ୍ରତିବାଦ ପାଇଁ ତାଙ୍କ ଜିଭ ଲେଉଟୁ ନାହିଁ କାହିଁକି ? ମୁଁ କହିବି, ଏହା ସମସ୍ତଙ୍କର ଏକ ସୁଚିନ୍ତିତ ଆତ୍ମଘାତୀ ଷଡ଼ଯନ୍ତ୍ର । ଲଜ୍ଜାଲାଗୁନି, ଏହି ଐନ୍ଦ୍ରଜାଲିକ କପଟ ଦ୍ୟୁତକ୍ରୀଡ଼ା, ସମସ୍ତେ ବସି ଉପଭୋଗ କରୁଛନ୍ତି । କାହାରି କଣ ଜନ୍ମଦାତ୍ରୀ ମା, ସ୍ନେହ ଶୀଳା ଭଉଣୀ ଓ ପ୍ରାଣପ୍ରିୟା ସ୍ତ୍ରୀ ନାହାନ୍ତି ? ନାରୀ ଜାତିପ୍ରତି ଏ ଯେଉଁ କ୍ରୁର ଅପମାନ ଦିଆଯାଇଛି, ତାହା ସମସ୍ତେ ସହ୍ୟ କରୁଛନ୍ତି କିପରି ? ଏହା କଣ ରାଜଧର୍ମ ? ଯଦି ଏଥି ମଧ୍ୟରେ କେହି ଜଣେ ହେଲେ ହୃଦୟବାନ, ବିଚାରଶୀଳ, ଧର୍ମ୍ମପରାୟଣ ବ୍ୟକ୍ତି ଅଛନ୍ତି, ତା'ହେଲେ ମୁଁ ତାଙ୍କୁ ପ୍ରାର୍ଥନା କରୁଛି , ସେ ସୁବିଚାର ଦିଅନ୍ତୁ ।

ସମସ୍ତେ ନିର୍ବାକ ।

ଭୀମ ସହ୍ୟକରି ପାରିଲେନାହିଁ ଏଦୃଶ୍ୟ । ସଭାମଣ୍ଡକୁ ବିଦୀର୍ଣ୍ଣ କରି ବଜ୍ର କଣ୍ଠରେ କହିଲେ, ''ଜୁଆଡ଼ୀମାନେ ନିଜର ଅନୁରକ୍ତା ବେଶ୍ୟା କିମ୍ବା ରକ୍ଷିତା ସ୍ତ୍ରୀମାନଙ୍କୁ ମଧ୍ୟ ଜୁଆଖେଳରେ ପଣ ରଖନ୍ତି ନାହିଁ । ଯୁଧିଷ୍ଠିରଙ୍କ ଅବିବେକତା ପାଇଁ ଦ୍ରୌପଦୀଙ୍କୁ ଆଜି ଏ ଦୁଃଖ ଭୋଗକରିବାକୁ ହେଲା । ଧର୍ମରାଜ, ମାମୁ ଶକୁନିଙ୍କର କପଟ ଓ ଦୁର୍ଯ୍ୟୋଧନର ଚକ୍ରାନ୍ତ ଜାଲରେ ପଡ଼ି ନିଜ ସହିତ ଅନ୍ୟାମାନଙ୍କୁ ଅକଥନୀୟ ଯନ୍ତ୍ରଣା ଦେଇଛନ୍ତି । ମୁଁ ଏ କଳଙ୍କିତ କାର୍ଯ୍ୟର ପ୍ରତିଶୋଧ ନେବି । ଯୁଧିଷ୍ଠିର ଶାନ୍ତକଣ୍ଠରେ କହିଲେ, ମୁଁ ସେ ଦଣ୍ଡ ମାଗିନେଇଛି, ମୋତେ ଦିଅ ।

ଅର୍ଜ୍ଜୁନ ଭୀମଙ୍କୁ ଆଶ୍ୱାସନା ଦେଇ କହିଲେ, ''ଭାଇ ! ତୁମେ ସଂଯତ ହୁଅ । ବଡ଼ଭାଇଙ୍କୁ ଏପରି କହିବା ଉଚିତ ନୁହେଁ । ତାଙ୍କର ଦୋଷ କିଛି ନାହିଁ । ଏହା ବିଧିନିର୍ଦ୍ଦିଷ୍ଟ । ଶତ୍ରୁମାନେ ଧର୍ମରାଜଙ୍କୁ ଚକ୍ରାନ୍ତ ବ୍ୟୁହ ଭିତରେ ପକାଇ ଯେଉଁ ଦଣ୍ଡ ଦେଇଛନ୍ତି ସେ ପାପର ପରିଣାମ କୌରବମାନେ ନିଶ୍ଚୟ ଭୋଗିବେ । ଆମକୁ ଧୈର୍ଯ୍ୟରକ୍ଷାକରିବାକୁ ହେବ ।'' ଭୀମ ଶାନ୍ତ ହେଲେ ।

ପିତାମହ ଭୀଷ୍ମ କୃଷ୍ଣାଙ୍କୁ ଶାନ୍ତ କଣ୍ଠରେ କହିଲେ, ''ଦେବି ! ଏସବୁ, ସମୟ ସମାଧାନ କରିଦେବ । ଏ ଘଟଣା ଭବିତବ୍ୟର ଫଳ । ବ୍ୟସ୍ତ ହେବାର କିଛି ନାହିଁ । ଆମେ ସମସ୍ତେ ଲଜ୍ଜିତ କିନ୍ତୁ ରାଜା ଦେଶ ପାଖରେ ଆମର କରିବାର କିଛି ନାହିଁ । ଧର୍ମରାଜ କ୍ରୀଡ଼ା ଯୁଦ୍ଧରେ ହାରି ଦାସତ୍ୱ ବରଣ କରିଛନ୍ତି । ତାଙ୍କର ଅଧିକାର ସାବ୍ୟସ୍ତ କରିବା ସୁଯୋଗ ନଥିଲେ ମଧ୍ୟ, ସ୍ତ୍ରୀ ଉପରେ ସ୍ୱାମୀର ଅଧିକାରକୁ ଦାସତ୍ୱପାଇଁ ଅସ୍ୱୀକାର କରାଯାଇ ନପାରେ । ସ୍ତ୍ରୀ ସ୍ୱାମୀର ଧନ । ତେଣୁ ଯୁଧିଷ୍ଠିର ସ୍ତ୍ରୀକୁ ପଣ କରିବାରେ ନିୟମ ସଙ୍କଟ ସୃଷ୍ଟି ହୋଇନାହିଁ । ସୃଷ୍ଟି ହୋଇଛି ନୀତିସଂକଟ, ଏହା ଅତ୍ୟନ୍ତ ରୁଚି ଗର୍ହିତ ଓ ପାରିବାରିକ ତଥା ସାମାଜିକ ଶୃଙ୍ଖଳା ଦୃଷ୍ଟିରୁ ଆଦୌ କରଣୀୟ ନୁହେଁ ।''

ଧୃତରାଷ୍ଟ୍ର ନନ୍ଦନ ବିକର୍ଣ୍ଣ, ବୟସରେ କନିଷ୍ଠ ହେଲେ ମଧ୍ୟ ଦୃଢ଼ତାର ସହିତ ଅନ୍ୟାୟର ପ୍ରତିବାଦ କଲେ ! କହିଲେ, ''ରାଜବଧୂ ଦ୍ରୌପଦୀଙ୍କର ଯୁକ୍ତି ଯଥାର୍ଥ ଓ ନୀତିଗତ ପ୍ରଶ୍ନ ବିଚାର ଯୋଗ୍ୟ । ଏ ପରିସ୍ଥିତିରେ ବୟସ୍କମାନଙ୍କର ନିରବତା ତଥା ନିୟମର ଭାବ ପ୍ରବଣ ତର୍ଜମା, ଉଭୟ କ୍ଷତିକାରକ । ଦ୍ରୌପଦୀ କେବଳ ଯୁଧିଷ୍ଠିରଙ୍କର ପତ୍ନୀ ନୁହଁନ୍ତି । ତାଙ୍କ ଉପରେ ଅନ୍ୟଭାଇ ମାନଙ୍କର ସମାନ ଅଧିକାର ଥିବାରୁ ସେ ଏକା ପଣ ରଖି ପାରିବେ ନାହିଁ । ଭରତ ବଂଶର କୁଳବଧୂ ଦ୍ରୌପଦୀଙ୍କୁ ନିର୍ଲଜ ଭାବରେ ଏପରି ଟାଣି ଟାଣି ଆଣିବା ନାରୀଜାତି ପ୍ରତି ଘୋର ଅବମାନନା ଏବଂ କୁରୁକୁଳର କଳଙ୍କ । ମୁଁ ଏହାର କଠୋର ପ୍ରତିବାଦ କରୁଛି ।''

କର୍ଣ୍ଣ ଉଠି ପଡ଼ି କହିଲେ, ''ତମେ ଏକ ଅବୋଧ ବାଳକମାତ୍ର । ବୟସ୍କମାନଙ୍କ ଗହଣରେ ନୀତିକଥା ବୟାନ କରିବାର ଅଧିକାର ତୁମର ନାହିଁ । କୁରୁ ପାଣ୍ଡବ ଉଭୟ ପକ୍ଷର ସମର୍ଥନ ଯେଉଁ ବିଷୟରେ ଅଛି, ତୁମେ ସେ ବିଷୟରେ ଟୀକା ଟିପ୍ପଣୀ ଦେବାର ମାନେ କିଛି ନାହିଁ । ବର୍ତ୍ତମାନ ଦ୍ରୌପଦୀ, ନିୟମିତଃ ରାଣୀନୁହଁନ୍ତି । କୌରବ ମାନଙ୍କର ଦାସୀ । ତାଙ୍କର ଏ ରାଜକୀୟ ବେଶ ପୋଷାକ ଅଳଙ୍କାର ପ୍ରଭୃତିର ପ୍ରଭୁ ହେଉଛନ୍ତି ଦୁର୍ଯ୍ୟୋଧନ । ସେ ଚାହିଁଲେ ତାହା ମଧ୍ୟ ସେ ନେଇଯାଇ ପାରିବେ ।''

ଦୁର୍ଯ୍ୟୋଧନ ଗର୍ଜ୍ଜନ କରି କହିଲେ, ''ଦୁଃଶାସନ ! ତାଙ୍କର ଅଳଙ୍କାର ଓ ରାଜକୀୟ ବସ୍ତ୍ର ବାହାର କରି ଆଣ । ଦୁଃଶାସନ ତାଙ୍କୁ ନିରାଭରଣ କରିବାକୁ ଚେଷ୍ଟା କଲା । ଦ୍ରୌପଦୀ ପଞ୍ଚପାଣ୍ଡବଙ୍କ ଆଡ଼କୁ ବିକଳ ହୋଇ ଚାହିଁ ରହିଲେ । ପୁଣି ଚାହିଁଲେ ବ୍ୟାକୁଳତାର ସହିତ ସଭାସ୍ଥ ଗୁରୁଜନମାନଙ୍କ ଆଡ଼କୁ । ସମସ୍ତେ ମୁହଁ ପୋତି ଦେଇଥିଲେ, ସତେଯେପରି ଏ ଚରମ ନିର୍ଦ୍ଦେଶ ବିରୁଦ୍ଧରେ କାହାରି କିଛି ପ୍ରତିବାଦ କରିବାର ନାହିଁ । ଅଥବା, ନିଜର ଅସହାୟତା ସେମାନେ ପ୍ରକାଶ କରିଥିଲେ ଆଉ ଏକ ପ୍ରଚ୍ଛନ୍ନ ମହା ଦୃଶ୍ୟକୁ ରୂପ ଦେବାପାଇଁ ।

ଯାଜ୍ଞସେନୀ, ଅସହାୟର ସହାୟ ଆର୍ତ୍ତତ୍ରାଣ, ଭକ୍ତବତ୍ସଳ ପ୍ରଭୁ ଶ୍ରୀକୃଷ୍ଣଙ୍କୁ ବିକଳ ହୋଇ ପ୍ରାର୍ଥନାକଲେ । ''ହେ ପ୍ରଭୁ । ଅଗତିର ଗତି, ଶରଣରକ୍ଷକ । ନିର୍ଲଜ କୌରବଗଣ କପଟ କ୍ରୀଡ଼ାରେ ଧର୍ମ ପରାୟଣ ସରଳ ପାଣ୍ଡବମାନଙ୍କୁ ଜିଣିବା ଫଳରେ ସେମାନେ ନିର୍ବୀର୍ଯ୍ୟ ହୋଇ ବସିଛନ୍ତି । ସତେ ଅବା ମେଷ ଶାବକ । ଗୁରୁଜନମାନେ ନିଜର ଗୁରୁତା ହରାଇ କ୍ଳୀବ ପାଲଟି ଯାଇଛନ୍ତି । ପୁଣ୍ୟ ଭାରତ ବର୍ଷର ଭରତ କୁଳରେ, ଲଜ୍ଜାବତୀ ନିରପରାଧିନୀ କୁଳବଧୂକୁ ଗୁରୁଜନମାନଙ୍କ ସମକ୍ଷରେ ବିବସ୍ତ୍ରକରି ନାରୀ ଜାତିର ଇଜ୍ଜତ୍ ଲୁଣ୍ଠନ କରାଯାଉଛି । ଏ ଅନ୍ୟାୟ ତୁମେ ସହ୍ୟ କରୁଛ କିପରି ? ଏତେ ପାପୀଙ୍କୁ ତୁମେ ସଂହାର କରିଛ, ଏ ପାପ ଚକ୍ରବର୍ତ୍ତୀକୁ ସଂହାର କରିବା ପାଇଁ, ତୁମ ଚକ୍ରର ତୀକ୍ଷ୍ଣଧାର କଣ ବକ୍ର ହୋଇଯାଇଛି । କୁଳବଧୂ ତଥା ନାରୀର ଧନ ହେଉଛି ଲଜ୍ଜା । ହେ ଚକ୍ରଧର ତୁମେ ମୋର ଲଜ୍ଜା ନିବାରଣ କର, ନତୁବା ଚକ୍ରପଠାଇ ମୋତେ ସଂହାର କର ।''

ଆଖିପିଛୁଳାକେ ଆକାଶ ମାର୍ଗରୁ ବିଚିତ୍ର ପାଟ ପଟନୀ ଆସି ତାଙ୍କ ଶରୀର ବେଷ୍ଟନ କଲା । ଦୁଃଶାସନ କୁଢ଼କୁ କୁଢ଼ ବସ୍ତ୍ର କାଢ଼ି କାଢ଼ି କ୍ଳାନ୍ତ ହୋଇ ପଡ଼ିଲାଣି । ଦ୍ରୌପଦୀଙ୍କୁ ବିବସ୍ତ୍ର କରିପାରୁନାହିଁ । ଦୁର୍ଯ୍ୟୋଧନ, ଶକୁନି, କର୍ଣ୍ଣ, ତିନି ବିଷ ବୃକ୍ଷ ନିର୍ଲଜ ଭାବରେ ଚାହିଁ ଥାନ୍ତି । ଦୁଃଶାସନ ଏଥର ପାଞ୍ଚାଳୀଙ୍କୁ ତ୍ୟାଗକରି ପରାସ୍ତ ସୈନିକପରି ମୁହଁ ପୋତି ବସିଲାଣି ।

ରାଗରେ ଜର୍ଜରିତ ହୋଇ ଗଦାଧରି ଦାନ୍ତକାମୁଡ଼ି ଠିଆ ହେଲେ ଭୀମସେନ । ସଭାସଦ ମାନଙ୍କୁ ଲକ୍ଷ୍ୟକରି ବଜ୍ର କଣ୍ଠରେ ଘୋଷଣା କଲେ, ଏହା ମୋର ଚରମ ଶପଥ, ମୁଁ ଦୁଃଶାସନର ବକ୍ଷ ବିଦୀର୍ଣ୍ଣ

କରି ତାର ରକ୍ତ ଲେପରେ କୃଷ୍ଣାଙ୍କର ଏଇ ମୁକୁଳା କବରୀକୁ ବାନ୍ଧିବି । ଆପଣମାନେ ସମସ୍ତେ ମୋର ଏ ଶପଥର ସାକ୍ଷୀ ରହନ୍ତୁ । କୃଷ୍ଣାଙ୍କର ମୁକୁଳା କବରୀ ସେଇ ଚରମ ମୁହୂର୍ତ୍ତ ପର୍ଯ୍ୟନ୍ତ ଅବନ୍ଧା ରହିବ ।''

ସଭାସ୍ଥଳୀରେ ଶିହରଣ ଖେଳିଗଲା । ଭୀମଙ୍କର ଦୁର୍ବାର ପ୍ରତିଜ୍ଞା ଦିନେନାଦିନେ ନିଶ୍ଚୟ ପୂରଣ ହେବ ।

ଏତିକିବେଳେ କର୍ଣ୍ଣ, ଦୁଃଶାସନକୁ କହିଲେ, ''କୌରବ ବୀର ! ଦାସୀ ଦ୍ରୌପଦୀଙ୍କୁ ଅନ୍ତପୁରକୁ ନେଇଯାଅ । ଦୁର୍ଯ୍ୟୋଧନ ମଧ୍ୟ ସମସ୍ୱରରେ ଆଦେଶ ଦେଲେ । ଦୁଃଶାସନ ଆଖି ପିଛୁଳାକେ ପାଞ୍ଚାଳୀଙ୍କ ମୁକୁଳା କେଶ ଗୁଚ୍ଛକୁ ହାତରେ ଟାଣି ଧରି କହିଲା, ''ଦାସୀ ଦ୍ରୌପଦୀ ! ଚାଲି ଆ, ଅନ୍ତଃପୁରରେ ଥିବା କୌରବ ରାଜବଧୂମାନଙ୍କର ପଦସେବା କରିବୁ ।'' ଏହା କହି ସେ ତାଙ୍କୁ ଟାଣିବାକୁ ଆରମ୍ଭ କଲା । ଦ୍ରୌପଦୀ କାନ୍ଦିକାନ୍ଦି ଭୂଇଁରେ ଲୋଟି ଗଲେ ।

ଦୁର୍ଯ୍ୟୋଧନ ଉପହାସ କରି କହିଲେ : ଭୂଇଁରେ ଲୋଟୁଛ କାହିଁକି ସୁନ୍ଦରି । ମୁଁ ଆଜିଠାରୁ ତୁମର ପ୍ରଭୁ । ଏଥର ତୁମେ ମୋର କୋଳ ମଣ୍ଡନ କରିବ ।

ଦୁର୍ଯ୍ୟୋଧନଙ୍କୁ ଲକ୍ଷ୍ୟ କରି ଭୀମ ଗର୍ଜ୍ଜନ କରି କହିଲେ, ରେ ପାପାଚାରୀ ! ତୁ ସେଇମାହେନ୍ଦ୍ର ମୁହୂର୍ତ୍ତକୁ ଅପେକ୍ଷା କର ମୃତ୍ୟୁର କୋଳମଣ୍ଡନ ପାଇଁ । ଏଇ ଗଦା ପ୍ରହାରରେ ତୋର ଉରୁଭଙ୍ଗକରି, ତୋତେ ଯମପୁରୀକୁ ପଠାଇ ଦେବି । ଅପେକ୍ଷାକର, ଗଦାପ୍ରହାରକୁ କୋଳରେ ମଣ୍ଡନ କରି ପ୍ରୀତି ଭିକ୍ଷା କରିବୁ ।

ଠିକ୍ ଏତିକିବେଳେ,ଧୃତରାଷ୍ଟ୍ରଙ୍କ ଯଜ୍ଞଶାଳାରେ ଏକ ଗର୍ଦ୍ଦଭ ଚିତ୍କାର କଲା । ତା ସହିତ ଅନ୍ୟ ଗର୍ଦ୍ଦଭମାନେ ମିଳିତ ହୋଇ ଗର୍ଜନ କଲେ । ଭୀଷ୍ମ, ଦ୍ରୋଣ, ବିଦୁର ପ୍ରଭୃତି ଶଙ୍କାକୁଳିତ ହୋଇ ସ୍ୱସ୍ତି... ସ୍ୱସ୍ତି ଉଚ୍ଚାରଣ କଲେ । ଗାନ୍ଧାରୀ ଏହି ଅମଙ୍ଗଳ ସୂଚକ ଶବ୍ଦ ଶୁଣି ଅନ୍ତପୁରରୁ ଆସି ଧୃତରାଷ୍ଟ୍ରଙ୍କୁ ଭାବୀ ପତନର ସୂଚନା ଦେଲେ । ତତ୍ତ୍ୱବେତ୍ତା ବିଦୁର ଅଶୁଭ ସୂଚନା ବିଷୟରେ ରାଜାଙ୍କୁ ବୁଝାଇଲେ । ରାଜ ଦର୍ପର ଦେଉଳଟା ଭାଜି ପଡ଼ିଲା ।

ଧୃତରାଷ୍ଟ୍ର ଦୁର୍ଯ୍ୟୋଧନଙ୍କୁ ଧିକ୍କାରକଲେ । ଦ୍ରୌପଦୀଙ୍କୁ କହିଲେ, ''ମା ! ତୁମେ ମୋର ବୋହୂମାନଙ୍କ ମଧ୍ୟରେ ମଉଡ଼ମଣି । ତୁମେ ରାଗ ନାହିଁ । ମୋତେ ଚାହିଁ ଏଇ ନିର୍ବୋଧ ପିଲା ଗୁଡ଼ାକୁ କ୍ଷମାଦିଅ । ଯାହା ବର ମାଗିବ ମାଗ । ମୁଁ ନିଶ୍ଚୟ ତାହା ଦେବି । ଗାନ୍ଧାରୀ ଆସି ତାଙ୍କୁ ଆଲିଙ୍ଗନ କଲେ । କହିଲେ ମା ! ଏଅଘଟନ ଦୈବୀ ଦୁର୍ବିପାକ ବୋଲି ମୁଁ ମନେ କରୁଛି । ଶାନ୍ତ ହୁଅ, ସମସ୍ତଙ୍କୁ କ୍ଷମା ଦିଅ । ଆମେ ସମସ୍ତେ ଅପରାଧୀ । ରାଜା ଏବଂ ପିତାଙ୍କର ଆଶୀର୍ବାଦ ନିଅ । ମୁଁ ମୋର ଶୁଭ ଆଶୀର୍ବାଦ ଦେଉଛି ।'' ଦ୍ରୌପଦୀ ଶାନ୍ତହେଲେ । ଆବେଗ ମଥିତ କଣ୍ଠରେ କହିଲେ, '' ହେ କୁରୁପତି ! ଆପଣ ଯଦି ବଚନବଦ୍ଧ, ତାହେଲେ ଧର୍ମପୁତ୍ରଙ୍କୁ ପ୍ରଥମେ ମୁକ୍ତିଦାନ କରନ୍ତୁ । ଆପଣଙ୍କ ପୁତ୍ରମାନେ ଯେପରି ଯୁଧିଷ୍ଠିରଙ୍କୁ ଦାସ ବୋଲି ନ କହନ୍ତି ଓ ତାଙ୍କ ପୁତ୍ର ପ୍ରତିବିନ୍ଧ୍ୟକୁ କେବେ ଦାସପୁତ୍ର ବୋଲି ଅଭିହିତ ନ କରନ୍ତି, ସେଥିପାଇଁ ପ୍ରତିଶ୍ରୁତି ମଧ୍ୟ ଦିଅନ୍ତୁ ।''

ଧୃତରାଷ୍ଟ୍ର କହିଲେ, 'ମୁଁ ଏ ବର ଦାନକଲି, ତେବେ ତୁମେ ଇଚ୍ଛାନୁସାରେ ଆଉ ଏକ ବର ମାଗିପାର ।'' ଦ୍ରୌପଦୀ ସାଶ୍ରୁ ନୟନରେ କହିଲେ, ତା'ହେଲେ ଅନ୍ୟପାଣ୍ଡୁପୁତ୍ର ମାନଙ୍କୁ ଦାସତ୍ୱରୁ ମୁକ୍ତି ଦିଅନ୍ତୁ ଏବଂ ସେମାନେ ପଶାଖେଳରେ ହରାଇଥିବା ସମସ୍ତ ସମ୍ପତ୍ତି, ଦାସ ଦାସୀ, ରଥ ଏବଂ ଅସ୍ତ୍ର ସମୂହ ଫେରାଇ ଦେଇ ସମ୍ମାନ ସହିତ ଇନ୍ଦ୍ରପ୍ରସ୍ଥକୁ ଫେରିବାକୁ ନିର୍ଦ୍ଦେଶ ଦିଅନ୍ତୁ । ମୁଁ ଅନ୍ୟ କିଛି ଚାହେଁ ନାହିଁ ।

ଧୃତରାଷ୍ଟ୍ର ଆନନ୍ଦରେ ଏହିବର ପ୍ରଦାନ କଲେ । ଦ୍ରୌପଦୀଙ୍କୁ ସନ୍ତୁଷ୍ଟ କରିବାପାଇଁ ତୃତୀୟବର ମାଗିବାକୁ ରାଜା ତାଙ୍କୁ କହିଲେ । ଦ୍ରୌପଦୀ ନମ୍ରତାର ସହିତ ରାଜାନୁରୋଧ ପ୍ରତ୍ୟାଖ୍ୟାନ କଲେ ।

ଦୁର୍ଯ୍ୟୋଧନଙ୍କ ବଳରେ ବଳୀୟାନ କର୍ଣ୍ଣ, ବିଦ୍ରୂପ କରି କହିଲା, ପାଣ୍ଡବମାନେ ଏପରି ବୀର ଯେ ଶେଷରେ ସ୍ତ୍ରୀ ହିଁ ହେଲା ସେମାନଙ୍କର ରକ୍ଷାକାରିଣୀ । ବୀରତାର ପରୀକ୍ଷା ସରିଗଲା, ଆଉ ଆବଶ୍ୟକତା ନାହିଁ । ଭୀମ ଗର୍ଜନ କରି ତାଙ୍କ ଆଡ଼କୁ ମାଡ଼ିଯିବା ସମୟରେ ଯୁଧିଷ୍ଠିର ବାରଣ କରି କହିଲେ, ଗୋଟାଏ ହୀନ ସୂତ ପୁତ୍ରର କଥାରେ ବିଚଳିତ ହେବାର କିଛି ନାହିଁ । ଏହାପରେ ପାଣ୍ଡବମାନେ ରାଜା ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ପ୍ରଣାମ ଜଣାଇ ଇନ୍ଦ୍ର ପ୍ରସ୍ଥକୁ ପ୍ରତ୍ୟାବର୍ତ୍ତନ କଲେ ।

# ।। ପଶା ନିଶା ତୁଟିଲା ନାହିଁ ।।

ଇନ୍ଦ୍ରପ୍ରସ୍ଥକୁ ଫେରି ଆସିଲେ ପାଣ୍ଡବମାନେ । ସମସ୍ତଙ୍କ ଭିତରେ ସୃଷ୍ଟି ହୋଇଛି ଏକ ମନସ୍ତାତ୍ତ୍ୱିକ ଝଡ଼ । ଦ୍ରୌପଦୀ, ଅଭିମାନର ଏକ ମେଘ ଉତୁରା ଆକାଶ । ଧର୍ମରାଜଙ୍କ ମନରେ, ଝଡ଼ଶ୍ରାନ୍ତ ଶାନ୍ତ ରାଗ । ଭୀମଙ୍କ ମନଅକାଶରେ ବର୍ଷଣ ମେଘର ଗୁରୁ ଗମ୍ଭୀର ଧ୍ୱନି । ଅର୍ଜୁନ ନିଥର ନିର୍ବାକ, ଉତୁରା ଉତୁରା ଆଖି । ନକୁଳଙ୍କ ନୟନରେ ନିର୍ଜନ ଦ୍ୱୀପର ନୀରବତା । ସହଦେବ ଅତ୍ୟନ୍ତ ଗମ୍ଭୀର, ସତେ ଅବା ପ୍ରଶାନ୍ତ ସାଗରଟିଏ ।

ସେମାନଙ୍କ ବିଦାୟ ପରେ ଆରମ୍ଭ ହେଲା ପୁଣି ଚକ୍ରାନ୍ତ । ଦୁଃଶାସନ, ଭାଇ ଦୁର୍ଯ୍ୟୋଧନଙ୍କୁ କହିଲା, ''ଭାଇ ! ବାପାଙ୍କର ପାଣ୍ଡବମାନଙ୍କ ପ୍ରତି ଅଯଥା କରୁଣା, ଆମର କାଳ । ଦରମଲା ସାପକୁ ଆମେ ଛାଡ଼ି ଦେଲେ, ସେ ନିଶ୍ଚୟ ଆସି ଆମକୁ ଦଂଶନ କରିବ । ଏତେ ଅପମାନ ଲାଞ୍ଛନା ସହି ସେମାନେ କଣ ତୁନି ହୋଇ ବସିବେ । ମୁକ୍ତକେଶୀ ଦ୍ରୌପଦୀ, ସବୁବେଳେ ପ୍ରତିଶୋଧ ପାଇଁ ପାଣ୍ଡବମାନଙ୍କୁ ଉତ୍ତେଜିତ କରାଇବ । ଏତେବଡ଼ ଚକ୍ରାନ୍ତର ସଫଳତାରୁ ଆମକୁ ମିଳିଲା କ'ଣ ? ଅନ୍ଧପିତା, ଅନ୍ଧବିଶ୍ୱାସର ଶିକାର ହୋଇ ଆମର ସର୍ବନାଶ କଲେ ।''

ଦୁର୍ଯ୍ୟୋଧନ, ଶକୁନି, କର୍ଣ୍ଣ, ପୁଣିଥରେ ଗଲେ ଧୃତରାଷ୍ଟ୍ରଙ୍କ ପାଖକୁ । ପୁଣି ତାଙ୍କୁ ବୁଝାଇଲେ । ''ଆମର ଏତେବଡ଼ ସଫଳତା, ସାମାନ୍ୟ କଥାରେ ବିଫଳ ହୋଇଗଲା । ପାଣ୍ଡବଗଣ ସେମାନଙ୍କର ପରାଜୟକୁ ଅକୁଣ୍ଠଚିତ୍ତରେ ମାନି ନେଇଥିଲେ । ଆମର ଦାସତ୍ୱ ସ୍ୱୀକାର କରି ସାରିଥିଲେ । କ୍ଷତ୍ରିୟ ହୋଇ, ଗୋଟାଏ ଅନାଗତ ଅଯଥା ଭୟକୁ ମୁଣ୍ଡରେ ପୂରାଇ, ଯାହାସବୁ ମିଳିଥିଲା ତାକୁ ଗୋଡ଼ରେ ଆଡ଼େଇ ଦେବାକୁ ହେଲା । ମାଡ଼ଖିଆ ସାପ, କେବେହେଲେ ଆପଣଙ୍କ ଦୟାପାଇଁ କୃତଜ୍ଞ ରହିପାରିବନାହିଁ । ଯୁଧିଷ୍ଠିର ତ ରାଜଚକ୍ରବର୍ତ୍ତୀ ହୋଇ ସାରିଛନ୍ତି । ସବୁ ଶକ୍ତି ତାଙ୍କ ସପକ୍ଷରେ । ଯୁଦ୍ଧରେ ସେମାନଙ୍କୁ କେବେହେଲେ ପରାସ୍ତ କରାଯାଇ ପାରିବନାହିଁ । ମାମୁଙ୍କ କୌଶଳ ତା'ର କରାମତି ଦେଖାଇ ଥିଲା । ଆପଣ ଅନାବଶ୍ୟକ କରୁଣା ଦେଖାଇ, ତାକୁ ବିଫଳ କରିଦେଲେ । ମୋର ଏବଂ ଦୁଃଶାସନର ଦୁରବସ୍ଥା କଥା କେବେ ଚିନ୍ତା କରିଛନ୍ତି କି ? ଆପଣଙ୍କ ବିଚାର ବିଭ୍ରାଟ ହିଁ ଆମ ବିପତ୍ତିର କାରଣ ହେବ । ଭୀମର ଭୀଷଣ ପ୍ରତିଜ୍ଞା ବେଦିରେ, ଆମଦୁହିଁଙ୍କୁ ବଳିଦେବା ବୋଧହୁଏ ଆପଣଙ୍କର ଇଚ୍ଛା ।''

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ଧୃତରାଷ୍ଟ୍ର ବ୍ୟଥିତ କଣ୍ଠରେ କହିଲେ, ''ପୁତ୍ର ଦୁର୍ଯ୍ୟୋଧନ ! ତୁମେ ମୋର ପ୍ରାଣର ପ୍ରାଣ ଏପ୍ରକାର ଅମଙ୍ଗଳ ଚିନ୍ତା କରିବା ଉଚିତ୍ ନୁହେଁ । ଯୁଧିଷ୍ଠିର ଧର୍ମ ପରାୟଣ ଓ ସେ ନିଶ୍ଚୟ ଉପକାର ପାଇଁ କୃତଜ୍ଞ ରହିବେ ।''

''ତେବେ ନାରୀର କ୍ରୋଧାଗ୍ନିକୁ ଇନ୍ଦ୍ରଦେବ କିମ୍ବା ବରୁଣ ଦେବ ଶାନ୍ତକରି ପାରି ନାହାନ୍ତି । ରାଜନ୍ ! ଦ୍ରୌପଦୀ ଆମ କୁଳ କ୍ଷୟର କାରଣ ହେବ । ମୋ ମତରେ ଆମେ ପୁଣି ଥରେ ପଶାଖେଳ ବ୍ୟବସ୍ଥା କରିବା । ଯେ ହାରିବ ସେ ବାରବର୍ଷପାଇଁ ନିର୍ବାସନ ଦଣ୍ଡ ଭୋଗକରିବ । ଏହା ସହିତ ଏକବର୍ଷ ଅଜ୍ଞାତବାସ । କେବଳ ଏତିକି ସର୍ତ୍ତ...କୌଣସି ପଣର ପ୍ରଶ୍ନ ଉଠିବନି । ଏହାଠାରୁ ବଳି କୋହଳ ସର୍ତ୍ତ ଆଉକିଛି ନାହିଁ । ଆମେ ଆମପାଇଁ ପ୍ରସ୍ତୁତ ଅଛୁ ।''

ଧୃତରାଷ୍ଟ୍ର କହିଲେ, ''ବତ୍ସ ! ସଭାଭିତରେ ଦ୍ରୌପଦୀଙ୍କୁ ଯେଉଁ ପ୍ରକାରର ଲାଞ୍ଛନା ଦେଲ, ତାହା ରାଜୋଚିତ କିମ୍ବା ମଣିଷ ପଣିଆର ଚିହ୍ନ ନୁହେଁ । ମୁଁ ସେମାନଙ୍କୁ ବୋଧବାଧକରି ଶାନ୍ତି ସ୍ଥାପନ କରିଛି । ସେମାନେ ଆମର କିଛି କ୍ଷତି କରିନାହାନ୍ତି । ଅଯଥା ସୁଯୋଗ ମଧ୍ୟ ଗ୍ରହଣ କରିନାହାନ୍ତି । ତୁମେ ପୁଣି ଥରେ ପଶାଖେଳ କରାଇ, ଅଶାନ୍ତି ସୃଷ୍ଟି କରିବା ଭଲ କାମ ହେବନାହିଁ । ପ୍ରଜାମାନଙ୍କ ପାଖରେ ତୁମର ଭାବମୂର୍ତ୍ତି ନଷ୍ଟହେବ । ପାଣ୍ଡବମାନେ ଯେଉଁ ପରାଭବ ପାଇଛନ୍ତି ପୁଣିଥରେ ପଶାଖେଳ୍‌କୁ ଆସିବେ ନାହିଁ ।''

ଦୁର୍ଯ୍ୟୋଧନ କହିଲେ, ''ହେ ପିତା ! ଏହା ଏକ ଅବାସ୍ତବ ଆଶଙ୍କା । ଜୁଆଡ଼ୀ ଜୁଆ ଖେଳିବନି ? ନିଶ୍ଚୟ ଖେଳିବ । ଯୁଧିଷ୍ଠିର ଜୁଆଖେଳ ପାଇଁ ନିମନ୍ତ୍ରଣ ପାଇଲେ, ଅତୀତକୁ ପୂରା ପାସୋରି ଦେବେ । ମୋ କଥା ଶେଷଥର ପାଇଁ ରକ୍ଷା କରନ୍ତୁ । ପ୍ରସ୍ତାବ ଗ୍ରହଣ କରି ଦୂତ ପଠାନ୍ତୁ । ସେମାନେ ବେଶି ବାଟ ଯାଇନଥିବେ । ତାଙ୍କୁ କୁହାଯିବ ଏଥର ନୂଆ କାଠିରେ ଖେଳ ହେବ ।

ରାଜାଧୃତରାଷ୍ଟ୍ର, ପୁତ୍ର ଦୁର୍ଯ୍ୟୋଧନର ଚାପାରେ ଅତିଷ୍ଠ ହୋଇ ଶେଷରେ ସମ୍ମତ ହେଲେ । ଅନ୍ୟମାନଙ୍କ ମତାମତର ମୂଲ୍ୟ କିଛି ରହିଲା ନାହିଁ । ଦ୍ୱିତୀୟବାର ଦ୍ୟୂତକ୍ରୀଡ଼ାପାଇଁ ନିମନ୍ତ୍ରଣ ପଠାଗଲା ।

ଯୁଧିଷ୍ଠିର ନିମନ୍ତ୍ରଣ ପାଇ କଣ କରିବେ କିଛି ଭାବି ପାରିଲେ ନାହିଁ । ପରାଜୟର ପରାଭବ କ୍ଷତ ଏବେବି ଲିଭିନି । ଧୃତରାଷ୍ଟ୍ରଙ୍କ ପରି ଜଣେ ଅନ୍ଧରାଜାର ଦୟାକୁ ପାଥେୟ କରି ସେ ଇନ୍ଦ୍ରପ୍ରସ୍ଥକୁ ଫେରୁଛନ୍ତି । କ୍ଷତ୍ରିୟ ପଣରେ, ନିଜ ପୌରୁଷ ବଳରେ, ଦୁର୍ଭାଗ୍ୟର ଦୂରୀକରଣ ହୋଇ ପାରିଲାନାହିଁ । ବରଂ ଏହା ସମ୍ଭବ ହେଲା, କୃଷ୍ଣାଙ୍କ ପରି ଜଣେ ଅସାମାନ୍ୟା ନାରୀଙ୍କର ପ୍ରଚଣ୍ଡ ନାରୀତ୍ୱ ବଳରେ । ଭୀମ ଓ ଅର୍ଜୁନ ପ୍ରଭୃତି ଭାଇମାନେ ଏହି ବିଚାର ବିମର୍ଶରେ ଯୋଗଦେଲେ । ସବୁ ଭାଇ ଏକ ମତ ହେଲେ ଯେ ଦ୍ୱିତୀୟ ଥରପାଇଁ ପଶାଖେଳ ସେମାନେ ଖେଳିବେ । ଯଦି ଜିତିବେ, ତେବେ ପୂର୍ବ ପରାଭବର ପ୍ରତିଶୋଧ ନିଆଯାଇ ପାରିବ, ଯଦି ହାରିବେ, ତେବେ ଯୁଦ୍ଧର ଆଶ୍ରୟ ନେଇ ପରିସ୍ଥିତିର ମୁକାବିଲା କରିବାକୁ ସୁଯୋଗ ମିଳିବ । ହାରିବା ଜିତିବାପାଇଁ ଏ ଥର ବ୍ୟସ୍ତ ହେବାର କିଛି ନାହିଁ । ବାଜିହୀନ ଖେଳ ନିଶ୍ଚୟ ବିଜୟ ହେବ । ବିଫଳ ହେଲେ ସର୍ତ୍ତର ସମୀକ୍ଷାକରାଯିବ ।

ଭାଗ୍ୟହିଁ ବଳବାନ୍ । ଭାଗ୍ୟ ମଣିଷର ବିଚାର ବୁଦ୍ଧିକୁ ପ୍ରଭାବିତ କରିଥାଏ । ପଶାଖେଳର ଏତେ ପରାଭବ, ଯୁଧିଷ୍ଠିରଙ୍କର ଜ୍ଞାନ ଉଦୟ କରି ପାରିଲା ନାହିଁ । ଅବିଚାରୀ ମଣିଷ ଅନ୍ଧ । ଭାଗ୍ୟ ତାକୁ ବାଟ କଢ଼ାଏ । ଶ୍ରୀରାମଚନ୍ଦ୍ର ନିଜର ଭାଗ୍ୟ ଦୋଷରୁ ସ୍ୱର୍ଣ୍ଣ ମୃଗ ପଛରେ ଦଉଡ଼ି ଦୁର୍ଯୋଗର ଅନ୍ଧକାରକୁ ଆମନ୍ତ୍ରଣ କରିଥିଲେ । ଯୁଧିଷ୍ଠିରଙ୍କ କ୍ଷେତ୍ରରେ ତାହାହିଁ ହେଲା । ସେ ନିମନ୍ତ୍ରଣ ରକ୍ଷା କରି ସମସ୍ତଙ୍କ ଗହଣରେ

ହସ୍ତିନାପୁରକୁ ପୁଣିଥରେ ପ୍ରତ୍ୟାବର୍ତ୍ତନ କଲେ । ଯାହା କାନରେ ଏ ସମ୍ବାଦ ପଡ଼ିଲା, ସେ ସ୍ତମ୍ଭୀଭୂତ ହୋଇଗଲା । ପଶାନିଶା ମଣିଷକୁ କ'ଣ ନକରେ । ଧର୍ମରାଜ ମଧ୍ୟ ନିଶାଭୋଳରେ ଧର୍ମ ଛାଡ଼ିଲେ । ପାଣ୍ଡବ ଭାଇମାନେ ମଧ୍ୟ ସମର୍ଥନ କଲେ । ଦ୍ରୌପଦୀ ମଧ୍ୟ ତାଙ୍କୁ ନିବୃତ୍ତ କରିପାରିଲେନାହିଁ । ଧନ୍ୟ ରାଜମନ । ଧନ୍ୟ ବିଧାତା ।

ଦୁର୍ଯ୍ୟୋଧନଙ୍କର 'କା ଶକୁନି ପଶାଖେଳର ପ୍ରତିନିଧି । ଖେଳ ଆରମ୍ଭ ପୂର୍ବରୁ ସଭାଗୃହରେ ସେ ଧୃତରାଷ୍ଟ୍ରଙ୍କୁ କହିଲେ, ''ହେ ରାଜନ ! ନୂତନ ଖେଳଟି ସ୍ୱଇଚ୍ଛାରେ ହେବ । ବାଧ୍ୟ ବାଧକତାରପ୍ରଶ୍ନ ନାହିଁ । ଆଜି ଖେଳରେ ଯେ ପରାସ୍ତ ହେବ ସେ ବାର ବର୍ଷ ବନବାସ ପାଇଁ ଚାଲିଯିବ । ଏହାପରେ ତାକୁ ଏକବର୍ଷ ଅଜ୍ଞାତ ବାସ କରିବାକୁ ହେବ । ଅଜ୍ଞାତବାସ ସମୟରେ ଧରାପଡ଼ିଲେ, ପୁଣି ବାରବର୍ଷ ବନବାସ ପୁନରାବୃତ୍ତି ହେବ । ଏ ସର୍ତ୍ତ କୁରୁରାଜ ଏବଂ ଧର୍ମରାଜ ଅନୁମୋଦନ କଲେ ପଶାଖେଳ ଆରମ୍ଭ ହେବ ।''

ରାଜା ଧୃତରାଷ୍ଟ୍ର ଏଥିରେ ସମ୍ମତି ହେଲେ । ଧର୍ମରାଜ ଯୁଧିଷ୍ଠିର ମଧ୍ୟ ଏକମତ ହେଲେ । ପଶାଖେଳ ଆରମ୍ଭ ହେଲା । ବିଧିର ବିଡ଼ମ୍ବନା, ବିଧାତା ବକ୍ରହେଲେ ଭାଗ୍ୟ ବକ୍ରହୁଏ । ଧର୍ମ ରାଜ ପଶାଖେଳରେ ପୁଣି ହାରିଗଲେ ।

ଏକ ବିକଟାଳ ଅଟ୍ଟହାସ ତୋଳି ଉଲ୍ଲସିତ ହୋଇ ଉଠିଲେ ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନି, ଓ କର୍ଣ୍ଣ । ପାଣ୍ଡବମାନେ କଷାୟ ବସ୍ତ୍ର ପରିଧାନ କରି ରାଜ୍ୟଭାର ଧୃତରାଷ୍ଟ୍ରଙ୍କୁ ଅର୍ପଣକରି ବନବାସ ପାଇଁ ପ୍ରସ୍ତୁତ ହୋଇଗଲେ । ଫେରିବା ପରେ ସେମାନେ ପୁଣି ନିଜରାଜ୍ୟରେ ରାଜପଣ କରିବେ । ଏହାହିଁ ଥିଲା ଉଭୟ ପକ୍ଷର ବୁଝାମଣା । ସାଥିରେ ଗଲେ ଦ୍ରୌପଦୀ ଓ କୁଳ ଗୁରୁ ଧୌମ୍ୟ । କୁନ୍ତୀଙ୍କୁ ବନକୁ ଯିବାକୁ ବୟସ ଦୃଷ୍ଟିରୁ ବାରଣ କରାଗଲା । ସେ ବିଦୁରଙ୍କ ଘରେ ରହିଲେ । ସର୍ତ୍ତର ସମୀକ୍ଷା ହେଲାନାହିଁ । ସୁନା ପିଲାପରି ପାଣ୍ଡବମାନେ ସର୍ତ୍ତଟିକୁ ମାନିଗଲେ । ଅବଶ୍ୟ ବନ ଜୀବନ ସହିତ ଅଭ୍ୟସ୍ତ ପାଣ୍ଡବମାନଙ୍କର ବନମୁଖୀ ମନ ବିଚଳିତ ହେଲାନାହିଁ । ଦ୍ରୌପଦୀ ଗାନ୍ଧାରୀଙ୍କ ପାଖକୁ ଯାଇ ପ୍ରଣାମ କଲେ । କାନ୍ଦି କାନ୍ଦି ବିଦାୟ ମାଗିଲେ । ଗାନ୍ଧାରୀ ମାତୃତ୍ୱର ଏକପୂର୍ଣ୍ଣକୁମ୍ଭ । ଦ୍ରୌପଦୀଙ୍କ ସ୍ପର୍ଶରେ ତରଳିଗଲେ । ଶୋକଉଚ୍ଛ୍ୱଳ ଆଲିଙ୍ଗନ ଭିତରେ ଶିର ଚୁମ୍ବନ କରି କହିଲେ, ମା ! ଅବିବେକୀମାନଙ୍କୁ କ୍ଷମା ଦେବ । ମନ ଶାନ୍ତ ରଖିବ । କୁରୁକୁଳ ତାର ପୁତ୍ର ବଧୂକୁ ରାଜପୁରୀରେ ରଖି ପାରିଲାନି । ପ୍ରକୃତିରାଣୀ କୋଳେଇ ନେଲା । ଯା...ଅ... ।''

ଦୁର୍ଯ୍ୟୋଧନଙ୍କ ସ୍ତ୍ରୀ ଭାନୁମତୀ ହସି ହସି ଆସିପହଞ୍ଚିଗଲେ । କହିଲେ, ''ବାଳକୁ ମୁକୁଳା କରି କଣ ଯାତ୍ରା କରନ୍ତି । ବେଣୀ ବାନ୍ଧି ଦିଅ ।'' କଟାଘାରେ ଚୂନ ଲାଗିଲାପରି ଦ୍ରୌପଦୀ ଯନ୍ତ୍ରଣା ଅନୁଭବ କଲେ । ଉଦ୍‌ଫଣ ସର୍ପିଣୀ ପରି ଗର୍ଜନ କରି କହିଲେ, ''ତମ ବେଣୀ ମୁକୁଳା ନ କରିବା ପର୍ଯ୍ୟନ୍ତ, ମୋ ବେଣୀ କଣ ବନ୍ଧା ହୋଇ ପାରିବ !''

ଯୁଧିଷ୍ଠିର ଓ ପାଣ୍ଡବ ଭାଇମାନେ, ପିତାମହ ଭୀଷ୍ମ, ବିଦୁର, ଦ୍ରୋଣ, କୃପାଚାର୍ଯ୍ୟ, କୁନ୍ତୀ ଓ ଗାନ୍ଧାରୀଙ୍କୁ ପ୍ରଣାମ ଜଣାଇ ବିଦାୟ ଯାତ୍ରା ଆରମ୍ଭ କଲେ । ଚାରିଆଡ଼େ ଖେଳିଗଲା ବିଳାପର ବନ୍ୟା । ନଗରବାସୀ ଅଶ୍ରୁପୂର୍ଣ୍ଣ ନୟନରେ ବିଦାୟ ଦେଲେ । ମଣିଷର ଦର୍ପିତ ଅହଂକାର, କଳୁଷିତ କାମନା ଏବଂ ଏପ୍ରକାର କୁତ୍ସିତ କାମକୁ, ବୋଧହୁଏ ସୂର୍ଯ୍ୟ ଦେବ ପସନ୍ଦ କରି ପାରିଲେ ନାହିଁ । ପାଣ୍ଡବମାନଙ୍କର ବନଯାତ୍ରା ବେଳେ ମେଘ ମାଳାଭିତରେ ମୁହଁ ଲୁଚାଇଲେ । ପବନ ପ୍ରତିବାଦ କରି ପ୍ରଭଞ୍ଜନରେ ପରିଣତ ହେଲା । ପକ୍ଷୀମାନେ

ଚିଁ ଚିଁ କରି ଆକାଶରେ ଚକ୍କରି କାଟିଲେ । କୁକୁର, ବିଲୁଆ, ଗଧ, ବିଲେଇ ଚିତ୍କାର କଲେ । ଅଶୁଭ ସୂଚନା ସବୁ ଦେଖାଗଲା । ତଥାପି ତା'ଭିତରେ ଆରମ୍ଭ ହେଲା ବନଯାତ୍ରାର ଶୁଭାରମ୍ଭ ।

ଧୃତରାଷ୍ଟ୍ର ଗଭୀର ମର୍ମଦାହ ଏବଂ ଅବ୍ୟକ୍ତ ଆଶଙ୍କାଭିତରେ ଶିହରି ଉଠିଲେ । ତାପରେ ସେ ବିଦୁରଙ୍କୁ ଡାକି କହିଲେ , ''ଏସବୁ କ'ଣ ଘଟୁଛି ? । ପାଣ୍ଡବମାନଙ୍କ ବନ ଗମନର ବିଶଦ ବିବରଣୀ ମୋତେ ଦିଅ ।''

ବିଦୁର କହିଲେ, ''ସାରାନଗରର ଲୋକମାନେ ପାଣ୍ଡବମାନଙ୍କ ବନଗମନକୁ ଏକ ଷଡ଼ଯନ୍ତ୍ର ବୋଲି କହୁଛନ୍ତି । କୌରବମାନଙ୍କୁ ଭର୍ତ୍ସନା କରୁଛନ୍ତି । ଆପଣ ସମସ୍ତଙ୍କ ଦ୍ୱାରା ବର୍ତ୍ତମାନ ନିନ୍ଦିତ । କ୍ରୋଧରେ କାହାକୁ ଚାହିଁଲେ, ସେ ଭସ୍ମ ହୋଇଯିବ ବୋଲି, ଯୁଧିଷ୍ଠିର ନିଜର ମୁହଁକୁ ଘୋଡ଼ାଇ ଚାଲିଛନ୍ତି । ଦ୍ରୌପଦୀଙ୍କ ବାଳ ମୁକୁଳା ଅଛି । ଭୀମ ଗଦା ଉପରକୁ ଟେକି ପ୍ରତିଶୋଧର ସୂଚନା ଦେଇଛନ୍ତି । ଅର୍ଜୁନ ଚଲାବାଟରେ ବାଲି ଉଡ଼ାଇ ଉଡ଼ାଇ ଯାଉଛନ୍ତି । କୁରୁକୁଳ ଧ୍ୱଂସ କରିବାକୁ ଏହା ତାଙ୍କର ସୂଚନା । ନକୁଳ ସହଦେବ, ସବୁ ଦୁର୍ଗତିର କାରଣ ଓ ଖଳବିଦ୍ୟାରେ ନିପୁଣ ଶକୁନିଙ୍କ ଉପରେ, ପ୍ରତିଶୋଧ ନେବାକୁ ପଣକରିଛନ୍ତି । ଧୌମ୍ୟ କୌରବ ବଂଶନାଶପାଇଁ ମନ୍ତ୍ରପାଠ କରିକରି ଯାତ୍ରା କରୁଛନ୍ତି । ଏହାହିଁ ପାଣ୍ଡବମାନଙ୍କ ବିଦାୟ କାଳୀନ ମାର୍ମିକ ଚିତ୍ର ।''

ଧୃତରାଷ୍ଟ୍ର ବିକଳ ହୋଇ କହିଲେ, ''ବିଦୁର ' ତୁମେ ଯାଇ ସେମାନଙ୍କୁ ବନପ୍ରଦେଶରୁ ଫେରାଇଆଣ । ଅବସ୍ଥାର ପରିବର୍ତ୍ତନ ହେଉ । ବିଦୁର କହିଲେ, ''ହେ ରାଜନ୍ ! ମୋ କଥାରକିଛି ମୂଲ୍ୟ ରହିବନାହିଁ । ଆପଣ ନିଜେ ଯାଆନ୍ତୁ ଧର୍ମପୁତ୍ରଙ୍କୁ ବୁଝାଇ ତାଙ୍କ ରାଜ୍ୟ ତାଙ୍କୁ ଫେରାଇ ଦେଇ ପୂର୍ବର ସ୍ଥିତାବସ୍ଥା ବଜାୟ ରଖନ୍ତୁ । ହୁଏତ ଯୁଧିଷ୍ଠିରଙ୍କର ମନ ପରିବର୍ତ୍ତନ ହୋଇପାରେ । ଧୃତରାଷ୍ଟ୍ର ରାଗିଯାଇ କହିଲେ, ତୁମେ ସର୍ବଦା ପାଣ୍ଡବମାନଙ୍କ ସପକ୍ଷରେ କହୁଛ । ତୁମକୁ ଏସବୁ କହି ଲାଭ କ'ଣ ? ତୁମେ ମୋ ସାମନାରୁ ଚାଲିଯାଅ ।''

ଯୁବରାଜ ଦୁର୍ଯ୍ୟୋଧନ, ଦ୍ରୋଣଙ୍କ ପାଖକୁ ଯାଇ ପ୍ରଣାମ ଜଣାଇଲେ । କହିଲେ, ''ଗୁରୁଦେବ ଆପଣ ଦୟାକରି ଇନ୍ଦ୍ରପ୍ରସ୍ଥର ଶାସନ କାର୍ଯ୍ୟରେ ମୋତେ ସାହାଯ୍ୟ କରନ୍ତୁ । ବସ୍ତୁତଃ ଶାସନ ଦାୟିତ୍ୱ ରହିବ ଆପଣଙ୍କ ହାତରେ । ବିପଦ ଆପଦରେ ଆପଣ ଆମର ଅବଲମ୍ବନ । ଆମେ ଯେପରି ଆପଣଙ୍କର ସାହାଯ୍ୟ ସହଯୋଗ ଓ ଆଶୀର୍ବାଦରୁ ବଂଚିତ ନହେଉ । ମହାରାଜା ମୋତେ ଇନ୍ଦ୍ରପ୍ରସ୍ଥର ଶାସନଭାର ଅର୍ପଣ କରିଛନ୍ତି ।''

ଦ୍ରୋଣାଚାର୍ଯ୍ୟ କହିଲେ, ''ବତ୍ସ ଦୁର୍ଯ୍ୟୋଧନ ! ପାଣ୍ଡବ ଓ କୌରବ, ଦୁଇଟି ଆଖି ଉଭୟେ ମୋ ପାଇଁ ସମାନ ଭାବରେ ପ୍ରିୟ । ପାଣ୍ଡବମାନଙ୍କ ପ୍ରତି ଯେଉଁ ଅନ୍ୟାୟ କରାଗଲା ତାହାର ପରିଣତି ନିଶ୍ଚୟ ଯୁଦ୍ଧ । ତେବେ ଯାହା ହେଉନା କାହିଁକି ଭୀଷ୍ମ ହସ୍ତିନାପୁରର ରକ୍ଷକ, ସେ ତୁମ ପକ୍ଷରେ ରହିବେ । ମୁଁ ତୁମର ଅନ୍ନରେ ପ୍ରତିପାଳିତ, ମୁଁ ମଧ୍ୟ ତୁମ ପକ୍ଷରେ ନିଶ୍ଚୟ ରହିବି । କିନ୍ତୁ ମନେ ରଖିବାକୁ ହେବ, ଯେ ଯେଉଁ ପାଖରେ ରହନ୍ତୁନା କାହିଁକି ପାଣ୍ଡବମାନଙ୍କ ପକ୍ଷରେ ରହିଛି ଧର୍ମ ଓ ନ୍ୟାୟ । ସେମାନେ ଦେବ ଅଂଶରେ ଜାତ, ତାଙ୍କୁ ଜୟକରିବା ସହଜ କଥା ନୁହେଁ । ମୋର ଉପଦେଶ, ଅତୀତର ସମସ୍ତ ଭୁଲ ଭଟାକୁ ସଂଶୋଧନ କରିନେଇ ଧର୍ମ ପୁତ୍ରଙ୍କ ସହିତ ସଦ୍ଭାବ ସ୍ଥାପନ କର, ଫଳରେ ଶାନ୍ତିରେ ରାଜପଣ କରିବ । ଶକୁନି ଓ କର୍ଣ୍ଣ ଦୁଇଟି ବାଲିସ୍ତୂପ । ସେ ଶକ୍ତି ଉପରେ ଭରସା ରଖି ଭବିଷ୍ୟତରେ ରାଜ ତଂତ୍ରକୁ ପ୍ରତିଷ୍ଠା କରାଯାଇ ପାରିବ ନାହିଁ । ସାମାନ୍ୟ ବର୍ଷାରେ ସେ ବାଲି ସ୍ତୂପ ଭୁଶୁଡ଼ି ପଡ଼ିବ ।''

ଦୁର୍ଯ୍ୟୋଧନ କିଛି ନ କହିଲେ ମଧ୍ୟ ଏ ଉପଦେଶକୁ ଅବାନ୍ତର ବୋଲି ଉପେକ୍ଷା କଲେ । ତାଙ୍କର ଏକମାତ୍ର ଆନନ୍ଦ ଦ୍ରୋଣାଚାର୍ଯ୍ୟ ତାଙ୍କ ପକ୍ଷରେ ସବୁବେଳେ ରହିବେ ।

ଆଠ

## ।। ପାଣ୍ଡବମାନେ ବଣକୁ ଗଲେ ।।

ପ୍ରତିଶ୍ରୁତି ପାଳନ କରି ପାଣ୍ଡବମାନେ ବଣକୁ ଗଲେ । ତାଙ୍କର ବନଗମନ ଦୃଶ୍ୟ ଅତ୍ୟନ୍ତ ହୃଦୟ ବିଦାରକ । ଉଦ୍‌ବେଳିତ ଜନସମୁଦ୍ର ମଧ୍ୟରେ କାରୁଣ୍ୟର ତରଙ୍ଗ । ଆବେଗାକୁଳିତ କଣ୍ଠରେ ସମସ୍ତେ କହୁଥାନ୍ତି, ''ହେ ବିଧାତା ! ତୁମର ବିଚାର କ'ଣ ଏଇଆ । ଧର୍ମପୁତ୍ର ଧର୍ମରକ୍ଷା କରିବାକୁ ଯାଇ ବନଚାରୀ ହେଲେ ଅଥଚ ଅନ୍ୟାୟ ଓ ଅନୀତିର ପୁରୋହିତ କୌରମାନେ ହେଲେ ଇନ୍ଦ୍ରପ୍ରସ୍ଥର ଭାଗ୍ୟବିଧାତା । ଆମ ପ୍ରଜାମାନଙ୍କ ଭାଗ୍ୟରେ କଣ ଏଇଆଥିଲା । ଶାସ୍ତ୍ର କହେ, ମହାନ୍ ଲୋକମାନେ କହନ୍ତି, ସଂସାରରେ ଧର୍ମ ଅଛି । ଧର୍ମପାଇଁ ଏ ସଂସାର ଚଳୁଛି । ଏଇଆ କ'ଣ ଧର୍ମର ରୂପ !''

ଯୁଧିଷ୍ଠିର ଲୋକମାନଙ୍କୁ ବୁଝାଉଥାନ୍ତି, ''ଧର୍ମ ଉପରେ ବିଶ୍ୱାସ ରଖ । ଏ ସଂସାର ଧର୍ମର ସଂସାର । ଧର୍ମର ବିଜୟ ସବୁକାଳେ ସବୁବେଳେ ହୋଇଥାଏ । ସାମୟିକ ପରାଜୟ ବିଜୟ ପଥକୁ ସୁଦୃଢ଼ କରେ ।''

''ନାଁ... ଆମେ ଆପଣଙ୍କୁ ଛାଡ଼ିବୁନାହିଁ । ପ୍ରାଣକୁ ଛାଡ଼ି ପିଣ୍ଡ କେବେ କଣ ଅଲଗା ରହିପାରେ । କାୟାକୁ ଆଡ଼େଇ ଦେଇ ଛାୟା କ'ଣ କେବେ ସମ୍ଭବ ହୁଏ । ପିତାମାତାଙ୍କୁ ଛାଡ଼ି ଶିଶୁ ସନ୍ତାନ କ'ଣ ବଞ୍ଚି ପାରିବେ ? ଆମେ ଆପଣଙ୍କୁ ଛାଡ଼ି ରହିପାରିବୁ ନାହିଁ । ଆପଣଙ୍କ ସହିତ ବଣକୁ ଯିବୁ । ଆପଣ ଦୟାକରି ଆମକୁ ସାଥିରେ ନିଅନ୍ତୁ । ଶୂନ୍ୟ ପୁରୀକୁ ନେଇ ସମ୍ରାଟ ହୁଅନ୍ତୁ କୌରବମାନେ ।

ରାଜ୍ୟବାସୀଙ୍କର ଆନ୍ତରିକ ଶ୍ରଦ୍ଧା ଓ ଶୁଭେଚ୍ଛାରେ ବିହ୍ୱଳ ହୋଇ ଉଠିଲେ ଧର୍ମପୁତ୍ର । ସେମାନଙ୍କୁ ବୁଝାଇ କହିଲେ, ''ଏତେ ସ୍ନେହ ଆଦରରୁ ବଞ୍ଚିତ ହୋଇ ଆମେ ଯାଉଛୁ । ସତରେ ଆମେ ସମସ୍ତଙ୍କ ଠାରେ ଋଣୀ । ସମସ୍ତଙ୍କୁ ନେଇତ ବଣକୁ ଯାଇ ହେବନି । ରାଜାପ୍ରଜା ଏକାଠି ରହିଲେ ବଣତ ନଗର ପାଲଟିଯିବ । ବନବାସ ଦଣ୍ଡର ମୂଲ୍ୟ ରହିବ କିପରି ? ତୁମେ ସବୁ ଘରକୁ ଫେରିଯାଅ । ଆମର ପ୍ରତିଜ୍ଞା ପାଳନ ପାଇଁ ଆମକୁ ସୁଯୋଗ ଦିଅ । ବାରଟା ବର୍ଷ ଛାଇପରି ଲେଉଟି ପଡ଼ିବ । ଆମେ ଠିକ୍ ସମୟରେ ଫେରି ଆସିବୁ ।''

ଯୁଧିଷ୍ଠିର, ତାଙ୍କର ପ୍ରଧାନ ସେନାପତି ଇନ୍ଦ୍ରସେନ ଓ ସୈନ୍ୟମାନଙ୍କୁ ବିଦାୟ ଦେଲେ । ରାଜ୍ୟବାସୀ ଅଶ୍ରୁସିକ୍ତ ନୟନରେ ଘରକୁ ଫେରିଲେ ।

ପଞ୍ଚପାଣ୍ଡବ, ଦ୍ରୌପଦୀ ସୁଭଦ୍ରା ଓ ତାଙ୍କ ପୁଅ ଅଭିମନ୍ୟୁ, କୁଳପୁରୋହିତ ଧୌମ୍ୟଙ୍କ ଗହଣରେ ଆସି ପହଞ୍ଚିଲେ ବାରଣା ବଟରେ । ପବିତ୍ର ଗଙ୍ଗାରେ ସ୍ନାନ କଲେ । ସେଠାରେ ସେମାନେ ରାତ୍ରିଯାପନ କଲେ ।

ପାଣ୍ଡବମାନଙ୍କୁ ସାକ୍ଷାତ କରିବାପାଇଁ ଅନେକ ଅତିଥି ଅଭ୍ୟାଗତ, ବ୍ରାହ୍ମଣ ବନକୁ ଆସନ୍ତି । ସେମାନଙ୍କୁ ଚର୍ଚ୍ଚା କରିବା ତାଙ୍କ ପାଇଁ କଷ୍ଟକର ହୋଇପଡ଼େ । ଦିନେ ମହର୍ଷି ଶୌନକ ଆସିଲେ

ପାଣ୍ଡବମାନଙ୍କୁ ସାକ୍ଷାତ କରିବା ପାଇଁ । ପାଣ୍ଡବମାନେ ଗଭୀର ଭକ୍ତିର ସହିତ ତାଙ୍କର ଆତିଥ୍ୟ ସ୍ୱୀକାର କଲେ । ପ୍ରତିଦିନ ବହୁଅତିଥିମାନଙ୍କର ସମାଗମ ଦୃଶ୍ୟ ତାଙ୍କ ଆଖିରେ ପଡ଼ିଲା । ସେମାନଙ୍କର ଚର୍ଚ୍ଚା ପାଇଁ ଅନ୍ନ ଭୋଜନର ବ୍ୟବସ୍ଥା କରିବା ଦିଗରେ ଧର୍ମପୁତ୍ର ଯେଉଁ ଅସୁବିଧାର ସମ୍ମୁଖୀନ ହେଉଛନ୍ତି, ସେ ତାହା ପ୍ରତ୍ୟକ୍ଷଭାବରେ ଅନୁଭବ କଲେ ।

ମହର୍ଷି ସୌନକ ଆଲୋଚନାପ୍ରସଙ୍ଗରେ ଧର୍ମପୁତ୍ରଙ୍କୁ ଅଷ୍ଟ ମହାମାର୍ଗ ବିଷୟରେ ଧାରଣା ଦେଲେ । ଏହା ହେଉଛି ସିଦ୍ଧିର ସୋପାନ । ଏହାପରେ କଠୋର ତପସ୍ୟା କରି ସୂର୍ଯ୍ୟଙ୍କୁ ସନ୍ତୁଷ୍ଟ କରିବାକୁ ଉପଦେଶ ଦେଲେ । ସୂର୍ଯ୍ୟହେଉଛନ୍ତି ସମସ୍ତ ପ୍ରାଣୀର ପ୍ରାଣାଧାର ।

ଧର୍ମପୁତ୍ର ସୂର୍ଯ୍ୟଙ୍କ ଉପାସନାକଲେ । କଠୋର ତପସ୍ୟା ଦ୍ୱାରା ତାଙ୍କୁ ସନ୍ତୁଷ୍ଟ କଲେ । ସୂର୍ଯ୍ୟଦେବତା ପ୍ରୀତ ହୋଇ ତାଙ୍କୁ ଅର୍ପଣ କଲେ ''ଅକ୍ଷୟ ପାତ୍ର'' । କହିଲେ, ଏହି ପାତ୍ରରେ ଖାଦ୍ୟର ଅସରନ୍ତି ଭଣ୍ଡାର ଭରି ରହିଛି, ଏହା ଦୃଶ୍ୟମାନ ନୁହେଁ । ସକାଳେ ଏଥିରେ ଯେକୌଣସି ଫଳଟିଏ ରଖିଦେଲେ ସାରାଦିନ ପାଇଁ ଯେଉଁ ଖାଦ୍ୟ ଇଚ୍ଛା କରିବ ତାହା ମିଳିଯିବ । ଯେତେ ଲୋକଙ୍କୁ ଅଭ୍ୟର୍ଥନା କଲେ ମଧ୍ୟ ଅଭାବ ରହିବ ନାହିଁ ।''

ଯୁଧିଷ୍ଠିର ଏହି ଅକ୍ଷୟ ପାତ୍ରଟିକୁ ଦ୍ରୌପଦୀଙ୍କୁ ଦେଇ ଏହାର ରହସ୍ୟ ବୁଝାଇଦେଲେ ଏବଂ କହିଲେ, ଶେଷ ଅତିଥିଙ୍କର ଭୋଜନ ପରେ ଯାଇ ପାତ୍ରଟିକୁ ଧୋଇବ, ଏଇଟି ନିଅ'' ।

ଦ୍ରୌପଦୀଙ୍କର ଆନନ୍ଦ କହିଲେ ନସରେ । ସୂର୍ଯ୍ୟ ଦେବତାଙ୍କର ପରମ କୃପା ସେ ଲାଭକରିଛନ୍ତି । ଏଣିକି ଅସୁମାର ଅତିଥିଙ୍କୁ ସେବା କରିବାରେ ଅସୁବିଧା କିଛି ନାହିଁ । ସବୁ ଅତିଥି ଭୋଜନ କରି ସାରିବାପରେ, ଦ୍ରୌପଦୀ ଅନ୍ନ ଗ୍ରହଣ କରୁଥିଲେ । ତା'ପରେ ପାତ୍ରଟିକୁ ଧୋଇଦିଆ ଯାଉଥିଲା ।

ଶ୍ରୀକୃଷ୍ଣ କୁରୁପାଣ୍ଡବମାନଙ୍କର ପଶାଖେଳ, ଦ୍ରୌପଦୀଙ୍କ ଦୁର୍ଦ୍ଦଶା ଓ ପାଣ୍ଡବମାନଙ୍କର ବନଗମନ ବିଷୟରେ ଜାଣିପାରିନଥିଲେ । ଦ୍ରୌପଦୀଙ୍କ ସ୍ୱୟଂବର ସଭାରୁ ଫେରିବା ପରେ ନିହତ ଶିଶୁପାଳର ପରମ ବନ୍ଧୁ ଶାଲ୍ୱଙ୍କ ସହିତ ତାଙ୍କର ଦୀର୍ଘଦିନ ଧରି ଯୁଦ୍ଧ ଚାଲିଥିଲା । ଇନ୍ଦ୍ରପ୍ରସ୍ଥ କିମ୍ବା ହସ୍ତିନାପୁର ବିଷୟରେ ସେ କୌଣସି ସମ୍ବାଦ ପାଇ ପାରିଲେ ନାହିଁ । ଶାଲ୍ୱଙ୍କୁ ଯୁଦ୍ଧରେ ପରାସ୍ତ କରିବାପରେ ସେ ବିଶ୍ରାମ ପାଇଲେ । ପ୍ରିୟ ପାଣ୍ଡବମାନଙ୍କର ବନବାସ ସମ୍ବାଦ ଶୁଣି ସେ ଦୁଃଖରେ ବିଚଳିତ ହୋଇ ଉଠିଲେ । ସଙ୍ଗେ ସଙ୍ଗେ ସେ ପାଣ୍ଡବମାନଙ୍କୁ ସାକ୍ଷାତ କରିବାପାଇଁ ବାହାରିଲେ ।

ପାଣ୍ଡବମାନଙ୍କ ବନାଶ୍ରମରେ ଆସି ପହଞ୍ଚିଲେ ଶ୍ରୀକୃଷ୍ଣ । ସମସ୍ତେ ଆନନ୍ଦରେ ଅଭ୍ୟର୍ଥନା ଜଣାଇଲେ । ଅଶ୍ରୁସିକ୍ତା ଦ୍ରୌପଦୀ, ଅଭିମାନର ଉଚ୍ଛ୍ୱାସ ଭିତରେ ଫୁଲି ଫୁଲି କ୍ରନ୍ଦିତ କଣ୍ଠରେ କହିଲେ, ଏତେଦିନପରେ ଆମେ ସବୁ ମନେ ପଡ଼ିଲୁ ! ପାଣ୍ଡବମାନଙ୍କର ଏଇ ସୁଖ ଭୋଗ ଦେଖିବାକୁ ଆପଣ ଚାଲିଆସିଲେ ! ଏଥିଭିତରେ କି ନାରକୀୟକାଣ୍ଡ ଯେ ଘଟିନଗଲା । ତାହା ଭାଷାରେ ବର୍ଣ୍ଣନା କରାଯାଇ ପାରିବ ନାହିଁ । କୌରବମାନେ କପଟ ପଶା ଖେଳର ବ୍ୟବସ୍ଥା କରି, ଧର୍ମରାଜଙ୍କୁ ଆକୃଷ୍ଟ କଲେ । ଧର୍ମରାଜଙ୍କ ଧର୍ମ ବିଚାରରେ ନିଜର ଧର୍ମ ପତ୍ନୀ ମଧ୍ୟ ଖେଳର ବାଜି ରହିଲା । ଶେଷରେ ସେ ପରାସ୍ତ ହୋଇଗଲେ । ଇନ୍ଦ୍ର ପ୍ରସ୍ଥର ରାଜମହିଷୀ ଦ୍ରୌପଦୀଙ୍କର ଚୁଟି ଧରି, ସଭା ମଧ୍ୟକୁ ଟାଣି ଟାଣି ଆଣିଲା ଦୁଃଶାସନ । ଏହାଥିଲା ଦୁର୍ଯ୍ୟୋଧନର ଆଦେଶ । ମହାଧନୁର୍ଦ୍ଧର ପଞ୍ଚସ୍ୱାମୀଙ୍କ ସମ୍ମୁଖରେ, କୁରୁବଂଶର କୁଳବୃଦ୍ଧମାନଙ୍କ ଉପସ୍ଥିତିରେ, ଦୁଃଶାସନ ମୋତେ ବିବସ୍ତ୍ର କଲା, ସଭା ମଧ୍ୟରେ । ଏ ନିର୍ଲଜ ଦୃଶ୍ୟରେ

ବୀରମାନଙ୍କ ମୁହଁଗୁଡ଼ାକ କିଛିକ୍ଷଣ ପାଇଁ ତଳକୁ ପୋତି ହୋଇଗଲା । ସେମାନଙ୍କ ରକ୍ତ ମୁଖା ଅସ୍ତ୍ରଗୁଡ଼ାକ ମଧ୍ୟ ଲାଜରେ ମୁହଁ ପୋତି ଦେଲେ ।

ଯେଉଁ ରାଜଚକ୍ରବର୍ତ୍ତୀ, ରାଜରାଣୀଙ୍କୁ ଦୁର୍ଯୋଗର ଚରମ ମୁହୂର୍ତ୍ତରେ ମଧ୍ୟ ନିରାପତ୍ତା ଦେଇପାରିଲେ ନାହିଁ, ବନବାସ ଦଣ୍ଡ ଭୋଗିବା ବ୍ୟତୀତ ତାଙ୍କର ଆଉ କି ଉପାୟ ଥିଲା !''

ଧାର ଧାର ହୋଇ ଅଶ୍ରୁ ବିଗଳିତ ହେଉଥାଏ । କ୍ରୋଧ ଆଉ ଅଭିମାନରେ ଫୁଲି ଫୁଲି ଉଠୁଥାଏ ନାସା ପୁଡ଼ା । ରକ୍ତିମ ଚିବୁକ, ମୁକୁଳା କେଶପାଶ । କ୍ରନ୍ଦିତ କଣ୍ଠରେ ସେ କହିଲେ, ''ହେ ପାଣ୍ଡବ ସଖା ! ଦୁଃଶାସନର ବୁକୁଚିରି ତାର ରକ୍ତରେ ମୋର ଏ ବେଣୀ ବନ୍ଧାଯିବ ବୋଲି, ଶପଥ ନେଇଛନ୍ତି ଦ୍ୱିତୀୟ ପାଣ୍ଡବ ।''

ଶ୍ରୀକୃଷ୍ଣ ଦ୍ରୌପଦୀଙ୍କର ଅବସ୍ଥା ଦେଖି ନିଜର କୋହ ସମ୍ଭରଣ କରି ପାରିଲେ ନାହିଁ । ନୟନରୁ ଉତୁରି ଆସୁଥିବା ଅଶ୍ରୁକୁ ପୋଛି ପୋଛି କମ୍ପିତ କଣ୍ଠରେ କହିଲେ, ''ଯାଜ୍ଞସେନି ! ଯାହା ବିଧି ନିର୍ଦ୍ଦିଷ୍ଟ ତାହାକୁ ବାରଣ କରିବାର ଶକ୍ତି ମଣିଷର ନାହିଁ । ଦେବୀ ଯାଜ୍ଞସେନୀଙ୍କୁ କୌଣସି କାଳିମା ଓ ପରିତାପ ସ୍ପର୍ଶ କରି ନପାରେ । ଦୁଃଖର କଥା, ମୁଁ ଏସବୁ କିଛି ଜାଣି ପାରିଲି ନାହିଁ । ସେତେବେଳେ ଶାଲ୍ୱଙ୍କ ସହିତ ମୋର ତୁମୁଳ ସଂଘର୍ଷ ଚାଲିଥିଲା । ମୁଁ ଯୁଦ୍ଧରେ ଏତେ ବ୍ୟସ୍ତ ଥିଲି ଯେ ଦ୍ୱାରକା ଖବର ମଧ୍ୟ ରଖିପାରୁ ନଥିଲି । ହସ୍ତିନା ଓ ଇନ୍ଦ୍ରପ୍ରସ୍ଥରେ କଣ ଘଟୁଛି ତାହା ଜାଣିବା ମୋ ପକ୍ଷରେ ସମ୍ଭବ ହେଉନଥିଲା । ମୁଁ ଉପସ୍ଥିତ ଥିଲେ, କେବେହେଲେ ଘୃଣ୍ୟ ପଶାଖେଳ ପାଇଁ ପ୍ରଶ୍ରୟ ଦେଇନଥାନ୍ତି । ପଶାକାଠି ଶତ୍ରୁନିଧନ ପାଇଁ ପାଶୁପତ ଅସ୍ତ୍ରଠାରୁ ବଳି ଅଧିକ ଶକ୍ତିଶାଳୀ, ତେବେ ବ୍ୟସ୍ତହେବାର କିଛି ନାହିଁ । ମହାବଳୀ ଭୀମଙ୍କର ଦୁର୍ଜ୍ଜୟ ପ୍ରତିଜ୍ଞା ନିଶ୍ଚୟ ପାଳିତ ହେବ । ପାପୀର ପାପମାଣଟା ଉଛୁଳିବାକୁ ଆଉ ବେଶିଦିନ ନାହିଁ । ଧର୍ମରକ୍ଷା ପାଇଁ, ଧର୍ମପୁତ୍ରଙ୍କର ନିଶ୍ୱାସପରି ମୁଁ ସର୍ବଦା ପାଖେ ପାଖେ ରହିଛି ଓ ରହିବି ମଧ୍ୟ ।''

ପାଖରେ ଛିଡ଼ା ହୋଇଥିଲେ ଧୃଷ୍ଟଦ୍ୟୁମ୍ନ । ଦ୍ରୌପଦୀଙ୍କର ଭାଇ । ସେ ମଧ୍ୟ ଆଶ୍ୱାସନା ଦେଇ କହିଲେ,'' ଯେଉଁ ମହାରଥୀମାନଙ୍କ ବଳପାଇ ଦୁର୍ଯ୍ୟୋଧନ ଏତେ ଉତ୍ପାତ ସୃଷ୍ଟି କରୁଛି, ସେମାନଙ୍କର କାଳ ନିକଟବର୍ତ୍ତୀ ହୋଇ ଆସିଲାଣି । ମୁଁ ପ୍ରତିଜ୍ଞା କରିଛି ଦ୍ରୋଣଙ୍କୁ ମାରିବାକୁ । ମୋ ପିତାଙ୍କୁ ସେ ଯେଉଁ ପରାଭବ ଦେଇଛନ୍ତି ମୁଁ ତାର ପ୍ରତିଶୋଧ ନିଶ୍ଚୟ ନେବି । ପିତାମହ ଭୀଷ୍ମଙ୍କ ପତନର କାରଣ ହେବ ଶିଖଣ୍ଡୀ । ଅର୍ଜ୍ଜୁନତ କର୍ଣ୍ଣକୁ ମାରିବେ । ଭୀମସେନ ମାରିବେ ଦୁର୍ଯ୍ୟୋଧନ ଓ ଦୁଃଶାସନକୁ । ସବୁଭାଇ ମଧ୍ୟ ତାଙ୍କ ହାତରେ ମରିବେ । ରହିଗଲା କେବଳ ପାପର ପୁରୋହିତ ସେଇ ଶକୁନିଟା । ସହଦେବ ତାକୁ ହତ୍ୟା କରିବେ । ଯୁଦ୍ଧ ନହେଲେ ଏପ୍ରକାର ଏ ଗଣହତ୍ୟା କଣ ସମ୍ଭବ । ସେଥିପାଇଁତ ଏ କୁତ୍ସିତ ପର୍ବର ଆରମ୍ଭ । ସମୟ ସବୁ ସମାଧାନ କରିଦେବ । ଦେବ ଇଚ୍ଛା ପୂରଣ ହେଉ ।''

ଶ୍ରୀକୃଷ୍ଣ କିଛିଦିନ ସେମାନଙ୍କ ଗହଣରେ ରହି, ଭଉଣୀ ସୁଭଦ୍ରା ଓ ତାଙ୍କର ଶିଶୁପୁତ୍ରକୁ ସାଥିରେ ନେଇ ଦ୍ୱାରକାକୁ ଫେରି ଆସିଲେ । କନ୍ୟାକୁ ଦେଖି ମାତା ରୋହିଣୀ ଏବଂ ଅନ୍ୟମାନେ ଆନନ୍ଦିତ ହେଲେ । ପାଣ୍ଡବମାନଙ୍କର ଦୁର୍ଦ୍ଦଶା କଥା ଶୁଣିଲାକ୍ଷଣି ଆନନ୍ଦ ଆସର ମଉଳିଗଲା । ସମସ୍ତେ ବ୍ୟଥାତୁର ।

# ।। ବିଦୁର ଓ ଧୃତରାଷ୍ଟ୍ର ।।

ପାଣ୍ଡବମାନେ ବଣକୁ ଚାଲିଯିବା ପରେ ଦୁର୍ଯୋଧନଙ୍କର ଶିବିରରେ ଆନନ୍ଦର ପଟୁଆର । ଚକ୍ରାନ୍ତ ତାଙ୍କର ସଫଳ ହୋଇଛି । ଶକୁନିର ଶନି ଦୃଷ୍ଟିରେ ପାଣ୍ଡବମାନଙ୍କର ସୁଖ ସୌଭାଗ୍ୟ ଭସ୍ମିଭୂତ ହୋଇଛି । କେବେହେଲେ ଅଗ୍ନିର ପିପାସା ମେଣ୍ଟେନି, ସମୁଦ୍ରର ଲବଣତ୍ୱ ଦୂର ହୁଏନି । ସମୀରର ଗତିଶୀଳତା ସ୍ଥିର ହୁଏନି, ଏବଂ ଦୁଷ୍ଟ ବ୍ୟକ୍ତିର କୁପ୍ରବୃତ୍ତି ଶାନ୍ତ ହୁଏନାହିଁ । ସେମାନଙ୍କ ସଫଳତାରେ ଏହା ହୁଏ ଅଧିକ ପଲ୍ଲବିତ । ଶକୁନି, ଦୁର୍ଯ୍ୟୋଧନ ଓ କର୍ଣ୍ଣ, ପୁଣି ନୂତନ ଚକ୍ରାନ୍ତର ଚିନ୍ତାରେ ବୁଡ଼ି ରହିଲେ ।

ହଠାତ୍ ଏକ ଚମକପ୍ରଦ ସମ୍ବାଦ ସେମାନଙ୍କୁ ଆଉରି ଉଲ୍ଲସିତ କଲା ।

ରାଜାଧୃତରାଷ୍ଟ୍ର ବିଦୁରଙ୍କ ଉପରେ କୋପଦୃଷ୍ଟି ପକାଇ ତାଙ୍କୁ ମନ୍ତ୍ରୀ ପଦରୁ ବହିଷ୍କାର କରିଛନ୍ତି । ସେ ଅନ୍ଧଥିଲେ ବି ବିଦୁର ଥିଲେ ତାଙ୍କର ଜ୍ଞାନଚକ୍ଷୁ । ତାଙ୍କର ପରାମର୍ଶବିନା ରାଜ୍ୟ ଶାସନ କରିବା ରାଜାଙ୍କ ପକ୍ଷରେ ଅସମ୍ଭବ ଥିଲା । ଆଜି ସେ କିନ୍ତୁ ରାଜକୋପର ଶିକାର ହୋଇଛନ୍ତି, ତାଙ୍କର ସୁପରାମର୍ଶ ପାଇଁ । ପାଣ୍ଡବ ମାନଙ୍କ ବନ ଗମନର ବିଷମୟ ପରିଣତି ବିଷୟରେ ସେ ସୂଚାଇ ଦେଇଛନ୍ତି । ଅନୁରୋଧ କରିଛନ୍ତି ଧୃତରାଷ୍ଟ୍ରଙ୍କୁ ପାଣ୍ଡବମାନଙ୍କୁ ବୁଝାଇ ସୁଝାଇ ଫେରାଇ ଆଣିବାପାଇଁ । କୁରୁକୁଳକୁ ନିଶ୍ଚିତ ଧ୍ୱଂସ ମୁଖରୁ ରକ୍ଷା କରିବା ପାଇଁ । ଏହାହିଁ ଥିଲ । ତାଙ୍କର ସୁପରାମର୍ଶ । ସ୍ୱୟଂ ଧୃତରାଷ୍ଟ୍ର ଯଦି ନିଜେ ଯାଇ ଯୁଧିଷ୍ଠିରଙ୍କୁ ବୁଝାଇ ପାରିବେ, ତା'ହେଲେ ପ୍ରଳୟର ଅବସାନ ନିଶ୍ଚୟ ହେବ ।

ଧୃତରାଷ୍ଟ୍ର ସ୍ୱାଭିମାନର ଏକ ଉତ୍ତୁଙ୍ଗ ହିମାଳୟ । ଅନମନୀୟ ତାଙ୍କର ଆହତ ବ୍ୟକ୍ତିତ୍ୱ । ପାଣ୍ଡବମାନଙ୍କ ନିର୍ବାସନ ପ୍ରସ୍ତାବର ସ୍ୱୀକୃତି ଦେଇଛନ୍ତି ସେ ନିଜେ, ପୁଣି ତାକୁ ପ୍ରତ୍ୟାହାର କରି, ନିଜେ ଯାଇ, ଶ୍ରଦ୍ଧା ଓ ସହାନୁଭୂତି ଆଳରେ ଆତ୍ମ ସମର୍ପଣ କରିବେ ? ପାଣ୍ଡବ ପ୍ରେମୀ ବିଦୁରଙ୍କର ସୁପରାମର୍ଶ ଅନ୍ତରାଳରେ ଏହା ଏକ ସୁଚିନ୍ତିତ ଚକ୍ରାନ୍ତ । ସେ ବିଦୁରଙ୍କୁ ରୋକ୍‌ଠୋକ୍ କହିଦେଲେ, "ତୁମର ପାଣ୍ଡବ ପ୍ରୀତି ମୋ ପକ୍ଷରେ ଅଜ୍ଞାତ ନୁହେଁ । ତୁମର ଏ ଅନୁଚିତ ଉପଦେଶ ମୋ ପକ୍ଷରେ ମଧ୍ୟ ଗ୍ରହଣୀୟ ନୁହେଁ । ତୁମେ ତୁମର ଆପତ୍ତିଜନକ ଆଚରଣର ପରିବର୍ତ୍ତନ ନ କଲେ, କୁରୁ ରାଜସଭା ମଣ୍ଡନକରି ପାରିବ ନାହିଁ । ଯଦି ଇଚ୍ଛା କର, ତୁମେ ପାଣ୍ଡବମାନଙ୍କ ପାଖକୁ ଚାଲିଯାଇପାର ।"

କିଛିକ୍ଷଣ ପାଇଁ ବିଦୁର ଏକ ନିର୍ବାତ ନିଥର ଦୀପଶିଖା ପରି ସ୍ଥିର ହୋଇଗଲେ ।

ହସ୍ତିନାର ରାଜପୁରୀ ପରିତ୍ୟାଗ କରି ସେ ଚାଲିଆସିଲେ ପାଣ୍ଡବମାନଙ୍କ ପାଖକୁ । ଦୁର୍ଯ୍ୟୋଧନ ପୂର୍ଣ୍ଣିମାର ଉଦ୍‌ବେଳିତ ସମୁଦ୍ରପରି ଆନନ୍ଦରେ ଫୁଲି ଫୁଲି ଉଠିଲେ । ସୁସମ୍ବାଦ... ନିଶ୍ଚୟ ସୁସମ୍ବାଦ । ପିତା ଧୃତରାଷ୍ଟ୍ର ନିଶ୍ଚୟ ଏଣିକି ତାଙ୍କ ପରାମର୍ଶର ସମ୍ମାନ ଜନକ ମୂଲ୍ୟ ଦେବେ ।

ପାଣ୍ଡବମାନେ ବିଦୁରଙ୍କୁ ଦୂରରୁ ଦେଖି ମନେ ମନେ ଭାବିଲେ, ସେ ବୋଧହୁଏ ପୁଣି କୌଣସି ନୂତନ ପ୍ରସ୍ତାବ ନେଇ ଆସିଛନ୍ତି । ହୁଏତ ତାହା ଆଉ ଏକ ବିପଦର କାରଣ ହୋଇପାରେ । ତଥାପି ସେ ସେମାନଙ୍କର ପରମ ଶୁଭାକାଂକ୍ଷୀ । ବିଦୁରଙ୍କୁ ଭକ୍ତି ଓ ଶ୍ରଦ୍ଧାର ସହିତ ପାଣ୍ଡବମାନେ ଅଭିନନ୍ଦନ ଜଣାଇଲେ । ବିଦୁର ଗଭୀର ଆତ୍ମଗ୍ଳାନି ମଧ୍ୟରେ କହିଲେ, କେବଳ ତୁମେ ନୁହଁ, ତୁମର ଶୁଭ ଚିନ୍ତକ ହିସାବରେ ମୋତେ ମଧ୍ୟ ନିର୍ବାସନ ଦଣ୍ଡ ଭୋଗକରିବାକୁ ମିଳିଛି । ଧୃତରାଷ୍ଟ୍ର ଅନୁଭବ କରିଛନ୍ତି, କୁରୁଶ୍ରେଷ୍ଠଙ୍କ ପ୍ରତି ମୋର ପରାମର୍ଶ ନିରାପଦ ନୁହେଁ । ସମସ୍ତ ଘଟଣା ଶୁଣିବାପରେ ପାଣ୍ଡବମାନେ ବିଦୁରଙ୍କୁ କହିଲେ,

''ଆମମାନଙ୍କର ପରମ ସୌଭାଗ୍ୟ ଯେ ଆମେ ଆପଣଙ୍କୁ ଆମ ଗହଣରେ ଚରମ ଦୁର୍ଦ୍ଦିନମଧ୍ୟରେ ପାଇଛୁ କିନ୍ତୁ ଆପଣଙ୍କର ନିର୍ବାସନ ହିଁ କୁରୁକୁଳର ବିନାଶ ପାଇଁ ଏକ ସତର୍କ ଘଣ୍ଟି ।

ବଡ଼ ଆଶ୍ଚର୍ଯ୍ୟ କଥା ।

ଦିନ କେଇଟା ନଯାଉଣୁ ହଠାତ୍ ଦିନେ ପାଣ୍ଡବମାନଙ୍କ ଅରଣ୍ୟବାସରେ ଆସି ପହଞ୍ଚିଲେ ମନ୍ତ୍ରୀ ସଞ୍ଜୟ । ସେ ଶ୍ରଦ୍ଧାର ସହିତ ସମସ୍ତଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହେଲେ । ଅନୁନୟ କଣ୍ଠରେ କହିଲେ, ''ହେ ମହାତ୍ମା ବିଦୁର ! ଆପଣ ଥିଲେ ଅନ୍ଧ ଧୃତରାଷ୍ଟ୍ରଙ୍କର ପ୍ରଜ୍ଞା ଚକ୍ଷୁ । ଆପଣଙ୍କର ବିଦାୟପରେ ସେ ଅନ୍ତଃଚକ୍ଷୁହରାଇ ଶୂନ୍ୟତା ଭିତରେ ହାହାକାର କରୁଛନ୍ତି । ଆପଣଙ୍କ ଅଭାବରେ ତାଙ୍କୁ ଚତୁର୍ଦ୍ଦିଗ ଶୂନ୍ୟ ଶୂନ୍ୟ ମହାଶୂନ୍ୟ ପରି ଅନୁଭୂତ ହେଉଛି । ସେ କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଆପଣଙ୍କୁ ଯେଉଁସବୁ ଆକ୍ଷେପମୂଳକ କଥା କହିଛନ୍ତି, ସେଥିପାଇଁ ସେ ଗଭୀର ମର୍ମାହତ । ଏହା ତାଙ୍କର ଆଦେଶନୁହେଁ । ଆନ୍ତରିକ ଅନୁରୋଧ, ଆପଣ ତାଙ୍କ ପାଖକୁ ମୋ ସହିତ ଫେରି ଚାଲନ୍ତୁ । ଧର୍ମରାଜ ଯୁଧିଷ୍ଠିରଙ୍କୁ ମୋରମଧ୍ୟ ବିନୀତ ଅନୁରୋଧ, ସେ ମହାତ୍ମା ବିଦୁରଙ୍କୁ ଏଥିପାଇଁ ଅନୁମତି ଦିଅନ୍ତୁ ।''

ସଞ୍ଜୟଙ୍କ କଥାରେ ତରଳିଗଲେ ବିଦୁର । ଯୁଧିଷ୍ଠିର ନମନୀୟ ହୋଇ କହିଲେ, ଧୃତରାଷ୍ଟ୍ରଙ୍କର ଅନୁରୋଧହିଁ ଆଦେଶ । ଆମେ ସର୍ବଦା ତାହା ପାଳନ କରି ଆସିଛୁ, ଆଜି ମଧ୍ୟ ଏହା ପାଳନ କରିବୁ ।''

ବିଦୁର ସେମାନଙ୍କ ଠାରୁ ବିଦାୟ ନେଇ ସଞ୍ଜୟଙ୍କ ସହିତ ହସ୍ତିନାପୁରକୁ ଚାଲି ଆସିଲେ । ଧୃତରାଷ୍ଟ୍ର ଆନନ୍ଦରେ ବିଦୁରଙ୍କୁ କୋଳାଗ୍ରତ କରି କହିଲେ, ''ଭାଇ ବିଦୁର ! ଉଦାରତାର ତୁମେ ଏକ ମୂର୍ତ୍ତିମନ୍ତ ପ୍ରତୀକ । ଏ ଅନ୍ଧ ଭାଇଟାକୁ କ୍ଷମାଦିଅ । ତୁମେ ତୁମର ବିବେକ ସମ୍ମତ କର୍ତ୍ତବ୍ୟ ଅକୁଣ୍ଠ ଚିତ୍ତରେ ପୂର୍ବପରି ପାଳନ କର ।

ଅଶ୍ରୁସିକ୍ତ ଧୃତରାଷ୍ଟ୍ରଙ୍କୁ ଆଶ୍ୱାସନା ଦେଇ ବିଦୁର କହିଲେ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ପୂର୍ବପରି ବିବେକାନୁମୋଦିତ ପନ୍ଥାରେ ସର୍ବଦା ସତ୍ ପରାମର୍ଶ ଦେବାକୁ ଅବହେଳା କରିବି ନାହିଁ । ହୁଏତ ଏହା ସବୁବେଳେ ଆପଣଙ୍କୁ ଆନନ୍ଦ ନ ଦେଇ ପାରେ କିନ୍ତୁ ନିଶ୍ଚିତ ଭାବରେ ଧର୍ମ ଓ ସତ୍ୟ ପଥରେ ଚାଲିବା ପାଇଁ ସହାୟକ ହେବ । ଆପଣଙ୍କର ନିଷ୍କପଟ ଶ୍ରଦ୍ଧା ଓ ସ୍ନେହ ବିଷୟରେ ମୁଁ ସମ୍ପୂର୍ଣ୍ଣ ଅବହିତ । ତାହାହିଁ ମୋତେ ହସ୍ତିନାପୁରକୁ ଫେରାଇ ଆଣିଛି । ଉଭୟଙ୍କ ମଧ୍ୟରେ ସାମୟିକ ମତାନ୍ତରତ ନିଶ୍ଚୟ ରହିବ ତେବେ ତାହା ଦୁଇଭାଇ ଭିତରେ ମନାନ୍ତର ସୃଷ୍ଟି କରିବ କାହିଁକି ? ଦୁଇ ଭାଇଙ୍କର ସମ୍ପର୍କ ଏ ସବୁର ବହୁ ଊର୍ଦ୍ଧ୍ୱରେ ।''

ବିଦୁରଙ୍କ ପ୍ରତ୍ୟାବର୍ତ୍ତନ ଥିଲା ସମ୍ପୂର୍ଣ୍ଣ ଆକସ୍ମିକ । ଦୁର୍ଯ୍ୟୋଧନ, ଶକୁନି ଓ କର୍ଣ୍ଣଙ୍କ ଭିତରେ ପୁଣି ବିଷାଦର କଳାମେଘ ଘୋଟି ଆସିଲା । ସେମାନେ ଅନୁଭବ କଲେ, ଏ ଉଭୟଙ୍କର ପୁନର୍ମିଳନ ଆଦୌ ଶୁଭଙ୍କର ନୁହେଁ । ଦୁଃଶ୍ଚିନ୍ତାର ଦଂଶନରେ ଯନ୍ତ୍ରଣାଗ୍ରସ୍ତ ଦୁର୍ଯ୍ୟୋଧନ । ବିଦୁରଙ୍କୁ ବିଶ୍ୱାସ କରାଯାଇ ନପାରେ । ହୁଏତ, ତାଙ୍କର ପରାମର୍ଶରେ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ବନବାସରୁ ଫେରାଇ ଆଣି, ଇନ୍ଦ୍ରପ୍ରସ୍ଥର ରାଜସିଂହାସନରେ ବସାଇ ଦେଇ ପାରନ୍ତି ।

ତିନି ଦୁଷ୍ଟ ଗ୍ରହଙ୍କ ମଧ୍ୟରେ ପୁଣି ମନ୍ତ୍ରଣା ଚାଲିଲା । ପରିବର୍ତ୍ତିତ ପରିସ୍ଥିତି ପ୍ରତି ଆଖି ବୁଜିଦେବା ବିଜ୍ଞତାର କାର୍ଯ୍ୟ ହେବନାହିଁ । କର୍ଣ୍ଣ କହିଲେ, ''କୁରୁ ପାଣ୍ଡବଙ୍କ ମଧ୍ୟରେ ଯୁଦ୍ଧ ଅନିବାର୍ଯ୍ୟ । ଦିନେ ନା ଦିନେ ତାହା ସଂଘଟିତ ହେବ । ତାହାହିଁ ସମାଧାନର ଏକମାତ୍ର ପନ୍ଥା । ଯାହା ନିଶ୍ଚିତ, ତାକୁ ବେଳହୁଁ ସମ୍ମୁଖୀନ ନହେବା କାହିଁକି ? ବର୍ତ୍ତମାନ ପାଣ୍ଡବମାନେ ପ୍ରସ୍ତୁତ ନୁହନ୍ତି । ରାଜ୍ୟର ଅସ୍ତ୍ରାଗାର ସେମାନଙ୍କ

ହାତରେ ନାହିଁ । ପଡ଼ୋଶୀ ରାଜାମାନଙ୍କର ସାମରିକ ସହାୟତା ସେମାନେ ବର୍ତ୍ତମାନ ପାଇ ପାରିବେ ନାହିଁ । ସେମାନଙ୍କୁ ଆକ୍ରମଣ କରିବାର ଏହାହିଁ ପ୍ରକୃଷ୍ଟ ସମୟ । ମାହେନ୍ଦ୍ର ମୁହୂର୍ତ୍ତ ସବୁବେଳେ ଆସେନା । ଦୀର୍ଘ ଦିନର ପ୍ରତୀକ୍ଷା ପରେ ଆସିଥିବା ଶୁଭ ସମୟକୁ ଏଡ଼ାଇ ଦେବା ଉଚିତ ନୁହେଁ । ଆମେ ଅତର୍କିତ ଭାବରେ ସେମାନଙ୍କୁ ଆକ୍ରମଣ କରି ସଂହାର କରିବା ।''

କଥାଟା ଶକୁନିଙ୍କ ମନକୁ ପାଇଲା ନାହିଁ । ସେ କହିଲେ, ଧର୍ମପୁତ୍ର ଯୁଧିଷ୍ଠିର ନିଜର ଶପଥରୁ ଟଳିବେ ନାହିଁ । ବନବାସ କାଳ ସମାପ୍ତ ନହେବା ପର୍ଯ୍ୟନ୍ତ ସେ ଇନ୍ଦ୍ରପ୍ରସ୍ଥକୁ ଫେରିବାର ପ୍ରଶ୍ନ ଉଠୁ ନାହିଁ । ଦୁର୍ଯ୍ୟୋଧନ କିନ୍ତୁ କର୍ଣ୍ଣଙ୍କର ପରାମର୍ଶକୁ ଗ୍ରହଣ କରି ଅଭିଯାନ ପାଇଁ ପ୍ରସ୍ତୁତ ହୋଇଗଲେ ।

ଠିକ୍ ଏତିକି ବେଳେ ଆସି ପହଞ୍ଚିଲେ ମହର୍ଷି ବ୍ୟାସଦେବ ।

ଦୁର୍ଯ୍ୟୋଧନଙ୍କର ଯୁଦ୍ଧ ଯାତ୍ରାର ସମ୍ବାଦ ପାଇ ତାଙ୍କୁ ବାରଣ କଲେ । କହିଲେ, ପାଣ୍ଡବମାନେ ଧର୍ମରକ୍ଷା କରି ବନବାସ କରୁଥିବା ସମୟରେ ସେମାନଙ୍କୁ ଆକ୍ରମଣ କରିବାର କୌଣସି ଯୁକ୍ତି ସଙ୍ଗତ କାରଣ ନାହିଁ । ତୁମେମାନେତ ବର୍ତ୍ତମାନ ରାଜ୍ୟ ଭୋଗ କରୁଛ ଏବଂ ଭାଗ୍ୟ ତୁମପାଇଁ ଅନୁକୂଳ । ତୁମ ତରଫରୁ ଯୁଦ୍ଧ ଘୋଷଣା କରିବାର ପ୍ରଶ୍ନ ଉଠୁନି, ତୁମେ କାହିଁକି ପ୍ରଳୟ ପର୍ବର ଉଦ୍‌ଘାଟକ ହେବ ।''

ଦୁର୍ଯୋଧନଙ୍କର ଯୁଦ୍ଧଯାତ୍ରା ଏତିକିରେ... ସ୍ଥଗିତ ହେଲା ।

ମହର୍ଷି ବ୍ୟାସଦେବ ଧୃତରାଷ୍ଟ୍ରଙ୍କୁ କହିଲେ, ତୁମପରି ଜ୍ଞାନଦୀପ୍ତରାଜା, ଭୀଷ୍ମଙ୍କପରି ବିଚାରବନ୍ତ ଧର୍ମପରାୟଣ କୁଳବୃଦ୍ଧ, ଦ୍ରୋଣଙ୍କ ପରି ନ୍ୟାୟ ପରାୟଣ କୁଳାଚାର୍ଯ୍ୟ ଥାଉ ଥାଉ ଏସବୁ ଅପ୍ରୀତିକର ଘଟଣା ଘଟୁଛି କାହିଁକି ? ପାଣ୍ଡବମାନେ ଧର୍ମ ଓ ନ୍ୟାୟ ପଥରେ ଅଛନ୍ତି । ତାଙ୍କ ସପକ୍ଷରେ ଧର୍ମବଳ ରହିଛି । ତୁମେ ଆସନ୍ନ ଧ୍ୱଂସ ପଥରୁ ନିବୃତ୍ତ ହୁଅ ।''

ଧୃତରାଷ୍ଟ୍ର ବ୍ୟଥା ଭରା କଣ୍ଠରେ କହିଲେ, ''ମୁଁ କଣ କରିବି ? ମୋ ଶାସନ ସୀମାକୁ ଉଲ୍ଲଙ୍ଘନ କରିଛି ଦୁର୍ଯ୍ୟୋଧନ । ଏକ ଅନ୍ଧପିତା ତା' ପୁତ୍ରକୁ ବା କି ଦଣ୍ଡ ଦେବ । ଦୟାକରି ଆପଣ ଦୁର୍ଯ୍ୟୋଧନଙ୍କୁ ଟିକିଏ ବୁଝାନ୍ତୁ । ଭୟାବହ ପରିସ୍ଥିତି ବିଷୟରେ ତାଙ୍କୁ ଟିକିଏ ସଚେତନ କରନ୍ତୁ । ସେ ବଦଳିଗଲେ ସବୁ ସୁଧୁରିଯିବ । ପୁତ୍ର ବିରୁଦ୍ଧରେ କୌଣସି ରାଜନୈତିକ ନିଷ୍ପତ୍ତି ନେବା ମୋପକ୍ଷରେ ସମ୍ଭବ ନୁହେଁ । ସେ ମୋର ବହୁମୁଖୀ ଜୀବନର ଏକ ଅବଲମ୍ବନ ।''

ମହର୍ଷି ବେଦବ୍ୟାସ କହିଲେ, ''ଠିକ୍‌ଅଛି, ମୁଁ ମହର୍ଷି ମୈତ୍ରେୟଙ୍କୁ ପଠାଇବି । ସେ ଦୁର୍ଯ୍ୟୋଧନଙ୍କୁ ବୁଝାଇବେ । ମୈତ୍ରେୟ ପ୍ରଥମେ ଆସି କାମ୍ୟକବଣରେ ପହଞ୍ଚିଲେ ଆକସ୍ମିକ ଭାବରେ । ସେଠାରେ ଯୁଧିଷ୍ଠିର ଓ ଅନ୍ୟ ପାଣ୍ଡବ ଭାଇମାନେ ଗଭୀର ଭକ୍ତିର ସହିତ ତାଙ୍କୁ ଅଭିନନ୍ଦନ ଜଣାଇଲେ । ତାଙ୍କ ସହିତ ରହୁଥିବା ବ୍ରାହ୍ମଣ ଓ ମୁନି ଋଷିମାନେ ଆସି ମୈତ୍ରେୟଙ୍କୁ ସମ୍ମାନର ସହିତ ଆଶ୍ରମ କକ୍ଷକୁ ନେଇଗଲେ । ସେଠାରେ କିଛିଦିନ ରହିବା ପରେ ସେ ଆସି ପହଞ୍ଚିଲେ ହସ୍ତିନା ପୁରରେ ।

ଧୃତରାଷ୍ଟ୍ର ମୈତ୍ରେୟଙ୍କୁ ଭକ୍ତିର ସହିତ ସମ୍ବର୍ଦ୍ଧନା ଜଣାଇଲେ । ତାଙ୍କର ସାଦର ଆତିଥ୍ୟ ଲାଭକରି ସେ କହିଲେ, ମୁଁ ଏଇ ବର୍ତ୍ତମାନ କାମ୍ୟକବଣରୁ ପାଣ୍ଡବମାନଙ୍କ ଗହଣରୁ ଆସୁଛି ।''

ଧୃତରାଷ୍ଟ୍ର ପାଣ୍ଡବମାନଙ୍କର କୁଶଳ ସମାଚାର ପଚାରିଲେ ।

ମୈତ୍ରେୟ କହିଲେ, ପାଣ୍ଡବମାନେ ବଣରେ ଆନନ୍ଦ ଓ ଶାନ୍ତିର ସହିତ ଅଛନ୍ତି । ପ୍ରତିଦିନ ସେଠାକୁ ବହୁଅତିଥି ଅଭ୍ୟାଗତ ଯାଉଛନ୍ତି । ବେଦଜ୍ଞ ବ୍ରାହ୍ମଣମାନଙ୍କର ସେଠାରେ ନିତ୍ୟ ସମାବେଶ ହେଉଛି । ଧର୍ମ ତତ୍ତ୍ୱ ବିଷୟରେ ଆଲୋଚନା କରାଯାଉଛି । ଧର୍ମପୁତ୍ରଙ୍କ ସହିତ ସାଧୁସନ୍ଥ ସମାବେଶରେ କାମ୍ୟକ ବଣ ଏକ ପବିତ୍ର ଭୂମିରେ ପରିଣତ ହୋଇଛି ।''

ଦୁର୍ଯ୍ୟୋଧନ ରାଜ ସଭାରେ ବସିଥିଲେ । ତାଙ୍କୁ ଏକଥା ଗୁଡ଼ାକ ଆଦୌ ଭଲ ଲାଗୁନଥିଲା । ମୈତ୍ରେୟ ଧୃତରାଷ୍ଟ୍ରଙ୍କୁ କହିଲେ, ପାଣ୍ଡବମାନଙ୍କୁ ବନବାସ ଦଣ୍ଡଦେବା ଠିକ୍ ହୋଇନାହିଁ । ତାଙ୍କ ପ୍ରତି ବହୁ ଅବିଚାର କରାଯାଇଛି । ଯେତେଶୀଘ୍ର ସମ୍ଭବ ସେମାନଙ୍କୁ ଫେରାଇ ଆଣି ଇନ୍ଦ୍ରପ୍ରସ୍ଥ ତାଙ୍କ ହାତରେ ଅର୍ପଣ କରନ୍ତୁ । ନିଜ ନିଜ ଭିତରେ ଥିବା ମାନାଭିମାନ ତୁଟାଇ ଦେଇ ଶାନ୍ତିରେ ବସବାସ କରିବା ଉଚିତ । ଏହା ସମ୍ଭବ ହେଲେ ଏକ ମହାକାଳର କରାଳ କବଳରୁ କୌରବମାନେ ରକ୍ଷା ପାଇଯିବେ । ପାଣ୍ଡବମାନେ ଦେବପୁତ୍ର ଓ ଅଜେୟ । ସେମାନେ ଧର୍ମର ବଶବର୍ତ୍ତୀ । ସ୍ୱୟଂ ଶ୍ରୀକୃଷ୍ଣ ତାଙ୍କର ସାଥୀ ଓ ସାରଥି । ସେମାନଙ୍କ ସହିତ ମିତ୍ରତା ସ୍ଥାପନ କରିବାରେ କୌରବମାନଙ୍କର ଲାଭ ଅଧିକ ।''

ହାଃ.... ହାଃ... ହାଃ.... ।

ହସି ଉଠିଲେ ଦୁର୍ଯ୍ୟୋଧନ । ବାହାସ୍ଫୋଟମାରି, ଜାନୁରେ କରାଘାତ କରି ଦର୍ପିତ ନୟନରେ ଚାହିଁ ରହିଲେ ମୈତ୍ରେୟଙ୍କ ଆଡ଼କୁ । ଋଷି କ୍ରୋଧ କଣ୍ଠରେ କହିଲେ, ''ମୁଁ ତୋତେ ଏଇ ଅଭିଶାପ ଦେଉଛି ଯେ ଗର୍ବରେ ଯେଉଁ ଉରୁ ମୋତେ ଦେଖାଇଛୁ, ଯୁଦ୍ଧରେ ଭୀମ ତୋର ସେଇ ଉରୁଭଙ୍ଗ କରି ସଂହାର କରିବ । ତୋ ଗର୍ବ ଚୂର୍ଣ୍ଣ ହେବ ।''

ଦୁର୍ଯ୍ୟୋଧନ ନିଜର ଭୁଲ ବୁଝିପାରି ମୈତ୍ରେୟଙ୍କୁ କ୍ଷମା ଭିକ୍ଷା କଲେ । ମୈତ୍ରେୟ କହିଲେ, ''ମୋ ଅଭିଶାପ ବୃଥା ହେବନାହିଁ । ତେବେ ତୁମେ ଯଦି ପାଣ୍ଡବମାନଙ୍କ ସହିତ ଶାନ୍ତିରେ ବସବାସ କରିବ ତାହେଲେ ହୁଏତ ଏଥିରୁ ରକ୍ଷା ମିଳିଯାଇପାରେ ।''

# ।। ଅର୍ଜୁନଙ୍କ ପାଶୁପତ ଲାଭ ।।

ପାଣ୍ଡବମାନେ କାମ୍ୟକବଣରୁ 'ଦ୍ୱୈତବଣ'କୁ ବ୍ରାହ୍ମଣମାନଙ୍କ ସହିତ ପ୍ରସ୍ଥାନ କଲେ । ଅସ୍ତ୍ର ଶସ୍ତ୍ର, ସୈନ୍ୟସାମନ୍ତ ଅଶ୍ୱ ଓ ରଥ ସମୂହ ତାଙ୍କ ସହିତ ଗଲେ । ଧର୍ମ ପୁତ୍ରଙ୍କର ଅଧିକାଂଶ ସମୟ ବ୍ରାହ୍ମଣ ଓ ମୁନିଋଷିମାନଙ୍କ ଗହଣରେ ଧର୍ମଚର୍ଚ୍ଚାରେ ବିତିଯାଉଥିଲା । ମଝିରେ ମଝିରେ ଦ୍ରୌପଦୀ ଓ ଭୀମ ତାଙ୍କ ସହିତ ରାଜନୀତି ବିଷୟରେ ଆଲୋଚନା କରୁଥିଲେ । କଥା ପ୍ରସଙ୍ଗରେ ଭୀମଙ୍କର ଆକ୍ଷେପ, ଦ୍ରୌପଦୀଙ୍କର ଅଭିମାନ ଯୁଧିଷ୍ଠିରଙ୍କୁ ସ୍ପର୍ଶକଲେ ମଧ୍ୟ, ସେ ସ୍ପର୍ଶ-କାତର ହେଉନଥିଲେ ।

ଦ୍ରୌପଦୀ କହୁଥିଲେ, ''ଧୃତରାଷ୍ଟ୍ରଙ୍କ ପରି ଜଣେ ଅନ୍ଧ ଓ ଅପାରଗ ରାଜା, ଧର୍ମପୁତ୍ରଙ୍କ ପରି ଜଣେ ବିଚକ୍ଷଣ ଶକ୍ତିଶାଳୀ ରାଜାଙ୍କୁ ବନସ୍ତକୁ ନିର୍ବାସନ କରିଦେଇପାରିଲେ । ଧର୍ମରାଜଙ୍କର ଧର୍ମବଳତ କାଇଁ କିଛି କରିପାରିଲା ନାହିଁ । ଲୋକମାନଙ୍କର ଧର୍ମ ପ୍ରତି ବିଶ୍ୱାସ ଆଉ ରହିବ କାହିଁକି ? ଯେଉଁ ପଞ୍ଚ ପାଣ୍ଡବ ତ୍ରିଭୁବନ ବିଜୟୀ ବୋଲି ଖ୍ୟାତି ସମ୍ପନ୍ନ, ସେମାନେ ପ୍ରତିବାଦ ବା ପ୍ରତିରୋଧ କରିବା ତେଣିକି ଥାଉ, ଯନ୍ତା ଭିତରେ ଆବଦ୍ଧ ସିଂହ ଶାବକ ପରି ନିରବ ରହିଲେ । ସେ ଶକ୍ତି ତାଙ୍କର ସେତେବେଳେ ଗଲାକୁଆଡ଼େ ? ଅନ୍ୟାୟ ଅନୀତିକୁ ଧର୍ମ ନାମରେ ଗ୍ରହଣ କରାଯିବା ଅଜ୍ଞତା ବ୍ୟତୀତ ଆଉ କିଛି ନୁହେଁ । ଧର୍ମରାଜ ଏହାକୁ ଏ ପର୍ଯ୍ୟନ୍ତ କିପରି ସମର୍ଥନ ଦେଇଛନ୍ତି ମୁଁ ବୁଝିପାରୁନି ।''

ଭୀମସେନ କହିଲେ, ''ଭାଇ ! କୌରବମାନେ ଚକ୍ରାନ୍ତକରି ଯେ ଆମଠାରୁ ରାଜ୍ୟ ଛଡ଼ାଇ ନେଇଛନ୍ତି ଏହା ତୁମର ହୃଦବୋଧ ହୋଇଛି କି ନାହିଁ । ପ୍ରଜାକୁଳ ବିଶ୍ୱାସ ସ୍ଥାପନ କରି ତୁମକୁ ଶାସନ ଭାର ଦେଇଥିଲେ ଶାନ୍ତି ଓ ସୁଖରେ ରହିବାପାଇଁ । ତୁମେ ଚାଲି ଆସିବା ଦ୍ୱାରା ବିଶ୍ୱାସଭଙ୍ଗ କରିଛ କି ନାହିଁ ବିବେକକୁ ପଚାର । ଅଭିଷେକ ଉତ୍ସବରେ ତୁମେ ବି ଧର୍ମକୁ ସାକ୍ଷୀରଖି ଶାନ୍ତିରେ ପ୍ରଜା ପାଳନ ପାଇଁ ଶପଥ କରିଥିଲ । ସେହି ପୁଣ୍ୟ ଶପଥକୁ ଅବମାନନା କଲ, ଚକ୍ରାନ୍ତର ଚାପାରେ ପଡ଼ି ବନବାସ ଦଣ୍ଡ ଭୋଗୁଛି'' । ପ୍ରକୃତ କ୍ଷାତ୍ର ଧର୍ମ ହେଉଛି ଅନ୍ୟାୟର ପ୍ରତିରୋଧ କରିବା । ଅନ୍ୟାୟ ଭାବରେ ଆମ ହାତରୁ ଛଡ଼ାଇ ନିଆଯାଇଥିବା ରାଜ୍ୟକୁ ଫେରାଇ ଆଣିବା ଆମର କାମ । ମୁଣ୍ଡରୁ ରାଜ ମୁକୁଟ ଉତାରି ଦେଇ ଅନ୍ୟାୟ ପ୍ରତିଶ୍ରୁତିର ପୁରୁଣା ପଗଡ଼ିଟା ତୁମେ କେତେଦିନ ପିନ୍ଧିବ ? ଆମେ କେତେଦିନ କୌରବମାନଙ୍କର ଅନ୍ୟାୟକୁ ବରଦାସ୍ତ କରିବୁ ? ତୁମେ କେବଳ ନିର୍ଦ୍ଦେଶ ଦିଅ ଭାଇ ! ଅନ୍ୟାୟର ମୂଳୋତ୍ପାଟନ ପାଇଁ ଆମେ ସମସ୍ତେ ପ୍ରସ୍ତୁତ ଅଛୁ ।''

ଭାବ ଗମ୍ଭୀର ଧର୍ମରାଜ ଯୁଧିଷ୍ଠିର !

କିଛି ସମୟର ନିରବତା ପରେ ଶ୍ରଦ୍ଧାଭରା କଣ୍ଠରେ କହିଲେ, ''ମୁଁ ତୁମ ଉଭୟଙ୍କ କଥାରେ ସମ୍ପୂର୍ଣ୍ଣ ଏକମତ । ସତରେ ମୁଁ ତୁମ ସମସ୍ତଙ୍କୁ କଷ୍ଟ ଦେଉଛି, ତେବେ ଏ କଷ୍ଟ ନିରର୍ଥକ କିମ୍ବା ମୂଲ୍ୟହୀନ ନୁହେଁ । ଏକ ଚିରନ୍ତନ 'ଇଷ୍ଟ'ର ପରିପୂର୍ତ୍ତି ପାଇଁ ଆମେ ଏହି ଦୁଃଖମେଧ ଯଜ୍ଞର ଆୟୋଜନ କରିଛେ । ଶପଥ ପାଳନରେ ଏହାର ପୂର୍ଣ୍ଣାହୁତି ପଡ଼ିବ । ଧୈର୍ଯ୍ୟର ସହିତ ସେହି ମହୋତ୍ସବକୁ ଅପେକ୍ଷାକର । କ୍ଷାତ୍ରଧର୍ମ ପାନଳ ନାମରେ ସେ ମହାଯଜ୍ଞରେ ବିଘ୍ନ ସୃଷ୍ଟି କରିବା ଉଚିତ ହେବନି ।ଯଜ୍ଞ ରକ୍ଷା କରିବା କ୍ଷତ୍ରିୟର ମଧ୍ୟ କର୍ତ୍ତବ୍ୟ । ଦୁଃଖ ସହ୍ୟ କରି ସତ୍ୟ ଓ ନ୍ୟାୟ ପ୍ରତିଷ୍ଠା କରିବା କ୍ଷତ୍ରିୟର ପ୍ରଧାନ ଧର୍ମ ।'' ଦ୍ରୌପଦୀ ଓ ଭୀମ ପ୍ରଭୃତି ଶାନ୍ତ ହେଲେ ।

ଯୁଧିଷ୍ଠିର ପୁଣି ବୁଝାଇଲେ, ''ବର୍ତ୍ତମାନ ପରିସ୍ଥିତିରେ ଆମେ ହଠାତ୍ ଯୁଦ୍ଧ ଘୋଷଣା କରିଦେବା ସମୀଚୀନ ହେବନାହିଁ । ସେମାନେ କ୍ଷମତାର କେନ୍ଦ୍ରବିନ୍ଦୁରେ ଅଛନ୍ତି । ସେମାନଙ୍କ ହାତରେ ହସ୍ତିନାପୁର ଆଉ ଇନ୍ଦ୍ରପ୍ରସ୍ଥ । କରଦ ରାଜ୍ୟ ମାନଙ୍କର ରାଜାମାନେ ବର୍ତ୍ତମାନ ସେମାନଙ୍କ ସପକ୍ଷରେ । କୌରବ ଭାଇମାନେ ଯୁଦ୍ଧ ବିଦ୍ୟାରେ କେହି କାହାକୁ ଊଣା ନୁହଁନ୍ତି । ପିତାମହ ଭୀଷ୍ମ ଓ ଦ୍ରୋଣ, ଦୁର୍ଯ୍ୟୋଧନର ବ୍ୟବହାରରେ ଅସନ୍ତୁଷ୍ଟ ହେଲେ ମଧ୍ୟ, ଯୁଦ୍ଧ ହେଲେ କୌରବପକ୍ଷ ନିଶ୍ଚୟ ସମର୍ଥନ କରିବେ । କର୍ଣ୍ଣ ତ ତାଙ୍କର ଅନ୍ତରଙ୍ଗ ଏବଂ ଏପରି କୌଣସି ଅସ୍ତ୍ରନାହିଁ, ଯେଉଁ ବିଦ୍ୟାରେ କି ସେ ଧୁରୀଣ ନୁହଁନ୍ତି । ତେବେ ମନେ ରଖିବାକୁ ହେବ, ଯୁଦ୍ଧ.... ଯୁଦ୍ଧ । ଏହା ଏକ ଦ୍ୱିଧାରଯୁକ୍ତ ଶାଣିତ ଅସ୍ତ୍ର । ଉଭୟପକ୍ଷ ଏଥିରେ କ୍ଷତିଗ୍ରସ୍ତ ହେବେ । ଯୁଦ୍ଧର ଫଳାଫଳ ଉପରେ ପୂର୍ବରୁ କିଛି କୁହାଯାଇ ପାରିବନାହିଁ ଏବଂ ଏହାର ସଫଳତା ସମ୍ପୂର୍ଣ୍ଣ ଅନିଶ୍ଚିତ । ଯୁଦ୍ଧ ପାଇଁ ବ୍ୟଗ୍ରତା ପ୍ରକାଶ କରିବାର ଆବଶ୍ୟକତା ନାହିଁ । ଏହା ଯେତେବେଳେ ଆପେ ଆସି ପହଞ୍ଚିବ ଆମେ କ'ଣ ତାକୁ ରୋକି ଦେଇ ପାରିବା ?''

ତା'ପରେ ଆସିଲେ କୃଷ୍ଣ ଦ୍ୱୈପାୟନ ବ୍ୟାସ ।

''ମୁଁ ଜାଣି ପାରିଲି ଯେ ଯୁଦ୍ଧ ଅନିବାର୍ଯ୍ୟ । ଚାଲିଆସିଲି ପରାମର୍ଶ ଦେବାକୁ । ତୁମ ପାଖରେ ଯେଉଁ ଅସ୍ତ୍ରସବୁ ଅଛି ତାହା ଆଜିର ଯୁଦ୍ଧ ପାଇଁ ଉପଯୁକ୍ତ ନୁହେଁ । ସେ ପ୍ରକାରର ଅସ୍ତ୍ରରେ ସଫଳତା

ଲାଭକରିବା ସମ୍ଭବ ନୁହେଁ । ଅର୍ଜୁନ ହିମାଳୟକୁ ଯାଇ କଠୋର ତପସ୍ୟା ପାଳନ କରନ୍ତୁ । ଇନ୍ଦ୍ର ଓ ଅନ୍ୟ ଦେବତାମାନଙ୍କୁ ସନ୍ତୁଷ୍ଟ କରି ସେମାନଙ୍କଠାରୁ ନୂତନ ଅସ୍ତ୍ର ସବୁ ସଂଗ୍ରହ କରନ୍ତୁ ।''

ଅର୍ଜୁନ ଆନନ୍ଦରେ ଏ ପ୍ରସ୍ତାବ ଗ୍ରହଣ କଲେ । ସମସ୍ତଙ୍କଠାରୁ ବିଦାୟ ନେଇ ବାହାରିଲେ ଲକ୍ଷ୍ୟ ପଥରେ । ଅଗମ୍ୟ ଅରଣ୍ୟ ମଧ୍ୟରେ ଚାଲିଥାନ୍ତି ନିଃସଙ୍ଗ ପଦାତିକ । ଘୋର ଅରଣ୍ୟ ମଧ୍ୟରେ ହଠାତ୍ ମଣିଷର କଣ୍ଠସ୍ୱର ଶୁଣାଗଲା ।

''କୁଆଡ଼େ ଯାଉଛ ? ବନ୍ଦକର ।''

ଅର୍ଜୁନ ଅଟକି ଗଲେ । ଦେଖିଲେ ସମ୍ମୁଖରେ ଏକ ବୃଦ୍ଧ ବ୍ରାହ୍ମଣ ଗଛ ଛାଇରେ ବସିଛନ୍ତି । ସେ ତାଙ୍କ ଆଡ଼କୁ ପ୍ରଶ୍ନଭରା ନୟନରେ ଚାହିଁଲେ ।

''ବତ୍ସ ! ତୁମେ ଜାଣିଛନା ନାହିଁ, ଏହା ମର୍ତ୍ତ୍ୟର ମଣିଷପାଇଁ ଏକ ନିଷିଦ୍ଧ ଅଞ୍ଚଳ । ଏଠାକୁ କେବଳ ମୁନିଋଷିମାନେ କଠୋର ତପସ୍ୟା ପାଇଁ ଆସନ୍ତି । ତୁମେ ଜଣେ କ୍ଷତ୍ରିୟ ଯୁବକ ପରି ଜଣା ପଡୁଛ । ତୁମର ଏହି ଗାଣ୍ଡିବ ଧନୁକୁ ଫୋପାଡ଼ି ଦିଅ ।''

ଅର୍ଜୁନ ବିନୀତ କଣ୍ଠରେ କହିଲେ, ''ମୁଁ ମଧ୍ୟ ତପସ୍ୟା ପାଇଁ ଏହି ପୁଣ୍ୟ ଭୂମିକୁ ଆସିଛି । ମୋର ତପସ୍ୟାରେ ଦେବତାମାନଙ୍କୁ ସନ୍ତୁଷ୍ଟକରି ମୁଁ ନୂତନ ଅସ୍ତ୍ରର ଅଧିକାରୀ ହେବା ପାଇଁ ଇଚ୍ଛାକରେ । ଆପଣ ଆଶୀର୍ବାଦ ଦିଅନ୍ତୁ ।''

ବ୍ରାହ୍ମଣ ନିଜର ଛଦ୍ମରୂପ ପରିହାର କରି ସ୍ୱୟଂ ଇନ୍ଦ୍ରରୂପରେ ଆବିର୍ଭୂତ ହେଲେ । ଅର୍ଜୁନଙ୍କୁ ଆଲିଙ୍ଗନ କରି କହିଲେ ପୁତ୍ର, ମୁଁ ତୁମକୁ ଦେଖିବାପାଇଁ ଆସିଥିଲି । ତୁମର ଇଚ୍ଛା ଅନୁସାରେ ଯେଉଁବର ମାଗିବାର ମାଗ ।

''ଅର୍ଜୁନ କହିଲେ, ''ହେ ପିତା! ଆଜି ମୋର ପରମ ସୌଭାଗ୍ୟ, ଆପଣଙ୍କ ଦର୍ଶନ ଲାଭ କରି ମୁଁ ନିଜକୁ ପୁଣ୍ୟବାନ ମନେ କରୁଛି । ଯଦି ଆପଣ ମୋ ଉପରେ ପ୍ରୀତ ତା'ହେଲେ ମୋତେ ଆପଣଙ୍କର ଦିବ୍ୟ ଅସ୍ତ୍ର ଦାନ କରନ୍ତୁ ।''

ଇନ୍ଦ୍ର ସନ୍ତୁଷ୍ଟ ହୋଇ କହିଲେ, ''ମୁଁ ମୋର ଦିବ୍ୟ ଅସ୍ତ୍ର ତୁମକୁ ପ୍ରଦାନ କଲି । ତେବେ ଏପରି ପାର୍ଥିବ ସମ୍ପତ୍ତି ଲାଭପାଇଁ ଇଚ୍ଛାକଲ କାହିଁକି ? ମୁଁ ତୁମକୁ ସ୍ୱର୍ଗପୁରକୁ ନେଇଯିବାକୁ ଚାହେଁ । ତୁମେ ମହାଆନନ୍ଦରେ ମୋ ପାଖରେ ରହିବ । ଶାଶ୍ୱତ ଶାନ୍ତିର୍ ଅଧିକାରୀ ହେବ । ସ୍ୱର୍ଗର ଅମରତ୍ୱକୁ ପରିହାର କରି ମର୍ତ୍ତ୍ୟର ନଶ୍ୱରତା ପାଇଁ ଏତେ ବ୍ୟାକୁଳ କାହିଁକି ?

''ହେ ପିତା ! ଆପଣଙ୍କର ଏ ଶୁଭଚିନ୍ତନ ମୋ ପାଇଁ ଏକ ଆଶୀର୍ବାଦ । ତେବେ ମୁଁ ମୋର ପାର୍ଥିବ କର୍ତ୍ତବ୍ୟ ସମ୍ପୂର୍ଣ୍ଣ କରିସାରିନାହିଁ । ମୋ ମୁଣ୍ଡରେ ଏକ ବିରାଟ ଋଣ ବୋଝ ରହିଛି । ମୋର ଭାଇମାନେ ଅନ୍ୟାୟ ଭାବରେ ରାଜ ସୁଖରୁ ବଞ୍ଚିତ ହୋଇ ବଣରେ ଦୁଃଖ ଯନ୍ତ୍ରଣା ଭୋଗ କରୁଛନ୍ତି । ଶତ୍ରୁମାନଙ୍କୁ ସଂହାର କରି ଆମେ ଆମର ସମ୍ମାନ ରକ୍ଷାପାଇଁ ଶପଥ ନେଇଛୁ । ନିଜର ସ୍ୱାର୍ଥ ସିଦ୍ଧିପାଇଁ ମୁଁ କିଛି ଚାହୁଁ ନାହିଁ ।''

''ଠିକ୍ ଅଛି ! ତୁମେ କଠୋର ତପସ୍ୟା କରି ଶିବଙ୍କୁ ସନ୍ତୁଷ୍ଟ କର । ତାଙ୍କଠାରୁ ପାଶୁପତ ଅସ୍ତ୍ର ଲାଭକର । ତୁମର ଲକ୍ଷ୍ୟ ପୂରଣ ହୋଇପାରିବ ।''

ଅଦୃଶ୍ୟ ହୋଇଗଲେ ଇନ୍ଦ୍ରରାଜ ।

ଅର୍ଜୁନ ହିମାଳୟକୁ ପ୍ରସ୍ଥାନ କଲେ । ଶିବଙ୍କ ତୁଷ୍ଟି ବିଧାନ ପାଇଁ ତପସ୍ୟା ଆରମ୍ଭ କଲେ । କଠୋର ତପସ୍ୟା । ଏକଗୋଡ଼ି ଠିଆ ହୋଇ, କେବଳ ବାୟୁ ଆହାର କରି ସେ ଦୀର୍ଘ ଦିନତପସ୍ୟା କଲେ । ତପସ୍ୟାରେ ଶିବଙ୍କ ଆସନ ଟଳମଳ ହେଲା । ଛଦ୍ମ ବ୍ୟାଧ ବେଶରେ ଆସି ସେଠାରେ ଉପସ୍ଥିତ ହେଲେ । ଧାବମାନ ଏକ ଅରଣ୍ୟ ଶୂକରକୁ ଶରନିକ୍ଷେପ କଲେ । ଅର୍ଜୁନ ପଚାରିଲେ, ତମେ କିଏ ? ତମରତ ସାହସ କିଛି କମ୍ ନୁହେଁ । ମୁଁ ଯେଉଁ ଶିକାରକୁ ଲକ୍ଷ୍ୟ କରିଛି, ତୁମେ ତାକୁ ଶରବିଦ୍ଧ କରିଛ ।''

''ଏଁ କଣ ହେଲା ? ମୋତେ ତମେ ସାହସ କଥା ପଚାରୁଛ ? ଜାଣିଚ ଏ ବଣର ରାଜା କିଏ ? ଆମେ ଏ ବଣ ମୁଲକରେ ରହୁଛୁ । ଏ ବଣ ଆମର । ଏଠାକାର ଜୀବଜନ୍ତୁ ଉପରେ ଆମର ସମ୍ପୂର୍ଣ୍ଣ ଅଧିକାର, ତୁମର ନୁହେଁ । ମୁଁ ଏହାକୁ ପ୍ରଥମେ ମାରିଛି, ଶିକାରଟା ମୋର । ଯଦି ଲଢ଼ିବା କଥା ମୋ ସହିତ ଲଢ଼ ।''

ଅର୍ଜୁନ ବ୍ୟାଧ ଉପରକୁ ଶର ନିକ୍ଷେପ କଲେ । ଗୋଟିଏ ବି ସର ତା' ଦେହରେ ବାଜିଲା ନାହିଁ । ଗୋଟି ଗୋଟି କରି ସବୁ ଅସ୍ତ୍ର ଶେଷ ହୋଇଗଲା । ତାପରେ ସେ ଅସି ଚାଳନା କଲେ । ତାହାମଧ୍ୟ ଦ୍ୱିଖଣ୍ଡ ହୋଇ ଭାଙ୍ଗିଗଲା । ଅର୍ଜୁନ ବାଲିରେ ଶିବଲିଙ୍ଗ କରି ପୂଜା କଲେ, ତାପରେ ସେ ବ୍ୟାଧର ଛଦ୍ମରୂପ ଉଭେଇ ଗଲା । ସେ ଦେଖିଲେ ସମ୍ମୁଖରେ ସ୍ୱୟଂ ଶିବ ବିରାଜମାନ । ସେ ତାଙ୍କ ପାଦତଳେ ପଡ଼ି କ୍ଷମା ଭିକ୍ଷାକଲେ । ଶିବ କହିଲେ, ହେ ମଧ୍ୟମ ପାଣ୍ଡବ । ମୁଁ ତୁମ ଉପରେସନ୍ତୁଷ୍ଟ । ତୁମର ପରୀକ୍ଷା ସରି ଯାଇଛି ଓ ତୁମେ ସଫଳତା ହାସଲ କରିଛ । ପୂର୍ବ ଜନ୍ମରେ ତୁମେ ଥିଲ ମହର୍ଷି ନର । ନାରାୟଣଙ୍କ ସହଚର । ସଂସାରର ନଶ୍ୱରତାକୁ ତୁମେ ଅତିକ୍ରମ କରିଛ । ତୁମେ କି ବର ମାଗୁଛ ମାଗ ।

ଅର୍ଜୁନ ଯୋଡ଼ ହସ୍ତରେ କହିଲେ, ''ହେ ପ୍ରଭୁ ! ମୁଁ ଆପଣଙ୍କ ପାଶୁପତ ଅସ୍ତ୍ର ବ୍ୟତୀତ ଆଉକିଛି ଚାହୁଁ ନାହିଁ । ଆପଣ ତାହାହିଁ ମୋତେ ପ୍ରଦାନ କରନ୍ତୁ ।''

ଶିବ ଅର୍ଜୁନଙ୍କୁ ପାଶୁପତ ଅସ୍ତ୍ର ଦାନକଲେ । କହିଲେ, ଏହି ଅସ୍ତ୍ରର ଅସଦ୍ ବ୍ୟବହାର କଲେ ପୃଥିବୀରେ ପ୍ରଳୟ ସୃଷ୍ଟି ହେବ । କେବଳ ଚରମ ମୁହୂର୍ତ୍ତରେ ତୁମେ ଏହା ବ୍ୟବହାର କରିବ ।''

ଅର୍ଜୁନ ପାଶୁପତ ଅସ୍ତ୍ର ଲାଭକରି ଆନନ୍ଦିତ ହେଲେ । ଏହାପରେ ଇନ୍ଦ୍ର ତାଙ୍କର ସାରଥି ମାତଳୀଙ୍କୁ ପଠାଇ ଅର୍ଜୁନଙ୍କୁ ତାଙ୍କ ପୁରୀକୁ ନେଇଗଲେ ।

━━━━━━━━━━━━━━━━━━━━ ନଅ

# ।। ଅମରାବତୀରେ ଅର୍ଜୁନ ।।

ଅମରାବାତୀ ! ଦେବରାଜ ଇନ୍ଦ୍ରଙ୍କର ରାଜଧାନୀ ।

ମଣିମାଣିକ୍ୟ ଖଚିତ ଅପରରୂପ ସୌନ୍ଦର୍ଯ୍ୟର ଲୀଳାସ୍ଥଳୀ ଇନ୍ଦ୍ରପୁରୀ ଅମରାବତୀ । ଇନ୍ଦ୍ରଙ୍କର ନିମନ୍ତ୍ରଣ ରକ୍ଷାକରି ତାଙ୍କ ସାରଥି ମାତଳୀଙ୍କ ସହିତ ଆସି ପହଞ୍ଚିଲେ ଅର୍ଜୁନ । ବିପୁଳ ସମ୍ବର୍ଦ୍ଧନାର ବ୍ୟବସ୍ଥା କରାଯାଇଥିଲା । ଇନ୍ଦ୍ର ଓ ସ୍ୱର୍ଗର ଦେବତାଗଣ ତାଙ୍କୁ ଅଭିନନ୍ଦନ ଜଣାଇଲେ । ଦେବ ଦୁନ୍ଦୁଭି ବାଜି ଉଠିଲା । ଅପ୍‌ସରାଗଣ ନୃତ୍ୟ ଚପଳ ଛନ୍ଦ ସୃଷ୍ଟି କରିଥାନ୍ତି । ତାରୁଣ୍ୟର ତରଙ୍ଗ ତୋଳି । ଅନବଦ୍ୟ ଉତ୍ସବ ମୁଖର ମୁହୂର୍ତ୍ତ ।

ନନ୍ଦନ ବନର ଅନତି ଦୂରରେ ଏକ ମଣିମୟ ପ୍ରାସାଦ । ଅର୍ଜୁନ ସେଇଠାରେ ରହିବାର ବ୍ୟବସ୍ଥା କରାଯାଇଥିଲା । ଇନ୍ଦ୍ର ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ଶ୍ରଦ୍ଧାସିକ୍ତ କଣ୍ଠରେ କହିଲେ, ''ପ୍ରିୟ ପୁତ୍ର ଅର୍ଜୁନ ! ତୁମେ ପ୍ରକୃତରେ ଭାଗ୍ୟବାନ । ମୁନି ଋଷି ଧାର୍ମିକ ବ୍ୟକ୍ତିମାନଙ୍କ ବ୍ୟତୀତ ଅନ୍ୟ କାହାରି ସ୍ୱର୍ଗପ୍ରାପ୍ତି ହୁଏ ନାହିଁ । ପୁଣି ତାହା ମୃତ୍ୟୁପରେ, ଜୀବନକାଳ ମଧ୍ୟରେ ନୁହେଁ । ତୁମେ କିନ୍ତୁ ସଦେହ ସ୍ୱର୍ଗପୁରକୁ ଆସି ପାରିଲ । ମର୍ତ୍ତ୍ୟ ମଣିଷର ଦୁର୍ଲଭ ଭାଗ୍ୟ ତୁମେ ଲାଭ କରିଛ ।''

''ଆପଣଙ୍କର ଶ୍ରଦ୍ଧା ଏବଂ ଆଶୀର୍ବାଦର ଏହାହିଁ ଫଳ । ମୋ ପରି ଏକ ଅକିଞ୍ଚନର ଏ ସୌଭାଗ୍ୟ ଆସିବ କେଉଁଠୁ ?''

ଅର୍ଜୁନ କିଛିଦିନ ସେଠାରେ ମହାଆନନ୍ଦରେ ଅତିବାହିତ କଲେ । ଅଗ୍ନି, ବାୟୁ ଓ ଅନ୍ୟାନ୍ୟ ଦେବତାମାନେ ତାଙ୍କୁ ନିଜ ନିଜର ଅସ୍ତ୍ର ପ୍ରଦାନ କଲେ । ଦେବତା ମାନଙ୍କର ସାନିଧ୍ୟ ଲାଭକରି ସେହେଲେ ଏକ ଅଲୌକିକ ତେଜପୁଞ୍ଜର ଅଧିକାରୀ । ଶାରୀରିକ ତଥା ମାନସିକ ଶକ୍ତି ତାଙ୍କର ପରିପୁଷ୍ଟ ହେଲା । ବୌଦ୍ଧିକ ଚେତନାର ପରିପୂର୍ତ୍ତିରେ ସେ ପ୍ରବୃଦ୍ଧ ହୋଇ ଉଠିଲେ ।

ପୁଷ୍ପିତ ପାରିଜାତର ଗନ୍ଧ ମହକରେ ମହକିତ ଏକ ସନ୍ଧ୍ୟା ।

ଅର୍ଜୁନ ଦୂରଦିଗ୍‌ବଳୟକୁ ଚାହିଁଥାନ୍ତି ନିର୍ନିମେଷ ନୟନରେ । ଦେଖୁଥାନ୍ତି ଚଟୁଳ ଚାନ୍ଦର ଉଦୟନ ଉତ୍ସବ । ହସକୁରୀ ଚାନ୍ଦର ହସ ହିଲ୍ଲୋଳ, ସୁଲୁସୁଲୁ ପବନର ଶାନ୍ତ ଶୀତଳ ସ୍ପର୍ଶ ମକରନ୍ଦର ମତୁଆଲା, ଗନ୍ଧ, ତାଙ୍କୁରୋମାଞ୍ଚିତ କରୁଥାଏ । ଚନ୍ଦନ ବନରେ ଚାଲିଥାଏ ଚାନ୍ଦିନୀ ଚର୍ଚ୍ଚା । ବିସ୍ମିତ ଓ ବିମୋହିତ ନୟନରେ ଚାହିଁଥାନ୍ତି ଅର୍ଜୁନ ସେଇଆଡ଼କୁ । ସତେ ଯେପରି ତପୋମଗ୍ନ ତାପସ ।

ବିଦ୍ୟୁତର ବିଦ୍ୟୁରେଖା ପରି ଝଲସି ଉଠିଲା ଏକ ଆଲୋକ ମେଖଳା । ମୋହାବେଶ ମଧ୍ୟରୁ ଫେରି ଆସିଲେ ଅର୍ଜୁନ । ଅନିର୍ବଚନୀୟ ରୂପ ସମ୍ଭାର ନେଇ ସମ୍ମୁଖରେ ଦଣ୍ଡାୟମାନ ଏକ ନାରୀ ମୂର୍ତ୍ତି । ତନୁଶ୍ରୀରୁ ବିଚ୍ଛୁରିତ ହେଉଛି, ଅନବଦ୍ୟ ରୂପରଶ୍ମୀ । ଜ୍ୟୋତ୍ସ୍ନାଭିସାରିକା ଉର୍ବଶୀ ସତେ ଅବା ଆଉ ଏକ ଲାସ୍ୟମୟୀ ଚନ୍ଦ୍ରମା ।

ଅର୍ଜୁନ ଉଠି ଆସି ତାଙ୍କୁ ସାଦର ସମ୍ମାନ ସହିତ ପ୍ରଣାମ ଜଣାଇଲେ । ନମ୍ର ତଥା ବିନୀତ କଣ୍ଠରେ କହିଲେ, ପ୍ରପିତାମହୀ ଉର୍ବଶୀଙ୍କୁ ଭରତକୁଳ ସମ୍ଭୂତ ଅର୍ଜୁନର ଭକ୍ତିପୂତ ପ୍ରଣତି । ଆପଣଙ୍କର ଦର୍ଶନ ମୋତେ ପବିତ୍ର କରିଛି ଦେବି । ମୁଁ ଅତ୍ୟନ୍ତ ଭାଗ୍ୟବାନ ।''

ଏପ୍ରକାର ଅଦ୍ଭୁତ ବ୍ୟବହାରରେ ଚିରଯୌବନା ଜ୍ୟୋତ୍ସ୍ନାଭିସାରିକା ଅପ୍ସରୀ ଉର୍ବଶୀଙ୍କର ଶୃଙ୍ଗାର କାମନା ମଉଳିଗଲା । ଆହତ ସର୍ପିଣୀ ପରି ଉତ୍କ୍ଷିପ୍ତ ହୋଇ କହିଲେ, ''ତୁମେ ଏକ ଅଦ୍ଭୁତ ଯୁବକ । ମର୍ତ୍ତ୍ୟର ମାପକାଠିରେ ସ୍ୱର୍ଗର ସ୍ୱର୍ଗୀୟତାକୁ ମାପୁଛ କାହିଁକି ? ମର୍ତ୍ତ୍ୟ ସମ୍ମତ ଚଳଣି ଓ ଚିନ୍ତା, ସ୍ୱର୍ଗପାଇଁ ପ୍ରଯୋଜ୍ୟ ନୁହେଁ । ମର୍ତ୍ତ୍ୟ କଥା ଭୁଲିଯାଅ । ସ୍ୱର୍ଗର ପରମ୍ପରାକୁ ସମ୍ମାନ ଦିଅ । ସ୍ୱର୍ଗ ଚିର ତାରୁଣ୍ୟର ପୁଣ୍ୟ ପୁରୀ । ଏ ନନ୍ଦନବନରେ ସମ୍ଭୋଗର ଦକ୍ଷିଣାପବନ ଚିର ପ୍ରବାହିତ । ବୟସର ବାୟସମାନେ ନନ୍ଦନବନରେ ପ୍ରବେଶ କରି କୋଳାହଳ କରନ୍ତି ନାହିଁ । ମୋତେ ନେଇ ଯେଉଁ ମର୍ତ୍ତ୍ୟ ସଂପର୍କର ନିଷିଦ୍ଧ କାହାଣୀ ତୁମେ ଉପସ୍ଥାପନ କରିଛ, ତାହାର ନୈତିକ ପ୍ରାସଙ୍ଗିକତା ସ୍ୱର୍ଗଲୋକରେ ନାହିଁ । ମୁଁ ଜ୍ୟୋତ୍ସ୍ନାଭିସାରିକା । ମୁନି,ଋଷି ଓ ଦେବ ଚିତ୍ତହାରିଣୀ ଉର୍ବଶୀ । ଆସ, ମୋ ସହିତ ଜ୍ୟୋତ୍ସ୍ନାବିହାର କର ।''

''ଅର୍ଜୁନ ଶାନ୍ତ କଣ୍ଠରେ କହିଲେ, ଦେବି ! ମୁଁ ମର୍ତ୍ତ୍ୟର ମାନବ ଓ ମର୍ତ୍ତ୍ୟପରମ୍ପରା ରକ୍ଷାକରିବା ମୋର ଧର୍ମ । ତୁମେ ମୋର ମାତୃରୂପିଣୀ ମହନୀୟା ଓ ବନ୍ଦନୀୟା ନାରୀ । ତୁମର ଏ ଅଭିସାର ପ୍ରସ୍ତାବକୁ ମୁଁ ସମ୍ମାନ ଦେଇପାରୁନାହିଁ । ମୋତେ କ୍ଷମା ଦିଅ ।''

ଉର୍ବଶୀଙ୍କର ଜୀବନରେ ଏହାଥିଲା ପ୍ରଥମ ପରାଜୟ । ତାଙ୍କର କନ୍ଦର୍ପ ବାଣ ଛାର ଏକ ମର୍ତ୍ତ୍ୟ ମଣିଷର ହୃଦୟକୁ ବିଦ୍ଧ କରି ପାରିଲା ନାହିଁ । ଯେଉଁ କମନୀୟ କଟାକ୍ଷରେ, ସେ ମହାମହା ମୁନିଋଷି ମାନଙ୍କର ମନକୁ ଦିନେ ଟଳାଇ ପାରିଥିଲେ, ତାହା ଆଜି ବ୍ୟର୍ଥତାରେ ପରିଣତ ହୋଇଛି । ଯୌବନଭରା ଉର୍ବଶୀର ବିପୁଳ ଶରୀର ସମ୍ଭାର, ଅର୍ଜୁନଙ୍କ ଭିତରେ ଶୃଙ୍ଗାର ରସ ସୃଷ୍ଟି କରି ପାରିଲା ନାହିଁ । ଚରମ ଅପମାନର ପ୍ରତିଶୋଧ ପାଇଁ ସେ ଅର୍ଜୁନଙ୍କୁ ଅଭିଶାପ ଦେଲେ ।

''ହେ ଆତ୍ମାଭିମାନୀ ନିଷ୍ଠୁର ଯୁବକ ! ନପୁଂସକ ହୋଇଯାଅ ।'' ଅଦୃଶ୍ୟ ହୋଇଗଲେ ଉର୍ବଶୀ ।

ଅଭିଶାପ ଗ୍ରସ୍ତ ଅର୍ଜୁନ ମନ ଦୁଃଖରେ ବସିଥାନ୍ତି । ଆସି ପହଞ୍ଚିଲେ ଇନ୍ଦ୍ରଦେବ । ସମସ୍ତ ଘଟଣା ଶୁଣିବାପରେ କହିଲେ, ''ବତ୍ସ ! ଏତେ ବ୍ୟସ୍ତ କାହିଁକି ? ତମେ ଆଦୌ ଭୁଲ କରିନାହଁ । ଏ ଦଣ୍ଡ ପରୋକ୍ଷରେ ଆଶୀର୍ବାଦର କାମ କରିବ । ତୁମେ ଯେତେବେଳେ ଏକବର୍ଷପାଇଁ ଅଜ୍ଞାତ ବାସରେ ରହିବ, ସେତେବେଳେ ତୁମର କ୍ଲୀବତ୍ୱ ହିଁ ତୁମର ଅସଲ ପରିଚୟକୁ ଘୋଡ଼ାଇ ରଖିବ । ତୁମକୁ କୌରବପକ୍ଷ ସମସ୍ତ ଚେଷ୍ଟା ସତ୍ତ୍ୱେ ଚିହ୍ନି ପାରିବେ ନାହିଁ ଓ ଅଜ୍ଞାତବାସ ପରେ ତୁମେ ତୁମରାଜ୍ୟ ଫେରି ପାଇବ । କେବଳ ଅଜ୍ଞାତବାସ ସମୟ ପାଇଁ ତୁମେ ତୁମର ପୁରୁଷତ୍ୱ ହରାଇବ । ବର୍ତ୍ତମାନ ଓ ତାପରେ, ପୂର୍ବ ପୌରୁଷ ଓ ଶକ୍ତି ତୁମଠାରୁ ଅପସୃତ, ହେବନାହିଁ । ମୋ ଅନୁରୋଧ ରକ୍ଷା କରିଛନ୍ତି ଉର୍ବଶୀ । ଅଭିଶାପର ସମୟସୀମାକୁ ମଧ୍ୟ କୋହଳ କରିଛନ୍ତି ।''

ଅଭିଶାପ ଛଳରେ ମିଳିଥିବା ଆଶୀର୍ବାଦକୁ ଅର୍ଜୁନ ସ୍ୱାଗତ କଲେ । ତାପରେ କିଛିଦିନ ପାଇଁ ସେ ଇନ୍ଦ୍ରଙ୍କ ସହିତ ସ୍ୱର୍ଗପୁରୀରେ ରହିଲେ । ଦିନେ ମହର୍ଷି ଲୋମଶ ଇନ୍ଦ୍ରପୁରକୁ ଆସିଥାନ୍ତି । ସେ ଅର୍ଜୁନଙ୍କ ପରିଚୟ ପାଇ ଆନନ୍ଦିତ ହେଲେ । ଇନ୍ଦ୍ରକହିଲେ, ''ହେ ଋଷିଶ୍ରେଷ୍ଠ ! ଆପଣ ମର୍ତ୍ତ୍ୟପୁରକୁ ଯାଇ ଧର୍ମରାଜ ଯୁଧିଷ୍ଠିରଙ୍କୁ ସାକ୍ଷାତ କରନ୍ତୁ । ସେ ଆପଣଙ୍କର ବିହିତ ସମ୍ବର୍ଦ୍ଧନା କରିବେ । ତାଙ୍କୁ କହିବେ, ଅର୍ଜୁନ ମୋ ସହିତ ଏଠାରେ କିଛିଦିନ ରହିବାପରେ ମର୍ତ୍ତ୍ୟପୁରକୁ ଫେରିବେ । ବିଳମ୍ବ ପାଇଁ ବ୍ୟସ୍ତ ହେବେନାହିଁ ।

ଲୋମଶ ଋଷି ମର୍ତ୍ତ୍ୟପୁରକୁ ଯାଇ ପାଣ୍ଡବମାନଙ୍କୁ ଅର୍ଜୁନଙ୍କ ଖବର ଦେଲେ । ସେମାନେ ଆଶ୍ୱସ୍ତ ହେଲେ । ଇନ୍ଦ୍ରଙ୍କ ନିର୍ଦ୍ଦେଶରେ ଗନ୍ଧର୍ବବିଦ୍ୟାରେ ନିପୁଣ ଚିତ୍ରସେନ, ଅର୍ଜୁନଙ୍କୁ ସଙ୍ଗୀତ ଓ ନୃତ୍ୟରେ ନିପୁଣ କରାଇଲେ । ଅର୍ଜୁନ ସ୍ୱର୍ଗପୁରରେ ପାଞ୍ଚବର୍ଷ ରହିଲେ ।

# ।। ଯୁଧିଷ୍ଠିରଙ୍କୁ ମୁନି ବୃହଦାଶ୍ୱଙ୍କର ଆଶ୍ୱାସନା ।।

ପ୍ରତିଦିନ ବ୍ରାହ୍ମଣ ଓ ମୁନିଋଷିମାନେ ଯୁଧିଷ୍ଠିରଙ୍କ ପାଖକୁ ଆସନ୍ତି । ତାଙ୍କ ସହିତ ଧର୍ମ ତତ୍ତ୍ୱ ବିଷୟରେ ଆଲୋଚନା ହୁଏ । ସେଦିନ ଆସିଥାନ୍ତି ମହାମୁନି ବୃହଦାଶ୍ୱ । ଉଭୟଙ୍କ ମଧ୍ୟରେ ଆଲୋଚନା ଚାଲିଥାଏ । ଧର୍ମପୁତ୍ର କରୁଣ କଣ୍ଠରେ କହିଲେ, ''ହେ ମହର୍ଷି ! ମୁଁ ଏ ସଂସାରରେ ସବୁଠାରୁ ବଳି ହତଭାଗ୍ୟ । ଶୈଶବରେ ପିତାଙ୍କୁ ହରାଇବାକୁ ହେଲା । ଯେଉଁମାନେ ପୁତ୍ରପରି ମୋତେ ପାଳନ କଲେ ସେମାନେ ଉତ୍ତର ଜୀବନରେ ସେଇ ମମତା ରଖିଲେ ନାହିଁ । କପଟ ଦ୍ୟୁତକ୍ରୀଡ଼ାରେ ମୋ ରାଜ୍ୟ ଇନ୍ଦ୍ରପ୍ରସ୍ଥକୁ ହରାଇବାକୁ ପଡ଼ିଲା । ଦେବୀ ଦ୍ରୌପଦୀ, କୌରବ କୁଳର ରାଜବଧୂ, ନିଜର ଆତ୍ମୀୟଙ୍କ ଦ୍ୱାରା ଅପମାନିତ ହେଲେ । ଶେଷରେ ଆମକୁ ଦରିଦ୍ର ବନଚାରୀର ଜୀବନ ଯାପନ କରିବାକୁ ପଡ଼ିଲା । ତଥାପି ମୋର ଦୁର୍ଭାଗ୍ୟର ଅବସାନ କେଉଁଠି ତାହା ମୁଁ ଜାଣେନାହିଁ ।''

ବୃହଦାଶ୍ୱ ଦୃଢ଼ତାର ସହିତ ସ୍ନେହଭରା କଣ୍ଠରେ କହିଲେ, ''ହେ ଧର୍ମପୁତ୍ର ! ଦୁର୍ଭାଗ୍ୟ ଯେ କାହାକୁ ଶଙ୍ଖୁଳିନଯାଏ, ଏକଥା କୁହାଯାଇ ପାରିବନାହିଁ । ମଣିଷ ଯେତେବେଳେ ଦୁର୍ଯୋଗର ସମ୍ମୁଖୀନ ହୁଏ ସେତେବେଳେ ସେ ଭାବେ, ତା'ଠାରୁ ବଳି ହତଭାଗ୍ୟ ଏ ସଂସାରରେ ଆଉ କେହି ନାହିଁ । ଆପଣ ସେଇ ନ୍ୟାୟରେ ନିଜକୁ ହତଭାଗ୍ୟ ବୋଲି କହୁଛନ୍ତି । ମହାରାଜା ନଳ ଓ ରାଣୀ ଦମୟନ୍ତୀଙ୍କ ଠାରୁ ଅଧିକ ଦୁଃଖ ଆପଣ କ'ଣ ଭୋଗିଛନ୍ତି ? ତାଙ୍କ ଦୁଃଖର କାହାଣୀ ମାନବ ଜୀବନର ଏକ ଦୁଃଖଦ ଅଧ୍ୟାୟ । ତାଙ୍କ ତୁଳନାରେ ଆପଣ ବହୁତ ଭଲରେ ଅଛନ୍ତି ।''

ସତେନା କ'ଣ ? ଆପଣ ଦୟାକରି ତାଙ୍କ ବିଷୟରେ କିଛି କହନ୍ତୁ ।''

ଆଚ୍ଛା...ଶୁଣନ୍ତୁ ।''ନିଷଧ ରାଜା ନଳ । ରୂପରେ ଯେପରି ଅନୁପମ ଗୁଣରେ ସେପରି ଅତୁଳନୀୟ । ସେ ଥିଲେ ଖୁବ୍ ଶକ୍ତିଶାଳୀ । ତାଙ୍କର ସୈନ୍ୟବଳ ଥିଲା ଅମାପ । ସେ ବହୁ ଦେଶଜୟ କରିଥିଲେ । ଦିନେ ସେ ପ୍ରମୋଦ ଉଦ୍ୟାନରେ ବସିଥାନ୍ତି । ଦେଖିଲେ, ଦଳେ ଦୁଗ୍ଧଫେନନିଭ ଶୁଭ୍ର ହଂସ ପୁଷ୍କରିଣୀରେ ସନ୍ତରଣ କରୁଛନ୍ତି । ସେ ଆନନ୍ଦରେ ସେଥିରୁ ଗୋଟିଏ ହଂସ ଧରି ପକାଇଲେ ।

କି ଆଶ୍ଚର୍ଯ୍ୟ କଥା ! ହଂସଟି ମଣିଷ ପରି କହିଲା, ''ହେ ସମ୍ରାଟ ! ଆପଣ ମୋତେ ଧରିଛନ୍ତି । ଏହା ଏକ ଶୁଭ ଘଟଣା । ଖୁବ୍ ନିକଟରେ ମୁଁ ଜଣେ ରାଜକନ୍ୟାଙ୍କୁ ଦେଖିଛି ତାଙ୍କପରି ସୁନ୍ଦରୀ ତିନି ଭୁବନରେ ଦେଖିବାକୁ ବିରଳ । ତାଙ୍କ ପାଇଁ ଜଣେ ଯୋଗ୍ୟ ବର ମୁଁ ଖୋଜି ବୁଲୁଛି । ଆନନ୍ଦ କଥା, ଏତେଦିନପରେ ସେହି ଅନୁପମ ରାଜକୁମାରଙ୍କୁ ମୁଁ ଆପଣଙ୍କ ଭିତରୁ ଆବିଷ୍କାର କରିଛି । ଏ ଶୁଭ ସମ୍ବାଦ ତାଙ୍କୁ ଦେବା ପାଇଁ ଦୟାକରି ମୋତେ ଆପଣ ବନ୍ଧନ ମୁକ୍ତ କରିଦେବେକି ?''

ନଳ ଭାବବିହ୍ୱଳ ହୋଇ ହଂସଟିକୁ ଆଉଁଶି ଦେଲେ । ତା' ମୁହଁକୁ ଉପରକୁ ଟେକି ମଧୁର କଣ୍ଠରେ କହିଲେ, 'ହେ ହଂସରାଜ ! ତୁମେ ସାକ୍ଷାଦ୍ ମୋର ଭାଗ୍ୟ ଦେବତା । ଏ ଶ୍ରଦ୍ଧାରୁ ମୋତେ ବଞ୍ଚିତ କରିବ ନାହିଁ । ତୁମେ ଯାଅ ।'

ହଂସ ଉଡ଼ି ଉଡ଼ି ବିଦର୍ଭ ରାଜ୍ୟରେ ପହଞ୍ଚିଲା ।

ସଖିମାନଙ୍କ ଗହଣରେ ପ୍ରମୋଦ ଉଦ୍ୟାନର ପୁଷ୍କରିଣୀ ତଟରେ ବସିଥାନ୍ତି ବିଦର୍ଭ ରାଜକନ୍ୟା ଦମୟନ୍ତୀ । ହସ ଖୁସିରେ ସମସ୍ତେ ମଜଗୁଲ । ଦଳେହଂସ ଉଡ଼ି ଉଡ଼ି ଆସି ପୁଷ୍କରିଣୀର ନୀଳ ଜଳ ତରଙ୍ଗରେ ସନ୍ତରଣ କଲେ । ଦମୟନ୍ତୀ ଓ ତାର ସଖିମାନେ ସେଇ ହଂସ ମଧ୍ୟରୁ କେତେକଙ୍କୁ ଧରି

ନେଲେ । ରାଜକନ୍ୟାଙ୍କ ହାତରେ ଥିବା ହଂସଟି କହିଲା, ମୋର ପରମ ସୌଭାଗ୍ୟ ଯେ, ଏତେଦିନ ଧରି ଯେଉଁ ରାଜକୁମାରୀଙ୍କୁ ମୁଁ ଖୋଜୁଥିଲି ଆଜି ତୁମ ଭିତରୁ ତାଙ୍କୁ ପାଇଛି । ନିଷଧର ରାଜା ନଳଙ୍କ ସୌନ୍ଦର୍ଯ୍ୟ ତ୍ରିଭୁବନରେ ବିରଳ । ସେ ଯେପରି ସୁନ୍ଦର, ସେପରି ଶୂର ଓ ବୀରମଧ୍ୟ । ତାଙ୍କ ଉପଯୋଗୀ ଏକ ରାଜକନ୍ୟା ମୁଁ ବୁଲିବୁଲି ଖୋଜୁଥିଲି । ଏ ଶୁଭ ପ୍ରସ୍ତାବରେ ଯଦି ଆପଣ ଏକମତ ତା'ହେଲେ ମୋତେ ମୁକ୍ତ କରନ୍ତୁ ।''

ଦମୟନ୍ତୀ ତାର ଚଞ୍ଚୁରେ ଚୁମ୍ବନର ଏକ ଆଲେଖ୍ୟ ଦେଇ ବକ୍ଷଦେଶରେ ଚାପିଧରି କହିଲେ, 'ସତରେ ମୁଁ କଣ ଏଡ଼େ ଭାଗ୍ୟବତୀ । ତୁମେ ମୋର ପ୍ରଣୟଦୂତ । ମୋ ହୃଦୟର ନିବେଦନ ତାଙ୍କୁ ଯାଇ ପ୍ରକାଶକର ।'

ବଂଧନ ମୁକ୍ତ ହଂସ, ପର ଝାଡ଼ି ଝାଡ଼ି କହିଲା, 'ଭଗବାନ୍ କରନ୍ତୁ, ତୁମ ଦୁହିଁଙ୍କର ବୈବାହିକ ମିଳନ ହେଉ । ଏହାହିଁ ହେବ ଯୋଗ୍ୟ ସହିତ ଯୋଗ୍ୟର ମିଳନ । ସଂସାରର ଏହା ଏକ ବ୍ୟତିକ୍ରମ । କୋଟି କୋଟି ପୁରୁଷ, ସ୍ତ୍ରୀଙ୍କୁ ମୁଁ ଦେଖୁଛି, ଜଣେ କୁତ୍ସିତ କଦାକାର ହେଲେ ଅନ୍ୟ ଜଣକ ସୌନ୍ଦର୍ଯ୍ୟଭରା, ଜଣେ ଅତ୍ୟନ୍ତ ଜ୍ଞାନୀ ଓ ବୁଦ୍ଧିଯୁକ୍ତ ହେଲେ ଅନ୍ୟ ଜଣକ କାଣ୍ଡଜ୍ଞାନ ରହିତ, ଜଣେ ଶକ୍ତିଶାଳୀ ହେଲେ ଅନ୍ୟଜଣେ ଦୁର୍ବଳ ଓ ଭୟାଳୁ । ଜଣେ ନୀତିନିପୁଣ ହେଲେ ଅନ୍ୟଜଣକ ନୀତିହୀନ । ସ୍ୱାମୀ ସ୍ତ୍ରୀ ଭିତରେ ଅସମାନତା ସତେଯେପରି ଅପରିହାର୍ଯ୍ୟ । ଏଇ ଦୃଷ୍ଟିରୁ ତୁମ ଦୁହିଁଙ୍କର ମିଳନହେବ ନିଶ୍ଚିତ ଭାବରେ ବ୍ୟତିକ୍ରମ । ସାଂସାରିକ ବ୍ୟତିକ୍ରମ ଏଇଥିପାଇଁ ଯେ, ଯୋଗ୍ୟ ସହିତ ହେବ ଯୋଗ୍ୟର ଅପୂର୍ବ ମିଳନ ।'

ହଂସର ମଧୁର କଥାରେ ବିହ୍ୱଳ ହୋଇଉଠିଲେ ଦମୟନ୍ତୀ ।

କନ୍ଦର୍ପଶରାହତ ନଳ ଓ ଦମୟନ୍ତୀ ବିନିଦ୍ର ରଜନୀ କଟାଉଥାନ୍ତି । ସ୍ୱପ୍ନରେ ଉଭୟେ ଉଭୟଙ୍କର ଶୃଙ୍ଗାର ମୂର୍ତ୍ତି ଅଙ୍କନ କରୁଥାନ୍ତି । ପ୍ରେମ ପୀଡ଼ିତା ଦମୟନ୍ତୀଙ୍କର ଆଚରଣର ପରିବର୍ତ୍ତନ ଲକ୍ଷ୍ୟ କଲେ ପିତା ବିଦର୍ଭ ରାଜା ଭୀମ । ସେ ସ୍ୱୟଂବର ସଭାର ବ୍ୟବସ୍ଥା କଲେ ।

ବିଭିନ୍ନ ଦେଶର ରାଜା ଓ ରାଜପୁତ୍ରମାନେ ସ୍ୱୟଂବର ସଭାକୁ ଆସିଲେ । ଇନ୍ଦ୍ର ବରୁଣ, ବାୟୁ, ଅଗ୍ନି ପ୍ରଭୃତି ଦେବତାମାନେ ମଧ୍ୟ ଲୋଭ ସମ୍ବରଣ କରିନପାରି ଦମୟନ୍ତୀଙ୍କ ପାଣିପ୍ରାପ୍ତିର ଆଶା ନେଇ ଆସିଥିଲେ । ବାଟରେ ଦେବପ୍ରତିମ ନଳଙ୍କ ସହିତ ସେମାନଙ୍କର ସାକ୍ଷାତ ହେଲା । ଦୈବୀଶକ୍ତି ବଳରେ ସେମାନେ ଜାଣିଥିଲେ ଯେ ଦମୟନ୍ତୀ ନଳଙ୍କୁ ତାଙ୍କର ହୃଦୟ ଦାନ କରିଛନ୍ତି ଏବଂ ନଳମଧ୍ୟ ଦମୟନ୍ତୀଙ୍କ ପ୍ରତି ଆସକ୍ତ ।

ସ୍ୱୟଂବର ସଭାରେ ଦେବତାମାନେ ଜାଣି ଜାଣି ଦମୟନ୍ତୀଙ୍କୁ ବିଭ୍ରାନ୍ତ କରିବା ପାଇଁ ନଳ ରୂପରେ ଠିକ୍ ନଳଙ୍କ ପାଖରେ ଯାଇ ବସିଲେ । ଆଶ୍ଚର୍ଯ୍ୟକଥା, ସ୍ୱୟଂବର ସଭାରେ ପାଞ୍ଚଜଣ ନଳ ଏକସହିତ ବସିଛନ୍ତି । ପ୍ରକୃତ ନଳ କିଏ ଚିହ୍ନିବା ଏକ କଷ୍ଟକର ବ୍ୟାପାର । ଦମୟନ୍ତୀ ବଡ଼ ଚିନ୍ତାରେ ପଡ଼ିଗଲେ । ଏହା ଯେ ଦେବତାମାନଙ୍କର କୂଟ, ତାହା ବୁଝିବାକୁ ତାଙ୍କୁ ବେଶିସମୟ ଲାଗିଲା ନାହିଁ ।

ଦମୟନ୍ତୀ ଅନ୍ତରର ସହିତ ପ୍ରାର୍ଥନା କଲେ, 'କହିଲେ, ହେ ଦେବଗଣ ! ମୋତେ ଆପଣମାନେ ଏ ବିପତ୍ତିରୁ ରକ୍ଷାକରନ୍ତୁ । ମୁଁ ମର୍ତ୍ତ୍ୟର ମାନବୀ କନ୍ୟା । ମର୍ତ୍ତ୍ୟ ମଣିଷଙ୍କୁ ହିଁ ବିବାହ କରିବି । ମୋର ମନୋମତ ସ୍ୱାମୀ ନିର୍ବାଚନ ପାଇଁ ଆପଣମାନେ ଶକ୍ତି ଓ ସମାର୍ଥ୍ୟ ଦିଅନ୍ତୁ । ଆଶୀର୍ବାଦ ଦିଅନ୍ତୁ । ଆପଣମାନେ ମୋର ଚିରପୂଜ୍ୟ ଦେବତା । ସ୍ୱାମୀର ଆସନକୁ ଖସାଇ ଆଣିବାର ଅପରାଧ ଓ ଅଧର୍ମ କରିବାକୁ ମୋତେ ପ୍ରଶ୍ରୟ ଦିଅନ୍ତୁ ନାହିଁ । ମୋତେ ଏ ବିପତ୍ତିରୁ ଆପଣ ରକ୍ଷା କରନ୍ତୁ ।'

ଦେବତାମାନେ ଏ ପ୍ରାର୍ଥନାରେ ସନ୍ତୁଷ୍ଟ ହେଲେ । ବରଣମାଳା ଧରି ସ୍ୱୟଂବର ସଭାରେ ପହଞ୍ଚି, ଦମୟନ୍ତୀ ନଳଙ୍କୁ ଠିକ୍ ଭାବରେ ଚିହ୍ନିପାରିଲେ । ତାଙ୍କ ଗଳାରେ ବରଣମାଳା ଲମ୍ବାଇ ଦେଲେ । ମହ ଆଡ଼ମ୍ବରରେ ସ୍ୱୟଂବର ସଭା ସମାପ୍ତ ହେଲା । ଦେବତାମାନେ ନବ ରାଜ ଦମ୍ପତିଙ୍କୁ ଆଶୀର୍ବାଦ କରି ସ୍ୱର୍ଗକୁ ଫେରିଗଲେ । ନଳ ଓ ଦମୟନ୍ତୀ ନିଷଧପୁରକୁ ଫେରି ଆସିଲେ ।

ଦେବତାମାନେ ସ୍ୱର୍ଗକୁ ଫେରୁଥିବା ସମୟରେ ବାଟରେ 'କଳି' ଦେବତାଙ୍କ ସହିତ ସାକ୍ଷାତ ହେଲା । ସ୍ୱୟଂବର ସଭା ସରିଗଲାଣି ବୋଲି ଶୁଣି ତାଙ୍କ ମନରେ ଗଭୀର ଦୁଃଖ । କେତେବଡ଼ ସୁଯୋଗରୁ ସେ ବଞ୍ଚିତ ହେଲେ । ଭାବିଲେ, ଦିନେ ନା ଦିନେ ନଳଙ୍କ ଉପରେ ସେ ଦାଉ ସାଧିବେ ।

ଥରେ ରାଜା ପୁଷ୍କର, ନଳଙ୍କୁ ପଶାଖେଳକୁ ନିମନ୍ତ୍ରଣ କଲେ । 'କଳି' ସୁଯୋଗ ଉଣ୍ଡି ପଶାକାଠି ଭିତରେ ପଶି ନଳଙ୍କୁ ହରାଇଲେ । ନଳ ନିଜର ରାଜ୍ୟ ଓ ସମସ୍ତ ବିଭବ ହରାଇ ରାଜ୍ୟରୁ ବହିଷ୍କୃତ ହେଲେ । ଦମୟନ୍ତୀ ନିଜର ଦୁଇପିଲାଙ୍କୁ ବାପଘରକୁ ପଠାଇଦେଲେ ।

ନଳଦମୟନ୍ତୀ ବଣଜଙ୍ଗଲରେ ଦୁଃଖରେ ଘୂରି ବୁଲୁଥାନ୍ତି । ବନର ଫଳମୂଳ ହିଁ ଥିଲା ତାଙ୍କ ଖାଦ୍ୟ । ଶଯ୍ୟାଥିଲା ଧୂଳିମାଟି ଓ ପତ୍ର । ସହସ୍ର ଦାସୀ ଓ ସ୍ୱର୍ଣ୍ଣ ପଲଙ୍କର ତୁଳି ତଳ୍ପ ଛାଡ଼ି ଦମୟନ୍ତୀଙ୍କୁ ଦୁର୍ଦ୍ଦଶା ଭୋଗିବାକୁ ପଡ଼ିଲା । ସେତିକିରେ ଦୁଃଖ ସରିଲା ନାହିଁ । ଦିନେ ସେ କ୍ଳାନ୍ତ ଶ୍ରାନ୍ତ ହୋଇ ଶୋଇଥିବା ସମୟରେ, ନଳ ତାଙ୍କୁ ସେଇଘୋର ଅରଣ୍ୟମଧ୍ୟରେ ଏକାକି ଛାଡ଼ିଦେଇ ଚାଲିଗଲେ । ନିଦ୍ରାଭଙ୍ଗ ପରେ ଦେଖିଲେ ସେ ଏକାକିନୀ । ଗଗନ ପବନ ଥରାଇ ଚିତ୍କାର କଲେ । ରାଜା ନଳଙ୍କୁ ବନସାରା ଖୋଜି ବୁଲିଲେ । ସଂଧାନ ମିଳିଲା ନାହିଁ ।

ଈଶ୍ୱରଙ୍କ ଆଶୀର୍ବାଦ । ସେ ଲକ୍ଷ୍ୟଭ୍ରଷ୍ଟ ହୋଇ ବୁଲୁବୁଲୁ ଏକ ମୁନି ଆଶ୍ରମରେ ପହଞ୍ଚିଲେ । ସେ ଆଶ୍ରମରେ ଥିଲେ ମହର୍ଷି ବଶିଷ୍ଠ, ବାଲଖିଲ୍ୟ, ବାମଦେବ, ଭୃଗୁ ଓ ନାରଦ ପ୍ରଭୃତି । ସେମାନେ ଦମୟନ୍ତୀଙ୍କ ପରିଚୟ ପାଇ, ତାଙ୍କୁ ଆଶ୍ରୟ ଦେଲେ । ଏବଂ ଯୋଗ ବଳରେ କହିଲେ, 'ତୁମର ନଳଙ୍କ ସହିତ ପୁନର୍ମିଳନ ହେବ । ତୁମେ ତୁମର ରାଜ୍ୟ ବିଭବ ଓ ପୂର୍ବ ପ୍ରତିପତ୍ତି ଫେରି ପାଇବ ।'

ଦମୟେନ୍ତୀ ସେଠାରୁ ଫେରି, ଚେଦୀ ରାଜମହିଷୀଙ୍କର ସୈରିନ୍ଧ୍ରୀରୂପେ ତାଙ୍କ ପାଖରେ କିଛିଦିନ ରହିଲେ । ସୈରିନ୍ଧ୍ରୀମାନେ ସ୍ୱାଧୀନ ଭାବରେ ସମ୍ମାନର ସହିତ ରାଜ ପରିବାରରେ ରହିପାରୁଥିଲେ । ଚେଦୀର ରାଜା ହେଉଛନ୍ତି ସୁବାହୁ ।

ନଳ ଦମୟନ୍ତୀଙ୍କୁ ଛାଡ଼ି ଚାଲିଯିବାପରେ ଅଯୋଧ୍ୟାରେ ପହଞ୍ଚିଲେ । ସେ ରାଜା ଋତୁପର୍ଣ୍ଣଙ୍କୁ କହିଲେ, ମୋ ନା ବାହୁକ । ମୁଁ ଚମତ୍କାର ରାନ୍ଧିପାରେ । ମୋ ରନ୍ଧାର ସ୍ୱାଦୁ ଆପଣ ଥରେ ଚାଖିଲେ ଭୁଲି ପାରିବେ ନାହିଁ । ଯେତେବଡ଼ ଦୁଷ୍ଟ ଅଶ୍ୱ ହେଉନା କାହିଁକି, ତାକୁ ପୋଷା ମନାଇ ଦ୍ରୁତ ଗତିରେ ରଥଚାଳନା ମଧ୍ୟ ମୁଁ କରିପାରେ । ଏହାହିଁ ମୋର ବିଶେଷ ଗୁଣ । ରାଜା ଛଦ୍ମବେଶୀ ନଳଙ୍କୁ ନିଜ ରାଜ ପୁରୀରେ ସାରଥି ରୂପେ ରଖିଲେ । ସଦାସର୍ବଦା ଦମୟନ୍ତୀଙ୍କୁ ଝୁରି ହେଉଥିଲେ ନଳ ।

ଦମୟନ୍ତୀଙ୍କ ପିତା, ବିଦର୍ଭରାଜା ଭୀମ, ନଳଙ୍କର ବନଗମନ ଖବର ପାଇ ତାଙ୍କୁ ଖୋଜିବା ପାଇଁ ଚତୁର୍ଦ୍ଦିଗକୁ ଲୋକ ପଠାଇଲେ । ଗୁପ୍ତଚରମାନେ ଖବର ନେଉଥାନ୍ତି । ଚେଦୀ ରାଜାଙ୍କ ଉଆସରେ ଦମୟନ୍ତୀ ରହୁଥିବାର ସମ୍ବାଦ ପାଇଗଲେ ଭୀମ । ଚେଦୀର ରାଣୀ ମଧ୍ୟ ଗୁପ୍ତଚର ଠାରୁ ଦମୟନ୍ତୀଙ୍କ ପ୍ରକୃତ ପରିଚୟ ପାଇ ଜାଣିଲେ ଯେ ସେ ରାଜାନଳଙ୍କର ସ୍ତ୍ରୀ ଏବଂ ତାଙ୍କ ନିଜ ଭଉଣୀର ଝିଅ । ଏହାପରେ ତାଙ୍କୁ ବିଦର୍ଭ ପଠାଇ ଦିଆଗଲା ।

ରାଜା ଭୀମ ଓ ରାଣୀ, ଦମୟନ୍ତୀଙ୍କୁ ପାଇ ବିହ୍ୱଳ ହୋଇ ଉଠିଲେ । ଦମୟନ୍ତୀ ନିଜର ପିଲାମାନଙ୍କୁ ପାଇ ଆଶ୍ୱସ୍ତ ହେଲେ । ଦମୟନ୍ତୀଙ୍କର ଦ୍ୱିତୀୟ ସ୍ୱୟଂବର ଆଳରେ ଅଯୋଧ୍ୟାରେ ରାଜା ଋତୁପର୍ଣ୍ଣଙ୍କୁ ନିମନ୍ତ୍ରଣ କରାଗଲା । ରାଜା, ସାରଥି ବାହୁକଙ୍କୁ ସାଥିରେ ନେଇ ଅଯୋଧ୍ୟାରେ ଆସି ଠିକ୍ ସମୟରେ ପହଞ୍ଚିଲେ । ତାଙ୍କର ଆତିଥ୍ୟ ସ୍ୱୀକାର କରାଗଲା ।

ଦମୟନ୍ତୀଙ୍କ ବିଶ୍ୱସ୍ତ ଦାସୀ କୌଶିକିନୀ । ସେ ଗୁପ୍ତରେ ସମ୍ବାଦ ସଂଗ୍ରହ କରୁଥାଏ । ତାଙ୍କୁ ଯାଇକହିଲା, ''ରାଣୀମା ! କଣ କହିବି, ମୁଁ ଯାହା ଦେଖି ଆସିଛି ମୋ ଆଖିକୁ ତାହା ବିଶ୍ୱାସ କରିପାରୁନି । ଅଯୋଧ୍ୟା ରାଜାଙ୍କର ସେଇ ଯେଉଁ ସାରଥି ଆସିଚିନା, ତାର କରାମତି ଶୁଣିଲେ ତୁମେ ବିଶ୍ୱାସ କରି ପାରିବନି । କୁଟା କେରାଏ ଧରି ନିଆଁ ଜଳାଇ ଦେଲା । ବିନା କାଠରେ ନିଆଁ ହୁତୁହୁତୁ ହୋଇ ଜଳି ଉଠିଲା । ହାତକୁ ହଲାଇ ଦେଲା ଯେ ସୁଲୁସୁଲୁ ପବନ ବହିଲା । ଚୁଲିରେ ହାଣ୍ଡି ବସାଇ ଦେଲା, ହାତ ବଙ୍କାଇ ଦେଲାକୁ ସରସର୍ ହୋଇପାଣି ଭର୍ତ୍ତି ହୋଇଗଲା । ଆଖି ପିଛୁଳାକେ କେତେ ସୁମିଷ୍ଟ ଖାଦ୍ୟ ତା' ଭିତରୁ ବାହାରିଲା । ଖାଲି ସେତିକି ନୁହେଁ ରାଣୀ ମା', ପାଖରେ ପଡ଼ିଥିଲା ଗୁଡ଼ାଏ ମଉଳା ଫୁଲମାଳ । ସେ ଛୁଇଁ ଦେଲାକୁ ଖଣ୍ଡ ମଣ୍ଡଳ ମହମହ ହୋଇ ବାସି ଉଠିଲା । ଫୁଲଗୁଡ଼ାକ ତାଜା ହୋଇଗଲା । ସେ କଣ ମର୍ତ୍ତ୍ୟର ମଣିଷ.. ମର୍ତ୍ତ୍ୟମଣିଷର କଣ ଏତେ କରାମତି ? ନିଶ୍ଚୟ ସେ ଦେବତା କିମ୍ବା ଯାଦୁକର ହୋଇଥିବେ ।''

ଦମୟନ୍ତୀ ନିଶ୍ଚିତ ହୋଇଗଲେ ଯେ ସେ ସ୍ୱୟଂ ''ନଳ'' । ବାହୁକ ନାମରେ ଅଯୋଧ୍ୟା ରାଜାଙ୍କର ସାରଥି ରୂପେ ଛଦ୍ମ ବେଶରେ ରହିଚନ୍ତି । ସେ ନିଜର ସନ୍ତାନ ଦୁହିଁଙ୍କୁ କୌଶୀକିନୀ ସାଥିରେ ବାହୁକଙ୍କ ପାଖକୁ ପଠାଇଲେ । ପିଲାଦୁହିଁଙ୍କୁ ଦେଖିଲାକ୍ଷଣି ପିତୃହୃଦୟ ଛଳନାର ଛଦ୍ମ ରୂପକୁ ଠେଲି ଦେଇ ଆନନ୍ଦରେ ବିହ୍ୱଳ ହୋଇ ଉଠିଲା । ସେମାନଙ୍କୁ କୋଳକୁ ନେଇ ପେଲବ ଗଣ୍ଡରେ ଅସରନ୍ତି ଚୁମ୍ବନ ଢ଼ାଳି ଦେଲେ । ଦମୟନ୍ତୀଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଧାରଧାର ଅଶ୍ରୁ ବହିଆସିଲା ଉଭୟଙ୍କ ଆଖିରୁ । ଉପରୁ ପୁଷ୍ପ ବୃଷ୍ଟି ହେଲା । ନଳ ତାଙ୍କର ପୂର୍ବର ସୌମ୍ୟ ରୂପ ଫେରି ପାଇଲେ । 'କଳି' ତାଙ୍କ ଭିତରୁ ଅପସରିଗଲା ।

ଋତୁପର୍ଣ୍ଣ ପରିଚୟ ପାଇ ଦୁଃଖରେ ଅଭିଭୂତ ହେଲେ । ନିଜର ଅଜ୍ଞାତ ଦୋଷ ପାଇଁ କ୍ଷମାଭିକ୍ଷାକଲେ । ନଳ ଅସମୟରେ ସାହାଯ୍ୟ ସହାନୁଭୂତି ପାଇଥିବାରୁ ଋତୁପର୍ଣ୍ଣଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଇଲେ ।

ପରେ ନଳ ଦ୍ୱିତୀୟଥର ପଶାଖେଳରେ ଜିତି ନିଜରାଜ୍ୟ ଓ ହୃତ ସମ୍ପତ୍ତି ଫେରିପାଇଲେ । ନଳ ଆନନ୍ଦରେ ପ୍ରଜାପାଳନ କଲେ ।''

ଏଇ ହେଉଛି ନଳଙ୍କର ଦୁଃଖଦ ଘଟଣା । ତାଙ୍କ ତୁଳନାରେ ତୁମେ କି ଦୁଃଖ ପାଇଛ ! ତୁମ ପାଖରେ ଅଛନ୍ତି ନିଜର ସ୍ତ୍ରୀ ଓ ଭାଇମାନେ । ପାଖେ ପାଖେ ଅଛ ଅଜସ୍ର ଲୋକ ବଳ, ଅଛନ୍ତି ମହାନ୍ ପଣ୍ଡିତ ଓ ବେଦାନ୍ତି ଗଣ । ବଣ ମୂଳକବି ରାଜ ପୁରୀରେ ପରିଣତ ହୋଇଛି । ବୃହଦାଶ୍ୱଙ୍କ କଥା ଶୁଣି ଯୁଧିଷ୍ଠିର ଆନନ୍ଦିତ ହେଲେ ଏବଂ ଅମାପ ପ୍ରେରଣା ଲାଭକଲେ ।

—————————— ଦଶ

# ।। ପାଣ୍ଡବମାନଙ୍କର ତୀର୍ଥାଟନ ।।

ଲୋମଶ ଋଷି ଆସି ପହଞ୍ଚିଲେ ଯୁଧିଷ୍ଠିରଙ୍କ ପାଖରେ । କହିଲେ, ''ହେ ଧର୍ମପୁତ୍ର ! ମୁଁ ବର୍ତ୍ତମାନ ଦେବ ଧାମ ସ୍ୱର୍ଗ ପୁରୀରୁ ଫେରୁଛି । ଇନ୍ଦ୍ରଦେବ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି । କୁଶଳ ସମାଚାର ଜଣାଇବାକୁ ମୁଁ ଆସିଛି । ଇନ୍ଦ୍ରଙ୍କ ସହିତ ଅର୍ଜୁନ ଇନ୍ଦ୍ରପୁରୀରେ ମହା ଆନନ୍ଦରେ ଅଛନ୍ତି । ଦେବତାମାନଙ୍କ ଠାରୁ ତାଙ୍କୁ ଦୁର୍ଲଭ ମହା ଶକ୍ତିମାନ ଅସ୍ତ୍ର ସବୁ ମିଳି ଯାଇଛି । ସେ ସେଠାରେ ସେହି ଅସ୍ତ୍ରମାନଙ୍କ ଚାଳନା ଓ ରକ୍ଷଣା ବେକ୍ଷଣ ବିଷୟରେ ବିଶେଷ ଜ୍ଞାନ ଲାଭ କରିଛନ୍ତି । ସେ ସବୁ ଅସ୍ତ୍ର ଚାଳନାରେ ଦକ୍ଷତା ଲାଭ ପରେ ଯେତେ ଶୀଘ୍ର ସମ୍ଭବ ଫେରି ଆସିବେ ।''

ଯୁଧିଷ୍ଠିର ଓ ଅନ୍ୟ ଭାଇମାନେ ଆନନ୍ଦିତ ହେଲେ । ସେମାନଙ୍କର ଉତ୍କଣ୍ଠା ଦୂରୀଭୂତ ହେଲା । ଗୋଟିଏ ସ୍ଥାନରେ ବେଶିଦିନ ରହିବା ଉଚିତ ନୁହେଁ । ନାରଦଙ୍କ ଉପଦେଶ କ୍ରମେ ଲୋମଶ ଋଷି ତୀର୍ଥାଟନ ପାଇଁ ଯୁଧିଷ୍ଠିରଙ୍କୁ କହିଲେ । ଏତେ ଲୋକଙ୍କୁ ସାଥିରେ ନେବା ସମ୍ଭବ ନୁହେଁ । ଧର୍ମପୁତ୍ର ବଛାବଛା କେତେ ଜଣକୁ ଛାଡ଼ି ଅନ୍ୟମାନଙ୍କୁ ଫେରିଯିବା ପାଇଁ ଅନୁରୋଧ କଲେ । ଅଧିକାଂଶ ବ୍ରାହ୍ମଣ ତାଙ୍କଠାରୁ ବିଦାୟନେଇ ନିଜ ଘରକୁ ଫେରିଗଲେ ।

ତୀର୍ଥ ଯାତ୍ରା ଆରମ୍ଭ ହେଲା । ଯୁଧିଷ୍ଠିରଙ୍କ ସାଥିରେ ଗଲେ ତାଙ୍କ ଭାଇମାନେ, ସ୍ତ୍ରୀ ଦ୍ରୌପଦୀ କୁଳ ପୁରୋହିତ ଧୌମ୍ୟ, ଲୋମଶ ଋଷି, ଆଉ କେତେଜଣ ବ୍ରାହ୍ମଣ । ବିଭିନ୍ନ, ତୀର୍ଥ ସ୍ଥାନ ପରିଭ୍ରମଣ କଲେ । ସେ ସ୍ଥାନର ମହତ୍ୱ, ପୌରାଣିକତା, କିଂବଦନ୍ତୀ ଓ କାହାଣୀ ସବୁ ଧର୍ମରାଜ ସଂଗ୍ରହକଲେ ଲୋମଶ ଋଷିଙ୍କଠାରୁ ।

''ଏଇ ଦେଖନ୍ତୁ ! ପୂର୍ବ କାଳରେ ଏଠାରେ ଥିଲା ଅଗସ୍ତ୍ୟ ମୁନିଙ୍କର ଆଶ୍ରମ ଏହା ଏକ ପବିତ୍ର ତୀର୍ଥ ସ୍ଥଳୀ । ଅଗସ୍ତ୍ୟ ମୁନି ଥିଲେ ବ୍ରହ୍ମଚାରୀ । ଥରେ ତାଙ୍କର ପିତୃପୁରୁଷଗଣ ଋଷିଙ୍କୁ କହିଲେ, ତୁମେତ ବ୍ରହ୍ମଚାରୀର ଜୀବନ ଯାପନ କଲ । ବିବାହ କଲନାହିଁ, କୁଳରକ୍ଷା କିପରି ହେବ । ଆମ୍ଭମାନଙ୍କୁ ପିଣ୍ଡଦାନ କରିବ କିଏ ? ଆମେ କଣ ସର୍ବଦା ଅତୃପ୍ତ ହୋଇ ରହିବୁ ?

ଅଗସ୍ତ୍ୟ ବିବାହ କରିବାକୁ, ସେମାନଙ୍କୁ ପ୍ରତିଶ୍ରୁତି ଦେଲେ ।

ଠିକ୍ ଏତିକିବେଳେ ବିଦର୍ଭର ରାଜା ଆସି ପହଞ୍ଚିଲେ ମୁନି ଆଶ୍ରମରେ । କହିଲେ, ହେ ପ୍ରଭୁ! ମୁଁ ସନ୍ତାନ ହୀନ । ମାନସିକ ଦୁଃଶ୍ଚିନ୍ତାରେ ମୋର ସମୟ ଅତିବାହିତ ହେଉଛି । ମୋତେ ଆପଣ ଆଶୀର୍ବାଦ କରନ୍ତୁ ।

ମୁନି ଆନନ୍ଦିତ ହୋଇ କହିଲେ, ମୁଁ ଆଶୀର୍ବାଦ୍ୟ ଦେଉଛି, ଆପଣଙ୍କର ଏକ କନ୍ୟା ସନ୍ତାନ ଲାଭ ହେବ । ତେବେ ବିବାହ ବୟସ ଆସିଲେ ସେ କନ୍ୟାଟିକୁ ମୋ ସହିତ ବିବାହ କରିବାକୁ ଆପଣ ମୋତେ ପ୍ରତଶ୍ରୁତି ଦିଅନ୍ତୁ ।

ରାଜା ପ୍ରତିଶ୍ରୁତି ଦେଇ ନିଜ ରାଜ୍ୟକୁ ଫେରିଗଲେ । ରାଣୀ ତାଙ୍କର ହେଲେ ସନ୍ତାନ ସମ୍ଭବା ଏବଂ ଯଥା ସମୟରେ ଏକ କନ୍ୟା ସନ୍ତାନ ଲାଭକଲେ । କନ୍ୟାଟି ଥିଲା ଅପରୂପା ସୌନ୍ଦର୍ଯ୍ୟମୟୀ । ରାଜା ତାର ନାଁ ରଖିଲେ 'ଲୋପାମୁଦ୍ରା' ।ଯଥା ସମୟରେ ମହର୍ଷି ଅଗସ୍ତ୍ୟଙ୍କ ସହିତ ରାଜଦୁଲାଳୀ ଲୋପାମୁଦ୍ରାଙ୍କର ବିବାହ ହୋଇଥିଲା । ରାଜପୁରୀର ଅସରନ୍ତି ଭୋଗ ବିଳାସ ଛାଡ଼ି ସେ ହେଲେ ସନ୍ୟାସିନୀ ।

ବନ ପ୍ରଦେଶରେ ଦୀର୍ଘଦିନ ରହିବାପରେ ତପସ୍ୱିନୀର କଠୋର ଜୀବନ ତାଙ୍କ ପାଇଁ କ୍ଲାନ୍ତିକର ହେଲା । ରାଜକୀୟ ଭୋଗ ବିଳାସ ପାଇଁ ମନ ଅସ୍ଥିର ହେଲା । ଅଗସ୍ତ୍ୟ ଯୋଗ ବଳରେ ତ୍ରିଭୁବନ ସଂପତ୍ତିର ଅଧିକାରୀ ହେବାର ସାମର୍ଥ୍ୟ ଥିଲେ ମଧ୍ୟ ତପ ପ୍ରଭାବକୁ ତୁଚ୍ଛ ସୁଖ ଭୋଗ ପାଇଁ ବିନିଯୋଗ କରିବାକୁ ଚାହିଁଲେ ନାହିଁ । ପରିଶ୍ରମ ବଳରେ ଅର୍ଥ ଲାଭ କରିବାକୁ ସେ ସମ୍ମତ ହେଲେ ।

ଇଲ୍ୱଳ ଓ ବାତାପୀ ନାମରେ ଦୁଇଜଣ ଦୁର୍ଦ୍ଧର୍ଷ ରାକ୍ଷସଥିଲେ । ସେମାନେ ଥିଲେ ତୀବ୍ର ବ୍ରାହ୍ମଣ ବିରୋଧୀ । ବ୍ରାହ୍ମଣମାନଙ୍କୁ ଡାକି ଖୁବ୍ ସମ୍ମାନ ଦେଖାନ୍ତି । ବାତାପୀ ସେମାନଙ୍କ ଅଲକ୍ଷ୍ୟରେ ଛେଳି ହୋଇଯାଏ । ତାକୁ କାଟି ତା ମାଂସ ଓ ଅନ୍ୟାନ୍ୟ ସୁମିଷ୍ଟ ଭୋଜନ ବ୍ରାହ୍ମଣମାନଙ୍କୁ ଦିଆଯାଏ । ବ୍ରାହ୍ମଣମାନେ ଖାଇ ସାରିବା ପରେ ଇଲ୍ୱଳ ବଡ଼ ପାଟିରେ ଡାକେ, ବାତପି ଏଥର ବାହାରି ଆସ । ବତାପୀ ବ୍ରାହ୍ମଣମାନଙ୍କ ପେଟ ଫାଡ଼ି ଅନ୍ତବୁଜୁଳା ଛିଣ୍ଡାଇ ବାହାରି ଆସେ । ବ୍ରହ୍ମଣମାନେ ମରିଯାନ୍ତି । ଦି'ଭାଇ ମହାଆନନ୍ଦରେ ସେମାନଙ୍କୁ ଖାଆନ୍ତି ।

ଥରେ ମହର୍ଷି ଅଗସ୍ତ୍ୟ ସେଠାରେ ପହଞ୍ଚିଲେ । ଇଲ୍ୱଳ ତାଙ୍କୁ ବାତାପୀର ମାଂସ ଖାଇବାକୁ ଦେଲା ଓ ଡାକିଲା, ବାତାପୀ ! ଏଥର ବାହାରିଆ । ଅଗସ୍ତ୍ୟ ନିଜ ପେଟ ତିନିଥର ଆଉଁଶି, ମନ୍ତ୍ରପଢ଼ି କହିଲେ, ବାତାପି ଭସ୍ମ ହୋଇଯା.... ଭସ୍ମ ହୋଇଯା ।

ଇଲ୍ୱଳ ଯେତେ ଡାକିଲେବି ବାତାପୀ ପେଟ ଭିତରୁ ବାହାରିଲା ନାହିଁ । ସେ ଜାଣିଲା ଯେ ବାତପୀ, ଋଷିଙ୍କ ପେଟ ଭିତରେ ହଜମ ହୋଇ ଯାଇଛି । ଇଲ୍ୱଳ ତାଙ୍କ ଗୋଡ଼ତଳେ ପଡ଼ି ଅଜସ୍ର ଧନ ସମ୍ପଦ ଦାନ କଲା । ଅଗସ୍ତ୍ୟ ଆଶ୍ରମକୁ ଫେରି ଆସିଲେ । ଲୋପମୁଦ୍ରାଙ୍କ ଅଭିଳାଷ ପୂର୍ଣ୍ଣ ହେଲା ।

ଲୋପାମୁଦ୍ରା ପୁତ୍ରସନ୍ତାନ ଲାଭ ପାଇଁ ମନ ବଳାଇଲେ । ଅଗସ୍ତ୍ୟ ପଚାରିଲେ ତୁମେ ଦଶଟି ସାଧାରଣ ଭଲପିଲା ଚାହଁ ନା ଦଶଟି ପିଲାର ଭଲପଣିଆ ନେଇ ଗୋଟିଏ ଗୁଣୀ ପୁତ୍ର ଚାହଁ ? ସେ ଗୋଟିଏ ଗୁଣୀପୁତ୍ର ଲାଭପାଇଁ ଇଚ୍ଛା ପ୍ରକାଶ କଲେ ଏବଂ ଏକ ସର୍ବଗୁଣ ସମ୍ପନ୍ନ ଶକ୍ତିଶାଳୀ ସନ୍ତାନ ଲାଭ କରିଥିଲେ ।

ଥରେ ମେରୁ ପର୍ବତ ଓ ବିନ୍ଧ୍ୟ ପର୍ବତ ମଧ୍ୟରେ ଆସନ ପାଇଁ କଳହ ହେଲା । ବିନ୍ଧ୍ୟ ମେରୁ ସହିତ ଉଚ୍ଚତାରେ ସମକକ୍ଷ ହେବାପାଇଁ ବଢ଼ିବାକୁ ଲାଗିଲା । ସୂର୍ଯ୍ୟ ଦେବତାଙ୍କର ସ୍ୱଚ୍ଛନ୍ଦ ବିଚରଣରେ ବାଧା ପଡ଼ିଲା । ସେ ଅଗସ୍ତ୍ୟ ମୁନିଙ୍କୁ ଏହାର ପ୍ରତିକାର ପାଇଁ ଅନୁରୋଧ କଲେ । ମୁନି ବିନ୍ଧ୍ୟାଚଳକୁ ଯାଇ କହିଲେ, ''ହେ ପର୍ବତ ରାଜ ! ତୁମର ଅଭିବୃଦ୍ଧିରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ, ତେବେ ମୁଁ ତୁମକୁ ଅତିକ୍ରମ କରି ଦକ୍ଷିଣାଞ୍ଚଳକୁ ଯାଉଛି । ଉତ୍ତର ଦିଗକୁ ଫେରିବା ପର୍ଯ୍ୟନ୍ତ ତୁମେ ତୁମର ଶାରୀରିକ ବୃଦ୍ଧି ବନ୍ଦ କର । ଫେରିବା ପରେ ତୁମେ ତୁମର ବଢ଼ିବ ।''

ବିନ୍ଧ୍ୟ ପର୍ବତ ଯେ ଉଚ୍ଚତାରେ ବଢୁଥିଲା ତାହା ବନ୍ଦ ହୋଇଗଲା । ଅଗସ୍ତ୍ୟ ଋଷି ଦକ୍ଷିଣକୁ ଯାଇ ସେଠାରେ ରହିଗଲେ । ଉତ୍ତରକୁ ଆଉ ଫେରିଲେ ନାହିଁ କି ବିନ୍ଧ୍ୟ ପର୍ବତ ଆଉ ବଢ଼ି ପାରିଲା ନାହିଁ ।

# ।। ଋଶ୍ୟଶୃଙ୍ଗ ।।

ଧର୍ମରାଜ ଯୁଧିଷ୍ଠିର ସମସ୍ତଙ୍କ ଗହଣରେ ଯାଇ ପହଞ୍ଚିଲେ ଏକ ନିବିଡ଼ ଅରଣ୍ୟରେ । ଲୋମଶ ମୁନି ଏ ଅରଣ୍ୟର ମାହାତ୍ମ୍ୟ ବର୍ଣ୍ଣନା କରି କହିଲେ, ''ଏଠାରେ 'ବିଭାଣ୍ଡକ' ନାମରେ ଜଣେ ଋଷି ନିଜର ଆଶ୍ରମ ରଚନା କରିଥିଲେ । ପାଖରେ ଥିଲେ ତାଙ୍କର ପୁତ୍ର 'ଋଶ୍ୟଶୃଙ୍ଗ' । ବିଭାଣ୍ଡକ ଥିଲେ ମହାନ୍ ତପସ୍ୱୀ ଓ ତପସ୍ୟା ବଳରେ ଅସମ୍ଭବକୁ ସମ୍ଭବ କରି ପାରୁଥିଲେ । ଋଶ୍ୟଶୃଙ୍ଗ ଉପଯୁକ୍ତ ପିତାର ଉପଯୁକ୍ତ ସନ୍ତାନ । ତପସ୍ୟା ବଳରେ ସେ ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରିଥିଲେ । ଇନ୍ଦ୍ର ତାଙ୍କୁ ବର ଦେଇଥିଲେ । ସେ ଯେଉଁ ଠାକୁ ଯିବେ ସେଠାରେ ଭୟଙ୍କର ବର୍ଷା ହେବ ।''

ପିତା, ପୁତ୍ର, ନିଜ ଆଶ୍ରମରେ ଏକା ରହୁଥିଲେ । ଋଶ୍ୟଶୃଙ୍ଗ ନିଜର ଜୀବନକାଳ ମଧ୍ୟରେ କୌଣସି ସ୍ତ୍ରୀ ଲୋକଙ୍କୁ ଦେଖିନଥିଲେ । ଆଶ୍ରମ ଓ ଅରଣ୍ୟ ପରିବେଶରେ ତାଙ୍କର ଜୀବନ ଗଢ଼ା ଯାଇଥିଲା ।

ଥରେ ଅଙ୍ଗ ଦେଶରେ ଅନେକ ଦିନ ଧରି ବର୍ଷା ହେଲା ନାହିଁ । ଦୁର୍ଭିକ୍ଷ ପଡ଼ିଲା । ଲୋକମାନେ ପେଟ ପୂରା ଖାଇବାକୁ ପାଇଲେ ନାହିଁ । ଭଲ ପାଣି ମୁନ୍ଦିଏ ବି ପିଇବାକୁ ପାଇଲେନି । ସମସ୍ତେ ଭୋକ ଶୋଷରେ ଛଟପଟ ହେଉଥାନ୍ତି । ରାଜା ଲୋମପାଦ ଏ ଅବସ୍ଥା ଦେଖି ବିଚଳିତ ହୋଇ ଉଠିଲେ । ସାରା ରାଜ୍ୟରେ ହାହାକାର ଛାୟା ଘୋଟି ଯାଇଛି । ରାଜ ପୁରୋହିତ ଓ ମହାମନ୍ତ୍ରୀ ରାଜାଙ୍କୁ ପରାମର୍ଶ ଦେଲେ, ଋଶ୍ୟଶୃଙ୍ଗଙ୍କୁ ନିଜ ରାଜ୍ୟକୁ ଆଣିବାପାଇଁ । ସେ ଏ ବିପତ୍ତିରୁ ନିଶ୍ଚୟ ରକ୍ଷା କରିପାରିବେ । ତେବେ ତାଙ୍କୁ ଆଣିବ କିଏ ? କେହି ସାହସ କରି ପାରୁ ନାହାନ୍ତି ।

'ଜରତା' ନାମକ ଏକ ସୁନ୍ଦରୀ ଗଣିକା କହିଲା, ''କେହି ଯଦି ଋଷିଙ୍କୁ ଆଣିବାକୁ ଅସମର୍ଥ ତା'ହେଲେ ମୁଁ ନିଜେ ଯିବି । ମୁଁ ମୋ ସାଥିରେ ନେବି କେତେଜଣ ସୁନ୍ଦରୀ ରାଜନର୍ତ୍ତକୀଙ୍କୁ । ଆମେ ସବୁ ତପସ୍ୱିନୀ ବେଶରେ ଯାଇ ତାଙ୍କ ଆଶ୍ରମରେ ପହଞ୍ଚିବୁ । ତା'ପରେ ମୁଁ ମୋ କାମ କରିବି ।''

ତାହାହିଁ ହେଲା । ସୁନ୍ଦରୀ ଜରତା ଓ ତାର ସାଥିମାନେ ତପସ୍ୱିନୀ ବେଶରେ ନିଜକୁ ସଜ୍ଜିତ କଲେ । ସୁପକ୍ୱ ଫଳ, ମିଷ୍ଟାନ୍ନ, ମଧୁ, ଅଙ୍ଗରାଗ, ସୁବାସିତ ଜଳ, ମହକିତ ପୁଷ୍ପମାଳା ନେଇ ସେମାନେ ନୌକାରେ ନିଜର ଅଭିସାର ପର୍ବ ଆରମ୍ଭ କଲେ । ବିଭାଣ୍ଡକ ଋଷିଙ୍କ ଆଶ୍ରମ ନିକଟରେ ନୌକା ଅଟକିଲା । ନଦୀ ତଟରେ ଆଶ୍ରମ ।

ଜରତା ଶରୀରରେ ଅଙ୍ଗରାଗ ଲେପି, ସୁକ୍ଷ୍ମ ପାଟଳ ପାଟବସ୍ତ୍ର ପିନ୍ଧିଲା । ଦିଶୁଥିଲା ଏକ ବ୍ରହ୍ମଚାରିଣୀ ପରି । କପାଳରେ ଅଗୁରୁ ତିଳକ ମାଖି, ରୁଦ୍ରାକ୍ଷ ମାଳ ଲମ୍ବାଇ ପୁଷ୍ପହାର ନେଇ ପହଞ୍ଚିଲା ଋଷିଙ୍କ ଆଶ୍ରମରେ । ଦୈବ ଯୋଗକୁ, ଋଷି ଆଶ୍ରମରେ ନଥିଲେ । ତାଙ୍କର ଅନୁପସ୍ଥିତି ସୃଷ୍ଟିକଲା ଜରତା ପାଇଁ ଏକ ଅପୂର୍ବ ସୁଯୋଗ ।

ଋଶ୍ୟଶୃଙ୍ଗ ନିଜର ଅଜ୍ଞତା ଯୋଗୁଁ ସେ ଜଣେ ସ୍ତ୍ରୀ ଲୋକ, ବୋଲି ଜାଣି ପାରିଲେ ନାହିଁ । ଅନ୍ୟ ଏକ ବ୍ରହ୍ମଚାରୀ ଭାବି ତାର ପଦ ବନ୍ଦନା କଲେ ।

ଲାସ୍ୟମୟୀ ଜରତା କୋଟି କାମନାର କଟାକ୍ଷ ହାଣି ଋଶ୍ୟଶୃଙ୍ଗଙ୍କୁ କୁଶଳ ଜିଜ୍ଞାସା କଲା । ସାଥିରେ ଆଣିଥିବା ଉପହାର ପ୍ରଦାନ କଲା । ଋଶ୍ୟଶୃଙ୍ଗ ଜୀବନରେ କାମିନୀର କଟାକ୍ଷ ବାଣରେ

ଜର୍ଜରିତ ହୋଇ ନଥିଲେ । ଏହାଥିଲା ତାଙ୍କର ପ୍ରଥମ ଅନୁଭୂତି ନାରୀ କଣ୍ଠର ଅମୃତ କଥା, ପ୍ରଥମ ଥର ପାଇଁ ଜୀବନରେ ତାଙ୍କୁ ଶୁଣିବାକୁ ମିଳିଲା । ତଥାପି ଜରତା ନାରୀବୋଲି ସେ ଜାଣି ପାରୁନାହାନ୍ତି ।

ଋଶ୍ୟଶୃଙ୍ଗ ଉଲ୍ଲସିତ ହୋଇ ତା'ସହିତ ଆଳାପ ଆଲୋଚନା କଲେ । ପଚାରିଲେ, ''ହେ ମହାନ୍, ବ୍ରହ୍ମଚାରୀ ! ଆପଣଙ୍କର ଆଶ୍ରମ କେଉଁଠାରେ ? ଆପଣ କି ପ୍ରକାର ତପସାଧନାରେ ମଗ୍ନ ଅଛନ୍ତି ? ଦୟାକରି ଆମର ଏ ନିର୍ଜନ ଆଶ୍ରମକୁ ଆସିଲେ କିପରି ? ଆପଣ ହେଉଛନ୍ତି ମୋ ଜୀବନର ପ୍ରଥମ ମଣିଷ ଯାହାଙ୍କର ଶୁଭ ଦର୍ଶନ ମୋତେ ଏ ଆଶ୍ରମ ପୁରୀରେ ମିଳିଛି । ମୋତେ ପରିଚୟ ଦିଅନ୍ତୁ ।''

ଚତୁରୀ ଜରତା ମଧୁର କଣ୍ଠରେ କହିଲା, ''ମୁଁ ବ୍ରହ୍ମବାଦିନୀ 'ଜରତା' ମୋ ଆଶ୍ରମ ଏଠାରୁ ତିନି ଯୋଜନ ଦୂର । ମୁଁ ନୂତନ ବନଭୂମିର ସଂଧାନରେ ଆସିଥିଲି । ମୋ ସହିତ ମୋର ଶିଷ୍ୟମଣ୍ଡଳୀ ମଧ୍ୟ ଆସିଛନ୍ତି । ସେମାନେ ନୌକାରେ ଅଛନ୍ତି । ଆପଣ ଦୟାକରି ମୋ ଆଶ୍ରମରେ ଟିକିଏ ପାଦ ପକାଇଲେ ଆମେ ସବୁ କୃତାର୍ଥ ହୁଅନ୍ତୁ ।''

ଜରତା ଏହା କହିବା ପରେ ତାଙ୍କୁ ଆଲିଙ୍ଗନ କରି ବୁକୁ ତଟରେ ଜଡ଼ାଇ ରଖିଲା । ତାଙ୍କ ଅଧରରେ ଘନଘନ ଚୁମ୍ବନ ଦେଲା । ବ୍ରହ୍ମଚାରୀଙ୍କ ସାରା ଶରୀରରେ ତାର କୋମଳ ହସ୍ତ ଚାଳନ କରି ଅପୂର୍ବ ରୋମାଞ୍ଚ ସୃଷ୍ଟି କଲା, ସୁଗନ୍ଧିତ ପୁଷ୍ପ ମାଳାରେ ସୁସଜ୍ଜିତ କରି, ସୁମିଷ୍ଟ ଫଳ ପ୍ରଭୃତି ନିଜ ହାତରେ ଖୁଆଇ ଦେଲା । ଋଶ୍ୟଶୃଙ୍ଗ ଜରତାର କୋମଳ ସ୍ପର୍ଶ, ମଧୁର ବଚନ, ଚାରୁ ଚାହାଣୀ, ଓ କମନୀୟ ଲାସ୍ୟରେ ବିମୋହିତ ହେଲେ ।

''ଆପଣ ଦୟାକରି ମୋ ଆଶ୍ରମ ପୁରୀରେ ପାଦ ଦେଇ ମୋତେ ଆନନ୍ଦିତ କରନ୍ତୁ ।'' ହସି ହସି କହିଲା ଜରତା ।

ଋଶ୍ୟଶୃଙ୍ଗ ବିହ୍ୱଳ ହୋଇ ଯାଇଥିଲେ, ନିଜର ଅସ୍ତିତ୍ୱ ହରାଇଥିଲେ । ସଂଗେ ସଂଗେ କହିଲେ, 'ହଁ ଠିକ୍ ଅଛି । ବାପା ଫେରିବା ପୂର୍ବରୁ ଚାଲ ଆମେ ଚାଲିଯିବା ।'' ସେମାନେ ଯାଇ ବସିଲେନୌକାରେ । ଅନ୍ୟ ଛଦ୍ମବେଶୀ ବ୍ରହ୍ମଚାରିଣୀମାନଙ୍କ ଗହଣରେ ନୌକାଯାତ୍ରା ଖୁବ୍ ଉପଭୋଗ୍ୟ ହେଲା । ନୌକାଯାଇ ପହଞ୍ଚିଲା ଅଙ୍ଗରାଜ୍ୟରେ । ରାଜା ଲୋମପାଦ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଲେ । ସେଠାରେ ଲୋକମାନଙ୍କ ଗହଣରେ ତାଙ୍କର ନୂତନ ଅନୁଭୂତି ସୃଷ୍ଟିହେଲା । ପୁରୁଷ ସ୍ତ୍ରୀର ପ୍ରଭେଦ ଓ ବୈଶିଷ୍ଟ୍ୟ ସେଠାରେ ସେ ଅନୁଭବ କଲେ ।

ଅଙ୍ଗରାଜ୍ୟରେ ପ୍ରବଳ ବୃଷ୍ଟିପାତ ହେଲା । ଦୁର୍ଭିକ୍ଷ ଭୟ ଦୂର ହେଲା । ରାଜା ଲୋମପାଦ ନିଜର କନ୍ୟା ଶାନ୍ତାଙ୍କୁ ତାଙ୍କ ହସ୍ତରେ ଅର୍ପଣ କଲେ । ଋଶ୍ୟଶୃଙ୍ଗ ଲୋମପାଦଙ୍କ ଉଆସରେ ଶାନ୍ତାଙ୍କ ଗହଣରେ ରହିଥାନ୍ତି । ଦିନେ ତାଙ୍କ ପିତା ବିଭାଣ୍ଡକ ଋଷି ଆସି ପହଞ୍ଚିଲେ । ରାଜା ବିନମ୍ରତାର ସହିତ ତାଙ୍କର ପଦ ବନ୍ଦନା କଲେ । ଋଷି ଶାନ୍ତାଙ୍କୁ ପୁତ୍ର ସହିତ ଦେଖି ସନ୍ତୋଷ ଲାଭ କଲେ । ଶାନ୍ତାଙ୍କର ଶାଳୀନତା, ସୌନ୍ଦର୍ଯ୍ୟ ଓ ନମନୀୟ ବ୍ୟବହାର ମୁନିଙ୍କର କ୍ରୋଧ ଦୂରକଲା । ସେ ପୁତ୍ର ଓ ପୁତ୍ରବଧୂକୁ ଆଶୀର୍ବାଦ ଦେଲେ ।''

ପାଣ୍ଡବମାନେ ଏହି ପୁରାତନ କାହାଣୀ ଶୁଣି ଆନନ୍ଦିତ ହେଲେ । ସେମାନଙ୍କର ପରମ ସୌଭାଗ୍ୟ, ଆଜି ସେମାନେ ଏହି ପୁଣ୍ୟ ଅରଣ୍ୟ ପୁରୀର ଅତିଥି ।

# ।। ଗଙ୍ଗାରେ ବାଲିବନ୍ଧ ।।

ଯୁଧିଷ୍ଠିର ତାଙ୍କର ଭାଇମାନଙ୍କ ଗହଣରେ ବିଭିନ୍ନ ତୀର୍ଥ ସ୍ଥାନ ବୁଲୁଥାନ୍ତି । ଲୋମଶ ଋଷି ତାଙ୍କୁ ପ୍ରତ୍ୟେକ ସ୍ଥାନର ମହତ୍ତ୍ୱ ବିଷୟରେ କହୁଥାନ୍ତି । ଅତୀତର ଋଷି ଆଶ୍ରମକୁ ଯାଇ ସେ ଆଶ୍ରମ ଓ ଋଷିଙ୍କ ବିଷୟରେ ନାନା ଘଟଣା ବର୍ଣ୍ଣନା କରୁଥାନ୍ତି ।

ଗଙ୍ଗାନଦୀ କୂଳରେ ବୁଲୁବୁଲୁ ଲୋମଶଋଷି କହିଲେ, ''ଗଙ୍ଗାର ଏହି ଘାଟ ଅତ୍ୟନ୍ତ ପବିତ୍ର । ବୃତ୍ରାସୁରକୁ ଅନ୍ୟାୟ ଭାବରେ ମାରି, ଏଇ ଘାଟରେ ଗାଧୋଇ, ଇନ୍ଦ୍ର ପାପମୁକ୍ତ ହୋଇଥିଲେ ।

ଭରଦ୍ୱାଜ ଋଷିଙ୍କ ପୁତ୍ର ଏହି ସ୍ଥାନରେ ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଘୋରତପସ୍ୟା କରିଥିଲେ । ତାଙ୍କ ତପସ୍ୟାରେ ଇନ୍ଦ୍ରାସନ ଟଳମଳ ହେଲା । ଇନ୍ଦ୍ର ଆସି ତାଙ୍କ ସମ୍ମୁଖରେ ଉଭାହେଲେ । ପଚାରିଲେ, ତୁମେ ମୋତେ କାହିଁକି ସ୍ମରଣ କଲ ?

ଋଷିପୁତ୍ର ଭକ୍ତିଭରା ପ୍ରଣାମ ଢ଼ାଳି କହିଲେ, ''ହେ ଦେବରାଜ ! ବେଦଜ୍ଞାନରେ ସାରା ବିଶ୍ୱରେ ମୁଁ ସମସ୍ତଠାରୁ ଅଧିକ ପାଣ୍ଡିତ୍ୟ ହାସଲ କରିବାକୁ ଚାହେଁ । କୌଣସି ଗୁରୁଙ୍କଠାରୁ ଏହା ଶିକ୍ଷା କରିବା ପାଇଁ ବହୁତ ସମୟ ଓ ପରିଶ୍ରମ ଆବଶ୍ୟକ । ହୁଏତ ଗୁରୁନିର୍ବାଚନରେ ସାମାନ୍ୟ ବ୍ୟତିକ୍ରମ ହେଲେ ଜ୍ଞାନ ଲାଭରେ ପୂର୍ଣ୍ଣତା ମିଳିନ ପାରେ । ଆପଣ ଦୟାକରି ମୋତେ ବେଦର ପୂର୍ଣ୍ଣଜ୍ଞାନ ପ୍ରଦାନ କରନ୍ତୁ ।''

ଇନ୍ଦ୍ର ଦେବତା ହସି ହସି କହିଲେ, 'ହେ ଋଷି ପୁତ୍ର ! ତୁମର କଠୋର ତପସ୍ୟା ମୋତେ ମୁଗ୍ଧ କରିଛି । ଏଥିପାଇଁ ତୁମେ ଯେତିକି କଷ୍ଟ ସହିଲଣି, ସେତିକିରେ ଉପଯୁକ୍ତ ଗୁରୁଙ୍କଠାରୁ ଆବଶ୍ୟକ ଜ୍ଞାନ ଲାଭ କରି ସାରିଥାନ୍ତ । ବେଦ ଉପରେ ଦକ୍ଷତା ଥିବା ଗୁରୁଙ୍କର ଅଭାବ ନାହାନ୍ତି । ଏହି ଜ୍ଞାନ ଲାଭ କରିବାକୁ ହେଲେ ଅଧ୍ୟୟନ ହିଁ ଏକମାତ୍ର ତପସ୍ୟା । ସେହି ଅଧ୍ୟୟନ ତପସ୍ୟା ବଳରେ, ଗୁରୁଙ୍କ ଆଶୀର୍ବାଦ ଲାଭକରି, ବେଦଜ୍ଞାନରେ ତୁମେ ପାଣ୍ଡିତ୍ୟ ଲାଭ କରି ପାରିବ । ତୁମେ ଭୁଲମାର୍ଗ ଅନୁସରଣ କରିଛ । ଠିକ୍ ବାଟକୁ ଫେରିଯାଅ ।''

ଋଷିପୁତ୍ରଙ୍କ ମନ ଏଥିରେ ସନ୍ତୁଷ୍ଟ ହେଲାନାହିଁ । ସେ ପୁଣି କଠୋର ତପସ୍ୟା କଲେ । ଏପରିକି ନିଜ ଶରୀରର ଏକ ଏକ ଅଙ୍ଗକାଟି, ଯଜ୍ଞ କୁଣ୍ଡରେ ଆହୁତି ଦେଲେ । ଇନ୍ଦ୍ର ପୁଣି ଥରେ ଆସି ତାଙ୍କୁ ଏ ମାର୍ଗ ପରିହାର କରି ଗୁରୁଙ୍କ ମାଧ୍ୟମରେ ଅଧ୍ୟୟନ କରିବାକୁ ନିର୍ଦ୍ଦେଶ ଦେଲେ । ତଥାପି ସେ ତାଙ୍କର ତପସ୍ୟାରୁ ନିବୃତ୍ତ ହେଲେ ନାହିଁ ।

ଦିନକର କଥା

ସେ ଗଙ୍ଗାକୁ ଗାଧୋଇବାକୁ ଯାଇଥାନ୍ତି, ଦେଖିଲେ ଜଣେ ବୃଦ୍ଧବ୍ରାହ୍ମଣ ଝାଳନାଳ, ଧଇଁ ସଇଁ ହୋଇ, ଗଙ୍ଗା ସ୍ରୋତକୁ ମୁଠା ମୁଠା ବାଲି ପକାଉଛନ୍ତି ।

ଋଷିପୁତ୍ର ପଚାରିଲେ, ''ହେ ବ୍ରାହ୍ମଣ ! ତୁମେ ଏଠାରେ କଣ କରୁଛ ?

ବ୍ରାହ୍ମଣ କହିଲେ, ''ମୁଁ ଗଙ୍ଗାରେ ଗୋଟାଏ ବାଲିବନ୍ଧ କରିବାପାଇଁ ବାଲି ପକାଉଛି । ବନ୍ଧଟା ହୋଇଗଲେ ଲୋକେ ବିନା କଷ୍ଟରେ ଏ ବିରାଟ ନଈ ପାର ହୋଇପାରିବେ । ମୋ କାମଟା ତମ ମନକୁ ପାଉଛି କି ନାହିଁ ?''

ଋଷିପୁତ୍ର ହସିହସି ବେଦମ ହୋଇଗଲେ । କହିଲେ, ''ତମେ ଆଚ୍ଛା ବୋକା ଲୋକ । ବାଲି ମୁଠାଏ ମୁଠାଏ ପକାଇ ଗଙ୍ଗାରେ ବନ୍ଧ ବାନ୍ଧିବାକୁ କିପରି ଭାବିଛ ?''

ବ୍ରାହ୍ମଣ ହସି ହସି କହିଲେ, ହେ ଋଷି ପୁତ୍ର, ତମଠାରୁ ମୁଁ ବେଶି ବୋକା ? ବେଦ ନ ପଢ଼ି ସଥିରେ ପଣ୍ଡିତ ହେବାକୁ ତୁମେ କେମିତି ଭାବିଛ ? ଋଷିପୁତ୍ର ବ୍ରାହ୍ମଣଙ୍କୁ ଇନ୍ଦ୍ରବୋଲି ଚିହ୍ନି, ପ୍ରଣାମ ଜଣାଇଲେ । ଇନ୍ଦ୍ରଦେବତା ଆଶୀର୍ବାଦ ଦେଇ କହିଲେ, ମୁଁ ତୁମର ସଫଳତା କାମନା କରେ । ଯାଅ; ଅଧ୍ୟୟନକୁ ତପସ୍ୟା ରୂପେ ଗ୍ରହଣ କର । ଗୁରୁଙ୍କର ଆଶୀର୍ବାଦ ନେଇ ବେଦ ବିଦ୍ୟାରେ ବ୍ୟୁତ୍ପତ୍ତି ଲାଭକର । ମୋର ଧାରଣା, ତୁମ ପିତା, ଋଷିଶ୍ରେଷ୍ଠ ଭରଦ୍ୱାଜ ହିଁ ତମପାଇଁ ସର୍ବଶ୍ରେଷ୍ଠ ଗୁରୁ ।

ଋଷିପୁତ୍ରଙ୍କର ମୋହଭଙ୍ଗ ହେଲା ।

ସେ ଲଜ୍ଜିତ ହୋଇ, ନମ୍ରତାର ସହିତ ଅଧ୍ୟୟନ ପଥକୁ ଫେରିଆସିଲେ । ପିତାଙ୍କ ଠାରୁ ବେଦଜ୍ଞାନ ଲାଭ କଲେ ।

## ।। ଚ୍ୟବନ ।।

ମହା ସମାରୋହରେ ଚାଲିଛି ପାଣ୍ଡବମାନଙ୍କର ତୀର୍ଥଯାତ୍ରା । ବୁଲି ବୁଲି ସମସ୍ତେ ଆସି ପହଞ୍ଚିଲେ ନର୍ମଦାନଦୀ କୂଳରେ । ସେଠାରେ ଦେଖିବାକୁ ପାଇଲେ ଏକ ସୁନ୍ଦର ହ୍ରଦ । ଧର୍ମପୁତ୍ର ଏ ସ୍ଥାନର ମାହାତ୍ମ୍ୟ ବିଷୟରେ ଲୋମଶ ଋଷିଙ୍କୁ ପ୍ରଶ୍ନ କଲେ ।

ଲୋମଶ କହିଲେ, ''ହେ ଧର୍ମ ପୁତ୍ର ! ଏହା ଏକ ପବିତ୍ର ସ୍ଥଳୀ । ଏଠାରେ ଦ୍ୱାପର ଯୁଗର ଆରମ୍ଭରେ ରାଜା ଶର୍ଯାତି ଅଶ୍ୱମେଧ ଯଜ୍ଞ କରିଥିଲେ । ଏଇଦେଖନ୍ତୁ ଅଳ୍ପଦୂରରେ ଏକ ପୁଣ୍ୟ ସରୋବର । ମହର୍ଷି ଚ୍ୟବନ ଏଠାରେ ତପୋମଗ୍ନ ଥିଲେ । ସେ ଶହ ଶହ ବର୍ଷଧରି ତପସ୍ୟାରେ ବସିଥାନ୍ତି । ତାଙ୍କ ଉପରେ ଗୋଟିଏ ବିରାଟ ଉଇହୁଙ୍କା ଗଢ଼ା ହୋଇଗଲା । ହୁଙ୍କା ଭିତରେ ଲୁଚିଗଲା ତାଙ୍କର ଶରୀର ସରା କେବଳ ବାକିରହିଲା ଆଖି ଦିଇଟି । ବିରାଟ ହୁଙ୍କା ଭିତରେ ଆଖି ଦୁଇଟି ଦିକି ଦିକି ହୋଇ ଜଳି ଉଠୁଥାଏ । ସତେ ଯେମିତି ଦିଇଟି ଜଳିଲା ଦୀପ ।

ରାଜା ଶର୍ଯାତିଙ୍କ କନ୍ୟାଙ୍କ ନାମ ସୁକନ୍ୟା ।

ଥରେ ଏଇ ସରୋବର କୂଳରେ ବୁଲୁବୁଲୁ ବିରାଟ ଉଇହୁଙ୍କା ଦେଖି ରାଜକନ୍ୟାଙ୍କ ମନରେ କୌତୂହଳ ସୃଷ୍ଟିହେଲା । ସେ ତା' ଉପରେ ଚଢ଼ିଲେ । ଜୁଳୁଜୁଳୁ ହେଉଥିବା ଦୁଇଟି ଆଖିକୁ ପ୍ରକୃତରେ ଜଣେ ମଣିଷର ଆଖି ବୋଲି ଜାଣି ପାରିଲେ ନାହିଁ । ବାଲ୍ୟ ଚପଳତା ଯୋଗୁଁ ସେ ଦିଇଟି କଣ୍ଟା ଆଣି ଫୋଡ଼ି ଦେଲେ । ଋଷି ଉଦ୍‌ଫଣ ସର୍ପପରି କ୍ରୋଧରେ ସାଇଁ ସାଇଁ ହେଲେ ।

ଚାହୁଁ ଚାହୁଁ ଉଇହୁଙ୍କା ଭାଜିପଡ଼ିଲା ।

ମହର୍ଷି କ୍ରୋଧରେ ରାଜାଙ୍କର ସୈନ୍ୟବଳକୁ ନିର୍ବଳ କରିଦେଲେ । ସାରା ରାଜ୍ୟରେଚହଳ ପଡ଼ିଗଲା । ରାଜା ସମସ୍ତ ଘଟଣା ଜାଣିବାପରେ, ଋଷିଙ୍କ ପାଖରେ ଶରଣ ପଶିଲେ । ତାଙ୍କୁ ନିଜ ଝିଅର

ଦୋଷ ପାଇଁ କ୍ଷମା ମାଗିଲେ । ମହର୍ଷିଙ୍କର କ୍ରୋଧ ଶାନ୍ତ ହେଲା । ସେ କହିଲେ, ''ହେ ରାଜନ୍ ! ତୁମେ ଯଦି ତୁମର ସେହି ଝିଅଟିକୁ ମୋ ସହିତ ବିବାହ ଦେବ, ତା'ହେଲେ କୌଣସି ବିପତ୍ତିର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ । ମୋ ଅନ୍ଧତ୍ୱର ଏକମାତ୍ର ଭରଣା ହେଉଛି, ମୋ ସହିତ ସୁକନ୍ୟାର ବିବାହ । ସେ ଆଖି ଫୁଟାଇଛି, ସେ ଏହି ଅନ୍ଧଅସହାୟକୁ ଚଳାଇବ ।

ରାଜା ଟିକିଏ ବିଚଳିତ ହୋଇ ଉଠିଲେ । ଜଣେ ବୃଦ୍ଧ ତପସ୍ୱୀ ସହିତ କିଶୋରୀ ରାଜକନ୍ୟା ସୁକନ୍ୟାର ବିବାହ !! ଅଭିଶାପ ଭୟରେ ସେ ସମ୍ମତ ହେଲେ । ସୁକନ୍ୟା ମଧ୍ୟ ଏ ପ୍ରସ୍ତାବ ଗ୍ରହଣ କଲେ ।

ବାର୍ଦ୍ଧକ୍ୟ ଜର୍ଜରିତ ଶ୍ଳଥଚର୍ମ ମହର୍ଷି ଚ୍ୟବନଙ୍କ ସହିତ ନବଯୌବନା ଲାବଣ୍ୟ ପ୍ରତିମା ସୁକନ୍ୟାଙ୍କର ବିବାହ !! ଯନ୍ତ୍ରଣା କାତର ସମ୍ରାଟ ଶର୍ଯ୍ୟାତି ନିର୍ବାକ ହୋଇ ଚାହିଁ ଥାନ୍ତି ମହର୍ଷିଙ୍କ ମୁହଁକୁ । ସୁକନ୍ୟା ପିତାଙ୍କର ମର୍ମ ବେଦନା ଅନୁଭବ କରି ନତ ମୁଖରେ କହିଲେ, ''ହେ ପିତା !ମୋ ପାପର ପ୍ରାୟଶ୍ଚିତ ପାଇଁ, ମୋତେ ହିଁ ଏ ଦଣ୍ଡ ଭୋଗ କରିବାକୁ ପଡ଼ିବ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଅପରାଧ ପାଇଁ ପ୍ରଜାକୁଳ ଓ ଆପଣ କାହିଁକି ଦଣ୍ଡିତ ହେବେ !''

ବେଦନାଗ୍ରସ୍ତ ଶର୍ଯ୍ୟାତି ସେଇ ମୁହୂର୍ତ୍ତରେ ମହର୍ଷି ଚ୍ୟବନଙ୍କ ହାତରେ ରାଜକନ୍ୟା ସୁକନ୍ୟାଙ୍କୁ ସମର୍ପଣ କଲେ । ଆରମ୍ଭ ହେଲା ତାଙ୍କର ବନଚାରୀର ଜୀବନ । ପର୍ଣ୍ଣକୁଟୀରରେ ସେ ରହିଲେ, ପତ୍ର ଶଯ୍ୟାରେ ଶୋଇଲେ । ଗୈରିକ ବସ୍ତ୍ର ପରିଧାନ କଲେ । ଫଳମୂଳ ହେଲା ତାଙ୍କର ଖାଦ୍ୟ । ସେ ଅନ୍ଧ ଜରାଗ୍ରସ୍ତ ସ୍ୱାମୀଙ୍କୁ ପ୍ରାଣବିନିମୟରେ ସେବା କରିବାକୁ ଲାଗିଲେ । ମହର୍ଷି ଚ୍ୟବନଙ୍କର ପରମ ସନ୍ତୋଷ ଓ ଶୁଭେଚ୍ଛା ଲାଭ କଲେ ସୁକନ୍ୟା । ଶର୍ଯ୍ୟାତିଙ୍କର ରାଜ୍ୟ, ସୁଖ ଶାନ୍ତି ସମୃଦ୍ଧି ଭିତରେ ଭରପୂର ହୋଇ ଉଠିଲା ।

ଦିନକର ଘଟଣା !

ଦେବ ବୈଦ୍ୟ ଅଶ୍ୱିନୀକୁମାର ଦ୍ୱୟ ଚ୍ୟବନଙ୍କ ଆଶ୍ରମକୁ ଆସିଥିଲେ । ସୁକନ୍ୟା ତାଙ୍କର ପଦବନ୍ଦନା କରି ଭକ୍ତିର ସହିତ ଆତିଥ୍ୟ ସ୍ୱୀକାର କଲେ । ସେ ଦୁହେଁ ପ୍ରୀତହୋଇ ତାଙ୍କୁ ବର ମାଗିବାକୁ କହିଲେ ।

ସୁକନ୍ୟା କହିଲେ, ''ହେ ଦେବବୈଦ୍ୟ ! ଆପଣ ଯଦି ସନ୍ତୁଷ୍ଟ ତା'ହେଲେ ମୋ ସ୍ୱାମୀଙ୍କର ଦୃଷ୍ଟି ଶକ୍ତି ଏବଂ ଶାରୀରିକ ସ୍ୱାସ୍ଥ୍ୟ ଫେରାଇ ଦିଅନ୍ତୁ ।''

ଅଶ୍ୱିନୀକୁମାର ଦ୍ୱୟ ମହର୍ଷିଙ୍କୁ ନେଇ ନିକଟସ୍ଥ ହ୍ରଦରେ ସ୍ନାନ କରି ବାହାରି ଆସିଲେ । ଆଶ୍ଚର୍ଯ୍ୟ କଥା, ତିନିଜଣ ରୂପବାନ ଯୁବକଙ୍କର ଠିକ୍ ଏକାପରି ଚେହେରା । ପ୍ରକୃତ ଚ୍ୟବନ କିଏ, ତାଙ୍କୁ ଚିହ୍ନିବାକୁ ସୁକନ୍ୟାଙ୍କୁ କୁହାଗଲା । ସେ ଠିକ୍ ଭାବରେ ନିଜ ସ୍ୱାମୀଙ୍କୁ ଚିହ୍ନିପାରି ପଦତୀର୍ଥରେ ପ୍ରଣାମ ଜଣାଇଲେ । ଅଶ୍ୱିନୀକୁମାର ଦ୍ୱୟ ଖୁସି ହୋଇ ବିଦାୟ ନେଲେ ।

ଥରେ ମହର୍ଷି ଚ୍ୟବନ, ସୁକନ୍ୟାଙ୍କୁ କହିଲେ, ତୁମର ଅଭିଳାଷ ପୂର୍ଣ୍ଣ କରିବାକୁ ମୁଁ ଚାହେଁ, ତୁମେ ପ୍ରକାଶ କର ।'

ସୁକନ୍ୟା କହିଲେ, ''ହେ ଦେବ ! ଆପଣ ନବ ଯୌବନର ଅଧିକାରୀ ହୋଇଛନ୍ତି । କିଛିଦିନ ଆମେ ସଂସାରର ଭୋଗ ବିଳାସରେ ବିତାଇବା ପାଇଁ ମୋର ଇଚ୍ଛା । ଏହା ଯେ ଆପଣଙ୍କ ପରି ଜଣେ ସିଦ୍ଧ ପୁରୁଷଙ୍କ ସିଦ୍ଧି ଉପରେ କିଛି ପ୍ରଭାବ ପକାଇବ, ମୁଁ ତାହା ଭାବୁନାହିଁ । ଆପଣତ ଚିର ନିର୍ଲିପ୍ତ, ଚିର ଅନାସକ୍ତ, କିନ୍ତୁ ମୁଁ ସଂସାରୀ ମଣିଷ । ଭୋଗ ବାସନା ମୋର ଚରିତାର୍ଥ ହୋଇନି ।''

ମହର୍ଷି ଚ୍ୟବନଙ୍କ ତପ ପ୍ରଭାବରେ ପର୍ଣ୍ଣକୁଟୀର କୁବେର ପୁରୀରେ ପରିଣତ ହେଲା । ହିରା, ନୀଳା, ମୋତି ମାଣିକ୍ୟରେ ଝଲସି ଉଠିଲା ଚ୍ୟବନ ପୁରୀ । ଦାସୀ ପରିଚାରିକା ଗହଣରେ ମତ୍ତ ମୟୂରୀ ପରି ମାଦକିତ ହୋଇ ଉଠିଲେ ସୁକନ୍ୟା । ଶର୍ଯାତି ଝିଅଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଆନନ୍ଦରେ ଅଧୀର ହୋଇ ଉଠିଲେ । ରାଜା ଏହି ନଦୀକୂଳରେ ଏକ ଶାନ୍ତିଯଜ୍ଞର ବ୍ୟବସ୍ଥା କଲେ । ଏ ଯଜ୍ଞର ପ୍ରଧାନ ପୁରୋଧା ହେଲେ ଚ୍ୟବନ ଋଷି ।

କିଛି ଦିନ ଭୋଗ ବିଳାସରେ କଟାଇବା ପରେ, ସୁକନ୍ୟାଙ୍କ ଅନୁରୋଧରେ ପୁଣି ସେମାନେ ଆଶ୍ରମ ଜୀବନକୁ ଫେରିଗଲେ । ସେଇ ତ୍ୟାଗତପ୍ତ ବନ ଜୀବନ । ଲୋମଶ ମୁନି କହିଲେ, ''ହେ ଧର୍ମ ପୁତ୍ର ! ମହର୍ଷି ଚ୍ୟବନଙ୍କ ଆଶୀର୍ବାଦରେ ଆପଣଙ୍କ ବନଜୀବନ ସୁଖମୟ ହେଉ ।''

## ।। ଅଷ୍ଟାବକ୍ର ।।

ବୁଲୁ ବୁଲୁ ପାଣ୍ଡବମାନେ ଆସି ପହଞ୍ଚିଲେ ଏକ ମୁନି ଆଶ୍ରମରେ । ନିବିଡ଼ ଅରଣ୍ୟ ମଧ୍ୟରେ ଥିଲା ଏହି ଆଶ୍ରମର ଅବଶେଷ । ଲୋମଶ ଋଷି କହିଲେ, ''ହେ ଧର୍ମ ପୁତ୍ର ! ତ୍ରେତୟା ଯୁଗରେ ଏଠାରେ ଥିଲା ମହର୍ଷି ଉଦ୍ଦାଳକଙ୍କ ଆଶ୍ରମ । ସେଥିଲେ ବେଦ ବେଦାନ୍ତର ଏକ ମହାନ୍ ଗୁରୁ । ଶିକ୍ଷାଲାଭପାଇଁ ବହୁଶିଷ୍ୟ ତାଙ୍କ ପାଖକୁ ଆସୁଥିଲେ । ସେମାନଙ୍କ ମଧ୍ୟରେ ତାଙ୍କର ଅତ୍ୟନ୍ତ ପ୍ରିୟ ଶିଷ୍ୟ ଥିଲେ 'କହୋଡ଼' । ବେଦ ବେଦାନ୍ତରେ ତାଙ୍କର ଅଲୌକିକ ଦକ୍ଷତା ନଥିଲେ ମଧ୍ୟ, ଚରିତ୍ର, ସୁଗୁଣ, ସୁସଂହତ ଜୀବନ ଯାପନ ପ୍ରଣାଳୀ, ଗୁରୁଙ୍କୁ ଆକର୍ଷଣ କରିଥିଲା । ସେ ନିଜର କନ୍ୟା 'ସୁଜାତା' କୁ ତାଙ୍କ ସହିତ ବିବାହ ଦେଲେ । କିଛି ଦିନପରେ ସୁଜାତା ହେଲେ ସନ୍ତାନସମ୍ଭବା ।

ପିଲାଟି ମାତୃଗର୍ଭରେ ଥିବା ବେଳେ ବେଦ ଜ୍ଞାନରେ ଧୁରୀଣ ଥିଲା । ପିତା ବେଦମନ୍ତ୍ର ଉଚ୍ଚାରଣ କରିବାବେଳେ ଭୁଲ କରିଦେଲେ ମାତୃଗର୍ଭରେ ଥିବା ପୁତ୍ର ଯନ୍ତ୍ରଣାରେ ବାଙ୍କିଯାଏ । ପିଲାଟି ଜନ୍ମ ହେଲାବେଳେ ଦେଖାଗଲା ତା ଦେହରେ ଆଠଟା ବାଙ୍କ ଅଛି । ଆଠ ବାଙ୍କିଆ ଛୁଆଟିକୁ ଦେଖି ସବୁରି ମନରେ ଭାରି ଦୁଃଖ । ତା ନାଁ ଦିଆଗଲା 'ଅଷ୍ଟାବକ୍ର' ।

ବୟସ ବୃଦ୍ଧି ସହିତ ସେ ସମସ୍ତ ବେଦ ବେଦାନ୍ତରେ ପୂର୍ଣ୍ଣଜ୍ଞାନ ହାସଲ କରିପାରିଲେ । ତାଙ୍କୁ ବାରବର୍ଷ ବୟସ ହେଲା ବେଳକୁ ସେ ସର୍ବଜ୍ଞାନର ଅଧିକାରୀ ହୋଇପାରିଥିଲେ ।

ମିଥିଳାର ରାଜା ଜନକ ଏକ ରାଜସୂୟ ଯଜ୍ଞର ଆୟୋଜନ କରିଥାନ୍ତି । ଧର୍ମ ଶାସ୍ତ୍ର ଓ ବେଦ ବେଦାନ୍ତ ଆଲୋଚନା ପାଇଁ ଖ୍ୟାତିସମ୍ପନ୍ନ ପଣ୍ଡିତ ମାନଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଏ ଖବର ଆସି ପହଞ୍ଚିଲା ଋଷିପୁତ୍ର ଅଷ୍ଟାବକ୍ରଙ୍କ ପାଖରେ, କିନ୍ତୁ ସେ ନିମନ୍ତ୍ରଣ ପାଇ ନଥିଲେ । ତଥାପି ଧର୍ମ ସଭାକୁ ଯିବାକୁ ବାହାରିଲେ ଅଷ୍ଟାବକ୍ର ।

ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଯାଇ ପହଞ୍ଚିଲେ ସଭାସ୍ଥଳୀରେ । ଭିତରକୁ ଯିବା ପାଇଁ ଯେତେବେଳେ ଉଦ୍ୟତ ହେଲେ, ପ୍ରହରୀ ତାଙ୍କୁ ଛାଡ଼ିଲାନାହିଁ । କହିଲା, ''ପିଲାମାନଙ୍କୁ ପଣ୍ଡିତ ସଭାକୁ ଯିବାପାଇଁ ରାଜାନୁମତି ନାହିଁ । କେବଳ ବୟସ୍କ ବେଦଜ୍ଞ ବ୍ରାହ୍ମଣମାନେ ଯାଇ ପାରିବେ ।''

ଅଷ୍ଟାବକ୍ର କହିଲେ, ''ବୟସ ମୋର କମ୍ ହେଲେବି, ମୁଁ ଜଣେ ବେଦଜ୍ଞ ବ୍ରାହ୍ମଣ । ବେଦ ବେଦାନ୍ତ ମୁଁ ସବୁ ଆୟତ୍ତ କରିଛି । ଆଲୋଚନା ସଭାରେ ମୁଁ ଭାଗ ନେଇ ପାରିବି । ବୟସ ବା ରୂପ ସହିତ ପାଠର କି ସମ୍ପର୍କ ଅଛି ? ବାଳ ପାଚିଗଲେ ମଣିଷ ପଣ୍ଡିତ ହୋଇ ଯାଏନି କି ପଣ୍ଡିତ ହୋଇଗଲେ ବାଳ ପାଚିଯାଏନା । ମୋତେ ଛାଡ଼, ମୁଁ ଯାଏ ।''

''ନାଁ ମୁଁ ଛାଡ଼ିବି ନାହିଁ ।''

''ତା'ହେଲେ ମୋ କଥା ରାଜା ଜନକଙ୍କୁ ଯାଇକୁହ । ମୁଁ ରାଜ ସଭାର ପଣ୍ଡିତ 'ବନ୍ଦୀ'ଙ୍କୁ ସାକ୍ଷାତ କରିବାକୁ ଚାହେଁ ।''

ଠିକ୍ ଏତିକିବେଳେ ଜନକ ଆସି ପହଞ୍ଚିଲେ । ଶିଶୁଟିର ଆଗ୍ରହ ଦେଖି ତାକୁ ଅନୁମତି ଦେଲେ । ପୂର୍ବରୁ ରାଜପଣ୍ଡିତ 'ବନ୍ଦୀ'ଙ୍କ ସହିତ ବେଦ ବେଦାନ୍ତ ତର୍କରେ ପରାସ୍ତ ହୋଇ କହୋଡ଼ ବନ୍ଦି ହୋଇଥିଲେ । ଏହାର ପ୍ରତିଶୋଧ ନେବା ପାଇଁ ଅଷ୍ଟାବକ୍ର 'ବନ୍ଦୀ'ଙ୍କ ସହିତ ବେଦ ଉପରେ ତର୍କ ଆରମ୍ଭ କଲେ । ଶେଷରେ ସେହି ଆତ୍ମାଭିମାନୀ ଉଗ୍ରତପା ଋଷିଙ୍କୁ ଅଷ୍ଟାବକ୍ର ଯୁକ୍ତିବଳରେ ପରାସ୍ତ କଲେ । ବନ୍ଦୀ ପରାଜୟ ସ୍ୱୀକାରକଲେ ଏବଂ 'କହୋଡ଼'ଋଷି ମୁକ୍ତିଲାଭ କଲେ । ଅଷ୍ଟାବକ୍ରଙ୍କ ଅଭିଳାଷ ପୂର୍ଣ୍ଣ ହେଲା ।

ପିତା ପୁତ୍ରଙ୍କ ଫେରିବା ପଥରେ ପଡ଼ିଲା 'ସମଙ୍ଗ'ନଦୀ । କହୋଡ଼ ଋଷି ପୁତ୍ରକୁ କହିଲେ,ଏ ନଦୀରେ ସ୍ନାନ କର । ପିତାଙ୍କ କଥା ମାନି ସେ ସ୍ନାନ କରିବା ସମୟରେ ତାଙ୍କ ଶରୀରର ବକ୍ରତ୍ୱ ଦୂର ହୋଇଗଲା । ଅଙ୍ଗସମାନ ହେବାପରେ ସେ ଏକ ସୁନ୍ଦର ଯୁବକରେ ପରିଣତ ହେଲେ । ସମଙ୍ଗ ନଦୀର ଏହାଥିଲା ବୈଶିଷ୍ଟ୍ୟ ।

ଏହି ନଦୀଜଳ ଅଙ୍ଗ ବିକୃତି ଦୂର କରି ପାରେ ବୋଲି ଏହାର ନାମ 'ସମଙ୍ଗ ।'

ପୁତ୍ରର ସୌମ୍ୟରୂପ ଦେଖି କହୋଡ଼ ଋଷି ଆନନ୍ଦରେ ବିଭୋର ହୋଇ ଉଠିଲେ । ସବୁଠାରୁ ଅଧିକ ଆନନ୍ଦିତ ପୁତ୍ରର ପଣ୍ଡିତ ସଭାରେ ସଫଳତା ପାଇଁ । ଅଷ୍ଟାବକ୍ର , ରଜା ଜନକଙ୍କ ରାଜସଭାର ଅନୁଭୂତି ପିତାଙ୍କ ପାଖରେ ବର୍ଣ୍ଣନା କରିବା ବେଳେ ଭାବବିହ୍ୱଳ ହୋଇ ଉଠୁଥାନ୍ତି । କହିଲେ, ପିତା ! ମୋ ଅଙ୍ଗର ବକ୍ରତା ଦେଖି ରାଜସଭାର ପଣ୍ଡିତମାନଙ୍କର ମୁଖ ମଣ୍ଡଳ ବିକୃତ ହୋଇ ଉଠିଲା । ମୋତେ ରାଜା ଜନକ ଯେତେବେଳେ ପ୍ରଶ୍ନକଲେ, ''ହେ ବାଳବ୍ରହ୍ମଚାରୀ ! ତୁମେ ଏଠାରେ କ'ଣ ଦେଖୁଛ ? ମୁଁ ନମ୍ର ହୋଇ ଦୃଢ଼ କଣ୍ଠରେ କହିଲି, '' ରାଜନ ! ମୁଁ ଏସଭାରେ ଜଣେ ହେଲେ ପଣ୍ଡିତଙ୍କୁ ଦେଖିବାକୁ ପାଉନି, ଏହା ଏକ ମୋଚି ସଭା । ମୋ ଶରୀରର ବକ୍ରତା ଦେଖି ସମସ୍ତଙ୍କର ମୁଖ ବିକୃତ ହୋଇଯାଇଛି । ଏମାନଙ୍କର ଜ୍ଞାନ, ଶରୀର ସର୍ବସ୍ୱ, ବେଦଜ୍ଞ ହୋଇମଧ୍ୟ ଆତ୍ମଦର୍ଶନ କାହାରିନାହିଁ । ଆପଣଙ୍କ ଆଶୀର୍ବାଦ ବଳରେ ରାଜସଭାର ଅହଂକାରୀ ପଣ୍ଡିତ ବନ୍ଦୀଙ୍କୁ ମୁଁ ପରାସ୍ତ କଲି । କହୋଡ଼ ଋଷି ହସି ହସି କହିଲେ,

''ଇତ୍ୟାର୍ଥମିଚ୍ଛତି ସୁତାନ୍ ଜନୋ ଜନକ କର୍ମଣା
ଯଦହଂ ନାଶକଂ କର୍ତ୍ତୁଂ ତଦ୍‌ପୁତ୍ରଃ କୃତବାନ୍ ମମ ।

ଏହାର ସାରଅର୍ଥ ହେଲା, ଯେଉଁ କାର୍ଯ୍ୟ, ପିତା ସମ୍ପନ୍ନ କରିବାପାଇଁ ଅସମର୍ଥ ବା ସମ୍ପନ୍ନ କରିପାରିଲେ ନାହିଁ, ତାହା ପୁତ୍ର ସମ୍ପନ୍ନ କରିବା ଉଚିତ । ତୁମେ ତୁମ କର୍ତ୍ତବ୍ୟ ପାଳନ କରିଛ ମୁଁ ଆନନ୍ଦିତ ।

# ।। ଦୁଇଭାଇଙ୍କ ଭେଟ ।।

ଏଥର ପାଣ୍ଡବମାନେ ଯାଇ ପହଞ୍ଚିଲେ ଗନ୍ଧମାଦନ ପର୍ବତରେ । ପହଞ୍ଚିବାପରେ ପରେ ଭୟଙ୍କର ବାତ୍ୟା ହେଲା । ସତେ ଯେପରି ମହାପ୍ରଳୟ । ଭୀମମଧ୍ୟ ଡରିଗଲେ । ସେ ଏହି ଆସନ୍ନ ବିପଦରୁ ରକ୍ଷା ପାଇବା ପାଇଁ ନିଜର ରାକ୍ଷସ ପୁତ୍ର ଘଟୋତ୍କଚକୁ ମନେ ପକାଇଲେ । ଆଖି ପିଛୁଳାକେ ଘଟୋତ୍କଚ ନିଜର ସୈନ୍ୟବଳ ନେଇ ସେଠାରେ ଉପସ୍ଥିତ ହେଲେ । ପିତାଙ୍କୁ ପ୍ରଣାମ ଜଣାଇଲେ । ଭୀମ ପୁତ୍ରକୁ ଆଲିଙ୍ଗନ କରି ସମସ୍ତ ଘଟଣା କହିଲେ । ଘଟୋତ୍କଚ ପାଣ୍ଡବମାନଙ୍କୁ ସାଥିରେ ନେଇ ବଦରୀ ଆଶ୍ରମରେ ପହଞ୍ଚାଇ ଦେଲେ । କାହାକୁ ପଥଶ୍ରମ କରିବାକୁ ପଡ଼ିଲା ନାହିଁ ।

ଆଶ୍ରମର ଅନତିଦୂରରେ ବହିଯାଉଛି ପାବିନୀ ଗଙ୍ଗା । ନିକଟରେ ମୈନାକ ପର୍ବତ । ଆକାଶ ସ୍ପର୍ଶୀ ଶ୍ୟାମଳ ଶିଖର । ଅନତିଦୂରରେ ହିରଣ୍ୟ ପର୍ବତ ଛିଡ଼ା ହୋଇଛି, ମୈନାକର ଆତ୍ମୀୟ ସହୋଦର ପରି । ଦିଗନ୍ତ ବିସ୍ତୃତ ସବୁଜ ବନାନୀ । ତାରି ଭିତରେ ଏକ ବିରାଟ ସ୍ୱଚ୍ଛ ସରୋବର, ତା ନାଁ ବିନ୍ଦୁ । ସତେ ଅବା ସିନ୍ଧୁର ପ୍ରତୀକ ।

ଘଟୋତ୍କଚ ବିଦାୟ ନେଲେ ।

ଦିନେ ଭୀମ ଓ ଦ୍ରୌପଦୀ ବସିଥାନ୍ତି । ସୁଲୁ ସୁଲୁ ଶୀତଳ ପବନ ବହୁଥାଏ । ଚତୁର୍ଦିଗରେ ମଧୁଗନ୍ଧର ମହକ । ଠିକ୍ ଏତିକିବେଳେ ଗୋଟିଏ ସହସ୍ର ଦଳ ପଦ୍ମ ଫୁଲ, ପବନରେ ଭାସି ଆସି ପଡ଼ିଲା ଦ୍ରୌପଦୀଙ୍କ ପାଦ ପାଖରେ । ଚମକି ପଡ଼ିଲେ ଦ୍ରୌପଦୀ । ବାଃ କି ଚମତ୍କାର ଏ ପୁଷ୍ପ । ଏତେ ସୁନ୍ଦର ସୁବାସିତ ପୁଷ୍ପ ସେ ପୂର୍ବରୁ କେବେ ଦେଖି ନଥିଲେ । ବୋଧହୁଏ ଏ ପୁଷ୍ପକୁ 'ସୌଗନ୍ଧିକ' ବୋଲି କୁହାଯାଏ । ଏପ୍ରକାର ପଦ୍ମ ମର୍ତ୍ତ୍ୟରେ ମିଳିବା ସମ୍ଭବ ନୁହେଁ । ତେବେ ଆସିଲା କେଉଁଠୁ ! କୌତୂହଳୀ ହୋଇ ଉଠିଲେ ଦ୍ରୌପଦୀ , ଏପରି ଆଉ ଗୋଟିଏ ତାଜା ପୁଷ୍ପ ପାଇବା ପାଇଁ ସେ ଭୀମସେନଙ୍କୁ ଅନୁରୋଧ କଲେ । ଭୀମସେନ ନିଜର ଧନୁର୍ବାଣ ଧରି ବାହାରିଲେ ।

ଦ୍ରୌପଦୀଙ୍କ ଅନୁରୋଧକୁ ରକ୍ଷାକରିବାକୁ ହେବ । ସତରେ, ବିଧିର କି ନିର୍ମମ ବିଧାନ । ପଞ୍ଚାଳ ରାଜ ଦୁଲାଳୀ ସୁକୁମାରୀ ପାଞ୍ଚାଳୀଙ୍କୁ ପୁଷ୍ପାଚ୍ଛାଦିତ ତୁଳିତଳ୍ପ ବଦଳରେ ପତ୍ର ଶଯ୍ୟାରେ ଶୋଇବାକୁ ପଡୁଛି । ରାଜକୀୟ ସୁମିଷ୍ଟ ଖାଦ୍ୟ ବଦଳରେ ବଣର ଫଳମୂଳରେ କ୍ଷୁଧା ମେଣ୍ଟାଇବାକୁ ପଡୁଛି । ଶରୀରରେ ସୁଗନ୍ଧିତ ଚନ୍ଦନ ପ୍ରଲେପ ନାହିଁ, ଘର୍ମସିକ୍ତ ଶରୀରରେ ଧୂଳିର ପ୍ରଲେପ । ତଥାପି ଦ୍ରୌପଦୀଙ୍କର ତିଳେମାତ୍ର ଅତୃପ୍ତିନାହିଁ । ଦ୍ରୌପଦୀଙ୍କର ଏ ସାମାନ୍ୟ ଅନୁରୋଧ ସେ ରକ୍ଷା ନ କରିବେ କିପରି !''

ଭୀମ, ଘୋର ବଣ ଜଙ୍ଗଲ ମଧ୍ୟରେ ଚାଲୁଥାନ୍ତି । ବାଟରେ ଦେଖିଲେ ଗୋଟିଏ ମାଙ୍କଡ଼ ତା ଲାଞ୍ଜକୁ ଲମ୍ବାଇ ନିରାଳମ୍ବ ହୋଇ ଶୋଇଛି । ଗତିପଥରେ ସେ ଅଟକିଗଲେ । ବାଟ ବନ୍ଦ ହୋଇଯାଇଛି ତା ଲାଙ୍ଗୁଡ଼ ପାଇଁ ।

ଭୀମଙ୍କ ଗର୍ଜ୍ଜନରେ ବଣ ପର୍ବତ ଚହଲି ଉଠିଲା । ତଥାପି ମାଙ୍କଡ଼ଟାର ଟିକିଏ ବି ହଲଚଲ ନାହିଁ । ଭୀମ ପୁଣିଥରେ ଗର୍ଜନ ତୋଳି କହିଲେ, ''ଆରେ ତୁ କିଏ ? ବାଟରୁ ଉଠ୍ ।''

ମାଙ୍କଡ଼ ତା' ଆଖିପତାକୁ ଦରଖୋଲା କରି ବେଖାତିର ଢ଼ଙ୍ଗରେ କହିଲା, ''ଆରେ କାହିଁକି ଅଯଥା ଗର୍ଜନ କରୁଛୁ । ମୁଁ ବୁଢ଼ା ବାନରଟା, ଉଠି ପାରିବିନି । ଯଦି ଯିବାକୁ ଚାହୁଁ, ମୋତେ ଡେଇଁ କରି ଚାଲିଯା ।''

ଭୀମ ହସିହସି କହିଲେ, ''ତୁ କ'ଣ ଭାବୁଚୁ, ମୁଁ ତୋତେ ଡେଇଁ ପାରିବିନି ? ବୀର ହନୁମାନ ଏତେବଡ଼ ସାଗରକୁ ଡ଼େଇଁଲା ପରି ମୁଁ ବି ବଡ଼ ବଡ଼ ପର୍ବତ ସବୁକୁ ଡ଼େଇଁ ପଡ଼ିବି । ତୁ'ବା କେତେ ମାତ୍ର । ତୋ' ପ୍ରତି ମୋର ଗୋଟାଏ ଭିତିରିଆ ମମତା ଅଛି ବୋଲି ମୁଁ ତୋତେ ଡ଼େଇଁନି । ମୁଁ ହେଉଛି ବାୟୁ ଦେବତାଙ୍କ ପୁଅ, ହନୁମାନଙ୍କର ଭାଇ । ତମେ ତାଙ୍କର ବଂଶଧର । ତତେ ଡ଼େଇଁବି କିମିତି ?''

ହନୁମାନ ଏଥର ଭଲଭାବରେ ଆଖି ଖୋଲି ଭୀମସେନଙ୍କୁ ଚାହିଁଲେ । ଖୁବ୍ ଆନନ୍ଦରେ ଗଦ୍ ଗଦ୍ ହୋଇ କହିଲେ, ତୁମେ ବାୟୁ ଦେବତାଙ୍କର ପୁଅ ବୋଲି ଶୁଣି ଭାରି ଖୁସି ହେଲି । ମୋ ପ୍ରତି ତୁମର ଶ୍ରଦ୍ଧା ଓ ସମ୍ମାନ ମୋତେ ଆଉରି ଆନନ୍ଦ ଦେଇଛି । ଶକ୍ତି ଓ ସାମର୍ଥ୍ୟ ସହିତ ଦୟା ଓ କରୁଣା ମିଶିଲେ ତାହା ସ୍ୱର୍ଗୀୟ ଗୁଣରେ ପରିଣତ ହୁଏ । ମୁଁ ଖୁସି ଯେ, ତୁମେ ସେହି ବିରଳ ସଦ୍‌ଗୁଣର ଅଧିକାରୀ । ମୁଁ ତ ଉଠିପାରୁନି । ଯଦିକିଛି ନ ଭାବିବ, ମୋ ଲାଙ୍ଗୁଡ଼କୁ ହାତରେ ଆଡ଼େଇ ଦେଇ ତୁମେ ଚାଲିଯାଅ ।''

ଭୀମସେନ ଲାଙ୍ଗୁଡ଼କୁ ଉଠାଇଲେ କିନ୍ତୁ ତାହା ଟିକିଏ ହଲଚଲ ହେଲାନାହିଁ । ସେ ପୂରାଝାଳନାଳ ହେଇଗଲେଣି । ଯେତେବଳ ଅଛି ତାହା ଖଟାଇ ମଧ୍ୟ କିଛି ଲାଭ ହେଲାନି । ଧଇଁସଇଁ ହୋଇ ଧକେଇବାକୁ ଲାଗିଲେ । ସେ ଭାବିଲେ, ଏ ଗୋଟାଏ ସାଧାରଣ ମାଙ୍କଡ଼ ନୁହେଁ । ଛଦ୍ମବେଶରେ ଆଉ କେହି ହୋଇଥିବ ବୋଧହୁଏ । ସେ ପଚାରିଲେ, ହେ କପିବର ! ତୁମେ କିଏ ? ଦୟାକରି ତୁମର ପ୍ରକୃତ ପରିଚୟ ମୋତେ ଦେବକି ?''

ହନୁମାନ କହିଲେ, ''ହେ ବାୟୁପୁତ୍ର ଭୀମସେନ ! ମୁଁ ତୁମର ବଡ଼ ଭାଇ ହନୁମାନ । ତୁମକୁ ଦେଖିବାପାଇଁ ମୁଁ ଏକ ସୁଯୋଗ ଖୋଜୁଥିଲି । ଭାଗ୍ୟବାନ୍ ମୁଁ । ସେ ସୁଯୋଗ ମୋତେ ଆଜି ମିଳିଛି । ତୁମର ଶକ୍ତି ସାମର୍ଥ୍ୟ ବିଷୟରେ ମୁଁ ଅପରିଚିତ ନୁହେଁ । ପ୍ରଚଣ୍ଡ ଶକ୍ତିଶାଳୀ ହେଲେ ମଧ୍ୟ ତୁମର ଶ୍ରଦ୍ଧା, ସମ୍ମାନ, କରୁଣା ମୋତେ ଅଭିଭୂତ କରିଛି ।''

ଭୀମ ଆନନ୍ଦରେ ଗଦ୍ ଗଦ୍ ହୋଇ ହନୁମାନଙ୍କ ପାଦରେ ପ୍ରଣାମ କଲେ । ହନୁମାନ ତାଙ୍କୁ ଆଲିଙ୍ଗନ କରି ଆଶୀର୍ବାଦ ଦେଲେ । କହିଲେ, ତୁମକୁ ଏଇବର ଦେଉଛି ଯେ, ମୁଁ ଅର୍ଜୁନଙ୍କର ରଥର ପତାକାରେ ଅଦୃଶ୍ୟ ଭାବରେ ଉପସ୍ଥିତ ରହିବି । କୁରୁପାଣ୍ଡବ ଯୁଦ୍ଧ ଅନିବାର୍ଯ୍ୟ । ଯୁଦ୍ଧ କ୍ଷେତ୍ରରେ ଭୟଙ୍କର ଭୀମରଡ଼ି ସହିତ ମୋ ରଡ଼ି ଆପେଆପେ ମିଶିଯିବ । ଫଳରେ ଯେଉଁ ଅତି ଭୟଙ୍କର ଶବ୍ଦ ସୃଷ୍ଟି ହେବ, ତାହା ଶତ୍ରୁ ଶିବିରରେ ଘୋର ଆତଙ୍କ ଖେଳାଇ ଦେବ ।''

ଭୀମ କୃତଜ୍ଞତା ଜଣାଇ ହନୁମାନଙ୍କଠାରୁ ବିଦାୟ ନେଲେ । ଅନତି ଦୂରରେ ସ୍ୱର୍ଣ୍ଣ ପଦ୍ମର ପୋଖରୀ । ତାକୁ ବେଢ଼ି ରହିଛନ୍ତି ଯକ୍ଷମାନେ । ଭୀମ ସ୍ୱର୍ଣ୍ଣପଦ୍ମ ତୋଳିବା ପାଇଁ ଚେଷ୍ଟା କରିବାରୁ ସେମାନଙ୍କ ସହିତ ତାଙ୍କର ଭୟଙ୍କର ଯୁଦ୍ଧ ହେଲା । ଭୀମଙ୍କ ଗଦାମାଡ଼ରେ ଯକ୍ଷ ପ୍ରହରୀମାନେ ମୃତ୍ୟୁ ବରଣ କଲେ । ଭୀମ ମହାଆନନ୍ଦରେ ପୋଖରୀରେ ପଶି ସ୍ୱର୍ଣ୍ଣ କମଳ ସଂଗ୍ରହ କଲେ । ଲକ୍ଷ୍ୟ ପୂରଣ ହୋଇଗଲା । ଏଥର ଫେରିଆସିଲେ ଦ୍ରୌପଦୀଙ୍କ ପାଖକୁ । ସ୍ୱର୍ଣ୍ଣ କମଳଟି ତାଙ୍କୁ ଉପହାର ଦେଲେ । ଦ୍ରୌପଦୀଙ୍କ ଆନନ୍ଦ କହିଲେ ନସରେ ।

# ।। ନହୁଷଙ୍କ ଶାପ ମୁକ୍ତି ।।

ସେତେବେଳେ ପାଣ୍ଡବମାନେ ହିମାଳୟରେ ରହୁଥାନ୍ତି । ଦିନେ ଭୀମ ବଣରେ ବୁଲୁଥାନ୍ତି ହଠାତ୍ ଗୋଟାଏ ବିରାଟ ଅଜଗର ସାପ ହାବୁଡ଼ରେ ପଡ଼ିଗଲେ । ଭୀମଙ୍କୁ ପାଇଲାକ୍ଷଣି ଲାଙ୍ଗୁଡ଼ରେ ଭିଡ଼ି ଧରି ସାପ ଗିଳିବାକୁ ଆରମ୍ଭ କଲା । ଭୀମଙ୍କର କାଳରଡ଼ିରେ ସାପ ଡରିଲାନାହିଁ କି ତାଙ୍କର ଏତେ ଶକ୍ତି ସାପକୁ ବାଧା ଦେଇ ପାରିଲା ନାହିଁ ।

ଯୁଧିଷ୍ଠିର ନିଜ ଆଶ୍ରମରେ ଭୀମଙ୍କୁ ବହୁ ସମୟ ଧରି ଅପେକ୍ଷା କରିବାପରେ, ଖୋଜିବା ପାଇଁ ବଣକୁ ବାହାରି ପଡ଼ିଲେ । ଖୋଜୁ ଖୋଜୁ ସେ ଭୀମଙ୍କୁ ପାଇଗଲେ । ସାପ ଭୀମଙ୍କୁ ଗିଳିବାକୁ ଆରମ୍ଭ କରିଥାଏ । ଆତ୍ମରକ୍ଷା ପାଇଁ ସେ ଛଟ ପଟ ହେଉଥାନ୍ତି । ଭାଇଙ୍କୁ ଦେଖିଲାକ୍ଷଣି ତାଙ୍କର ସାହାସ ଆସିଗଲା । ଯୁଧିଷ୍ଠିର ଚିତ୍କାର କରି କହିଲେ, ''ହାଁ...ହାଁ...ଏ କଣ କରୁଛ ? ମୁଁ ଜାଣେ ତୁମେ ନିଶ୍ଚୟ ଜଣେ ମାହାତ୍ମା, ନହେଲେ ଭୀମପରି ମହାଶକ୍ତିଶାଳୀ ତ୍ରିଭୁବନ ବିଜୟୀ ବୀରକୁ, କେବେହେଲେ କବଳିତ କରି ପାରିନଥାନ୍ତ । ସେ ମୋର ସାନ ଭାଇ ଭୀମସେନ, ମୁଁ ପ୍ରଥମ ପାଣ୍ଡବ ଯୁଧିଷ୍ଠିର । ଦୟାକରି ତାଙ୍କୁ ମୁକ୍ତିଦିଅ ଏବଂ ନିଜର ପରିଚୟ ଦେଇ ଆମ୍ଭମାନଙ୍କୁ ଆନନ୍ଦିତ କର । କ୍ଷୁଧା ନିବାରଣ ପାଇଁ ଭୀମଙ୍କୁ ତୁମେ ଯଦି ଖାଇବାକୁ ଚାହୁଁଥାଅ, ତା'ହେଲେ ତାଙ୍କୁ ଛାଡ଼ିଦିଅ । ଆମେ ତୁମକୁ ପ୍ରଚୁର ମାଂସ ଖାଇବାକୁ ଦେବୁ । ତୁମର କିଛି ଅସୁବିଧା ହେବନି ।

ଅଜଗର ଭୀମଙ୍କୁ ମୁକ୍ତ କରିଦେଇ କହିଲା, ''ହେ ଯୁଧିଷ୍ଠିର ! ମୁଁ ତୁମର ଆଗମନକୁ ପ୍ରତିକ୍ଷିତ ହୋଇ ଚାହିଁଥିଲି । ତୁମକୁ ପାଇ ମୁଁ ଭାରି ଖୁସି । ମୋ ନାଁ ହେଉଛି ନହୁଷ । ଅଗସ୍ତ୍ୟ ମୁନିଙ୍କ ଅଭିଶାପରୁ ମୁଁ ଅଜଗର ସାପରେ ପରିଣତ ହୋଇଛି । ତୁମେ ଶୁଣିଖୁସି ହେବଯେ, ମୁଁ ତମର ପୂର୍ବପୁରୁଷ । ଭରତ ବଂଶରେ ମୋର ଜନ୍ମ ।; ଅତୀତରେ ମୁଁ ଏକ ଅଶ୍ୱମେଧ ଯଜ୍ଞ କରିଥିଲି ମୋ ତପୋବଳରେ ଇନ୍ଦ୍ର ଆସନ ପାଇ, କିଛିଦିନ ନିମିତ୍ତ ସ୍ୱର୍ଗ ପୁରୀର ଅଧିପତି ଥିଲି । ତୁମେ ଯଦି ମୋର କେତେକ ଗୂଢ଼ ପ୍ରଶ୍ନର ଉତ୍ତର ସଠିକ୍ ଭାବରେ ଦେଇ ପାରିବ, ତାହେଲେ ମୁଁ ଶାପମୁକ୍ତ ହେବି ଏବଂ ଭୀମ ମଧ୍ୟ ମୁକ୍ତିଲାଭ କରିବେ ।''

ଧର୍ମପୁତ୍ର ତାଙ୍କୁ ପ୍ରଣାମ କରି ବିନୀତ କଣ୍ଠରେ କହିଲେ, '' ହେ ମହାତ୍ମା! ଆପଣଙ୍କ ଦର୍ଶନରେ ଆମେ ଆଜି ପବିତ୍ର ହୋଇଛୁ । ଦୟାକରି ପ୍ରଶ୍ନ ପଚାରନ୍ତୁ ଏବଂ ଆଶୀର୍ବାଦ ଦିଅନ୍ତୁ ମୁଁ ସବୁ ପ୍ରଶ୍ନର ସଠିକ୍ ଉତ୍ତର ଯେପରି ଦେଇପାରେ ।''

ନହୁଷ ଗୋଟିକ ପରେ ଗୋଟିଏ ପ୍ରଶ୍ନ ପଚାରିଲେ, ଏବଂ ଯୁଧିଷ୍ଠିର ପ୍ରଶ୍ନଗୁଡ଼ିକର ଉତ୍ତର ଦେଲେ ।

ନହୁଷ ... ପ୍ରକୃତ ବ୍ରାହ୍ମଣ କାହାକୁ କହନ୍ତି ?

ଯୁଧିଷ୍ଠିର .. ବ୍ରହ୍ମକୁ ଜାଣିଥିବା ବ୍ୟକ୍ତି ହିଁ ବ୍ରାହ୍ମଣ । ସେ ସତ୍ୟ ଓ ଧର୍ମର ଉପାସକ । ଯଜ୍ଞ ଓ ତପଃ ହିଁ ତାଙ୍କର କର୍ମ । ପରୋପକାର ସେବା, ଜ୍ଞାନଦାନ ତାଙ୍କର କର୍ତ୍ତବ୍ୟ । ସୁଖ ଦୁଃଖ ସମ୍ପଦ ବିପଦରେ ସେ ସଦାସ୍ଥିର ।

ନହୁଷ...ବ୍ରାହ୍ମଣ କୁଳରେ ଜନ୍ମ ହୋଇଥିବା ଲୋକର ଏହି ସବୁଗୁଣ ନଥିଲେ ତାକୁ କଣ କୁହାଯିବ ?

ଯୁଧିଷ୍ଠିର - ବ୍ରାହ୍ମଣର ଗୁଣରୁ ବଞ୍ଚିତ ବ୍ୟକ୍ତି, ବ୍ରାହ୍ମଣ କୁଳରେ ଜନ୍ମ ହୋଇଥିଲେ ମଧ୍ୟ, ବ୍ରାହ୍ମଣ ପଦବାଚ୍ୟ ନୁହେଁ ।

ନହୁଷ - ଜଣେ ବ୍ରାହ୍ମଣ ଓ ଅନ୍ୟ ଭିତରେ ଥିବା ପ୍ରଭେଦ ନିର୍ଣ୍ଣୟ କରାଯିବ କିପରି ?

ଯୁଧିଷ୍ଠିର - ବ୍ରାହ୍ମଣକୁ ତାର ଚରିତ୍ର ଓ ବ୍ୟବହାରରୁ ଚିହ୍ନାଯାଏ । ଯେ ପ୍ରକୃତ ବ୍ରାହ୍ମଣ ସେ ତାର ଚରିତ୍ରକୁ ରକ୍ଷାକରେ ଓ ଚରିତ୍ରହିଁ ତାର ଶାଶ୍ୱତ ସମ୍ପଦ । ସମ୍ପତ୍ତି ନଷ୍ଟକୁ ସେ ନଷ୍ଟ ବୋଲି ମନେକରେନାହିଁ । ଚରିତ୍ର ନଷ୍ଟହେଲେ ସବୁନଷ୍ଟ ହୋଇଗଲା ବୋଲି ସେ ଅନୁଭବ କରେ ।

ନହୁଷ- ଉପରୋକ୍ତ ଗୁଣ ଜଣେ ଶୂଦ୍ରର ଥିଲେ ତାକୁ କଣ କୁହାଯିବ ?

ଯୁଧିଷ୍ଠିର - ସେ ପ୍ରକାର ଶୂଦ୍ରଙ୍କୁ ଜଣେ ସର୍ବଶ୍ରେଷ୍ଠ ଶୂଦ୍ର ବୋଲି କୁହାଯିବ ଓ ସେ ବ୍ରାହ୍ମଣ ସହିତ ସମାନ ।

ନହୁଷ : ଅହିଂସା ପରମ ଧର୍ମ ବୋଲି କାହିଁକି କୁହାଯାଏ ?

ଯୁଧିଷ୍ଠିର- ସବୁ ଧର୍ମ ମଧ୍ୟରେ ସର୍ବଶ୍ରେଷ୍ଠ ହେଉଛି ଅହିଂସା । ଏହା ମଣିଷର ସର୍ବୋତ୍ତମ ଆଚରଣ । ଯେଉଁ ବ୍ୟକ୍ତି ହିଂସା ପରାୟଣ, ସେ ମୃତ୍ୟୁ ପରେ ପଶୁଭାବରେ ଜନ୍ମ ଗ୍ରହଣକରେ । ମଣିଷ, ସୃଷ୍ଟିର ସର୍ବଶ୍ରେଷ୍ଠ ଜୀବ ହୋଇଥିବାରୁ, ତାର ଆଚରଣ ଅହିଂସ ହେବା ଆବଶ୍ୟକ ।

ନହୁଷ ଏ ଉତ୍ତରଗୁଡ଼ିକ ଶୁଣି ଅତ୍ୟନ୍ତ ପ୍ରୀତ ହେଲେ ଏବଂ କହିଲେ, ''ଭୀମଙ୍କୁ ମୁଁ ମୁକ୍ତି ଦେଉଛି ଏବଂ ତା' ସହିତ ଶାପମୁକ୍ତ ହୋଇ ମୁକ୍ତିପଥରେ ଆଗେଇଯିବାର ସୁଯୋଗ ଲାଭ କରୁଛି । ହେ ଧର୍ମ ପୁତ୍ର ! ତୁମର ମଙ୍ଗଳ ହେଉ । ହେ ଭୀମ ! ଦେହ ବଳରେ ସଂସାରରେ କେହି ବଳିୟାନ ନୁହେଁ । ନମ୍ରତା ବିହୀନ ଶକ୍ତିର କିଛି ଅର୍ଥ ନାହିଁ । ସେହିପରି ଶକ୍ତିହୀନର ଅସ୍ୱାଭାବିକ ନମ୍ରତା ମଧ୍ୟ ମୂଲ୍ୟହୀନ । ନମ୍ରତା ଯୁକ୍ତ ଶକ୍ତି ହିଁ ପ୍ରକୃତ ଶକ୍ତି ।

ଆଲୋଚନା ପରେ ନହୁଷ ନବଜୀବନ ନେଇ ବିଦାୟ ନେଲେ । ଯୁଧିଷ୍ଠିର ଓ ଭୀମ ଜୀବନର ଏଇ ଦୁର୍ଲଭ ଅନୁଭୂତି ନେଇ ଫେରି ଆସିଲେ ବନାଶ୍ରମକୁ ।

## ।। ଧର୍ମବ୍ୟାଧ ।।

ମାର୍କଣ୍ଡେୟ ମୁନି ହେଉଛନ୍ତି ଭଗବାନଙ୍କର ପରମ ଭକ୍ତ । ତାଙ୍କ ପିତାଙ୍କ ନାମ 'ମୃକଣ୍ଡୁ ଓ ମାତାଙ୍କ ନାମ 'ମରୁଦ୍ୱତି' । ଭଗବାନ ଶିବ, ମୁନିଙ୍କର ଅନୁରୋଧ କ୍ରମେ ତାଙ୍କୁ ଏକ ବିଜ୍ଞ ସ୍ୱଳ୍ପାୟୁ ପୁତ୍ର ଦାନ କରିଥିଲେ । ତାର ଜୀବନକାଳ ଥିଲା ମାତ୍ର ଷୋହଳ ବର୍ଷ । ଏହି ଅଳ୍ପସମୟ ମଧ୍ୟରେ ସେ ସମସ୍ତଙ୍କ ଜ୍ଞାନର ଅଧିକାରୀ ହୋଇ ପାରିଥିଲେ ।

ମୃତ୍ୟୁସମୟ ନିକଟବର୍ତ୍ତୀ ହେବାରୁ ତାଙ୍କର ପିତାମାତା ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଲେ । ମାର୍କଣ୍ଡେୟ ପ୍ରକୃତ କାରଣ ଜାଣି ତପସ୍ୟା କରି ସ୍ୱୟଂ ଈଶ୍ୱରଙ୍କର ଦର୍ଶନ ଲାଭ କରିଥିଲେ । ଶିବ ଏହି ପୁଣ୍ୟାତ୍ମା ମୁନିଙ୍କୁ ଅମର ବର ପ୍ରଦାନ କରିଥିଲେ । ଶାସ୍ତ୍ର ପୁରାଣର ମତଆନୁସାରେ କେବଳ ମାର୍କଣ୍ଡେୟ

ମୁନି, ସୃଷ୍ଟିର ବିବର୍ତ୍ତନ ଧାରାକୁ ଦେଖିବାର ସୁଯୋଗ ପାଇଥିଲେ । ସେ ନିଜ ଆଖିରେ ଦେଖିଥିଲେ ସୃଷ୍ଟି, ସ୍ଥିତି, ପ୍ରଳୟ । ସେ ଥିଲେ ମୃତ୍ୟୁଞ୍ଜୟ ଓ ଜଣେ ମହାନ୍ କବି, ପଣ୍ଡିତ ଏବଂ ଦାର୍ଶନିକ । ତାଙ୍କ ରଚିତ ମାର୍କଣ୍ଡେୟ ପୁରାଣ ଏକ ଅମୂଲ୍ୟ ଗ୍ରନ୍ଥ ।

ଥରେ ସେହି ମାର୍କଣ୍ଡେୟ ମୁନି ପାଣ୍ଡବ ମାନଙ୍କର ବନାଶ୍ରମକୁ ଆସିଥିଲେ । ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ବାର୍ତ୍ତାଳାପ କରିବା ସମୟରେ, କଥା ପ୍ରସଙ୍ଗରେ କୌଶିକ ବ୍ରାହ୍ମଣଙ୍କ ବିଷୟରେ କହିଲେ ।

''ହେ ଧର୍ମପୁତ୍ର ! ପୂର୍ବେ କୌଶିକ ନାମରେ ଜଣେ ବ୍ରାହ୍ମଣ ଥିଲେ । ସେ ଥିଲେ ଶୁଦ୍ଧପୂତ ବ୍ରହ୍ମଚାରୀ । ଥରେ ସେ ଗୋଟିଏ ଗଛ ମୂଳରେ ବସି ବେଦପାଠ କରୁଥାନ୍ତି, ଏହି ସମୟରେ ବଗ ପକ୍ଷୀଟିଏ ତାଙ୍କ ଉପରେ ମଳତ୍ୟାଗ କରି ଦେଲା । ସେ କ୍ରୋଧରେ ତାକୁ ଚାହିଁଲାକ୍ଷଣି ପକ୍ଷୀଟି ମୃତ୍ୟୁ ବରଣ କରି ତାଙ୍କ ପାଦତଳେ ଖସିପଡ଼ିଲା । ମୃତପକ୍ଷୀଟିକୁ ଦେଖି, ତାଙ୍କ ମନରେ କଷ୍ଟ ହେଲା । ଭାବିଲେ, ସେ କି ଅପରାଧ ନକଲେ । ନିରୀହ ପକ୍ଷୀଟି ତାଙ୍କ କ୍ରୋଧାଗ୍ନିରେ ନଷ୍ଟ ହୋଇଗଲା । ତା'ର ବା ଦୋଷ କଣ ।

ସବୁଦିନ ପରି ସେ ଭିକ୍ଷା କରିବାକୁ ବାହାରିଲେ । ଗୋଟିଏ ଘର ସମ୍ମୁଖରେ ଛିଡ଼ା ହେଲେ ଭିକ୍ଷା ପାଇବା ପାଇଁ । ଗୃହପତ୍ନୀ ବ୍ରାହ୍ମଣଙ୍କୁ ଦେଖି ମଧ୍ୟ ହଠାତ୍ ଭିକ୍ଷା ଦେଇ ପାରିଲେ ନାହିଁ । ସେ ତାଙ୍କ ସ୍ୱାମୀଙ୍କ ସେବାରେ ଅତ୍ୟନ୍ତ ବ୍ୟସ୍ତ ଥିଲେ । କାମ ସରିବାପରେ ଭିକ୍ଷା ନେଇ ପହଞ୍ଚିଲେ । ବ୍ରାହ୍ମଣ ତାଙ୍କୁ ଦେଖି କହିଲେ,'' ଜଣେ ଅତିଥି ବ୍ରାହ୍ମଣଙ୍କୁ ତୁମେ ଏତେ ସମୟ ବାହାରେ ଛିଡ଼ା କରିଦେଇ, ଘରେ ବସିଛ । ଟିକିଏ ବି ତମର ଖାତିର ନାହିଁ ।''

ସ୍ତ୍ରୀଲୋକଟି ବିନୀତ କଣ୍ଠରେ କହିଲା, ହେ ବ୍ରାହ୍ମଣ ମହାପ୍ରଭୁ ! ବିଳମ୍ବ ପାଇଁ ମୋତେ କ୍ଷମା ଦିଅନ୍ତୁ । ଅନେକ ସମୟ ମୁଁ ଆପଣଙ୍କୁ ବାହାରେ ଅଟକାଇ ଦେଲି । କ'ଣ କରିବି, ମୋ ସ୍ୱାମୀଙ୍କ ସେବାରେ ଅତ୍ୟନ୍ତ ବ୍ୟସ୍ତ ଥିଲି । ଟିକିଏ ବିଳମ୍ବ ହୋଇଗଲା ।''

ବ୍ରାହ୍ମଣ କହିଲେ, ''ସ୍ୱାମୀ ସେବା କରିବାକୁ କେହି ମନା କରୁନାହାନ୍ତି । ଯାବୋଲି ଅତିଥି ବ୍ରାହ୍ମଣଙ୍କୁ ଅବମାନନା କରାଯିବ !! ତୁମର ଔଦ୍ଧତ୍ୟ କିଛିତ କମ୍ ନୁହେଁ ।''

''ହେ ବ୍ରାହ୍ମଣ ଶ୍ରେଷ୍ଠ ମୁଁ ଅବହେଳା କରିନାହିଁ ବରଂ ନିଜର କର୍ତ୍ତବ୍ୟ ପାଳନରେ ବ୍ୟସ୍ତ ଥିଲି । ଏଥିରେ ରାଗିବାର କିଛି ନାହିଁ । ରାଗିଲେ ମଧ୍ୟ ମୁଁ ବଗନୁହେଁ ଯେ ଆପଣଙ୍କ କ୍ରୋଧ ଦୃଷ୍ଟିରେ ମରି ତଳେ ଖସି ପଡ଼ିବି ।''

ଏକଥା ଶୁଣି, ବ୍ରାହ୍ମଣ ବିସ୍ମିତ ହୋଇଗଲେ । ଏ ସ୍ତ୍ରୀଲୋକ ବଗର ମୃତ୍ୟୁ କଥା ଜାଣିଲା କିପରି ?

ସ୍ତ୍ରୀଲୋକଟି ପୁଣିକହିଲା, ''ହେ ବ୍ରାହ୍ମଣ ଶ୍ରେଷ୍ଠ ! ଆପଣ ଜଣେ ବ୍ରାହ୍ମଣ ହୋଇ କର୍ତ୍ତବ୍ୟ ପାଳନର ନିଗୂଢ଼ ତତ୍ତ୍ୱ ଜାଣିଲେ ନାହିଁ କିପରି ? ଯେଉଁମାନେ ତତ୍ତ୍ୱଜ୍ଞ ଓ ଶାସ୍ତ୍ର ନିପୁଣ, ସେମାନେ କ'ଣ ଟିକିଏ ଟିକିଏ କଥାରେ ଇମିତି ରାଗନ୍ତି । ରାଗ ଯେ ମଣିଷର ପରମ ଶତ୍ରୁ, ଏକଥା କଣ ଆପଣ ଜାଣନ୍ତି ନାହିଁ । ଠିକ୍ ଅଛି, ମୋର ବିଳମ୍ବ ପାଇଁ ମୋତେ କ୍ଷମା ଦିଅନ୍ତୁ ଏବଂ ଦୟାକରି ମିଥିଳା ଯାଆନ୍ତୁ । ସେଠାରେ ଧର୍ମ ବ୍ୟାଧ ଅଛନ୍ତି । ସେ ଆପଣଙ୍କୁ କର୍ତ୍ତବ୍ୟର ମାହାତ୍ମ୍ୟ ବିଷୟରେ କିଛି ନା କିଛି ଶିକ୍ଷା ଦେବେ । ଭବିଷ୍ୟତରେ ଏହା କାମରେ ଲାଗିବ । ଏକ ସୁସଂହତ ଜୀବନ ଯାପନର ରହସ୍ୟ ଆପଣ ତାଙ୍କଠାରୁ ଶିକ୍ଷା କରିବେ ।''

କୌଶିକ ତାଙ୍କର ମଙ୍ଗଳ କାମନାକରି ବିଦାୟ ଦେଲେ । ଯାଇ ପହଞ୍ଚିଲେ ମିଥିଳାରେ । ଧର୍ମବ୍ୟାଧ କିଏ ତାଙ୍କୁ ଖୋଜିବାକୁ ଲାଗିଲେ । ସେ ଭାବୁଥାନ୍ତି, ସେ ଜଣେ ମହାନତପସ୍ୱୀ ହୋଇଥିବେ । ତାଙ୍କର

ଏକ ବିରାଟ ଆଶ୍ରମଥିବ । ଶିଷ୍ୟମାନେ ତାଙ୍କ ପାଖରେ ବେଦ ଅଧ୍ୟୟନ କରୁଥିବେ । ତନ୍ନ ତନ୍ନ କରି ମିଥିଳା ପୁରୀ ଓ ନିକଟସ୍ଥ ବଣ ପାହାଡ଼ ଖୋଜି ଖୋଜି ସେ ଅଥୟ ହେଲେ । ଶେଷରେ ଆସି ପହଞ୍ଚିଲେ ଏକ କଂସେଇ ପାଖରେ । ଜାଣିବାକୁ ପାଇଲେ ଏଇ ହେଉଛି ସେହି ଧର୍ମବ୍ୟାଧ । ସେ ନିଜର ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ଗୋଟାଏ କଂସେଇ, ସେ ପୁଣି ତାଙ୍କୁ ଧର୍ମ ଉପଦେଶ ଦେବ !!

କିଛି ସମୟ ପରେ କଂସେଇ ତାଙ୍କ ପାଖକୁ ଆସି ପଚାରିଲା, ''ଆପଣ କ'ଣ ମୋ ପାଖକୁ ଆସିଛନ୍ତି ? ଠିକ୍ ଅଛି, ଆପଣ କାହିଁକି ଆସିଛନ୍ତି ମୁଁ ଜାଣିଛି । ତା'ହେଲେ ମୋସାଥିରେ ଘରକୁ ଆସନ୍ତୁ ।''

କୌଶିକ କଂସେଇ ସହିତ ତା'ଘରକୁ ଗଲେ । ଯାହା ଦେଖିଲେ ସେଥିରେ ତାଙ୍କ ମନ ଆନନ୍ଦରେ ଭରପୂର ହୋଇଗଲା । ଗୋଟିଏ ସ୍ନେହୀ ସୁଖୀ ପରିବାର । କଂସେଇ ତା' ବୃଦ୍ଧ ପିତାମାତାଙ୍କୁ ଦେଖି ତାଙ୍କର ସେବାରେ ଲାଗି ପଡ଼ିଲା । ପରିବାରର ପ୍ରତ୍ୟେକେ ସେବାଶୀଳ, ସ୍ନେହଶୀଳ, ପରୋପକାରୀ, ଅତିଥି ପରାୟଣ । ସେ ପରିବାରଟା ଗୋଟାଏ ସ୍ୱର୍ଗପୁରୀ ପରି ଅନୁମିତ ହେଲା । କଂସେଇ, ବ୍ରାହ୍ମଣଙ୍କୁ ଧର୍ମ ନୀତି, କର୍ତ୍ତବ୍ୟ ପରାୟଣତା, ସାଧୁତା, ସ୍ନେହ ଶ୍ରଦ୍ଧା, ପରୋପକାର ବିଷୟରେ ଯଥାଯୋଗ୍ୟ ଧାରଣା ଦେଲା । ବ୍ରାହ୍ମଣ ତାଙ୍କ ଠାରୁ ପ୍ରକୃତ ବ୍ରହ୍ମଜ୍ଞାନ ଲାଭକଲେ । ତାଙ୍କର ହୃଦୟ ପରିବର୍ତ୍ତନ ହେଲା । ଅନ୍ତରରୁ କ୍ରୋଧ ଦୂରୀଭୂତ ହେଲା । ସେ ଆଧ୍ୟାତ୍ମିକ ଜୀବନରେ ପୁନର୍ଜନ୍ମ ଲାଭକଲେ ।ଅନୁଭବ କଲେ, ଏହାହିଁ ଆତ୍ମଦର୍ଶନ ।

ଯୁଧିଷ୍ଠିର ଏହି ମର୍ମସ୍ପର୍ଶୀ କଥାଟିଶୁଣି ବ୍ରହ୍ମଜ୍ଞାନର ନିଗୂଢ଼ ରହସ୍ୟ ଭେଦ କରିବାକୁ ସମର୍ଥ ହେଲେ ! ଅନୁଭବ କଲେ, ବନଗ୍ରନ୍ଥର ପ୍ରତିଟି କାହାଣୀ, ପ୍ରତିଟି ଦୃଶ୍ୟ, ତାଙ୍କୁ ସଫଳ ଜୀବନ ଯାପନର ମନ୍ତ୍ରଶକ୍ତି ଦାନ କରୁଛି । ଏଥିପାଇଁ ବୋଧହୁଏ ତାଙ୍କର ବନଯାତ୍ରା ବିଧି ନିର୍ଦ୍ଦିଷ୍ଟ ।

ଏଗାର

# ।। ଚକ୍ରାନ୍ତ ସରିଲା ନାହିଁ ।।

ସେତେବେଳକୁ ଅର୍ଜ୍ଜୁନ ସ୍ୱର୍ଗପୁରୀରୁ ଫେରି ଆସିଲେଣି । ନୂତନ ଅସ୍ତ୍ର ଶକ୍ତିରେ ଶକ୍ତିମାନ ଅର୍ଜ୍ଜୁନ । ପାଣ୍ଡବ ଶିବିରରେ ସମସ୍ତେ ଆନନ୍ଦିତ । ଏପରି କିଛିଦିନ ବିତିଗଲା ।

ଦୁର୍ଯ୍ୟୋଧନ, କର୍ଣ୍ଣ, ଶକୁନି, ତିନି ଦୁଷ୍ଟଗ୍ରହର ମିଳନ ହୋଇଥାଏ ହସ୍ତିନାପୁରରେ । ସେମାନେ ଆନନ୍ଦରେ ମତୁଆଲା । ଚକ୍ରାନ୍ତ ତାଙ୍କର ସଫଳ ହୋଇଛି । ପାଣ୍ଡବମାନେ ବନବାସ ଦଣ୍ଡ ଭୋଗୁଛନ୍ତି । ଇନ୍ଦ୍ରପ୍ରସ୍ଥ ଆଜି ସେମାନଙ୍କ ହାତରେ ।

ଦିନେ ହିମାଳୟରୁ କେତେଜଣ ବାହ୍ମଣ ଆସି ପହଞ୍ଚିଲେ ହସ୍ତିନା ପୁରରେ । ଧୃତରାଷ୍ଟ୍ର ସେମାନଙ୍କର ପଦ ବନ୍ଦନା କରି ଆତିଥ୍ୟ ସ୍ୱୀକାର କଲେ । ବ୍ରାହ୍ମଣମାନେ ସମ୍ମାନିତ ହେବାପରେ ଧୃତରାଷ୍ଟ୍ର ପାଣ୍ଡବମାନଙ୍କର କୁଶଳ ଜିଜ୍ଞାସା କଲେ । ବ୍ରାହ୍ମଣମାନେ କହିଲେ, ''ହେ କୁରୁ ପତି ! ପାଣ୍ଡବମାନେ ବନାଶ୍ରମରେ ଆନନ୍ଦରେ ଅଛନ୍ତି । କିନ୍ତୁ ସେମାନଙ୍କର ଚାରିପାଖରେ ବେଢ଼ିରହିଛି ଦୁଃଖ ଓ ନୈରାଶ୍ୟର ସାଗର । ସେମାନେ ଆନନ୍ଦିତ ଏଇଥିପାଇଁ ଯେ, ମନନ,ଚିନ୍ତନ, ଜାଗଯଜ୍ଞ, ଧର୍ମାଲୋଚନା, ତପଃ ଓ ମୁନିଋଷିମାନଙ୍କର ସଙ୍ଗ ସୁଖ ଲାଭ କରିବାର ସୁଯୋଗ ତାଙ୍କୁ ମିଳୁଛି । ଦୁଃଖକଥା କାହିଁକି ବା କହିବା, ରାଜପୁତ୍ର ଭାବରେ ସେମାନେ ଜନ୍ମ ଲାଭ କରିଛନ୍ତି । ସମସ୍ତ ସୌଭାଗ୍ୟର ଅଧିକାରୀ ହେଲେମଧ୍ୟ, ମଣିଷର ଅବିଚାର ପାଇଁ ତାଙ୍କୁ ଦୁଃଖ ଦୁର୍ଦ୍ଦଶା ଭୋଗ କରିବାକୁ ପଡୁଛି । ନିୟତିର ସଂଜ୍ଞା କଣ ଏଇଆ ? ମଣିଷର ଚକ୍ରାନ୍ତ ଆଉ ପାପ ଇଚ୍ଛା କ'ଣ ନିୟତିର ରୂପ ନେଇଛି ?

ଧୃତରାଷ୍ଟ୍ରଙ୍କ ମୁଖରେ ସର୍ବଦା ମିଠା କଥା ଥାଏ । ସେ ଜଣେ କୁଶଳୀ ଅଭିନେତା । ସମସ୍ତ କଥା ଶୁଣିବାପରେ ଦୁଃଖଭରା ଦୀର୍ଘ ନିଶ୍ୱାସ ପକାଇ କହିଲେ, ''ଯେଉଁ ପାଣ୍ଡବମାନଙ୍କୁ ପିଲାଟି ବେଳରୁ ମୁଁ ପିତୃତ୍ୱ ଦେଇ ସୌଭାଗ୍ୟଶାଳୀ କରିଥିଲି, ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ଶୁଣି, ଅନ୍ତରମୋର ଛିନ୍ନ ଭିନ୍ନ ହୋଇ ଉଠୁଛି । କିନ୍ତୁ ମୁଁ ବା କଣ କରିପାରିବି । ଆଘାତର ପ୍ରତିଘାତ ଅଛି । ମୁଁ ତାହାହିଁ ଭୋଗୁଛି । ମୁଁ ମଧ୍ୟ ଶାନ୍ତିରେ ନାହିଁ । ସେମାନଙ୍କ ଦୁର୍ଦ୍ଦଶାର ସୀମା ଅଛି କିନ୍ତୁ ମୋର ଦୁଃଖ ଅମାପ । ମୋର ଏକମାତ୍ର ପ୍ରାର୍ଥନା, ଉପସ୍ଥିତ ଦୁଃଖ ଭୋଗ ପାଇଁ ଭଗବାନ୍ ସେମାନଙ୍କୁ ଶକ୍ତିଦାନ କରନ୍ତୁ ।'' ବାହ୍ମଣମାନେ ବିଦାୟ ନେଲେ ।

ଧୃତରାଷ୍ଟ୍ର ବସିଥାନ୍ତି ଗମ୍ଭୀର ହୋଇ । ଭାବନାର ଅଡୁଆ ତଡୁଆ ସୂତା ମୁଣ୍ଡାକୁ ବସି ସଜାଉଥାନ୍ତି ।

ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଶକୁନିଙ୍କ ମଧ୍ୟରେ ମନ୍ତ୍ରଣା ଚାଲିଥାଏ । ଦୁର୍ଯୋଧନ କହିଲେ, ''ପାଣ୍ଡବମାନଙ୍କର ଏ ଦୁଃଖ ଦୁର୍ବିପାକ ସମୟରେ ଆମେ ଯାଇ ଦ୍ୱୈତବନ ଆଡ଼େ ବୁଲିଆସିଲେ ବୋଧହୁଏ ଭାରି ମଜା ହୁଅନ୍ତା । ଆମର ସୁଖ ସୌଭାଗ୍ୟ ଦେଖି ସେମାନେ ଈର୍ଷାରେ ଜଳି ଯାଆନ୍ତେ । ବନବାସର ପରାଭବଠାରୁ ଏ ପରାଭବ ବଳି ପଡ଼ନ୍ତା,ଦ୍ରୌପଦୀ ବୁଝନ୍ତା, କୌରବ ମାନଙ୍କର କରାମତି କେତେ ?

କଥାଟା ଶକୁନିଙ୍କ ମନକୁ ଖୁବ୍ ପାଇଲା । ସ୍ଥିର ହେଲା, ଧୃତରାଷ୍ଟ୍ରଙ୍କୁ କୁହାଯିବ । ଦ୍ୱୈତବନରେ ଗାଈ ଗୋରୁମାନେ ଅଛନ୍ତି । ସେମାନଙ୍କର ବାର୍ଷିକ ହିସାବ କରାଯିବା ଦରକାର । ବାଘ ଭାଲୁ ହାତୀ ପ୍ରଭୃତି ହିଂସ୍ର ଜନ୍ତୁମାନେ ଗାଈ ଗୋରୁଙ୍କୁ ଆକ୍ରମଣ କରି ନଷ୍ଟ କରୁଛନ୍ତି । ସେମାନଙ୍କ ଭୟରୁ ଗୋରୁପଲଙ୍କୁ ରକ୍ଷା କରିବାକୁ ପଡ଼ିବ । ମନ୍ଦ ପ୍ରସ୍ତାବ ନୁହେଁ । ଧୃତରାଷ୍ଟ୍ର ରାଜି ନହେବାର କାରଣ କିଛି ନାହିଁ ।

ସେମାନେ ଯାଇ ଧୃତରାଷ୍ଟ୍ରଙ୍କୁ ସବିଶେଷ ଘଟଣା କହିଲେ । ରାଜା ସବୁ ଶୁଣିବାପରେ କହିଲେ, ''କାରଣ ଯଥାର୍ଥ ହେଲେ ମଧ୍ୟ, ବର୍ତ୍ତମାନ ପରିସ୍ଥିତିରେ ଦ୍ୱୈତବନକୁ ଯିବା ବିଜ୍ଞତାର କାର୍ଯ୍ୟ ହେବନାହିଁ । ପାଣ୍ଡବମାନେ ସେଠାରେ ପରାଜୟର ଗ୍ଳାନି ଭୋଗ କରୁଛନ୍ତି । ଅପମାନର ଆବର୍ତ୍ତ ମଧ୍ୟରେ ଉବୁଟୁବୁ ହେଉଛନ୍ତି । ଏତେବେଳେ ପାଣ୍ଡବମାନଙ୍କୁ ଦେଖା ଦେଇ ପୁଣି ତିକ୍ତତା ବଢ଼ାଇବା ଉଚିତ ହେବନି । ଭୀମ, ଅର୍ଜୁନଙ୍କର କ୍ରୋଧ ନିଆଁ କୁହୁଳୁଚି । ସେଠାରେ ତୁମେ ସବୁ ପହଞ୍ଚିବାକ୍ଷଣି ତାହା ଜଳି ଉଠିବ । କୁହୁଳ ନିଆଁ କୁହୁଳି କୁହୁଳି ଲିଭିବାକୁ ଦିଅ । ଡାକୁଡାକି ସର୍ବନାଶକୁ ନିମନ୍ତ୍ରଣ କରିବ କାହିଁକି ?

କର୍ଣ୍ଣ କହିଲେ, ''ହେ ମହାଭାଗ ! ଗୋରକ୍ଷା ପରି ଏକ ପବିତ୍ର କର୍ତ୍ତବ୍ୟ କରିବାକୁ ଦୁର୍ଯ୍ୟୋଧନଙ୍କୁ ଅନୁମତି ଦିଅନ୍ତୁ । ମନରେ ଅଯଥା ଆଶଙ୍କା ସୃଷ୍ଟି ହେବାର କିଛି କାରଣ ନାହିଁ । ଆମେତ ଯୁଦ୍ଧଯାତ୍ରା କରୁନୁ । ବନଭ୍ରମଣ କରିବା ଆମର ଲକ୍ଷ୍ୟ । ତା'ସହିତ ଗୋରକ୍ଷା ଓ ବାର୍ଷିକ ହିସାବ ମଧ୍ୟ କରାଯାଇ ପାରିବ ।''

ଶକୁନି କହିଲେ, '' କର୍ଣ୍ଣଙ୍କର କଥା ପ୍ରକୃତରେ ଠିକ୍ । ଦୁର୍ଯ୍ୟୋଧନ ଜଣେ ପୋଖତ ରାଜନୀତିଜ୍ଞ । ଜଣେ ବିଚାରଶୀଳ ବ୍ୟକ୍ତି । ସେ ପିଲା ନୁହଁନ୍ତି ଯେ, ପାଣ୍ଡବମାନଙ୍କୁ ଦେଖିଲାକ୍ଷଣି ହଟଗୋଳ ଆରମ୍ଭ କରିଦେବେ । ଗୋଧନ ରକ୍ଷା, ଆମର କର୍ତ୍ତବ୍ୟ । ହେ କୁରୁଶ୍ରେଷ୍ଠ ! କୁରୁରାଜ ଦୁର୍ଯ୍ୟୋଧନଙ୍କୁ ସେ ସୁଯୋଗ ଦିଅନ୍ତୁ ।''

ଧୃତରାଷ୍ଟ୍ର କହିଲେ, ଠିକ୍ ଅଛି, ଯେପରି କୌଣସି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ନ ହୁଏ ।''

''ସେ ଦିଗରେ ନିଶ୍ଚିତ ରହନ୍ତୁ ମହାରାଜ । ପୁତ୍ର ଦୁର୍ଯୋଧନ ଉପରେ ବିଶ୍ୱାସ ରଖନ୍ତୁ । ଧର୍ମପୁତ୍ର ମଧ୍ୟ ଶପଥ ଭଙ୍ଗକରି, କୌଣସି ନୀତି ଗର୍ହିତ କାର୍ଯ୍ୟ କରିବେ ନାହିଁ । କହିଲେ ଶକୁନି ।''

ପାଣ୍ଡବମାନଙ୍କ ଆଶ୍ରମର ଅନତି ଦୂରରେ ଏକ ସୁନ୍ଦର ପୁଷ୍କରିଣୀ । ସେଇଠାରେ ଶିବିର ସ୍ଥାପନ ପାଇଁ ବ୍ୟବସ୍ଥା କରାଗଲା । ଦ୍ୱୈତବନ ଅଭିମୁଖରେ ଯାତ୍ରା ଆରମ୍ଭ ହେଲା । ସାଥିରେ ଗଲେ ସୈନ୍ୟ ସାମନ୍ତ ଅଶ୍ୱ, ହସ୍ତୀ, ରଥ ଓ କୌରବ ଭାଇମାନେ । ଗନ୍ଧର୍ବରାଜା ଚିତ୍ରସେନ ପୂର୍ବରୁ ସେହି ପୁଷ୍କରିଣୀ ନିକଟରେ ନିଜର ଶିବିର ସ୍ଥାପନ କରି ସାରିଥିଲେ । ସେ ଦୁର୍ଯ୍ୟୋଧନଙ୍କୁ ବାରଣ କଲେ ସେଠାରେ ତମ୍ବୁ ପକାଇବାକୁ । ଦୁର୍ଯ୍ୟୋଧନ ଖବର ପାଇ ଚିତ୍ରସେନଙ୍କ ତମ୍ବୁ ଓପାଡ଼ି ଦେବାକୁ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ । ଉଭୟ ଦଳମଧ୍ୟରେ ସଂଘର୍ଷ ଆରମ୍ଭ ହୋଇଗଲା । ଚିତ୍ରସେନ ଓ ଦୁର୍ଯ୍ୟୋଧନ ରଣଭୂମିରେ ଉଭୟେ ମୁହାଁ ମୁହିଁ ହେଲେ । ଗନ୍ଧର୍ବରାଜ ସମ୍ମୋହନ ଅସ୍ତ୍ରବଳରେ କୌରବ ମାନଙ୍କୁ ନିରସ୍ତ୍ର କରି ଦେଲେ । ଶେଷରେ ଦୁର୍ଯ୍ୟୋଧନ ନିଜେ ତାଙ୍କ ଦ୍ୱାରା କବଳିତ ହେଲେ । ତାଙ୍କ ହାତ ପାଦ ବାନ୍ଧି ଦେଇ ଚିତ୍ରସେନ ନିଜ ଶିବିରକୁ ନେଇଗଲେ ।

ଏ ସମ୍ବାଦ ଯାଇ ପହଞ୍ଚିଲା ପାଣ୍ଡବମାନଙ୍କ ପାଖରେ । ପ୍ରଥମେ ଜାଣିଲେ ଭୀମ । ସେ ଆନନ୍ଦରେ ଗଦ୍ ଗଦ୍ ହୋଇ ଉଠିଲେ । ଯୁଧିଷ୍ଠିରଙ୍କୁ ଯାଇ କହିଲେ, ''ଭାଇ ! ଦୁର୍ଯ୍ୟୋଧନକୁ ତା' ଗର୍ବର ପୁରସ୍କାର

ମିଳିଯାଇଛି । ଗନ୍ଧର୍ବରାଜ ଚିତ୍ରସେନଙ୍କ ହାତରେ ସେ ବନ୍ଦୀ । ତାର ସୈନ୍ୟମାନେ ଛତ୍ରଭଙ୍ଗ ଦେଇଛନ୍ତି । ଶକୁନି ଆଉ କର୍ଣ୍ଣ ଶଙ୍କାକୁଳିତ ହୋଇ ଆତ୍ମଗୋପନ କରିଛନ୍ତି । ଆମ କାମ, ବନ୍ଧୁ ଚିତ୍ରସେନଙ୍କ ଦ୍ୱାରା ସମାଧିତ ହୋଇଛି । ସେ ଆମର ଧନ୍ୟବାଦର ପାତ୍ର ।''

ଧର୍ମପୁତ୍ର ଭୀମଙ୍କ ଉପରେ ବିରକ୍ତ ହୋଇ କହିଲେ, ''ଅନ୍ୟର ଦୁର୍ଦଶାରୁ ଲାଭ ଉଠାଇବା କାପୁରଷତାର ଚିହ୍ନ । ଯାହା ହେଲେବି ସେମାନେ ଆମର ଭାଇ । ଦୁର୍ଯ୍ୟୋଧନଙ୍କର ପରାଜୟ ହିଁ ପାଣ୍ଡବମାନଙ୍କର ପରାଜୟ ବୋଲି ଭାବିବାକୁ ହେବ । ଅର୍ଜୁନଙ୍କୁ ସାଥିରେ ନେଇ ତୁମେ ଯାଅ । ଦୁର୍ଯ୍ୟୋଧନଙ୍କୁ ଚିତ୍ରସେନଙ୍କ କାରାବନ୍ଧନରୁ ମୁକ୍ତ କର । ଭୀମ କହିଲେ, ''ଦୁର୍ଯ୍ୟୋଧନ ଆମକୁ ପୋଡ଼ି ଦେବାକୁ ବସିଥିଲା । ମୋତେ ବିଷଖାଇବାକୁ ଦେଇଥିଲା ।ଦ୍ରୌପଦୀଙ୍କୁ ଏତେ ହଟହଟା କଲା । ତଥାପି ତାକୁ ରକ୍ଷା କରିବାକୁ ତୁମେ କହୁଛ ? ଧର୍ମପୁତ୍ର କହିଲେ, ''ସେ ଆମର ଭାଇ ! ଅତୀତ କଥାକୁ ଭୁଲିଯାଅ । ତାଙ୍କୁ ରକ୍ଷାକର ।''

ଭୀମ, ଅର୍ଜୁନ ଚିତ୍ରସେନଙ୍କ ପାଖକୁ ଯାଇ ଦୁର୍ଯ୍ୟୋଧନଙ୍କୁ ମୁକ୍ତ କରିବା ପାଇଁ ଅନୁରୋଧ କଲେ । ଗନ୍ଧର୍ବରାଜ ଅର୍ଜୁନଙ୍କ ସହିତ ପୂର୍ବ ମିତ୍ରତାର ସମ୍ମାନ ପାଇଁ ଦୁର୍ଯ୍ୟୋଧନଙ୍କୁ କାରାମୁକ୍ତ କରିଦେଲେ । ଦୁଃଶାସନ ପ୍ରଭୃତି ଅନ୍ୟ ବନ୍ଦିମାନେ ମଧ୍ୟ ମୁକ୍ତିଲାଭ କଲେ । ଚିତ୍ରସେନ ହସି ହସି କହିଲେ, ଅହଂକାରୀ ଦୁର୍ଯ୍ୟୋଧନର ଅହଂକାର ଭାଙ୍ଗିବା ମୋର ଲକ୍ଷ୍ୟ । ସେ ଲକ୍ଷ୍ୟ ପୂରଣ ହୋଇଛି । ଅଧିକ ଶାସ୍ତିର ଆବଶ୍ୟକତା ଆଉ ନାହିଁ ।''

ମୁହଁ ପୋତି ଛିଡ଼ା ହୋଇଥାନ୍ତି ଦୁର୍ଯ୍ୟୋଧନ ।

ଚିତ୍ରସେନ କହିଲେ, '' ବୀର ଦୁର୍ଯ୍ୟୋଧନ ! ତୁମେ ମୁକ୍ତ । ହସ୍ତିନାପୁରକୁ ପ୍ରସ୍ଥାନ କର ।'' ଗଭୀର ଲଜ୍ଜା ଏବଂ ଅପମାନ ବୋଝ ନେଇ ସେମାନେ ସେଠାରୁ ଫେରିଆସିଲେ । ନିଜ ଶିବିରରେ ପହଞ୍ଚି ଦୁର୍ଯ୍ୟୋଧନ କହିଲେ, ''ବନ୍ଧୁ କର୍ଣ୍ଣ ! ଏପ୍ରକାର ପରାଜୟର ପରାଭବ ଭୋଗ କରିବା ଅପେକ୍ଷା ମୃତ୍ୟୁ ହିଁ ଶ୍ରେୟସ୍କର । ହସ୍ତିନାପୁରକୁ କେଉଁ ମୁହଁରେ ଫେରିଯିବି । ଧର୍ମପୁତ୍ରଙ୍କର ଦୟାକୁ ପାଥେୟ କରି ବଞ୍ଚିବା ଅପେକ୍ଷା ମୃତ୍ୟୁ କଣ ଅଭିନନ୍ଦନୀୟ ନୁହେଁ । ହସ୍ତିନାପୁରକୁ ମୁଁ ଆଉ ଏ କଳଙ୍କିତ ମୁହଁ ନେଇ ଫେରିବାକୁ ଚାହେଁ ନାହିଁ । ମୃତ୍ୟୁ ପର୍ଯ୍ୟନ୍ତ ମୁଁ ଉପବାସ କରିବି । ଦୁଃଶାସନଙ୍କୁ ଇନ୍ଦ୍ରପ୍ରସ୍ଥର ରାଜାରୂପେ ଅଭିଷିକ୍ତ କର ।''

ଦୁଃଶାସନ ଦୁର୍ଯ୍ୟୋଧନଙ୍କ ପାଦତଳେ ପଡ଼ି କାନ୍ଦି କାନ୍ଦି କହିଲେ, ''ଭାଇ ! ମୁଁ ମଧ୍ୟ ଆପଣଙ୍କ ପଥ ଅନୁସରଣ କରିବି ।'' କର୍ଣ୍ଣ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ, ''ଏ ପ୍ରକାର ବିଳାପ ଜଣେ ବୀର ପକ୍ଷରେ ଶୋଭନୀୟ ନୁହେଁ । ପାଣ୍ଡବମାନେ ଏତେ ପରାଭବ ପାଇ ମଧ୍ୟ ଏପ୍ରକାର ଦୁର୍ବଳ ଭାବନାକୁ ମନ ଭିତରକୁ ଆଣି ନାହାନ୍ତି । ବୀର ସର୍ବଦା ବୀର । ପରାଜୟ, ଜୟ ଲାଭର ପ୍ରସୂତିଶାଳା ।

ଶକୁନି କହିଲେ, ''ହଁ , ହଁ, ଠିକ୍ କହୁଛନ୍ତି, ଅଙ୍ଗରାଜ କର୍ଣ୍ଣ । ବତ୍ସ ! ତୁମେ ଦୁର୍ବଳ ଭାବନା ମନରେ ପୋଷିଲେ, ପାଣ୍ଡବମାନେ ମାଡ଼ି ଆସି ଇନ୍ଦ୍ରପ୍ରସ୍ଥ ପୁଣି ନିଜ ଅକ୍ତିଆରକୁ ନେଇଯିବେ । ଏଇଥିପାଇଁ କଣ ଏତେ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଥିଲା ।''

ଶକୁନିଙ୍କ ଏଇକଥା ପଦକରେ, ଦୁର୍ଯ୍ୟୋଧନର ଦୁଷ୍ଟବୁଦ୍ଧି ପୁଣି ଉଚ୍ଛୁଳି ଉଠିଲା । ସେ ଚିତ୍କାରକରି କହିଲେ, ଠିକ୍ କହୁଛ ମାମୁ । ଠିକ୍ କହୁଛ । ଦୁର୍ଯ୍ୟୋଧନ ଆଉ ଇଞ୍ଚେ ଜାଗାବି ଛାଡ଼ିବ ନାହିଁ ।'' ଶକୁନି ହସି ହସି କହିଲେ, ଏହାହିଁ ବୀରର ବୀରୋଚିତ ଭାଷା ।

# ।। ଦୁର୍ଯ୍ୟୋଧନଙ୍କ ବୈଷ୍ଣବ ଯଜ୍ଞ ।।

ଗନ୍ଧର୍ବରାଜ ଚିତ୍ରସେନଙ୍କ ଦ୍ୱାରା ପରାସ୍ତ ଓ ଚିରଶତ୍ରୁ ପାଣ୍ଡବମାନଙ୍କ ଦୟାରୁ ମୁକ୍ତିଲାଭ କରିଥିଲେ ଦୁର୍ଯ୍ୟୋଧନ । ତାଙ୍କ ଭିତରେ ମର୍ମନ୍ତୁଦ ବ୍ୟଥା ସୃଷ୍ଟି ହୋଇଥିଲା । ତାହାକୁ ଅତିକ୍ରମ କରିବାର ବାଟ ଖୋଜୁଥିଲେ ମାମୁ ଶକୁନି  କର୍ଣ୍ଣ ଓ ଦୁଃଶାସନ ପ୍ରଭୃତି । କିଛି ଗୋଟାଏ ବ୍ୟବସ୍ଥା ନକଲେ, ଦୁର୍ଯ୍ୟୋଧନଙ୍କ ଭିତରେ ନ୍ୟୁନଭାବ, ବିଫଳତା ଓ ନୈରାଶ୍ୟ ସୃଷ୍ଟିହେବ । ଏହାହିଁ ହେବ ଚରମ ବିପର୍ଯ୍ୟୟର କାରଣ । ମନୋବଳକୁ  ବଢ଼ାଇବାକୁ ପଡ଼ିବ । କ୍ଷୁଣ୍ଣ ହୋଇଥିବା ସାମାଜିକ ଖ୍ୟାତିକୁ ଭରଣା କରିବାକୁ ହେବ । ଯୁଧିଷ୍ଠିରଙ୍କ ଠାରୁ ଦୁର୍ଯ୍ୟୋଧନଙ୍କର ଶକ୍ତି ସାମର୍ଥ୍ୟ ଓ ପ୍ରତିଷ୍ଠାର ଉତ୍କର୍ଷ ପ୍ରତିପାଦନ ପାଇଁ, ରାଜସୂୟ ଯଜ୍ଞ କରିବାକୁ ସ୍ଥିର କରାଗଲା ।

କୁଳପୁରୋହିତ କହିଲେ, ''ଶାସ୍ତ୍ରୀୟ ନୀତି ଦୃଷ୍ଟିରୁ ଯୁଧିଷ୍ଠିର ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କୁ ଜୟ ନ କରି, ରାଜସୂୟ ଯଜ୍ଞ କରାଯାଇ ପାରିବନାହିଁ । ଏହା ଅପେକ୍ଷା ଆଉରି ପୁଣ୍ୟମୟ ହେଉଛି ବୈଷ୍ଣବ ଯଜ୍ଞ । ଆପଣ ଚାହିଁଲେ ବୈଷ୍ଣବ ଯଜ୍ଞ କରିପାରନ୍ତି । ବ୍ରାହ୍ମଣ, ଅତିଥି ଓ ଅଭାବ ଗ୍ରସ୍ତଙ୍କୁ ଧନଦାନ କରି ଯୁଧିଷ୍ଠିରଙ୍କ ଦାନ ପୁଣ୍ୟକୁ ଅତିକ୍ରମ କରାଯାଇ ପାରେ ।''

କଥାଟା ସବୁରି ମନକୁ ପାଇଲା । ଧୃତରାଷ୍ଟ୍ର ଏଥିପାଇଁ ଅନୁମତି ଦେଲେ । ଦିଗବିଜୟ ଯାତ୍ରା ଆରମ୍ଭ ହେଲା କୌରବ ଭାଇମାନଙ୍କର । କର୍ଣ୍ଣ ମଧ୍ୟ ଦିଗ୍‌ବିଜୟ ଯାତ୍ରା ଆରମ୍ଭ କଲେ । ଯେଉଁ ରାଜା ମହାରାଜାମାନେ ଏଥିରେ ବାଧା ଦେଲେ କିମ୍ବା ନିଜର ଆନୁଗତ୍ୟ ପ୍ରକାଶ କଲେ ନାହିଁ, କର୍ଣ୍ଣ ସେମାନଙ୍କ ସହିତ ଯୁଦ୍ଧ କରି କରାଗତ କଲେ । ଏହି ଯଜ୍ଞକୁ ପାଣ୍ଡବମାନଙ୍କୁ ନିମନ୍ତ୍ରଣ କରାଗଲା । ଜଣେ ରାଜଦୂତ ନିମନ୍ତ୍ରଣ ପତ୍ର ନେଇ, ଯୁଧିଷ୍ଠିରଙ୍କୁ ଦେଲେ । ଧର୍ମରାଜ ଦୂତଙ୍କୁ ଆଦର ସମ୍ଭାଷଣ ଜଣାଇ କହିଲେ, ''ଏ ନିମନ୍ତ୍ରଣ ପାଇ ମୁଁ ଅତ୍ୟନ୍ତ ଆନନ୍ଦିତ  । ଏହା ଆମ କୁରୁବଂଶର ଗର୍ବ ଆଉ ଗୌରବର ଚିହ୍ନ । ଭାଇ ଦୁର୍ଯ୍ୟୋଧନଙ୍କୁ ମୋର ସ୍ନେହ, ଶ୍ରଦ୍ଧା, ଶୁଭେଚ୍ଛା ଜଣାଇ ଦେବ । ବନବାସ କାଳ ସମ୍ପୂର୍ଣ୍ଣ ହୋଇ ନଥିବାରୁ ମୁଁ ରାଜପୁରୀକୁ ଫେରି ଯାଇ ପାରିବି ନାହିଁ । ଏକ ଅପୂର୍ବ ସୁଯୋଗ ମୋତେ ହରାଇବାକୁ ପଡ଼ିଲା । ସେଥିପାଇଁ ମୁଁ ଦୁଃଖିତ । ଭୀମ କିନ୍ତୁ କହିଲେ, ଦୁର୍ଯ୍ୟୋଧନକୁ କହିବ, ଆମେ ବନବାସରୁ ଫେରିବା ପରେ ସେମାନଙ୍କର ମୃତ୍ୟୁ ଯଜ୍ଞ ପାଳନ କରିବୁ ।'' ଦୂତ ଫେରିଗଲା ହସ୍ତିନା ପୁରକୁ । ଦୁର୍ଯ୍ୟୋଧନଙ୍କୁ ସମସ୍ତ କଥା ଜଣାଇଲା ।

ଦୁର୍ଯ୍ୟୋଧନଙ୍କ କଣ୍ଠରେ କ୍ରୋଧର ଉଦ୍‌ଗାର । ସତେଯେପରି ଏକ ଆଗ୍ନେୟଗିରି । କର୍ଣ୍ଣ କହିଲେ, ବେଙ୍ଗ ରଡ଼ି କଲେ ମରେ । ଭୀମଟା ଗୋଟାଏ ରଡ଼ିଲା ବେଙ୍ଗ,ତାର ଜବାବ  ଦିଆଯିବ ସେଇ ଯୁଦ୍ଧ ଭୂମିରେ । ମୁଁ ଶପଥ କରିଛି, ଅର୍ଜୁନ ଆଉ ଭୀମକୁ ନିଶ୍ଚୟ ରଣଭୂମିରେ ହତ୍ୟା କରିବି । ପାଣ୍ଡବ କୁଳ ବିଲୟ ହେବ । ହେ କୁରୁ ଶ୍ରେଷ୍ଠ ! ତୁମେ ସେତେବେଳେ ରାଜସୂୟ ଯଜ୍ଞ କରି କୁରୁକୁଳର କୀର୍ତ୍ତି ରକ୍ଷାକରିବ ।''

ମହାସମାରୋହରେ ବୈଷ୍ଣବ ଯଜ୍ଞ ସମାହିତ ହେଲା । ଦୁର୍ଯ୍ୟୋଧନ ଚିତ୍ରସେନଙ୍କ ଠାରୁ ପରାଜିତ ହୋଇ, ପରାଜୟର ଯେଉଁ ପରାଭବ ଓ ହୀନମନ୍ୟତା ଭୋଗ କରୁଥିଲେ ତାହା କିଛି ପରିମାଣରେ ଦୂର ହେଲା । ତାଙ୍କର ପ୍ରିୟ ଲୋକମାନେ କହିଲେ, ''ଏ ଯଜ୍ଞ କେବଳ ଯୁଧିଷ୍ଠିର କାହିଁକି ଭରତଙ୍କ  ରାଜସୂୟ ଯଜ୍ଞଠାରୁ ମଧ୍ୟ ବଳିଗଲା । ପ୍ରଜାମାନେ କହିଲେ, ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞର କୌଣସି ଗୁଣକୁ ଏହା ସମାନ ହେଲାନାହଁ ।''

# ।। ଆଉ ଏକ ପରୀକ୍ଷା ।।

ସେଦିନ ଯୁଧିଷ୍ଠିର ଶୋଇଥାନ୍ତି । ହଠାତ୍ ସ୍ୱପ୍ନ ଦେଖିଲେ, ବଣର ପଶୁପକ୍ଷୀମାନେ ଆସି ତାଙ୍କ ଆଶ୍ରମ ଦୁଆରରେ ମେଳା କରିଛନ୍ତି । ସେ ତାଙ୍କ ପାଖକୁ ଆସି ପଚାରିଲେ ''ତୁମେ ସବୁ ଏଠାକୁ ଆସିବାର କାରଣ କଣ ? କିଛି ଅସୁବିଧା ହୋଇଛି ତମର ?''

ଜନ୍ତୁମାନଙ୍କ ମଧ୍ୟରୁ କେହି ଜଣେ କହିଲା, ''ହେ ଧର୍ମରାଜ ! ଆପଣ ଏ ବଣରେ ଆସି ପହଞ୍ଚିବାଦିନ ଆମେ ସବୁ ଭାରି ଖୁସି ହୋଇଗଲୁ । ଆମର ସୌଭାଗ୍ୟ, ଆମବନପୁରୀକୁ ସ୍ୱୟଂ ଧର୍ମରାଜ ଆସିଛନ୍ତି । ଆମେ ଏଥର ଶାନ୍ତିରେ ରହିପାରିବୁ । ଆଉ କେହି ଆକ୍ରମଣ କରିବେ ନାହିଁ । କିନ୍ତୁ ଫଳ ଓଲଟା ହେଲା । ଆପଣଙ୍କ ସାଥିରେ ଅନେକ ଲୋକ ଆସିଛନ୍ତି । ଆମକୁ ମାରି, ଆମରି ମାଂସରେ ସେମାନଙ୍କୁ ତୃପ୍ତ କରାଯାଉଛି । ଏଇମିତି ଆଉ କିଛିଦିନ ଆପଣ ଏଠାରେ ରହିଲେ, ପଶୁବଂଶ ଲୋପ ପାଇଯିବ । ଆପଣ ଧର୍ମପୁତ୍ର, ଆମର ରାଜା । ଆମେ ଆଶ୍ରିତ ଦୁର୍ବଳ ଜୀବଗୁଡ଼ାକ ବଣମୂଲକରେ ପଡ଼ି ରହିଛୁ । ଜୀବମାନଙ୍କୁ ରକ୍ଷା କରିବା ଆପଣଙ୍କର ଧର୍ମ ।''

ଯୁଧିଷ୍ଠିରଙ୍କ ନିଦ ଭାଙ୍ଗିଗଲା । ସେ ଚାରିଆଡ଼କୁ ଚାହିଁଲେ, ପଶୁପକ୍ଷୀ ଗୁଡ଼ିକର କରୁଣ ନୟନ ତାଙ୍କ ଆଖିଆଗରେ ନାଚିଉଠିଲା । ସତେଯେମିତି ସମସ୍ତେ ତାଙ୍କ ଚାରିପାଖରେ ବେଢ଼ି ଠିଆ ହୋଇଛନ୍ତି । କହୁଛନ୍ତି,''ଆମକୁ ରକ୍ଷା କରନ୍ତୁ ।''

ତା'ପରଦିନ ଧର୍ମରାଜ ସେ ବଣରୁ ଆଉ ଗୋଟିଏ ବଣକୁ ଚାଲିଗଲେ । ପଶୁହତ୍ୟା, ମୃଗୟା ପ୍ରଭୃତି ବନ୍ଦ କରିଦେଲେ । ବନ୍ୟ ପ୍ରାଣୀଙ୍କୁ ରକ୍ଷା କରିବା ତାଙ୍କର ପରମ କର୍ତ୍ତବ୍ୟ । ଭୁଲ ପାଇଁ ତାଙ୍କ ଭିତରେ ଅପରାଧବୋଧ ସୃଷ୍ଟି ହେଲା ।

ସେମାନେ ସେ ବଣରେ ଥାନ୍ତି ।

''ଦିନେ ହଠାତ୍ ଦୁର୍ବାସା ଋଷି ତାଙ୍କର ଶିଷ୍ୟମାନଙ୍କ ଗହଣରେ ଆସି ସେଠାରେ ପହଞ୍ଚିଲେ । ଯୁଧିଷ୍ଠିର ତାଙ୍କୁ ସାଦର ସମ୍ଭାଷଣ ଜଣାଇ ଆସନ ଗ୍ରହଣ କରିବାକୁ ଅନୁରୋଧ କଲେ । ଦୁର୍ବାସା କହିଲେ, ''ହେ ଧର୍ମପୁତ୍ର ! ଆମେ ସବୁ କ୍ଷୁଧାର୍ତ୍ତ । ଆଜି ଆପଣଙ୍କ ଆଶ୍ରମରେ ଆମେମାନେ ଭୋଜନ କରିବୁ । ବ୍ୟବସ୍ଥା କରନ୍ତୁ । ଆମେ ଯାଉଛୁ ନିକଟସ୍ଥ ସରୋବରକୁ, ସ୍ନାନ ସାରି ଆସିବୁ । ଦୁର୍ଯ୍ୟୋଧନଙ୍କର ଅନୁରୋଧକ୍ରମେ ଆପଣମାନଙ୍କର ମଙ୍ଗଳ କାମନା କରିବାକୁ ଆମେ ଆସିଛୁ ।''

ସେମାନେ ସ୍ନାନ ପାଇଁ ଚାଲିଗଲେ । ଯୁଧିଷ୍ଠିର ଦ୍ରୌପଦୀଙ୍କୁ ପଚାରିଲେ, 'ଅକ୍ଷୟ ପାତ୍ର' ଧୋଇ ସାରିଲଣି ବୋଧହୁଏ । କଣ କରିବା ?

ହଁ, ସମସ୍ତେ ଖାଇସାରିବାପରେ ମୁଁ ଖାଇଲି, ତା'ପରେ ପାତ୍ରଟିକୁ ଧୋଇ ଦେଇଛି । ଏତେ ଲୋକଙ୍କୁ ଖାଇବାକୁ ଦେବାକୁ କିଛି ନାହିଁ । ଦୁର୍ଯ୍ୟୋଧନ ଦାଉସାଧିବାକୁ, ଆମର ମଙ୍ଗଳ କାମନା ବାହାନାରେ ଏ ଦଣ୍ଡର ବ୍ୟବସ୍ଥା କରିଛି । ଦୁର୍ବାସା ଋଷିଙ୍କୁ ସନ୍ତୁଷ୍ଟ କରିବାର କିଛିମାତ୍ର ଉପାୟ ନାହିଁ । ସେ ନିଶ୍ଚୟ ଅଭିଶାପ ଦେଇ ଦେବେ । ଦୁର୍ଯ୍ୟୋଧନର ପାପ ବୁଦ୍ଧି ରାହୁପରି, ଗ୍ରାସ କରିବାକୁ ଆମକୁ ଗୋଡ଼ାଉଛି ।

ଯୁଧିଷ୍ଠିର ଗମ୍ଭୀର ହୋଇ ଦ୍ରୌପଦୀଙ୍କ ମୁହଁକୁ ଚାହିଁଲେ ।

ଦ୍ରୌପଦୀ ରୋଷଘରକୁ ଯାଇ ବ୍ୟାକୁଳତାର ସହିତ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ହଠାତ୍ ଶ୍ରୀକୃଷ୍ଣ ହସି ହସି ପହଞ୍ଚିଗଲେ । କହିଲେ, କୃଷ୍ଣା ! ମୋତେ ଭାରି ଭୋକ । କିଛି ଖାଇବାକୁ ଦିଅ ।''

ଦ୍ରୌପଦୀ କହିଲେ, ''ଥାଳିତ ଖାଲି, କ'ଣ ଖାଇବାକୁ ଦେବି ? ଦୁର୍ବାସା ଋଷି ଦଶହଜାର ଶିଷ୍ୟଙ୍କୁ ନେଇ ଆସିଛନ୍ତି । ସେମାନଙ୍କ ପାଇଁ କିଛି ନାହିଁ ଖାଇବାକୁ ଦେବାକୁ । ମୁଁ ବଡ଼ ଚିନ୍ତାରେ ପଡ଼ିଯାଇଛି ।''

ଶ୍ରୀକୃଷ୍ଣ କହିଲେ,, ''ଉଠ, ଯାଇ ଦେଖ, ଥାଳିରେ କାଳେ କୋଉଠେ କିଛି ଲାଗିଥିବ । ଦ୍ରୌପଦୀ ଉଠିଯାଇ ଦେଖିଲେ, ଥାଳି କୋଣରେ ଅନ୍ନ କଣିକା ଓ ଟିକିଏ ଶାଗ ଲାଗିଛି । ସେ ଶ୍ରୀକୃଷ୍ଣଙ୍କ ମୁହଁକୁ ଚାହିଁ ରହିଲେ ନିର୍ବାକ ହୋଇ । କିପରି ଭାବରେ କୃତଜ୍ଞତା ଜଣାଇବେ, ଭାବି ପାରିଲେନାହିଁ । ଭକ୍ତିଭରା କଣ୍ଠରେ କହିଲେ, ''ହେ ପାଣ୍ଡବ ସଖା ! ଏହା ପ୍ରଭୁଙ୍କର କରୁଣା । ଏଣିକି ଲକ୍ଷେ ଲୋକଙ୍କୁ ଅନ୍ନ ଭୋଜନରେ ପରିତୃପ୍ତ କରିବାରେ କୌଣସି ଅସୁବିଧା ନାହିଁ । ଆପଣ ବସନ୍ତୁ, ମୁଁ ଆଗେ ଆପଣଙ୍କର ସତ୍କାରକରେ । ସେମାନେ ଆସିଲେ ତାଙ୍କ କଥା ବୁଝିବି ।''

ଦୁର୍ବାସା ଓ ତାଙ୍କର ଦଶହଜାର ଶିଷ୍ୟଙ୍କ ପାଇଁ ଭୋଜନର ବ୍ୟବସ୍ଥା ହୋଇଗଲା ସେମାନେ ସ୍ନାନ ସାରି ଆସି ପହଞ୍ଚିଲା ବେଳକୁ ଅନୁଭବ କଲେ·ସତେ ଯେପରି ତାଙ୍କ ପେଟ ଭରପୂର ହୋଇଯାଇଛି । ଟିକିଏ ବି ଜାଗାନାହିଁ,ଆଉ ଖାଇବାକୁ ବସିବେ କାହିଁକି ? ସେମାନେ କ୍ଷୁଧା ବଦଳରେ ଗଭୀର ତୃପ୍ତି ଅନୁଭବ କରୁଛନ୍ତି । ଶିଷ୍ୟମାନେ ଦୁର୍ବାସାଙ୍କୁ ଏହାର କାରଣ ପଚାରିଲେ । ଦୁର୍ବାସା ଯୋଗବଳରେ ପ୍ରକୃତ କାରଣ ଜାଣିପାରି କହିଲେ, '' ଏହା ଯାଜ୍ଞସେନୀଙ୍କ ଭକ୍ତିରସାମୃତ ପରଷାର ଫଳ । କ୍ଷୁଧା ପରିତୃପ୍ତ ହୋଇଛି । ଦୁର୍ବାସା ମୁନି, ଯୁଧିଷ୍ଠିରଙ୍କ ପାଖକୁ ଯାଇ କହିଲେ, ''ହେ ଧର୍ମରାଜ ! କ୍ଷମା ଦେବେ, ଆମେ ଦ୍ରୌପଦୀଙ୍କୁ ହଇରାଣ କରିଛୁ । ଆମକୁ ବିଦାୟ ଦିଅନ୍ତୁ । ଆପଣଙ୍କ ଅତିଥି ସତ୍କାରରେ ମୁଁ ଅତ୍ୟନ୍ତ ପରିତୃପ୍ତ ।

ଈଶ୍ୱର ଆପଣଙ୍କର ମଙ୍ଗ ବିଧାନ କରନ୍ତୁ ।

# ।। ଦ୍ରୌପଦୀ ହରଣ ।।

ଧୃତରାଷ୍ଟ୍ରଙ୍କର ଏକମାତ୍ର କନ୍ୟା ଦୁଃଶଳା । ତାଙ୍କସ୍ୱାମୀ ଜୟଦ୍ରଥ, ସିନ୍ଧୁର ରାଜା । ସେ ଥିଲେ ପ୍ରବଳ ପରାକ୍ରମୀ ।

ଦିନକର ଘଟଣା ପାଣ୍ଡବ ଭାଇମାନେ ବନ ଭିତରକୁ ଯାଇଥାନ୍ତି ଫଳମୂଳ ସଂଗ୍ରହ କରିବାପାଇଁ । ଆଶ୍ରମରେ ଥାଆନ୍ତି କୁଳପୁରୋହିତ ଧୌମ୍ୟ ଓ ଦ୍ରୌପଦୀ । ଧୌମ୍ୟ ନିକଟସ୍ଥ ବଣରୁ କୁଶ ସମିଧ ଓ ଯଜ୍ଞ ପାଇଁ କାଠ ସଂଗ୍ରହ କରୁଥାନ୍ତି । ଭିତରେ କାମରେ ଲାଗିଥାଏ ଆଶ୍ରମ ପରିଚାରିକା । ଆଶ୍ରମ ସମ୍ମୁଖରେ ଏକ କଦମ୍ବ ବୃକ୍ଷ । ପୁଷ୍ପଭାରାରେ ଅବନତ । ତଳକୁ ନଇଁ ଆସିଥିବା ଡାଳଟିଏ ଧରି ଛିଡ଼ା ହୋଇଥାନ୍ତି ଦ୍ରୌପଦୀ । କୃଷ୍ଣକୁଂଚିତ କବରୀରେ କଦମ୍ବର ରେଣୁ ରେଖା । ସେ ନିର୍ନିମେଷ ନୟନରେ ଚାହିଁଥାନ୍ତି ପୁଷ୍ପଭରା କଦମ୍ବ କାମିନୀକୁ । ବନସ୍ତର ରାଣୀ କାଦମ୍ବିକା । ଶିରକୁ ତାର ସ୍ପର୍ଶ କରିଛି କାଦମ୍ବିନୀ, ସତେ ଅବା ତାର କୃଷ୍ଣ କେଶଭାର ।

ଠିକ୍ ଏତିକିବେଳେ ଅନତି ଦୂରରେ ଏକ ରଥ ଆସି ଅଟକିଗଲା । ରଥାରୂଢ଼ ଏକରାଜପୁତ୍ର । ନୟନରେ କାମନାର କଟାକ୍ଷ । ଦ୍ରୌପଦୀଙ୍କୁ ଦେଖି ଭାବିଲା, କିଏ ଏଇ ଲାବଣ୍ୟମୟୀ ଅପରୂପା ରୂପସୀ । ସତେକଣ ବନଦେବୀ ! ସ୍ୱର୍ଗର ଅପ୍‌ସରା ମର୍ତ୍ତ୍ୟ ଭ୍ରମଣରେ ଆସି ଅଟକି ଯାଇଛି ନିରନ୍ଧ୍ର ବନ ପ୍ରଦେଶରେ ! ଅଥବା କିନ୍ନରୀ ! ମର୍ତ୍ତ୍ୟର ନାରୀ ପକ୍ଷରେ ଏ ସୌନ୍ଦର୍ଯ୍ୟ ସମ୍ଭବ ନୁହେଁ ।

ତାଙ୍କର ନିର୍ଦ୍ଦେଶ ପାଇ ଅନ୍ୟ ଏକ ରଥରୁ ଓହ୍ଲାଇ ଆସିଲେ ଆଉ ଜଣେ ଯୁବକ । ଆସି ଉଭା ହେଲେ ଦ୍ରୌପଦୀଙ୍କ ସମ୍ମୁଖରେ । ଲଜ୍ଜା ଲୋହିତା ଦ୍ରୌପଦୀ ନିଜକୁ ସଜାଡ଼ି ନେଇ, ପ୍ରଶ୍ନଭରା ନୟନରେ ଚାହିଁଲେ ସେହି ଯୁବକଙ୍କ ଆଡ଼କୁ ।

ଆପଣଙ୍କର ପରିଚୟ ?

''ମୋର ପରିଚୟ ପୂର୍ବରୁ ମୁଁ ତୁମର ପରିଚୟ ଚାହେଁ । କିଏ ସେହି ବ୍ୟକ୍ତି ଯାହାକୁ ତୁମେ ଭାଗ୍ୟବାନ୍ କରିଛ । ସ୍ୱର୍ଗର ଅପ୍‌ସରାଗଣ, ଏବଂ ଇନ୍ଦ୍ର ପତ୍ନୀ ସଚୀ ଦେବୀ ପ୍ରଭୃତି, ରୂପ ପ୍ରତିଯୋଗିତାରେ କେହି ତୁମର ସମକକ୍ଷ ନୁହଁନ୍ତି ।ତୁମେ ଆସ, ସିନ୍ଧୁରାଜ ଜୟଦ୍ରଥ, ରଥରେ ତୁମକୁ ଅପେକ୍ଷା କରିଛନ୍ତି । ଆସ ଦେବୀ ଆସ ।''

''ଏଁ କଣ କହିଲ ? ତୁମେ ଏପ୍ରକାର ପାପ କଥା ମନକୁ ଆଣିପାରୁଛ । ଏକଥା ତୁମେ ମୋତେ କହିପାରୁଛ ? ତୁମ ବନ୍ଧୁଙ୍କୁ ଯାଇ କୁହ ମୁଁ ପାଣ୍ଡବ ପତ୍ନୀ ପାଞ୍ଚାଳୀ । ଆଉ ବିଶେଷ ପରିଚୟର ଆବଶ୍ୟକତା ନାହିଁ । ସେ ଆମର ବନ୍ଧୁ । ବନ୍ଧୁଠାରୁ ବନ୍ଧୁ ସମ୍ମତ ବ୍ୟବହାର ଆଶା କରାଯାଏ । ପାଣ୍ଡବମାନେ ଏଇବର୍ତ୍ତମାନ ପହଞ୍ଚି ଯିବେ । ଉପଯୁକ୍ତ ଆତିଥ୍ୟ ସ୍ୱୀକାର କରିବାକୁ ସେମାନେ ପଛେଇବେ ନାହିଁ । ଶୀଘ୍ର ଚାଲିଯାଅ ।''

ଏତିକିବେଳେ ରଥରୁ ଓହ୍ଲାଇ ଆସିଲେ ଜୟଦ୍ରଥ । ଦ୍ରୌପଦୀଙ୍କୁ ସସ୍ମିତ ବଦନରେ କହିଲେ, ''ରୂପସୀ ଦ୍ରୌପଦୀ ! ନନ୍ଦନବନର ପାରିଜାତ କଣ ଏ ଘଞ୍ଚ ଅରଣ୍ୟରେ ଶୋଭାପାଉଛି ? ତମର ଅତୁଳନୀୟ ରୂପ ବିଭବ, ଶିଶିର ସ୍ନାତ ଶେଫାଳୀ ପରି ମଉଳି ଯାଉଛି । ଏତେ ସ୍ୱାମୀଙ୍କୁ ନେଇ ପ୍ରୀତି ସଂସାର କଣ ଗଢ଼ାଯାଇପାରେ । ଆସ, ମୋ ସହିତ ଆସ, ମୁଁ ତୁମକୁ ସିନ୍ଧୁ ସାମ୍ରାଜ୍ୟର ଅଧିଶ୍ୱରୀ କରିନେବି । ସହସ୍ରଦାସୀ ତୁମର ପଦ ପ୍ରକ୍ଷାଳନ କରିବେ । ଏ ସମ୍ରାଟ ତମ ରୂପ ରାଜ୍ୟର ଅତିଥି ହେବ । ପଞ୍ଚାଳ ରାଜନନ୍ଦିନୀ ପାଞ୍ଚାଳୀଙ୍କର ଦୁଃଖ ଯାତନାର ଅବସାନ ହେବ । ବନଚାରୀ କ୍ଲୀବ ପାଣ୍ଡବ ଗୁଡ଼ାକୁ ପରିତ୍ୟାଗ କରି, ସୁଖମୟ ଜୀବନର ଶୁଭାରମ୍ଭ କର । ଆସ,...ରଥ ଅପେକ୍ଷା କରିଛି । ମାହେନ୍ଦ୍ର ମୁହୂର୍ତ୍ତ ଚାଲି ଯାଉଛି ।''

ଏହା କହି ଦ୍ରୌପଦୀଙ୍କ ହାତକୁ ଧରି ପକାଇଲେ । ସେ ଜୋରରେ ଛିଣ୍ଡାଡ଼ିଦେଇ କହିଲେ, ''ପାପିଷ୍ଠ ଜୟଦ୍ରଥ ! ଧୃତରାଷ୍ଟ୍ର ନନ୍ଦିନୀ ଦୁଃଶଳାର ସ୍ୱାମୀ ହିସାବରେ ତୁ ମୋର ନିକଟ ବନ୍ଧୁ । ତୋତେ ଲାଜ ଲାଗୁନି, ନିଜ ପରିବାର ଲୋକଙ୍କ ସହିତ ବିଶ୍ୱାସ ଘାତକତା କରୁଛୁ । ଜାଣୁ, ଏହାର ପରିଣତି କଣ ।''

''ହଁ ଜାଣେ । ଭଲରୂପେ ଜାଣେ ଯେ ମୁଁ ରାଜା, ଭୋଗାଧିପତି । ସଂଭୋଗର ସିଂହାସନରେ ମୁଁ ଅଭିଷିକ୍ତ । ସୌନ୍ଦର୍ଯ୍ୟ ବିପଣୀର ଏକମାତ୍ର ଗ୍ରାହକ । ତୁମେ ରମଣୀ ରତ୍ନ । ରତ୍ନ ଉପରେ ରାଜା ବ୍ୟତୀତ ଆଉ କାହାର ଅଧିକାର ନଥାଏ । ଭିକାରି ପାଣ୍ଡବମାନେ ଏ ମହାର୍ହରତ୍ନର ରକ୍ଷକ ହୋଇ ପାରିବେ ନାହିଁ । ଆସ... ବିଳମ୍ବ ଅସହ୍ୟ । ଏହା କହି ସେ ଦ୍ରୌପଦୀଙ୍କୁ ବଳପୂର୍ବକ ଟାଣିନେଇ ରଥରେ ବସାଇ ଦେଲା ।

ଗଗନ ପବନ ଫଟାଇ ଚିତ୍କାର କଲେ ଦ୍ରୌପଦୀ । ଧୌମ୍ୟ ! ରକ୍ଷାକର... ରକ୍ଷାକର । ଅର୍ତ୍ତଚିତ୍କାର ଶୁଣି ରଥର ପଛେ ପଛେ ଦୌଡ଼ିଲେ । ଆଶ୍ରମ ଭିତରୁ ବାହାରି ଆସିଲା ସେବିକା, ସେ ମଧ୍ୟ ବିକଳ ଚିତ୍କାର କରି ଦୌଡ଼ିଲା । ରଥ ଦ୍ରୁତଗତିରେ ଚାଲିଥାଏ । ଦ୍ରୌପଦୀଙ୍କ ଚିତ୍କାର ବନ ପ୍ରଦେଶକୁ ପ୍ରତିଧ୍ୱନିତ କରୁଥାଏ ।

ହଠାତ୍ ପଥମଧ୍ୟରେ ପାଣ୍ଡବମାନଙ୍କ ହାବୁଡ଼ରେ ପଡ଼ିଗଲା ଜୟଦ୍ରଥ । ପାଣ୍ଡବ ସେନା ଓ ଜୟଦ୍ରଥଙ୍କ ସେନାବାହିନୀ ମଧ୍ୟରେ ତୁମୁଳ ସଂଘର୍ଷ ହେଲା । ଭୀମଙ୍କର ଗଦା ମାଡ଼ରେ ଜୟଦ୍ରଥ ଓ ମହାମହା ବୀର ସବୁ ଟଳି ପଡ଼ିଲେ । ଜୟଦ୍ରଥର ହାତ,ପାଦ ଅଣ୍ଟା ବାନ୍ଧି ଦିଆଗଲା । ଅସ୍ତ୍ରାଘାତରେ ସେ ପ୍ରାୟ ଦରମଲା ହୋଇ ପଡ଼ିଥାଏ । ଦ୍ରୌପଦୀ ଚିତ୍କାର କରୁଥାନ୍ତି, 'ତାକୁ ମାରିଦିଅ । ମାରିଦିଅ ସେ ପାଷାଣ୍ଡକୁ । ତା'ପରି ପାପର ଜୀବାଣୁ ବଞ୍ଚି ରହିଲେ ସଂସାରରେ ଅଧର୍ମ ଘୋଟିଯିବ ।'

ଭୀମ ଗଦା ଉଠାଇଲେ ତା ମୁଣ୍ଡ ଉପରକୁ । ଯୁଧିଷ୍ଠିର ତାଙ୍କ ହାତ ଧରି ପକାଇ କହିଲେ ନା..ନା... ତାକୁମାରନି । ଦୁଃଶଳା ଆମର ଭଉଣୀ । ତାକୁ ମାରିଦେଲେ ସାରାଜୀବନ ଗୋଟାଏ ଭଉଣୀକୁ ବୈଧବ୍ୟ ଯାତନା ଭୋଗ କରିବାକୁ ପଡ଼ିବ । ତାକୁ ଲଣ୍ଡା କରିଦିଅ । ସେ କାନଧରି ବସ ଉଠୁ ହେଉ । ଦ୍ରୌପଦୀଙ୍କ ପାଦତଳେ ପଡ଼ି କ୍ଷମା ଭିକ୍ଷା କରୁ ।

ତାହାହିଁ ହେଲା ।

ଜୟଦ୍ରଥକୁ ତା'ପରେ ମୁକ୍ତକରି ଦିଆଗଲା ।

# ।। ଯକ୍ଷର ପ୍ରଶ୍ନବାଣ ।।

ବାରବର୍ଷ ବନବାସ ପ୍ରାୟ ଶେଷ ହୋଇଯିବାକୁ ବସିଲାଣି । ଦିନେ ଜଣେ ବ୍ରାହ୍ମଣ ଆସି ପାଣ୍ଡବଙ୍କୁ କହିଲେ, ''ମୁଁ ବଡ଼ ବିପଦରେ ପଡ଼ିଛି । ମୋର 'ଆରଣୀ' ଟା ଗୋଟାଏ ହରିଣ ଶିଙ୍ଗରେ ଲାଗିଗଲା । ହରିଣଟା ଭୟରେ ଦଉଡ଼ି ଦଉଡ଼ି ପଳାଇଛି । ଯଜ୍ଞପାଇଁ ନିଆଁ କୋଉଠୁ ନିତିଦିନ ଯୋଗାଡ଼ କରିବି । ଆରଣୀକୁ କାଠରେ ଘଷି ନିଆଁ ପାଉଥିଲି । ମୋତେ ଦୟାକରି ମୋ ଆରିଣୀଟା ଆଣି ଦିଅନ୍ତୁ ।

ବ୍ରାହ୍ମଣଙ୍କୁ ଆଶ୍ୱାସନା ଦେଇ ପଞ୍ଚପାଣ୍ଡବ ହରିଣ ପଛରେ ଦଉଡ଼ିଲେ । ଅନେକ ବାଟ ବଣ ଭିତରେ ଯିବାପରେ ସେମାନେ ଥକିଗଲେ । ଗୋଡ଼ ହାତ ଆଉ ବୋଲମାନୁନି । ହରିଣଟା କୁଆଡ଼େ ପଳାଇଲା ଯେ ତାର ପତ୍ତା ମଧ୍ୟ ମିଳିଲା ନାହିଁ ।

ଶ୍ରାନ୍ତ କ୍ଳାନ୍ତ ପାଣ୍ଡବଗଣ, ସେମାନେ ଯାଇ ଗୋଟିଏ ବରଗଛ ଛାୟାରେ ବସିଲେ । ଯୁଧିଷ୍ଠିରଙ୍କୁ ଭାରି ଶୋଷ ହେଲା । ସେ ନକୁଳଙ୍କୁ ପାଖକୁ ଡାକି କହିଲେ, '' ବାବୁ ନକୁଳ ! ଏ ଗଛରେ ଚଢ଼ି ଚାରିଆଡ଼କୁ ଟିକିଏ ଲକ୍ଷ୍ୟକର । ଦେଖ, ନିକଟରେ ପୋଖରୀ, କି ନଈନାଳ କିଛି ଅଛିକି ନାହିଁ । ଯଦିଥାଏ, ତା'ହେଲେ ଯାଇ ମୋ ପାଇଁ ପାଣିଟିକିଏ ଆଣ । ମୋତେ ଭାରି ଶୋଷ ହେଉଛି ।''

ନକୁଳ ଗଛରେ ଚଢ଼ି ଦେଖିଲେ ଖୁବ୍ ନିକଟରେ ଅଛି ଗୋଟିଏ ପୁଷ୍କରିଣୀ । ସେ ସେଠାକୁ ଗଲେ । ଦେଖିଲେ ପୋଖରୀରେ କାଚକେନ୍ଦୁ ପରି ଭାରି ନିର୍ମଳ ଜଳ । ଗଛରୁ ଓହ୍ଲାଇ ଯୁଧିଷ୍ଠିରଙ୍କୁ କହି

ସେ ପାଣି ପାଇଁ ଗଲେ । ସେ ମଧ୍ୟ ଶୋଷରେ ଆଉଟୁ ପାଉଟୁ ହେଉଥାନ୍ତି । ମହା ଆନନ୍ଦରେ ପୋଖରୀ ଭିତରେ ପଶିଯାଇ ଆଞ୍ଜୁଳାଏ ପାଣି ଧରି ପାଟିକୁ ନେଲା ବେଳେ, ଗୋଟାଏ ଶବ୍ଦ ଶୁଣିବାକୁ ପାଇଲେ ।

''ସାବଧାନ ! ଏ ପୋଖରୀ ମୋର । ମୋଠାରୁ ଅନୁମତି ନ ନେଇ ପୋଖରୀ ଭିତରେ ପଶିପାରିବ ନାହିଁ । ପାଣି ପିଇବା ପୂର୍ବରୁ ମୋ ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବାକୁ ହେବ ।''

ନକୁଳ ତା କଥାକୁ କର୍ଣ୍ଣପାତ କଲେ ନାହିଁ । ଶୋଷରେ ଅସ୍ଥିର ହୋଇ ଦୁଇଚାରି ଆଞ୍ଜୁଳା ପାଣି ପିଇଦେଲେ । ସଙ୍ଗେ ସଙ୍ଗେ ସେ ବେହୋସ ହୋଇ ସେଠାରେ ପଡ଼ିଗଲେ ।

ନକୁଳ ଫେରିବାର ବିଳମ୍ବ ହେବାରୁ ଯୁଧିଷ୍ଠିର ଚିନ୍ତିତ ହୋଇ ସହଦେବଙ୍କୁ ପଠାଇଲେ ଅବସ୍ଥା ଅନୁଧ୍ୟାନ କରିବାପାଇଁ । ସହଦେବ ପୋଖରୀ କୂଳରେ ଭାଇକୁ ବେହୋସ ହୋଇ ପଡ଼ିଥିବାର ଦେଖି ବୁଦ୍ଧି ହଜିଗଲା । ଭାବିପାରିଲେନି କଣ କରିବେ ବୋଲି । ତେବେ ଶୋଷରେ ଅସ୍ଥିର ହୋଇ ପାଣି ପିଇବାକୁ ପୋଖରୀ ଭିତରକୁ ପଶି ଗଲେ । ଏକ ଅଜ୍ଞାତ ସ୍ୱର ଶୁଣାଗଲା । ମୋ ପ୍ରଶ୍ନର ଉତ୍ତର ନ ଦେଇ ପାଣି ପିଇଲେ ନକୁଳର ଦଶା ଭୋଗିବାକୁପଡ଼ିବ । ଶୋଷ ସମ୍ଭାଳି ନପାରି, ସେ ପାଣି ପିଇଦେଲେ ଏବଂ ଆଖି ପିଛୁଳାକେ ବେହୋସ ହୋଇ ଖସି ପଡ଼ିଲେ ।

ସହଦେବ ଫେରିଲେ ନାହିଁ । ବ୍ୟସ୍ତ ହୋଇ ଉଠିଲେ ଯୁଧିଷ୍ଠିର । ସେ ଅନୁସନ୍ଧାନ ପାଇଁ ଅର୍ଜ୍ଜୁନଙ୍କୁ ପଠାଇଲେ । ଯକ୍ଷର ପୁଣି ସେଇ ସର୍ତ୍ତ । ତୃଷାର୍ତ୍ତ ଅର୍ଜୁନ ଜଳପାନ କରିବାପରେ ପୁଣି ତାଙ୍କର ସେଇ ଦଶା । ଏଥର ଭୀମ ଆସିଲେ ସେଇ ପୋଖରୀ କୂଳକୁ । ଶୁଣାଗଲା ସେଇ ଛଦ୍ମ ବାଣୀ । ଭୀମ ଗର୍ଜ୍ଜନ କରି କହିଲେ, ''ଆରେ ଦୁରାତ୍ମା ଯକ୍ଷ, ତୁ ଏକାଣ୍ଡ ସବୁ ଭିଆଇଛୁ ? ଭୀରୁ, କାପୁରୁଷ, ତୋର ଯଦି ଶକ୍ତି ଅଛି ତାହେଲେ ବାହାରକୁ ବାହାରିଆ । ତୋ ବେକ ମୋଡ଼ି ଦେବି.... ସାବାଡ଼ କରିଦେବି ତୋତେ । ଚୋରଙ୍କ ପରି ଲୁଚିଛୁ କାହିଁକି ? ଏ ପୋଖରୀ ତୋ ବାପାର ନୁହେଁ କି କାହାରି ନୁହେଁ । ଏ ପ୍ରକୃତିର ଦାନ । ମୁଁ ପାଣି ପିଇବି । ଅଲବତ ପିଇବି । ତାପରେ ତୋ ସାଥିରେ ମୋର କଥାବାର୍ତ୍ତା ।

ଭୀମ ପୋଖରୀ ଭିତରକୁ ପଶି ସୁନିର୍ମଳ ଜଳପାନ କଲେ । ଚାହୁଁ ଚାହୁଁ ତାଙ୍କ ମୁଣ୍ଡ ଘୂରାଇଲା । ସେ ବେହୋସ ହୋଇ ସେଠାରେ ଖସି ପଡ଼ିଲେ ।

ଭୀମଙ୍କର ବିଳମ୍ବ ଦେଖି ଯୁଧିଷ୍ଠିର ସ୍ଥିର ହୋଇ ରହିପାରିଲେ ନାହିଁ । ଭାବିଲେ ନିଶ୍ଚୟ କିଛି ଅଘଟଣ ଘଟିଛି । ସେ ନିଜେ ସେହି ପୋଖରୀ ଆଡ଼କୁ ଗଲେ । ପହଞ୍ଚିବା ପରେ ଯାହା ଦେଖିଲେ ନିଜ ଆଖିକୁ ମଧ୍ୟ ବିଶ୍ୱାସ କରି ପାରିଲେନାହିଁ । ତ୍ରିଭୁବନରେ ଏପରି କେହି ନାହିଁ, ଯେକି ପାଣ୍ଡବ ମାନଙ୍କୁ ଅତିକ୍ରମ କରିଯାଇ ପାରିବ । ଅଥଚ ମହା ଧନୁର୍ଦ୍ଧର ଭାଇମାନେ ବେହୋସ ହୋଇ ପଡ଼ିଛନ୍ତି । ଏହା ନିଶ୍ଚୟ ଏକ ଚକ୍ରାନ୍ତର ପରିଣତି । ଦୁର୍ଯ୍ୟୋଧନ ହତାଶ ହୋଇ କଣ ଏ ପୋଖରୀ ପାଣିକୁ ବିଷାକ୍ତ କରି ଦେଇଛି ? କାଇଁତ ଶତ୍ରୁପକ୍ଷର ସନ୍ଧାନ କିଛି ମିଳୁନି । ମଣିଷ କିମ୍ବା ପଶୁର ପଦଚିହ୍ନ କିଛି ନାହିଁ । ସର୍ପାଘାତ ହୋଇଥିଲେ ପାଟିରୁ ନିଶ୍ଚୟ ଫେଣ ବାହାରି ଥାନ୍ତା । ମୁହଁ ନୀଳ ଦିଶୁଥାନ୍ତା । ମୁଖମଣ୍ଡଳ ପ୍ରତିକ୍ରିୟାହୀନ । କ୍ରୋଧ, ଈର୍ଷା, ବିଦ୍ୱେଷ କିମ୍ବା ଯନ୍ତ୍ରଣାର ଚିହ୍ନ ମୁଖମଣ୍ଡଳରେ ପ୍ରକାଶିତ ହେଉନାହିଁ । ସେ ଭାଇମାନଙ୍କ ମୁଣ୍ଡ ଓ ମୁହଁରେ ହାତ ବୁଲାଇ ଆଉଁଶିଲେ । ଆଖିରୁ ବହିଆସିଲା ଧାରଧାର ଲୁହ ।

ଯୁଧିଷ୍ଠିର ଶେଷରେ ଆତୁର ହୋଇ ଜଳପାନ ପାଇଁ ପୋଖରୀ ମଧ୍ୟକୁ ପ୍ରବେଶ କଲେ । ଆଞ୍ଜୁଳାଏ ପାଣି ପାଟିକୁ ନେବା ସମୟରେ, ହଠାତ୍ ଶୁଣାଗଲା ସେଇ ଛଦ୍ମ ବାଣୀ ।

''ପାଣି ପିଅନାହିଁ । ମୋ କଥା ନ ଶୁଣିବାରୁ ତମ ଗର୍ବୀଭାଇମାନେ ଏଦଶା ଭୋଗୁଛନ୍ତି । ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦିଅ । ତାପରେ ପାଣି ପିଅ । ମୋ ବିନାନୁମତିରେ ମୋର ଏ ପୋଖରୀରୁ ପାଣି ପିଇପାରିବ ନାହିଁ ।''

ଯୁଧିଷ୍ଠିର ଚାରିଆଡ଼କୁ ଚାହିଁଲେ । ଏ ସ୍ୱର ଆସୁଛି କେଉଁଠାରୁ, କିଏ କହୁଛି ? କିଛି ସମୟ ଭାବିବାପରେ ସ୍ଥିରକଲେ, ଏହା ନିଶ୍ଚୟ ଯକ୍ଷର ସ୍ୱର । ତାପରେ ସେ ଅନୁମାନ କରିନେଲେ ଭାଇମାନେ ଏପ୍ରକାର ଦୁର୍ଗତିର ସମ୍ମୁଖୀନ କାହିଁକି ହୋଇଛନ୍ତି । ସେ ଯକ୍ଷକୁ ଲକ୍ଷ୍ୟକରି କହିଲେ, ''ହେ ଯକ୍ଷରାଜା ପ୍ରଶ୍ନ ପଚାରିବାର ତୁମ ଅଧିକାରକୁ ମୁଁ ସ୍ୱାଗତ କରୁଛି । ମୋର ଉତ୍ତରରେ ତୁମେ କେତେଦୂର ସନ୍ତୁଷ୍ଟ ହେବ ମୁଁ ତାହା କହିପାରିବି ନାହିଁ । ତଥାପି ଚେଷ୍ଟା କରିବି ମୋ ଉତ୍ତରରେ ତୁମକୁ ସନ୍ତୁଷ୍ଟ ଓ ଆନନ୍ଦିତ କରିବାପାଇଁ । ପଚାର ... କ'ଣ ପଚାରୁଛ ପଚାର ।''

ଅଦୃଶ୍ୟ ଯକ୍ଷ ଗୋଟି ଗୋଟି କରି ପ୍ରଶ୍ନ ପଚାରିଲା । ଯୁଧିଷ୍ଠିର ସେ ପ୍ରଶ୍ନ ଗୁଡ଼ିକର ଯଥାଯଥ ଉତ୍ତର ଦେଲେ ।

ପ୍ରଶ୍ନ - ସୂର୍ଯ୍ୟ କେଉଁ ଶକ୍ତି ବଳରେ ପ୍ରତିଦିନ ଆଲୋକିତ ହେଉଛନ୍ତି ଏବଂ କେଉଁ ଶକ୍ତି ପ୍ରଭାବରେ ସେ ଆକାଶରେ ସ୍ଥିର ଅଛନ୍ତି ?

ଉତ୍ତର - ବ୍ରହ୍ମଶକ୍ତି ବଳରେ ସୂର୍ଯ୍ୟ ଆଲୋକିତ ହୁଅନ୍ତି ଏବଂ ସତ୍ୟର ପ୍ରଭାବରେ ସେ ସ୍ଥିର ଅଚନ୍ତି ।

ପ୍ରଶ୍ନ - ମଣିଷକୁ ବିପଦରେ ସାହାଯ୍ୟ କରେ କିଏ ?

ଉତ୍ତର - ସାହାସ, ମଣିଷକୁ ବିପଦରୁ ମୁକ୍ତକରେ ।

ପ୍ରଶ୍ନ - ମଣିଷ କିପରି ଜ୍ଞାନୀ ହୁଏ ?

ଉତ୍ତର - ଶାସ୍ତ୍ରଜ୍ଞାନ ମଣିଷକୁ ଜ୍ଞାନୀ କରି ପାରେନାହିଁ । ବିଜ୍ଞ ଓ ଜ୍ଞାନୀ ଲୋକଙ୍କର ସଂସ୍ପର୍ଶରେ ଆସିଲେ, ମଣିଷର ବିଜ୍ଞତା ବଢ଼େ ଓ ଜ୍ଞାନ ବଢିଥାଏ ।

ପ୍ରଶ୍ନ -ବଞ୍ଚିଥାଉ ଥାଉ ମୃତ କିଏ ?

ଉତ୍ତର - ସ୍ୱାର୍ଥପର

ପ୍ରଶ୍ନ -ପୃଥିବୀଠାରୁ ବଡ଼ କିଏ ?

ଉତ୍ତର - ମାତା

ପ୍ରଶ୍ନ - ଆକାଶଠାରୁ ବଡ଼ କିଏ ?

ଉତ୍ତର - ପିତା

ପ୍ରଶ୍ନ - ପବନ ଠାରୁ ଅଧିକ ଚଞ୍ଚଳ କିଏ ?

ଉତ୍ତର - ମନ

ପ୍ରଶ୍ନ - କୁଟାଠାରୁ ବଳି ଅଧିକ ଦହନଶୀଳ କିଏ ?

ଉତ୍ତର - ସନ୍ତାପିତ ହୃଦୟ ।

ପ୍ରଶ୍ନ -ଯାତ୍ରୀ, ରୋଗୀ, ଗୃହସ୍ଥ ଓ ମୃତବ୍ୟକ୍ତିର ସାଥୀ କିଏ ?

ଉତ୍ତର - ଜ୍ଞାନ, ଚିକିତ୍ସକ, ସ୍ତ୍ରୀ ଓ ଜୀବନ କାଳରେ କରିଥିବା କର୍ମ ଓ ଅର୍ଜିତ ଧର୍ମ ।

ପ୍ରଶ୍ନ - ସୁଖ କଣ ?

ଉତ୍ତର - ଚରିତ୍ରବଳ

ପ୍ରଶ୍ନ - କଣ ତ୍ୟାଗ କରିବା ଉଚିତ ?

ଉତ୍ତର - ଅହଂକାର ଓ ଗର୍ବ

ପ୍ରଶ୍ନ - କଣ ହରାଇଲେ ମଣିଷ ଲାଭବାନ ହୁଏ ?

ଉତ୍ତର - କ୍ରୋଧ ।

ପ୍ରଶ୍ନ - କଣ ପରିତ୍ୟାଗ କଲେ ମଣିଷ ବିଭବଶାଳୀ ହୁଏ ?

ଉତ୍ତର - କାମନା

ପ୍ରଶ୍ନ - ପ୍ରକୃତ ବ୍ରାହ୍ମଣ କିଏ ? ଯେ ବ୍ରାହ୍ମଣ କୁଳରେ ଜନ୍ମ ହୋଇଥାଏ ନା ଆଚରଣ ଦ୍ୱାରା ଯେ ବ୍ରାହ୍ମଣର କର୍ତ୍ତବ୍ୟକରେ ?

ଉତ୍ତର - ବ୍ରାହ୍ମଣ କୁଳରେ ଜାତ ହୋଇ କେହି ବ୍ରାହ୍ମଣ ହୋଇ ନପାରେ । ଏଥିପାଇଁ ଆବଶ୍ୟକ ଶୁଦ୍ଧପୂତ ବ୍ରାହ୍ମଣ ସମ୍ମତ ଆଚରଣ । ଆଚରଣ ହୀନ ବ୍ରାହ୍ମଣ, ବ୍ରାହ୍ମଣ ପଦବାଚ୍ୟ ନୁହେଁ ।

ପ୍ରଶ୍ନ - ପୃଥିବୀର୍ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ କଣ ?

ଉତ୍ତର - ମଣିଷ ମାତ୍ରେ ମରଣଶୀଳ କିନ୍ତୁ ମୃତ୍ୟୁ ସୁନିଶ୍ଚିତ ବୋଲି ମଣିଷ ଜାଣି ମଧ୍ୟ, ସେ ସବୁଦିନେ ବଞ୍ଚିରହିବାକୁ ଚାହେଁ, ଏହା ଠାରୁ ବଳି ବଡ଼ ଆଶ୍ଚର୍ଯ୍ୟ ଆଉ କଣ ଅଛି ?

ଯକ୍ଷ ଖୁସି ହୋଇ କହିଲା, ''ହେ ଧର୍ମରାଜ ! ତୁମ ଉତ୍ତରରେ ମୁଁ ସନ୍ତୁଷ୍ଟ । ବର୍ତ୍ତମାନ କୁହ, ତୁମ ଚାରିଭାଇ ଭିତରୁ ତୁମେ କାହାର ଜୀବନ ଫେରିପାଇବାକୁ ଚାହୁଁଛ ?

ଯୁଧିଷ୍ଠିର ହସିହସି କହିଲେ, ''ହେ ଯକ୍ଷ ରାଜ ତୁମେ ଯଦି ସନ୍ତୁଷ୍ଟ ତା'ହେଲେ ମୋର ଭାଇ ନକୁଳକୁ ବଞ୍ଚାଇଦିଅ । ଯକ୍ଷ କହିଲା, ହେ ଧର୍ମପୁତ୍ର ! ଆଉଥରେ ଭଲ କରି ବିଚାର କର । ଭୀମପରି ମହାବଳୀ, ଅର୍ଜୁନଙ୍କ ପରି ମହାଯୋଦ୍ଧା ଥାଉ ଥାଉ, ନକୁଳର ଜୀବନ ଭିକ୍ଷା କାହିଁକି କଲ ? ଯୁଧିଷ୍ଠିର କହିଲେ, ''ଧର୍ମ ହେଉଛି ସବୁଠାରୁ ଶକ୍ତିଶାଳୀ , ଧର୍ମହିଁ ମୋତେ ରକ୍ଷା କରିବ । ଭୀମ କିମ୍ବା ଅର୍ଜୁନ ନୁହଁନ୍ତି । ଧର୍ମରକ୍ଷା ପାଇଁ ମୁଁ ନକୁଳଙ୍କ ପ୍ରାଣଭିକ୍ଷା କରିଛି । ସେ ମୋ ବିମାତା ମାଦ୍ରୀଙ୍କ ପୁତ୍ର । ମୁଁ ତ ମୋ ମା କୁନ୍ତୀଙ୍କର ଏକ ସନ୍ତକ ବଞ୍ଚି ରହିଛି । ନକୁଳ ବଞ୍ଚିଲେ ମାଦ୍ରିଙ୍କର ସନ୍ତକ ରହିବ ।

ଯକ୍ଷ ସନ୍ତୁଷ୍ଟ ହୋଇ କହିଲା, ''ତୁମର ବିଚାରବୋଧ ପାଇଁ ମୁଁ ଖୁସି । ସତରେ ତୁମେ ତୁମର ଧର୍ମରାଜ ନାମକୁ ସାର୍ଥକ କରିଛ । ତୁମର ସବୁଭାଇଙ୍କୁ ମୁଁ ଜୀବନ ଫେରାଇ ଦେଉଛି । ତୁମେ ଆଉ ଏକ ପ୍ରାର୍ଥନା କରିପାର ।

ଧର୍ମପୁତ୍ର କହିଲେ ହେ ଯକ୍ଷରାଜ ! ଦୟାକରି ଗରିବ ବ୍ରାହ୍ମଣର ଆରଣୀଟିକୁ ଫେରାଇ ଦିଅନ୍ତୁ । ହରିଣ ତାହା ନେଇ ଆସିଛି ।

''ମୁଁ ଯକ୍ଷରାଜ ନୁହେଁ । ମୁଁ ଯମ, ହରିଣ ବେଶରେ ଆରଣୀ ଟିକୁ ନେଇ ଆସିଥିଲି, ତୁମ ମାନଙ୍କୁ ଏହି ପୁଷ୍କରିଣୀକୁ ଆକର୍ଷଣ କରିବି ବୋଲି । ନିଅ, ବ୍ରାହ୍ମଣକୁ ତାହା ଦେଇ ଦେବ ।

ପାଣ୍ଡବ ପୁତ୍ରମାନେ ଆଖିମଳିମିଳି ଉଠିଲେ । ସମସ୍ତେ ଯମରାଜଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇଲେ । ଯମ ଦେବତା କହିଲେ, ''ତୁମର ବାରବର୍ଷ ବନବାସ ପୂର୍ଣ୍ଣ ହୋଇଗଲା । ମୁଁ ତୁମକୁ ଆଶୀର୍ବାଦ ଦେଉଛି, ଏକବର୍ଷ ଅଜ୍ଞାତ ବାସ ସୁରୁଖୁରୁରେ କଟିଯିବ । କେହି ତୁମକୁ ଚିହ୍ନି ପାରିବେ ନାହିଁ । ଏହା ପରେ କୁରୁ ପାଣ୍ଡବ ଯୁଦ୍ଧ ନିଶ୍ଚୟ ହେବ । ଏହା ଅନିବାର୍ଯ୍ୟ । ଧର୍ମବଳରେ ତୁମେ ବିଜୟୀ ହେବ ।

ଯମରାଜ ଅଦୃଶ୍ୟ ହୋଇଗଲେ ।

ଅଜ୍ଞାତବାସ ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ ହେଲା । ସାଥିରେ ଥିବା ବ୍ରାହ୍ମଣମାନେ ବିଦାୟ ନେଲେ ।

ବାର

## ।। ଅଜ୍ଞାତ ବାସ ।।

ପାଣ୍ଡବମାନଙ୍କର ବାରବର୍ଷ ବନବାସ ଶେଷ ହେଲା । ପୂର୍ବଚୁକ୍ତି ଅନୁସାରେ ଆଉ ଏକ ବର୍ଷ ଅଜ୍ଞାତ ବାସ କରିବାକୁ ହେବ । ଏଇ ଗୋଟିଏ ବର୍ଷ ପାଣ୍ଡବମାନଙ୍କ ପାଇଁ ସବୁଠାରୁ କଷ୍ଟକର ସମୟ । କୌଣସି କାରଣରୁ କୌରବପକ୍ଷ, ପାଣ୍ଡବମାନଙ୍କର ସଂଧାନ ଯଦି ପାଇଯିବେ, ତା'ହେଲେ ପୁଣି ବାରବର୍ଷ ବନବାସ ଦଣ୍ଡ ଭୋଗକରିବାକୁ ପଡ଼ିବ । ଏହି କଠୋର ସମୟ ନିର୍ବିଘ୍ନରେ କଟିଗଲେ ଦୁର୍ଭାଗ୍ୟର ଅବସାନ ହେବ । ଏଥିପାଇଁ ଆବଶ୍ୟକ ଚରମ ସତର୍କତା ।

କୁଳଗୁରୁ ଧୌମ୍ୟଙ୍କ ସହିତ ଗୁପ୍ତ ମନ୍ତ୍ରଣା ଆରମ୍ଭ ହେଲା । ଦ୍ରୌପଦୀ ଓ ପାଞ୍ଚଭାଇ କର୍ମପନ୍ଥା ସ୍ଥିର କରିବା ପାଇଁ ଆଲୋଚନା କଲେ । ଚିନ୍ତାମଗ୍ନ ପାଣ୍ଡବମାନଙ୍କର ମୁଖମଣ୍ଡଳ ଗମ୍ଭୀର ଦେଖାଯାଉଥିଲା । ଯୁଧିଷ୍ଠିରଙ୍କୁ, ଧର୍ମଦେବ ଯମ ଆଶୀର୍ବାଦ ଛଳରେ କହିଥିଲେ, ''ଅଜ୍ଞାତବାସ ସମୟ ସୁରୁ ଖୁରୁରେ କଟିଯିବ ।'' ତାହା ତାଙ୍କର ମନୋବଳକୁ ବଢ଼ାଇ ଦେଲା । ଯୋଜନା ଠିକ୍ ଭାବରେ କରାଗଲେ, ଆଶୀର୍ବାଦ ଏବଂ ଶୁଭେଚ୍ଛା ଫଳପ୍ରସୂ ହୁଏ । ଶୁଭାଶୁଭ ସବୁ ନିର୍ଭର କରେ ଯୋଜନାର ମାନ ଉପରେ ।

ଧୌମ୍ୟ କହିଲେ, 'ହେ ରାଜନ୍ ! ଜୀବନ ଯୁଦ୍ଧରେ ଆପଣ ସର୍ବଦା ସ୍ଥିର ସେଥିପାଇଁ ନିଜ ନାମକୁ ସାର୍ଥକ କରିଛନ୍ତି । ଆପଣ ଧର୍ମଜ୍ଞ ଓ ନୀତି ନିପୁଣ । ଅଜ୍ଞାତବାସ ପାଇଁ ଚିନ୍ତା କରନ୍ତୁ ନାହିଁ । ମହତର ଲକ୍ଷ୍ୟ ପୂରଣ ନିମିତ୍ତ ଦେବତାମାନେ ମଧ୍ୟ ଛଦ୍ମତାର ଆଶ୍ରୟ ନେଇଛନ୍ତି । ଶତ୍ରୁ ସଂହାର କରିବେ ବୋଲି ସ୍ୱୟଂ ଦେବରାଜ ଇନ୍ଦ୍ର, ବ୍ରାହ୍ମଣ ବେଶରେ ନିଷାଦ ରାଜ୍ୟରେ ଅଜ୍ଞାତ ବାସ କରିଥିଲେ । ବିଷ୍ଣୁ, ବାମନ ରୂପ ଧାରଣ କରି ରାକ୍ଷସରାଜ ବଳିଙ୍କ କବଳରୁ ପୃଥିବୀକୁ ରକ୍ଷା କଲେ । ଶାନ୍ତି ସ୍ଥାପିତ ହେଲା । ସ୍ୱୟଂ ନାରାୟଣ, ଅସୁରରାଜ ବୃତ୍ରାସୁର ନିଧନ ପାଇଁ ଇନ୍ଦ୍ରଙ୍କ ଅସ୍ତ୍ର ମଧ୍ୟରେ ପ୍ରବେଶ କରିଥିଲେ । ଅଧର୍ମର ଅବତାର ରାବଣକୁ ସଂହାର କରିବା ପାଇଁ, ବିଷ୍ଣୁ ମର୍ତ୍ତ୍ୟ ମଣ୍ଡଳରେ ରାମାବତାର ଗ୍ରହଣ କରିଥିଲେ । ପ୍ରଚ୍ଛନ୍ନତା, ପ୍ରଚଣ୍ଡତାର ଆଧାର । ଆପଣମାନେ ନିଃଶଂସୟରେ 'ଅଜ୍ଞାତବାସ' କରନ୍ତୁ । ନିଜର ରୁଚି ଓ ଦକ୍ଷତା ଅନୁକୂଳ କୌଣସି ପ୍ରିୟ ବୃତ୍ତି ବାଛି ନିଅନ୍ତୁ । ଦୁଃଖ ଭିତରେ ମଧ୍ୟ ଆନନ୍ଦ ମିଳିବ । ନିଜର ପ୍ରକୃତି ସହିତ ଖାପ ଖାଇଲା ପରି ଛଦ୍ମ ରୂପ ନିଜେ ସ୍ଥିର କରନ୍ତୁ ।''

ଅର୍ଜୁନ ହସି ହସି କହିଲେ, '' ମୁଁ ତ ଉର୍ବଶୀଙ୍କଠାରୁ ଅଭିଶାପ ପାଇଛି, ନଂପୁସକ ହୋଇଯିବି । ଇନ୍ଦ୍ରଦେବଙ୍କ କୃପାରୁ, ସାରା ଜୀବନ ବଦଳରେ କେବଳ ଗୋଟିଏ ବର୍ଷ ଏହି ଦଣ୍ଡ ଭୋଗିବାକୁ ପଡ଼ିବ, ପୁଣି ତାହା ନିଜ ଇଚ୍ଛାଅନୁସାରେ ଏକବର୍ଷ । ଏହି ଅଜ୍ଞାତବାସ ବର୍ଷଟି ମୋ ପାଇଁ ପ୍ରଶସ୍ତ । ଅତୀତର ଅଭିଶାପ ଆଜି ମୋପାଇଁ ଆଶୀର୍ବାଦରେ ପରିଣତ ହେଉ । ମୁଁ ଇନ୍ଦ୍ରପୁରୀରେ ଥିବା ସମୟରେ ଗନ୍ଧର୍ବରାଜଙ୍କ ଠାରୁ ନୃତ୍ୟ, ଗୀତ, ବାଦ୍ୟ ଓ ଗନ୍ଧର୍ବ ବିଦ୍ୟା ଶିକ୍ଷା କରିଛି । ଭାବୁଛି, ସଂଗୀତ ଓ ନୃତ୍ୟ

ଶିକ୍ଷା ଦେବି ସ୍ତ୍ରୀ ବେଶରେ । କୁରୁମଣ୍ଡଳୀର ପାଖାପାଖି ଅନେକ ବିଭବଶାଳୀ ରାଷ୍ଟ୍ରସବୁ ଅଛି । ପଞ୍ଚାଳ, ମତ୍ସ୍ୟ, ବିଦେହ, କଳିଙ୍ଗ, ଅବନ୍ତୀ, ଶୁରସେନ ପ୍ରଭୃତି ରାଜ୍ୟ । ଏ ସବୁ ଭିତରେ ମତ୍ସ୍ୟ ଦେଶକୁ ମୁଁ ଅଧିକ ପସନ୍ଦ କରୁଛି । ମତ୍ସ୍ୟ ଦେଶର ରାଜା 'ବିରାଟ' କୌରବ ମାନଙ୍କର ବନ୍ଧୁ ନୁହଁନ୍ତି । ସେ ମଧ୍ୟ ଖୁବ୍ ଶକ୍ତିଶାଳୀ ଓ ଜଣେ ନ୍ୟାୟପରାୟଣ ଶାସକ । ଆମେ ତାଙ୍କ ରାଜପୁରୀରେ ନିଶ୍ଚୟ ନିରାପଦରେ ରହି ପାରିବା ।''

ଯୁଧିଷ୍ଠିର ଆନନ୍ଦରେ ଏ ପ୍ରସ୍ତାବ ଗ୍ରହଣକଲେ । କହିଲେ, ''ତୁମେ ସିନା ନାରୀ ବେଶରେ ରହିବ, ତେବେ ତୁମ ବାହୁ ଯୁଗଳରେ ଯେଉଁ କ୍ଷତ ଚିହ୍ନଅଛି ତାହା ସନ୍ଦେହ ସୃଷ୍ଟି କରିବନାହିଁକି ?

ଅର୍ଜୁନ ହସି ହସି କହିଲେ, ''ମୁଁ ବଳୟ ପିନ୍ଧି ସେ ଚିହ୍ନ ଲୁଚାଇ ଦେବି । ଶଙ୍ଖା ସିନ୍ଦୂର ପିନ୍ଧି, କାନରେ କୁଣ୍ଡଳ ଲଗାଇ, ମୁଣ୍ଡରେ ବେଣୀ ଛାଡ଼ି ଶାଢ଼ିପିନ୍ଧି ବାହାରି ପଡ଼ିବି । 'ବୃହନ୍ନଳା' ନାମରେ ନିଜକୁ ପରିଚୟ ଦେବି । ମୋ ନାଚ ଗୀତ ନିଶ୍ଚୟ ରାଜାଙ୍କୁ ଆକର୍ଷଣ କରିବ ।

ଯୁଧିଷ୍ଠିର କହିଲେ, ''ଏହା ଏକ ଉତ୍ତମ ପ୍ରସ୍ତାବ, ତେବେ ମୁଁ ଭୀମଙ୍କ ପାଇଁ ଚିନ୍ତିତ । ଧରାପଡ଼ି ଯିବାର ଆଶଙ୍କା ତାଙ୍କ ପକ୍ଷରେ ଅଧିକ ।''

ଭୀମ କହିଲେ, ''ଅବଶ୍ୟ ବହୁ ଭୋଜନଟା ମୋ ପାଇଁ ଗୋଟାଏ ସମସ୍ୟା, ତେବେ ତାକୁ ଏଡ଼ାଇବା ପାଇଁ ମୁଁ ଗୋଟାଏ ବାଟ ଠିକ୍ କରିଛି । ବିରାଟ ରାଜାଙ୍କ ପାଖକୁ ଯାଇ ନିଜକୁ ଜଣେ ରାଜାପୁରୀର ପାଚକ ବୋଲି ପରିଚୟ ଦେବି । କହିବି, ମୋ ନାଁ ବଲ୍ଲଭ । ମୁଁ ପୂର୍ବେ ଯୁଧିଷ୍ଠିରଙ୍କ ରାଜପୁରୀରେ ପ୍ରଧାନ ପାଚକ ଥିଲି । ସମସ୍ତ ପ୍ରକାର ରାଜକୀୟ ଭୋଜନ ପ୍ରସ୍ତୁତ କରିବାରେ ମୁଁ ସିଦ୍ଧହସ୍ତ । କେବଳ ସେତିକି ନୁହେଁ, ଜଙ୍ଗଲରୁ ବଡ଼ ବଡ଼ କାଠ ଗଣ୍ଡି ବୋହି ଆଣି ପାରିବି । ରାଜାଙ୍କର ଚିତ୍ତ ବିନୋଦନ ପାଇଁ ବଡ଼ ବଡ଼ ମଲ୍ଲଙ୍କ ସହିତ ଲଢ଼େଇ କରିପାରିବି । ଆବଶ୍ୟକ ହେଲେ ଦୁର୍ଦାନ୍ତ ଅଶ୍ୱ ଓ ହସ୍ତୀମାନଙ୍କୁ ଆୟତ୍ତ କରିପାରିବି । ମୋ ଦକ୍ଷତାର ଆଭାସ ପାଇଲେ, ରାଜା ନିଶ୍ଚୟ ମୋତେ ପ୍ରଧାନ ପାଚକ ରୂପେ ନିଯୁକ୍ତି ଦେବେ । ତାପରେ ମୁଁ ମୋ ପାଇଁ ଦିବ୍ୟ ଭୋଜନ ଯୋଗାଡ଼ କରିବା ସହିତ, ଆଉ ସମସ୍ତଙ୍କ ପାଇଁ ସୁବିଧାରେ ମନଲାଖି ଭୋଜନର ବ୍ୟବସ୍ଥା କରି ପାରିବି । ମୋ ଲାଗି ଆପଣ ଚିନ୍ତା କରନ୍ତୁ ନାହିଁ । ବରଂ ଆପଣଙ୍କ ପାଇଁ ମୁଁ ବିଶେଷ ଚିନ୍ତିତ ।''

ଯୁଧିଷ୍ଠିର ହସି ହସି କହିଲେ, ''କାହିଁକି, ମୋପାଇଁ ଅସୁବିଧା କଣ ?

''ଆପଣଙ୍କ ପାଇଁ ଏହି ଏକମାତ୍ର ଅସୁବିଧା ହେଉଛି , ଆପଣ ସର୍ବଦା ଆଦେଶ ଦେଇ ଆସିଛନ୍ତି ଓ ଏହା ଆପଣଙ୍କର ଅଭ୍ୟାସ ସିଦ୍ଧ ଆଚରଣ । ଅନ୍ୟର ଆଦେଶ ଗ୍ରହଣ କରି ଆପଣ କିପରି ନିଜକୁ ଚଳାଇ ନେବେ, ମୁଁ କିଛି ଭାବି ପାରୁନାହିଁ ।''

ଯୁଧିଷ୍ଠିର କହିଲେ, ''ଓଃ ଏଇକଥା । ମୁଁ ଏକ ବେଦଜ୍ଞ ବ୍ରାହ୍ମଣ ବେଶରେ ବିରାଟ ରାଜାଙ୍କ ପାଖରେ ପହଞ୍ଚିବି । କହିବି, ରାଜନ୍ ମୁଁ ଧର୍ମରାଜ ଯୁଧିଷ୍ଠିରଙ୍କ ରାଜସଭାରେ ସଦସ୍ୟ ଥିଲି । ମୋ ନାମ ''କଙ୍କ'' । ମୁଁ ପଶାଖେଳରେ ଦକ୍ଷ । ଜ୍ୟୋତିଷ ଶାସ୍ତ୍ର, ଦର୍ଶନ, ବେଦ ବେଦାନ୍ତରେ ମୋର ମଧ୍ୟ ଦଖଲଅଛି । ମୁଁ ରାଜା ଯୁଧିଷ୍ଠିରଙ୍କର ପ୍ରିୟସଖା ଥିଲି । ମୋର ଧାରଣା, ଏହା ଶୁଣିବା ପରେ ସେ ମୋତେ ତାଙ୍କ ରାଜସଭାର ସଦସ୍ୟ ରୂପେ ଗ୍ରହଣ କରିବେ ।''

କଥାଟା ସମସ୍ତଙ୍କ ମନକୁ ପାଇଲା । ନକୁଳ କହିଲେ, ''ଆତ୍ମ ଗୋପନ ପାଇଁ ମୋର ମଧ୍ୟ କୌଣସି ଅସୁବିଧା ହେବନି । ଅଶ୍ୱପାଳକ ହିସାବରେ ମୋର ପାରଦର୍ଶିତା ଅଛି । ମୁଁ ରାଜାଙ୍କୁ ସନ୍ତୁଷ୍ଟ

କରି ବିରାଟ ରାଜାଙ୍କ ଅଶ୍ୱଶାଳାର ମୁଖ୍ୟ ଦାୟିତ୍ୱ ନେବି । ମୋର ଅଭିଜ୍ଞତା ବିଷୟରେ ସେ କିଛି ପ୍ରଶ୍ନ କଲେ କହିବି, ମୁଁ ସମ୍ରାଟ ଯୁଧିଷ୍ଠିରଙ୍କ ଅସ୍ତାବଲର ସର୍ବୋଚ୍ଚ ଦାୟିତ୍ୱରେ ଥିଲି । ମୋ ନାଁ 'ଗ୍ରନ୍ଥିକ' । ଅଶ୍ୱପାଳନ ଠାରୁ ଅଶ୍ୱଚାଳନ ପର୍ଯ୍ୟନ୍ତ ସବୁ ବିଷୟରେ ମୋର ଦକ୍ଷତା ଅଛି । ସେ ନିଶ୍ଚୟ ମୋତେ ଆଶ୍ରୟ ଦେବେ ।''

ସହଦେବ କହିଲେ, '' ଗୋପାଳନ, ଗୋରକ୍ଷା, ମୋର, ସହଜାତ ପ୍ରବୃତ୍ତି । ବିରାଟ ରାଜା ମୋତେ ତାଙ୍କ ଗୋଧନର ଦାୟିତ୍ୱ ଦେବାପାଇଁ ମୁଁ କହିବି । ମୁଁ ସେମାନଙ୍କର ରକ୍ଷଣାବେକ୍ଷଣ ଭାର ବହନ କଲେ, ରାଜାଙ୍କର ଗୋପଲକ୍ଷ୍ମୀ ନିଶ୍ଚୟ ବର୍ଦ୍ଧିତ ହେବ । 'ତନ୍ତ୍ରୀପାଳ' ନାମରେ ମୁଁ ନିଜର ପରିଚୟ ଦେବି ।

ଏଥର ସମସ୍ତେ ଚାହିଁଲେ ଦ୍ରୌପଦୀଙ୍କୁ । ପତିମାନଙ୍କର ତାଙ୍କ ପାଇଁ ସୃଷ୍ଟି ହୋଇଥିବା ଉଦ୍‌ବେଗର କାରଣ ବୁଝିବାକୁ, ଯାଜ୍ଞସେନୀଙ୍କୁ ବେଶି ସମୟ ଲାଗିନଥିଲା । ସେ ପ୍ରତ୍ୟୟ ଭରା କଣ୍ଠରେ କହିଲେ, ମୋ ପାଇଁ ମଧ୍ୟ ବ୍ୟସ୍ତ ହୁଅନ୍ତୁ ନାହିଁ । ସତୀ ସାଧ୍ୱୀ ସ୍ତ୍ରୀ ଲୋକମାନେ, ପରିସ୍ଥିତିର ପ୍ରଭାବରେ ପଡ଼ି ଅନ୍ୟର 'ସୈରିନ୍ଧ୍ରୀ' ହୋଇ ରହନ୍ତି । ବିରାଟ ରାଜାଙ୍କ ରାଣୀ ସୁଦେଷ୍ଣାଙ୍କୁ ସାକ୍ଷାତ କରି କହିବି, ଯୁଧିଷ୍ଠିରଙ୍କ ପାଟରାଣୀ ଦ୍ରୌପଦୀଙ୍କର ମୁଁ ସୈରିନ୍ଧ୍ରୀ ଥିଲି । କେଶ ମଣ୍ଡନ, ବେଣୀ ବନ୍ଧନ, ପ୍ରସାଧାନ ଓ ଅଙ୍ଗସଜ୍ଜାରେ ମୋର ଯଥେଷ୍ଟ ଦକ୍ଷତା ଅଛି । ସେଥିପାଇଁ ଦ୍ରୌପଦୀ ମୋତେ ନିଜର ଛାଇପରି ପାଖେ ପାଖେ ରଖୁଥିଲେ । ତାଙ୍କୁ ମୁଁ ସର୍ବଦା ଖୁସି ମନରେ ରଖୁଥିଲି । ମୋ କଥା ଶୁଣି ସୁଦେଷ୍ଣା ନିଶ୍ଚୟ ତାଙ୍କର ଅନ୍ତଃପୁରିକା ଭାବରେ ମୋତେ ରଖିବେ । ମୁଁ ସମସ୍ତଙ୍କ ଦୃଷ୍ଟି ଅନ୍ତରାଳରେ ମୋର ସତୀତ୍ୱ ଓ ସ୍ୱାଧୀନତା ରକ୍ଷାକରି ପାରିବି ।''

ଯୁଧିଷ୍ଠିର ଓ ପାଣ୍ଡବ ଭାଇମାନେ ଦ୍ରୌପଦୀଙ୍କର ଦୃଢ଼ତାକୁ ପସନ୍ଦ କଲେ । ଅଜ୍ଞାତବାସ ସମୟରେ ଦୁଃସହ ଦୁଃଖକୁ ଶାନ୍ତଚିତ୍ତରେ ସମସ୍ତେ ଗ୍ରହଣ କରିନେବାର ମାନସିକତା ପରିସ୍ଥିତିକୁ ବଦଳାଇ ଦେଲା ।

କୁଳ ପୁରୋହିତ ଧୌମ୍ୟ ସମସ୍ତଙ୍କୁ ଆଶୀର୍ବାଦ କରି କହିଲେ, ''ଅଜ୍ଞାତ ବାସର ସୁପରିକଳ୍ପିତ ଯୋଜନା ମୋର ସଂଶୟ ଦୂର କରିଛି । ପ୍ରସ୍ତୁତି ହିଁ ପରିଣତିର ପୂର୍ବାଭାସ । ନିର୍ବିଘ୍ନରେ ଅଜ୍ଞାତବାସ ସମ୍ପନ୍ନ ହେବ, ଏଥିରେ ସନ୍ଦେହ ନାହିଁ । ତେବେ ଏହା ଯେତେ ପ୍ରୀତିକର ବା ଅପ୍ରୀତିକର ହେଉ, ତଥାପି ଧୈର୍ଯ୍ୟର ସହିତ ପରିସ୍ଥିତିର ସମ୍ମୁଖିନ ହେବାକୁ ପଡ଼ିବ । ଏହା ଏକ ଆହ୍ୱାନ, ଆନନ୍ଦରେ ଗ୍ରହଣ କରିନେଲେ ଦୁଃଖ ଅନ୍ଧକାର ଦୂରେଇଯିବ ।''

ଧୌମ୍ୟ ପାଣ୍ଡବମାନଙ୍କୁ ଯେଉ ବିଦାୟ କାଳୀନ ଉପଦେଶ ଦେଇଥିଲେ ତାହାକୁ 'ଧୌମ୍ୟ ଗୀତା' କୁହାଯାଏ । ଆଜିର ସାମାଜିକ ଜୀବନରେ ତାହାର ମଧ୍ୟ ଯଥେଷ୍ଟ ଆବଶ୍ୟକତା ଓ ପ୍ରଭାବ ରହିଛି ।

ଶାସକ ଓ ଶାସିତର ସମ୍ପର୍କ କିପରି ହେବା ଉଚିତ, ସେ ତାଙ୍କର ବିଦାୟ କାଳୀନ ବାର୍ତ୍ତାରେ ବୁଝାଇଥିଲେ । ମଧୁର କଣ୍ଠରେ କହିଲେ, ''ହେ ପାଣ୍ଡୁନନ୍ଦନ ! ଅଜ୍ଞାତବାସର ସଫଳତା ପାଇଁ ମୋର ଏହି ଉପଦେଶ ଗ୍ରହଣ କରିବେ । ଆପଣମାନେ ହେବେ ପରାଧୀନ ଜୀବନ ଯାପନ କରିନାହାନ୍ତି, ବର୍ତ୍ତମାନ ସେ ସ୍ତରକୁ ଆସି ଛଦ୍ମରୂପରେ କର୍ତ୍ତବ୍ୟ ତୁଲାଇବା, କମ୍ କଷ୍ଟକର କଥାନୁହେଁ । ତେବେ ଟିକିଏ ସଜାଗ ଓ ସତର୍କ ହେଲେ ସମସ୍ୟାଦୂର ହୋଇଯିବ ।

ସେ ପୁଣି କହିଲେ, ''ମନେରଖନ୍ତୁ, ରାଜାର ମନ ଖୁବ୍ ଅହଂକାରୀ । ତାଙ୍କର ଅନୁମତି ନନେଇ ତାଙ୍କ ପାଖରେ ପ୍ରବେଶ କରିବେ ନାହିଁ । ତାଙ୍କୁ ସର୍ବଦା ସନ୍ତୁଷ୍ଟ କରିବାପାଇଁ ତତ୍ପର ହେବେ । ରାଜାଙ୍କର

ପ୍ରିୟପାତ୍ର ଯେତେ ବଡ଼ ବା ଛୋଟ ହେଉ, ତାଙ୍କୁ ମଧ୍ୟ ସନ୍ତୁଷ୍ଟ କରିବାକୁ ହେବ । ସାମାନ୍ୟ ହତାଦର ଓ ଅବହେଳା, ଚରମ ଦୁର୍ଦଶା ସୃଷ୍ଟିକରିପାରେ ।

''ପ୍ରତ୍ୟେକ କ୍ଷେତ୍ରରେ ବାକ୍ ସଂଯମ ଦରକାର । ନୀରବତାହିଁ, ଅପ୍ରୀତିକର ସତ୍ୟ ଅପେକ୍ଷା ଶ୍ରେୟସ୍କର । ରାଜା, ମତାମତ କିମ୍ବା ଉପଦେଶ ନ ମାଗିଲେ, ନିଜ ତରଫରୁ ତାହା ଦେବା ଉଚିତ ନୁହେଁ । ଅଯାଚିତ ଉପଦେଶ ସର୍ବଦା ବର୍ଜନୀୟ । ରାଜା ଜଳିଲା ଅଗ୍ନିଶିଖା ତୁଲ୍ୟ । ନିଜକୁ ସେଥିପାଇଁ ନିରାପଦ ଦୂରତ୍ୱରେ ରଖିବା ଉଚିତ । ତା'ହେଲେ ଉଷ୍ମତା ମିଳିବ, କିନ୍ତୁ ଅତି ପାଖକୁ ଗଲେପୋଡ଼ି ହେବାର ଆଶଙ୍କା ଅଛି । ତାଙ୍କର କିଛି ଭଲକାମ ଦେଖିଲେ ପ୍ରଶଂସା କରନ୍ତୁ କିନ୍ତୁ ମନେ ରଖନ୍ତୁ,ସେ ପ୍ରଶଂସା ଯେପରି ସୀମା ଲଂଘନ କରି ତୋଷାମଦରେ ପରିଣତ ନହୁଏ ।''

''ରାଜାମାନେ, ଅଧୀନସ୍ଥ ଲୋକମାନଙ୍କର ସୁଗୁଣ ପ୍ରତି ବେଶି ନଜର ଦିଅନ୍ତି ନାହିଁ । ସେମାନେ ବରଂ ରାଜାନୁରକ୍ତିକୁ ମୂଲ୍ୟଦାନ କରନ୍ତି । ଅଧୀନସ୍ଥ ଲୋକର ବିଶ୍ୱସ୍ତତା ଓ ବାଧ୍ୟତା ତାଙ୍କୁ ସନ୍ତୁଷ୍ଟ କରିଥାଏ । ରାଜାନୁଗ୍ରହ ଲାଭ କରି ଏକ ଅଯୋଗ୍ୟବ୍ୟକ୍ତି ଉଚ୍ଚ ଆସନର ଅଧିକାରୀ ହୋଇପାରେ ଓ ଯୋଗ୍ୟତମ ବ୍ୟକ୍ତି ଏ ସୁଯୋଗରୁ ମଧ୍ୟ ବଞ୍ଚିତ ହୋଇଯାଇପାରେ, ଏଥିପାଇଁ ପରୋକ୍ଷ କିମ୍ବା ପ୍ରତ୍ୟକ୍ଷରେ ନିଜର ପ୍ରତିକ୍ରିୟା ପ୍ରକାଶ କରିବା ଉଚିତ ନୁହେଁ ।''

''ଆପଣଙ୍କୁ ରାଜା ତାଙ୍କ ରଥରେ ବସି ସାଥିରେ ଯିବାପାଇଁ ନିମନ୍ତ୍ରଣ କଲେ ଆପଣ ନମ୍ରତାର ସହିତ ତାଙ୍କୁ ଧନ୍ୟବାଦ ଜଣାଇ, ନିଜ ଯାନରେ ତାଙ୍କ ସହିତ ଯାତ୍ରା କରିବେ । ରାଜା ଯେତେବେଳେ ଆପଣଙ୍କ ସହିତ କୌଣସି ଗୂଢ଼ ବିଷୟରେ ମନ୍ତ୍ରଣା କରିବେ, ଆପଣ ସେତେବେଳେ ଉଲ୍ଲସିତ ହେବେ ନାହିଁ କିମ୍ବା ଯେକୌଣସି ପରିସ୍ଥିତି ଆସୁନା କାହିଁକି ଗୋପନୀୟତା ସର୍ବଦାରକ୍ଷା କରିବେ । ରାଜାଙ୍କର ଅପ୍ରିୟ କାର୍ଯ୍ୟରେ ହାତ ଦେବେ ନାହିଁ । କୌଣସି ଦାୟିତ୍ୱ ସମ୍ପାଦନ କରି, ଉତ୍କୋଚ ଗ୍ରହଣ କରିବେନାହିଁ । ରାଜାଙ୍କ ଉପରେ ଅତିମାତ୍ରାରେ ବିଶ୍ୱାସ ସ୍ଥାପନ କରିବେ ନାହିଁ । ରାଜପୁରୀର ନାରୀମାନଙ୍କ କ୍ଷେତ୍ରରେ ସତର୍କ ରହିବାକୁ ପଡ଼ିବ ।''

''ଏଇ ଗୋଟିଏ ବର୍ଷ ଆପଣଙ୍କ ପାଇଁ ଅତି କଠିନ ସମୟ । ଏତେବେଳେ ସୁଖଭୋଗ ପାଇଁ ମନ ବଳାଇଲେ, ସାରାଜୀବନ ଦୁଃଖରେ କଟିବ । ଦୁଃଖକୁ ଚନ୍ଦନକରି ଦୁର୍ଭାଗ୍ୟର ଗ୍ରୀଷ୍ମତାପକୁ ସହିନେଲେ, ଅବସ୍ଥା ସୁଧୁରିଯିବ । ଏହାପରେ ନିଜର ଅପହୃତ ରାଜ୍ୟ ଫେରି ପାଇ ଆପଣମାନେ ସୁଖରେ ରାଜ୍ୟଭୋଗ କରିବେ ।''

ଯୁଧିଷ୍ଠିର ଆନନ୍ଦିତ ହୋଇ କହିଲେ, ''ଆପଣଙ୍କର ବିଦାୟ ବାର୍ତ୍ତା ଆମର ପଥ ପ୍ରଦର୍ଶକ ହେଉ । ଆପଣ ଆଶୀର୍ବାଦ ଦିଅନ୍ତୁ, ଅଜ୍ଞାତ ବାସ ସଫଳ ହେଉ ।''

ବିଦାୟ ପୂର୍ବରୁ ପୁରୋହିତ ଧୌମ୍ୟ ମନ୍ତ୍ରପାଠ କରି, ଯଜ୍ଞାଗ୍ନିରେ ଆହୁତି ଦେଇ ସେମାନଙ୍କର ମଙ୍ଗଳ କାମନା କଲେ । ଯଜ୍ଞ ଶେଷରେ ଦ୍ରୌପଦୀଙ୍କୁ ସମ୍ମୁଖରେ ରଖି ପାଣ୍ଡବମାନେ ବ୍ରାହ୍ମଣ ଓ ଅଗ୍ନିକୁ ପ୍ରଦକ୍ଷିଣ କଲେ । ଧୌମ୍ୟଙ୍କ ଠାରୁ ଆଶୀର୍ବାଦ ନେଇ ଅଜ୍ଞାତବାସ ପାଇଁ ସେମାନେ ଯାତ୍ରା ଆରମ୍ଭ କଲେ ।

କୁଳ ଗୁରୁ ଧୌମ୍ୟ, ଓ ପରିଚାରକମାନେ ଇନ୍ଦ୍ରପ୍ରସ୍ଥ ପ୍ରତ୍ୟାବର୍ତ୍ତନ କଲେ ।

# ।। ଛଦ୍ମବେଶ ।।

ମତ୍ସ୍ୟଦେଶର ରାଜଧାନୀ 'ବିରାଟ' ନଗର ଅଭିମୁଖେ ପାଣ୍ଡବମାନେ ଯାତ୍ରା ଆରମ୍ଭ କଲେ । ଯାଇ ପହଞ୍ଚିଲେ ଯମୁନା କୂଳରେ । ତା'ପରେ ଦୁର୍ଗମ ବଣ ପାହାଡ଼ ନଈ ନାଳ ପାର ହୋଇ ବହୁ କଷ୍ଟରେ ଆଗେଇଲେ । ମତ୍ସ୍ୟ ଦେଶରେ ପହଞ୍ଚିବା ବେଳକୁ ଶ୍ରାନ୍ତ କ୍ଳାନ୍ତ ପାଞ୍ଚାଳୀଙ୍କର ପାଦ ଆଉ ଚଳୁ ନଥାଏ । ଅନତି ଦୂରରେ 'ବିରାଟ' ନଗର । ନିକଟରେ ଏକ ଶ୍ମଶାନ ପୀଠ । ସେଠାରେ ଦେଖିବାକୁ ପାଇଲେ ଏକ ବିରାଟ ଉଚ୍ଚ ଶମୀ ବୃକ୍ଷ ।

ଯୁଧିଷ୍ଠିର କହିଲେ, ଆମ ହାତରେ ଧନୁ ଓ ଅନ୍ୟାନ୍ୟ ଅସ୍ତ୍ର ଶସ୍ତ୍ର ଦେଖି ଅନ୍ୟମାନେ ନିଶ୍ଚୟ ଚିହ୍ନି ପାରିବେ । ଏସବୁକୁ ତ୍ୟାଗ କରିବାକୁ ହେବ । ଅର୍ଜ୍ଜୁନ କହିଲେ, ଏହି ବିଶାଳ ଶମୀ ବୃକ୍ଷର କୋଟରରେ ଆମେ ଏସବୁକୁ ରଖିଦେଇ ପାରିବା ।''

କଥାଟି ସବୁରି ମନକୁ ପାଇଲା । ସମସ୍ତେ ନିଜ ନିଜର ଧନୁକୁ ଗୁଣମୁକ୍ତ କରି ନକୁଳଙ୍କୁ ଦେଲେ । ନକୁଳ ଧନୁତୀର, ଖଡ୍ଗ ପ୍ରଭୃତି ଏକାଠି କରି ବାନ୍ଧି, ଶମୀବୃକ୍ଷର ଉଚ୍ଚରେ ଥିବା କୋଟର ଭିତରେ ଏପରି ଭାବରେ ଲୁଚାଇ ରଖିଲେ, ଯାହାକି ଅନ୍ୟର ଦୃଷ୍ଟିଗୋଚର ହେବ ନାହିଁ । ସୂର୍ଯ୍ୟତାପ, ବର୍ଷା, କାକର ପ୍ରଭୃତିରୁ ରକ୍ଷା ମିଳିବ । ବନ୍ଧନ ଏପରି ଶକ୍ତଥିଲା ଯେ ଫିଟିଯିବାର ଆଶଙ୍କା ଆଦୌ ନଥିଲା ।

ଯୁଧିଷ୍ଠିର, ଦ୍ରୌପଦୀ ଓ ଭାଇମାନଙ୍କ ଗହଣରେ ଯାଇ ଦୁର୍ଗା ଦେବୀଙ୍କୁ ଦର୍ଶନ କଲେ । ଭାବ ବିହ୍ୱଳ କଣ୍ଠରେ କହିଲେ, ''ମା ଭଗବତୀ ! ତୁମେ ଦୁର୍ଗମ ଦୁଃଖରୁ ପ୍ରାଣୀକୁ ନିସ୍ତାର କର ବୋଲି ତୁମକୁ ଦୁର୍ଗା କୁହାଯାଏ । ମହିଷାସୁରକୁ ସଂହାର କରି, ତୁମେ ତିନିଲୋକରେ ଶାନ୍ତି ସ୍ଥାପନ କରିଥିଲି ବୋଲି, ମହିଷମର୍ଦ୍ଦିନୀ । ବିଶ୍ୱ ବ୍ରହ୍ମାଣ୍ଡର ମଙ୍ଗଳ, କାରିଣୀ । ମୁଁ ରାଜ୍ୟ ହରା ହୋଇ ଦୁର୍ଗମ ଦୁଃଖ ଭିତରେ ବିଚରଣ କରୁଛି । ହେ ମା' ବରଦେ ! ଆପଣଙ୍କୁ ମୋର କୋଟି କୋଟି ନମସ୍କାର । ମୁଁ ଆପଣଙ୍କର ଶରଣାପନ୍ନ, ଶରଣାଗତର ରକ୍ଷାକାରିଣୀ ଆପଣ, ମୋର ଦୁଃଖ ତାପ ମୋଚନ କରନ୍ତୁ ।''

ଯୁଧିଷ୍ଠିରଙ୍କ ଭକ୍ତିପୂତ ସ୍ତୁତିରେ ବରପ୍ରଦାୟିନୀ ମା ଦୁର୍ଗା ସନ୍ତୁଷ୍ଟ ହୋଇ ତାଙ୍କୁ ଦର୍ଶନ ଦେଲେ ଓ ଆଶୀର୍ବାଦ ଦେଇ କହିଲେ, ତୁମର ଅଜ୍ଞାତବାସ ନିର୍ବିଘ୍ନରେ ପରିସମାପ୍ତ ହେବ । ତୁମର ଛଦ୍ମରୂପକୁ କେହି ଅବିଶ୍ୱାସ କରିବେନାହିଁ । କୌରବମାନେ କିମ୍ୱା ଅନ୍ୟ କେହି ତୁମକୁ ଚିହ୍ନି ପାରିବେନାହିଁ । ଭବିଷ୍ୟତରେ ତୁମେ ଶତ୍ରୁ ସଂହାର କରି ଅଖଣ୍ଡ ରାଜ୍ୟ ଭୋଗ କରିବ । ଏହା କହି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । ଯୁଧିଷ୍ଠିର ଏକ ସନ୍ନ୍ୟାସୀ ବ୍ରାହ୍ମଣ ବେଶ ଧାରଣ କଲେ । ପୀତ ବସ୍ତ୍ର ପରିଧାନକରି, ସାର, ପଶାକାଠି ଓ ପାଲିକୁ ଲୁଗା କାନିରେ ବାନ୍ଧି, କାଖରେ ଜାକିଲେ । ତା'ପରେ ପହଞ୍ଚିଲେ ବିରାଟ ରାଜାଙ୍କ ରାଜ ସଭାରେ । ରାଜା ତାଙ୍କର ରାଜକୀୟ ଚେହେରା ଦେଖି ପଚାରିଲେ, ''ହେ ବପୁଷ୍ମାନ୍ ! ତୁମେ ଜଣେ ରାଜା,କିମ୍ୱା ଗନ୍ଧର୍ବ ପରି ଦେଖାଯାଉଛ । ନିଜର ପ୍ରକୃତ ପରିଚୟ ଦିଅ ଓ ଆଗମନର କାରଣ ଜଣାଅ ।''

ଯୁଧିଷ୍ଠିର ନମ୍ର ନମିତ ହୋଇ ଶାନ୍ତ ମଧୁର କଣ୍ଠରେ କହିଲେ, ''ହେ ମତ୍ସ୍ୟ ନରପତି ! ମୁଁ ଏକ ଶାସ୍ତ୍ରଜ୍ଞ ବ୍ରାହ୍ମଣ । ଦୁର୍ଭାଗ୍ୟର ଶିକାର ହୋଇ ମୁଁ ଆଜି ସର୍ବହରା ସାଜିଛି । ମୁଁ ଯକ୍ଷ ନୁହେଁ କି ଗନ୍ଧର୍ବ ନୁହେଁ, ସାମାନ୍ୟ ମନୁଷ୍ୟମାତ୍ର । ଅବସ୍ଥାଚକ୍ରରେ ପଡ଼ି ଆଶ୍ରୟ ଭିକ୍ଷାକରିବାକୁ ଆସିଛି । ମୋତେ ଆପଣ କୌଣସି କାର୍ଯ୍ୟରେ ନିଯୁକ୍ତ କରନ୍ତୁ ।

ବିରାଟ ରାଜା ଆମୋଦିତ ହୋଇ କହିଲେ, ''ହେ ବିପ୍ର, ନିଜର ନାମ ଗୋତ୍ର ଓ ଦକ୍ଷତାର ସୂଚନା ଦିଅନ୍ତୁ ।''

''ମୋ ନାମ 'କଙ୍କ' ଧର୍ମରାଜ ଯୁଧିଷ୍ଠିରଙ୍କର ମୁଁ ପରମ ବନ୍ଧୁ ଥିଲି । ପଶାଖେଳରେ ମୋର କିଛିଟା ଦକ୍ଷତା ଅଛି ଓ ତାଙ୍କ ସହିତ ମୁଁ ପଶାଖେଳୁଥିଲି । ମୁଁ ମଧ୍ୟ ଜ୍ୟୋତିଷ ବିଦ୍ୟା ଜାଣେ । ବେଦ ବେଦାନ୍ତ ଓ ଶାସ୍ତ୍ର ଆଲୋଚନାରେ ମୁଁ ଆପଣଙ୍କୁ ଆନନ୍ଦ ଦେଇପାରିବି । ଯୁଧିଷ୍ଠିର ରାଜ୍ୟହରା ହେବାପରେ ମୁଁ ଦୁର୍ଦ୍ଦଶା ଭୋଗୁଛି ।''

ରାଜା ଖୁସି ହୋଇ କହିଲେ, ''ମହାତ୍ମା ଯୁଧିଷ୍ଠିରଙ୍କର ଜଣେ ବ୍ୟକ୍ତିଗତ ବନ୍ଧୁ, ମୋ ପାଖକୁ ଆସିବାକୁ ଯେ ସିଦ୍ଧାନ୍ତ ନେଲେ, ତାହା ମୋ ପାଇଁ ଗୌରବର କଥା । ଆପଣ ମୋର ପ୍ରଧାନ ରାଜ ସଦସ୍ୟ ଓ ମୁଖ୍ୟ ଉପଦେଷ୍ଟା ଭାବରେ କାମକରନ୍ତୁ । ଆପଣ ମୋର ସଖା ରୂପେ ଏହି ରାଜ ପ୍ରାସାଦରେ ରହନ୍ତୁ ।''

ଏହାପରେ ଭୀମ ଏକ ପାଚକ ବେଶରେ ଆସି ରାଜାଙ୍କୁ ସାକ୍ଷାତ କଲେ ଏବଂ କହିଲେ, ''ହେ ନରପତି ! ମୋ ନାମ 'ବଲ୍ଲବ' । ରାଜକୀୟ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରିବାରେ ମୁଁ ଧୁରନ୍ଧର । ମୁଁ ରାଜା ଯୁଧିଷ୍ଠିରଙ୍କ ପାକଶାଳାରେ ପ୍ରଧାନ ପାଚକ ଥିଲି । ମୋ ଦ୍ଵାରା ପ୍ରସ୍ତୁତ ଅନ୍ନ ବ୍ୟଞ୍ଜନର ସ୍ଵାଦୁ ଆନନ୍ଦ ଦେଉଥିଲା । ଆପଣ ଦୟାକରି ମୋର କର୍ମ ସଂସ୍ଥାନ କରନ୍ତୁ । ମୁଁ ମଧ୍ୟ ମତ୍ସ୍ୟ ଦେଶର ମଲ୍ଲମାନଙ୍କ ସହିତ ଲଢ଼ି, ଆପଣଙ୍କୁ ଆନନ୍ଦ ଦେବି । ମଦମତ୍ତ ଅଶ୍ଵ ଓ ଗଜମାନଙ୍କ ସହିତ ମଧ୍ୟ ଲଢ଼ି ପାରିବି । ରାଜ ସେବାରେ ମୋ ଜୀବନ ବିତିଛି, ରାଜସେବା ପାଇଁ ମୁଁ ଆସିଛି, ଆପଣ ମୋତେ ପ୍ରଧାନ ପାଚକରୂପେ ସେବା କରିବାର ସୁଯୋଗ ଦିଅନ୍ତୁ ।''

ରାଜା ବିରାଟ ତାଙ୍କର ପ୍ରାର୍ଥନା ପୂରଣ କରି ପ୍ରଧାନ ସୂପକାର ଭାବରେ ତାଙ୍କୁ ପାକଶାଳାରେ ନିଯୁକ୍ତି ଦେଲେ । ଭୀମଙ୍କର ଆନନ୍ଦ କହିଲେ ନସରେ । ଏଣିକି ସୁବିଧାରେ ସମସ୍ତଙ୍କ ପାଇଁ ଖାଦ୍ୟ ବ୍ୟବସ୍ଥା ହୋଇଗଲା । ବଡ଼ ଚିନ୍ତା ଦୂର ହେଲା ।

ରାଜମହିଷୀ ସୁଦେଷ୍ଣା ରାଜବାଟୀର ଉପର ମହଲାରେ ପଦଚାରଣ କରୁଥିଲେ । ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ଏକ ମଳିନ ବସନା ମୁକ୍ତକେଶା ସ୍ତ୍ରୀ ଉପରେ । ସେ ଥିଲା ପରମ ରୂପବତୀ । ତାକୁ ଅନ୍ତଃପୁରକୁ ଡାକି ଏପରି ନିସଙ୍ଗ ହୋଇ ବୁଲିବାର କାରଣ ପଚାରିଲେ ।

ଦ୍ରୌପଦୀ କହିଲେ, ''ଦେବି ! ମୁଁ ଏକ ସୈରିନ୍ଧ୍ରୀ । ରାଜ ମହିଷୀଙ୍କର ସେବିକା ମାତ୍ର । କେଶପାଶ ରଚନା, ସୁଗନ୍ଧ ଲେପନ, ମାଳାରଚନା ଓ ଅନ୍ୟାନ୍ୟ ମଣ୍ଡନ କଳାରେ ମୁଁ ନିପୁଣତା ହାସଲ କରିଛି । ମୁଁ ଥିଲି, ଯୁଧିଷ୍ଠିରଙ୍କ ପାଟରାଣୀ ଦ୍ରୌପଦୀଙ୍କ ଅନ୍ତଃପୁରିକା । ସେମାନେ ରାଜ୍ୟ ହରା ହେବା ପରେ, ମୋତେ ଏ ଦୁର୍ଦ୍ଦଶା ଭୋଗ କରିବାକୁ ପଡୁଛି । ଦୟାକରି ଆପଣ ମୋତେ ଆପଣଙ୍କର ବ୍ୟକ୍ତିଗତ ସୈରିନ୍ଧ୍ରୀ ରୂପେ ପାଖରେ ରଖିଲେ, ଏ ନିରାଶ୍ରୟାକୁ ଆଶ୍ରାମିଳିବ । ସେ ମଧ୍ୟ ପାଟରାଣୀଙ୍କ ସେବାକରି ଆନନ୍ଦ ପାଇବ । ଦେଖିବେ, ମୋର ସେବା ରାଣୀମା'ଙ୍କୁ କେତେ ଆନନ୍ଦ ଦେବ !''

ଆଚ୍ଛା, ତୁମର ନାଁ କଣ ?

''ମୋ ନାଁ 'ମାନିନୀ' । କୃଷ୍ଣ ପ୍ରେୟସୀ ସତ୍ୟଭାମା ମୋତେ ସେ ନାଁ ଦେଇଛନ୍ତି । ମୁଁ ମଧ୍ୟ କିଛି ଦିନ ତାଙ୍କର ପରିଚାରିକା ଥିଲି ।''

'' ମୋର ରଖିବାର ଆପତ୍ତି ନାହିଁ ଯେ, ତମର ଏଇ ରମଣୀୟ ରୂପର ଆକର୍ଷଣୀ ମୋତେ ଅସୁବିଧାରେ ପକାଉଛି । ଅନ୍ୟମାନେ ଯେ ତମପ୍ରତି ଆକର୍ଷିତ ନହେବେ, କହି ହେବନି । ଏଥିପାଇଁ ତ କିଛି ପ୍ରତିକାର ନାହିଁ । ସୁନ୍ଦରୀ ନାରୀର ସମସ୍ୟା ସବୁବେଳେ ଅଧିକ ।''

''ମୁଁ ଏକ ବିବାହିତ ନାରୀ । ମୋର ଗନ୍ଧର୍ବ ସ୍ୱାମୀ ଅଛନ୍ତି । ଏକ ବିବାହିତା ନାରୀ ପ୍ରତି ଲୋଲୁପ ଦୃଷ୍ଟି, ରାଜପୁରୀର ପୁରୁଷମାନେ ପକାଇବେ କାହିଁକି । ତା'ପରେ ମୁଁ ପାଟରାଣୀଙ୍କର ସୈରିନ୍ଧ୍ରୀ ହିସାବରେ ସମ୍ମାନିତା ହେଲେ, ଅନ୍ୟମାନଙ୍କର ନିଶ୍ଚୟ ସମ୍ମାନ ଓ ଭୟ ରହିବ ।''

ସୁଦେଷ୍ଣା ଖୁସିହୋଇ ତାଙ୍କୁ ନିଜର ପରିଚାରିକା ରୂପେ ନିଯୁକ୍ତ କଲେ । ଗୋଟାଏ ବିରାଟ ସମସ୍ୟାର ସମାଧାନ ହୋଇଗଲା । ନକୁଳ ଓ ସହଦେବ ମଧ୍ୟ ଅନୁରୂପ ଢ଼ଙ୍ଗରେ ଅଶ୍ୱାଧ୍ୟକ୍ଷ ଓ ଗୋପାଳକ ଭାବରେ ନିଯୁକ୍ତ ହେଲେ । ଏଥିପାଇଁ ସେମାନଙ୍କୁ ବିରାଟ ରାଜାଙ୍କ ପାଖରେ ଦକ୍ଷତାର ପ୍ରମାଣ ଦେବାକୁ ପଡ଼ିଥିଲା । ନକୁଳ 'ଗ୍ରନ୍ଥିକ' ନାମରେ ଓ ସହଦେବ 'ତଂନ୍ତ୍ରପାଳ' ନାମରେ ପରିଚିତ ହେଲେ ।

ସବୁଠାରୁ କୌତୂହଳପୂର୍ଣ୍ଣ ଦେଖାଯାଉଥିଲେ ନାରୀବେଶରେ ଅର୍ଜୁନ । ଦୀର୍ଘକେଶ, କର୍ଣ୍ଣରେ କୁଣ୍ଡଳ, ବାଜୁବନ୍ଧ ଓ ଶଙ୍ଖବଳୟ ଦ୍ୱାରା ସେ ସୁନ୍ଦର ଦେଖାଯାଉଥାନ୍ତି । ବେଶ ପରିପାଟୀରେ ପୁରୁଷ ଓ ନାରୀର ମିଶ୍ରରାଗ । ସେ ରାଜାଙ୍କୁ ନିଜର ପରିଚୟ ଦେଇ କହିଲେ, ''ହେ ରାଜନ୍ ! ମୁଁ ନୃତ୍ୟ, ଗୀତ, ବାଦ୍ୟରେ ପାରଙ୍ଗମ । ମୁଁ ପୂର୍ବରୁ ପଞ୍ଚାଳ ରାଜକନ୍ୟା ପାଞ୍ଚାଳୀଙ୍କୁ ନୃତ୍ୟ, ସଂଗୀତ ଶିକ୍ଷା ଦେଉଥିଲି । ସେ ହସ୍ତିନାର ରାଜବଧୂ ହୋଇ ଆସିବା ବେଳେ ମୋତେ ସାଥିରେ ନେଇ ଆସିଥିଲେ । ମୁଁ ନୃତ୍ୟ କରି, ସଂଗୀତଗାନ ଆଉ ବୀଣା ବାଦନରେ ତାଙ୍କୁ ଆନନ୍ଦ ଦେଉଥିଲି । ସେମାନେ ବଣକୁ ଆସିବାପରେ ମୁଁ ରାଜପୁରୀରେ ଅଲୋଡ଼ା ହୋଇଗଲି । ଆପଣ ମୋତେ ରାଜକନ୍ୟାଙ୍କ ନୃତ୍ୟ ଗୁରୁ ରୂପେ ନିଯୁକ୍ତ କରନ୍ତୁ । ମୋ ନାଁ 'ବୃହନ୍ନଳା' ।

'ରାଜା ସନ୍ତୁଷ୍ଟ ହୋଇ ରାଜକନ୍ୟା ଉତ୍ତରା ଓ ଅନ୍ୟାନ୍ୟ କୁମାରୀମାନଙ୍କୁ ନୃତ୍ୟଶିକ୍ଷା ଦେବାକୁ ବୃହନ୍ନଳାଙ୍କୁ ଦାୟିତ୍ୱ ଦେଲେ ।

## ।। କୀଚକ ବଧ ।।

ବିରାଟ ରାଜାଙ୍କ ରାଜପୁରୀରେ ପାଣ୍ଡବମାନେ ସୁରକ୍ଷିତ ହୋଇ ସମୟ ଅତିବାହିତ କଲେ । ସମସ୍ତଙ୍କ କାର୍ଯ୍ୟରେ ରାଜା ସନ୍ତୁଷ୍ଟ ଥିଲେ । ଯୁଧିଷ୍ଠିର ଶାସନ କାର୍ଯ୍ୟରେ ବିରାଟ ରାଜାଙ୍କର ମାର୍ଗଦର୍ଶକ ଥିଲେ । ଦ୍ରୌପଦୀ ସବୁଠାରୁ କଷ୍ଟକର ସମୟ ଭିତରେ ଗତିକରୁଥାନ୍ତି । ଶତ ଶତ ପରିଚାରିକା ପରିବୃତ୍ତା ଥିଲେ ପାଞ୍ଚାଳୀ । ଆଜି ରାଣୀ ସୁଦେଷ୍ଣାଙ୍କ ପାଇଁ ସେ ଚନ୍ଦନ ଘୋରୁଛନ୍ତି । ତାଙ୍କ ପଲ୍ଲବ କୋମଳ ହାତ ଦୁଇଟିରେ ବିଣ୍ଡି ବସିଗଲାଣି । ଏହାହିଁ ତାଙ୍କ ଭାଗ୍ୟର ଗତି । ଧର୍ମରାଜ ଯୁଧିଷ୍ଠିରଙ୍କ ଖିଆଲି ମନର ଖେଳ ପାଇଁ ତାଙ୍କୁ ଆଜି ଏ ପରାଭବ ଭୋଗକରିବାକୁ ପଡୁଛି ।

କୀଚକ, ବିରାଟ ରାଜାଙ୍କର ଶ୍ୟାଳକ, ରାଣୀ ସୁଦେଷ୍ଣାଙ୍କର ଭାଇ । ସେଥିଲେ ରାଜାଙ୍କର ସେନାଧକ୍ଷ ଓ ଅତ୍ୟନ୍ତ ପ୍ରତାପଶାଳୀ। ବିରାଟ ରାଜାଙ୍କ ପାଇଁ ସେଥିଲେ ଶକ୍ତିର ଏକ ଦୁରନ୍ତ ଦୁର୍ଗ । ତାଙ୍କ ପାଇଁ ରାଜା ନିଷ୍କଣ୍ଟକ ରାଜ୍ୟ ଭୋଗ କରୁଥିଲେ । ପ୍ରବାଦ ଅଛି, ''କୀଚକ ବାହୁବଳେ, ବିରାଟ ରାଜା''।

ଅଜ୍ଞାତ ବାସ ପୂର୍ଣ୍ଣ ହେବାକୁ ଅଛି ଖୁବ୍ ଅଳ୍ପଦିନ । ଦିନେ କୀଚକ ସୁଦେଷ୍ଣାଙ୍କ ଅନ୍ତଃପୁରରେ ଦ୍ରୌପଦୀଙ୍କର ଅଲୌକିକ ରୂପଲାବଣ୍ୟଦେଖି ବିମୋହିତ ହୋଇଗଲେ । ପ୍ରଥମ ଦର୍ଶନରେ ସେ କାମ ବାଣରେ ଜର୍ଜରିତ ହେଲେ । ତାଙ୍କର ଅଙ୍ଗ ସଙ୍ଗ ଲାଭପାଇଁ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲେ । ସେ ନିଜର ହିତାହିତ ଜ୍ଞାନ ହରାଇ ତାଙ୍କ ପାଖକୁ ଯାଇ କହିଲେ, ''ହେ ରୂପମୟୀ ଚନ୍ଦ୍ରମା ! ମୁଁ ତୁମର ଅଧର ଚନ୍ଦ୍ରିକା ପାନ କରିବାକୁ ଚାହେଁ । ତୁମପାଇଁ ଏ ପରିଚାରିକା ବୃତ୍ତି ଶୋଭାପାଏନାହିଁ । ତୁମେ ମୋର ଅଙ୍କ ମଣ୍ଡନ କରି ରାଜରାଣୀ ରୂପେ ଏ ବିରାଟ ରାଜ୍ୟ ଭୋଗକର । ଶତଶତ ଦାସୀ ପରିଚାରିକା ତୁମର ପଦ ସେବାରେ ନିଯୁକ୍ତ ହେବେ । ଆସ, ମୋର ସମ୍ଭୋଗ ଶାଳାକୁ ଅଭିସାର କର ।''

ସୁଦେଷ୍ଣା ଅନେକ ବୁଝାଇ ତାଙ୍କୁ ବାରଣ କଲେ । କିନ୍ତୁ କାମ ପୀଡ଼ିତ ବ୍ୟକ୍ତି କାହାରି ଉପଦେଶ ଶୁଣେନାହିଁ । ଦ୍ରୌପଦୀ ଅନ୍ୟ ଉପାୟ ନଦେଖି ତାଙ୍କୁ କହିଲେ, ''ହେ ଭଦ୍ର ! ମୁଁ ଆପଣଙ୍କର ପଦ ମର୍ଯ୍ୟାଦା କଥାଜାଣେ । ଆପଣ ତାହା ଲଂଘନ କରିବା ଉଚିତ୍ ନୁହେଁ । ବିଶେଷତଃ ମୁଁ ଜଣେ ବିବାହିତାନାରୀ, ମୋ ପ୍ରତି ପ୍ରଲୁବ୍ଧ ହେବା ଯେପରି ଅଶୋଭନୀୟ, ସେପରି ବିପଜ୍ଜନକ ମଧ୍ୟ । ମୋର ଦୁର୍ଦାନ୍ତ ଗନ୍ଧର୍ବ ସ୍ୱାମୀ ଏପ୍ରକାର ଅଶୋଭନୀୟ ଆଚରଣ କଥା ଶୁଣିଲେ, ପ୍ରାଣ ସଂହାର କରିବାକୁ ମଧ୍ୟ ପଛେଇବେ ନାହିଁ । ଛାର ଗୋଟାଏ ନୀଚ କୁଳଜାତ ଦାସୀ ଆଡ଼କୁ ମତ୍ସ୍ୟରାଜ୍ୟର ସେନାପତି ପାପ ଦୃଷ୍ଟି ପକାଇବା ଉଚିତ ନୁହେଁ । ଏ ଅକୀର୍ତ୍ତିର ବୋଝ ମୁଣ୍ଡ ଉପରକୁ ନିଅନ୍ତୁ ନାହିଁ । ନିଜର ପ୍ରାଣମୟୀ ପତ୍ନୀଠାରୁ ଏ ସଂସାରରେ ଆଉକେହି ଅଧିକ ଅନୁରାଗମୟୀ ନୁହେଁ । ଧର୍ମରକ୍ଷା ପାଇଁ ଆପଣ ବିବେକବାନ୍ ହୁଅନ୍ତୁ ।'' ଏହା କହି ସୈରିନ୍ଧ୍ରୀ ମାନିନୀ ଭିତରକୁ ଚାଲିଗଲେ ।

ଫେରିଆସିଲେ କୀଚକ ।

ମନ ମଧ୍ୟରେ ଗଭୀର ପ୍ରତିକ୍ରିୟା । ଦୁର୍ଭାବନାର ଆଲୋଡ଼ନରେ ରାତିସାରା ଆଖି ପତା ବି ପଡ଼ିନି । ସୈରିନ୍ଧ୍ରୀ ନିଶ୍ଚୟ ଅସାମାନ୍ୟା । ପାପ ପୁଣ୍ୟର ତରାଜୁରେ ପ୍ରୀତିର ତଉଲ ହୁଏନାହିଁ । ପ୍ରୀତିରେ ପ୍ରୀତିର ତଉଲ । ସୈରିନ୍ଧ୍ରୀ ନିଶ୍ଚୟ ଆତ୍ମରକ୍ଷା ମୂଳକ କଥା ସବୁ କହିଛି । ନୀତିକଥାରେ ଭରି ରହିଛି ଆତ୍ମ ପ୍ରତାରଣାର ଅଭିନୟ । ନାରୀ ସେ । ମୋର ପ୍ରତିପତ୍ତିକୁ ପ୍ରତ୍ୟାଖ୍ୟାନ କରିବ ନାହିଁ । ପ୍ରୀତିର ତରଳ ପାରଦକୁ ମୋତେ ହାତରେ ଧରିବାକୁ ହେବ । ଧରା ନଦେବା ତାର ଧର୍ମ ।

ଦ୍ରୌପଦୀ ରାତ୍ରିର ଗଭୀର ଅନ୍ଧକାର ମଧ୍ୟରେ ଯାଇ ଭେଟିଛନ୍ତି ଭୀମଙ୍କୁ । କୀଚକର ଦୁର୍ବ୍ୟବହାର ବିଷୟରେ ସେ ଟିକିନିଖି ସବୁକଥା କହିଛନ୍ତି । ଭୀମ କହିଛନ୍ତି, ''ତୁମେ ବ୍ୟସ୍ତ ହୁଅନାହିଁ । ଶୁଭ ମୁହୂର୍ତ୍ତକୁ ଅପେକ୍ଷା କର । ମୁଁ ନିଶ୍ଚୟ ପ୍ରତିଶୋଧ ନେବି ।''

ପରଦିନ, କୀଚକ ରାଣୀ ସୁଦେଷ୍ଣାଙ୍କ ପାଖକୁ ଆସି, ନିଜର ଗଭୀର ମର୍ମବେଦନା କଥା କହିଲେ । ଅନୁରୋଧ କଲେ ସୈରିନ୍ଧ୍ରୀକୁ ତାଙ୍କ ହାତରେ ଅର୍ପଣ କରିଦେବାକୁ । ସୁଦେଷ୍ଣା ଯେତେ ବୁଝାଇଲେ ମଧ୍ୟ ସେ ବୁଝିଲେ ନାହିଁ । ବରଂ କହିଲେ, ''ତୁମେ ଯଦି ସୈରିନ୍ଧ୍ରୀକୁ ମୋ ହାତରେ ନଦେବ, ତା'ହେଲେ ମୁ ମୋ ଜୀବନ ତ୍ୟାଗ କରି ଦେବି । ମୋର ଉପକାରକୁ ମନେ ପକାଇ ସୈରିନ୍ଧ୍ରୀକୁ ଅର୍ପଣ କର । ତା'ବିନା ମୋ ଜୀବନ ତୁଚ୍ଛ ।''

ସୁଦେଷ୍ଣା ଅନ୍ୟ ଉପାୟ ନଦେଖି ବାଧ୍ୟ ହୋଇ ସେ ପ୍ରସ୍ତାବରେ ରାଜିହେଲେ । ସ୍ଥିର ହେଲା, କୀଚକ ଏକ ଉତ୍ସବର ଆୟୋଜନ କରିବେ । ସୁମିଷ୍ଟ ଖାଦ୍ୟ ପାନୀୟର ବ୍ୟବସ୍ଥା ହେବ । ସୈରିନ୍ଧ୍ରୀକୁ ପଠାଯିବ କୀଚକଙ୍କ ପାଖକୁ, ପାନୀୟ ନେଇ ଆସିବାପାଇଁ । ମଧୁର ମୁହୂର୍ତ୍ତରେ କୀଚକ ନିଜର ଅଭିଳାଷ ପୂର୍ଣ୍ଣ କରିବାର ସୁଯୋଗ ପାଇବେ ।

ତାହାହିଁ ହେଲା, ତା'ପରଦିନ ସୁଦେଷ୍ଣା, ମାନିନୀ ସୈରିନ୍ଧ୍ରୀକୁ ପାଖକୁ ଡାକି, ଅନୁରୋଧ କଣ୍ଠରେ କହିଲେ, ''ଏଇ ସୁବର୍ଣ୍ଣ ଚଷକଟି ନେଇ କୀଚକଙ୍କ ଘରକୁ ଯାଅ । ମୋ ପାଇଁ କିଛି ସୁମିଷ୍ଟ ପାନୀୟ ନେଇ ଆସିବ ।''

ଦ୍ରୌପଦୀ ସୁଦେଷ୍ଣାଙ୍କର ନିଭୃତ କୌଶଳ ବୁଝିପାରି ବିନୀତ କଣ୍ଠରେ କହିଲେ, ''ହେ ମହାରାଣି ! ଆପଣତ କୀଚକଙ୍କର ନିର୍ଲ୍ଲଜ ବ୍ୟବହାର କଥା ଜାଣନ୍ତି । ମୁଁ ତାଙ୍କ ଘରକୁ ଯିବା ଆଦୌ ନିରାପଦ ନୁହେଁ । ଆପଣଙ୍କର ଏତେ ଦାସୀ ପରିଚାରିକା ଅଛନ୍ତି, ଅନ୍ୟ କାହାକୁ ପଠାଇପାରନ୍ତି । ଏପ୍ରକାର ଛୋଟ କାମ କରିବାକୁ ମୋତେ ଦେବେନି ବୋଲି ମୁଁ ତ ପ୍ରଥମରୁ ରାଣୀମାନଙ୍କୁ ପ୍ରାର୍ଥନା କରିଥିଲି ।''

ସୁଦେଷ୍ଣା କହିଲେ, ''ତୁମେ ମୋର ପ୍ରିୟସଖୀ, ମୁଁ ମୋର ପରିଚାରିକା ବୋଲି କେବେ ମଧ୍ୟ ଭାବିନି । ପାନୀୟ ଆଣିବା ପାଇଁ ମୋର ବିଶ୍ୱସ୍ତ ବାନ୍ଧବୀ ଭାବି ପଠାଉଛି । ଆଶା, ତୁମେ ତାହା ପାଳନ କରିବ । କୀଚକଙ୍କୁ ମୁଁ ବାରଣ କରିଛି । ତୁମେ ନିଶ୍ଚିତରେ ଯାଅ । କିଛି ଅସୁବିଧା ହେବନି ।''

ଦ୍ରୌପଦୀ ଅଗତ୍ୟା ଉପାୟହୀନ ହୋଇ, ଧର୍ମ ଦେବତାଙ୍କୁ ସ୍ମରଣ କରି ସ୍ୱର୍ଣ୍ଣଚଷକ ସହ କୀଚକ ଘରକୁ ବାହାରିଲେ । କୀଚକ ଆବେଗର ସହିତ ଅପେକ୍ଷା କରିଥିଲେ । ସୈରିନ୍ଧ୍ରୀକୁ ଦେଖିଲା କ୍ଷଣି ଆନନ୍ଦରେ ବିହ୍ୱଳ ହୋଇଗଲେ । ମଧୁର କଣ୍ଠରେ କହିଲେ, ହେ ମାନବତୀ ମାନିନି ! ମୁଁ ତୁମର ଅପେକ୍ଷାରେ ଥିଲି । ମୋର ପରମ ସୌଭାଗ୍ୟ, ତୁମେ ଠିକ୍ ସମୟରେ ଉତ୍ସବ ମୁଖର ମୁହୂର୍ତ୍ତରେ ଆସି ପହଞ୍ଚିଛ ।''

ଦ୍ରୌପଦୀ ତ୍ରସ୍ତ ହରିଣୀ ପରି କମ୍ପିତ କଣ୍ଠରେ କହିଲେ, ''ହେ ଭଦ୍ର ! ମହାରାଣୀ ତୃଷାର୍ତ୍ତ । ଆପଣ ଶୀଘ୍ର ଏଇ ସୁବର୍ଣ୍ଣ ଚଷକରେ ମଧୁ ମଦିରା ଦିଅନ୍ତୁ । ମୁଁ ନେଇ ଶୀଘ୍ର ତାଙ୍କ ପାଖରେ ପହଞ୍ଚିବି ।''

କୀଚକ ଏକ କୁଟିଳ କଟାକ୍ଷ ହାଣି ମଦିରା ଭରା ପାତ୍ରଟିକୁ ନେବାପାଇଁ ଇଙ୍ଗିତ ଦେଲା । ସୈରିନ୍ଧ୍ରୀ ହାତ ବଢ଼ାଇଲାକ୍ଷଣି ସେ ଏକ କ୍ରୂର ହସ ହସି ହାତ ଧରି ପାଖକୁ ଟାଣି ନେଲେ । ସେ ନିଜର ସମସ୍ତ ଶକ୍ତି ଖଟାଇ ହାତ ଛିଞ୍ଚାଡ଼ି ଘରୁ ଦଉଡ଼ି ପଳାଇ ଆସିଲେ । କୀଚକ ମଧ୍ୟ ପକ୍ଷିଣୀ ପଛରେ ଛଞ୍ଚାଣ ପରି ଅନୁଧାବନ କଲେ । ସୌରିନ୍ଧ୍ରୀ ଦଉଡ଼ି ଦଉଡ଼ି ରାଜଦରବାରରେ ଆସି ପହଞ୍ଚିଗଲେ । କୀଚକ ତାଙ୍କର ମୁକ୍ତ କେଶ ଗୁଚ୍ଛକୁ ଭିଡ଼ି ଧରି ଗୋଇଠା ମାରି ଚିତ୍କାର କଲେ, ''ମୁଁ ତୋତେ ଛାଡ଼ିବି ନାହିଁ ।'' ସୈରିନ୍ଧ୍ରୀଙ୍କ ଶକ୍ତ ଧକ୍କାରେ ସେ ତଳେ ପଡ଼ିଗଲେ ।

ସୈରିନ୍ଧ୍ରୀ କହିଲେ ,''ହେ ରାଜନ୍ ! ଏହି ପାପିଷ୍ଠ କୀଚକର ଦୌରାତ୍ମ୍ୟତ ଆପଣ ଦେଖୁଛନ୍ତି । ମୋ' ପରି ଜଣେ ଅନ୍ତଃପୁର ବାସିନୀ ମହିଳାର ଅବସ୍ଥା ଯଦି ଆପଣଙ୍କ ସାମନାରେ, ଏଇଆ ହୁଏ, ତା'ହେଲେ ଅନ୍ୟମାନଙ୍କର ଅବସ୍ଥା କଣ ହେବ ବିଚାର କରନ୍ତୁ । ଯେଉଁ ରାଜ୍ୟରେ ନାରୀର ସମ୍ମାନ ନାହିଁ, ସେ ରାଜ୍ୟରେ ରାଜା ପାପ ପାହାଡ଼ ଉପରେ ବସି କେତେ ଦିନ ରାଜ୍ୟଭୋଗ କରିବେ । ମୁଁ ଆପଣଙ୍କର ସୁବିଚାର ଚାହେଁ ।''

ବିରାଟ ରାଜା ଏହି ଅସାମାନ୍ୟା ରୂପବତୀକୁ ଅନ୍ତଃପୁରର ପରିଚାରିକାବୋଲି ଜାଣି, ଏ ପ୍ରକାର ସ୍ପଷ୍ଟ ମତକୁ ପସନ୍ଦ କଲେ ନାହିଁ । ସେ କହିଲେ, ''ଏକପକ୍ଷର ଅଭିଯୋଗ ଶୁଣି କିଛି ବିଚାର କରାଯାଏ ନାହିଁ । ମୁଁ ଅପରପକ୍ଷର ଅଭିଯୋଗ ଶୁଣିବାପରେ ଯାହା କିଛି ବିଚାର କରିବି ।''

ସୈରିନ୍ଧ୍ରୀ କାତର ନୟନରେ ରାଜାଙ୍କୁ ଚାହିଁ, ସେପରି ଛିଡ଼ା ହୋଇଥାନ୍ତି । ଯୁଧିଷ୍ଠିର କହିଲେ, ହେ ସୈରିନ୍ଧ୍ରୀ ତୁମ କଥା ବିଚାର କରାଯିବ ବୋଲିତ ରାଜା କହିଲେ, ବର୍ତ୍ତମାନ ତୁମେ ଅନ୍ତଃପୁରକୁ ଚାଲିଯାଅ ।' ଏହାପରେ ସେ ଭିତରକୁ ଚାଲିଗଲେ ।

ସେତେବେଳେ ଭୀମ ଅନତି ଦୂରରେ ଛିଡ଼ା ହୋଇଥିଲେ । କ୍ରୋଧରେ ତାଙ୍କ ଆଖିଲାଲ ଦେଖାଯାଉଥିଲା । ସେ ଥରକୁ ଥର ଓଠ କାମୁଡୁ ଥିଲେ । ଭାବୁଥିଲେ ଏକାଥରକେ ରାଜା ବିରାଟ ଓ ତାଙ୍କର ପାପିଷ୍ଠ ସେନାପତି କୀଚକକୁ ଶେଷ କରି ଦିଅନ୍ତେ । ଯୁଧିଷ୍ଠିର ଭୀମଙ୍କର ପ୍ରତିକ୍ରିୟା ଠିକ୍ ଭାବରେ ବୁଝି ପାରୁଥିଲେ । ସେ ତାଙ୍କୁ ଲକ୍ଷ୍ୟ କରି କହିଲେ, ହେ ବଲ୍ଲଵ ! ତୁମର ଯଦି ପାକକ୍ରିୟପାଇଁ କାଠର ଆବଶ୍ୟକତା ଅଛି ତା' ହେଲେ ଏସବୁ ପୁଷ୍ପିତ ଗଛ ଗୁଡ଼ିକୁ ଏପରି ରୁକ୍ଷନୟନରେ ଚାହିଁଛ କାହିଁକି ? ରାଜପୁରୀ ବାହାରେ ଅନେକ ଶୁଖିଲା ଗଛ ଅଛି । ସେଠାରୁ କାଠ ସଂଗ୍ରହ କର ।''

ଭୀମସେନ ଯୁଧିଷ୍ଠିରଙ୍କ ଇଙ୍ଗିତ ବୁଝିପାରି ସେଠାରୁ ଚାଲିଗଲେ । ଯାହାଙ୍କ ଅନ୍ନରେ ସେମାନେ ବର୍ତ୍ତମାନ ପ୍ରତିପାଳିତ ତାଙ୍କର କିଛି କ୍ଷତିକରିବା ଉଚିତ ନୁହେଁ । ଅଜ୍ଞାତବାସର ଏଇ ଅନ୍ତିମ ପର୍ଯ୍ୟାୟରେ ଏପରି କିଛି କରିବା ଉଚିତ ନୁହେଁ, ଯାହା ପାଣ୍ଡବମାନଙ୍କର ପ୍ରକୃତ ପରିଚୟ ଦେବାରେ ସାହାଯ୍ୟ କରିବ ।

ଦ୍ରୌପଦୀ ଅନ୍ତଃପୁରକୁ ଫେରିଆସିଲେ । କାନ୍ଦି କାନ୍ଦି ତାଙ୍କ ମୁହଁ ଫୁଲି ଯାଇଥିଲା । ସୁଦେଷ୍ଣାଙ୍କୁ କୋହ କମ୍ପିତ କଣ୍ଠରେ ଯାହା ଘଟିଛି ସମସ୍ତ କଥା କହିଲେ । ସୁଦେଷ୍ଣା ଔପଚାରିକ ଢ଼ଙ୍ଗରେ ନିଜର ଦୁଃଖ ପ୍ରକାଶ କଲେ । ସେଥିରେ ବିଶେଷ କିଛି ଆନ୍ତରିକତା ନଥିଲା ।

ପ୍ରତିଶୋଧ ଚିନ୍ତାରେ ଜର୍ଜରିତା ଦ୍ରୌପଦୀଙ୍କର ରାତ୍ରିରେ ନିମିଷକ ପାଇଁ ମଧ୍ୟ ନିଦ ହେଲାନାହିଁ । ଗଭୀର ନିଦ୍ରାରେ ଶୋଇଛି ଅନ୍ତଃପୁର । ସେ ପାଦ ଚିପି ଚିପି ବାହାରି ଆସିଲେ ଭୀମଙ୍କର ଶୟନ କକ୍ଷକୁ । ସେତେବେଳକୁ ସେ ଗାଢ଼ ନିଦ୍ରାଭିଭୂତ । ଦ୍ରୌପଦୀଙ୍କ କ୍ରନ୍ଦନ ଶବ୍ଦରେ ତାଙ୍କର ନିଦ୍ରାଭାଙ୍ଗ ହେଲା । ଦ୍ରୌପଦୀ କହିଲେ, ''ହେ ଦ୍ୱିତୀୟ ପାଣ୍ଡବ ! କୀଚକ ପରି ପାପୀର କବଳରେ ପଡ଼ି ମୁଁ ଅସ୍ଥିର ହେଉଥିବା ସମୟରେ ତୁମେ ଆନନ୍ଦରେ ଶୋଇ ପାରିଛ କିପରି ? ମୁଁ ଚାହେଁ, ପ୍ରତିଶୋଧ..... ପ୍ରତିଶୋଧ ।''

ଭୀମ ଦ୍ରୌପଦୀଙ୍କ ଆଖିରୁ ଲୁହ ପୋଛି କୋହ ସମ୍ବରଣ କରିବାକୁ କହିଲେ । ''ମୁଁ ପ୍ରତିଶୋଧ ନେଇ ସାରନ୍ତିଣି ପାଞ୍ଚାଳୀ । ଭାଇ ଯୁଧିଷ୍ଠିରଙ୍କ ନିରବ ଇଙ୍ଗୀତରେ ମୁଁ ପଛେଇ ଯାଇଛି । ଆମେ ପଛେ ଧରା ପଡ଼ି ଯାଇଥାନ୍ତେ, ପୁଣି ବାରବର୍ଷ ବନବାସ ଦଣ୍ଡପଛକେ ଭୋଗିବାକୁ ପଡ଼ିଥାନ୍ତା କିନ୍ତୁ ଏତେବେଳକୁ ବିରାଟ ଓ କୀଚକର ମୁଣ୍ଡ ତଳେ ଗଡ଼ାଇ ଦେଇ ସାରିଥାନ୍ତି । ଆଜିର ପ୍ରତିଜ୍ଞା ପୂରଣ କରିବାକୁ ଯାଇ, ଦୁର୍ଯ୍ୟୋଧନ ଓ ଦୁଃଶାସନର ନିଧନ ପାଇଁ କରିଥିବା ପ୍ରତିଜ୍ଞା ପୂରଣକୁ, ପଛେଇ ଦେବାକୁ ମୁଁ ଉଚିତ ମନେ କରୁନାହିଁ ।''

ଦ୍ରୌପଦୀ କହିଲେ, ଧର୍ମରାଜାଙ୍କର ଅଧର୍ମ ଦ୍ୟୁତକ୍ରୀଡ଼ା ପାଇଁ ମୋତେ ଆଜି ଏତେ ଦୁଃଖ ଭୋଗ କରିବାକୁ ପଡୁଛି । ଯେଉଁ ହାତ ମା' କୁନ୍ତୀଙ୍କ ପାଇଁ ଦିନେ ଚନ୍ଦନ ଘୋରୁଥିଲା, ଆଜି ରାଣୀ ସୁଦେଷ୍ଣାଙ୍କର ଦାସୀ ଭାବରେ ଚନ୍ଦନ ଘୋରି ଘୋରି, ହାତ ପାପୁଲି ଫାଟି ଗଲାଣି । ଯନ୍ତ୍ରଣା ଅସହ୍ୟ ହୋଇ ନଥିଲେ, ମୁଁ ଏସବୁ କହିନଥାନ୍ତି । ଏସବୁ ଭାଗ୍ୟ ଦୋଷ । ଧର୍ମରାଜ ଯୁଧିଷ୍ଠିରଙ୍କୁ ଦୋଷ ଦେଇ କିଛି ଲାଭ ନାହିଁ । ବିରାଟ ରାଜା ଗୋଟାଏ କ୍ଲୀବ । ତା ରାଜପୁରୀରେ ରକ୍ତଚକ୍ଷା ବାଘଟା ମାତିଛି । ସେ ତାକୁ ସଂଯତ କରିବାକୁ ଅକ୍ଷମ । ଆଉ କେତେଟା ଦିନ ନିରାପଦରେ ଯେ ମୁଁ ଚଳି ପାରିବି, ସେ ଆଶା ମୋରନାହିଁ । ମୁଁ କେତେ ନିଜକୁ ଜଗିବି ?''

ଭୀମ ଦୁଃଖାତୁରା ଦ୍ରୌପଦୀଙ୍କୁ ଆଲିଙ୍ଗନ କରି ଆଶ୍ୱାସନା ଦେଇ କହିଲେ, ଆସନ୍ତା କାଲି ମୁଁ ମୋର ପ୍ରତିଜ୍ଞା ନିଶ୍ଚୟ ପୂରଣ କରିବି । କୌଶଳରେ ଏହାକୁ ସମ୍ପାଦନ କରିବାକୁ ହେବ । ନାରୀ ଲୋଭରେ

ଯେ ଥରେ ପାଦ ଖସାଇଛି ,ତାକୁ ଲାଭ ନକରିବା ପର୍ଯ୍ୟନ୍ତ ସେ ଥରକୁ ଥର ଆସିବ । କାଲି ସେ ଆସି ତୁମକୁ କିଛି କହିଲେ, ''ତୁମେ ନୃତ୍ୟମନ୍ଦିରରେ ରାତ୍ରିର ନିର୍ଜନତା ଭିତରେ ଭେଟିବା ପାଇଁ ତାକୁ ସଂକେତ ଦେବ । ମୁଁ ସେଠାରେ ନାରୀବେଶରେ ଅପେକ୍ଷା କରିଥିବି । ସେ ଆସିଲେ ସେଠାରେ ମୋର ତା' ସହିତ ଶୃଙ୍ଗାର ଚର୍ଚ୍ଚା ହେବ ।''

ଦ୍ରୌପଦୀ ନିଜର ଶୟନ କକ୍ଷକୁ ଫେରି ଆସିଲେ ।

ପରଦିନ କୀଚକ ପୁଣି ସୈରିନ୍ଧ୍ରୀଙ୍କ ପାଖକୁ ଆସି କହିଲେ; ଦେଖିଲତ, ଯେଉଁ ବିରାଟ ରାଜାଙ୍କ ପାଖରେ ତୁମେ ଗୁହାରି କରିଥିଲ, ସେ ମୋର କଣ କରି ପାରିଲେ ? ଏ ବିରାଟ ରାଜ୍ୟର ପ୍ରକୃତ ରାଜା ହେଉଛି ମୁଁ । ମୁଁ ଯାହା ଚାହିଁବି ତାହା କରିଦେବି । ତୁମେ ମୋର ଅଭିଳାଷ ପୂର୍ଣ୍ଣକର । ରାଜରାଣୀ ହୋଇ ଅସରନ୍ତି ସୁଖ ସୌଭାଗ୍ୟର ଅଧିକାରିଣୀ ହୁଅ ।''

ସୈରିନ୍ଧ୍ରୀ ଅଧରରେ ଲାସ୍ୟର ଲାଲିମା ମାଖି କହିଲେ, ଗୋଟିଏ ସର୍ତ୍ତରେ ମୁଁ ଆପଣଙ୍କରର ଅଭିଳାଷ ପୂର୍ଣ୍ଣ କରିବାକୁ ଚାହେଁ । ଆପଣ ପ୍ରତିଜ୍ଞା କରନ୍ତୁ ସେ ସର୍ତ୍ତ ପୂରଣ କରିବେ ।

କୀଚକ ଆନନ୍ଦରେ ମତୁଆଲା ହୋଇ ଉଠିଲେ । ଅନୁଭବ କଲେ ସତେ ଯେପରି ସ୍ୱର୍ଗର ଚାନ୍ଦ ଆଉ ନନ୍ଦନବନର ପାରିଜାତ ତାଙ୍କ ହାତକୁ ଚାଲିଆସିଛି । ଆନନ୍ଦ ଗଦ୍ ଗଦ୍ ହୋଇ କହିଲେ, '' ମୁଁ ସମସ୍ତ ସର୍ତ୍ତ ପୂରଣ କରିବାକୁ ପ୍ରସ୍ତୁତ । କୁହ, ତୁମେ କି ସର୍ତ୍ତ ରଖିବାକୁ ଚାହଁ ।''

''ମୋର ଏକମାତ୍ର ସର୍ତ୍ତ, ଆମର ଏଇ ପ୍ରଣୟ ପର୍ବ ସମ୍ପୂର୍ଣ୍ଣ ଭାବରେ ଗୋପନ ରହିବ । ଏଥିପାଇଁ ଆବଶ୍ୟକ ଏକ ନିର୍ଜ୍ଜନ ପ୍ରକୋଷ୍ଠ । ମୁଁ ଭାବୁଛି, ରାଜାଙ୍କର ନୃତ୍ୟ ମନ୍ଦିର ରାତ୍ରିରେ ନିର୍ଜ୍ଜନ ଥାଏ । ସେଠାରେ ମଧ୍ୟ ସୁସଜ୍ଜିତ ପଲଙ୍କ ଅଛି । ରାତ୍ରିରେ ଘନ ଅନ୍ଧକାର ମଧ୍ୟରେ ଆମେ ଦୁହେଁ ସଙ୍ଗସୁଖ ଉପଭୋଗ କରିବା । ମୁଁ ପ୍ରକାଶ୍ୟରେ ଆପଣଙ୍କର ଏକାନ୍ତ ହୋଇ ପାରିବିନାହିଁ । ମୁଁ ବିବାହିତା ନାରୀ ।''

କୀଚକ ଏ ପ୍ରସ୍ତାବରେ ଏକମତ ହେଲେ । ନିର୍ଦ୍ଦିଷ୍ଟ ସମୟରେ ଦ୍ରୌପଦୀଙ୍କ ସମାଗମ ପାଇଁ, ପରଦିନ ଅଭିସାର ପଥରେ ଅଗ୍ରସର ହେଲେ । ଅଙ୍ଗରାଗ ଓ ସୁଗନ୍ଧ ଲେପନରେ ଶରୀର ମହକିତ ହେଉଥିଲା । ଏହାପୂର୍ବରୁ ଭୀମ ନାରୀ ବେଶରେ ନୃତ୍ୟମନ୍ଦିରର ପଲଙ୍କ ଉପରେ ଶୟନ କରିଥିଲେ ।

ଶୋଇଥିବା ନାରୀଟିକୁ ମାନିନୀ ସୈରିନ୍ଧ୍ରୀ ଭାବି କୀଚକ ତାର ଶରୀର ସ୍ପର୍ଶ କଲାକ୍ଷଣି, ମହାବଳ ଭୀମ ତାକୁ ଆକ୍ରମଣ କଲେ । ଉଭୟଙ୍କ ମଧ୍ୟରେ ଭୀଷଣ ସଂଘର୍ଷ ହେଲା । ଭୀମଙ୍କର ବଜ୍ର ମୁଷ୍ଟି ପ୍ରହାରରେ କୀଚକଙ୍କରର ବକ୍ଷ ବିଦୀର୍ଣ୍ଣ ହେଲା ।ସେ ପ୍ରାଣତ୍ୟାଗ କଲେ । ଭୀମ କୀଚକର ଚୂର୍ଣ୍ଣ ବିଚୂର୍ଣ୍ଣ ଶରୀରକୁ ଏକାଠି ବାନ୍ଧି ଗୋଟିଏ ପିଣ୍ଡୁଳା କରିଦେଲେ । ତାପରେ ସେ ପାକଶାଳାକୁ ଚାଲିଯାଇ ବିଶ୍ରାମ ନେଲେ ।

ଆକସ୍ମିକ ଭାବରେ ଅନ୍ତଃପୁର ପ୍ରହରୀର ନିଦଭାଙ୍ଗିଗଲା । ସେ ଅନୁଭବ କଲା, ସତେଯେପରି କିଛି ଗୋଟାଏ ବ୍ୟତିକ୍ରମ ହୋଇ ଯାଇଛି । ତା' ଆଖି ଘୂରିଆସିଲା ଚାରିଆଡ଼େ । ଏ କଣ ? ନୃତ୍ୟଶାଳାର ପଲଙ୍କ ଉପରେ ଗଣ୍ଠିଲିଟାଏ କିଏ ଥୋଇଛି । ତା ଭିତରେ କଣ ଅଛି ? ସେ ପାଖକୁ ଆସି ଦେଖିଲାକ୍ଷଣି ଚିତ୍କାର କଲା । ରକ୍ତ...ରକ୍ତ... । ଗଣ୍ଠିଲି ଖୋଲି ଦେଖିଲା କୀଚକର ମୁଣ୍ଡ । ଘଟଣାଟା ଠିକ୍ ଭାବରେ ଠଉରାଇ ନେଇ କହିଲା, ଏହା ନିଶ୍ଚୟ ସେଇ ସୈରିନ୍ଧ୍ରୀର କାମ । ତାର ଗନ୍ଧର୍ବ ସ୍ୱାମୀ ପଶିଲା କିପରି ? ତାକୁ ସେମାନେ ମାରିଲେ କିପରି ? ଉଜ୍ଜ୍ୱଳ ଆଲୋକ ନେଇ ଅନ୍ୟମାନେ ଆସି ପହଞ୍ଚିଲେ ନୃତ୍ୟ ମନ୍ଦିରରେ । ଏ ଭୟଙ୍କର ଦୃଶ୍ୟ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । କୀଚକଙ୍କ ଶରୀରର ଚିହ୍ନବର୍ଣ୍ଣ ନାହିଁ କେବଳ ଥୁଆ ହୋଇଛି ମୁଣ୍ଡ ଓ ରକ୍ତ ରଂଜିତ ହାଡ଼ ମାଂସ ପିଣ୍ଡୁଳା । ସେମାନେ ବିଶ୍ୱାସ କଲେ, ଏହା କୌଣସି ମଣିଷର କାଣ୍ଡନୁହେଁ, ନିଶ୍ଚୟ ଗନ୍ଧର୍ବମାନେ ଏକାମ କରିଛନ୍ତି ।

ସମ୍ବାଦ ପ୍ରଚାରିତ ହୋଇଗଲା । ରାଜା ଦୁଃଖରେ ଭାଜିପଡ଼ିଲେ । ତାଙ୍କର ମାନସିକ ଭାରସାମ୍ୟ ରହିଲାନାହିଁ । ରାଣୀ ସୁଦେଷ୍ଣା ଭାବିଲେ, ଏ ଅଲକ୍ଷଣୀ ସୈରିନ୍ଧ୍ରୀ ତାଙ୍କର ମେରୁଦଣ୍ଡ ଭାଙ୍ଗିଦେଇଛି । ଭୟରେ କିନ୍ତୁ କିଛି କହିଲେ ନାହିଁ ।

କୀଚକର ପରିବାରବର୍ଗ ଓ ବନ୍ଧୁବାନ୍ଧବ ସମସ୍ତେ ବିକଳ ହେଇ ଚିତ୍କାର କରୁଥାନ୍ତି । ସେମାନେ ରାଜାଙ୍କୁ ଯାଇ କହିଲେ, ଏହି ପାପିନୀ ସୈରିନ୍ଧ୍ରୀ ପାଇଁ କୀଚକ ମୃତ୍ୟୁବରଣ କଲେ । ଆମେ ମଧ୍ୟ ତାଙ୍କର ଶବ ସହିତ ସୈରିନ୍ଧ୍ରୀର ଶବ ସଂସ୍କାର କରିବୁ । ରାଜାଙ୍କ ଠାରୁ ଅନୁମତି ନେଇ ସୈରିନ୍ଧ୍ରୀର ହାତ ଗୋଡ଼ ବାନ୍ଧି ଚିତାଗ୍ନିର ନିକ୍ଷେପ କରିବାକୁ ଶ୍ମଶାନକୁ ନେଇଗଲେ । ଦ୍ରୌପଦୀ ଆର୍ତ୍ତ ଚିତ୍କାର କରୁଥାନ୍ତି, ଠିକ୍ ଏତିକିବେଳେ ଭୀମ ଛଦ୍ମବେଶରେ ପୂର୍ବରୁ ଲୁଚିଥିବା ଜାଗାରୁ ବାହାରି ଆସିଲେ । ଗୋଟି ଗୋଟି କରି କୀଚକର ଆତ୍ମୀୟମାନଙ୍କୁ ହତ୍ୟାକଲେ । ଦ୍ରୌପଦୀଙ୍କୁ ମୁକ୍ତ କରିଦେଇ ପାକଶାଳାକୁ ନିଭୃତରେ ଚାଲିଗଲେ । ସୈରିନ୍ଧ୍ରୀ ରାଜପୁରୀକୁ ଫେରି ଆସିଲେ । ରାଜପୁରୀରେ ଚହଳ ପଡ଼ିଗଲା ...ସୈରିନ୍ଧ୍ରୀ ଚିତାଗ୍ନିରୁ ଫେରିଛି ଅଥଚ ଶବବାହକ ଓ ଅନ୍ୟମାନେ କେହି ଫେରି ନାହାନ୍ତି ।

ସାରାରାଜ୍ୟରେ ଗନ୍ଧର୍ବମାନଙ୍କର କୋକୁଆଭୟ । ଘରର ତାଟି କବାଟ ପଡ଼ିଗଲା । ରାଜ୍ୟ ଭିତରେ ଯେଉଁଠାରେ ଯାହା କିଛି ଅଘଟଣ ଘଟିଲା, ସବୁ ସେଇ ଗନ୍ଧର୍ବମାନଙ୍କର ଉତ୍ପାତ ବୋଲି କୁହାଗଲା । ଗନ୍ଧର୍ବମାନଙ୍କ ନାଁରେ ନାନା ମନଗଢ଼ା କାହାଣୀ ପ୍ରଚାରିତ ହେଲା । ନଗରବାସୀ ରାଜାଙ୍କୁ ଗୁହାରିକଲେ । ସୈରିନ୍ଧ୍ରୀକୁ ରାଜପୁରୀରୁ ବାହାର ନକଲେ ରାଜ୍ୟରେ ଏଇପରି ବିତ୍ପାତ ଲାଗିରହିବ । ରାଜା, ରାଣୀ ସୁଦେଷ୍ଣାଙ୍କୁ କହିଲେ, ''ସୈରିନ୍ଧ୍ରୀକୁ କଅଁଳ କରି କୁହ ! ସେ ଅନ୍ୟ କେଉଁଠାକୁ ଚାଲିଯିବ । ତାକୁ ଆଦୌ ବିରକ୍ତ କରାଇବ ନାହିଁ ।''

ରାଣୀ ସୈରିନ୍ଧ୍ରୀଙ୍କୁ ଡାକି କହିଲେ, ସୈରିନ୍ଧ୍ରୀ ! ରାଜା ଏବଂ ରାଜ୍ୟବାସୀ ଗନ୍ଧର୍ବମାନଙ୍କ ଭୟରେ ଅସ୍ଥିର । ତୁମ ପରି ସୁନ୍ଦରୀ ନାରୀ ପ୍ରତି ଯେ କିଏ କେତେବେଳେ ଆକର୍ଷିତ ନହେବ କହି ହେବନାହିଁ । ପୁଣି ସର୍ବନାଶର ଦ୍ଵାର ଖୋଲିଯିବ । ତୁମର କିଛି ଦୋଷ ନାହିଁ । ବହୁବାର ତୁମେ ଗନ୍ଧର୍ବମାନଙ୍କ କରାମତି କଥା କହି ସତର୍କ କରାଇଛ । ତେବେ ବର୍ତ୍ତମାନ ଏ ରାଜ୍ୟରେ ଶାନ୍ତି ସ୍ଥାପନ ପାଇଁ ତୁମେ ବିଦାୟ ନେଲେ ଭଲ ହୁଅନ୍ତା । ଏହା ମଧ୍ୟ ରାଜାଙ୍କର ଇଚ୍ଛା ।''

ଦ୍ରୌପଦୀ କହିଲେ, ମୁଁ ଆପଣଙ୍କ ବ୍ୟବହାର ଓ ସ୍ନେହ ଶ୍ରଦ୍ଧାରେ ଖୁବ୍ ଆନନ୍ଦିତ । ବର୍ତ୍ତମାନ ପରିସ୍ଥିତିରେ ଆପଣଙ୍କ ଅସୁବିଧା କଥା ମୁଁ ବୁଝିପାରୁଛି । ମୁଁ ନିଶ୍ଚୟ ଚାଲିଯିବି ତେବେ ମୋତେ ଆଉ ଗୋଟିଏ ମାସ ରହିବାକୁ ଅନୁମତି ଦିଅନ୍ତୁ । ଏଥି ଭିତରେ ମୁଁ ମୋର ସୁବିଧା କରିବାପାଇଁ ସୁଯୋଗ ପାଇବି ।''

ସୁଦେଷ୍ଣା କହିଲେ, ''ମୁଁ ତୁମର ଅନୁରୋଧ ରକ୍ଷା କରୁଛି । ତେବେ ତୁମେ ଗନ୍ଧର୍ବମାନଙ୍କୁ କୁହ ସେମାନେ ଯେପରି ଆମର କିଛି କ୍ଷତି କରିବେ ନାହିଁ ।''

ସୈରିନ୍ଧ୍ରୀ କହିଲେ, ଗନ୍ଧର୍ବମାନେ ଅକୃତଜ୍ଞ ନୁହଁନ୍ତି । ଆପଣ ମୋତେ ଆଶ୍ରୟ ଦେଇଛନ୍ତି । ସେମାନେ ବରଂ ଏ ଉପକାରର ପ୍ରତ୍ୟୁପକାର କରିବେ । ଦେଶକୁ ବାହାର ଆକ୍ରମଣରୁ ନିଶ୍ଚୟ ରକ୍ଷା କରିବେ । ଆପଣ ବିଶ୍ଵାସ କରନ୍ତୁ ରାଣୀମା ! ସେମାନେ ମତ୍ସ୍ୟଦେଶର ଶତ୍ରୁ ନୁହଁନ୍ତି । ଏହା ଶୁଣି ରାଣୀ ଆନନ୍ଦିତ ହେଲେ ।

———————————— ତେର

# ।। ସୁଶର୍ମାଙ୍କ ଆକ୍ରମଣ ।।

ପାଣ୍ଡବମାନଙ୍କୁ ଖୋଜିବା ପାଇଁ ଦୁର୍ଯ୍ୟୋଧନ ଚତୁର୍ଦ୍ଦିଗକୁ ଚାର ପଠାଇଲେ । ବିଶେଷ କିଛି ସଂଧାନ ମିଳୁନି । ଦୁର୍ଯ୍ୟୋଧନ ରାଜ ସଭାରେ, ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ, କର୍ଣ୍ଣ ଓ ତ୍ରିଗର୍ତ୍ତର ରାଜା ସୁଶର୍ମାଙ୍କ ସହିତ ମନ୍ତ୍ରଣା କରୁଥାନ୍ତି । ଗୁପ୍ତଚରମାନେ ଫେରିଆସି କହିଲେ, ''ବହୁ ଚେଷ୍ଟା କରି ମଧ୍ୟ, ପାଣ୍ଡବମାନଙ୍କର ସଂଧାନ ମିଳିଲାନାହିଁ । ବୋଧହୁଏ ଘୋର ଅରଣ୍ୟ ମଧ୍ୟରେ ସେମାନେ ମୃତ୍ୟୁ ମୁଖରେ ପଡ଼ିଛନ୍ତି ।''

ଦ୍ରୋଣାଚାର୍ଯ୍ୟ କହିଲେ, ''ମୁଁ କାହିଁ କି ଏ କଥାରେ ଏକମତ ହୋଇ ପାରୁନାହିଁ । ପାଣ୍ଡବମାନେ ପରମ ଶକ୍ତିଶାଳୀ, ବୁଦ୍ଧିମାନ୍ ଓ ଧର୍ମପରାୟଣ ଅଟନ୍ତି । ସେମାନେ ଯେ ସାମାନ୍ୟ ଅସୁବିଧାର ମୁକାବିଲା କରିନପାରି ମୃତ୍ୟୁବରଣ କରିଥିବେ, ଏକଥା ମୁଁ ବିଶ୍ୱାସ କରି ପାରୁନାହିଁ । ଅଜ୍ଞାତବାସର ସମୟ ପ୍ରାୟ ଅତିକ୍ରାନ୍ତ ହୋଇ ସାରିଲାଣି । ଆଉ ଅଳ୍ପଦିନ ମଧ୍ୟରେ ସେମାନେ ଇନ୍ଦ୍ରପ୍ରସ୍ଥକୁ ନିଶ୍ଚୟ ଫେରି ଆସିବେ । ବର୍ତ୍ତମାନ ଆମର ଏକମାତ୍ର କାମ ହେଉଛି, ଅଧିକ ଅନୁସନ୍ଧାନ ପାଇଁ ବ୍ୟବସ୍ଥା କରିବା । ଏ ଅନୁସନ୍ଧାନ ପାଇଁ ଅଧିକ ଦକ୍ଷ ଲୋକଙ୍କର ଆବଶ୍ୟକତା ଅଛି । ଦୂତମାନଙ୍କ ସହିତ ଅନ୍ୟମାନଙ୍କୁ ମଧ୍ୟ ନିଯୁକ୍ତ କରାଯାଇ ପାରେ ।''

ଭୀଷ୍ମ କହିଲେ, ''ଦ୍ରୋଣାଚାର୍ଯ୍ୟଙ୍କର ଅନୁମାନ ଠିକ୍ । ମୁଁ ଭାବୁଛି ସେମାନେ ଧର୍ମ ବଳରେ ବଳୀୟାନ ଓ ନିଜର ବାହୁବଳରେ ଯେକୌଣସି ବିପଦକୁ ଅତିକ୍ରମ କରିବାକୁ ସମର୍ଥ । ସେମାନେ କେବେହେଲେ ମୃତ୍ୟବରଣ କରି ନଥିବେ । ଧର୍ମାତ୍ମା ଯୁଧିଷ୍ଠିର ଯେଉଁଠାରେ ଆତ୍ମଗୋପନ କରିଥିବେ, ତାଙ୍କ ତପୋବଳରେ ସେଠାରେ ଶାନ୍ତି, ସୁଖ ଓ ମଙ୍ଗଳ ବିରାଜମାନ କରୁଥିବ । ଠିକ୍ ଭାବରେ ଅନୁସନ୍ଧାନ କଲେ, ସେ ସ୍ଥାନ ନିଶ୍ଚୟ ଠାବ କରାଯାଇ ପାରିବ ।''

କୃପାଚାର୍ଯ୍ୟ କହିଲେ, ''ଦ୍ରୋଣାଚାର୍ଯ୍ୟ ଓ ପିତାମହ ଭୀଷ୍ମଙ୍କ ମତାମତ ନିଶ୍ଚୟ ଅଭ୍ରାନ୍ତ । ବର୍ତ୍ତମାନ ସୁଚତୁର ଚାରମାନଙ୍କୁ ଚତୁର୍ଦ୍ଦିଗକୁ ପଠାଇ ଅନୁସଂଧାନ ଅବ୍ୟାହତ ରଖିବାକୁ ହେବ । ସର୍ବଶାସ୍ତ୍ର ବିଶାରଦ ବିଚକ୍ଷଣ ପାଣ୍ଡବମାନେ ନିଷ୍ଠାର ସହ ଅଜ୍ଞାତବାସ ପାଳନ କରୁଛନ୍ତି । ନିର୍ଦ୍ଦିଷ୍ଟ ସମୟପରେ, ସେମାନେ ସଞ୍ଚିତ ଶକ୍ତି ସମ୍ଭାର ନେଇ, ନିଶ୍ଚୟ ଇନ୍ଦ୍ରପ୍ରସ୍ଥକୁ ଫେରି ଆସିବେ । ମୋ ବିଚାରରେ ସେମାନଙ୍କର ସମ୍ମୁଖୀନ ହେବାପାଇଁ, ଆମର ସୈନ୍ୟବଳକୁ କଳ୍ପନା କରାଯିବା ଉଚିତ କିମ୍ବା ସେମାନଙ୍କ ସହିତ ସନ୍ଧିକରି, ଭାବୀ ବିପର୍ଯ୍ୟର ଦୁରନ୍ତ କବଳରୁ ନିଜକୁ ରକ୍ଷା କରିବା ଉଚିତ ।''

ଠିକ୍ ଏହି ସମୟରେ ଆଉ ଏକ ସମ୍ବାଦ ଆସି ପହଞ୍ଚିଲା । ମତ୍ସ୍ୟ ଦେଶର ରାଜା ବିରାଟଙ୍କର ସେନାପତି କୀଚକ ଗନ୍ଧର୍ବମାନଙ୍କ ଦ୍ୱାରା ନିହତ ହୋଇଛନ୍ତି ।

ଦୁର୍ଯ୍ୟୋଧନ ଗର୍ଜନ କରି ଉଠିଲେ, ନାଁ ନାଁ, ତାହା ଯଦି ସତ୍ୟ, ତେବେ ପରୋକ୍ଷରେ ପାଣ୍ଡବମାନଙ୍କର ସଂଧାନ ମିଳିଯାଇଛି । ଭୀମ କିମ୍ବା ବଳରାମଙ୍କ ବ୍ୟତୀତ, ଦୁର୍ଦ୍ଧର୍ଷ କୀଚକକୁ ହତ୍ୟା କରିବାର ଶକ୍ତି, ଏ ବିଶ୍ୱରେ ଆଉ କାହାରିନାହିଁ । କୀଚକ ଯଦି ମରିବାଟା ସତ୍ୟ ତେବେ ଭୀମ ନିଶ୍ଚୟ ତାଙ୍କୁ ମାରିଛି । ପାଣ୍ଡବମାନେ ବିରାଟ ରାଜାଙ୍କ ଉଆସରେ ଆଶ୍ରୟ ନେଇଛନ୍ତି । ଏଥିରେ ସନ୍ଦେହ କରିବାର କିଛି ନାହିଁ । ସେମାନଙ୍କୁ ଧରିବା ପାଇଁ ମତ୍ସ୍ୟ ଦେଶ ଆକ୍ରମଣ କରାଯିବା ଦରକାର । ଯୁଦ୍ଧ ହେଲେ ସେମାନେ ଘରେ ବସି ରହିବେ ନାହିଁ । ନିଶ୍ଚୟ ବିରାଟ ରାଜାଙ୍କୁ ସାହାଯ୍ୟ କରିବା ନିମିତ୍ତ ପଦାକୁ ବାହାରିଆସିବେ । ସେତେବେଳେ ସେମାନେ ଧରାପଡ଼ିବେ ଓ ପୁଣି ବାରବର୍ଷ ବନବାସ ଦଣ୍ଡ ଚୁକ୍ତି ଅନୁସାରେ ଭୋଗ କରିବେ । ଇନ୍ଦ୍ରପ୍ରସ୍ଥ ଆମହାତରେ ଆଉରି ବାରବର୍ଷ ପାଇଁ ରହିବ ।''

ତ୍ରିଗର୍ତ୍ତର ରାଜା ସୁଶର୍ମା ଆନନ୍ଦରେ ବିହ୍ୱଳ ହୋଇ କହିଲେ ''ନିଶ୍ଚୟ ଶୁଭ ସମ୍ବାଦ, ପାଣ୍ଡବମାନଙ୍କର ସଂଧାନ ନିଶ୍ଚୟ ମିଳିବି । କୀଚକ ବାହୁବଳରେ, ବିରାଟ ରାଜା ମୋ ରାଜ୍ୟ ବାରମ୍ବାର ଆକ୍ରମଣ କରି ମୋତେ ଶାନ୍ତିରେ ରଖାଇ ବସାଇ ଦେଇ ନାହାନ୍ତି । ସେ ଉତ୍ପାତ କେତେଦିନ ରହନ୍ତା । ଆପଣ ଯୁଦ୍ଧ ଯାତ୍ରା କରିବା ପୂର୍ବରୁ, ମୁଁ ପ୍ରଥମେ ସେ ଦେଶ ଆକ୍ରମଣ କରିବି । କୌରବ ଓ ତ୍ରିଗର୍ତ୍ତ ସୈନ୍ୟ ମିଶିଗଲେ ମତ୍ସ୍ୟ ଦେଶର ଅସ୍ତିତ୍ୱ ରହିବ ନାହିଁ । ବିରାଟ ରାଜାଙ୍କୁ ପରାଜିତ କରି ଅଜସ୍ର ଧନ ରତ୍ନ ଓ ଗୋସମ୍ପଦ ଆମେ ଆଣିପାରିବା । ମହାତ୍ମା କର୍ଣ୍ଣ ତାଙ୍କର ମତ ପ୍ରକାଶ କରନ୍ତୁ ।''

କର୍ଣ୍ଣ କହିଲେ, ''ହେ ସଖା ! ସୁଶର୍ମାଙ୍କର ପ୍ରସ୍ତାବ ଅଭିନନ୍ଦନୀୟ । ଶୁଭେଚ୍ଛୁ ମାନଙ୍କର ମତାମତ ନିଅନ୍ତୁ । ଅନୁମତି ଦେଲେ ଅଭିଯାନ ପାଇଁ ସୈନ୍ୟ ସଜ୍ଜା ଆରମ୍ଭ ହେବ । ଦୁର୍ଯ୍ୟୋଧନ ନିର୍ବିଚାରରେ ନିଜର ସମ୍ମତି ଦାନ କରି ଦୁଃଶାସନଙ୍କୁ କହିଲେ, ''ତୁମେ ପରାମର୍ଶ କରି ସୈନ୍ୟ ବଳ ପ୍ରସ୍ତୁତ କର । ସ୍ଥିର ହେଲା, ସୁଶର୍ମା ଦକ୍ଷିଣ ଦିଗରୁ ଓ କୌରବ ମାନେ ଉତ୍ତର ଦିଗରୁ ଆକ୍ରମଣ କରିବେ ।

କୀଚକର ମୃତ୍ୟୁପରେ 'କଙ୍କ' ବିରାଟ ରାଜାଙ୍କର ଥିଲେ ପଥ ପ୍ରଦର୍ଶକ । ସେ ତାଙ୍କୁ ଆଶ୍ୱାସନା ଦେଇ କହିଲେ, ''ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । କୀଚକ ଚାଲିଗଲେ ମଧ୍ୟ, ଆପଣଙ୍କ ନିରାପତ୍ତାର ଦାୟିତ୍ୱ ମୁଁ ନିଜେ ବହନ କରିବି । ରାଜ୍ୟ ରକ୍ଷାଦିଗରେ ଜୀବନ ଦେଇ ଆପଣଙ୍କୁ ସାହାଯ୍ୟ କରିବି'' ।

ଏତିକିବେଳେ ପ୍ରଧାନ ଗୋପାଳକ ଆସି ସମ୍ବାଦ ଦେଲା । 'ତ୍ରିଗର୍ତ୍ତର ରାଜା ସୁଶର୍ମା ଆକ୍ରମଣ କରି ଆମର ଗାଈ ଗୋରୁ ମାନଙ୍କୁ ଅପହରଣ କରିଛନ୍ତି । ସେମାନେ ଦୂରକୁ ଯିବା ପୂର୍ବରୁ ଆମର ଗୋଧନ ରକ୍ଷା କରିବା ପାଇଁ ବ୍ୟବସ୍ଥା କରନ୍ତୁ । ତାଙ୍କର ସୈନ୍ୟମାନେ ଆମର ଶସ୍ୟକ୍ଷେତ୍ର ଧ୍ୱଂସକରି ଦେଇଛନ୍ତି ।''

ବିରାଟ ରାଜା ନିଜର ଭାଇ ଶତାନୀକ ଓ ଅନୁଜ ମଦିରାକ୍ଷଙ୍କୁ ଡାକି ସୈନ୍ୟ ଚାଳନା ପାଇଁ ନିର୍ଦ୍ଦେଶ ଦେଲେ । କୀଚକର ଅନୁପସ୍ଥିତି ଅନୁଭବ କରି ସନ୍ତାପିତ ହେଲେ । ଠିକ୍ ଏଇ ପରି ଏକ ମନସ୍ତାତ୍ତ୍ୱିକ ମୁହୂର୍ତ୍ତରେ ଯୁଧିଷ୍ଠିର କହିଲେ, '' ହେ ରାଜନ୍ ! ଆପଣ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ମୋତେ, ଅନୁମତି ଦିଅନ୍ତୁ ମୁଁ ଯାଇ ତାଙ୍କ ସହିତ ଲଢ଼ି ତାଙ୍କୁ ଉପଯୁକ୍ତ ଶାସ୍ତି ଦେବି । 'କଙ୍କ' ଉପରେ ଆପଣ କଣ ଭରସା ରଖିପାରୁ ନାହାଁନ୍ତି । ମୁଁ ଯୁଧିଷ୍ଠିରଙ୍କ ରାଜସଭାରେ ଥିଲାବେଳେ, ଜାଣିଛି, ଆପଣଙ୍କ ସୂପକାର 'ବଲ୍ଲବ', ଅଶ୍ୱପାଳ 'ଗ୍ରନ୍ଥିକ' ଗୋପାଳକ 'ତନ୍ତ୍ରିପାଳ' ଜଣେ ଜଣେ ଦକ୍ଷ ସୈନିକ ଥିଲେ । ସେମାନଙ୍କୁ ମଧ୍ୟ ନିର୍ଦ୍ଦେଶ ଦିଅନ୍ତୁ ଯୁଦ୍ଧ ଭୂମିକୁ ଯିବାକୁ, ତେବେ ପ୍ରତ୍ୟେକଙ୍କୁ ରଥ ଓ ଅସ୍ତ୍ର ଶସ୍ତ୍ର ଯୋଗାଇ ଦେବାକୁ ହେବ । ଚିନ୍ତା କରିବାର କିଛି ନାହିଁ ।

ଦକ୍ଷିଣା ପବନ ବାଜିଲେ ଥୁଣ୍ଟାଗଛ ଯେପରି କଅଁଳି ଉଠେ, ରାଜା ବିରାଟ ସେଇପରି ନୂତନ ଆଶା ଓ ଉତ୍ସାହରେ ପଲ୍ଲବି ଉଠିଲେ । ଯୁଧିଷ୍ଠିରଙ୍କୁ କହିଲେ, ''ଏ ଦୁର୍ଦ୍ଦିନରେ ତୁମେ ହିଁ 'କଙ୍କ' ମୋର ପ୍ରକୃତ ସଖା ଓ ସାରଥି । ତୁମେ ମୋତେ ସାହାଯ୍ୟ କର ।

ଛଦ୍ମବେଶରେ ଯୁଧିଷ୍ଠିର, ଭୀମ, ନକୁଳ, ସହଦେବ ମତ୍ସ୍ୟରାଜାଙ୍କ ସୈନ୍ୟ ବଳ ନେଇ ବୀର ଦର୍ପରେ ଆଗେଇ ଗଲେ । ତାଙ୍କ ସହିତ ଯୁଦ୍ଧ ଯାତ୍ରାରେ ଅଧିନାୟକତ୍ୱ କରିଥିଲେ ନିଜେ ରାଜା ବିରାଟ । ବୃଦ୍ଧ ହେଲେ ମଧ୍ୟ ରାଜ୍ୟ ରକ୍ଷାପାଇଁ ରାଜ ଧର୍ମ ପାଳନ କରିବାକୁ ହେବ । ଉଭୟ ପକ୍ଷ ମଧ୍ୟରେ ଅନେକ ଦିନ ପର୍ଯ୍ୟନ୍ତ ଯୁଦ୍ଧ ହେଲା ।

ଯୁଦ୍ଧରେ ଉଭୟ ପକ୍ଷରୁ ବହୁ ସୈନ୍ୟ ମୃତାହତ ହେଲେ । ଶତାନୀକ, ବିରାଟରାଜାଙ୍କ ଭାଇ ଯୁଦ୍ଧରେ ପ୍ରାଣ ହରାଇଲେ । ସୁଶର୍ମାଙ୍କ ସାନଭାଇ ସୁଧର୍ମା ଯୁଦ୍ଧରେ ତାଙ୍କୁ ସାହାଯ୍ୟ କରୁଥିଲେ । ଉଭୟେ ଏକ ବ୍ୟୂହ ରଚନା କରି କୌଶଳ କ୍ରମେ ରାଜା ବିରାଟଙ୍କୁ ଯୁଦ୍ଧ ଭୂମିରେ କବଳିତ କରିନେଲେ । ତାଙ୍କୁ ବନ୍ଦିକରି ନେଇଯାଉଥିବାର ଦେଖି ବିରାଟଙ୍କର ସୈନ୍ୟମାନେ ଛତ୍ରଭଙ୍ଗ ଦେଲେ । ଯୁଧିଷ୍ଠିର ଭୀମଙ୍କୁ ନିର୍ଦ୍ଦେଶ ଦେଲେ ବିରାଟଙ୍କୁ ରକ୍ଷାକରିବା ପାଇଁ ।

ଭୀମ ଗୋଟାଏ ବିରାଟ ବୃକ୍ଷ ଉପାଡ଼ିବା ପାଇଁ ଉଦ୍ୟତ ହେବା ବେଳେ ଯୁଧିଷ୍ଠିର ବାରଣ କରି କହିଲେ, ଏ ପ୍ରକାର ଅଲୌକିକ କାମ କିଛି କରନାହିଁ ଯାହାଫଳରେ ଭୀମ ବୋଲି ତୁମେ ଜଣାପଡ଼ିଯିବ । ପାରମ୍ପରିକ ଅସ୍ତ୍ର ଶସ୍ତ୍ର ନେଇ ଯୁଦ୍ଧକର । ସାଥିରେ ନକୁଳ ସହଦେବଙ୍କୁ ନେଇ ଯାଅ । ଅଜ୍ଞାତ ବାସର ବାକି କେଇଟାଦିନ ସତର୍କ ରହିବାକୁ ପଡ଼ିବ । ରାତ୍ରିର ଘନ ଅନ୍ଧକାର ଲିଭି ଲିଭି ଆସୁଛି ଆଲୋକ ଆମକୁ ଅପେକ୍ଷା କରିଛି ।

ଭୀମ ମତ୍ତହସ୍ତୀ ପରି ମାଡ଼ିଗଲେ ଆଗକୁ । ସୁଶର୍ମାଙ୍କ ସହିତ ତାଙ୍କର ଭୀଷଣ ଯୁଦ୍ଧ ହେଲା । ନକୁଳ ସହଦେବ ତାଙ୍କୁ ସାହାଯ୍ୟ କଲେ । ଶେଷରେ ସୁଶର୍ମାଙ୍କୁ ପରାସ୍ତ କରି ରାଜା ବିରାଟଙ୍କୁ ତାଙ୍କ ହାତରୁ ଛଡ଼ାଇ ଆଣିଲେ । ସୁଶର୍ମା ବନ୍ଦି ହେଲେ । ତାଙ୍କ ସୈନ୍ୟଗଣ ଛତ୍ରଭଙ୍ଗ ଦେଇ ପଳାୟନ କଲେ ।

ବିରାଟ ରାଜା ଆନନ୍ଦରେ ବିହ୍ୱଳ ହୋଇ କହିଲେ, ''ହେ ସଖା କଙ୍କ ! ତୁମେ ତୁମର ଅନାବିଳ ସଖାତ୍ୱର ପ୍ରମାଣ ଦେଇଛ । ମୁଁ ପରାଜିତ ଓ ପରାଭୂତ, ତୁମେ ମାନେ ମତ୍ସ୍ୟରାଜ୍ୟକୁ ଜୟ କରିଛ । ନୀତି ଦୃଷ୍ଟିରୁ ଏ ରାଜ୍ୟ ଆଜିଠାରୁ ତୁମ ମାନଙ୍କର , ତମେ ମତ୍ସ୍ୟ ଦେଶର ଅଧିଶ୍ୱର ହେବାପାଇଁ ଯୋଗ୍ୟ । ଏ ଶୁଭ ମୁହୂର୍ତ୍ତରେ ତୁମେମାନେ ଯାହା ଚାହିଁବ ମୁଁ ତାହା ଅର୍ପଣ କରିବି ।''

କଙ୍କ କହିଲେ, ''ହେ ରାଜନ୍ ! ଆମେ ଆପଣଙ୍କ ଅନୁଗ୍ରହର ପାତ୍ର । ଆପଣ ଆମର ଅନ୍ନଦାତା । ଆଶ୍ରୟ ଦାତା ମଧ୍ୟ । ଆମେ ଆପଣଙ୍କ ଠାରେ ଚିରଋଣୀ । ଆମେ କେବଳ ଆମର ଧର୍ମରକ୍ଷା ପାଇଁ କର୍ତ୍ତବ୍ୟ ପାଳନ କରିଛୁ ।''

ଦୂତମାନେ କଙ୍କଙ୍କ ଆଦେଶ ଅନୁସାରେ ରାଜାଙ୍କର ବିଜୟ ବାର୍ତ୍ତା ରାଜପୁରୀକୁ ନେଇଗଲେ । ମତ୍ସ୍ୟ ରାଜ୍ୟରେ ଆନନ୍ଦ କୋଳାହଳ ଖେଳିଗଲା ।

ଭାଇଙ୍କ କଥାମାନି ଭୀମସେନ ସୁଶର୍ମାଙ୍କୁ ପ୍ରାଣରେ ନମାରି ବନ୍ଧାଇଦେଲେ । ଧର୍ମରାଜ କହିଲେ ହେ ରାଜନ୍ ! ଏ ଦୁରାତ୍ମାର ଏକମାତ୍ର ଦଣ୍ଡ ହିଁ ମୃତ୍ୟୁ, ତେବେ ଥରକ ପାଇଁ ତାଙ୍କୁ ମୁକ୍ତି ଦିଅନ୍ତୁ । ପରାଜୟର ଗ୍ଲାନି ନେଇ ବଞ୍ଚିବା ଭିତରେ ସେ ତିଳେ ତିଳେ ମୃତ୍ୟୁ ଯନ୍ତ୍ରଣା ଭୋଗକରୁ ।''

ରାଜା ବିରାଟ ହସି ହସି କହିଲେ, '' ହେ ସଖା ! ତୁମର ଇଚ୍ଛା ପୂରଣ ହେଉ । ତେବେ ନୀତିକାରମାନେ କହିଯାଇଛନ୍ତି, ଋଣ ଓ ଶତ୍ରୁକୁ ଶେଷ ନକରିଛାଡ଼ି ଦେଲେ ତାହା ବଢ଼ିଯାଏ । ସୁଶର୍ମାଙ୍କୁ କଠୋର କଣ୍ଠରେ କହିଲେ, ''ରେ ଦୁରାତ୍ମା ! ତୋ କୁକର୍ମ ପାଇଁ ଏ ଦଣ୍ଡ ଯଥେଷ୍ଟ ହେଲାନି । ମୋ ସଖାଙ୍କ ସମ୍ମାନ ପାଇଁ ମୁଁ ତୋତେ ମୁକ୍ତି ଦେଉଛି । ଏପ୍ରକାର ଦୁଃସାହାସିକ କାର୍ଯ୍ୟ ଆଉ ଜୀବନରେ କେବେ କରିବୁ ନାହିଁ ।

ସୁଶର୍ମା ମୁକ୍ତିଲାଭ କରି, ଗଭୀର ଆତ୍ମଦାହ ମଧ୍ୟରେ ତ୍ରିଗର୍ତ୍ତକୁ ଫେରିଗଲେ । ରାଜା ବିରାଟ, ସୈନ୍ୟ ସାମନ୍ତ ସହ ମତ୍ସ୍ୟ ରାଜପୁରୀକୁ ସଦର୍ପରେ ପ୍ରତ୍ୟାବର୍ତ୍ତନ କଲେ । ଯୁଦ୍ଧ ଭୂମିରୁ ବାହୁଡ଼ା ଯାତ୍ରା ଆରମ୍ଭ ହେଲା ।

## ।। ଦୁର୍ଯ୍ୟୋଧନଙ୍କର ମତ୍ସ୍ୟଦେଶ ଆକ୍ରମଣ ।।

ବିଜୟ ଉଲ୍ଲାସରେ ବିରାଟ ରାଜପୁରୀ ଚହଲି ଉଠୁଥାଏ । ରାଜାଙ୍କୁ ରାଜପୁରୀକୁ ପାଛୋଟି ଆଣିବାପାଇଁ ସୈନ୍ୟ ସାମନ୍ତ ନଗରବାସୀ ଯାତ୍ରା ଆରମ୍ଭ କରିଛନ୍ତି । ପୁର ସୀମନ୍ତିନୀ ମଙ୍ଗଳ ପ୍ରଦୀପ ଜାଳି ଅପେକ୍ଷା କରିଛନ୍ତି । ସଦର୍ପରେ ଫେରିଆସୁଛନ୍ତି ବିରାଟ ରାଜା । କିଛି ସମୟପରେ ପହଞ୍ଚିବେ ।

ଠିକ୍ ଏତିକିବେଳେ ଉତ୍ତର ଦିଗରୁ ପ୍ରଧାନ ଗୋପାଳକ ଆସି ଖବର ଦେଲା, ଦୁର୍ଯ୍ୟୋଧନ ପ୍ରଭୃତି କୌରବମାନେ ଆସି ଆମ ରାଜ୍ୟ ଆକ୍ରମଣ କରିଛନ୍ତି । ଆମର ସମସ୍ତ ଗୋଧନ ଅପହରଣ କରି ନେଇ ଯାଉଛନ୍ତି । ତାଙ୍କର ସୈନ୍ୟବଳ ମାଡ଼ି ଆସୁଛନ୍ତି । ଶୀଘ୍ର ପ୍ରତିକାର ନ କଲେ ରାଜ୍ୟ ଛାରଖାର ହୋଇ ଯିବ ।''

ସେତେବେଳେ ରାଜପୁରୀରେ ରାଜପୁତ୍ର 'ଉତ୍ତର'ଙ୍କ ବ୍ୟତୀତ ଆଉ କେହି ନଥିଲେ । ରାଜା ବିରାଟ ପହଞ୍ଚି ନାହାନ୍ତି । ଅନେକ ସୈନ୍ୟ ତାଙ୍କ ସାଥିରେ ଅଛନ୍ତି । ଛଦ୍ମବେଶୀ ଯୁଧିଷ୍ଠିର, ଭୀମ, ନକୁଳ, ସହଦେବ, ପ୍ରଭୃତି ଯୋଦ୍ଧା ତାଙ୍କ ସାଥିରେ ଯାଇଛନ୍ତି । 'ଉତ୍ତର' ଅନ୍ତପୁରରର ରମଣୀମାନଙ୍କ ଗହଣରେ ଥିବାବେଳେ ଏ ସଂବାଦ ପାଇଲେ । ନିଜ ବୀରତ୍ୱର ଆସ୍ଫାଳନ କରି କହିଲେ, ''କୌରବ ମାନଙ୍କର ସୈନ୍ୟବଳକୁ ମୁଁ ଭ୍ରୂକ୍ଷେପକରେ ନାହିଁ, ମୋତେ ଏକା ସେମାନେ ନିଅଣ୍ଟ । ଯୁବରାଜ ଉତ୍ତର, ରଣଭୂମିରେ ଉଲ୍‌କା ପରି ଲମ୍ଫ ଦେଲେ, ଶତ୍ରୁ ଶିବିରରେ ଯେ ଉର୍ଦ୍ଧ୍ୱ ଶ୍ୱାସ ବହେ, ସେମାନେ ତାହା ଜାଣି ନାହାନ୍ତି । ଯେତେ କୌରବ ସେନା ହେଲେ ମଧ୍ୟ ଚିନ୍ତାକରିବାର କିଛି ନାହିଁ । ତେବେ ମୁଁ ରଣାଙ୍ଗନକୁ ଅଭିଯାନ ଆରମ୍ଭ କରିବି କିପରି ? ମୋର ପ୍ରିୟ ସାରଥିତ ମୃତ୍ୟୁବରଣ କରିଛନ୍ତି । ମୋର ରଥ ଚଳାଇବ କିଏ ? ସାରଥି ମିଳିଲେ ବୀରତାରେ ମୁଁ ଅର୍ଜୁନଙ୍କ ସହିତ ସମକକ୍ଷ ।''

ସୈରିନ୍ଧ୍ରୀ ନିକଟରେ ଥାଇ ଏକଥା ଶୁଣୁଥିଲେ । ରାଜପୁତ୍ରଙ୍କର ଆସ୍ଫାଳନ ଶୁଣି ତାଙ୍କୁ ଏତେ ହସ ମାଡୁ ଥିଲା ଯେ, ବହୁକଷ୍ଟରେ ତାହାଚାପି ନେଇ ମୁହଁ ଫେରାଇଲେ ଭିତର ଆଡ଼କୁ । ରାଜକନ୍ୟା ଉତ୍ତରାଙ୍କ ପାଖକୁ ଯାଇ ଗମ୍ଭୀର ହୋଇ କହିଲେ, ''ରାଜଜେମାଙ୍କର ମଙ୍ଗଳ ହେଉ । ରାଜପୁତ୍ର ସାରଥି ପାଇଁ ଏତେବ୍ୟସ୍ତ ହେଉଛନ୍ତି କାହିଁକି ? ଏଇ ତ ଏଇ ରାଜ ପୁରୀରେ ତାଙ୍କ ପାଖେ ପାଖେ ସାରଥି ଅଛନ୍ତି ।

ସାରଥି ଅଛନ୍ତି, କିଏ ସେ ସାରଥି ?''

''ରାଜଜେମାଙ୍କ ନୃତ୍ୟ ଗୁରୁ ବୃହନ୍ନଳା । ମୁଁ ଯେତେବେଳେ ସତ୍ୟଭାମା ଓ ଦ୍ରୌପଦୀଙ୍କ ପାଖରେ ସୈରିନ୍ଧ୍ରୀ ଥିଲି, ସେ ଦିନରୁ ମୁଁ ତାଙ୍କ ବିଷୟରେ ଜାଣିଛି । ସେ ଥିଲେ ପାଣ୍ଡବ ବୀର ଅର୍ଜୁନଙ୍କର ସାରଥି । ଖାଣ୍ଡବବନ ଦହନବେଳେ, ଅର୍ଜୁନଙ୍କ ରଥ ଏଇ ବୃହନ୍ନଳା ଚଳାଉଥିଲେ । ରାଜକୁମାରଙ୍କୁ କହନ୍ତୁ, ସେ ତାଙ୍କୁ କହିବେ ! ବୃହନ୍ନଳା ତାଙ୍କ ରଥରେ ଗଲେ ରାଜକୁମାରଙ୍କ ବିଜୟ ସୁନିଶ୍ଚିତ । ମୁଁ ଜାଣିଛି ବୃହନ୍ନଳା ଅର୍ଜୁନଙ୍କଠାରୁ ଯୁଦ୍ଧବିଦ୍ୟା ମଧ୍ୟ ଶିଖିଛନ୍ତି । ତାଙ୍କୁ ନିର୍ଦ୍ଦେଶ ଦିଅନ୍ତୁ । ସେ ରଥ ପ୍ରସ୍ତୁତ କରନ୍ତୁ ।''

ରାଜକନ୍ୟା ଉତ୍ତରା ଆନନ୍ଦରେ ବିହ୍ୱଳ ହୋଇ, ଭାଇ ଉତ୍ତରଙ୍କ ପାଖରେ ଯାଇ ସମସ୍ତ ବିଷୟ ବର୍ଣ୍ଣନା କଲେ । ଏବଂ ଅନୁରୋଧ କଲେ ବୃହନ୍ନଳାଙ୍କୁ ସାରଥିରୂପେ ସାଥିରେ ନେବାପାଇଁ ।

ଉତ୍ତର ହସି ହସି କହିଲେ, ''ଜଣେ ନପୁଂସକ ହୁଏତ ନୃତ୍ୟଗୁରୁ ହୋଇପାରେ କିନ୍ତୁ ଯୁଦ୍ଧ ଭୂମିରେ ସାରଥି ସାଜିବା ପାଇଁ ପୌରୁଷ ଆବଶ୍ୟକ । ମୁଁ ତାଙ୍କୁ ମୋ ରଥର ସାରଥି ହେବାକୁ କହିପାରିବି ନାହିଁ । ଏହା ମଧ୍ୟ ମୋର ମର୍ଯ୍ୟାଦାର ବାହାରେ ।''

''କଣ କହିଲ ? ମର୍ଯ୍ୟାଦାର ବାହାରେ ? ସୈରିନ୍ଧ୍ରୀ କଣ ମିଛ କହୁଛି ! ପାଣ୍ଡବବୀର ଅର୍ଜୁନ ଯାହାକୁ ସାରଥି କରିପାରିଲେ, ତୁମ ପାଇଁ ସେ ଗ୍ରହଣ ଯୋଗ୍ୟ ନୁହଁନ୍ତି । ରାଜ୍ୟରେ ରାଜାଙ୍କର ଅନୁପସ୍ଥିତିର ସୁଯୋଗ ନେଇ, ହୀନମନା କୌରବମାନେ ଆକ୍ରମଣ କରିଛନ୍ତି । ଧନରତ୍ନ ଲୁଣ୍ଠନ କରିବାରେ ଲାଗିଛନ୍ତି । ଗୋସମ୍ପଦ ଆମର ଅପହୃତ ହେଲାଣି । ସାରଥି ଖୋଜୁଥିଲ ତୁମକୁ ତାହା ଦିଆଗଲା, ତଥାପି ତୁମେ ମର୍ଯ୍ୟାଦାର ପ୍ରଶ୍ନ ଉଠାଉଛ । ମୋ କଥା ମାନି ବାପାଙ୍କ ଅନୁପସ୍ଥିତିରେ ତାଙ୍କର କର୍ତ୍ତବ୍ୟ ତୁଲାଅ ।''

''ତୁମେ ତା'ହେଲେ ବୃହନ୍ନଳାଙ୍କୁ କୁହ । ସେ ମୋ ପାଖକୁ ଆସନ୍ତୁ ।''

ଉତ୍ତରା, ବୃହନ୍ନଳାଙ୍କୁ ସମସ୍ତ ବିଷୟ କହି ରାଜକୁମାରଙ୍କୁ ସାକ୍ଷାତ କରିବାକୁ ଅନୁରୋଧ କଲେ । ବୃହନ୍ନଳା ଏ ସୁଯୋଗର ଅପେକ୍ଷାରେ ଥିଲେ । ରାଜକୁମାରଙ୍କ ପାଖରେ ପହଞ୍ଚିଲାକ୍ଷଣି ଯୁବରାଜ କହିଲେ, ''ସୁ ସମ୍ବାଦ ପାଇଛି, ତୁମେ ପରା ରଥ ଚଳାଇପାର । ମୋ ରଥ ଚଳାଇ ପାରିବ ? ଭୟକରିବାର କିଛି ନାହିଁ । ମୁଁ ତୁମ ପାଖରେ ଥିବି'' ।

ଅର୍ଜୁନ ଅଭିନୟ କରି କହିଲେ, ''ହେ ରାଜପୁତ୍ର ! ମୁଁ ନାଚ ଗୀତର ଲୋକ, ଯୁଦ୍ଧର ଧାର ଧାରେନା । ବାଦ୍ୟ ବାଦନରେ ଯେଉଁ ହାତ, ଦକ୍ଷ, ସେ ତୀର ଚଳାଇ ପାରିବନାହିଁ । ରାଜପୁତ୍ର ଯଦି ମୋର ସୁରକ୍ଷାର ଦାୟିତ୍ୱ ନେବେ, ତାହେଲେ ରଥଚଳାଇବି । ଯୁଦ୍ଧ କରିପାରିବି ନାହିଁ ।''

ଯୁବରାଜ ଉତ୍ତର, ବୀର ବେଶରେ ସଜ୍ଜିତ ହୋଇ ବାହାରି ପଡ଼ିଲେ । ବୃହନ୍ନଳା ରାଜପୁରୀର ରମଣୀ ମାନଙ୍କ ସମ୍ମୁଖରେ ଏପରି ଭାବରେ ଓଲଟ ପାଲଟ କରି ଅସ୍ତ୍ର ଧରିଲେ ଓ କବଚ ପିନ୍ଧିଲେ ଯେ ସମସ୍ତେ ହସି ହସି ବେଦମ । ଉତ୍ତର ଠିକ୍ ଭାବରେ ତାଙ୍କୁ ସଜାଇ ଦେଲେ । ଏହାଥିଲା ଅର୍ଜୁନଙ୍କର ଛଳନାମାତ୍ର ଓ ଏହି ଅଭିନୟ ପୁରବାସିନୀ ମାନଙ୍କୁ ଆନନ୍ଦ ଦେଉଥିଲା ।

କିଛି ସମୟ ପରେ ବୃହନ୍ନଳା ଯାଇ ସୁସଜ୍ଜିତ ରଥ ନେଇ ଆସିଲେ । ରାଜପୁତ୍ର ଉତ୍ତର ବୀର ଦର୍ପରେ ରଥାରୋହଣ କଲେ । ବୀରବାଦ୍ୟ ବାଜି ଉଠିଲା । ରଥ ଉପରେ ପୁଷ୍ପବୃଷ୍ଟି ହେଲା । ପୁରନାରୀମାନେ ମଙ୍ଗଳ ଦୀପ ଜାଳି ବନ୍ଦାପନା କଲେ । ତୂର୍ଯ୍ୟନାଦରେ ବିରାଟ ନଗର ପ୍ରକମ୍ପିତ ହେଲା । ରାଜପୁରୋହିତ ଆସି ମଙ୍ଗଳାର୍ପଣ କଲେ । ଅସ୍ତ୍ର ସବୁ ଅଭିମନ୍ତ୍ରିତ ହୋଇ ରଥରେ ସଜା ହୋଇ ରଖାଗଲା ।

ଉତ୍ତରା ଭାଇଙ୍କୁ ବନ୍ଦାପନା କରି କହିଲେ, ଏ ଯାତ୍ରା ବିଜୟ ମଣ୍ଡିତ ହେଉ । ବୃହନ୍ନଳାଙ୍କୁ ଲକ୍ଷ୍ୟକରି କହିଲେ, ''ବିଜୟର ଚିହ୍ନ ସ୍ୱରୂପ, ଦୟାକରି କୌରବ ବୀର ମାନଙ୍କର ରଥର ପତାକା ଓ ସେମାନଙ୍କ ମୂଲ୍ୟବାନ୍ ବେଶ ପୋଷାକର ଛିନ୍ନ ଅଂଶ ନେଇ ଆସିବେ । ମୁଁ ମୋର କଣ୍ଢେଇ ମାନଙ୍କୁ ତାହା ପିନ୍ଧାଇବି ।''

ବୃହନ୍ନଳା ହସିହସି କହିଲେ, ''ରାଜକୁମାରୀଙ୍କର ଏ ଇଚ୍ଛା ଅପୂରଣ ରହିବ ନାହିଁ । ଏହା ଅପେକ୍ଷା ଅଧିକ ମୂଲ୍ୟବାନ ଉପହାର ଆମେ ନିଶ୍ଚୟ ଆଣିବୁ ।

ମଙ୍ଗଳ ମୁହୂର୍ତ୍ତରେ ଯାତ୍ରା ଆରମ୍ଭ ହେଲା । ଅର୍ଜୁନ ରଥରେ ବସିଲାକ୍ଷଣି ଘୋଡ଼ାମାନେ ସତେ ଯେପରି ପରିଚିତ ସାରଥିର ସ୍ପର୍ଶ ଅନୁଭବ କଲେ । ରଥ ଖୁବ୍ ଜୋରରେ ଛୁଟିଲା । ଏତେଦିନପରେ ଅର୍ଜୁନ କୌରବମାନଙ୍କୁ ରଣକ୍ଷେତ୍ରରେ ଭେଟିବେ । ଆନନ୍ଦର ସୀମା ରହିଲାନାହିଁ । ପବନ ବେଗରେ ରଥଛୁଟି ଥାଏ ।

ରାଜପୁତ୍ର ଉତ୍ତର, ଭୟରେ ଝାଳନାଳ, ହୋଇଗଲେଣି । ସେ ଚିତ୍କାର କଲେ, ବୃହନ୍ନଳା, ରଥ ଅଟକାଅ .. ରଥ ଅଟକାଅ । ଅର୍ଜୁନ କିଛି ଶୁଣିଲେ ନାହିଁ ବରଂ ରଥର ବେଗ ବଢ଼ାଇ ଦେଲେ । ଉତ୍ତର ଆଦେଶ କଣ୍ଠରେ କହିଲେ, '' ସାରଥି ! ମୁଁ ରାଜପୁତ୍ର ଉତ୍ତର କହୁଛି, ମୋ ନିର୍ଦ୍ଦେଶ ମାନିବାକୁ ହେବ । ରଥ ବନ୍ଦକର ...ବନ୍ଦକର ରଥ ।''

ତଥାପି ରଥ ଅଟକିଲା ନାହିଁ । ଉତ୍ତାଳ ସମୁଦ୍ରପରି ମାଡ଼ି ଯାଉଥାଏ ଆଗକୁ । ଯୁବରାଜ ଉତ୍ତର ରଥ ଉପରୁ କୌରବ ମାନଙ୍କର ସୈନ୍ୟ ସଜ୍ଜା ଦେଖିବାକୁ ପାଇଲେ । ଫରଫର ସାମରିକ ଧ୍ୱଜାରେ ଆକାଶ ମଣ୍ଡଳ ପରିପୂର୍ଣ୍ଣ । ସୈନ୍ୟ ଶ୍ରେଣୀର ସମ୍ମୁଖରେ ଦଣ୍ଡାୟମାନ ମହାରଥୀ ଭୀଷ୍ମ, କର୍ଣ୍ଣ, ଦ୍ରୋଣ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ଓ ଦୁର୍ଯ୍ୟୋଧନ ପ୍ରଭୃତି । ବିରାଟ ପୁତ୍ର ଉତ୍ତର, କୌରବମାନଙ୍କୁ ଏକ ଏକ ଦୁର୍ଗପରି ଦଣ୍ଡାୟମାନ ହେଇଥିବାର ଦେଖି ଭୟାକୁଳିତ କଣ୍ଠରେ କହିଲେ, '' ବୃହନ୍ନଳା ! ଏମାନଙ୍କ ସହିତ ଆମେ ଯୁଦ୍ଧକରି ପାରିବାନାହିଁ । ସ୍ୱୟଂ ଦେବତାମାନେ ମଧ୍ୟ ଯୁଦ୍ଧକଲେ ପରାଜିତ ହେବେ । ରଥ ଫେରାଅ । ଫେରାଅ ...ରଥ ।''

ବୃହନ୍ନଳାଙ୍କ କାନରେ ଏକଥାଗୁଡ଼ାକ ପଡୁନଥାଏ । ରଥର ବେଗକୁ ନକମାଇ ସେ କହିଲେ, ''ହେ ରାଜପୁତ୍ର ! ରାଜ ପ୍ରାସାଦରେ ରମଣୀମାନଙ୍କ ପାଖରେ ଆପଣ ଶପଥ କରିଚନ୍ତି, କୌରବ କୁଳକୁ ଧ୍ୱଂସ କରିବେ ବୋଲି । ଆମେ ଭୀରୁ ପଳାତକ ପରି ଯୁଦ୍ଧ ଭୂମିରୁ ଫେରିଗଲେ ସେମାନେ ଆମକୁ କ'ଣ କହିବେ । କ୍ଷତ୍ରିୟ ହୋଇ ଆପଣ ଯଦି ଡରୁଛନ୍ତି ତେବେ ମୁଁ ସେମାନଙ୍କ ସାଥିରେ ଯୁଦ୍ଧ କରିବି, ଆପଣ ରଥ ଚଳାନ୍ତୁ । ଏହାକହି ରଥର ବେଗ ପୁଣି ବଢ଼ାଇ ଦେଲେ । ଉତ୍ତର, କିଛି ଉପାୟ ନଦେଖି ପ୍ରାଣ ବିକଳରେ ବେଗଶୀଳ ଚଳନ୍ତି ରଥରୁ ତଳକୁ ଡେଇଁ ପଡ଼ି ଦଉଡ଼ି ଦଉଡ଼ି ପଳାଇଲେ ।

ବୃହନ୍ନଳା ରଥରୁ ଓହ୍ଲାଇ ରାଜପୁତ୍ରଙ୍କୁ ଅନୁସରଣ କଲେ । ତାଙ୍କର ମୁକୁଳା କେଶପାଶ, ବିପର୍ଯ୍ୟସ୍ତ ବେଶ ବାସ ଦେଖି କୌରବ ସୈନ୍ୟମାନେ ହସୁଥାନ୍ତି । ଭାବୁଥାନ୍ତି , ନପୁଂସକଟିଏ କିଏ, ସେ କାହିଁକି ପଳାତକ ପଛରେ ଗୋଡ଼ାଇଛି । ଏ ଲୋକଟି ଛଦ୍ମବେଶୀ ଅର୍ଜୁନ ନୁହେଁ ତ । ସନ୍ଦେହର ଘନକୁଜ୍ଝଟିକା ମଧ୍ୟରେ ସମସ୍ତେ ରହିଥାନ୍ତି ।

ବୃହନ୍ନଳା ଦଉଡ଼ି ଦଉଡ଼ି କିଛି ଦୂରରେ ଉତ୍ତରଙ୍କୁ ଧରିଲେ । ରାଜପୁତ୍ର ଭୟରେ ଗୋଟାପଣେ ଥରୁଥାନ୍ତି । ପ୍ରାଣବିକଳରେ କାନ୍ଦି କାନ୍ଦି କହିଲେ, ''ବୃହନ୍ନଳା ! ମୁଁ ଜୀବନରେ ଯୁଦ୍ଧ କଣ ଜାଣିନି । ମୁଁ ରଣଭୂମି ଦେଖିନାହିଁ । ତୁମେ ମୋତେ ଛାଡ଼ିଦିଅ । ମୁ ତୁମକୁ ପ୍ରତିବଦଳରେ ଇଚ୍ଛା ମୁତାବକ ବିଶୁଦ୍ଧ ସ୍ୱର୍ଣ୍ଣ, ମୁକ୍ତା, ମଣି ମାଣିକ୍ୟ, ହସ୍ତୀ, ଅଶ୍ୱ, ଗୋ ସମ୍ପଦ ଦାନ କରିବି । ଏହା ବ୍ୟତୀତ ଅଶ୍ୱଯୁକ୍ତ ଏକ

ସୁବର୍ଣ୍ଣ ଖଚିତ ରଥ ମଧ୍ୟ ଉପହାର ଦେବି । ତୁମେ ଦୟାକରି ମୋତେ ଛାଡ଼ିଦିଅ । ମୁଁ ମୋ ପିତାମାତାଙ୍କର ଏକମାତ୍ର ପୁତ୍ରସନ୍ତାନ । ତୁମେ ଜାଣିଜାଣି ଯଦି ମୃତ୍ୟୁବରଣ କରିବାକୁ ଚାହୁଁଛ ମୋର ସେଥିରେ କିଛି କହିବାର ନାହିଁ, କିନ୍ତୁ ମୋତେ ସେ ଦଣ୍ଡ ଭୋଗ କରିବାକୁ ଦିଅନାହିଁ ।''

ବୃହନ୍ନଳା କିଛି ନ ଶୁଣି ଉତ୍ତରଙ୍କୁ ଟାଣି ଟାଣି ନେଇ ରଥରେ ବସାଇଲେ । ତାଙ୍କୁ ଆଶ୍ୱାସନା ଦେଇ କହିଲେ, ''ହେ ରାଜପୁତ୍ର ! ଯୁଦ୍ଧ କ୍ଷତ୍ରିୟର ଜନ୍ମଗତ ସଂସ୍କାର । ଯୁଦ୍ଧ ଭୂମିରେ ମୃତ୍ୟୁବରଣ କଲେ କ୍ଷତ୍ରିୟର ସ୍ୱର୍ଗପ୍ରାପ୍ତି ହୁଏ । ରଣପ୍ରାନ୍ତର କ୍ଷେତ୍ରିୟର ଦେବାଳୟ । ଏତେ ବ୍ୟସ୍ତ କାହିଁକି ? ତୁମେ କେବଳ ରଥ ଚଳାଅ । ଯୁଦ୍ଧ ପାଇଁ ମୋତେ ଛାଡ଼ିଦିଅ । ଦେଖ, ମୁଁ ଏହି ବିରାଟ କୁରୁବଳକୁ କବଳିତ କରି ତୁମର ମାନସମ୍ମାନ ରକ୍ଷାକରୁଛି କିନାହିଁ । ଏ ଯେଉଁ ବିଜୟ ହେବ, ତା ହେବ ବିରାଟ ରାଜାଙ୍କ ବୀରପୁତ୍ର ଉତ୍ତରଙ୍କର । ବୃହନ୍ନଳାଙ୍କୁ ବିଜୟୀ ବୋଲି କେହି କହିବେ ନାହିଁ । ମତ୍ସ୍ୟ ରାଜ୍ୟର ସମ୍ମାନ ରକ୍ଷାପାଇଁ ଆପଣକେବଳ ରଥ ଚଳାନ୍ତୁ । ମୁଁ ଯୁଦ୍ଧ କଥା ବୁଝିବି ।''

ଭୟାତୁର ଉତ୍ତର, ଇଚ୍ଛା ବିରୁଦ୍ଧରେ ରଥରଜ୍ଜୁ ଧରିଲେ । ତାପରେ ରଥକୁ ଶ୍ମଶାନ ଆଡ଼କୁ ଚଳାଇବାକୁ ବୃହନ୍ନଳା କହିଲେ । ରଥ ଚାଲିଲା, ଯାଇ ଅଟକିଲା ଏକ ଶମୀବୃକ୍ଷ ମୂଳରେ । ବୃହନ୍ନଳା ଉତ୍ତରଙ୍କୁ କହିଲେ, ''ଆପଣ ଏହି ଶମୀବୃକ୍ଷରେ ଗଢ଼ି କୋଟର ଭିତରେ ଥିବା ପାଣ୍ଡବମାନଙ୍କର ଅସ୍ତ୍ର ଶସ୍ତ୍ର ଗୁଡ଼ିକୁ ଆଣନ୍ତୁ । ତାରି ଭିତରେ ଅଛି ଅର୍ଜୁନଙ୍କର ଗାଣ୍ଡିବ ଧନୁ । ସେ ଅସ୍ତ୍ର ବିନା ଏଯୁଦ୍ଧ ଜୟଲାଭ କରାଯାଇ ପାରିବନାହିଁ ।

ବୃହନ୍ନଳାଙ୍କର ଏପ୍ରକାର ନିର୍ଦ୍ଦେଶ ଉତ୍ତରଙ୍କୁ ଭଲ ଲାଗିନଥିଲେ ମଧ୍ୟ ସେ ଉପସ୍ଥିତ କ୍ଷେତ୍ରରେ କ୍ରୋଧ ସମ୍ବରଣ କରି ଗଛ ଉପରେ ଚଢ଼ିଲେ । ତା'ପରେ ଶର ଗଣ୍ଠିଲିଟିକୁ ତଳକୁ ଆଣିଲେ । ଆବରଣ ଖୋଲି ଦେବା ମାତ୍ରେ ତାର ଦିବ୍ୟ ଜ୍ୟୋତିରେ ଉତ୍ତର ଚମକି ପଡ଼ିଲେ । ସର୍ପ ବୋଲି ଭାବି ଟିକିଏ ଦୂରେଇ ଗଲେ । ବୃହନ୍ନଳା ଗୋଟି ଗୋଟି କରି ସମସ୍ତ ଆୟୁଧ ବାହାରକରି ଉତ୍ତରଙ୍କୁ ଚିହ୍ନାଇ ଦେଲେ ଓ ପ୍ରତ୍ୟେକ ଅସ୍ତ୍ରର କରାମତି ବିଷୟରେ ଧାରଣା ଦେଲେ । ରାଜପୁତ୍ର ପାଣ୍ଡବମାନଙ୍କ ବିଷୟରେ ଜାଣିବାପାଇଁ ଆଗ୍ରହ ପ୍ରକାଶ କରିବାରୁ ବୃହନ୍ନଳା ସେମାନଙ୍କର ପରିଚୟ ପ୍ରସଙ୍ଗରେ କହିଲେ '' ହେ ବିରାଟ ପୁତ୍ର ! ପାଣ୍ଡବଗଣ ଆପଣଙ୍କ ରାଜପୁରୀରେ ଆଶ୍ରୟ ନେଇଛନ୍ତି । ବାରବର୍ଷ ବନବାସ ଦଣ୍ଡ ଭୋଗ କରିବାପରେ ଏକବର୍ଷ ଅଜ୍ଞାତବାସ ବିରାଟରାଜାଙ୍କ ରାଜପୁରୀରେ ଅତିବାହିତ ହୋଇଛି । ରାଜା ବିରାଟ କେବଳ ନାମରେ ବିରାଟ ନୁହଁନ୍ତି, ତାଙ୍କର ହୃଦୟ ମଧ୍ୟ ବିଶାଳ । ପ୍ରକାଶ୍ୟରେ ସେ ପାଣ୍ଡବମାନଙ୍କର ମିତ୍ରଥିଲ । ଅଜ୍ଞାତରେ ସେ ସେହି ମିତ୍ରତାକୁ ଦୃଢ଼ୀଭୂତ କରିଛନ୍ତି ।''

''ବୃହନ୍ନଳା ! ତୁମେ ମୋତେ ବିଶ୍ୱାସର ଏକ ଗୋଲକ ଧନ୍ଦାରେ ପକାଉନାହଁ ତ ? ମୋତେ ଏସବୁ ପ୍ରହେଳିକା ପରି ଜଣାପଡୁଛି । ରାଜପୁରୀରେ ପାଣ୍ଡବମାନେ ତେବେ କିଏ ?''

ରାଜସଭାରେ ଥିବା କଙ୍କ ବ୍ରାହ୍ମଣ ନୁହଁନ୍ତି ସେ ସ୍ୱୟଂ ଧର୍ମରାଜ ଯୁଧିଷ୍ଠିର । ବଲ୍ଲବ ସୂପକାର ସ୍ୱୟଂ ମହାବଳୀ ଭୀମ । ଅଶ୍ୱପାଳ ଗ୍ରନ୍ଥିକ ନକୁଳ ଓ ଗୋପାଳକ ତଂନ୍ତ୍ରୀପାଳ ହେଉଛନ୍ତି ପଞ୍ଚମ ପାଣ୍ଡବ ସହଦେବ । ମୁଁ ଅର୍ଜୁନ ଓ ସୈରିନ୍ଧ୍ରୀ ହେଉଛନ୍ତି ଦେବୀ ଦ୍ରୌପଦୀ ।''

ତଥାପି ମୁଁ ବିଶ୍ୱାସର କୂଳ କିନାରା କିଛି ପାଇ ପାରୁନି ବୃହନ୍ନଳା । ଅବିଶ୍ୱାସ ମଧ୍ୟ କରିପାରୁନି । ଆଚ୍ଛା ତୁମେ ଯଦି ଅର୍ଜୁନ, ତା'ହେଲେ ତାଙ୍କର ଦଶନାମ ବିଷୟରେ ତୁମର କିଛି ଧାରଣା ଅଛି ।

ନିଶ୍ଚୟ ଅଛି ।

ତାହେଲେ ସବୁ ନାଁ ଓ ସେ ନାଁର ତାତ୍ପର୍ଯ୍ୟ କଣ କହିଲ । ଦୁର୍ଲଭ ଦୀପ୍ତି ଓ ବିଶୁଦ୍ଧ କର୍ମ ପାଇଁ ମୁଁ ଅର୍ଜୁନ । ରାଜ୍ୟ ଜୟକରି କେବଳଧନ ଆଣେ ବୋଲି ଧନଞ୍ଜୟ । ଯୁଦ୍ଧରେ ମୁଁ ସର୍ବଦା ବିଜୟଲାଭ କରେ ବୋଲି ମୋ ନାଁ ବିଜୟ । ମୋ ରଥ ଅଶ୍ୱଦ୍ୱୟ ଶ୍ୱେତବର୍ଣ୍ଣ ହୋଇଥିବାରୁ ମୋତେ ଶ୍ୱେତବାହନ କୁହାଯାଏ । ଉତ୍ତର ଫାଲ୍‌ଗୁନୀ ଓ ପୂର୍ବ ଫାଲଗୁନୀ ନକ୍ଷତ୍ରର ସନ୍ଧି ସ୍ଥଳରେ ମୋର ଜନ୍ମ ବୋଲି ମୋର ନାମ ଫାଲଗୁନି । ଦେବାସୁର ଯୁଦ୍ଧରେ ଇନ୍ଦ୍ରଦେବତା ମୋ ଉପରେ ସନ୍ତୁଷ୍ଟ ହୋଇ ମୋ ମୁଣ୍ଡରେ କିରୀଟି ପିନ୍ଧାଇ ଥିଲେ ବୋଲି ମୁଁ କିରୀଟ । ଯୁଦ୍ଧ କ୍ଷେତ୍ରରେ ମୁଁ କଦାପି ବିଭତ୍ସ କାର୍ଯ୍ୟ କରେନାହିଁ ବୋଲି ମୋତେ ବିଭତ୍ସୁ ବୋଲି କୁହାଯାଏ । ଦକ୍ଷିଣ ହସ୍ତବ୍ୟତୀତ ମୁଁ ବାମହସ୍ତରେ ମଧ୍ୟ ଧନୁ ଆକର୍ଷଣ କରିପାରେ ବୋଲି ମୋତେ ସବ୍ୟସାଚୀ ବୋଲି କହନ୍ତି । ମନୁଷ୍ୟ ଓ ଦେବତାଙ୍କ ମଧ୍ୟରେ ମୁଁ ଜୟଶୀଳ ତେଣୁ ମୋ ନାଁ ଜିଷ୍ଣୁ । ମୁଁ ପୃଥାଙ୍କର ପୁତ୍ର ବୋଲି ମୋ ନାଁ ପାର୍ଥ । ଏଇହେଲା ମୋର ଦଶନାମ ଓ ଏହାର ମାହାତ୍ମ୍ୟ ।

ଉତ୍ତର, ଭାବବିହ୍ୱଳ ହୋଇ ଅର୍ଜୁନଙ୍କ ପଦଯୁଗରେ ପ୍ରଣାମ ଢ଼ାଳିଲେ । କୋହ କମ୍ପିତ କଣ୍ଠରେ କହିଲେ, ''ହେ ଅର୍ଜୁନ ! ହେ ଧନଞ୍ଜୟ ହେ ମହାବାହୁ ! ଆପଣ ନିଜର ଦଶନାମକୁ ସାର୍ଥକ କରିଛନ୍ତି । ଆପଣ ମୋର ପୂଜ୍ୟ । ଏକ ଅବୋଧ ବାଳକପରି ମୁଁ ଏଣୁ ତେଣୁ କେତେକଣ ଅବାନ୍ତର ପ୍ରଶ୍ନ ପଚାରିଛି । ଜ୍ଞାନ ଚକ୍ଷୁର ଅଭାବରେ ଆପଣଙ୍କର ଅନ୍ତର୍ନିହିତ ଶକ୍ତିକୁ ମୁଁ କଳନା କରି ପାରିନାହିଁ । ମୋତେ ନିଜର କ୍ଷମା ସୁଲଭ ଗୁଣରେ କ୍ଷମାଦିଅନ୍ତୁ । ମୋର ମୋହ ଭଙ୍ଗ ହୋଇଛି । ଅନ୍ଧକାରର ଯବନିକା ଦୂରେଇ ଯାଇଛି, ମୁଁ ଆଜି ଅନିର୍ବଚନୀୟ ଆନନ୍ଦର ଅଧିକାରୀ ।''

ଅର୍ଜୁନ କହିଲେ, '' ହେ ଭୂମିଞ୍ଜୟ ! ହେ ବିରାଟ ପୁତ୍ର ଉତ୍ତର ! ତୁମେ ଆଲୋକର ଅଧିକାରୀ ହୋଇଚ । ବର୍ତ୍ତମାନ ଜାଗ୍ରତ ହୁଅ, କୌରବ ସେନାର ସମ୍ମୁଖୀନ ହୁଅ ।

ପାଣ୍ଡବମାନଙ୍କର ଅନ୍ୟସବୁ ଆୟୁଧ ସେହି ଶମୀ ବୃକ୍ଷରେ ରଖିଦେଇ ଅର୍ଜୁନ କେବଳ ନିଜର ଅସ୍ତ୍ର କବଚ ନେଇ ବାହାରିଲେ । ରଥ ପୁଣି ବାୟୁବେଗରେ ରଣଭୂମିକୁ ଅଗ୍ରସର ହେଲା ।

## ।। ଯୁଦ୍ଧ ହିଁ ଶ୍ରେୟସ୍କର ।।

ଅର୍ଜୁନ ନିଜର ଛଦ୍ମ ବେଶ ପରିହାର କରିଛନ୍ତି । ବୃହନ୍ନଳାର ଅଭିନୟ ତାଙ୍କର ଶେଷ ହୋଇଛି । ହାତରେ ପିନ୍ଧିଥିବା ଶଙ୍ଖା ଫିଟାଇ ଦେଲେ । ମୁଣ୍ଡରେ ଲମ୍ବ ବେଣୀକୁ ଏକାଠି କରି ଲୁଗାରେ ବାନ୍ଧି ଦେଲେ । ନିଜକୁ ସଜ୍ଜିତ କଲେ ଯୋଦ୍ଧାବେଶରେ । ପବନ ପାଇ ଭସ୍ମକୁଣ୍ଡରୁ ଅଗ୍ନି ଉଦ୍ଦୀପିତ ହେଲାପରି, ବୃହନ୍ନଳାର ନପୁଂସକ ବେଶ ଭିତରୁ ମହାରଥୀ ଅର୍ଜୁନଙ୍କର ଦିବ୍ୟରୂପ ପ୍ରତିଭାତ ହେଲା ।

ଘନ ଘନ ବାଜି ଉଠିଲା ଦେବଦତ୍ତ ଶଙ୍ଖ । ଗାଣ୍ଡୀବ ଧନୁର ଟଙ୍କାର ଧ୍ୱନିରେ ଦଶଦିଗ ପ୍ରକମ୍ପିତ ହେଲା । ରଥର ଭୈରବ ନିର୍ଘୋଷରେ ମେଦିନୀ କମ୍ପିଉଠିଲା । ଉତ୍ତର ମୋହାବିଷ୍ଟ ହେବାରୁ, ଅର୍ଜୁନ ପୁଣି ତାଙ୍କୁ ସାହସ ଦେବାପାଇଁ ନିଜର ଅକ୍ଷୟ କୀର୍ତ୍ତିର ଇତିହାସ କହିଲେ ।

ରଥ ପ୍ରଳୟର ବାର୍ତ୍ତା ନେଇ ଆଗେଇଥାଏ । କୌରବ ଶିବିରରେ ଭାଳେଣି ପଡ଼ିଗଲାଣି । ଶଙ୍ଖନାଦ, ଧନୁର ଟଙ୍କାର ଓ ରଥର ଘର୍ଘର ଘୋଷ ଶୁଣି ସେମାନେ ଭାବୁଥାନ୍ତି ଯେ ଅର୍ଜୁନ ନିଶ୍ଚୟ

ଆସୁଛନ୍ତି । ସୈନ୍ୟ ବାହିନୀ ନାହାନ୍ତି, ଗୋଟିଏ ରଥ ଏକା ଛୁଟିଛି ଆକାଶ ପଥରୁ ଉଲ୍‌କାପରି । ବିରାଟ କୌରବ ବାହିନୀକୁ ସମ୍ମୁଖୀନ ହେବାପାଇଁ ଏକକଶକ୍ତି ଏକା ଅର୍ଜୁନଙ୍କର ଅଛି ।

ଦ୍ରୋଣ ମନେ ମନେ ଭାବିଲେ ଅର୍ଜୁନ ଏ ଭୁଲକଲେ କାହିଁକି ? ଅଜ୍ଞାତବାସରୁ ଆବିର୍ଭାବ ହେବାର ସମୟ ବୋଧହୁଏ ତଥାପି ବାକି ଅଛି । ଜାଣୁ ଜାଣୁ କଣ ଅର୍ଜୁନ ଏ ଭୁଲ କରିଥିବେ ।

ହଠାତ୍ କୌରବ ଶିବିରରେ ଅଶୁଭ ସୂଚନା ଦେଖାଗଲା । ଶକୁନପକ୍ଷୀ ଆସି ବସିଛି ରଥଧ୍ୱଜ ଉପରେ । ଘୋଟକ ମାନଙ୍କ ମଧ୍ୟରେ ଉଦ୍ଧାମତା ନାହିଁ । ଉଦ୍ଦୀପ୍ତ ଅଗ୍ନିରେ ଉତ୍ତାପ ନାହିଁ । ହରିଣ ଗଣ ଆକାଶ ମାର୍ଗକୁ ଚାହିଁ ଚିତ୍କାର କରୁଛନ୍ତି । ଶୃଗାଳମାନେ ଶିବିର ମଧ୍ୟରେ ପ୍ରବେଶ କରି ରଡ଼ି ଛାଡୁଛନ୍ତି । କୌରବପକ୍ଷର ବହ୍ନିମାନ ସୈନ୍ୟଗଣ ମଧ୍ୟରେ ପ୍ରଚଣ୍ଡତା ନାହିଁ । ସତେଯେପରି ବୈଶାଖି ସୂର୍ଯ୍ୟଙ୍କୁ ଆଚ୍ଛାଦିତ କରିଛି କୃଷ୍ଣ ମେଘଖଣ୍ଡ ।

ଦ୍ରୋଣାଚାର୍ଯ୍ୟ ଦୁର୍ଯ୍ୟୋଧନଙ୍କୁ କହିଲେ, ''ହେ କୁରୁବୀର ! ଯୁଦ୍ଧପାଇଁ ବର୍ତ୍ତମାନ ସମୟ ଆଦୌ ଅନୁକୂଳ ନୁହେଁ । ଦେଖୁଛତ ଆମ ଆଖି ଆଗରେ କେତେ ଅଶୁଭ ସଂକେତ । ଅର୍ଜୁନ ନିଶ୍ଚୟ ଆସୁଛନ୍ତି କୌରବ ସେନାର ସମ୍ମୁଖୀନ ହେବାପାଇଁ । ଗାଣ୍ଡୀବ ଧନୁର ଟଙ୍କାର ମହାଶଙ୍ଖର ମହାନାଦ ଶୁଣୁଛକିନାହିଁ । ତାଙ୍କୁ ଯୁଦ୍ଧ ଭୂମିରେ ଭେଟିବା ପାଇଁ ଆମର ଏ ପାରମ୍ପରିକ ପ୍ରସ୍ତୁତି ଯଥେଷ୍ଟ ନୁହେଁ । ବରଂ ତାଙ୍କର ଗୋଧନ ଛାଡ଼ି ଦେଇ ଚାଲିଯିବା ।

ଦୁର୍ଯ୍ୟୋଧନ ଏ ପ୍ରସ୍ତାବକୁ ସମର୍ଥନ କରିପାରିଲେ ନାହିଁ । ବିରକ୍ତିପୂର୍ଣ୍ଣ କଣ୍ଠରେ କହିଲେ, ''ଯୁଦ୍ଧ ଓ ପଳାୟନ ମଧ୍ୟରୁ, ଆମ ପାଇଁ ଯୁଦ୍ଧ ହିଁ ଶ୍ରେୟସ୍କର ।

ଯେଉଁ ଲକ୍ଷ୍ୟ ନେଇ ଆମେ ଆସିଛେ ତାହାକୁ ପୂର୍ଣ୍ଣକରିବାକୁ ହେବ । ଶୁଭାଶୁଭ ବିଚାର ଯୁଦ୍ଧ ଭୂମିରେ କରାଯାଏ ନାହିଁ । ସୁଶର୍ମାଙ୍କୁ ସାହାଯ୍ୟ କରିବାପାଇଁ ଆମେ ପ୍ରତିଶ୍ରୁତି ଦେଇଛେ ସେଥିରୁ ଓହରି ଯିବାର ପ୍ରଶ୍ନ ଉଠୁ ନାହିଁ । ସେ ତାଙ୍କର କର୍ତ୍ତବ୍ୟ କରିଥିବେ । ଆମେ ଆମର କର୍ତ୍ତବ୍ୟ କରିବା । ମୁଁ ବୁଝିପାରୁନି ଆଚାର୍ଯ୍ୟ ଦ୍ରୋଣଙ୍କର ଅର୍ଜୁନଙ୍କ ପ୍ରତି ଏତେ ଭୟ କାହିଁକି ? ଏହାହିଁ ଅର୍ଜୁନଙ୍କର ସମ୍ମାନକୁ ଅହେତୁକ ଭାବରେ ବଢ଼ାଇ ଦେଉଛି । ଏପରି ସ୍ୱର୍ଣକାତର କଥା କହି କୌରବ ମାନଙ୍କର ମନୋବଳକୁ ଦୁର୍ବଳ କରିଦେବା ଅନୁଚିତ । ଅଜ୍ଞାତବାସର ସମୟ ପୂର୍ଣ୍ଣ ହୋଇନି । ଯଦି ଅର୍ଜୁନ ଆସୁଥିବେ ତେବେ ନିଜର ବୋକାମି ପାଇଁ ପୁଣି ବାରବର୍ଷ ବନବାସ ଦଣ୍ଡ ଭୋଗ କରିବେ ।''

ଭୀଷ୍ମ ଦେବ କହିଲେ, ''ଲକ୍ଷ୍ୟପୂରଣ ହୋଇଯାଇଛି । ଏହା ସମ୍ମୁଖୀନ ହେବାର ସମୟ । ଭୟକରିବାର କିଛି କାରଣ ନାହିଁ । ପ୍ରାତ୍ୟାବର୍ତ୍ତନର ପ୍ରଶ୍ନ ଉଠୁନି ।''

ଦ୍ରୋଣ ଏହାର ସୂକ୍ଷ୍ମ ଅର୍ଥ ବୁଝିପାରିଲେ ଯେ ଅଜ୍ଞାତବାସର ସମୟ ଅତିକ୍ରାନ୍ତ ହୋଇଛି । ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଦୃଢ଼ତା ଆବଶ୍ୟକ ।

ଦୁର୍ଯ୍ୟୋଧନ କହିଲେ, ''ମୁଁ ତ ସେଇ କଥା କହୁଛି । ଯଦି ଅର୍ଜୁନ ଆସିଛି ଆସୁ, ସେ ତା'ର ଫଳଭୋଗ କରିବ । ପୂର୍ବଚୁକ୍ତି ତ ବଳବତ୍ତର ଅଛି । ଯୁଦ୍ଧକୁ ଡରିବାର କାରଣ କିଛି ନାହିଁ । ଯେଉଁ ଠାରେ ପିତାମହ ଭୀଷ୍ମ ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଅଶ୍ୱତ୍ଥାମା ଓ କର୍ଣ୍ଣ ସ୍ୱୟଂ ବିରାଜମାନ ସେଠାରେ ଯୁଦ୍ଧ ପାଇଁ ଏତେ ବିମୁଖତା କାହିଁକି ?''

କର୍ଣ୍ଣ କହିଲେ, ''ଆଚାର୍ଯ୍ୟ ଦ୍ରୋଣଙ୍କର ଅର୍ଜୁନଙ୍କ ପ୍ରତି ସବୁବେଳେ ମମତା ଅଧିକ । ତାଙ୍କୁ ପ୍ରଶଂସା କରିବାଦ୍ୱାରା ଆମ ସୈନ୍ୟମାନେ ହତୋତ୍ସାହିତ ହୋଇ ଯାଉଛନ୍ତି । ଆମ ସୈନ୍ୟମାନେ ଯେ

ଭୟରେ ଛତ୍ରଭଙ୍ଗ ନଦେବେ କିଏ କହିବ । ଆଚାର୍ଯ୍ୟ ଦ୍ରୋଣ ସର୍ବଦା ପାଣ୍ଡବମାନଙ୍କ ସପକ୍ଷରେ । ମୁଁ ବୁଝିପାରୁନି, ଏହାର ରହସ୍ୟ କଣ । କେବଳ ଅର୍ଜୁନ କାହିଁକି, ପର୍ଶୁରାମ ମଧ୍ୟ ଆସିଲେ ମୁଁ ତାଙ୍କୁ ଯୁଦ୍ଧରେ ପରାସ୍ତ କରିଦେବି । କାହାର ସହଯୋଗ ଲୋଡ଼ିବି ନାହିଁ । ଉତ୍ତାଳ ସମୁଦ୍ରକୁ ବେଳାଭୂମି ଅବରୋଧ କଲାପରି, ମୁଁ ଏକାକି ତାଙ୍କୁ ପ୍ରତିରୋଧ କରିଦେଇ ପାରିବି । ମତ୍ସ୍ୟଦେଶର ଗୋଧନ ନେଇ ଆମ ସୈନ୍ୟମାନେ ଚାଲିଯାଆନ୍ତୁ ।

କର୍ଣ୍ଣଙ୍କର ଏ ପ୍ରକାର ଆସ୍ଫାଳନ ଓ ଅବଜ୍ଞା ସୂଚକ କଥା ଶୁଣି ଦ୍ରୋଣପୁତ୍ର ଅଶ୍ୱତଥମା କ୍ରୋଧରେ ଅସ୍ଥିର ହୋଇ ଉଠିଲେ । ପିତାଙ୍କ ପ୍ରତି ଏପ୍ରକାର ଦୁର୍ବ୍ୟବହାର ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । ସେ ଉତ୍ତେଜିତ ହୋଇ କହିଲେ, ''କର୍ଣ୍ଣ ! ନିଜର ଡିଣ୍ଡିମ ନିଜେ ବାଡ଼େଇ ଅଯଥା ଗର୍ଜ୍ଜନ କରୁଛ କାହିଁକି । ଅର୍ଜୁନଙ୍କ ସହିତ ଏକା ଲଢ଼ିବାର ଦାମ୍ଭିକତା ମୋ ପାଖରେ ସ୍ୱପ୍ନ । ବାହୁରେ ଯଦି ଏତେ ଶକ୍ତିଥିଲା, ତେବେ ଗନ୍ଧର୍ବମାନେ ଦୁର୍ଯ୍ୟୋଧନଙ୍କୁ ବାନ୍ଧି ନେବାବେଳେ ତାଙ୍କୁ ମୁକ୍ତ କରିପାରିଲ ନାହିଁ କାହିଁକି ? ଆଚାର୍ଯ୍ୟ ଦ୍ରୋଣଙ୍କ ପ୍ରତି ଏତେ ଆକ୍ରୋଶର କାରଣ କଣ ? ଗୁରୁଙ୍କର ନିଜର ପ୍ରିୟ ଶିଷ୍ୟ ପ୍ରତି ଶ୍ରଦ୍ଧାରହିବା ପାପନୁହେଁ ।''

''ମନେରଖ, ତୁମେ ଏପର୍ଯ୍ୟନ୍ତ ପାଣ୍ଡବମାନଙ୍କୁ ଯୁଦ୍ଧଭୂମିରେ ଜୟକରିବାର ସୌଭାଗ୍ୟ ଲାଭ କରିନାହଁ । ବରଂ ଅନ୍ୟାୟ ପଶା ଖେଳରେ ସେମାନଙ୍କୁ ହରାଇ ସର୍ବହରା କରିଛ । ତାଙ୍କର ପୈତୃକ ରାଜ୍ୟକୁ ଅନ୍ୟାୟରେ ଭୋଗ କରୁଛ । ତଥାପି ତୁମର ମୁହଁ ଗାଲୁ ଯାଉନି, ବୀର ବୋଲି ବାହାସ୍ଫୋଟ ମାରୁଛ । ବରଂ ଲଜ୍ଜିତ ହେବାର କଥା । ଗାଣ୍ଡିବ ଧନୁ ଶକୁନିର ପଶାକାଠି ନୁହେଁ । ଯଦି ମଙ୍ଗଳ ଅଛି ନିରବରେ ଉପସ୍ଥିତ କର୍ତ୍ତବ୍ୟକର । ଦେଖୁଛ କି ନାହିଁ, ସୂର୍ଯ୍ୟ ନୀରବରେ କିରଣଜାଳ ବିସ୍ତାର କରି ସଂସାରକୁ ରକ୍ଷା କରୁଛନ୍ତି । ମା ବସୁଧା ସଂସାରର ଏତେ ଭାର ବହନ କରିମଧ୍ୟ ନିରବ । ସମ୍ମାନନୀୟ ଗୁରୁଜନ ମାନଙ୍କୁ, ଅପମାନିତ କରିବାର ଅଧିକାର ତୁମର ନାହିଁ । ସଂଯମତା ରକ୍ଷାକର ।''

କୃପାଚାର୍ଯ୍ୟ କହିଲେ, ''କର୍ଣ୍ଣ ! ଡିଣ୍ଡିମ ବାଡ଼େଇବାର ଏହା ସମୟ ନୁହେଁ । ଅର୍ଜୁନଙ୍କୁ ରଣଭୂମିରେ ସମ୍ମୁଖୀନ ହେବାର ଏହା ହେଉଛି ପ୍ରକୃଷ୍ଟ ସମୟ ।''

ପିତାମହ ଭୀଷ୍ମ ଅଶ୍ୱତ୍ଥାମାଙ୍କୁ ଶାନ୍ତକରି କହିଲେ, '' ବର୍ତ୍ତମାନ କ୍ରୋଧ ପ୍ରକାଶ କରିବାର ଏହା ସମୟ ନୁହେଁ । କର୍ଣ୍ଣଙ୍କର ବିଶ୍ୱସ୍ତତାକୁ ମଧ୍ୟ ବିଚାର କରିବା ଉଚିତ । ପରିସ୍ଥିତିକୁ ସମ୍ମୁଖୀନ ହେବାପାଇଁ ତାଙ୍କର ଆଗ୍ରହ ଓ ଆନ୍ତରିକତାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ସେ ସବୁ କଥା ଭୁଲିଯାଅ । କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା ଯାହା କହିଛନ୍ତି, ତା ଯେ ଅବାନ୍ତର ତାହା ନୁହେଁ । କର୍ଣ୍ଣ ଯାହା କହିଛନ୍ତି ତାହା କ୍ଷାତ୍ରଧର୍ମ ସମ୍ମତ । ଯୁଦ୍ଧ କ୍ଷତ୍ରିୟର ଏକମାତ୍ର ଧର୍ମ । ପିତାମହଙ୍କ ନିର୍ଦ୍ଦେଶରେ ଦୁର୍ଯ୍ୟୋଧନ ଓ କର୍ଣ୍ଣ ଆଚାର୍ଯ୍ୟ ଦ୍ରୋଣଙ୍କୁ କ୍ଷମା ଭିକ୍ଷା କଲେ ।

ମୁଁ ଗଣନା କରି ଦେଖୁଛି, ପାଣ୍ଡବମାନଙ୍କର ଅଜ୍ଞାତବାସର ସମୟ ପୂର୍ଣ୍ଣ ହୋଇ ଯାଇଛି । ପ୍ରତିଜ୍ଞାପାଳନ ପରେ ଅର୍ଜୁନ ବୋଧହୁଏ ଯୁଦ୍ଧଭୂମିକୁ ଆସିଛନ୍ତି । ଯୁଦ୍ଧରେ ଜୟପରାଜୟ ବିଷୟରେ କିଛି କୁହାଯାଇ ପାରିବ ନାହିଁ । ଆମକୁ ବର୍ତ୍ତମାନ ଏପରିସ୍ଥିତିରେ ହୁଏତ ଯୁଦ୍ଧ କରିବାକୁ ପଡ଼ିବ କିମ୍ବା ତାଙ୍କ ସହିତ ଶାନ୍ତି ଚୁକ୍ତି କରିବାକୁ ହେବ ।''

ଦୁର୍ଯ୍ୟୋଧନ ନିଜର ଆବେଗ ସମ୍ବରଣ କରି ପାରିଲେ ନାହିଁ । ସଂଗେ ସଂଗେ କହିଲେ, '' ହେ ପିତାମହ ! ପାଣ୍ଡବମାନେ ଫେରି ଆସିଲେ ମଧ୍ୟ ବିନା ଯୁଦ୍ଧରେ ସେମାନଙ୍କୁ ରାଜ୍ୟ ଫେରାଇ ଦେବାର ପ୍ରଶ୍ନ ଉଠୁନାହିଁ । ଯୁଦ୍ଧର ବ୍ୟବସ୍ଥା କରାଯାଉ ।''

ତେବେ ଠିକ୍ ଅଛି, ମୋ ମତରେ ଉପସ୍ଥିତ ସୈନ୍ୟମାନଙ୍କ ମଧ୍ୟରୁ ଏକ ଭାଗ ସୈନ୍ୟନେଇ ଦୁର୍ଯ୍ୟୋଧନ ହସ୍ତିନାପୁରକୁ ଚାଲିଯାଆନ୍ତୁ । ଦୁର୍ଯ୍ୟୋଧନ ଓ ହସ୍ତିନାପୁର ରକ୍ଷା କରିବାର ଏହା ଏକମାତ୍ର ଉପାୟ । ଆଉ ଏକ ଭାଗ ସୈନ୍ୟ ଗୋସମ୍ପଦ ନେଇ ପଛେ ପଛେ ଯାଆନ୍ତୁ । ଆଉ ଦୁଇ ଭାଗ ସୈନ୍ୟ ଆମ ପାଖରେ ରହନ୍ତୁ । ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ଅଶ୍ୱତଥାମା, କର୍ଣ୍ଣ ପ୍ରଭୃତି ଆମେ ସମସ୍ତେ ମିଶି ଯୁଦ୍ଧକଲେ, ଅର୍ଜ୍ଜୁନଙ୍କୁ ଜୟ କରାଯାଇ ପାରିବ ।'' ତାହାହିଁ ହେଲା । ସୈନ୍ୟମାନଙ୍କୁ ଭାଗ କରି ଦିଆଗଲା । ଦୁର୍ଯ୍ୟୋଧନ ହସ୍ତିନାପୁରକୁ ଫେରିଗଲେ ।

ଅର୍ଜ୍ଜୁନ ତାଙ୍କର ରଥ ସହ ଆସି ପହଞ୍ଚିଗଲେ କୌରବ ସେନାର ସମ୍ମୁଖ ଭାଗରେ । ଦୁର୍ଯ୍ୟୋଧନଙ୍କୁ ଦେଖିବାକୁ ପାଇଲେ ନାହିଁ । ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ ପ୍ରଭୃତି ଅନ୍ୟ ବୀରମାନଙ୍କୁ ଦେଖିବାକୁ ପାଇ ହଠାତ୍ ଯୁଦ୍ଧ ଆରମ୍ଭ କଲେ ନାହିଁ । ପ୍ରଥମେ ସେ ଦୁଇଟି ଶରନିକ୍ଷେପ କଲେ ପିତାମହ ଭୀଷ୍ମଙ୍କୁ ପ୍ରଣାମ ଜଣାଇବା ପାଇଁ । ତାପରେ ଆଉ ଦୁଇଟି ଶର ଯାଇ ଗୁରୁଦେବ ଦ୍ରୋଣାଚାର୍ଯ୍ୟଙ୍କ ପଦଯୁଗରେ ପ୍ରଣତି ବାଢ଼ିଲା । ଏହା ହିଁ ଥିଲା ମହାନ୍ ବୀର ଅର୍ଜ୍ଜୁନଙ୍କର ରଣନୀତିର ଅଂଶ ବିଶେଷ । ବରେଣ୍ୟମାନଙ୍କୁ ସେତେବେଳେ ବୀରମାନେ ଶର ମାଧ୍ୟମରେ ପ୍ରଣାମ ଜଣାଉଥିଲେ । ଦ୍ରୋଣ ତେରବର୍ଷପରେ ଅର୍ଜ୍ଜୁନଙ୍କର ଅଭିରାମ ରୂପ ଦେଖି ବିହ୍ୱଳ ହୋଇଥିଲେ ।

ଅର୍ଜ୍ଜୁନ ଯୁବରାଜ ଉତ୍ତରଙ୍କୁ କୌରବ ବୀରମାନଙ୍କର ରଥଧ୍ୱଜର ପରିଚୟ ଦେଲେ । ଭୀଷ୍ମ କର୍ଣ୍ଣ ଦ୍ରୋଣ ଓ କୃପାଚାର୍ଯ୍ୟ ପ୍ରଭୃତିଙ୍କୁ ଚିହ୍ନାଇ ଦେବା ପରେ କହିଲେ ଏଠାରେ ଦୁର୍ଯ୍ୟୋଧନ ନାହାନ୍ତି । ସେ ବୋଧହୁଏ ଗୋଧନ ନେଇ ହସ୍ତିନାପୁରକୁ ପଳାଇ ଯାଇଛନ୍ତି । ତୁମେ ଏଇ ଦିଗକୁ ରଥ ଚଳାଅ । ଆମର ଯୁଦ୍ଧ ଦୁର୍ଯ୍ୟୋଧନଙ୍କ ସହିତ । ଏମାନଙ୍କ ସହିତ ନୁହେଁ । କ୍ଷିପ୍ରଗତିରେ ରଥ ବାହିନିଅ । ଆମହାତରେ ସମୟ ଖୁବ୍ ଅଳ୍ପ । ଅନ୍ୟମାନଙ୍କ ଦ୍ୱାରା ଯେପରି ଆମ ପଥ ଅବରୁଦ୍ଧ ନହୁଏ ସତର୍କ ରୁହ । ତେବେ କର୍ଣ୍ଣଙ୍କ ରଥକୁ ଚିହ୍ନିଥାଅ । ତାହା ଯଦି ରଥର ନିକଟବର୍ତ୍ତୀ ହେବ ତେବେ ରଥ ଅଟକାଇବ । କର୍ଣ୍ଣଙ୍କ ସହ ଯୁଦ୍ଧ କରିବାରେ ଆନନ୍ଦ ଅଛି । ଯେଉଁ ପତାକାରେ ତାଳଗଛର ଚିହ୍ନ ଅଛି ତାହା ଭୀଷ୍ମଦେବଙ୍କର ରଥ ପତାକା । ତାଙ୍କୁ ମଧ୍ୟ ଲକ୍ଷ୍ୟ ରଖିଥିବ ।

''ହେଇ.... ଦେଖନ୍ତୁ ଉତ୍ତର । ଦୂରରେ ଏ ଯେଉଁ ରଥ ଧ୍ୱଜ ଉଦ୍‌ଫଣ ସର୍ପର ଚିହ୍ନ ବହନକରି ଦ୍ରୁତ ଗତିରେ ଚାଲିଯାଉଛି, ତାହା ହେଉଛି ଦୁର୍ଯ୍ୟୋଧନଙ୍କ ରଥ । ତୁମେ ତାଙ୍କ ପଥ ଅବରୋଧ କରିବାପାଇଁ ଶୀଘ୍ର ରଥ ଚଳାଅ ।''

ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣ ପ୍ରଭୃତି ଅର୍ଜ୍ଜୁନଙ୍କ ଅଭିପ୍ରାୟ ଜାଣିପାରି ତାଙ୍କ ପଛରେ ଗୋଡ଼ାଇଲେ । ସେ ଏପରି ଭାବରେ ଶରବୃଷ୍ଟି କଲେ ଯେ ଆକାଶ ମଣ୍ଡଳ ଶରରେ ଆଚ୍ଛାଦିତ ହୋଇଗଲା । କୌରବ ସେନାମାନଙ୍କୁ ମାରି ଗୋଧନ ସବୁ ତାଙ୍କ କବଳରୁ ରକ୍ଷାକଲେ । ଗୋପାଳ ମାନଙ୍କ ହାତରେ ତାହା ବିରାଟ ନଗରକୁ ପଠାଇ ଦିଆଗଲା । ଗାଈ ବାଛୁରୀ ମହା ଆନନ୍ଦରେ ପଳାଇଲେ ।

ଏତିକିବେଳେ ମହାବୀର କର୍ଣ୍ଣ ମାଡ଼ି ଆସିଲେ ମହାରଥୀ ଅର୍ଜ୍ଜୁନଙ୍କ ଆଡ଼କୁ । ଅର୍ଜ୍ଜୁନ ଓ କର୍ଣ୍ଣଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଆରମ୍ଭ ହୋଇଗଲା ।କୌରବ ଶିବିରରେ ଉଲାସର ଶିହରଣ । ଅର୍ଜ୍ଜୁନଙ୍କର ଗାଣ୍ଡୀବଧନୁରୁ ଶରବର୍ଷଣ ହେଉଥାଏ । କର୍ଣ୍ଣ ରୁଧିରାକ୍ତ ହୋଇ ଯୁଦ୍ଧ ଭୂମିରୁ ପଳାୟନ କଲେ । ଅବଶ୍ୟ ଏହାଥିଲା ଏକ ସାମୟିକ ବିରତି ।

——————————————— ଚଉଦ

# ।। ଲକ୍ଷ୍ୟ ପୂରଣ ହେଲା ।।

ମହାରଥୀ ଭୀଷ୍ମଙ୍କ ମନରେ ଭାରି ଦୁଃଖ । ଅର୍ଜୁନ ମୁହୂର୍ତ୍ତକ ମଧ୍ୟରେ ଶହ ଶହ ସୈନ୍ୟଙ୍କୁ ହତ୍ୟାକରି ସେମାନଙ୍କ ହାତରୁ ବିରାଟ ରାଜାଙ୍କର ଗୋଧନ ଛଡ଼ାଇ ନେଲେ । ଯେଉଁ କାରଣ ପାଇଁ ଯୁଦ୍ଧ ହେବାର କଥା ସେ ଅଧ୍ୟାୟ ଶେଷ ହୋଇଗଲା । ଆଖିପିଛୁଳାକେ ସମସ୍ୟାର ସମାଧାନ କରିଦେଲେ ଅର୍ଜୁନ । କୌରବମାନଙ୍କର ସୁଚିନ୍ତିତ ରଣ କୌଶଳ ପଣ୍ଡ ହୋଇଗଲା । ଏଇତ ପରାଜୟର ପୂର୍ବାଭାସ ।

ଅର୍ଜୁନ ବୀରଦର୍ପରେ ଦୁର୍ଯ୍ୟୋଧନଙ୍କ ଆଡ଼କୁ ମାଡ଼ିଚାଲିଲେ । କୌରବ ସେନାପତିମାନେ ଅନ୍ୟାନ୍ୟ ଯୋଦ୍ଧା ମହାଯୋଦ୍ଧାମାନଙ୍କ ସହିତ ତାଙ୍କ ଚାରିପାଖରେ ଘେରିଗଲେ । ସେ ସ୍ଥିରକଲେ, ପ୍ରଥମେ ଏମାନଙ୍କୁ ସମୁଚିତ ଶିକ୍ଷା ଦେବା ଉଚିତ । ତାପରେ ଦୁର୍ଯ୍ୟୋଧନଙ୍କ ପାଳି ।

କର୍ଣ୍ଣ ପୁଣି ଆସି ପହଞ୍ଚିଗଲେଣି ।

ଅର୍ଜୁନ ମୁହଁ ଫେରାଇଲେ ପରାଙ୍ଗପୃଷ୍ଠ କର୍ଣ୍ଣଙ୍କ ଆଡ଼କୁ । ଦୁର୍ଯ୍ୟୋଧନଙ୍କ ପାଇଁ ସେ ଅଙ୍ଗପତି । ସୂତପୁତ୍ର ହୋଇ ମଧ୍ୟ ରାଜ ଶିରୀ ଭୋଗ କରିବାର ସୁଯୋଗ ତାଙ୍କୁ ମିଳିଛି । ତାଙ୍କର ଔଦ୍ଧତ୍ୟର ସେ ଆଜି ଜବାବ ଦେବେ । ଏତିକିବେଳେ ଚିତ୍ରସେନ, କର୍ଣ୍ଣଙ୍କ ଭାଇ ସଂଗ୍ରାମଜିତ୍, ଦୁର୍ଯ୍ୟୋଧନଙ୍କ ଭାଇ ବିକର୍ଣ୍ଣ ଓ ଆଉ କେତେକ ମହାରଥୀ ଅର୍ଜୁନଙ୍କୁ ଆକ୍ରମଣ କଲେ ।

ଅର୍ଜୁନଙ୍କ ଗାଣ୍ଡୀବଧନୁର ଟଙ୍କାର ଧ୍ୱନି, ମହାଶଙ୍ଖର ପ୍ରଳୟ ନାଦ ଓ ରଥ ଧ୍ୱଜରେ ବାସ କରୁଥିବା ଭୂତପ୍ରେତମାନଙ୍କର ବିକଟାଳ ଶବ୍ଦରେ କୌରବ ସେନା ଭୀତ ତ୍ରସ୍ତ ହୋଇ ଉଠିଲେ । ଶରଜାଲରେ ଜର୍ଜରିତ ହେଲେ ସୈନ୍ୟଗଣ । ଆଗ୍ନେୟାସ୍ତ୍ରରେ ରଥ ସମୂହ ଦଗ୍ଧ ହେବାକୁ ଲାଗିଲା । ଅର୍ଜୁନ ବିକର୍ଣ୍ଣଙ୍କର ରଥର ପତାକା ଛିନ୍ନ କଲେ । ସେ ପ୍ରାଣ ବିକଳରେ ଯୁଦ୍ଧ ଭୂମିରୁ ପଳାୟନ କଲେ ।

ଅର୍ଜୁନ, କର୍ଣ୍ଣଙ୍କ ଭ୍ରାତା ସଂଗ୍ରାମଜିତ୍‌ଙ୍କର ରଥର ଅଶ୍ୱମାନଙ୍କୁ ନିହତ କରିବା ସହିତ ତାଙ୍କର ଶିରଚ୍ଛେଦନ କଲେ । କର୍ଣ୍ଣ ଧୈର୍ଯ୍ୟ ଧରିପାରିଲେ ନାହିଁ । ଭ୍ରାତୃ ବିଚ୍ଛେଦ ଦୁଃଖରେ ସେ ବିଚଳିତ ହୋଇ ଉଠିଲେ । ଉଭୟଙ୍କ ମଧ୍ୟରେ ପୁଣି ଯୁଦ୍ଧ ଆରମ୍ଭ ହେଲା । କର୍ଣ୍ଣ ଅର୍ଜୁନଙ୍କ ଯୁଦ୍ଧ ଦେଖିବା ପାଇଁ ସ୍ୱର୍ଗର ଦେବତାମାନେ ମଧ୍ୟ ମର୍ତ୍ତ୍ୟକୁ ଓହ୍ଲାଇ ଆସିଲେ । ଆକାଶ ମଣ୍ଡଳ ଉଭପକ୍ଷର ଶରରେ ଆଚ୍ଛାଦିତ ହେଲା । ଶର ସମୂହର ଘାତ ପ୍ରତିଘାତରେ ଅଗ୍ନିଶିଖା ଉତ୍ପନ୍ନ ହେଲା । ସବ୍ୟସାଚୀ ଉଭୟ ହସ୍ତରେ ଶର ଚାଳନା କରି ରଣ ଭୂମିକୁ ଆଚ୍ଛାଦିତ କଲେ । ବୀରକର୍ଣ୍ଣ ମଧ୍ୟ ଅସରନ୍ତି ଶର ବୃଷ୍ଟିକରି ଅର୍ଜୁନଙ୍କୁ ଅଦୃଶ୍ୟ କରାଇ ଦେଲେ । କୌରବ ମାନଙ୍କର ଧାରଣା ହେଲା, ଅର୍ଜୁନ ପରାସ୍ତ ହୋଇ ରଣଭୂମିରୁ ବୋଧହୁଏ ପଳାୟନ କରିଛନ୍ତି । ସେମାନଙ୍କ ମଧ୍ୟରେ ଆନନ୍ଦ ଉଲ୍ଲାସ ଖେଳିଗଲା । କିନ୍ତୁ ଆଖି ପିଛୁଳାକେ ସେ ପୁଣି ଶର ବୃଷ୍ଟିକରି କର୍ଣ୍ଣଙ୍କୁ କ୍ଷତବିକ୍ଷତ କରିପକାଇଲେ । କର୍ଣ୍ଣ ରଣଭୂମି ତ୍ୟାଗ କରି ପଳାୟନ କଲେ । ତାଙ୍କର ସାରଥି ଓ ଅଶ୍ୱ ନିହତ ହେଲେ ।

କର୍ଣ୍ଣଙ୍କ ପରେ ଦୁର୍ଯ୍ୟୋଧନ ଅନ୍ୟମାନଙ୍କ ସହିତ ଅର୍ଜ୍ଜୁନଙ୍କ ଉପରେ ଶରବୃଷ୍ଟି କଲେ । କିନ୍ତୁ ଅର୍ଜ୍ଜୁନଙ୍କ ଶରାଘାତରେ, ବାତାହତ ବୃକ୍ଷର ପଳିତ ପତ୍ର ପରି, ସୈନ୍ୟଗଣ ଟଳି ପଡ଼ିଲେ ।

ରକ୍ତବର୍ଣ୍ଣ ଅଶ୍ୱ ଯୋଚାହୋଇଥିବା ରଥରେ ଫରଫର ହୋଇ ଉଡୁଛି ନୀଳ ପତାକା । ତାରି ଭିତରେ ବୀରଦର୍ପରେ ଛିଡ଼ା ହୋଇଛନ୍ତି କୃପାଚାର୍ଯ୍ୟ । ଶ୍ୱେତ ବାହନ ଅର୍ଜ୍ଜୁନଙ୍କର ରଥ ଯାଇ ସମ୍ମୁଖଭାଗରେ ତାଙ୍କର ଅଟକିଲା । ଗୁରୁଦେବଙ୍କୁ ସମ୍ମାନ ଜଣାଇବା ପାଇଁ ସେ ତୂଣୀରରୁ ଦୁଇଟି ଶର ବାହାରକରି ନିକ୍ଷେପକଲେ । ତାହା ଯାଇ ତାଙ୍କର ପାଦ ପାଖରେ ଭୂଇଁରେ ଲାଖିଗଲା । ପ୍ରଣାମ ମୁଦ୍ରାରେ । ଅର୍ଜ୍ଜୁନ ଶଙ୍ଖନାଦକଲେ ସତେଯେପରି ସେ ନାଦରେ ବସୁଧା ବିଦୀର୍ଣ୍ଣ ହୋଇଯିବ । କୃପାଚାର୍ଯ୍ୟ ତାହା ସହ୍ୟ କରି ପାରିଲେ ନାହିଁ । ଯୁଦ୍ଧ ଡାକରା ଦେବାପାଇଁ ସେ ନିଜର ଶଙ୍ଖ ମଧ୍ୟ ବଜାଇଲେ । ଅର୍ଜ୍ଜୁନ ଅପେକ୍ଷାକଲେ ପ୍ରଥମେ ତାଙ୍କ ପକ୍ଷରୁ ଯୁଦ୍ଧ ଆରମ୍ଭ ହେବାକୁ । କୃପାଚାର୍ଯ୍ୟ ଅର୍ଜ୍ଜୁନଙ୍କ ଉପରକୁ ଶରସଂଧାନ କଲେ । ଅର୍ଜ୍ଜୁନ ମଧ୍ୟ ଶରର ପ୍ରତ୍ୟୁତ୍ତର ଶରରେ ଦେଲେ । ଆକାଶ ମଣ୍ଡଳ ଉଭୟଙ୍କ ଶରରେ ଆଚ୍ଛାଦିତ ହେଲା । ପ୍ରଚଣ୍ଡ ଶରାଘାତରେ କୃପାଚାର୍ଯ୍ୟଙ୍କର ସାରଥି ଓ ଅଶ୍ୱମାନେ ନିହତ ହେଲେ । କୃପାଚାର୍ଯ୍ୟ ଯନ୍ତ୍ରଣାରେ ଛଟପଟ ହେଉଥିବା ସମୟରେ, ଅନ୍ୟମାନେ ତାଙ୍କୁ ଯୁଦ୍ଧ ଭୂମିରୁ ଟେକି ନେଲେ ।

ତାପରେ ଅର୍ଜ୍ଜୁନଙ୍କର ସମ୍ମୁଖୀନ ହେଲେ ଦ୍ରୋଣାଚାର୍ଯ୍ୟ । ତାଙ୍କ ରଥ ପତାକାରେ ଶୋଭାପାଉଥାଏ ସୁବର୍ଣ୍ଣ କମଣ୍ଡଳୁ । ସେ ବସିଛନ୍ତି ରକ୍ତବର୍ଣ୍ଣ ଅଶ୍ୱଯୁକ୍ତ ରଥରେ ମହାମହିମ ଦିଗ୍‌ବିଜୟୀ ବୀର ପରି । ଅର୍ଜ୍ଜୁନ ତାଙ୍କର ପଦ ବନ୍ଦନା କଲେ ଓ ନମ୍ର କଣ୍ଠରେ କହିଲେ, '' ହେ ମହାବାହୁ ! ଏତେ ଦୀର୍ଘ ଦିନପରେ ଆପଣଙ୍କର ଦର୍ଶନ ମୋତେ କୃତାର୍ଥ କରିଛି । ଆପଣ ଶର ସଂଧାନ ନ କରିବା ପର୍ଯ୍ୟନ୍ତ ମୁଁ ଶରସ୍ପର୍ଶ କରି ପାରିବି ନାହିଁ । ଦୟାକରି ଆପଣ ହିଁ ଆରମ୍ଭ କରନ୍ତୁ ।

ଦୁର୍ଦ୍ଧର୍ଷ, ଗୁରୁ ଶିଷ୍ୟଙ୍କ ମଧ୍ୟରେ ତୁମୁଳ ସଂଘର୍ଷ ଆରମ୍ଭ ହେଲା । ଦ୍ରୋଣ ଅର୍ଜ୍ଜୁନ କେହି କାହାକୁ ଊଣା ନୁହଁନ୍ତି । ଉଭୟେ ଅସ୍ତ୍ର ବିଶାରଦ । ଆକାଶରୁ ମୁଷଳ ଧାରାରେ ବର୍ଷାଜଳ ପଡ଼ିବାପରି ଦ୍ରୋଣାଚାର୍ଯ୍ୟ ବାଣ ବର୍ଷଣ କଲେ । ଅର୍ଜ୍ଜୁନଙ୍କ ବାଣ ପ୍ରୟୋଗରେ ଆକାଶ ମଣ୍ଡଳ ମେଘାଚ୍ଛନ୍ନ ହୋଇ ଉଠିଲା । କେହି କାହାକୁ ଦେଖାଗଲେ ନାହିଁ । ଦ୍ରୋଣାଚାର୍ଯ୍ୟଙ୍କର ସମସ୍ତବାଣ ଅର୍ଜ୍ଜୁନ ବ୍ୟର୍ଥ କରି ଦେଉଥିଲେ । ଅର୍ଜ୍ଜୁନଙ୍କର ରଣ କୌଶଳ ଦ୍ରୋଣାଚାର୍ଯ୍ୟଙ୍କୁ ବିସ୍ମିତ କରି ଦେଲା । ରଣଭୂମି ଶ୍ମଶାନରେ ପରିଣତ ହେଲା । କେତେ ଯେ ସୈନ୍ୟ ଭୂଲୁଣ୍ଠିତ ହେଲେ ତା'ର କଳନା କରାଯାଇ ପାରିବନି । ଶେଷରେ ଦ୍ରୋଣାଚାର୍ଯ୍ୟ ଅର୍ଜ୍ଜୁନଙ୍କର ଅଭେଦ୍ୟ ଶରକୁ ପ୍ରତିରୋଧ କରିପାରିଲେନାହିଁ । ସେ ଇତସ୍ତତଃ ହେବାର ଦେଖି ତାଙ୍କର ପୁତ୍ର ଅଶ୍ୱତଥାମା ଅର୍ଜ୍ଜୁନଙ୍କର ସମ୍ମୁଖୀନ ହୋଇ ପିତାଙ୍କୁ ରକ୍ଷା କଲେ ।

ପରାଜିତ ଦ୍ରୋଣ ପଛେଇଗଲେ । ଅର୍ଜ୍ଜୁନଙ୍କ ପାଖରେ ଏ ପରାଜୟ ହିଁ ତାଙ୍କର ବିଜୟ । ଏହାଗୁରୁର ଗୌରବ । କୌରବମାନଙ୍କ ମଧ୍ୟରେ ହାହାକାର ପଡ଼ିଗଲା । ଅଳ୍ପ ସମୟ ଯୁଦ୍ଧପରେ ଅଶ୍ୱତ୍‌ଥାମା ପରାସ୍ତ ହେଲେ ।

ଏହାପରେ ପିତାମହ ଭୀଷ୍ମଦେବଙ୍କ ସହିତ ଅର୍ଜ୍ଜୁନଙ୍କର ଯୁଦ୍ଧ ଆରମ୍ଭ ପୂର୍ବରୁ ସେ ଯୋଡ଼ ହସ୍ତରେ ପ୍ରଣାମ କରି କହିଲେ, '' ମୁଁ ଆପଣଙ୍କର ଆଶୀର୍ବାଦ ଚାହେଁ । ଯୁଦ୍ଧ ପାଇଁ ଅନୁମତି ଦିଅନ୍ତୁ । ଯୁଦ୍ଧ ଆରମ୍ଭ ହୋଇଗଲା । ଅର୍ଜ୍ଜୁନଙ୍କ ଶରାଘାତରେ ଭୀଷ୍ମଙ୍କର ରଥଧ୍ୱଜା କଟିଗଲା । ଭୀଷ୍ମଦେବଙ୍କ ବାଣ ଅର୍ଜ୍ଜୁନଙ୍କ ରଥ ପତାକାରେ ଥିବା ହନୁମାନ ଓ ଭୂତମାନଙ୍କୁ ଆଘାତକଲା । ସବ୍ୟସାଚୀ ନିଜର ଉଭୟ ହସ୍ତ ଚାଳି ଶର ସଂଧାନକରୁଥିଲେ । ଭୀଷ୍ମଙ୍କ ଶରର ପ୍ରତିଘାତରେ ଅର୍ଜ୍ଜୁନଙ୍କ ଶର ସବୁ ଖଣ୍ଡ ବିଖଣ୍ଡିତ

ହୋଇ ପଡୁଥିଲା । ବୃଦ୍ଧ ଭୀଷ୍ମ ଓ ତରୁଣ ଅର୍ଜୁନଙ୍କ ମଧ୍ୟରେ ଚାଲିଥିବା ରଣ ଉନ୍ମାଦନା ତ୍ରିଲୋକ ବାସୀ ଉପଭୋଗ କରୁଥିଲେ । ଅର୍ଜୁନଙ୍କ ପ୍ରଚଣ୍ଡ ବାଣ ପ୍ରହାରରେ ରଥରକ୍ଷକମାନେ ମୃତ୍ୟୁବରଣ କଲେ । ଏକ ଅସ୍ତ୍ର ଆସି ଭୀଷ୍ମ ଦେବଙ୍କ ବକ୍ଷ ଭେଦକରିବାରୁ ସେ ବେହୋସ ହୋଇ ରଥଦଣ୍ଡଧରି କିଛି ସମୟ ଅଟକିଗଲେ । ଅନ୍ୟମାନେ ଏହି ଅବସ୍ଥାରେ ତାଙ୍କୁ ରଣଭୂମିରୁନେଇ ଚାଲିଗଲେ ।

ଭୀଷ୍ମଙ୍କ ଏ ଅବସ୍ଥା ଦେଖି ଦୁର୍ଯ୍ୟୋଧନ ଘୋର ଗର୍ଜନ କରି ଅର୍ଜୁନଙ୍କ ଆଡ଼କୁ ମାଡ଼ି ଆସିଲେ । ଉଭୟଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଅର୍ଜୁନଙ୍କ ଅସ୍ତ୍ରାଘାତରେ ଦୁର୍ଯ୍ୟୋଧନ ରକ୍ତାକ୍ତ ହୋଇ ପଳାୟନ କଲେ । ଅର୍ଜୁନ ତାଙ୍କୁ ତିରସ୍କାର କରି କହିଲେ, ''ଏତେତ ବାହାସ୍ଫୋଟ ମାରୁଥିଲ, ପ୍ରାଣବିକଳରେ ପଳାଇଯାଉଛି କାହିଁକି ? ଏହା ପଶାପାଲିର ବୈଠକି ନୁହେଁ, ଯୁଦ୍ଧ ଭୂମି । ଯୁଦ୍ଧ ଭୂମି । ଯୁଦ୍ଧ କରିବାକୁ ପଡ଼ିବ । ବିଜୟ ଲାଭକଲେ ରାଜ୍ୟଲାଭ, ମୃତ୍ୟୁ ଲାଭକଲେ ମୁକ୍ତିଲାଭ । ଲାଙ୍ଗୁଳ ଗୁଞ୍ଜି ପଳାଇ ଯାଉଛ କାହିଁକି ?''

ଦୁର୍ଯ୍ୟୋଧନ ଅର୍ଜୁନଙ୍କ ବାକ୍ୟବାଣରେ ଜର୍ଜରିତ ହୋଇ ମତ୍ତ ମାତଙ୍ଗ ପରି ପୁଣି ଚିତ୍କାର କରି ମାଡ଼ି ଆସିଲେ । ଦୁର୍ଯ୍ୟୋଧନଙ୍କୁ ରକ୍ଷାକରିବାପାଇଁ ପଳାୟନ କରିଥିବା ସମସ୍ତ ବୀର ପୁଣି ସମୁଦ୍ରପରି ମାଡ଼ି ଆସିଲେ । ଅର୍ଜୁନ, ସେମାନଙ୍କ ମିଳିତ ଆକ୍ରମଣକୁ ବ୍ୟର୍ଥକରି ସମ୍ମୋହନ ବାଣ ପ୍ରୟୋଗ କଲେ, ସମସ୍ତ କୁରୁବୀର ମୂର୍ଚ୍ଛିତ ହୋଇତଳେ ପଡ଼ିଗଲେ ।

ଅର୍ଜୁନ କହିଲେ, '' ହେ ଯୁବରାଜ ଉତ୍ତର ! ତୁମେ ଏହି ମାହେନ୍ଦ୍ର ମୁହୂର୍ତ୍ତରେ ଯାଇ କୌରବ ସେନାପତିମାନଙ୍କର ବସ୍ତ୍ରର ଅଂଶ ସବୁ ସଂଗ୍ରହ କରି ଆଣ । କେବଳ ଭୀଷ୍ମଦେବଙ୍କ ପାଖକୁ ଯିବନାହିଁ, ସେ ସମ୍ମୋହନ ଅସ୍ତ୍ରର ପ୍ରତିକାର ଜାଣନ୍ତି ।

ଉତ୍ତର ବିଳମ୍ବ ନକରି ତାହା ସବୁ ସଂଗ୍ରହ କରିନେଲେ । ରାଜକନ୍ୟା ଉତ୍ତରାଙ୍କର ଅନୁରୋଧ ରକ୍ଷା କରାଗଲା ।

ଏହାପରେ କୌରବମାନେ ଯୁଦ୍ଧଭୂମି ତ୍ୟାଗକଲେ । ଅର୍ଜୁନ ଓ ଉତ୍ତର ମତ୍ସ୍ୟରାଜ୍ୟକୁ ଫେରି ଆସିଲେ ।

## ।। ପ୍ରତ୍ୟାବର୍ତ୍ତନ ।।

ଯୁଦ୍ଧ ଭୂମିରୁ ଅର୍ଜୁନ ଓ ଉତ୍ତର ପ୍ରତ୍ୟାବର୍ତ୍ତନ କଲେ । ଉତ୍ତର ଭାବିହ୍ୱଳ କଣ୍ଠରେ କହିଲେ, ''ହେ ଧନଞ୍ଜୟ ! ଆପଣ ନିଜର 'ଜିଷ୍ଣୁ'ନାମକୁ ସାର୍ଥକ କରିଛନ୍ତି । ଆପଣଙ୍କୁ ପରାଭବ ଦେବାର ସାମର୍ଥ୍ୟ ପ୍ରକୃତରେ କୌଣସି ମନୁଷ୍ୟର କିମ୍ବା ଦେବତାଙ୍କର ନାହିଁ । ଆପଣ ପ୍ରକୃତରେ ଜୟଶୀଳ । ଏ ଯୁଦ୍ଧ ବିଜୟ ଆପଣଙ୍କର ।

ଅର୍ଜୁନ ନମ୍ରତାର ସହିତ କହିଲେ, '' ଯୁବରାଜ ଉତ୍ତର ! ଆପଣଙ୍କର ସାର୍ଥକ ସାରଥିତ୍ୱ ମୋତେ ଲକ୍ଷ୍ୟପୂରଣ ଦିଗରେ ସାହାଯ୍ୟ କରିଛି । ତେବେ ମୋର ଅନୁରୋଧ, ଆପଣ ବର୍ତ୍ତମାନ କାହାକୁ କହିବେ ନାହିଁ ଯେ ପାଣ୍ଡବମାନେ ରାଜ ପୁରୀରେ ଛଦ୍ମବେଶରେ ଆଶ୍ରୟ ନେଇଛନ୍ତି । କେବଳ କହିବେ, ''ମୁଁ

କୁରୁବୀରମାନଙ୍କୁ ଯୁଦ୍ଧରେ ପରାସ୍ତ କରି ଗୋଧନ ସବୁ ଉଦ୍ଧାର କରିଛି । ଏହା ପିତାଙ୍କୁ ଆନନ୍ଦ ଦେବା ସହିତ ନିଜର ପ୍ରତିପତ୍ତି ପ୍ରତିଷ୍ଠାରେ ସାହାଯ୍ୟ କରିବ ।''

ଉତ୍ତର ହସି ହସି କହିଲେ, ''ଅବଶ୍ୟ ଦ୍ୱିତୀୟ କଥାଟି ବଡ଼ କଠୋର । ତେବେ ପିତାଙ୍କୁ ମୁଁ ପ୍ରତାରଣା କରିପାରିବିନାହିଁ । ନିର୍ଦ୍ଦିଷ୍ଟ ସମୟରେ ସତ୍ୟର ଉଦ୍‌ଘାଟନ ପାଇଁ ମୋତେ ଅନୁମତି ଦିଅନ୍ତୁ ।

ଅର୍ଜ୍ଜୁନଙ୍କ ନିର୍ଦ୍ଦେଶରେ ଉତ୍ତରଙ୍କ ବିଜୟବାର୍ତ୍ତା ବିରାଟ ନଗରକୁ ପଠାଇ ଦିଆଗଲା । ସେମାନେ ଫେରି ଆସି ସେଇ ଶ୍ମଶାନର ଶମୀବୃକ୍ଷ ନିକଟରେ ପହଞ୍ଚିଲେ । ରଥ ଧ୍ୱଜରୁ ହନୁମାନ, ଭୂତମାନଙ୍କ ସହିତ ଆକାଶ ମାର୍ଗରେ ଅନ୍ତର୍ହିତ ହୋଇଗଲେ । ବିରାଟରାଜାଙ୍କ ସିଂହଧ୍ୱଜ, ରଥରେ ଖଚିତ ହେଲା । ଯୁବରାଜ ଉତ୍ତର, ଅର୍ଜ୍ଜୁନଙ୍କର ଗାଣ୍ଡୀବ ଧନୁ, କବଚ ଓ ଅନ୍ୟାନ୍ୟ ଅସ୍ତ୍ର ସମୂହ ନେଇ ଶମୀବୃକ୍ଷ କୋଟରରେ ଯତ୍ନର ସହିତ ରଖିଲେ ।

ଅର୍ଜ୍ଜୁନ ପୁଣି ଥରେ ସଜ୍ଜିତ ହେଲେ ''ବୃହନ୍ନଳା' ବେଶରେ । ଶାଢ଼ିପିନ୍ଧି ବେଣୀ ବାନ୍ଧି, ହାତରେ ଶଙ୍ଖାଲଗାଇ ପୁଣି ସେଇ ନପୁଂସକ ଅଭିନୟ ଆରମ୍ଭ କଲେ । ଯୁବରାଜ ଉତ୍ତର ହେଲେ ରଥାରୂଢ଼ । ଅର୍ଜ୍ଜୁନ ସାରଥି ଭାବରେ ରଥଚଳାଇଲେ । ନିର୍ମମ ରଣ ଅନୁଭୂତି ଭିତରେ ଏହି ଆମୋଦପ୍ରଦ ଅଭିନୟ ଉଭୟଙ୍କୁ ଆନନ୍ଦ ଦେଉଥିଲା ।

ଏପାଖରେ ଅନ୍ୟ ଏକ ଦୃଶ୍ୟପଟ ।

ମତ୍ସ୍ୟରାଜା ବିରାଟ, ସୁଶର୍ମାଙ୍କୁ ପରାସ୍ତ କରି ଗୋଧନ ସହିତ ଅନେକ ଧନ ସମ୍ପତ୍ତି ନେଇ ନଗରକୁ ଫେରି ଆସିଛନ୍ତି । ତାଙ୍କର ସମ୍ବର୍ଦ୍ଧନା ପାଇଁ ଶତାଧିକ ତୋରଣ ନିର୍ମାଣ କରାଯାଇଛି । ଜୟଜୟ ଧ୍ୱନିରେ ଉଚ୍ଛୁଳି ଉଠିଛି ବିରାଟପୁରୀ । ବ୍ରାହ୍ମଣମାନଙ୍କର ବେଦ ଧ୍ୱନି, ନାରୀମାନଙ୍କର କଣ୍ଠଧ୍ୱନି, ଗଣିକାମାନଙ୍କର ନୃତ୍ୟ ସଂଗୀତ ଏକ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରିଛି । ଅନ୍ତପୁରବାସିନୀ ମହିଳାମାନେ ଅର୍ଘ୍ୟଥାଳି ଧରି ରାଜାଙ୍କୁ ବନ୍ଦାଇ ନେଇଛନ୍ତି ।

ରାଜା, ଅନ୍ତପୁରକୁ ଯାଇ ପୁତ୍ର ଉତ୍ତରର ଅନୁପସ୍ଥିତି ବିଷୟରେ ଅନୁସନ୍ଧାନ କଲେ । ଶୁଣିଲେ ବୃହନ୍ନଳାଙ୍କୁ ସାରଥିଭାବରେ ନେଇ କୌରବମାନଙ୍କ ଆକ୍ରମଣକୁ ପ୍ରତିହତ କରିବାକୁ ସେ ଯାଇଛନ୍ତି । ଏ ସମ୍ବାଦ ତାଙ୍କ ମନରେ ଆଘାତ ଦେଲା । ବିଶେଷତଃ ଏକ ନପୁଂସକ ଜୟଯାତ୍ରା ପାଇଁ ଶୁଭଙ୍କର ନୁହେଁ ।

ଯୁଧିଷ୍ଠିର ସ୍ମିତହାସ୍ୟ ଖେଳାଇ କହିଲେ, ''ହେ ରାଜନ୍ ! ବୃହନ୍ନଳା ଯେଉଁ ରଥର ସାରଥି ସେ ରଥପତିଙ୍କର ପରାଜୟର ପ୍ରଶ୍ନ ନାହିଁ ।

ରାଜା ଚିନ୍ତିତ ହୋଇ କହିଲେ, '' ତୁମେ କଣ କହୁଚ କଙ୍କ ! କୁରୁ ମହାରଥୀ ଭୀଷ୍ମ,କର୍ଣ୍ଣ, ଦ୍ରୋଣ, କୃପାଚାର୍ଯ୍ୟ, ପ୍ରଭୃତି ଯେପରି ଦୁର୍ଦ୍ଧର୍ଷ, ସେପରି ଅଜେୟ ମଧ୍ୟ । ଏକ ନପୁଂସକର କି ଶକ୍ତି ଅଛି ଯେ ସାରଥି ବେଶରେ ସେମାନଙ୍କର ସମ୍ମୁଖୀନ ହେବ ।''

ମହରାଜାଙ୍କ ଧାରଣା ଉପରେ ମୋର ମନ୍ତବ୍ୟ ଦେବାର କିଛି ନାହିଁ । ତେବେ ମୁଁ ଧର୍ମରାଜ ଯୁଧିଷ୍ଠିରଙ୍କ ରାଜସଭାରେ ଥିବାବେଳେ ଜାଣିଛି, ବୃହନ୍ନଳା ଜଣେ ଅଜେୟ ବୀର । ସେଥିଲେ ପାଣ୍ଡବମାନଙ୍କର ଏକଦୁର୍ଗ । ଆପଣ ତାଙ୍କୁ ଭୁଲ ବୁଝନ୍ତୁ ନାହିଁ । ନିଶ୍ଚୟ ବିଜୟ ବାର୍ତ୍ତା ଆପଣ ଶୁଣିବାକୁ ପାଇବେ ।'' ଏହାପରେ ପଶାଖେଳରେ ଉଭୟେ ମଗ୍ନ ରହିଲେ ।

ଠିକ୍ ଏତିକିବେଳେ ଦୂତ ଆସି ପହଞ୍ଚିଲା । କହିଲା, ମହାରାଜଙ୍କର ଜୟହେଉ । ଯୁବରାଜ ଉତ୍ତର କୌରବ ମାନଙ୍କୁ ଯୁଦ୍ଧରେ ଜୟକରି, ଗୋଧନ ସହିତ ରାଜପୁରୀକୁ ପ୍ରତ୍ୟାବର୍ତ୍ତନ କରୁଛନ୍ତି । ରାଜା ବିରାଟ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । କହିଲେ ''କଙ୍କ'' ଶୁଣୁଛ, ରାଜପୁତ୍ର ଉତ୍ତର ନପୁଂସକ ନୁହେଁ । ସେ ତାର ବାହୁବଳରେ କୌରବ ବୀରମାନଙ୍କୁ ଜୟ କରିଛନ୍ତି ।

ଉତ୍ତରଙ୍କୁ ରାଜକୀୟ ମର୍ଯ୍ୟାଦାର ସହିତ ସମ୍ବର୍ଦ୍ଧନା ଦେବାପାଇଁ ରାଜା ନିର୍ଦ୍ଦେଶ ଦେଲେ । କଙ୍କ କହିଲେ, ଯେଉଁ ବୃହନ୍ନଳାର ସାରଥି ପଣିଆ ଉତ୍ତରଙ୍କୁ ବିଜୟ ମଣ୍ଡିତ କରିଛି, ତାଙ୍କୁ ଏଥିରୁ ବାଦ ଦିଅନ୍ତୁ ନାହିଁ । ସେ ମଧ୍ୟ ସମ୍ବର୍ଦ୍ଧନା ପାଇବାର ଯୋଗ୍ୟ ।''

ରାଜା ନିଜର କ୍ରୋଧ ସମ୍ବରଣ କରି ପାରିଲେ ନାହିଁ । ଉତ୍‌କ୍ଷିପ୍ତ ହୋଇ କହିଲେ, ''ମୁଁ ଯେତେବେଳେ ରାଜପୁତ୍ରର ଗୌରବ ବିଷୟରେ କହୁଛି, ତୁମେ ଖାଲି ସେଇ ନପୁଂସ କଥା ଉଠାଉଛ । ରାଜପୁତ୍ର କଣ ତୁମର ଶତ୍ରୁ । ତା'ପ୍ରତି ଏତେଈର୍ଷାଳୁ କାହିଁକି ?''

''ରାଜପୁତ୍ରଙ୍କ ପ୍ରତି ମୋର ତିଳେମାତ୍ର ଈର୍ଷାନାହିଁ ରାଜନ୍ ! ବୃହନ୍ନଳା ନପୁଂସକ ହୋଇପାରନ୍ତି କିନ୍ତୁ ସେ ନିଶ୍ଚୟ ଅସାଧାରଣ । ତାଙ୍କ ବୀରତା ମୁଁ ଦେଖିଛି । ମୁଁ ଭଲରୂପେ ଜାଣେ, ମୋ କହିବାର ଅନ୍ତର୍ନିହିତ ଉଦ୍ଦେଶ୍ୟ ଅଛି ।

ରାଜା ରୋଷ ଜର୍ଜରିତ ହୋଇ ପଶାକାଠିକୁ ଯୁଧିଷ୍ଠିରଙ୍କ ମୁହଁକୁ ଫୋପାଡ଼ି ଦେଲେ । ପଶାକାଠି ଜୋରରେ 'କଙ୍କ'ଙ୍କ କପାଳରେ ବାଜି ଧାରଧାର ରକ୍ତ ବୋହିବାରେ ଲାଗିଲା । ସୈରିନ୍ଧ୍ରୀ ଏହା ଦେଖି ଆଖିପିଛୁଳାକେ ଗୋଟିଏ ପାତ୍ର ନେଇ ଆସିଲେ । ନିଜ ଲୁଗା କାନିରେ କ୍ଷତଜାଗା ଚାପିଧରି ରକ୍ତସ୍ରାବ ବନ୍ଦକଲେ । ତାପରେ ରକ୍ତ ପରିଷାର କରି ଔଷଧ ଲଗାଇ ପଟି ବାନ୍ଧିଦେଲେ । ରାଜା ସୈରିନ୍ଧ୍ରୀଙ୍କୁ ବିରକ୍ତ ହୋଇ କହିଲେ, '' ଏସବୁ କି ପ୍ରହସନ ଚାଲିଛି । ସାମାନ୍ୟ ଟିକିଏ କ୍ଷତ ହୋଇ ରକ୍ତଟିକିଏ ବାହାରୁଛି, ଏଥିପାଇଁ ଏତେ ବ୍ୟସ୍ତତାର କାରଣ କଣ ?''

ସୈରିନ୍ଧ୍ରୀ କୋମଳ କଣ୍ଠରେ କହିଲେ, ''ରାଜନ୍ ! ଏହା ପ୍ରହସନ ନୁହେଁ, କିମ୍ବା ସାମାନ୍ୟ କଥା ନୁହେଁ । ବ୍ୟସ୍ତତାର ଯଥେଷ୍ଟ କାରଣ ଅଛି । ଜଣେ ବ୍ରାହ୍ମଣ ସନ୍ୟାସୀଙ୍କର ରକ୍ତ ଭୂମିରେ ପଡ଼ିବା ଉଚିତ ନୁହେଁ । ଯେତେ ଟୋପା ରକ୍ତ ମାଟିରେ ପଡ଼ିବ, ସେତେବର୍ଷ ପାଇଁ ଦେଶରେ ଘୋର ଦୁର୍ଭିକ୍ଷ,ମହାମାରୀ, ମଡ଼କ ଘୋଟିଯିବ । ଏକ ଆକସ୍ମିକ ବିପତ୍ତିରୁ ରାଜ୍ୟକୁ ରକ୍ଷାକରିବାପାଇଁ ମୁଁ ଏ ରକ୍ତ କ୍ଷୟକୁ ବନ୍ଦ କରୁଛି । ସନ୍ନ୍ୟାସୀଙ୍କର ଅଦ୍ଭୁତ ଶକ୍ତିର ପରିଚୟ ତଥାପି ମଧ୍ୟ ଆପଣ ପାଇ ନାହାନ୍ତି । କ୍ଷମା କରିବେ ରାଜନ୍ ! ସୈରିନ୍ଧ୍ରୀ ସତ୍ୟର ଅପଳାପ କରୁନି ।''

ରାଜା ବିରାଟ ନିଜର ଆଚରଣପାଇଁ ଦୁଃଖିତ ହେଲେ ମଧ୍ୟ କଙ୍କଙ୍କୁ କ୍ଷମାଭିକ୍ଷା କଲେ ନାହିଁ । ଠିକ୍ ଏତିକି ବେଳେ ଦ୍ୱାରପାଳ ଆସି ରାଜାଙ୍କ ସମ୍ମୁଖରେ ଉତ୍ତର ଓ ବୃହନ୍ନଳାଙ୍କ ଉପସ୍ଥିତିର ସମ୍ବାଦ ଦେଲା । ରାଜପୁତ୍ରଙ୍କୁ ତାଙ୍କ ସମୀପକୁ ନେଇ ଆସିବାକୁ ର ।ଜା ନିର୍ଦ୍ଦେଶ ଦେଲେ । ଉତ୍ତର ପିତାଙ୍କୁ ପ୍ରଣାମକରି କଙ୍କଙ୍କ ମୁହଁକୁ ଚାହିଁ ଦେଲାକ୍ଷଣି ଅସ୍ଥିର ହୋଇ ଉଠିଲେ । ପଚାରିଲେ, ଏ ମହାନ୍ ବ୍ୟକ୍ତିଙ୍କୁ ଆଘାତ ଦେଲା କିଏ ?

ରାଜା କହିଲେ, ''ମୋ ପଶାକାଠି ବାଜି ଏକ୍ଷତ ସୃଷ୍ଟି ହୋଇଛି । ତୁମର ବିଜୟ ସମ୍ବାଦ ପାଇ ମୁଁ ଯେତେବେଳେ ଆନନ୍ଦରେ ବିହ୍ୱଳ ହୋଇ ଉଠିଲି, କଙ୍କ ତାହା ସହ୍ୟକରି ନପାରି ସେ ନପୁଂସକ

'ବୃହନ୍ନଳା'ର ପ୍ରଶସ୍ତି ବଖାଣିବାରେ ଲାଗିଲେ । ରାଗରେ ପାଶକାଠିଟା ତାଙ୍କ ମୁହଁକୁ ମୁଁ ଫୋପାଡ଼ି ଦେଲି ।''

ଆପଣ ଅକ୍ଷମଣୀୟ ଅପରାଧ କରିଛନ୍ତି । ଆପଣ ତାଙ୍କର ପାଦତଳେ ପଡ଼ି କ୍ଷମା ଭିକ୍ଷା କରନ୍ତୁ । ନହେଲେ ଆଖି ପିଛୁଳାକେ ଏରାଜ୍ୟ, ରାଜପଣ, ଧ୍ୱଂସ ହୋଇଯିବ । ମୋର ପ୍ରାର୍ଥନା ପୂରଣ କରନ୍ତୁ ପିତା ।''

ରାଜା ବିରାଟ କଣ କରିବେ, ହଠାତ୍ କିଛି ଠିକ କରି ପାରିଲେ ନାହିଁ । ତେବେ ପୁତ୍ର ଉତ୍ତରର ଅନୁରୋଧକ୍ରମେ ଯୁଧିଷ୍ଠିରଙ୍କୁ କ୍ଷମା ପ୍ରାର୍ଥନା କଲେ । କଙ୍କ କହିଲେ, ''ହେ ରାଜନ୍ ! ରାଜପୁତ୍ରଙ୍କ ପ୍ରତି ମୋର କୌଣସି ବୈରତା ନାହିଁ । ଆପଣ ଆମକୁ ଆଶ୍ରୟ ଦେଇଛନ୍ତି । ଆପଣଙ୍କ ପାଖରେ ଆମେ ଚିରଋଣୀ । ଆପଣଙ୍କର ସଜ୍ଜନତାକୁ କୃତଜ୍ଞତାର ସହିତ ଆମେ ସର୍ବଦା ମନେ ରଖିବୁ ।''

ବିରାଟ ଉତ୍ତରଙ୍କୁ ତାଙ୍କର ବିଜୟକାହାଣୀ କହିବାପାଇଁ ଅନୁରୋଧ କଲେ । କହିଲେ, ଉତ୍ତର ମୁଁ ଆଶ୍ଚର୍ଯ୍ୟ ହେଉଛି, ତୁମେ ଏକା ଦୁର୍ଦ୍ଧର୍ଷ କୁରୁବୀରମାନଙ୍କୁ ପରାସ୍ତ କଲ କିପରି ?''

ଉତ୍ତର, ନମ୍ର କଣ୍ଠରେ କହିଲେ, ''ହେ ପିତା ! ମୁଁ କୌରବ ମାନଙ୍କୁ ଜୟ କରିନାହିଁ, କିମ୍ବା ଗୋଧନକୁ ରକ୍ଷାକରିନାହିଁ । ଏ ବିଜୟ ମୋର ନୁହେଁ । ଜଣେ ଦେବୋପମ ରାଜପୁତ୍ର ମୋତେ ଏ ଦୁର୍ଯ୍ୟୋଗରେ ସାହାଯ୍ୟ କରିଛନ୍ତି । ତାଙ୍କର ଅଲୌକିକ ବୀରତା କୌରବ ମାନଙ୍କୁ ପରାସ୍ତ କରିଛି । ମୁଁ ଥିଲି ତାଙ୍କ ରଥର ସାରଥି ।

''ଦୁର୍ଯ୍ୟୋଧନ, କର୍ଣ୍ଣ, ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା ପ୍ରଭୃତି କୌରବ ମହାରଥୀମାନଙ୍କ ସହିତ ଯେତେବେଳେ ତାଙ୍କର ଯୁଦ୍ଧ ହେଲା, ଆକାଶରୁ ଦେବତାମାନେ ଆସି ଏହା ଦେଖୁଥିଲେ । ଏହା ହେଉଛି ମୋ ଜୀବନର ପ୍ରଥମ ରୋମାଞ୍ଚକର ଅନୁଭୂତି । ତାଙ୍କରି କୃପାରୁ ମୋତେ ମଧ୍ୟ ଦେବ ଦର୍ଶନ ମିଳିଲା । ମୁଁ ତାଙ୍କ ପାଇଁ ଧନ୍ୟ ହୋଇଛି ପିତା, ଧନ୍ୟ ହୋଇଛି ।''

''କାହିଁ ସେଇ ରାଜପୁତ୍ର । ମୁଁ ତାଙ୍କୁ ଦେଖିବାକୁ ଚାହେଁ । ବିପଦ ସମୟରେ ଯେ ମୋ ପୁତ୍ରକୁ ସାହାଯ୍ୟ କରି ଶତ୍ରୁକୁ ସଂହାର କରିଛନ୍ତି ସେ ମୋର ସମ୍ମାନ ଯୋଗ୍ୟ । ତାଙ୍କୁ ରାଜପ୍ରାସାଦକୁ ନିମନ୍ତ୍ରଣ କର । ମୁଁ ମୋର ପ୍ରାଣାଧିକା ରାଜଜେମା ଉତ୍ତରାଙ୍କୁ ତାଙ୍କ ହସ୍ତରେ ଅର୍ପଣ କରିବି ।''

''ସେ ନିଶ୍ଚୟ ଆସିବେ ଏବଂ ଆପଣଙ୍କୁ ନିର୍ଦ୍ଦିଷ୍ଟ ସମୟରେ ସାକ୍ଷାତ କରିବେ । ଆମର ସୌଭାଗ୍ୟ ଆପଣମଧ୍ୟ ସୁଶର୍ମାଙ୍କୁ ପରାସ୍ତ କରି ଗୋଧନ ରକ୍ଷା କରିଛନ୍ତି । ଏକ ଶୁଭ ଅନୁକୂଳରେ ଏ ଯୁଦ୍ଧଯାତ୍ରା ଆରମ୍ଭ ହୋଇଥିଲା ।''

ବିରାଟ, ସୁଶର୍ମାଙ୍କୁ କିପରି ପରାଜିତ କଲେ ତାର ରହସ୍ୟ ଉତ୍ତରଙ୍କୁ କହିଲେ । ''କଙ୍କ ହେଉଛନ୍ତି ମୋ ବିଜୟର ସୂତ୍ରଧର । କେବଳ କଙ୍କ ନୁହଁନ୍ତି, ବଲ୍ଲବ, ଗ୍ରନ୍ଥିକ, ତଂତ୍ରପାଳ ଏମାନେ ସମସ୍ତେ ମୋତେ ସାହାଯ୍ୟ କରିଛନ୍ତି । ଏ ବିଜୟରେ ସେମାନେ ମଧ୍ୟ ଅଂଶିଦାର । ବିଜୟ ଉତ୍ସବ ପାଳନ ପାଇଁ ବ୍ୟବସ୍ଥା କରାଯାଉ । ମୁଁ ସେମାନଙ୍କୁ ସମ୍ମାନିତ କରିବି ।

ରଣ ଭୂମିରୁ ସଂଗ୍ରହ କରିଥିବା କୁରୁବୀରଙ୍କର ଛିନ୍ନ ବସ୍ତ୍ର ସବୁ ବୃହନ୍ନଳା ଉତ୍ତରାଙ୍କୁ ନେଇ ଉପହାର ଦେଲେ । ପରାଜିତ ଶତ୍ରୁର ଛିନ୍ନ ବସ୍ତ୍ରରେ ତାଙ୍କର କଣ୍ଢେଇ ସବୁ ମଣ୍ଡିତ ହେବେ । ଉତ୍ତରା ଆନନ୍ଦରେ ଅଧୀରା ।

ପରିଦିନ, ରାଜ ଦରବାରରେ ପାତ୍ରମନ୍ତ୍ରୀ, ଉଚ୍ଚ ରାଜକର୍ମଚାରୀ ଓ ମିତ୍ର ରାଜାମାନେ ନିମନ୍ତ୍ରଣ ରକ୍ଷାକରି ବିଜୟ ଉତ୍ସବରେ ଯୋଗ ଦେଲେ । ନିର୍ଦ୍ଦିଷ୍ଟ ସମୟରେ କଙ୍କ, ବଲ୍ଲବ, ଗ୍ରନ୍ଥିକ ଓ ତଂତ୍ରପାଳ ସଭାକକ୍ଷରେ ପ୍ରବେଶ କରି, ରାଜପୁତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଆସନରେ ଯାଇ ଗମ୍ଭୀର ହୋଇ ବସିଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ସେମାନଙ୍କୁ । ରାଜା ବିରାଟ ଏହା ଦେଖି ଆଉରି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କର ଏ ପ୍ରକାର ଅନୁଚିତ ଆଚରଣ ଦେଖି କହିଲେ, '' ହେ କଙ୍କ ! ଆପଣ ମୋର ସମ୍ମାନ ଲାଭ ପାଇଁ ଉପଯୁକ୍ତ । ସେଥିପାଇଁ ଏ ଉତ୍ସବର ଆୟୋଜନ କିନ୍ତୁ ଯା ବୋଲି ରାଜା ଓ ରାଜପୁତ୍ରମାନେ ବସିବା ସ୍ଥାନରେ ସମସ୍ତେ ଯାଇ ବସିଯିବାଟା ଯେପରି ନୀତି ସମ୍ମତ ନୁହେଁ ସେପରି ପାତ୍ରୋଚିତ ନୁହେଁ ମଧ୍ୟ । ରାଜାଙ୍କସ୍ଥାନରେ ବସିଲେ କହି ରାଜା ହୋଇଯାଏନାହିଁ । କଙ୍କ ନମ୍ର କଣ୍ଠରେ କହିଲେ, ''ମୁଁ ଭାବୁଛି, ରାଜପୁତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନରେ ରାଜପୁତ୍ରମାନେ ବସି ନଥିଲେ ବ୍ୟତିକ୍ରମ ଘଟିଥାନ୍ତା । ବହୁ ବିଚାର ସିଦ୍ଧାନ୍ତପରେ ଆମେ ନୀତିରକ୍ଷା କରିଛୁ ମାତ୍ର ।''

ଅର୍ଜୁନ ଛିଡ଼ା ହୋଇ କହିଲେ, ''ହେ ପରମ ପୁଣ୍ୟଶୀଳ ରାଜନ୍ ! ଯେଉଁ ପୁଣ୍ୟାତ୍ମା 'କଙ୍କ' ନାମରେ ଆପଣଙ୍କ ଠାରେ ପରିଚିତ ସେ 'କଙ୍କ ନୁହଁନ୍ତି । ଏହା ଏକ ଛଦ୍ମ ନାମ । ସେ ହେଉଛନ୍ତି ପାଣ୍ଡବ ଶ୍ରେଷ୍ଠ ଧର୍ମରାଜ ଯୁଧିଷ୍ଠିର । ନ୍ୟାୟ, ସତ୍ୟ, ପ୍ରେମ ଓ ଅହିଂସାର ପ୍ରତିମୂର୍ତ୍ତି । ଧର୍ମ ଓ ଶାନ୍ତି ପ୍ରତିଷ୍ଠା ତାଙ୍କର ଜୀବନର ସ୍ୱାଧ୍ୟାୟ । ଆପଣତ ଜାଣିଥିବେ, ମେଦିନୀ ମଣ୍ଡଳକୁ ସେ ଜୟ କରି ରାଜସୂୟ ଯଜ୍ଞ ସମ୍ପନ୍ନ କରିଥିଲେ । ଧନଦୌଲତ ଦାନ କରି ସେ ତାଙ୍କର ରାଜକୋଷକୁ ଶୂନ୍ୟକରି ଦେଇଥିଲେ । ମହାତ୍ମା ଧର୍ମରାଜ ଯୁଧିଷ୍ଠିର ଆଜିର ଏ ସଭାମଂଚକୁ ଅଳଂକୃତ କରିଛନ୍ତି ।

ବିରାଟ ଆନନ୍ଦରେ ବିହ୍ୱଳ ହୋଇଗଲେ । ଆସନରୁ ଉଠି ଯୁଧିଷ୍ଠିରଙ୍କୁ ପ୍ରଣାମ ତଥା ଆଲିଙ୍ଗନ କରି କହିଲେ, ''ହେ ସତ୍ୟ ଧର୍ମର ପ୍ରବକ୍ତା ! ହେ ଧର୍ମ ରାଜ ! ଅଜ୍ଞତା ବଶତଃ ମୁଁ ଯାହା କିଛି କଠୋର କଥା କହିଛି ସେଥିପାଇଁ କ୍ଷମା ଦେବେ । ମୁଁ ତ ପୂର୍ବରୁ ମୋ ରାଜ୍ୟ ଆପଣଙ୍କୁ ସମର୍ପଣ କରିସାରିଛି, ବର୍ତ୍ତମାନ ସମସ୍ତଙ୍କ ସମ୍ମୁଖରେ ପୁଣି ତାହା ଅର୍ପଣ କରୁଛି, ଦୟାକରି ଗ୍ରହଣ କରନ୍ତୁ ।''

ଯୁଧିଷ୍ଠିର ତାହା ପ୍ରତ୍ୟାର୍ପଣ କରି କହିଲେ,, ''ଦୁର୍ଦ୍ଦିନରେ ଯେ ଆମକୁ ସାହାଯ୍ୟ କରିଛନ୍ତି ସେ ସର୍ବଦା କ୍ଷମାର୍ହ । ତାଙ୍କ ସ୍ଥାନ ସର୍ବଦା ଆମ ପାଖରେ ଉଚ୍ଚରେ । ଆପଣ ନିଶ୍ଚିନ୍ତରେ ରାଜ୍ୟ ଭୋଗ କରନ୍ତୁ ଓ ଆମେ ଚିରଦିନ ଆପଣଙ୍କର ମିତ୍ର ହୋଇରହିବୁ ।''

ବିରାଟ କହିଲେ,'' ମୁଁ ଏଥିପାଇଁ ନିଜକୁ ଗର୍ବିତ ମନେ କରୁଛି । ଆପଣଙ୍କର ଅନ୍ୟ ଭାଇମାନଙ୍କର ପରିଚୟ ଦୟାକରି ଦିଅନ୍ତୁ ।''

ଯୁଧିଷ୍ଠିର ହସି ହସି କହିଲେ, ''ବଲ୍ଲବ'' ହେଉଛନ୍ତି ତ୍ରିଭୁବନ ବିଖ୍ୟାତ ମହାବଳୀ ଭୀମ ଯେକି ପ୍ରତିଦିନ ଆପଣଙ୍କ ପାଇଁ ଉତ୍କୃଷ୍ଟ ଖାଦ୍ୟ ପ୍ରସ୍ତୁତ କରି ପରିବେଷଣ କରନ୍ତି । ଆପଣଙ୍କ ଅଶ୍ୱପାଳକ ଗ୍ରନ୍ଥିକ ହେଉଛନ୍ତି ନକୁଳ, ଗୋପାଳକ ତଂତ୍ରପାଳ ହେଉଛନ୍ତି ସହଦେବ । ସୈରିନ୍ଧ୍ରୀ ଯେକି ରାଣୀ ସୁଦେଷ୍ଣାଙ୍କର ଅନ୍ତପୁରିକା, ସେ ହେଉଛନ୍ତି ଦ୍ରୁପଦରାଜକନ୍ୟା ଦ୍ରୌପଦୀ ।''

ଯୁବରାଜ ଉତ୍ତର ଛିଡ଼ା ହୋଇ କହିଲେ, ''ରାଜକନ୍ୟା ଉତ୍ତରାଙ୍କର ନୃତ୍ୟଗୁରୁ ବୃହନ୍ନଳା ହେଉଛନ୍ତି ବିଶ୍ୱବିଜୟୀ ତୃତୀୟ ପାଣ୍ଡବ ଅର୍ଜୁନ । ସେ ଏକା କୌରବ ମହାରଥୀମାନଙ୍କୁ ଯୁଦ୍ଧରେ ପରାସ୍ତ କରିଛନ୍ତି । ସେ ବୃହନ୍ନଳା ବେଶରେ ମୋ ରଥର ସାରଥି ହୋଇ ଯାଇଥିଲେ କିନ୍ତୁ ପ୍ରକୃତ ଯୁଦ୍ଧବେଳେ ମୁ ହେଲି

ତାଙ୍କ ରଥର ସାରଥି । ସେ ଯୁଦ୍ଧ କଲେ ଭୀଷ୍ମଦେବ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, କର୍ଣ୍ଣ,ଦୁର୍ଯ୍ୟୋଧନ ପ୍ରଭୃତିଙ୍କ ସହିତ । ସ୍ୱର୍ଗର ଦେବତାମାନେ ସେ ଯୁଦ୍ଧ ଦେଖୁଥିଲେ । ମୋର ଗର୍ବ ଯେ ତ୍ରିଭୁବନ ବିଜୟୀ ବୀର ଅର୍ଜୁନଙ୍କର ମୁଁ ସାରଥି ହୋଇପାରିଲି ।''

ରାଜା ବିରାଟ ଓ ସଭାସ୍ଥ ସମବେତ ଦର୍ଶକମଣ୍ଡଳୀ ପାଣ୍ଡବମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କଲେ । ବିରାଟ କହିଲେ, ଆଜିର ସ୍ମୃତି ରକ୍ଷା ପାଇଁ ମତ୍ସ୍ୟ ରାଜକୁମାରୀ ଉତ୍ତରାଙ୍କୁ ମୁଁ ଅର୍ଜୁନଙ୍କ ହାତରେ ଅର୍ପଣ କରିବାକୁ ଚାହେଁ ।''

ଅର୍ଜୁନ ବିନୀତ କଣ୍ଠରେ କହିଲେ, '' ହେ ରାଜନ ! ଆପଣଙ୍କ ମହାନୁଭବତା ପାଇଁ ମୁଁ ଋଣୀ । ମୁଁ ନୀତି ଦୃଷ୍ଟିରୁ ଉତ୍ତରାଙ୍କର ଗୁରୁ । ସେ ମୋର କନ୍ୟା ପରି ତେଣୁ ମୁଁ ତାଙ୍କୁ ମୋ ପୁତ୍ର ବୀର ଅଭିମନ୍ୟୁ ପାଇଁ ପୁତ୍ରବଧୂରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ । ଆଶା, ବିରାଟ ଏ ପ୍ରସ୍ତାବ ଗ୍ରହଣ କରିବେ । ଯୁଧିଷ୍ଠିର କହିଲେ, '' ମୁଁ ଅର୍ଜୁନଙ୍କର ଏ ପ୍ରସ୍ତାବକୁ ଅନ୍ତରର ସହିତ ସମର୍ଥନ କରୁଛି । ବିରାଟ ଆନନ୍ଦରେ ଏହି ମଙ୍ଗଳମୟ ପ୍ରସ୍ତାବ ଗ୍ରହଣ କଲେ ।

## ॥ ଉତ୍ତରା ଓ ଅଭିମନ୍ୟୁଙ୍କ ପରିଣୟ ॥

ଉତ୍ତରାଙ୍କ ସହିତ ଅଭିମନ୍ୟୁଙ୍କର ବିବାହ ପ୍ରସ୍ତାବ ବିରାଟଙ୍କୁ ଗଭୀର ଆନନ୍ଦ ଦେଇଛି । ବୟସ ଦୃଷ୍ଟିରୁ ଉଭୟଙ୍କ ପରିଣୟ ନୀତି ସମ୍ମତ । ବୀରତା ଦୃଷ୍ଟିରୁ ଅର୍ଜୁନ ସତେ ଯେପରି ନିଜର ପୁତ୍ର ଅଭିମନ୍ୟୁ ଭିତରେ ପୁଣିଥିରେ ଜନ୍ମ ନେଇଛନ୍ତି । କୌଳିକତା ବିଚାରରେ ସେ ସର୍ବଶକ୍ତିମାନ ଶ୍ରୀକୃଷ୍ଣଙ୍କର ଭଣଜା ଓ ଧର୍ମ ପରାୟଣ ପାଣ୍ଡବ କୁଳ ସମ୍ଭୂତ । ଅର୍ଜୁନଙ୍କୁ ଜାମାତା ରୂପେ ବରଣ କରିଥିଲେ ହୁଏତ ଲୋକାପବାଦର ଗୁଞ୍ଜରଣ ସୃଷ୍ଟି ହୋଇଥାନ୍ତା । ଲୋକ ଚକ୍ଷୁରେ ସନ୍ଦେହର ଊର୍ଦ୍ଧ୍ୱରେ ରହିବା ଆବଶ୍ୟକ । ସେ କହିଛନ୍ତି, ''ଉତ୍ତରା ମୋର ଛାତ୍ରୀ ହିସାବରେ କନ୍ୟା ଏବଂ ସେ ଅଭିମନ୍ୟୁର ପାଣିଗ୍ରହଣ କଲେ ହେବେ ମୋର ପୁତ୍ରବଧୂ । ଆତ୍ମା ତଥା ଆତ୍ମଜ ମଧ୍ୟରେ କୌଣସି ପ୍ରଭେଦ ନାହିଁ । କନ୍ୟା ଓ ପୁତ୍ରବଧୂ ମଧ୍ୟରେ ସେହିପରି କିଛି ପ୍ରଭେଦ ନାହିଁ । ଏହା ଏକ ବିଧି ପ୍ରେରିତ ସଂଘଟନ । ଏହି ସୁଚିନ୍ତିତ ପ୍ରସ୍ତାବଟି ଶୁଭପ୍ରଦ ହେଉ ।

ଏହାପରେ ବିବାହର ଆୟୋଜନ କରାଗଲା ।

ବିରାଟ ନିଜର ମିତ୍ର, ବନ୍ଧୁ ବାନ୍ଧବ ଓ ଆତ୍ମୀୟମାନଙ୍କ ପାଖକୁ ନିମନ୍ତ୍ରଣ ପଠାଇଲେ । ଯୁଧିଷ୍ଠିର, ବଳରାମ ଶ୍ରୀକୃଷ୍ଣ, ସୁଭଦ୍ରାଙ୍କୁ ସ୍ୱତନ୍ତ୍ର ଦୂତ ହାତରେ ସମ୍ବାଦ ଦେଇ ଡକାଇ ପଠାଇଥିଲେ । ଯାଦବମାନେ ବହୁମୂଲ୍ୟ ଉପହାର ନେଇ ଯଥା ସମୟରେ ପହଞ୍ଚିଲେ । ପାଣ୍ଡବମାନେ ଆଡ଼ମ୍ବର ଓ ସାଜସଜ୍ଜା ଭିତରେ ଶ୍ରୀକୃଷ୍ଣ ବଳରାମ ପ୍ରଭୃତିଙ୍କୁ ପାଛୋଟି ଆଣିଲେ ।

ନିଜର ଆତ୍ମ ପ୍ରକାଶ ପରେ ପାଣ୍ଡବମାନେ ବିରାଟ ରାଜପୁରୀରେ ଆଉ ରହିବାକୁ ଚାହିଁଲେ ନାହିଁ । ମତ୍ସ୍ୟ ରାଜ୍ୟର ଏକ ମନୋରମ ସହର 'ଉପଲବ୍ୟ' । ସେମାନେ ଯାଇ ସେଠାରେ ରହିଲେ । ଇନ୍ଦ୍ରସେନ ସମ୍ବାଦ ପାଇ, ତାଙ୍କ ସହିତ ସୈନ୍ୟ ସାମନ୍ତ ରଥ ପଭୃତି ଆଣି ଉପଲବ୍ୟରେ ପହଞ୍ଚିଲେ ।

ବନବାସ ସମୟରେ ଯେଉଁମାନେ ପାଣ୍ଡବ ମାନଙ୍କ ଗହଣରେ ଥିଲେ ଓ ଅଜ୍ଞାତ ବାସ ସମୟରେ ଚାଲି ଯାଇଥିଲେ ସେମାନେ ଆସି ପୁଣି ନିଜ ନିଜର କର୍ତ୍ତବ୍ୟରେ ଲାଗି ପଡ଼ିଲେ ।

ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କ ପାଖକୁ ପତ୍ରସହ ଜଣେ ଦୂତ ପଠାଇଲେ । ସେ ସେଥିରେ ଲେଖିଥିଲେ, ହେ ଧର୍ମ ପୁତ୍ର ! ଆପଣ ନିଜର ସତ୍ୟରକ୍ଷା ଦିଗରେ ସର୍ବଦା ଅଟଳ । ଅଜ୍ଞାତ ବାସର ନିର୍ଦ୍ଦିଷ୍ଟ ସମୟ ପୂରଣ ନ ହେଉଣୁ, ଅର୍ଜୁନ ଆତ୍ମପ୍ରକାଶ କରିଥିବାରୁ ସର୍ତ୍ତ ଭଙ୍ଗ ହୋଇଛି । ପୂର୍ବ ପ୍ରତିଜ୍ଞା ଦୃଷ୍ଟିରୁ ଆପଣଙ୍କୁ ଭାଇମାନଙ୍କ ସହ ପୁଣି ତେରବର୍ଷ ବନବାସ କରିବାକୁପଡ଼ିବ । ଆଶା, ବଚନ ଭଦ୍ଧତା ଦୃଷ୍ଟିରୁ ଆପଣ ଏହା ପାଳନ କରିବେ ।''

ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କ ଦୂତକୁ କହିଲେ, '' ହେ ଦୂତ ! ତୁମେ ଯାଇ ଦୁର୍ଯ୍ୟୋଧନଙ୍କୁ କୁହ, ଆମେ ଆମର ସର୍ତ୍ତ ଅକ୍ଷରେ ଅକ୍ଷରେ ପାଳନ କରିଛୁ । ତାଙ୍କର ଯଦି କିଛି ସନ୍ଦେହ ହେଉଛି ତା'ହେଲେ ଜ୍ୟୋତିର୍ବିଦ, ଗ୍ରହମାନଙ୍କର ଗତିବିଧି ନିର୍ଣ୍ଣୟରେ ପଣ୍ଡିତ, ପିତାମହ ଭୀଷ୍ମଙ୍କ ସହିତ ଆଲୋଚନା କରି ସେ ସନ୍ଦେହ ଦୂର କରନ୍ତୁ । ଦୂତ ଫେରି ଯାଇ ଦୁର୍ଯ୍ୟୋଧନଙ୍କୁ ଏ ସମ୍ବାଦ ଦେଲେ ।

ପାଣ୍ଡବମାନଙ୍କର ନିମନ୍ତ୍ରଣ ରକ୍ଷାକରି କାଶି ନରପତି ସୈବ୍ୟ, ରାଜା ଦ୍ରୁପଦ, ତାଙ୍କ ପୁତ୍ର ଧୃଷ୍ଟଦ୍ୟୁମ୍ନ, ଏବଂ ଶିଖଣ୍ଡୀ ବହୁ ସୈନ୍ୟସାମନ୍ତ ନେଇ ପହଞ୍ଚିଲେ । ପାଣ୍ଡବମାନଙ୍କର ଅନେକ ବନ୍ଧୁ, ସମର୍ଥକ, ରାଜା ଓ ରାଜପୁତ୍ର ଆସିଯୋଗ ଦେଲେ । ଶ୍ରୀକୃଷ୍ଣ, ବଳରାମ ସାତ୍ୟକି ଅଭିମନ୍ୟୁ ଓ ତାଙ୍କ ମାତା ସୁଭଦ୍ରା ଯାଦବମାନଙ୍କ ଗହଣରେ ଏକ ବିରାଟ ସୈନ୍ୟ ଶ୍ରେଣୀନେଇ ଆସି ପହଞ୍ଚିଲେ । ସେମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜଣାଇ ଶୋଭାଯାତ୍ରା ମଧ୍ୟରେ ବିଶେଷ ଅତିଥି ଭବନକୁ ନିଆଗଲା ।

ବନ୍ଧୁ ବାନ୍ଧବ ଓ ସମ୍ମାନିତ ଅତିଥିମାନଙ୍କ ଗହଣରେ ଉତ୍ତରା ଏବଂ ଅଭିମନ୍ୟୁଙ୍କର ଶୁଭ ପରିଣୟ ବୈଦିକ ରୀତିରେ ଅନୁଷ୍ଠିତ ହେଲା । ଏ ଉତ୍ସବର ଆୟୋଜନ ଥିଲା ଖୁବ୍ ଆଡ଼ମ୍ବର ପୂର୍ଣ୍ଣ ଓ ଅତ୍ୟନ୍ତ ଚିତ୍ତାକର୍ଷକ । ଉତ୍ସବ ଶେଷରେ ବ୍ରାହ୍ମଣମାନଙ୍କୁ ବହୁମୂଲ୍ୟ ଧନସମ୍ପତ୍ତି ଦାନ ଓ ଦକ୍ଷିଣା ଆକାରରେ ଦିଆଗଲା । ଦୀନ ଦରିଦ୍ରମାନଙ୍କ ପାଇଁ ଭୂରି ଭୋଜନ ଓ ସମ୍ପ୍ରଦାନର ବ୍ୟବସ୍ଥା ହେଲା । ମତ୍ସ୍ୟ ରାଜ୍ୟର ପୁରପଲ୍ଲୀ ଓ ଘରେଘରେ ଉତ୍ସବର ଜୁଆର ଛୁଟିଲା ।

ଉତ୍ସବ ଶେଷରେ, ବିରାଟ ରାଜାଙ୍କ ସଭା କକ୍ଷରେ ଆରମ୍ଭ ହେଲା ଏକ ମନୋଜ୍ଞ ସମାବେଶ । ଉପସ୍ଥିତ, ବନ୍ଧୁ, ବାନ୍ଧବ, ଅତିଥି ରାଜନ୍ୟ ମଣ୍ଡଳୀ, ସେନାପତି, ଏଥିରେ ଯୋଗ ଦେଲେ ।

ଯୁଧିଷ୍ଠିରଙ୍କ ପାଖରେ ବସିଲେ ଶ୍ରୀକୃଷ୍ଣ ! ଦ୍ରୁପଦଙ୍କ ପାଖରେ ବସିଲେ ବଳରାମ ଓ ସାତ୍ୟକୀ । କେନ୍ଦ୍ର ସ୍ଥଳରେ ବସିଲେ ମତ୍ସ୍ୟରାଜା ବିରାଟ ଯେ କି ଏହି ସମାବେଶର ଆୟୋଜକ । ବିରାଟ, ସମ୍ମାନିତ ଅତିଥିମାନଙ୍କୁ ସମ୍ଭାଷଣ ଜଣାଇ, ଅଧିବେଶନର ଉଦ୍‌ଘାଟନ ପାଇଁ ଯୁଧିଷ୍ଠିରଙ୍କୁ ଅନୁରୋଧ କଲେ । ଧର୍ମପୁତ୍ର ଉପସ୍ଥିତ ଅତିଥିମାନଙ୍କୁ ଧନ୍ୟବାଦ ଜଣାଇ ସଭାର ଶୁଭାରମ୍ଭ କଲେ । ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ, ତାଙ୍କର ମନୋଭାବ ପ୍ରକାଶ କରିବାକୁ ।

ସମସ୍ତଙ୍କର ଉତ୍ସୁକଦୃଷ୍ଟି ନିବଦ୍ଧ ହେଲା ଶ୍ରୀକୃଷ୍ଣଙ୍କ ଉପରେ । ସେ ଛିଡ଼ା ହୋଇ କହିଲେ, ''ଦୀର୍ଘ ଦିନର ବିଚ୍ଛେଦ ପରେ ଆଜି ଏକ ମହାନ୍ ମିଳନର ଦିନ । ଆପଣମାନେ ଜାଣନ୍ତି, କୌରବମାନେ କପଟ ପଶା ଖେଳରେ ପାଣ୍ଡବମାନଙ୍କୁ ପରାସ୍ତ କରି ସେମାନଙ୍କୁ ପୈତୃକ ରାଜ୍ୟରୁ ବଞ୍ଚିତ କରିଥିଲେ । ବାରବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତବାସ ଦଣ୍ଡ ସେମାନଙ୍କୁ ଭୋଗ କରିବାକୁ ପଡ଼ିଲା । କୌରବମାନେ

ପ୍ରତାରଣାପୂର୍ଣ୍ଣ, ପଶା ଖେଳରେ ପାଣ୍ଡବରାଜ୍ୟ ଅପହରଣ କଲେ । ନିଜର ଶପଥ ରକ୍ଷା କରିବାପାଇଁ ପାଣ୍ଡବମାନେ ଦୁଃଖପୂର୍ଣ୍ଣ ବନବାସ ଦଣ୍ଡ ଆଦରି ନେଲେ । ମହାମହିମ ସମ୍ରାଟ ଯୁଧିଷ୍ଠିର, ଭାଇମାନଙ୍କ ଗହଣରେ ହେଲେ ବନବାସୀ । ପତ୍ନୀ ହିସାବରେ, ପତିମାନଙ୍କର ସୁଖଦୁଃଖର ଅଂଶୀଦାର ହେବା ପାଇଁ, ଦ୍ରୁପଦନନ୍ଦିନୀ କୋମଳାଙ୍ଗୀ ଦ୍ରୌପଦୀ ମଧ୍ୟ ତ୍ୟାଗର ପଥ, ଅନୁସରଣ କଲେ । ବନଜୀବନର ଅସରନ୍ତି ଦୁଃଖ ସେମାନଙ୍କୁ ଭୋଗ କରିବାକୁ ପଡ଼ିଲା । ଆନନ୍ଦର କଥା, ସେ ଦୁର୍ଦ୍ଦିନର ଅବସାନ ହୋଇଛି । ଆପଣମାନେ ସେମାନଙ୍କର ଦୁରବସ୍ଥା ହୃଦୟଙ୍ଗମ କରନ୍ତୁ । ଧର୍ମ ଓ ନ୍ୟାୟକୁ ଆଖି ଆଗରେ ରଖି ଭବିଷ୍ୟତ କର୍ମପନ୍ଥା ବିଷୟରେ ନିଜର ବିଚାରବନ୍ତ ଉପଦେଶ ଦିଅନ୍ତୁ । କୌରବମାନଙ୍କର ନିର୍ମମ ଅବିଚାର ଓ ଅକ୍ଷମଣୀୟ ଶତ୍ରୁତାସତ୍ତ୍ୱେ ଯୁଧିଷ୍ଠିର ସେମାନଙ୍କର ମଙ୍ଗଳ କାମନା କରନ୍ତି ।

ପାଣ୍ଡବ ମାନଙ୍କର ଏକ ମାତ୍ର ଇଚ୍ଛା, ସେମାନେ ନିଜର ପୈତୃକ ରାଜ୍ୟ ଶାନ୍ତିରେ ଫେରି ପାଆନ୍ତୁ । ଏଥିପାଇଁ ଯୁଦ୍ଧ ଓ ରକ୍ତକ୍ଷୟ ହେବାକୁ ସେ ଆଦୌ ପସନ୍ଦ କରନ୍ତି ନାହିଁ । ଅବଶ୍ୟ ଦୁର୍ଯ୍ୟୋଧନଙ୍କର ଇଚ୍ଛାକଣ ଆମେ ଜାଣିନାହାନ୍ତି, ମୁଁ ଭାବୁଛି ଆମେ ଜଣେ ଦକ୍ଷ ଲୋକକୁ ଶାନ୍ତିଦୂତ ଭାବରେ ହସ୍ତିନାପୁରକୁ ପଠାଇବା । ସେ ଦୁର୍ଯ୍ୟୋଧନଙ୍କୁ ପ୍ରଭାବିତ କରି ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ବ୍ୟବସ୍ଥା କରିବେ । କୌରବମାନେ ପାଣ୍ଡବମାନଙ୍କର ଦାବୀକୁ ପ୍ରତ୍ୟାଖ୍ୟାନ କଲେ ବୁଝିବାକୁ ହେବ, ସେମାନେ ଯୁଦ୍ଧକୁ ପାଣ୍ଡବମାନଙ୍କ ଉପରେ ଲଦି ଦେଇଛନ୍ତି । ସେ କ୍ଷେତ୍ରରେ ଯୁଦ୍ଧ ଅନିବାର୍ଯ୍ୟ । ଏ ପରିସ୍ଥିତିରେ ଆପଣମାନଙ୍କର ମତ କଣ ଦୟାକରି ପ୍ରକାଶ କରନ୍ତୁ ।''

ବଳରାମ ଛିଡ଼ା ହୋଇ କହିଲେ, ''ଶାନ୍ତିପୂର୍ଣ୍ଣ ସମାଧାନ ପ୍ରସ୍ତାବକୁ, ମୁଁ ଅନ୍ତରର ସହିତ ସମର୍ଥନ କରୁଛି । ହିଂସା ଓ ଯୁଦ୍ଧ, ସମସ୍ୟାର ସମାଧାନ କରେ ନାହିଁ ବରଂ ଅଧିକ ସମସ୍ୟା ସୃଷ୍ଟି କରିଥାଏ । ଯୁଦ୍ଧ ହେଲେ କେବଳ ଯେ ତାହା କୁରୁ ପାଣ୍ଡବ ମଧ୍ୟରେ ସୀମିତି ହୋଇ ରହିବ ତାନୁହେଁ, ଏହା ସମଗ୍ର ଭାରତ ବର୍ଷକୁ ଗ୍ରାସ କରିବ । ଅଗଣିତ ଲୋକ ଅସୁମାର ଦୁଃଖ ଯନ୍ତ୍ରଣା ଭୋଗ କରିବେ । ଏହା ପ୍ରଳୟ ସୃଷ୍ଟି କରିବ ଏଥିରେ ସନ୍ଦେହ ନାହିଁ ।ଶାନ୍ତି ପୂର୍ଣ୍ଣ ସମାଧାନ ହୋଇପାରିଲେ କେବଳ କୁରୁପାଣ୍ଡବଙ୍କର ମଙ୍ଗଳ ସାଧିତ ହେବନାହିଁ, ସାରା ଭାରତବର୍ଷ ପାଇଁ ଏହା ହେବ କଲ୍ୟାଣକର ।

ପାଣ୍ଡବ କୌରବମାନଙ୍କର ବିବଦମାନ ଦାବୀ ବିଷୟରେ ମୁଁ ମୁଣ୍ଡ ଖେଳାଇବାକୁ ଚାହେଁନାହିଁ । ଉଭୟଙ୍କ ଦାବୀର ଯୌକ୍ତିକତା ବିଷୟରେ ଅନେକ କିଛି କହିବାର ଅଛି । ପାଣ୍ଡବମାନଙ୍କର ପୈତୃକ ସମ୍ପତ୍ତି ପାଇବାର ଅଧିକାର କେତେଦୂର ଯୁକ୍ତିସଂଗତ, ତାହା କୁହାଯାଇନପାରେ । ଯୁଧିଷ୍ଠିର ଧର୍ମରାଜ ସେ ପଶାଖେଳ ପରି ଏକ ପାପ ଓ ନିନ୍ଦନୀୟ କ୍ରୀଡ଼ାରେ କାହିଁକି ଆସକ୍ତ ଆଦୌ ବୁଝି ହୁଏନାହିଁ । ଏହା ରାଜକୀୟ ବିଳାସ ବ୍ୟତୀତ କୌଣସି ଦିଗରୁ ନୀତି ଓ ଧର୍ମ୍ମ ସମ୍ମତ ନୁହେଁ । ଧର୍ମରାଜ ହୋଇ ଅଧର୍ମ ପଥକୁ ଗୋଡ଼ ବଢ଼ାଇ, ନିଜର ରାଜ୍ୟ ଓ ରାଜଶିରୀ ହରାଇଲେ ତାକୁ ଫେରି ପାଇବା ପାଇଁ ଅଧିକାର ସାବ୍ୟସ୍ତ କରରିବା କେତେ ଦୂର ଠିକ୍ ତାହା ବିଚାର କରନ୍ତୁ । ପଶାଖେଳ ଜଣେ ରାଜାପାଇଁ ଯୁଦ୍ଧ ସହିତ ସମାନ । କୌରବମାନେ ପଶା ଯୁଦ୍ଧରେ ପାଣ୍ଡବ ମାନଙ୍କର ରାଜ୍ୟଲାଭ କରିଛନ୍ତି । ଯୁଦ୍ଧରେ ରାଜ୍ୟଜୟ କରିବା ସହିତ ଏହା ସମାନ ଅଟେ । ଧର୍ମରାଜ ଯଦି ପଶା ଖେଳିଲେ, ଶକୁନିଙ୍କ ସହିତ ଖେଳିବାକୁ ସମ୍ମତ ହେଲେ କାହିଁକି ? ଏ ସମ୍ମତି ପଛରେ କିଲକ୍ଷ୍ୟ ଥିଲା । ସେମାନେ, ଏତେ ସହଜରେ ତାଙ୍କର କୁଟିଳ କୂଟନୀତି ପ୍ରୟୋଗ କରିପାରିଲେ କିପରି ? ଦୁର୍ଯ୍ୟୋଧନ କିମ୍ବା ତାଙ୍କର ଭାଇମାନଙ୍କ ସହିତ

ପଶା ଖେଳିଥିଲେ ହୁଏତ ଏ ଦୁର୍ଦଶା ଭୋଗ କରିବାକୁ ପଡ଼ି ନଥାନ୍ତା । ଶକୁନିଙ୍କୁ ଦୋଷ ଦେଇ ଲାଭ କଣ । ନିଜ ବୁଦ୍ଧିରେ ନିଜେ ସେ ସବୁ ହରାଇଛନ୍ତି ।

ଯଦି ଶାନ୍ତି ପାଇଁ ଦୂତ ପଠାଯିବାର କଥା ଶୀଘ୍ର ପଠାଯାଉ । ସେ ଦୁର୍ଯ୍ୟୋଧନଙ୍କୁ ବୁଝାଇ ସୁଝାଇ ତାଙ୍କର ମନ ନେଇ, ଶାନ୍ତିରେ ରାଜ୍ୟର ଅର୍ଦ୍ଧେକ ପାଇବାର ବ୍ୟବସ୍ଥା କରନ୍ତୁ । ଦାବୀ ଆଉ ଅଧିକାର ସାବ୍ୟସ୍ତ କଲେ ଦୁର୍ଯ୍ୟୋଧନଙ୍କ ଠାରୁ ରାଜ୍ୟଲାଭ କରିବା ଦୁରାଶା ମାତ୍ର ।''

ବଳରାମଙ୍କ କଥା ଶୁଣି ଯୁଧିଷ୍ଠିରଙ୍କ ଭିତରେ ବିଶେଷ କିଛି ପ୍ରତିକ୍ରିୟା ସୃଷ୍ଟି ହୋଇନଥିଲା । ସେ ଶାନ୍ତ ଗମ୍ଭୀର ହୋଇ ସବୁ ଶୁଣୁଥାନ୍ତି । ସତେ ଯେପରି ତାଙ୍କ ବିଷୟରେ କିଛି କୁହାଯାଉ ନାହିଁ ।

ସାତ୍ୟକୀ ବଳରାମଙ୍କ ମନ୍ତବ୍ୟକୁ ସହ୍ୟ କରି ପାରିଲେ ନାହିଁ । କ୍ରୋଧାବିଷ୍ଟ ହୋଇ କହିଲେ, ''ବଳରାମଙ୍କ ଉକ୍ତି ଆଦୌ ଯଥାର୍ଥ ନୁହେଁ । ସେ ଭିତରକୁ ପଶିବାକୁ ଚେଷ୍ଟାକରି ନାହାନ୍ତି । ଉପରଠାଉରିଆ ଭାବରେ ନୀତିକଥା ଗୁଡ଼ିକ କେବଳ କହୁଛନ୍ତି । ଏହା ତାଙ୍କର କଥାର ଗୋଟାଏ ଚାଲ୍ । ବଳରାମଙ୍କ କଥାକୁ ମୁଁ ଦୃଢ଼ତାର ସହିତ ପ୍ରତିବାଦ କରୁଛି । କୌରବମାନେ ଚକ୍ରାନ୍ତକରି ଯୁଧିଷ୍ଠିରଙ୍କ ଆବେଗର ସୁଯୋଗ ନେଇଛନ୍ତି । ପଶାଖେଳରେ କପଟତା ପ୍ରୟୋଗ କରାଯାଇଛି । ପାଣ୍ଡବଙ୍କ ପୈତୃକ ରାଜ୍ୟରେ କୌରବମାନଙ୍କୁ ରାଜୁତି କରିବାପାଇଁ ସମର୍ଥନ ଦେବା ଯାହା, ଚୋରକୁ ଅପହୃତ ସମ୍ପତ୍ତିର ମାଲିକ ବୋଲି ଗ୍ରହଣ କରିବା ସେଇଆ । ବଳରାମ ଯାହା କହିଛନ୍ତି, ଦୁର୍ଯ୍ୟୋଧନଙ୍କୁ ଭୟକରି ବୋଧହୁଏ କହୁଛନ୍ତି ।''

ପାଣ୍ଡବମାନେ ତାଙ୍କର ସତ୍ୟ ପୂରଣ କରିଛନ୍ତି ତେଣୁ ସେ ନିଜର ପୈତୃକ ରାଜ୍ୟକୁ ଫେରି ପାଇବାରେ କୌଣସି ଅସଙ୍ଗତି ନାହିଁ । ଦୁର୍ଯ୍ୟୋଧନ ଶାନ୍ତି ପ୍ରସ୍ତାବରେ ସମ୍ମତ ହୋଇ ରାଜ୍ୟ ଫେରସ୍ତ ନକଲେ ଯୁଦ୍ଧ ଅନିବାର୍ଯ୍ୟ । ଏପ୍ରକାରଧର୍ମ ଯୁଦ୍ଧକୁ ଏଡ଼ାଇ ଦିଆଯାଇ ନପାରେ । ଦୁର୍ଯ୍ୟୋଧନ ଯଦି ଯୁଦ୍ଧ ପାଇଁ ପଥ ପରିଷ୍କାର କରିଦେବେ ଆମକୁ ତାହା ଗ୍ରହଣ କରିନେବା ବ୍ୟତୀତ ଅନ୍ୟ କିଛି ବିକଳ୍ପ ପନ୍ଥା ନାହିଁ । ଯୁଦ୍ଧ କିମ୍ବା ଶାନ୍ତି ଭିତରୁ କୌଣସି ଗୋଟିକୁ ବାଛିବାର ଆବଶ୍ୟକତା ଦୁର୍ଯ୍ୟୋଧନଙ୍କର ରହିଛି । ଉପସ୍ଥିତ କ୍ଷେତ୍ରରେ ତାଙ୍କର ମନୋଭାବକୁ ସମ୍ମାନିତ କରିବାର ଦାୟିତ୍ୱ ଆମର, ସେଥିପାଇଁ ଆମେ ପ୍ରସ୍ତୁତ ହୋଇ ରହିବା । ମନେରଖିବାକୁ ହେବ, ଦୁର୍ଯ୍ୟୋଧନ ବିନା ଯୁଦ୍ଧରେ ଇଞ୍ଚେ ଜାଗାବି ଛାଡ଼ିବାକୁ ରାଜି ହେବେନାହିଁ । ଅଯଥା ଆଲୋଚନା କରି ଲାଭ କଣ ? ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।''

ଦ୍ରୁପଦ ସାତ୍ୟକୀଙ୍କ କଥାକୁ ସମର୍ଥନ କରି କହିଲେ, '' ଯୁଦ୍ଧ ନିଶ୍ଚୟ ହେବ । ଦୁର୍ଯ୍ୟୋଧନ ଆମର ଶାନ୍ତିପ୍ରସ୍ତାବ ଗ୍ରହଣ କରିବେ ନାହିଁ । ବଳରାମଙ୍କ କଥା ଅନୁସାରେ ଆମେ ଶାନ୍ତି ପ୍ରତିଷ୍ଠାପାଇଁ ଆଗେଇଯିବା । ମୁଁ ଆମର ପୁରୋହିତଙ୍କୁ ଶାନ୍ତିପ୍ରସ୍ତାବ ଦେବାପାଇଁ ହସ୍ତିନାକୁ ପଠାଇବି ।''

ଏ ପ୍ରସ୍ତାବରେ ସମସ୍ତେ ଏକମତ ହେଲେ । ଶ୍ରୀକୃଷ୍ଣ ବଳରାମ ପ୍ରଭୃତି ଦ୍ୱାରକାକୁ ଫେରି ଆସିଲେ । ଶାନ୍ତିପ୍ରସ୍ତାବ କିପରି ଦିଆଯିବ ଓ ଦୁର୍ଯ୍ୟୋଧନ ପ୍ରଭୃତିଙ୍କୁ କିପରି ବୁଝାଯିବ ସେ ବିଷୟରେ ପୁରୋହିତଙ୍କୁ ଟିକିନିଖି ସବୁ ବୁଝାଇଲେ । ଏପାଖରେ ଦୁର୍ଯ୍ୟୋଧନ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥାନ୍ତି । ତାଙ୍କର ସମର୍ଥକମାନଙ୍କର ସଂଖ୍ୟା ବୃଦ୍ଧି କରିବା ପାଇଁ ସେ ଆପ୍ରାଣ ଚେଷ୍ଟା କରୁଥାନ୍ତି ।

# ।। ଶାନ୍ତି ପ୍ରସ୍ତାବ ପଠାଗଲା ।।

ରାଜା ଦ୍ରୁପଦ ତାଙ୍କର କୁଳପୁରୋହିତଙ୍କୁ ବୁଝାଇ କହୁଥାନ୍ତି ।

''ମୁଁ ବୁଝୁଛି, କୌରବମାନେ ଶାନ୍ତି ପ୍ରସ୍ତାବକୁ ସ୍ୱୀକାର କରିବେ ନାହିଁ ତଥାପି ଆମକୁ ଶାନ୍ତି ପ୍ରଚେଷ୍ଟା ଅବ୍ୟାହତ ରଖିବାକୁ ହେବ । ଆପଣତ ବିଜ୍ଞ, ବୟସ୍କ ନୀତି ନିପୁଣ । ଆପଣଙ୍କ ପରାମର୍ଶର ପ୍ରଭାବ, ଅନ୍ଧରାଜ ଧୃତରାଷ୍ଟ୍ରଙ୍କର ସିଦ୍ଧାନ୍ତକୁ ବଦଳାଇ ନ ପାରିଲେ ମଧ୍ୟ ତାଙ୍କ ଦାମ୍ଭିକତାର ଦ୍ରୁମକୁ ନିଶ୍ଚୟ ଦୋହଲାଇ ଦେବ । ଧୃତରାଷ୍ଟ୍ର ଭଲରୂପେ ଜାଣନ୍ତି, ତାଙ୍କର ପିଲାଗୁଡ଼ାକ ଗୋଟାଏ ଗୋଟାଏ ଉଦ୍ ଫଣ କାଳସର୍ପ । ଯୁଦ୍ଧ ଉତ୍ତେଜନା ଅପେକ୍ଷା ଶାନ୍ତିକୁ ହୁଏତ ସେମାନେ ପ୍ରାଥମିକତା ନଦେଇପାରନ୍ତି ।

ଗମ୍ଭୀର ହୋଇ ଶୁଣୁଥାନ୍ତି ରାଜା ଦ୍ରୁପଦଙ୍କର କୁଳ ପୁରୋହିତ ।

ମୁଁ ଭଲ କରି ଜାଣେ କର୍ଣ୍ଣ ଏବଂ ଶକୁନିର ଉପସ୍ଥିତିକୁ ଭୀଷ୍ମଦେବ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ପ୍ରଭୃତି ପସନ୍ଦ କରନ୍ତି ନାହିଁ । ସେମାନଙ୍କର ପାଣ୍ଡବମାନଙ୍କ ପ୍ରତି ନିଭୃତ ମମତା ରହିଛି । ବିଦୁର ପାଣ୍ଡବମାନଙ୍କର ପୂର୍ଣ୍ଣ ସମର୍ଥକ । ଶାନ୍ତି ପ୍ରସ୍ତାବର ସେମାନେ ସହାୟକ ହେବେ । ସମସ୍ତ ପ୍ରତିକୂଳତା ଭିତରେ, କିଛି ସଫଳତା ମିଳିଲେ, ତାହାହିଁ ହେବ ଆପଣଙ୍କ ନିଷ୍ଠାର ଫଳ । ଧ୍ୱଂସ ମୁଖରୁ ଦୁଇଟା ସମୃଦ୍ଧ ସାମ୍ରାଜ୍ୟ ରକ୍ଷା ପାଇଯିବ କେବଳ ଆପଣଙ୍କ ପାଇଁ । ତଥାପି ଆପଣ ବିଫଳ ହେଲେ, ବ୍ୟସ୍ତ ହେବାର କିଛିନାହିଁ । ଶାନ୍ତିର ପରିଣତି ହିଁ ଶାନ୍ତି ଆଉ ଶୁଭପ୍ରଦ । ଆପଣଙ୍କ ଏ ଯାତ୍ରା ସଫଳ ହେଉ ।'' ଏତିକି କହି ରାଜା ଦ୍ରୁପଦ ନିରବ ହେଲେ ।

ରାଜପୁରୋହିତ ତାଙ୍କର ଶାନ୍ତିଯାତ୍ରା ଆରମ୍ଭ କଲେ ହସ୍ତିନାପୁରକୁ । କିନ୍ତୁ ପାଣ୍ଡବମାନେ ଯୁଦ୍ଧ ପ୍ରସ୍ତୁତିରେ ଅବହେଳା କଲେ ନାହିଁ । ସେମାନଙ୍କ ପକ୍ଷ ସମର୍ଥନ କରିବାପାଇଁ ବିଭିନ୍ନ ରାଜା ମହାରାଜାମାନଙ୍କ ସହିତ ଆଲୋଚନା କଲେ ।

ଧୃତରାଷ୍ଟ୍ର ପଞ୍ଚାଳ ଦୂତଙ୍କୁ ଅଭିନନ୍ଦନ ଜଣାଇ ପାଣ୍ଡବ ମାନଙ୍କର କୁଶଳ ଜିଜ୍ଞାସା କଲେ । ସେ କହିଲେ, ''କୁରୁସମ୍ରାଟଙ୍କର ମଙ୍ଗଳ ହେଉ ! ଆପଣ ଜାଣନ୍ତି ମଣିମା, ପାଣ୍ଡବମାନଙ୍କର ବନବାସ ଓ ଅଜ୍ଞାତ ବାସର ସମୟ ଅତିକ୍ରାନ୍ତ ହୋଇଛି । ସେମାନେ ତାଙ୍କର ପ୍ରତିଜ୍ଞା ପୂରଣ କରିଛନ୍ତି । ନିଜ ରାଜ୍ୟ ଫେରି ପାଇବାକୁ ପାଣ୍ଡବମାନଙ୍କର ଅନୁରୋଧର ବାର୍ତ୍ତାନେଇ ମୁଁ ଆସିଛି । ସମଗ୍ର କୁରୁରାଜ୍ୟ ସେମାନଙ୍କର ଦାବି ନୁହେଁ । ଧର୍ମରାଜ ଯୁଧିଷ୍ଠିରଙ୍କୁ ଆପଣ ପୂର୍ବରୁ ଯାହା ଦେଇଛନ୍ତି, ତାହାହିଁ ଫେରାଇ ଦେବାକୁ ସେମାନଙ୍କର ଅନୁରୋଧ । ସମ୍ରାଟଙ୍କର ସହୃଦୟତା ଓ ନୀତି ସମ୍ମତ ବିଚାର, ନିଶ୍ଚୟ ପୂର୍ବ ଚୁକ୍ତିକୁ ସମ୍ମାନ ଦେବ । ପାଣ୍ଡବମାନେ କୌରବମାନଙ୍କ ସହିତ ଭ୍ରାତୃବନ୍ଧନକୁ ଅଧିକ ସମ୍ମାନ ଦିଅନ୍ତି । ଶାନ୍ତି ଆଉ ସୌଭ୍ରାତ୍ର ପ୍ରତିଷ୍ଠିତ ହେଉ । କୁରୁ ସମ୍ରାଟଙ୍କର ଜୟ ହେଉ'' ।

ଧୃତରାଷ୍ଟ୍ର ଗଭୀର ଆତ୍ମନିବେଶ ମଧ୍ୟରେ ଦ୍ରୁପଦ ଦୂତଙ୍କ ଉଚ୍ଚାରିତ ପ୍ରତ୍ୟେକ ଶବ୍ଦକୁ ବିଶ୍ଳେଷଣ କରୁଥିଲେ । କିଛି ସମୟ ପରେ ଶୁଣାଗଲା ଏକ ଅସ୍ପଷ୍ଟ ଗୁଞ୍ଜନ । ଛିଡ଼ା ହେଲେ ପିତାମହ ଭୀଷ୍ମ । କହିଲେ, ''ମହାରାଜ ! ଆନନ୍ଦର କଥା , ପାଣ୍ଡବମାନେ ମନରୁ ସବୁ ତିକ୍ତତା ଲିଭାଇ ଦେଇ ଏକ ସୁଚିନ୍ତିତ ଶୁଭ ପ୍ରସ୍ତାବ ପଠାଇଛନ୍ତି । ଏହା ଉତ୍ତମ ପରିବେଶ ସୃଷ୍ଟି କରିବାରେ ସହାୟକ ହେବ । ଆଜିର ଏ ଶାନ୍ତି ପ୍ରସ୍ତାବ ଯେପରି ମୂଲ୍ୟବାନ ସେପରି ସମୟୋପଯୋଗୀ । ପୂର୍ବ ବ୍ୟବସ୍ଥା ଅନୁସାରେ, ତାଙ୍କରାଜ୍ୟ ଓ ରାଜଧାନୀ ଇନ୍ଦ୍ରପ୍ରସ୍ଥ ଫେରାଇ ଦେବା ବିଜ୍ଞତାର କାମହେବ । କୁରୁ ପାଣ୍ଡବମାନଙ୍କର ପୁନର୍ମିଳନ ହେଉ । ଧର୍ମାତ୍ମା ଯୁଧିଷ୍ଠିର ଅନୁଦାର ନୁହନ୍ତି । ଅତୀତର ଅଘଟନ, ପରିବେଶକୁ ବିପନ୍ନ କରିବ ନାହିଁ । ଏହି ଅନୁକୂଳ ପରିସ୍ଥିତିର ସୁଯୋଗ ଆମେ ନେବା ଉଚିତ ।''

ଭୀଷ୍ମ ଦେବଙ୍କୁ କୁହାଇ ଦେଲେନି କର୍ଣ୍ଣ । ପାଟିରୁ କଥା ଛଡ଼ାଇ ନେଇ ପଞ୍ଚାଳ ଦୂତଙ୍କୁ ଲକ୍ଷ୍ୟ କରି କହିଲେ, ମୁଁ ବୁଝି ପାରୁନି, ତୁମେ ଦୂତ ଗିରି କରିବାକୁ ଆସିଛ ନା ପାଣ୍ଡବମାନଙ୍କର ପ୍ରଶସ୍ତି ପ୍ରଚାର କରିବାକୁ ଆସିଛ । କଥାର ଚାତୁରୀରେ ତୁମେ ଚମକ ସୃଷ୍ଟି କରିପାର କିନ୍ତୁ ମନେ ରଖିବାକୁ ହେବ, ତାହା ଭେଦ କରିବାର ଶକ୍ତି କୌରବମାନଙ୍କର ଅଛି । ପାଣ୍ଡବମାନଙ୍କର ନିଜତ୍ୱ ଓ ନିଜସ୍ୱ ବୋଲି କିଛି ନାହିଁ । ସେମାନେ ରାଜା ଦ୍ରୁପଦଙ୍କ ହାତରେ କ୍ରୀଡ଼ନକ ମାତ୍ର । ମୋର ମନହୁଏ, ତୁମେ ଅନୁରୋଧର ବାର୍ତ୍ତାନେଇ ଆସିନ । ଅନୁରୋଧ ଛଳରେ, ଚଟୁଳ ଚେତାବନୀ ଦେବା ତୁମର ଲକ୍ଷ୍ୟ । ରାଜ୍ୟ ଫେରିପାଇବାର ସମୟ ଆସିନାହିଁ । ଅର୍ଜୁନ ଅଜ୍ଞାତବାସ ସମୟ ପୂର୍ଣ୍ଣହେବା ପୂର୍ବରୁ ବାହାରି ଆସିଛନ୍ତି । ପ୍ରତିଜ୍ଞାଭଙ୍ଗ ହୋଇଛି । ଚୁକ୍ତି ରକ୍ଷାପାଇଁ ପାଣ୍ଡବ ମାନଙ୍କୁ ପୁଣି ବାରବର୍ଷ ବନବାସ ଦଣ୍ଡ ଭୋଗିବାକୁ ହେବ ।''

ଶରାହତ ସୈନିକ ପରି ଗର୍ଜି ଉଠିଲେ ଭୀଷ୍ମ ।

''କୁରୁପାଣ୍ଡବଙ୍କର ପାରିବାରିକ ସମସ୍ୟା ଭିତରକୁ ପ୍ରବେଶ କରିବା ବୋଧହୁଏ ରାଧେୟଙ୍କର ଅଧିକାର ବହିର୍ଭୂତ ଅଟେ । ସେମାନଙ୍କର ସମସ୍ୟା ସେମାନେ ବୁଝିବାକୁ ଅସମର୍ଥ କିମ୍ବା ଅଯୋଗ୍ୟ ନୁହଁନ୍ତି । ଏ ଶାନ୍ତି ପ୍ରସ୍ତାବ ଉପରେ ଯଦି କିଛି କହିବାରଥାଏ, ତେବେ କୁରୁରାଜ ଧୃତରାଷ୍ଟ୍ର ହିଁ କେବଳ କହିବେ । ଅନଧିକାର ଭାବରେ କର୍ଣ୍ଣଙ୍କର ଶୀର ପୀଡ଼ାର ଆବଶ୍ୟକତା ନାହିଁ । ଜ୍ୟୋତିର୍ବିଜ୍ଞାନ ବିଷୟରେ ତାଙ୍କର ଧାରଣା ଅତି ଅସ୍ପଷ୍ଟ । ଅର୍ଜୁନଙ୍କ ଗାଣ୍ଡୀବ ଧନୁର ଟଙ୍କାର, ଅଜ୍ଞାତ ବାସ ସମୟ ଅତିକ୍ରମ କରିବାପରେ ଶୁଣାଯାଇଥିଲା । ଚୁକ୍ତିର ଖିଲାପ ହୋଇନି କିମ୍ବା ପାଣ୍ଡବମାନେ ବନକୁ ଫେରିଯିବାର ପ୍ରଶ୍ନ ଉଠୁନି । ପ୍ରଜାମାନଙ୍କୁ ଶାନ୍ତି ସୁଖରେ ପାଳନ କରିବାପାଇଁ ଶାନ୍ତି ପ୍ରସ୍ତାବଟିକୁ ଗ୍ରହଣ କରିନେବା ଉଚିତ । ଏଥିରେ ଉଭୟ ପକ୍ଷର ମଙ୍ଗଳ ନିହିତ ଅଛି । ମୋର ଅନୁରୋଧ, କୁରୁଶ୍ରେଷ୍ଠ ଧୃତରାଷ୍ଟ୍ର, ଏହା ହୃଦୟଙ୍ଗମ କରିବେ ।

ଧୃତରାଷ୍ଟ୍ର କିଛି ସମୟ ନିରବ ରହିବାପରେ, ଗମ୍ଭୀର କଣ୍ଠରେ କହିଲେ, ''ହେ ବ୍ରାହ୍ମଣ ଶ୍ରେଷ୍ଠ ! ପାଣ୍ଡବମାନଙ୍କୁ ମୋର ଶୁଭେଚ୍ଛା ଜଣାଇ ଦେବେ । ଏ ବିଷୟରେ ପରାମର୍ଶ ପାଇଁ ମୁଁ ନିକଟରେ ଦୂତ ପଠାଇବି । ରାଜା ଦ୍ରୁପଦ ଓ ରାଜା ବିରାଟଙ୍କୁ ମୋର ସମ୍ମାନ ଜଣାଇ ଦେବେ ।

# ।। ହେ ପ୍ରଭୁ ! କେବଳ ତୁମକୁ ଚାହେଁ ।।

ଯୁଦ୍ଧ ଯେ ଅନିବାର୍ଯ୍ୟ ଏକଥା କୁରୁ ପାଣ୍ଡବ ଉଭୟେ ଜାଣିଥିଲେ । ରାଜା ମହାରାଜାମାନଙ୍କର ସମର୍ଥନ ଲାଭ କରିବା ପାଇଁ ଉଭୟ ଶିବିରରେ ଚାଲିଥାଏ ଅବ୍ୟାହତ ଉଦ୍ୟମ । ଗୋଟିଏ ପକ୍ଷ ଲାଗିଛି ପରାକାଷ୍ଠାର ପ୍ରତିଷ୍ଠାପାଇଁ, ଅନ୍ୟ ପକ୍ଷ ପ୍ରତାରଣାର ପ୍ରତିଶୋଧ ପାଇଁ ।

ଦୁର୍ଯ୍ୟୋଧନ ବେଗଗାମୀ ରଥରେ ଚଢ଼ି, ଦ୍ୱାରକା ପୁରକୁ ଗଲେ । ପାଣ୍ଡବମାନେ ପହଞ୍ଚିବା ପୂର୍ବରୁ ସେ ଶ୍ରୀକୃଷ୍ଣଙ୍କର ସମର୍ଥନ ଲାଭକରି ସାରିଥିବେ । ଏହାହିଁ ହେବ ତାଙ୍କ ପାଇଁ ଏକ ବିରାଟ ବିଜୟ ।

ଦ୍ୱାରକାରେ ପହଞ୍ଚିଲା ବେଳକୁ ଶ୍ରୀକୃଷ୍ଣ ଥିଲେ ନିଦ୍ରାମଗ୍ନ । ସେ ତାଙ୍କର ଶୟନ କକ୍ଷକୁ ଯାଇ ମୁଣ୍ଡ ଉପରେ ବସିଲେ ଏକ ରାଜାସନରେ । ନୟନରେ ଦୃପ୍ତିର ଚାହାଣି । ଅନ୍ତରରେ ତୃପ୍ତିର ଉଲ୍ଲାସ ।

ଆଶ୍ଚର୍ଯ୍ୟ କଥା, କାକ ତାଳିକ ନ୍ୟାୟରେ ଠିକ୍ ସେତିକିବେଳେ ଯାଇ ପହଞ୍ଚିଲେ ଅର୍ଜୁନ । ଦୁର୍ଯ୍ୟୋଧନ ତାଙ୍କୁ ଦେଖି ନଦେଖିଲା ପରି ଅଭିନୟ କଲେ । ନିଦ୍ରିତ କୃଷ୍ଣଙ୍କ ପାଦତଳେ ଯୋଡ଼ହସ୍ତରେ ଛିଡ଼ା ହେଲେ ଅର୍ଜୁନ । ନୟନରେ କୃତଜ୍ଞତାର ଚାହାଣି, ଅନ୍ତରରେ ଭକ୍ତିର ଉଭରଣ ।

କିଛିସମୟ ପରେ ଶ୍ରୀକୃଷ୍ଣଙ୍କର ନିଦ୍ରାଭଙ୍ଗ ହେଲା । ଦୃଷ୍ଟି ପଡ଼ିଲା ପ୍ରଥମେ ଅର୍ଜୁନଙ୍କ ଉପରେ । ବ୍ୟସ୍ତ ହୋଇ କହିଲେ, ''ପାର୍ଥ ! କେତେବେଳୁ ଆସିଲଣି ! ମୋତେ ଉଠାଇ ନ ଦେଇ ଛିଡ଼ା ହୋଇଛ ! କି ଅଜବ ମଣିଷ !''

ସ୍ୱରରେ ମଧୁରତାର ପ୍ରଲେପ ଦେଇ ପୁଣି ପଚାରିଲେ, ''ସବୁ କୁଶଳତ । ଧର୍ମରାଜା ଯୁଧିଷ୍ଠିର, ମହାବଳ ବୃକୋଦର, ଅନୁଜ ନକୁଳ ଆଉ ସହଦେବ ଭଲ ଅଛନ୍ତିତ !''

ଅର୍ଜୁନ ନମ୍ରନମିତ ନୟନରେ ସ୍ମିତ ରେଖାଟିଏ ଟାଣି କହିଲେ, ''ହଁ, ସବୁ କୁଶଳ । ହଠାତ୍ ଶ୍ରୀକୃଷ୍ଣଙ୍କର ଦୃଷ୍ଟି ପଥ ବଦଳି ଗଲା । ମୁଣ୍ଡ ଉପରେ ଦୁର୍ଯ୍ୟୋଧନଙ୍କୁ ଦେଖି କହିଲେ, ''ହେ କୁରୁରାଜ ! ତୁମେ କେତେ ବେଳୁ ? ମୁଁ ଶୋଇପଡ଼ି ସମସ୍ତଙ୍କୁ ଅଟକାଇ ଦେଇଛି । କେହି ବି ଉଠାଇ ଦେଲେନି ।''

''ହେ ଦ୍ୱାରକା ପତି ! ମୁଁ ତ ପ୍ରଥମେ ଆସିଛି । ଗୋଟିଏ କାରଣ ନେଇ ଆମେ ଉଭୟେ ଆସିଛୁ । ଆପଣତ ଜାଣନ୍ତି, ନିକଟ ଭବିଷ୍ୟତରେ ଯୁଦ୍ଧ ନିଶ୍ଚୟ ହେବ । ସମସ୍ୟାର ସମାଧାନ ପାଇଁ ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ଫଳପ୍ରଦ ପନ୍ଥା ନାହିଁ । ତେବେ ଏ ଯୁଦ୍ଧରେ ମୁଁ ଆପଣଙ୍କର ପୂର୍ଣ୍ଣ ସମର୍ଥନ ଓ ସହଯୋଗ ଚାହେଁ । ବୋଧହୁଏ ଆପଣ ମୋତେ ଏଥିରୁ ବଞ୍ଚିତ କରିବେ ନାହିଁ ।''

ଶ୍ରୀକୃଷ୍ଣ ଗମ୍ଭୀର ହୋଇ କହିଲେ, ''ଯୁଦ୍ଧ କେବେ କୌଣସି ସମସ୍ୟାର ସମାଧାନ କରେନାହିଁ । ଅତୀତରେ କରିନି କିମ୍ବା ବର୍ତ୍ତମାନ କରିବ ନାହିଁ । ମୁଁ ସର୍ବଦା ଶାନ୍ତିର ଉପାସକ । ଶାନ୍ତି ହିଁ ମୋର କାମନା, ତେବେ ଯୁଦ୍ଧ ପାଇଁ ସମର୍ଥନ ଦେବି କିପରି ? ତଥାପି ଯଦି ଯୁଦ୍ଧ ହୁଏ ତେବେ ଶାନ୍ତି ପ୍ରତିଷ୍ଠା ପାଇଁ ସହଯୋଗ ଦେବି ।''

''ହେ ଦ୍ୱାରକା ନାଥ ! ମୁଁ ତାହାହିଁ ଚାହେଁ । ସହଯୋଗ ମାନେଇ ସମର୍ଥନ । ଯୁଦ୍ଧର ଭୟାବହତା କଥା ମୁଁ ଜାଣେ, ତଥାପି ମଣିଷର ସ୍ଥିତିପାଇଁ ଯୁଦ୍ଧ ଆବଶ୍ୟକ । ଯୁଦ୍ଧ ଯେତିକି ଭୟଙ୍କର ସେତିକି ଶୁଭଙ୍କର । ସମତୁଲତା ରକ୍ଷାକରିବା ପାଇଁ ଏହାହିଁ ଏକମାତ୍ର ପନ୍ଥା । ଯେଉଁ ଅଧିକାର ଓ ନ୍ୟାୟରୁ ଆମେ ବଞ୍ଚିତ ହୋଇଛୁ ତାରି ପ୍ରତିଷ୍ଠା ପାଇଁ ମୁଁ ଯୁଦ୍ଧ ଚାହେଁ । ପାଣ୍ଡବମାନେ ଆପଣଙ୍କର ଯେତିକି ନିକଟତର ଆମେ ମଧ୍ୟ ସେତିକି

ନିକଟତର । ମୁଁ ପ୍ରଥମେ ଆସିଛି ଆପଣଙ୍କର ସାହାଯ୍ୟ ଲୋଡ଼ିବାପାଇଁ ମୋତେ ପ୍ରତିଶ୍ରୁତି ଦିଅନ୍ତୁ ।''

''ତେବେ ମୋର ତ ପ୍ରଥମେ ଦୃଷ୍ଟି ଆକର୍ଷଣ କରିଛନ୍ତି ଅର୍ଜୁନ । ନୀତି ଦୃଷ୍ଟିରୁ କନିଷ୍ଠର ଯାଚନା ପ୍ରଥମେ ପୂରଣ କରାଯାଏ । ତଥାପି ମୁଁ ଉଭୟଙ୍କୁ ସାହାଯ୍ୟ କରିବି । ଗୋଟିଏ ପକ୍ଷରେ ମୁଁ ଏକାକି ନିରସ୍ତ୍ର ହୋଇ ସହଯୋଗ କରିବି । ଉପଦେଶ, ପ୍ରେରଣା, ପରାମର୍ଶ କେବଳ ଦେଇପାରିବି । ଏ ଯୁଦ୍ଧରେ ଅସ୍ତ୍ର ସ୍ପର୍ଶ କରିବି ନାହିଁ । ଅନ୍ୟପକ୍ଷରେ ମୋର ଦଶ ହଜାର ଦୁର୍ଦ୍ଧର୍ଷ ନାରାୟଣୀ ସେନା ଯୁଦ୍ଧରେ ଯୋଗ ଦେବେ । ଅର୍ଜୁନ କାହାକୁ ଚାହାନ୍ତି ପ୍ରଥମେ କହନ୍ତୁ । ଅସ୍ତ୍ରହୀନ କୃଷ୍ଣ, ନା ସଶସ୍ତ୍ର ବାହିନୀ ନାରାୟଣୀ ସେନା ।''

ନିରସ୍ତ୍ର ହେଲେ ବି ମୁଁ ପ୍ରଭୁ ଶ୍ରୀକୃଷ୍ଣଙ୍କୁ ଚାହେଁ । ତାଙ୍କର ଦିଗ୍‌ଦର୍ଶନ ଓ ଉପସ୍ଥିତି ନାରାୟଣୀ ସେନା ଅପେକ୍ଷା ମୋ ପାଇଁ ଅଧିକ ମୂଲ୍ୟବାନ । ଆପଣ ମୋର ସାରଥି ହେବେ ।'' ଦୁର୍ଯ୍ୟୋଧନ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ଯାହାହେଉ, ରକ୍ଷା ହୋଇଗଲା, ଅର୍ଜୁନ ସୈନ୍ୟବଳ ମାଗିନାହାନ୍ତି । ନିରସ୍ତ୍ର ଶ୍ରୀକୃଷ୍ଣ କ'ଣ ବା କରି ପାରିବେ ? ତାପରେ ସେ ହସି ହସି କହିଲେ, ''ଠିକ୍ ଅଛି, ମୁଁ ଆପଣଙ୍କର ନାରାୟଣୀ ସେନା ଚାହେଁ । ତାହାହିଁ ମୋର ପ୍ରାପ୍ୟ ।'' ଏହାପରେ ଦୁର୍ଯ୍ୟୋଧନ ବିଦାୟ ନେଲେ । ଶ୍ରୀକୃଷ୍ଣ ପଚାରିଲେ, 'ପାର୍ଥ ! ତୁମର ବିଚାର ବିଭ୍ରାଟ ହୋଇନିତ । ମୋପରି ଅସ୍ତ୍ରବିହୀନ ବ୍ୟକ୍ତିକୁ ବରଣ କଲ କାହିଁକି ?''

''ହେ ସଖା ! ମୋର ବହୁଦିନର ସ୍ୱପ୍ନ, ଆପଣ ହେବେ ପାର୍ଥ ସାରଥି । ଆଜି ଏହା ସଫଳ ହୋଇଛି । ମୋର ଧାରଣା ଯୁଦ୍ଧ ସିନା ଅସ୍ତ୍ରରେ ହୁଏ, କିନ୍ତୁ ଯୁଦ୍ଧର ନକ୍ସା ପ୍ରସ୍ତୁତ ହୁଏ ମନ ମଧ୍ୟରେ । ସୌଭାଗ୍ୟ ବଶତଃ ମୁଁ ଆପଣଙ୍କର ମନ ଶକ୍ତିକୁ ପାଇଛି ଯାହାକି ଅସ୍ତ୍ର ଶକ୍ତିର ଆଧାର ।''

ଶ୍ରୀକୃଷ୍ଣ ହସି ହସି କହିଲେ, ''ତୁମେ ବିଜୟୀ ହୁଅ । ଧର୍ମର ଜୟ ହେଉ ।''

ତା'ପରେ ଦୁର୍ଯ୍ୟୋଧନ ଓ ଅର୍ଜୁନ ଯାଇ ପହଞ୍ଚିଲେ ବଳରାମଙ୍କ ପାଖରେ । ନିଜର ଅଭିପ୍ରାୟ ପ୍ରଥମେ ପ୍ରକାଶକଲେ ଦୁର୍ଯ୍ୟୋଧନ । ବଳରାମ ସବୁ ଶୁଣିବାପରେ କହିଲେ, ''ହେ କୁରୁପତି ! ତୁମର ଅଧିକାରକୁ ମୁଁ ଅସ୍ୱୀକାର କରିନାହିଁ । ଉତ୍ତରାଙ୍କ ବିବାହ ସଭାରେ ତୁମ ସପକ୍ଷରେ ମୁଁ ଯାହା କହିବାର କହିଛି । ବର୍ତ୍ତମାନ ମୁଁ ନିରପେକ୍ଷ ରହିବି । କୁରୁ ପାଣ୍ଡବ କୌଣସି ପକ୍ଷ ସମର୍ଥନ କରି ପାରିବି ନାହିଁ । ମୋ ଆଖିରେ ଉଭୟେ ସମାନ । ଶାନ୍ତି ଆଉ ସହାବସ୍ଥାନ ମୋର ବ୍ୟକ୍ତିଗତ ମତ, ଯୁଦ୍ଧ ନୁହେଁ । ତଥାପି ସମୟ ଅଛି ବିଚାର କରନ୍ତୁ ।'' ତାପରେ ଉଭୟେ ଫେରି ଆସିଲେ ।

## ।। ଲକ୍ଷ୍ୟପଥ ବଦଳି ଗଲା ।।

ମଦ୍ର ଦେଶର ଅଧିଶ୍ୱର ଶଲ୍ୟ, ମାଦ୍ରୀଙ୍କର ଭାଇ ଓ ନକୁଳ ସହଦେବଙ୍କର ମାମୁଁ । ପାଣ୍ଡବମାନଙ୍କ ଦୂତଠାରୁ ପତ୍ର ପାଇ ସେ ତାଙ୍କର ବିରାଟ ସୈନ୍ୟବଳ ନେଇ ଯାତ୍ରା ଆରମ୍ଭ କଲେ । ସେତେବେଳେ ପାଣ୍ଡବମାନେ ଉପପ୍ଲବ୍ୟ ନଗରୀରେ ଯୁଦ୍ଧ ଆୟୋଜନରେ ବ୍ୟସ୍ତ ଥାନ୍ତି ।

ସେ ସମୟରେ ଶଲ୍ୟ ଥିଲେ, ଅତ୍ୟନ୍ତ ପ୍ରତାପଶାଳୀ ରାଜାମାନଙ୍କ ମଧ୍ୟରେ ଅନ୍ୟତମ । ସେ ଥିଲେ ମହାପରାକ୍ରମୀ । ତାଙ୍କୁ ଅକ୍ଷୌହିଣୀ-ପତି ବୋଲି କୁହାଯାଉଥିଲା । ଏହା ହେଉଛି ଚତୁରଙ୍ଗ ସେନାର ଏକ ବିଭାଗ । ଚତୁରଙ୍ଗର ଅର୍ଥ ସୈନ୍ୟ ବଳର ଚାରି ବିଭାଗ । ଗଜାରୋହୀ, ଅଶ୍ୱାରୋହୀ, ରଥାରୋହୀ

ଓ ପଦାତିକ । ପ୍ରାୟ ଦୁଇଲକ୍ଷ କୋଡ଼ିଏ ହଜାର ସୈନ୍ୟ ଏକ ଅକ୍ଷୌହିଣୀର ଅନ୍ତର୍ଗତ । ପାଣ୍ଡବମାନଙ୍କୁ ସାହାଯ୍ୟ କରିବାପାଇଁ ସେ ଏକ ଅକ୍ଷୌହିଣୀ ସୁଦକ୍ଷ ସୈନ୍ୟଙ୍କୁ ନେଇ ଯାତ୍ରା ଆରମ୍ଭ କରିଥିଲେ । ସୁସଜ୍ଜିତ ସୈନ୍ୟ ଶ୍ରେଣୀର ଦୈର୍ଘ୍ୟ ଥିଲା ଏକ ଯୋଜନରୁ ଅଧିକ । ମେଦିନୀ କମ୍ପି ଉଠୁଥିଲା ।

ସୈନ୍ୟମାନେ ରଣବେଶରେ ମଣ୍ଡିତ ଥିଲେ । ରଥ, ଧ୍ୱଜ, ବାହନ, କୋଦଣ୍ଡ ପ୍ରଭୃତିର ବିଚିତ୍ର ବର୍ଣ୍ଣ ବିଭବ ସବୁରି ମନରେ ଆନନ୍ଦ ଦେଉଥିଲା । ଯାତ୍ରା ସମୟରେ ସୈନ୍ୟମାନେ ପଥ ମଧ୍ୟରେ ବିଶ୍ରାମ ନେଉଥିଲେ । ମଦ୍ରରାଜ ସୈନ୍ୟବଳ ନେଇ ଆସୁଥିବାର ସମ୍ବାଦ ଦୁର୍ଯ୍ୟୋଧନ ଶୁଣି ଏକ କୂଟନୈତିକ କୌଶଳ ପ୍ରୟୋଗ କଲେ । ପଥ ମଧ୍ୟରେ ବିଶ୍ରାମ ତଥା ଚିତ୍ତ ବିନୋଦନ ପାଇ ରତ୍ନ ଖଚିତ ସୁସଜ୍ଜିତ ସଭାଗୃହ, ସନ୍ତରଣ ପୋଖରୀ ପ୍ରମୋଦ ଉଦ୍ୟାନ ପ୍ରଭୃତି ନିର୍ମାଣ କରାଗଲା । ସୁମିଷ୍ଟ ଖାଦ୍ୟ ପେୟର ବ୍ୟବସ୍ଥା ହେଲା ।

ଶଲ୍ୟ ଏବଂ ତାଙ୍କର ସୈନ୍ୟମାନେ ଅନ୍ତରଙ୍ଗ ଆତିଥ୍ୟ ଭିତରେ ବିହ୍ୱଳ ହୋଇ ଉଠିଲେ । ଦୁର୍ଯ୍ୟୋଧନଙ୍କ ମନ୍ତ୍ରୀ ଓ ସେନାପତିମାନେ ଶଲ୍ୟରାଜାଙ୍କ ସେବା ପୂଜାରେ ଲାଗିପଡ଼ିଥିଲେ । ସୈନ୍ୟମାନେ ପଥକ୍ଳାନ୍ତି ଅନୁଭବ କଲେନାହିଁ ବରଂ ଏ ଯାତ୍ରା ଥିଲା ଅତ୍ୟନ୍ତ ଆମୋଦ ଦାୟକ । ଶଲ୍ୟଙ୍କର ଧାରଣା, ଯୁଧିଷ୍ଠିର ତାଙ୍କ ପାଇଁ ଏସବୁ ବ୍ୟବସ୍ଥା କରିଛନ୍ତି । ଏହି ଆନ୍ତରିକ ଆତିଥ୍ୟରେ ଆନନ୍ଦିତ ହୋଇ ଯୁଧିଷ୍ଠିରଙ୍କ ପ୍ରତି ତାଙ୍କ ହୃଦୟ ଆବେଗାପ୍ଲୁତ ହୋଇ ଉଠିଲା । ସେ ଅନୁଭବ କଲେ, ସତେ ଯେପରି ସେ ଅଛନ୍ତି ସ୍ୱର୍ଗର ଅମରାବତୀରେ ।

ସଭାଗୃହର ମଣ୍ଡନ କଳାରେ ବିମୁଗ୍ଧ ହୋଇ ଶିଳ୍ପୀମାନଙ୍କୁ ପୁରସ୍କୃତ କରିବାକୁ ସେ ଇଚ୍ଛା ପୋଷଣ କଲେ । ସମ୍ବାଦ ପହଞ୍ଚିଲା ଦୁର୍ଯ୍ୟୋଧନଙ୍କ ପାଖରେ । ମାମୁ ଶଲ୍ୟଙ୍କ ପ୍ରସନ୍ନତାର ସୁଯୋଗନେଇ ସେଇ ମୂଲ୍ୟବାନ ମନସ୍ତାତ୍ତ୍ୱିକ ମୁହୂର୍ତ୍ତରେ, ଦୁର୍ଯ୍ୟୋଧନ ଯାଇ ସାକ୍ଷାତ କଲେ । କହିଲେ, ''ମାମୁ ମଦ୍ରରାଜ ଆମର ଆତିଥ୍ୟ ଗ୍ରହଣ କରିଥିବାରୁ ଆମେ ଚିରକୃତଜ୍ଞ । ଆଶ୍ଚର୍ଯ୍ୟ ହୋଇଗଲେ ଶଲ୍ୟ । ସେ ପାଣ୍ଡବମାନଙ୍କ ଧାରଣାରେ କୌରବମାନଙ୍କର ଆତିଥ୍ୟ ଗ୍ରହଣ କରିଛନ୍ତି ।

ଦୁର୍ଯ୍ୟୋଧନଙ୍କର ଶ୍ରଦ୍ଧାସିକ୍ତ ନମ୍ରତା ଓ ରାଜକୀୟ ସମ୍ମାନ ଶଲ୍ୟଙ୍କ ହୃଦୟକୁ ଜୟ କରିଥିଲା । ସେ ଆନନ୍ଦରେ ଆଲିଙ୍ଗନ କରି କହିଲେ, ''ହେ କୁରୁରାଜ ! ଆପଣଙ୍କର ଆତିଥ୍ୟ ମୋତେ ଗଭୀର ଆନନ୍ଦ ଦେଇଛି । ମୁଁ ଆପଣଙ୍କୁ କିପରି ଭାବରେ ସାହାଯ୍ୟ କରିପାରିବି କହନ୍ତୁ ।''

ଗଦ୍ ଗଦ୍ ହୋଇ ଉଠିଲେ ଦୁର୍ଯ୍ୟୋଧନ ।

ସମର୍ପିତ କଣ୍ଠରେ କହିଲେ, ''ମାମୁ ! ଆପଣ ମୋର ପିତୃସମ । ଆପଣଙ୍କ ଆଖିରେ କୁରୁପାଣ୍ଡବ ସମାନ । ଆପଣଙ୍କର ସମଦୃଷ୍ଟି ଓ ଉଦାରତା ମୋତେ ଉତ୍ସାହିତ କରିଛି ଅନ୍ତରର ନିଭୃତ ଅଭିଳାଷ ପ୍ରକାଶ କରିବାପାଇଁ । ଆପଣତ ଜାଣନ୍ତି, ଶ୍ରୀକୃଷ୍ଣ ପାଣ୍ଡବ ଶିବିରରେ ଯୋଗ ଦେଇଛନ୍ତି । କୌରବ ଶିବିରରେ ସମତୁଲତାର ଅଭାବ ଦେଖା ଦେଇଛି । ମହାଭାରତ ଯୁଦ୍ଧରେ ଦୁଇପକ୍ଷର ଭାରସାମ୍ୟ ରକ୍ଷା କରିବାପାଇଁ ଆମ ପକ୍ଷରେ ଆପଣ ଯୋଗ ଦେବାର ଆବଶ୍ୟକତା ରହିଛି । ଶ୍ରୀକୃଷ୍ଣଙ୍କର ସମକକ୍ଷ, ଆପଣଙ୍କ ବ୍ୟତୀତ ଆଉ କେହି ନାହାନ୍ତି ।''

ଶଲ୍ୟଙ୍କର ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠୁଥାଏ । ଦୁର୍ଯ୍ୟୋଧନ ଉତ୍ସାହିତ ହୋଇ ପୁଣି କହିଲେ, '' ହେ ରାଜାଧିରାଜ ! ଆପଣଙ୍କ ବୀରତାର ତୁଳନା ନାହିଁ । ରଥ ଚାଳନାରେ ଆପଣ ଶ୍ରୀକୃଷ୍ଣଙ୍କ ଠାରୁ ଅଧିକ ଦକ୍ଷ । ଗଦାଯୁଦ୍ଧରେ ଭୀମ ଆପଣଙ୍କ ପାଖରେ ଶିଶୁ । ଅସ୍ତ୍ର ଚାଳନାରେ ଅର୍ଜୁନଙ୍କଠାରୁ ଆପଣ

ଯଥେଷ୍ଟ ଉଚ୍ଚରେ । ତଥାପି, ପାଣ୍ଡବ ଶିବିରରେ ଶ୍ରୀକୃଷ୍ଣ ପ୍ରଥମ ସ୍ଥାନ ଲାଭ କରିଛନ୍ତି । ତାଙ୍କ ପରେ ଆପଣ ଦ୍ୱିତୀୟ ସ୍ଥାନରେ ହୁଏତ ରହିବେ । କୌରବ ପକ୍ଷ ସମର୍ଥନ କଲେ ଆପଣ ହେବେ ପ୍ରଥମ ସ୍ଥାନର ଅଧିକାରୀ । ଆପଣ ଦୟାକରି ଆମ ପକ୍ଷରେ ଯୋଗ ଦିଅନ୍ତୁ ।''

ଶଲ୍ୟଙ୍କ ଭିତରେ ସୃଷ୍ଟି ହେଲା ଅନ୍ତର୍ଦ୍ୱନ୍ଦ୍ୱ ।

ପାଣ୍ଡବମାନଙ୍କ ପ୍ରତି ତାଙ୍କର ଯେ ଅତୁଟ ସ୍ନେହ ଥିଲା ସେଥିରେ ଫାଟ ସୃଷ୍ଟି ହେଲା । ସେ ଭାବିଲେ, ପାଣ୍ଡବପକ୍ଷ ସମର୍ଥନ କଲେ ସେ ତାଙ୍କର ଅପ୍ରତିଦ୍ୱନ୍ଦ୍ୱୀର ପ୍ରତିଷ୍ଠା ରକ୍ଷାକରି ପାରିବେ ନାହିଁ । ସେଠାରେ ମାତୁଳର ମର୍ଯ୍ୟାଦା ମିଳିବ ସିନା, ବୀରତାର ସ୍ୱୀକୃତି ମିଳିବା ସମ୍ଭବ ନୁହେଁ ।

ମଣିଷ ପ୍ରକୃତି ବିଚିତ୍ର । କେତେବେଳେ ଯେ କେଉଁ ରୂପନିଏ ତାହା କୁହାଯାଇ ପାରିବ ନାହିଁ । ଆବେଗ, ବିରୋଧଭାବ, ଅନ୍ତର୍ଦ୍ୱନ୍ଦ୍ୱ ଓ ଭାବପ୍ରବଣତା ପ୍ରଭୃତିର ସମ୍ମିଳିତ ସମାହାର ହେଉଛି ମଣିଷ ପ୍ରକୃତି । ଦୁର୍ଯ୍ୟୋଧନଙ୍କର ଚାଟୁକ୍ତି ଶଲ୍ୟଙ୍କ ସିଦ୍ଧାନ୍ତକୁ ସମ୍ପୂର୍ଣ୍ଣ ଭାବରେ ଓଲଟ ପାଲଟ କରିଦେଲା । ସ୍ୱାଭିମାନର ପ୍ରତିଷ୍ଠାପାଇଁ ସେ କୌରବ ପକ୍ଷ ସମର୍ଥନ କଲେ । କହିଲେ, ''ହେ କୁରୁରାଜ ! ଆପଣଙ୍କର ଅନୁରୋଧ ମୁଁ ରକ୍ଷା କରୁଛି, ତେବେ ପାଣ୍ଡବମାନେ ବନବାସରୁ ଫେରିବା ପରେ ତାଙ୍କ ସହିତ ମୋର ସାକ୍ଷାତ ହୋଇନାହିଁ । ମୁଁ ଯାଉଛି, ସେମାନଙ୍କୁ ଟିକିଏ ଦେଖି ଫେରି ଆସିବି ।''

''ଆପଣଙ୍କ ଆଗମନର ଅପେକ୍ଷାରେ ମୁଁ ରହିଲି । ଆପଣ ମୋତେ ପ୍ରତିଶ୍ରୁତି ଦେଇସାରିଛନ୍ତି, ଏ କଥା ଯେପରି ସେଠାରେ ଭୁଲିଯିବେ ନାହିଁ । ମନେ ରଖନ୍ତୁ, ଆପଣ ମୋର ପ୍ରଧାନ ସେନାପତି ।''

ଶଲ୍ୟ ଉପପ୍ଲବ୍ୟ ନଗରକୁ ଯାଇ ପାଣ୍ଡବମାନଙ୍କ ସହିତ ସାକ୍ଷାତ୍ କଲେ । ଧର୍ମରାଜ ଯୁଧିଷ୍ଠିର ଓ ପାଣ୍ଡବ ଭାଇମାନେ ମାମୁ ଶଲ୍ୟଙ୍କର ଉପସ୍ଥିତିରେ ଆନନ୍ଦିତ ହୋଇ ଶ୍ରଦ୍ଧା ତଥା ସମ୍ମାନ ଭରା ସତ୍କାର କଲେ । ବନବାସ ଜୀବନର ଦୁଃଖଭରା କାହାଣୀ ତାଙ୍କ ପାଖରେ କହିଲେ । ନକୁଳ ସହଦେବଙ୍କ ପାଦ ମହାଆନନ୍ଦରେ ଭୂଇଁରେ ଲାଗୁନଥାଏ । କି ଉଲ୍ଲାସ !

କଥା ପ୍ରସଙ୍ଗରେ ଯୁଧିଷ୍ଠିର ତାଙ୍କର ସାହାଯ୍ୟ ଓ ସହଯୋଗ ଭିକ୍ଷାକଲେ । କହିଲେ, ''ଅସମୟରେ ଆପଣଙ୍କ ଉପସ୍ଥିତି ଆମର ମନୋବଳକୁ ଯଥେଷ୍ଟ ବଢ଼ାଇ ଦେଇଛି । ମାମୁ ଭାବରେ ପିତୃ ସମ୍ମତ ପରାମର୍ଶ,ସ୍ନେହ, ଶ୍ରଦ୍ଧା ସୁଭାଶିଷ ଆମର ଏକମାତ୍ର ପାଥେୟ । ଆପଣଙ୍କୁ ପାଇ ଆମେ ସବୁ ନିଜକୁ ବହୁ ଭାଗ୍ୟବାନ ମନେକରୁଛୁ ।''

ଶଲ୍ୟ ଅପ୍ରତିଭ କଣ୍ଠରେ କହିଲେ, ''ଧର୍ମରାଜ ! କେଉଁ ଭାଷାରେ ମୁଁ ମୋର ଭାବବ୍ୟକ୍ତ କରିବି ତାହା ଖୋଜି ପାଉନାହିଁ । ନିଜକୁ ମୁଁ ଅପରାଧୀ ବୋଲି ମନେ କରୁଛି । ଗୋଟାଏ ଭୁଲକରି ଦେଇଛି ଯାହାର ସଂଶୋଧନ ନାହିଁ । କ୍ଷମା ମାଗିନେବାପାଇଁ ମୁଁ ଏତେ ବାଟ ଧାଇଁ ଆସିଛି । ମୋତେ କ୍ଷମା ଦିଅନ୍ତୁ ।''

ପାଣ୍ଡବମାନେ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁ ରହିଥିଲେ ।

''ମୁଁ ଦୁର୍ଯ୍ୟୋଧନଙ୍କ ପାଖରେ ବଚନବଦ୍ଧ ହୋଇ ସାରିଛି, ଧର୍ମରାଜ । ପଥ ମଧ୍ୟରେ ମୁଁ ତାଙ୍କ ଦ୍ୱାରା ଏପରି ସମ୍ବର୍ଦ୍ଧିତ ଓ ସମ୍ମାନିତ ହୋଇଛି ଯାହା ଜୀବନର ଏକ ଦୁର୍ଲଭ ଅନୁଭୂତି । ଶେଷ ପର୍ଯ୍ୟନ୍ତ ମୋର ଧାରଣା ଥିଲା ଏ ପ୍ରକାର ଆୟୋଜନ ଧର୍ମରାଜ କରିଛନ୍ତି । ଗଭୀର ପରିତୃପ୍ତି ମଧ୍ୟରେ ବ୍ୟବସ୍ଥାପକ ମାନଙ୍କୁ ପୁରସ୍କୃତ କରିବାପାଇଁ ଇଚ୍ଛାପ୍ରକାଶ କଲି । ସେହି ମୋହବିଷ୍ଟ ମୁହୂର୍ତ୍ତରେ ଦୁର୍ଯ୍ୟୋଧନ ଏସବୁ ବ୍ୟବସ୍ଥା କରିଛନ୍ତି ଜାଣି ବିରୁଦ୍ଧ ମତ ପୋଷଣ କରି ପାରିଲି ନାହିଁ । ବୋଧହୁଏ ଏହାହିଁ ଭବିତବ୍ୟ । ଏହାହିଁ ବିଧି ନିର୍ଦ୍ଦେଶ । ମୋର ଲକ୍ଷ୍ୟ ପଥ ବଦଳିଗଲା ।''

ଯୁଧିଷ୍ଠିର ନିଜର ଗଭୀର ଆତ୍ମଗ୍ଲାନି ପ୍ରକାଶ କରି ଗମ୍ଭୀର କଣ୍ଠରେ କହିଲେ, '' ହେ ରାଜେନ୍ଦ୍ର ! ଏଥିରେ ଆପଣଙ୍କର ଦୋଷ କିଛିନାହିଁ । ଏପ୍ରକାର ସମ୍ବର୍ଦ୍ଧନା ଆମେ ମଧ୍ୟ କରି ପାରିଥାନ୍ତୁ । କରିବା ଉଚିତ ମଧ୍ୟ ଥିଲା । ମର୍ଯ୍ୟାଦାର ବ୍ୟତିକ୍ରମ କରି ପରୋକ୍ଷରେ ଆମେ ଦଣ୍ଡିତ ହେଲୁ । ଆପଣଙ୍କର ସ୍ନେହ ଶ୍ରଦ୍ଧା ଓ ଉଦାରତାର ଲୁଣ୍ଠନ କରିଛନ୍ତି ଦୁର୍ଯ୍ୟୋଧନ । ଆମର ବୋକାମି ହେଲା ଦୁର୍ଯ୍ୟୋଧନଙ୍କ ପାଇଁ ସୁଯୋଗର ସମ୍ଭାର । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଏ ଦଣ୍ଡ ଆମ ପାଇଁ ଯଥାର୍ଥ ।''

ଶଲ୍ୟ ଦୃଢ଼ କଣ୍ଠରେ କହିଲେ, ''ଧର୍ମରାଜ ! ମୁଁ ଭଲରୂପେ ଜାଣେ, ଧର୍ମ ଆପଣଙ୍କ ପକ୍ଷରେ ଅଛନ୍ତି । ତେଣୁ ବିଜୟ ଆପଣଙ୍କର । ମୁଁ ହୁଏତ କୌରବ ପକ୍ଷରେ ଯୁଦ୍ଧ କରିପାରେ କିନ୍ତୁ ମୁଁ ପାଣ୍ଡବ ମାନଙ୍କର ସଫଳତା କାମନାକରେ ଏହା ମୋର ଅନ୍ତରର ନିଭୃତ ଇଚ୍ଛା । ଘଟଣା ପ୍ରବାହରେ ଏକ ପଳିତ ପତ୍ରପରି ମୁଁ ଭାସିଯାଇଛି ଇଚ୍ଛାର ଠିକ୍ ବିପରୀତ ଦିଗରେ । ମୁଁ ଭଲରୂପେ ଜାଣେ, ଧୃତରାଷ୍ଟ୍ର ସିନା ତାଙ୍କର ଚର୍ମଚକ୍ଷୁ ହରାଇଛନ୍ତି କିନ୍ତୁ ଦୁର୍ଯ୍ୟୋଧନ ହରାଇଛନ୍ତି ତାଙ୍କର ଜ୍ଞାନ ଓ ବିବେକ ଚକ୍ଷୁ । ଅବିବେକୀ କେବେହେଲେ ସଫଳତା ଲାଭ କରିପାରେନାହିଁ । ମୁଁ ତୁମମାନଙ୍କୁ ଆଶୀର୍ବାଦ ତଥା ଉତ୍ସାହିତ କରିବାପାଇଁ ଚାଲିଆସିଲି ।''

ଯୁଧିଷ୍ଠିର କହିଲେ, '' ମାମୁ ! ଆପଣଙ୍କର ଅଜସ୍ର ସେନାବଳ ଆମେ ନପାଇଲେ ମଧ୍ୟ ଅମିତ ଶୁଭେଚ୍ଛା ଓ ଆଶୀର୍ବାଦ ଲାଭ କରିଛୁ । ଏଥିପାଇଁ ଆମେ ଧନ୍ୟ । କୌରବମାନଙ୍କ ପକ୍ଷ ସମର୍ଥନରୁ ଓହରି ଆସିବାକୁ ମୁଁ କେବେହେଲେ କହିପାରିବି ନାହିଁ । ସେମାନେ ଆପଣଙ୍କର ସହଯୋଗ ଏକାନ୍ତ ଭାବରେ ଚାହିଁ ଥିଲେ ଏବଂ ପାଇଛନ୍ତି । ମୋର ପ୍ରତିବାଦ କରିବାର କିଛି ନାହିଁ । ସେ ମଧ୍ୟ ଆମପରି ଆପଣଙ୍କର ପ୍ରିୟତର । ତଥାପି ମୋର ଏକ ନିଭୃତ ଯାଚନା ଆପଣ ପୂରଣ କରିବେ ବୋଲି ମୁଁ ଆଶାକରୁଛି ।

ତୃପ୍ତିର ଆଲେଖ୍ୟ ଟାଣି ଶଲ୍ୟ, ଧର୍ମରାଜଙ୍କ ମୁହଁକୁ ଚାହିଁଲେ । କୁହନ୍ତୁ ଧର୍ମରାଜ ! ମୁଁ ନିଶ୍ଚୟ କଥାରକ୍ଷା କରିବି ।''

ଯୁଧିଷ୍ଠିର କହିଲେ, '' ସମୟ ଆସିବ, ଯେତେବେଳେ କର୍ଣ୍ଣ ଓ ଅର୍ଜ୍ଜୁନଙ୍କ ମଧ୍ୟରେ ନିଶ୍ଚୟ ଯୁଦ୍ଧ ହେବ । ସେତେବେଳେ ଆପଣଙ୍କୁ କର୍ଣ୍ଣଙ୍କ ରଥର ସାରଥି ହେବାପାଇଁ ଦୁର୍ଯ୍ୟୋଧନ ଅନୁରୋଧ କରିବେ । ପାର୍ଥ ସାରଥି କୃଷ୍ଣଙ୍କ ସହିତ ଭାରସାମ୍ୟ ରକ୍ଷାପାଇଁ, ନିଶ୍ଚୟ ଆପଣଙ୍କୁ କର୍ଣ୍ଣଙ୍କର ସାରଥିତ୍ୱ ଗ୍ରହଣ କରିବାକୁ ହେବ । ମୋର ଅନୁରୋଧ, ଆପଣଙ୍କ ସହାୟତାରେ କର୍ଣ୍ଣ ଯେପରି ଅର୍ଜ୍ଜୁନଙ୍କୁ ମାରିବାକୁ ସମର୍ଥ ହୋଇ ପାରିବେ ନାହିଁ । ଅର୍ଜ୍ଜୁନଙ୍କ ମୃତ୍ୟୁର କାରଣ ଆପଣ ଯେପରି ନହୁଅନ୍ତି ।''

ଶଲ୍ୟ ଦୃଢ଼ ଭାବରେ କହିଲେ, ''ମୁଁ ପ୍ରତିଜ୍ଞା କରୁଛି, ମୋତେ ଯଦି କର୍ଣ୍ଣଙ୍କର ରଥ ଚାଳନା କରିବାକୁ ପଡ଼ିବ, ତାହେଲେ ମୁଁ ଅର୍ଜ୍ଜୁନଙ୍କ ନିଧନର କାରଣ ହେବିନାହିଁ ।''

''ତା'ହେଲେ, ପାଣ୍ଡବମାନଙ୍କ ବିଜୟର ଆପଣ ହେବେ ସଫଳ ସୂତ୍ରଧର । ଆମେ ନିଶ୍ଚୟ ବିଜୟ ଲାଭ କରିବୁ । ଆପଣଙ୍କର ଆଶୀର୍ବାଦ ନିଶ୍ଚୟ ଫଳବତୀ ହେବ । ଆମେତ ଦୁଃଖ ସାଗରରେ ଭାସୁଛୁ । ଆପଣଙ୍କର ଏଇ ପରୋକ୍ଷସାହାଯ୍ୟ ହୁଏତ ଆମ ଭାଗ୍ୟର ନିର୍ଣ୍ଣାୟକ ହୋଇପାରେ ।

ଶଲ୍ୟ ହସି ହସି କହିଲେ, ''ଧର୍ମରାଜ ! ଆପଣ କ'ଣ ଦେବରାଜ ଇନ୍ଦ୍ରଙ୍କ ଠାରୁ ଅଧିକ ଦୁଃଖ ଭୋଗ କରିଛନ୍ତି ?

''ଦୁଃଖ ଆତ୍ମୀୟ ସଖାପରି ସମସ୍ତଙ୍କୁ ଆଲିଙ୍ଗନ କରେ । ଏହା ଅକ୍ଷରେ ଅକ୍ଷରେ ସତ୍ୟ । ତେବେ ଦୟାକରି ଦେବରାଜ ଇନ୍ଦ୍ରଙ୍କର ଦୁଃଖର କାରଣ କଣ କହିବେ କି ?''

# ।। ଇନ୍ଦ୍ର ଦେବଙ୍କ ଅପକର୍ମ ।।

''ଧର୍ମରାଜ୍ ! ଇନ୍ଦ୍ରଦେବଙ୍କ ଦୁଃଖର କାହାଣୀ ଅବର୍ଣ୍ଣନୀୟ । ଅତି ପ୍ରାଚୀନ କାଳର କଥା, ତ୍ୱଷ୍ଟା ନାମକ ଜଣେ ପ୍ରଜାପତି ଥିଲେ । ତାଙ୍କର ପୁତ୍ରଙ୍କ ନାମ ବିଶ୍ୱରୂପ । ତାଙ୍କର ତିନୋଟି ମୁଖ । ପ୍ରଥମ ମୁଖରେ ସେ ବେଦ ଅଧ୍ୟୟନ କରନ୍ତି । ଦ୍ୱିତୀୟ ମୁଖରେ ସୁରାପାନ କରନ୍ତି । ତୃତୀୟ ମୁଖରେ ସେ ତପସ୍ୟା କରନ୍ତି । ତାଙ୍କର ତପସ୍ୟା ଥିଲା କଠୋର ଓ ଭୟଙ୍କର । ଇନ୍ଦ୍ର, ନିଜର ଇନ୍ଦ୍ରପଦ ହରାଇବା ଆଶଙ୍କାରେ ଜର୍ଜରିତ ହେଲେ ।

ସ୍ୱର୍ଗର ଅପ୍‌ସରାମାନଙ୍କୁ ଡାକିଲେ ଇନ୍ଦ୍ର ଦେବ । ନିଜର ନିଭୃତ ମନକଥା ପ୍ରକାଶ କଲେ । ବିଶ୍ୱରୂପଙ୍କର ତପସ୍ୟା ଭଙ୍ଗ କରିବାକୁ ହେବ ଶୃଙ୍ଗାର ସଞ୍ଚାର ମାଧ୍ୟମରେ । କମନୀୟ ଯୌବନର ଆହୁତି ଢ଼ାଳି ତପସ୍ୱୀଙ୍କ କାମାଗ୍ନିକୁ ପ୍ରଜ୍ୱଳିତ କରିବାକୁ ହେବ । କିଏ ପାରିବ ?''

ଅତୀତରେ ଅତ୍ୟନ୍ତ କଠୋର ତପସ୍ୱୀମାନଙ୍କର ଅଟଳମନକୁ ଯେଉଁ ଅନିନ୍ଦ୍ୟ ସ୍ୱର୍ଗ ସୁନ୍ଦରୀଗଣ କୁସୁମବାଣରେ କୁସୁମିତ କରିପାରିଛନ୍ତି, ସେମାନେ ଅସମର୍ଥ ହେବେ, ଏ ଆଶଙ୍କା ମନରୁ ଦୂର କରନ୍ତୁ ଦେବରାଜ ! ଆଶୀର୍ବାଦ ଦିଅନ୍ତୁ ଆମେ ସଫଳତା ଲାଭ କରୁ ।''

ବିଦାୟ ନେଲେ ଦେବନର୍ତ୍ତକୀଗଣ ।

ଇନ୍ଦ୍ରଦେବ ଆଶ୍ୱସ୍ତିର ନିଶ୍ୱାସ ମାରିଲେ । ଭାବିଲେ, ସହଜରେ ସମସ୍ୟା ସମାଧାନ ହୋଇଯିବ ।

କିନ୍ତୁ ଏ କଣ ?

ଫେରି ଆସିଲେ ଯେ ଅପ୍‌ସରୀ ଗଣ ! ସବୁରି ଭିତରେ ନୈରାଶ୍ୟର ଘନ ଅନ୍ଧକାର । ମୁଖମଣ୍ଡଳରେ ବିଫଳତାର କୁଟିଳ ରେଖା ।

''ଆମ୍ଭମାନଙ୍କର ବହୁ ପ୍ରୟାସ ଓ ପ୍ରଯତ୍ନ ନିଷ୍ଫଳ ହେଲା ଦେବରାଜ ! ତପସିଦ୍ଧ ଯତି ମତି ଟାଳି ପାରିଲୁନାହିଁ । ବିଧିର ନିଷ୍ଠୁର ପରିହାସ ଭୋଗ କରିବାକୁ ହେଲା । ମଦନର ସାର୍ବଭୌମତ୍ୱ ପ୍ରତି ଏହା ଏକ ନିର୍ମମ ଆହ୍ୱାନ ।''

ଇନ୍ଦ୍ରଦେବଙ୍କର ମୁଖମଣ୍ଡଳ ଗମ୍ଭୀର ହୋଇ ଉଠିଲା । ତେବେ ଇନ୍ଦ୍ରପଦ କଣ ତାଙ୍କ ହାତରୁ ଚାଲିଯିବ ! ଏଥିପାଇଁ କ'ଣ ପ୍ରତିକାରର ବ୍ୟବସ୍ଥା କିଛି ନାହିଁ ! ନା....ସେ କଠୋର ହେବେ । ଯାହା ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ ସେଥିପାଇଁ ବିମୁଖ ହେବେ ନାହିଁ ।

ସେ କ୍ରୋଧାନ୍ଧ ହୋଇ ବଜ୍ରପାତ କଲେ । ବଜ୍ରାଘାତରେ ବିଦୀର୍ଣ୍ଣ ହେଲେ ବିଶ୍ୱରୂପ । ପ୍ରଜାପତି ତ୍ୱଷ୍ଟା ପୁତ୍ର ମୃତ୍ୟୁର ଦାରୁଣ ସମ୍ବାଦ ପାଇ କ୍ରୋଧରେ ଜର୍ଜରିତ ହେଲେ । ନିରପରାଧ ତପଶ୍ଚାରୀ ସନ୍ତାନର ମୃତ୍ୟୁପାଇଁ ଯେଉଁ ଦର୍ପାନ୍ଧ ଇନ୍ଦ୍ର ଦାୟୀ, ଆଉ ଏକ ପୁତ୍ରସନ୍ତାନ ତପୋବଳରେ ସେ ଜନ୍ମଦେଇ ତାର ପ୍ରତିଶୋଧ ନେବେ ।

ପ୍ରଜ୍ୱଳିତ ହୋମାଗ୍ନିରେ ଆହୁତି ଦେଲେ । ଯଜ୍ଞକୁଣ୍ଡରୁ ଏକ ସନ୍ତାନ ଜନ୍ମଲାଭ କଲା । ତାର ନାମ ହେଲା ବୃତ୍ର । ବୃତ୍ରାସୁର ଅଗ୍ନିପରି ଉଦ୍ଦୀପିତ ହୋଇ ଉଠିଲେ । ପିତାଙ୍କର ଆଦେଶ, ସେ ଦେବରାଜ ଇନ୍ଦ୍ରଙ୍କୁ ସଂହାର କରିବେ ।''

ଯୁଧିଷ୍ଠିର ବିସ୍ମିତ ହୋଇ ଚାହିଁ ଥାନ୍ତି ମାମୁ ଶଲ୍ୟଙ୍କ ମୁଖକୁ । ମଦ୍ର ଅଧିଶ୍ୱର ଶଲ୍ୟ ଗମ୍ଭୀର ହୋଇ କହିଚାଲିଥାନ୍ତି ।

''ଇନ୍ଦ୍ର ଓ ବୃତ୍ରାସୁର ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା, ନାହିଁ ନଥିବା ଯୁଦ୍ଧ । କେହି କାହାରିକୁ ଊଣା ନୁହନ୍ତି । କିନ୍ତୁ କିଛି ସମୟ ମଧ୍ୟରେ ବୃତ୍ରାସୁର ଇନ୍ଦ୍ରଦେବଙ୍କୁ ଗିଳିଦେଲା । ଦେବତାମାନେ ଭୟରେ ଅସ୍ଥିର ହୋଇ ଉଠିଲେ । ବୃତ୍ରାସୁର ଦେବାଧିପତି ଇନ୍ଦ୍ରଙ୍କୁ ଗର୍ଭସ୍ଥ କରି ଦେଇଛି । ସ୍ୱର୍ଗ ରାଜ୍ୟରେ ଚହଳ ପଡ଼ିଗଲା । ଦେବତାମାନେ ଇନ୍ଦ୍ରଙ୍କୁ ରକ୍ଷା କରିବାକୁ ଜୃମ୍ଭା ସୃଷ୍ଟିକଲେ । ଜୃମ୍ଭାର ଅର୍ଥ, 'ହାଇ' । ଏହା ବୃତ୍ରାସୁର ପାଖରେ ପ୍ରଥମେ ପ୍ରୟୋଗ କରାଗଲା । ଏହାର ପ୍ରଭାବରେ ବୃତ୍ରାସୁର ହାଇମାରିଲା । ପାଟି ଆଁ କରିବାରୁ ନିର୍ଗତ ଉର୍ଦ୍ଧ୍ୱ ବାୟୁରେ ଇନ୍ଦ୍ର ଦେବ ବାହାରକୁ ବାହାରି ଆସିଲେ । ଦେବତାମାନଙ୍କର ଆନନ୍ଦ ଦେଖେ କିଏ ।

ପୁଣି ଯୁଦ୍ଧ ଚାଲିଲା । ଅବିରାମ ଯୁଦ୍ଧ । ବୃତ୍ରାସୁର ଆକ୍ରମଣରେ ଇନ୍ଦ୍ର ଓ ଦେବତାଗଣ ଅତିଷ୍ଠ ହୋଇ ଉଠିଲେ । ସମସ୍ତ ମୁନି ଋଷି ଓ ଦେବତାଗଣ ଯାଇ ଶରଣ ପଶିଲେ ବିଷ୍ଣୁଙ୍କ ପାଖରେ । କହିଲେ, ''ହେ ପ୍ରଭୁ ! ବୃତ୍ରାସୁର ସାରା ସୃଷ୍ଟିକୁଧ୍ୱଂସ କରିଦେବାକୁ ବସିଲାଣି । ଆପଣ ରକ୍ଷାକରନ୍ତୁ ।''

ବିଷ୍ଣୁ,ଦେବତା ଓ ମୁନି ଋଷିମାନଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ କହିଲେ, ''ଠିକ୍ ଅଛି, ତୁମେ ମାନେ ଯାଇ ବୃତ୍ରାସୁର ସହିତ ସନ୍ଧି କର । ତଥାପି ଯଦି ଆବଶ୍ୟକ ହେବ, ତା'ହେଲେ ମୁଁ ଇନ୍ଦ୍ରଙ୍କ ବଜ୍ରରେ ପ୍ରବେଶ କରି ତାକୁ ସଂହାର କରିବି ।''

ଦେବତା ଓ ମୁନି ଋଷିମାନେ ଆନନ୍ଦିତ ହୋଇ ଫେରି ଆସିଲେ । ଯାଇ ପହଞ୍ଚିଲେ ବୃତ୍ରାସୁର ପାଖରେ । ତାକୁ ବୁଝାଇ କହିଲେ, ''ହେ ମହାପ୍ରତାପୀ ବୃତ୍ରାସୁର ! ଆମେ ଶାନ୍ତି ପ୍ରସ୍ତାବ ନେଇ ତୁମ ପାଖକୁ ଆସିଛୁ । ଏତେଦିନ ଯୁଦ୍ଧ ଫଳରେ ସାରା ସୃଷ୍ଟି ଉଜୁଡ଼ି ଯିବାକୁ ବସିଲାଣି । ଚତୁର୍ଦ୍ଦିଗରେ ଅଶାନ୍ତି,, ଅରାଜକତା ଅଯଥା ରକ୍ତ କ୍ଷୟ ଓ ଦୁଃଖ ଯନ୍ତ୍ରଣା ଘୋଟି ରହିଛି । ପରିସ୍ଥିତିକୁ ହୃଦୟଙ୍ଗମ କର । ଯେଉଁଠାରେ ଉଭୟପକ୍ଷ ସମଯୋଦ୍ଧା, ସେଠାରେ ଜୟ ପରାଜୟର ପ୍ରଶ୍ନ ଉଠୁନାହିଁ । ଶକ୍ତିରେ ଉଭୟତ ସମାନ, କିଏ କାହାକୁ ପରାଜୟ କରିବ ! ଯୁଦ୍ଧ ବିଭୀଷିକା ଆଉ ଦୀର୍ଘଦିନ ପାଇଁ ଚାଲୁ ରହିବା ଉଚିତ୍ ନୁହେଁ । ଉଭୟଙ୍କ ମଧ୍ୟରେ ସନ୍ଧି ସ୍ଥାପନ ବର୍ତ୍ତମାନ ଅବସ୍ଥାରେ ସାରା ସୃଷ୍ଟିପାଇଁ ମଙ୍ଗଳକର ।

କିନ୍ତୁ ମୁଁ ଯେ ଜନ୍ମଲାଭ କରିଛି ଇନ୍ଦ୍ରଙ୍କୁ ସଂହାର କରିବି ବୋଲି । ଏହା କଣ ମୋର ଶ୍ରେଷ୍ଠତାର ପରିଚୟ ନୁହେଁ ! ଦୁଇ ବିପରୀତ ଶକ୍ତି ଭିତରେ ସନ୍ଧିକଣ ସମ୍ଭବ ?

''ଅସମ୍ଭବ କାହିଁକି ? ତୁମ ଭିତରେ ଅଛି ଅଗ୍ନିର ପ୍ରଚଣ୍ଡତା । ପ୍ରଜାପତି ତ୍ୱଷ୍ଟାଙ୍କର ଧର୍ମବଳ ଓ ପୁଣ୍ୟ ଶକ୍ତି । ଅଛି ମଧ୍ୟ ତୁମ ଭିତରେ ମହାନୁଭବତା । ଇନ୍ଦ୍ର, ମୁନି ଋଷି ଓ ଦେବତା ମାନଙ୍କର ଆଶ୍ରୟଦାତା । ସେ ମଧ୍ୟ ଧର୍ମ ଓ ପୁଣ୍ୟର ଆଧାର । ଧର୍ମ ସହିତ ଧର୍ମର, ପୁଣ୍ୟ ସହିତ ପୁଣ୍ୟର ମିଳନ କଣ ସମ୍ଭବ ନୁହେଁ । ତୁମେ ସେ ଅବୁଝା ମନଟାକୁ ବୁଝାଅ, ତେଣିକି ସବୁଠିକ୍ ହୋଇଯିବ ।

ମୁନି,ଋଷି ଓ ଦେବାତଙ୍କ ଅନୁରୋଧ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ ବୃତ୍ରାସୁର । ସେ କହିଲେ, ଆଚ୍ଛା ଠିକ୍ ଅଛି, ଆପଣମାନେ ମୋର ସମ୍ମାନନୀୟ । ଆପଣମାନଙ୍କୁ ସମ୍ମାନ ଦେବାପଇଁ ମୁଁ ଯୁଦ୍ଧ ବନ୍ଦ କରୁଛି । ଇନ୍ଦ୍ର ଗୋଟାଏ ଧପ୍ପାବାଜ । ତାର ଭଲପଣିଆ ଉପରେ ମୋର ବିଶ୍ୱାସ ଖୁବ କମ୍ । ଆପଣମାନେ ତେବେ ଏଇ ଆଶୀର୍ବାଦ ଦିଅନ୍ତୁ, ମୁଁ ଇନ୍ଦ୍ରଦ୍ୱାରା ଦିନରେ କିମ୍ବା ରାତିରେ, ଅସ୍ତ୍ର କିମ୍ବା ଶସ୍ତ୍ର, ପଥର କିମ୍ବା କାଠ, ଆର୍ଦ୍ର ଦ୍ରବ୍ୟ କିମ୍ବା ଶୁଷ୍କ ଦ୍ରବ୍ୟ, ଧାତୁ ଦ୍ରବ୍ୟ କିମ୍ବା ତୀର ସାହାଯ୍ୟରେ ବିନାଶ ପ୍ରାପ୍ତ ହେବିନାହିଁ ।

ଦେବତା ଓ ଋଷିମାନେ ତଥାସ୍ତୁ କହି ବିଦାୟ ନେଲେ । ଇନ୍ଦ୍ର ଏ ପ୍ରସ୍ତାବରେ ସମ୍ମତ ହେଲେ ଯୁଦ୍ଧ ବନ୍ଦ ହୋଇଗଲା । କିଛି ଦିନ ବିତିଗଲା । ଦିନେ ବୃତ୍ରାସୁର ସମୁଦ୍ରକୂଳରେ ପରିଭ୍ରମଣ କରୁଥାଏ । ଇନ୍ଦ୍ର

ତାକୁ ଦେଖିଲେ କ୍ଷଣି ପ୍ରତିଶୋଧ ପରାୟଣ ହୋଇ ଉଠିଲେ । ଭାବିଲେ, ବର୍ତ୍ତମାନ ବୃତ୍ର ନିରସ୍ତ୍ର ଓ ସମୟ ହେଉଛି ସନ୍ଧ୍ୟା, ଯାହାକି ଦିନ ନୁହେଁ କିମ୍ବା ରାତି ନୁହେ, ଶକ୍ତିଶାଳୀ ଶତ୍ରୁକୁ ସଂହାର କରିବା ଆବଶ୍ୟକ । ସେ ହାତରେ ସମୁଦ୍ର ଫେଣ ଆଣି ତାଭିତରେ ବଜ୍ରଶକ୍ତି ପ୍ରୟୋଗ କଲେ । ବିଷ୍ଣୁଙ୍କୁ ସ୍ମରଣ କରିବାରୁ ବିଷ୍ଣୁଶକ୍ତି ସେଥିରେ ପ୍ରବେଶକଲା । ସମୁଦ୍ର ଫେଣ ଅସ୍ତ୍ର ନୁହେଁ କି ଶସ୍ତ୍ର ନୁହେଁ । ଆର୍ଦ୍ର ନୁହେଁ କି ଶୁଷ୍କ ନୁହେଁ, ପଥର ନୁହେଁ କି କଠିନ ନୁହେଁ । ଧାତୁ ଦ୍ରବ୍ୟ କିମ୍ବା ତୀର ନୁହେଁ । ସେ ତାକୁଇ ନେଇ ବୃତ୍ରାସୁରକୁ ସଂହାର କଲେ ।

ବିପଦ ମୁକ୍ତ ଦେବରାଜ । ଇନ୍ଦ୍ରପଦ ରକ୍ଷା ହୋଇଗଲା କିନ୍ତୁ ସେ ବ୍ରହ୍ମହତ୍ୟା ଦୋଷରେ ଦୋଷଯୁକ୍ତ ହେଲେ । ପାପ ଓ ପ୍ରତାରଣା ପଥରେ ପାଇଥିବା ସଫଳତା, କୋଟର ଗତ ଅଗ୍ନି ପରି ତାଙ୍କୁ ଦଗ୍ଧ କଲା । ଲଜ୍ଜା ଓ ଅନୁତାପରେ ସେ ପଳାଇ ଯାଇ ଆତ୍ମଗୋପନ କଲେ । ଖାଲି ପଡ଼ିଲା ସ୍ୱର୍ଗ ସିଂହାସନ ।

ମଦ୍ରରାଜ ଶଲ୍ୟଙ୍କ ଭାବ ବିହ୍ୱଳ କଥାଟି ଧର୍ମରାଜ ଯୁଧିଷ୍ଠିରଙ୍କ ଉପରେ ଗଭୀର ପ୍ରଭାବ ପକାଇଲା । ସେ ଭାବୁଥାନ୍ତି ପାପ ଓ ପତାରଣାରୁ ମିଳିବା ସଫଳତା ସତରେ କୋଟର ଗତ ଅଗ୍ନି ପରି ମଣିଷର ହୃଦୟକୁ ଅନୁତାପରେ ଦଗ୍ଧ କରେ । ମହାଭାରତ ଯୁଦ୍ଧରେ ଏଅଭାବନୀୟ ପରିସ୍ଥିତି ପାଣ୍ଡବମାନଙ୍କ କ୍ଷେତ୍ରରେ ସୃଷ୍ଟି ହେବନିତ !''

ଶଲ୍ୟ କହିଲେ,'' ଧର୍ମରାଜ ! ଅବିବେକି ଦୁର୍ଯ୍ୟୋଧନ ଅନୁତାପରେ ଦଗ୍ଧ ହେବାପୂର୍ବରୁ, ରଣାଗ୍ନିରେ ନିଜକୁ ଆହୁତି ଦେଇ ସାରିଥି ।''

ଯୁଧିଷ୍ଠିର ଅନ୍ୟମନସ୍କ ହୋଇ ମ୍ଳାନହସର ରେଖାଟିଏ ଟାଣି ତାଙ୍କ ମୁହଁକୁ ଚାହିଁଲେ ।

ଶଲ୍ୟ କହିଲେ, ଶୁଣନ୍ତୁ ଧର୍ମରାଜ ! ଆଉ ଏକ ଦର୍ପାନ୍ଧତାର କାହାଣୀ !

## ।। ଋଷି ଭାର ବୋହିଲେ ।।

ଶଲ୍ୟ କଥାଟି ଆରମ୍ଭ କଲେ ।

''ଇନ୍ଦ୍ରଦେବ ଆସି ଆତ୍ମଗୋପନ କରିବାପରେ ସ୍ୱର୍ଗପୁରୀ ହେଲା ଇନ୍ଦ୍ରଶୂନ୍ୟ । ତିନି ପୁରରେ ଘୋର ଦୁର୍ଦ୍ଦିନ ଘୋଟିଗଲା । ବୃଷ୍ଟି ଅଭାବରୁ ପୃଥିବୀ ମଣ୍ଡଳରେ ଦୁର୍ଭିକ୍ଷ ବ୍ୟାପିଗଲା । ନଦୀ ପୁଷ୍କରିଣୀ ହେଲା ଶୁଷ୍କ । ଜୀବଗଣ ଅକଥନୀୟ ଯନ୍ତ୍ରଣା ଭୋଗକଲେ । ଚତୁର୍ଦ୍ଦିଗରେ ଆର୍ତ୍ତ ହାହାକାର ।

ଇନ୍ଦ୍ର ହୀନ ସ୍ୱର୍ଗଭୁବନରେ ଅରାଜକତା ବ୍ୟାପି ଯିବାର ଆଶଙ୍କାରେ ଦେବତାମାନେ ବ୍ୟସ୍ତ ହୋଇ ଉଠିଲେଣି । ଭାଗ୍ୟର ବିଡ଼ମ୍ବନା । ଯେଉଁ ଇନ୍ଦ୍ରପଦ ରକ୍ଷାପାଇଁ ଦେବରାଜ ନିଜର ଅସରନ୍ତି କ୍ଷମତା ବଳରେ ଅକ୍ଷମଣୀୟ ଅପରାଧ କରିଥିଲେ, ସେହି ଇନ୍ଦ୍ରପଦକୁ ଆପେ ଆପେ ଆଡ଼େଇ ଦେଇ ଚାଲିଗଲେ । ଆତ୍ମଗ୍ଳାନି ଓ ଅପବାଦ ଭୟରେ, କୀଟ ପରିଲୁଚିରହିଲେ ଫୁଲ ଭିତରେ । କାଦୁଅ ପଙ୍କ ପାଣିଭରା ସରୋବର ମଧ୍ୟରେ ।

ଦେବତା ଓ ମୁନିଋଷିମାନଙ୍କ ମଧ୍ୟରେ ଭାଳେଣି ପଡ଼ିଗଲା । ଇନ୍ଦ୍ରପଦରେ କାହାକୁ ବସାଇବେ ସମସ୍ତେ ବସି ବିଚାର କଲେ । ସ୍ଥିର ହେଲା, ମର୍ତ୍ତ୍ୟର ରାଜା ନହୁଷ ଏ ପଦପାଇଁ ଏକମାତ୍ର ଯୋଗ୍ୟବ୍ୟକ୍ତି ।

ସେ ଏକଶତ ଅଶ୍ୱମେଧ ଯଜ୍ଞ କରି ଦେବ ଦୁର୍ଲ୍ଲଭ କୀର୍ତ୍ତି ଓ ପୁଣ୍ୟ ଅର୍ଜନ କରିଛନ୍ତି । ସେ ଇନ୍ଦ୍ରଙ୍କର ସମକକ୍ଷ ଓ ଅପ୍ରତିଦ୍ୱନ୍ଦ୍ୱୀ । ଦେବତା ଓ ମୁନିଋଷିମାନେ ରାଜା ନହୁଷଙ୍କୁ ଏ ପ୍ରସ୍ତାବ ଦେଇ ସେ କହିଲେ, ''ହେ ରାଜନ୍ ! ଆପଣ ଇନ୍ଦ୍ରଦେବଙ୍କ ଅନୁପସ୍ଥିତିରେ ଇନ୍ଦ୍ରପଦ ଗ୍ରହଣ କରି ତ୍ରିଭୁବନ ପାଳନ କରନ୍ତୁ ।''

ରାଜା ନହୁଷ ନମ୍ର କଣ୍ଠରେ କହିଲେ, ''ହେ ଦେବଗଣ ! ଆପଣମାନେ ଏହି ଅସମ୍ଭବ ପ୍ରସ୍ତାବ ଦେଉଛନ୍ତି କିପରି ? ମର୍ତ୍ତ୍ୟର ମଣିଷ ସ୍ୱର୍ଗର ଇନ୍ଦ୍ରପଦରେ ଅଧିଷ୍ଠିତ ହେବ । କ'ଣ ସମ୍ଭବ ? ସୃଷ୍ଟି ହେଲା ଦିନୁ ଏ ପ୍ରକାର ଘଟଣା କେବେ ଘଟି ନାହିଁ । ମୁଁ ମର୍ତ୍ତ୍ୟର ରାଜାଟିଏ, ସ୍ୱର୍ଗର ଅଧିଶ୍ୱର ହେବି କିପରି ?''

ଦେବତାମାନେ କହିଲେ, ''ଆପଣ ଦେବୋପମ ଓ ଅଜସ୍ର କୀର୍ତ୍ତିର ଅଧିକାରୀ । ଇନ୍ଦ୍ରଙ୍କଠାରୁ ଆପଣ କୌଣସି ଗୁଣରେ ନ୍ୟୂନ ନୁହଁନ୍ତି । ମାନବ ଓ ଦେବତାର ପ୍ରଭେଦରୁ ଆପଣ ବହୁ ଊର୍ଦ୍ଧ୍ୱରେ ।''

''ଦେଖନ୍ତୁ, ମନୁଷ୍ୟ ହିସାବରେ ମୋର ଶକ୍ତି ସୀମିତ । ଇନ୍ଦ୍ରଥିଲେ ବିଶେଷ ଶକ୍ତିର ଅଧିକାରୀ । ଯାହାକି ମୋ ପାଖରେ ନାହିଁ । ଦେବତା ଓ ମୁନି ଋଷିମାନେ ମୋତେ ସେଇ ଅକ୍ଷୟ ଶକ୍ତିର ଅଧିକାରୀ କରାଇ ପାରିଲେ, ହୁଏତ ଏହା ସମ୍ଭବ ହୋଇପାରେ ।'' ହସିହସି କହିଲେ ରାଜା ନହୁଷ ।

''ଆଚ୍ଛା ଠିକ୍ ଅଛି ! ଆମେ ସବୁ ଆମ ଶକ୍ତି ଆପଣଙ୍କୁ ଅର୍ପଣ କରୁଛୁ । ଏହା ବ୍ୟତୀତ ଦେବ, ଦାନବ, ଯକ୍ଷ, କିନ୍ନର ମାନବ ପ୍ରଭୃତି ଯାହା ଉପରେ ଆପଣଙ୍କର ଦୃଷ୍ଟି ପଡ଼ିବ ତା'ର ଶକ୍ତି ଆପଣଙ୍କ ମଧ୍ୟରେ ପ୍ରବେଶ କରିବ ଓ ସେ ଆପଣଙ୍କର ଅଧୀନତା ସ୍ୱୀକାର କରିବ । ତ୍ରିଭୁବନରେ ଆପଣଙ୍କୁ ଜୟ କରିବାର ଶକ୍ତି କେହି ପାଇବେ ନାହିଁ ।''

ରାଜା ନହୁଷ ଆନନ୍ଦରେ ଏହି ଆରୋପିତ ସମ୍ମାନ ଗ୍ରହଣକଲେ । ସେ ହେଲେ ସ୍ୱର୍ଗର ରାଜା ଇନ୍ଦ୍ର । ଇନ୍ଦ୍ରଙ୍କର ସମସ୍ତ ଶକ୍ତି ଓ ସାମର୍ଥ୍ୟ ସେ ହାସଲ କଲେ ।

କ୍ଷମତା ହିଁ ସମସ୍ତ ଅନର୍ଥର ମୂଳ । କ୍ଷମତା ସଂଭୋଗର ମୁଖଶାଳା । କ୍ଷମତା ଓ ଅହଂକାର ମଧ୍ୟରେ । ଥାଏ କାୟା ଛାୟାର ସଂପର୍କ । ଲୋକମାନେ କ୍ଷମତାଶୀଳ ବ୍ୟକ୍ତିକୁ କଳୁଷିତ କରି ନିଜର ସ୍ୱାର୍ଥ ସାଧନ କରନ୍ତି । ନହୁଷଙ୍କ କ୍ଷେତ୍ରରେ ଠିକ୍ ସେଇଆ ହେଲା । ସେ କ୍ଷମତାନିଶାରେ ମୋହାନ୍ଧ ହୋଇ ଉଠିଲେ । ପ୍ରଭୁତ୍ୱରୁ ତାଙ୍କ ଭିତରେ ଅବିବେକତା ସୃଷ୍ଟି ହେଲା । ସୁରା, ନାରୀ, ଓ ସମ୍ପତ୍ତି ସାଧାରଣ ଲୋକଙ୍କୁ ଆକର୍ଷଣ କରିଥାଏ, କିନ୍ତୁ ନହୁଷଙ୍କ ପରି ତ୍ରିଭୁବନ ବନ୍ଦିତ ଏକ ବିଶାଳ ବ୍ୟକ୍ତିତ୍ୱ ଯେ ଏଥିପ୍ରତି ଆକର୍ଷିତ ହେବ,ଏହା ବିଧିର ବିଡ଼ମ୍ବନା ବ୍ୟତୀତ ଆଉ କିଛି ନୁହେଁ ।

ସେଦିନର ଘଟଣା ।

ରାଜା ନହୁଷଙ୍କର ନେତ୍ରାତିଥି ହେଲେ ଅପରୂପ ଲାବଣ୍ୟମୟୀ ଶଚୀ, ଇନ୍ଦ୍ରଙ୍କର ସହଧର୍ମିଣୀ । ତାଙ୍କର ଅପୂର୍ବ ରୂପସଂଭାର ନହୁଷଙ୍କୁ ମାଦକିତ କଲା । କନ୍ଦର୍ପ ବାଣରେ ଜର୍ଜରିତ ହେଲେ ନହୁଷ । କାମାର୍ତ୍ତ ହୋଇ, ଶଚୀ ଦେବୀଙ୍କୁ ଲାଭ କରିବାପାଇଁ ସେ ଅସ୍ଥିର ହେଲେ । ତାଙ୍କୁ ନିର୍ଦ୍ଦେଶ ଦିଆଗଲା । ସେ ନହୁଷଙ୍କ ଇନ୍ଦ୍ରପୁରୀକୁ ଆସି ରାଜମହିଷୀ ଭାବରେ ତାଙ୍କର ସେବା କରିବେ । ସେ ବର୍ତ୍ତମାନ ଇନ୍ଦ୍ରଦେବ, ଇନ୍ଦ୍ରାଣୀଙ୍କ ଉପରେ ତାଙ୍କର ଅଧିକାର ବିଧି ସମ୍ମତ ।

ଶୋକ ଜର୍ଜରିତା ଶଚୀଦେବୀ ମାନସିକ ଭାରସାମ୍ୟ ରକ୍ଷାକରି ପାରିଲେ ନାହିଁ । ଇନ୍ଦ୍ରହୀନ ଶଚୀ, ପ୍ରତିବାଦ କରିବାର ସାମର୍ଥ୍ୟ ମଧ୍ୟ ହରାଇଛନ୍ତି । ଅଶାନ୍ତିର ଅଗ୍ନିଦାହ ଭିତରେ ସେ ଅସ୍ଥିର ହୋଇ ଉଠିଲେ । ଯାଇ ପହଞ୍ଚିଲେ ଦେବଗୁରୁ ବୃହସ୍ପତିଙ୍କ ପାଖରେ । ବିକଳ କଣ୍ଠରେ କହିଲେ, ''ହେ ପ୍ରଭୁ !

ଦୁରାତ୍ମା ନହୁଷର କବଳରୁ ଆପଣ ମୋତେ ରକ୍ଷାକରନ୍ତୁ । ତାର ରାଜମହିଷୀ ହୋଇ ପଦ ସେବା କରିବାକୁ ସେ ମୋତେ ନିର୍ଦ୍ଦେଶ ଦେଇଛି ।'' ଧର୍ମ ଅଧର୍ମ, ପାପ ପୁଣ୍ୟ, ହିତାହିତ ଜ୍ଞାନ ହରାଇଛି ସେ । ସ୍ତ୍ରୀ ହିସାବରେ 'ଏକପତି' ବ୍ରତ ରକ୍ଷା କରିବାକୁ ମୋତେ ସାହାଯ୍ୟ କରନ୍ତୁ ।''

ବୃହସ୍ପତି, ଶଚୀ ଦେବୀଙ୍କୁ ଆଶ୍ୱାସନା ଦେଇ କହିଲେ, ''ବ୍ୟସ୍ତ ହୁଅନ୍ତୁ ନାହିଁ । ନହୁଷଙ୍କର ପାପ ପାତ୍ର ଉଚ୍ଛୁଳିବାକୁ ଆଉ ବେଶିଦିନ ନାହିଁ । ଧର୍ମରାଜ ଇନ୍ଦ୍ର ଖୁବ୍ ଶୀଘ୍ର ଫେରି ଆସିବେ । ଆପଣ ନିର୍ଭୟରେ ଏଠାରେ ରହନ୍ତୁ ।

ନହୁଷଙ୍କ ପାଖରେ ଏ ସମ୍ବାଦ ପହଞ୍ଚିଗଲା । ଶଚୀଦେବୀ ବୃହସ୍ପତିଙ୍କର ଶରଣାପନ୍ନ ଓ ତାଙ୍କର ନିର୍ଦ୍ଦେଶ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି । ରାଜା କ୍ରୋଧରେ ଅଗ୍ନିଶର୍ମା । ଦେବତାମାନେ ଭୟରେ ଅସ୍ଥିର ହେଲେ । ସେମାନେ ଜାଣିଲେ, କାମାନ୍ଧ ନହୁଷ ନିଜର ବିବେକ ଓ ବିଚାର ଶକ୍ତି ହରାଇଛନ୍ତି । ଦେବତା ଓ ମୁନି ଋଷିମାନେ ତାଙ୍କୁ ବୁଝାଇ କହିଲେ, ''ହେ ଦେବାଧିପତି ! ଆପଣ ଶାନ୍ତ ହୁଅନ୍ତୁ । ଶଚୀଦେବୀ ହେଉଛନ୍ତି ଇନ୍ଦ୍ରଙ୍କର ସ୍ତ୍ରୀ । ପରସ୍ତ୍ରୀକୁ ଲାଭ କରିବାକୁ ମନ ବଳାନ୍ତୁ ନାହିଁ । ଏହା ମହାପାପ । 'ସ୍ତ୍ରୀ' ଶବ୍ଦ ଭିତରେ ଅଛି ଧର୍ମ ଓ ନୀତି ସମ୍ମତ ମମତାର ମାଲିକାନା । 'ଇନ୍ଦ୍ର' ଶବ୍ଦଟି କେବଳ ପଦବୀ ସର୍ବସ୍ୱ ଓ କ୍ଷମତା ସାପେକ୍ଷ । ପରିଣୟର ପରିଭାଷାକୁ କ୍ଷମତାର ପରିଭାଷା, ବୋଲି ବୁଝିଲେ ଭୁଲହେବ । ହେ ଦେବରାଜ ! ବିବେକ ବିଚାରବନ୍ତ ହୁଅନ୍ତୁ । ଧର୍ମରକ୍ଷା କରନ୍ତୁ ।''

ରାଜା ନହୁଷ ବ୍ୟଙ୍ଗାତ୍ମକ କଣ୍ଠରେ କହିଲେ, ''ଇନ୍ଦ୍ରଯେତେବେଳେ ଅହଲ୍ୟାଙ୍କ ପଛରେ ଗୋଡ଼ାଇଥିଲେ, ସେତେବେଳେ ତୁମମାନଙ୍କର ଏସବୁ ନୀତିକଥା କେଉଁଠି ଥିଲା ? ତୁମେ ତ କାହିଁ ସେତେବେଳେ ବାରଣ କରିନଥିଲ । ଟିକିଏ ବାଧା ଦେଇଥିଲେ ଅହଲ୍ୟାଙ୍କୁ ପାଷାଣୀ ହେବାକୁ ପଡ଼ିନଥାନ୍ତା । ବହୁ ନୈତିକ ଓ ଚାରିତ୍ରିକ ଅପରାଧର ସୂତ୍ରଧର ଇନ୍ଦ୍ର, ଅପରାଧ ଜଗତର ଇନ୍ଦ୍ର ପାଲଟି ନଥାନ୍ତେ । ବିଶ୍ୱରୂପଙ୍କୁ, ତପସ୍ୟାରତ ଥିବାବେଳେ ହତ୍ୟା କଲେ, ବୃତ୍ରାସୁରଙ୍କୁ ପ୍ରତାରଣା କରି କୌଶଳରେ ସଂହାର କଲେ, କେତେ ଉଗ୍ରତପା ମୁନିଋଷିମାନଙ୍କର ତପୋଭଙ୍ଗ କରି ତାଙ୍କୁ ବିପଥଗାମୀ କରାଇଛନ୍ତି, କେତେ ନାରୀଙ୍କର ସତୀତ୍ୱ ଲୁଣ୍ଠନ କରିଛନ୍ତି, ସେତେବେଳେ ତାଙ୍କୁ ସତ୍ ପଥକୁ ନ ଆଣିବାର କାରଣ କଣ ? ଶଚୀଦେବୀ ମୋର ରାଜପୁରୀକୁ ଆସିବାକୁ ଏତେ ବାରଣ କାହିଁକି, ଏତେ ଉପଦେଶ କାହିଁକି ? ସମସ୍ତଙ୍କ ମଙ୍ଗଳ ଦୃଷ୍ଟିରୁ ତାଙ୍କୁ ବୁଝାଇ ମୋ ରାଜପୁରୀକୁ ଅଣାଯାଉ ।''

ଦେବତାମାନେ ଭୟରେ ଯାଇ ପହଞ୍ଚିଲେ ବୃହସ୍ପତିଙ୍କ ପାଖରେ । ତାଙ୍କୁ ସମସ୍ତ ଘଟଣା କହି ଶଚୀଦେବୀଙ୍କୁ ଛାଡ଼ିବାପାଇଁ ଅନୁରୋଧକଲେ । ଶଚୀଦେବୀ ଲଜ୍ଜା ଓ ସମ୍ଭ୍ରମରେ ବିକଳ ହୋଇ ପ୍ରାର୍ଥନାକଲେ ବୃହସ୍ପତିଙ୍କୁ ।

ବୃହସ୍ପତି ଶରଣାଗତ ଶଚୀଦେବଙ୍କୁ ଅଭୟ ଦାନକରି କହିଲେ, ''ଆପଣ ଧର୍ମ ଉପରେ ବିଶ୍ୱାସ ସ୍ଥାପନ କରନ୍ତୁ, ମୋ ଉପରେ ଆସ୍ଥା ରଖନ୍ତୁ । ସମସ୍ୟାର ସମ୍ମୁଖୀନ ହୁଅନ୍ତୁ । ରାଜା ନହୁଷଙ୍କ ନଅରକୁ ଯିବାପରେ ତାଙ୍କର କ୍ରୋଧ କମିଯିବ ଓ ଆପଣ ତାଙ୍କୁ କିଛିଦିନ ସମୟ ମାଗିବେ । ତା'ପରେ ସମୟ ସବୁ ସମାଧାନ କରିଦେବ । ସମୟର ଶକ୍ତି ପ୍ରବଳ ।''

ଶଚୀଦେବୀ ଦେବଗୁରୁଙ୍କ ଉପଦେଶ ମାନି ନହୁଷଙ୍କ ନଅର ଅଭିମୁଖେ ଯାତ୍ରାକଲେ । ନହୁଷ ଅନିନ୍ଦ୍ୟ ସୁନ୍ଦରୀ ପରମ ରୂପବତୀ ଶଚୀ ଦେବୀଙ୍କୁ ସମ୍ମୁଖରେ ଦେଖି ବିହ୍ୱଳ ହୋଇ ଉଠିଲେ । କହିଲେ,

''ହେ ତ୍ରିଭୁବନ ବନ୍ଦିତା କଲ୍ୟାଣୀ ନାରୀ ! ତୁମ ଅଭାବରେ ଏଇ ଇନ୍ଦ୍ରପଦ ମୋତେ ତୁଚ୍ଛ ଲାଗୁଛି । ତୁମେ ମୋର ରାଜପୁରୀ ମଣ୍ଡନ କର । ତୁମର ସେବାପାଇଁ ମୁଁ ସର୍ବଦା ତତ୍ପର । କି ସେବା କରିପାରିବି କୁହ ।''

ଶଚୀ ଦେବୀ କୋମଳ ମଧୁର କଣ୍ଠରେ କହିଲେ, ''ହେ ଦେବରାଜ ! ଦୟାକରି ମୋତେ କିଛି ସମୟ ଦିଅନ୍ତୁ । ମୁଁ ସ୍ତ୍ରୀ ହିସାବରେ ଇନ୍ଦ୍ରଙ୍କ ପ୍ରତିମୋର ଶେଷ କର୍ତ୍ତବ୍ୟ କରେ । ସେ ଯଦି ଯଥା ସମୟରେ ଫେରି ନଆସିବେ, ତା'ହେଲେ ଆପଣଙ୍କ ରାଜପୁରୀକୁ ମୁଁ ଚାଲି ଆସିବି । ସେତେବେଳେ ନୈତିକ ଅସୁବିଧା କିଛି ରହିବ ନାହିଁ । ଏହା ବିଧି ସମ୍ମତ ପନ୍ଥାରେ ନକରିବା କାହିଁକି ? ଏଥିପାଇଁ ମୋତେ କିଛି ଦିନ ସମୟ ଦିଅନ୍ତୁ ।'' ଆଚ୍ଛା ଠିକ୍ ଅଛି ଦେବି । ମୁଁ ସମୟ ଦେଲି । ଯଥା ଶୀଘ୍ର ଫେରିଆସି ମୋ ସ୍ୱପ୍ନ ସାର୍ଥକ କରିବ । ତୁମ ଆସିବା ପଥକୁ ମୁଁ ଚାତକ ପରି ଚାହିଁ ଥିବି ।''

ଶଚୀଦେବୀ ବୃହସ୍ପତିଙ୍କ ପାଖକୁ ଫେରିଗଲେ । ତା'ପରେ ଦେବଗୁରୁ ଦେବତାମାନଙ୍କ ସହିତ ବିଷ୍ଣୁଙ୍କ ପାଖକୁ ଯାଇ ନହୁଷଙ୍କ ଦୌରାତ୍ମ୍ୟ କଥା କହିଲେ । ଇନ୍ଦ୍ରଦେବ କିପରି ବ୍ରହ୍ମହତ୍ୟା ଦୋଷରୁ ମୁକ୍ତିଲାଭ କରି ନିଜର ପୂର୍ବ ଇନ୍ଦ୍ରପଦ ଫେରିପାଇବେ, ସେଥିପାଇଁ ପରାମର୍ଶ ଭିକ୍ଷାକଲେ ।

ବିଷ୍ଣୁ କହିଲେ; ଇନ୍ଦ୍ରଦେବ ମହା ଯଜ୍ଞ କରି ପୁଣ୍ୟ ଅର୍ଜନ କଲେ ତାଙ୍କର ବ୍ରହ୍ମହତ୍ୟା ଦୋଷ କଟିଯିବ ଓ ସେ ତାଙ୍କର ପୁଣ୍ୟ ପଦ ଲାଭ କରିବେ ।

ଇନ୍ଦ୍ରଙ୍କ ସଂଧାନରେ ବାହାରିଲେ ଶଚୀ ଦେବୀ । ନଦୀ, ବଣ, ପର୍ବତ, ନଗର, କାନନ ଭ୍ରମଣ କରି ସେ ଖୋଜି ବୁଲିଲେ । ମହା ଦେବୀଙ୍କୁ ଆରାଧନାକରି ତାଙ୍କୁ ସନ୍ତୁଷ୍ଟ କଲେ । ତାଙ୍କ ଠାରୁ ସଂଧାନ ମିଳିଲା, 'ଇନ୍ଦ୍ର ମାନସ ସରୋବରର ଏକ ପଦ୍ମ ଫୁଲ ମଧ୍ୟରେ ଆତ୍ମଗୋପନ କରି ତପସ୍ୟା କରୁଛନ୍ତି । ସେମାନେ ଯାଇ ପହଞ୍ଚିଲେ ଉତ୍ତୁଙ୍ଗ ହିମାଳୟର ମାନସ ସରୋବର ହ୍ରଦ କୂଳରେ । ବର୍ଣ୍ଣମୟୀ ପ୍ରସ୍ଫୁଟିତ ପଦ୍ମରେ ପରିପୂର୍ଣ୍ଣ ମାନସ ସରୋବର । ତାରି ଭିତରେ ଥିଲା ଏକ ମହାପଦ୍ମ । ମହାଦେବୀ ତାକୁ ବିଦାରଣକରି ଇନ୍ଦ୍ରଙ୍କର ଉପସ୍ଥିତିର ସଂଧାନ ପାଇଲେ । ଇନ୍ଦ୍ର ଦେବ ସୂକ୍ଷ୍ମ ଅଣୁ ରୂପରେ ପଦ୍ମନାଡ଼ ଭିତରେ ଥିଲେ । ଶଚୀଦେବୀ ସୂକ୍ଷ୍ମରୂପ ଧାରଣ କରି ଇନ୍ଦ୍ରଙ୍କୁ ସାକ୍ଷାତ କଲେ ।

ଆଶ୍ଚର୍ଯ୍ୟବିଭୋର ଇନ୍ଦ୍ର । ଶଚୀଦେବୀ ବିହ୍ୱଳ ହୋଇ କାନ୍ଦିପକାଇଲେ । ସମସ୍ତ ଘଟଣା ଜଣାଇଲେ ଇନ୍ଦ୍ରଙ୍କୁ । ବିଷ୍ଣୁଙ୍କର ନିର୍ଦ୍ଦେଶ ମଧ୍ୟତାଙ୍କୁ ଜଣାଇଲେ । ଇନ୍ଦ୍ର କହିଲେ, ହେ ଦେବି ! ବ୍ୟସ୍ତ ହୁଅ ନାହିଁ । ନହୁଷଙ୍କର ସର୍ବନାଶ ସମୟ ନିକଟବର୍ତ୍ତୀ । ତୁମେ ଏଠାରୁ ଫେରି ତାଙ୍କ ପାଖକୁ ଯାଅ । ତାଙ୍କୁ କୁହ ''ମୁଁ ଇନ୍ଦ୍ରଙ୍କର କିଛି ସଂଧାନ ପାଇଲି ନାହିଁ । ଆପଣଙ୍କ ରାଜ ପୁରୀକୁ ଆସିବାକୁ ଏଥର ଅସୁବିଧା କିଛି ନାହିଁ । ନିଜେ ଆସି ମୋତେ ସମ୍ମାନର ସହିତ ନେଇଯିବେ । ଏତିକି ହେଲେ ତାଙ୍କ ପତନ ପଥ ପରିଷ୍କାର ହୋଇଯିବ । ଯାଅ ... ବ୍ୟସ୍ତ ହୁଅନି । ମୁଁ ଯଥା ସମୟରେ ଫେରିବି ।

ଶଚୀଦେବୀ ଫେରିଯାଇ ପହଞ୍ଚିଲେ ରାଜା ନହୁଷଙ୍କ ଉଆସରେ । ନହୁଷ ଇନ୍ଦ୍ରପତ୍ନୀ ଶଚୀ ଦେବୀଙ୍କୁ ଦେଖି କୃତକୃତ୍ୟ ହୋଇ କହିଲେ, ''ହେ କଲ୍ୟାଣୀ ସୁନ୍ଦରି ! ମୁଁ ଆନନ୍ଦିତ ଯେ ତୁମେ ତୁମର କଥା ରକ୍ଷାକରିଛ । ଆଜି ମୁଁ ନିଜକୁ ପ୍ରକୃତ ଇନ୍ଦ୍ରପରି ଅନୁଭବ କରୁଛି । ତମର ସାନିଧ୍ୟ, ଇନ୍ଦ୍ରପଦ ଅପେକ୍ଷା ମୋ ପାଇଁ ଅଧିକ ମୂଲ୍ୟବାନ ।''

ଶଚୀଦେବୀ ସ୍ମିତ ହସର କ୍ଷୀଣ ରେଖାଟିଏ ଟାଣି କହିଲେ, ''ହେ ଦେବରାଜ ! ମୁଁ ମୋର ସମ୍ମତି ଜଣାଇବା ପାଇଁ ଆପଣଙ୍କ ପାଖକୁ ଆସିଥିଲି । କେବଳ ମୋର ଏକମାତ୍ର ପ୍ରାର୍ଥନା, ଆପଣ ମୁନି

ଋଷି ବାହିତ ଏକ ଶିବିକାରେ ବସି, ସମ୍ମାନ ସହିତ ମୋତେ ରାଜପୁରୀକୁ ନିଜେ ନେଇ ଆସିବେ । ଏହାଫଳରେ ମୁଁ ନିଜକୁ ସମ୍ମାନିତ ମନେକରିବି ଏବଂ ଅପବାଦରୁ ମୋତେ ମଧ୍ୟ ରକ୍ଷା ମିଳିବ ।''

''ନିଶ୍ଚୟ ନିଶ୍ଚୟ ଦେବି ! ତୁମର ଅନୁରୋଧ ମୁଁ ନିଶ୍ଚୟ ରକ୍ଷା କରିବି । ଭାବ ବିହ୍ବଳ ହୋଇ କହିଲେ ରାଜା ନହୁଷ ।

ଶଚୀଦେବୀ ଆନନ୍ଦରେ ଫେରି ଆସିଲେ । ବିଷଧର ସର୍ପ ପେଡ଼ି ଭିତରେ ପଶିଛି । ନହୁଷ ସାତଜଣ ଋଷିଙ୍କୁ ନିର୍ଦ୍ଦେଶ ଦେଲେ ପାଲିଙ୍କି ବୋହିବା ପାଇଁ । ସେ ସେଥିରେ ତାଙ୍କର ଅଭିସାର ଯାତ୍ରା ଆରମ୍ଭ କରିବେ । ଦିନ ଠିକ୍ ହେଲା, ଋଷିମାନେ ଭାର ବୋହିବାରେ ଅନଭ୍ୟସ୍ତ ହେଲେ ମଧ୍ୟ ଭୟରେ ଆସିଲେ । ଭାରବୋହି ବାଉଳାପାଦ ପକାଇପକାଇ ଆଗେଇଲେ । ଋଷିମାନଙ୍କର ଗତି ମନ୍ଥର, ପ୍ରଣୟଲୁବ୍ଧ ନହୁଷଙ୍କ ମନର ଗତି ପ୍ରଖର । ଭାରି ଅସ୍ଥିର ହେଉଥାନ୍ତି ନହୁଷ ଋଷିମାନଙ୍କର ବିଳମ୍ବ ଗତି ପାଇଁ । ସହ୍ୟ କରିବାର ଧୈର୍ଯ୍ୟ ସେ ହରାଇଲେଣି ।

ପାଲିଙ୍କି ବୋହି ଚାଲିଲାବେଳେ ଋଷିମାନଙ୍କ ପାଦଛନ୍ଦି ହୋଇ ଯାଉଛି ନହୁଷ ବିରକ୍ତ ହୋଇ ନାନାପ୍ରକାର କଟୁ ମନ୍ତବ୍ୟ ଦେଉଥାନ୍ତି । ଅଗସ୍ତ୍ୟ ଋଷି ଏହାର ପ୍ରତିବାଦ କରିବାରୁ ରାଜାରାଗରେ ତାଙ୍କ ଉପରେ ଗୋଟାଏ ଗୋଇଠା ପକାଇଲେ । ଗର୍ଜ୍ଜନ କରି କହିଲେ, ଶୀଘ୍ର ଶୀଘ୍ର ଚାଲ ।''

କ୍ରୋଧ କମ୍ପିତ ଋଷି ତାଙ୍କୁ ସଙ୍ଗେ ସଙ୍ଗେ ଅଭିଶାପ ଦେଲେ । କହିଲେ, ''ଏଇ ମୁହୂର୍ତ୍ତରେ ତୁମେ ସାପ ହୋଇଯାଅ । ଆଖି ବିଛୁଳାକେ ସ୍ୱପ୍ନସୌଧ ଭୁଶୁଡ଼ି ପଡ଼ିଲା । ରାଜା ନହୁଷ ସାପ ହୋଇ ମର୍ତ୍ତ୍ୟରେ ପଡ଼ି ଘୂରି ବୁଲିଲେ । ମଦ ମତ୍ତ ନହୁଷଙ୍କର ପୁଣ୍ୟମୟ ଜୀବନର ପୂର୍ଣ୍ଣାହୁତି ପଡ଼ିଲା । ଦଶସହସ୍ରବର୍ଷ ଅଭିଶାପ ଦଣ୍ଡ ଭୋଗିବା ପରେ ସେ ସ୍ୱର୍ଗକୁ ଗଲେ । ଇନ୍ଦ୍ରପଦ କିନ୍ତୁ ମିଳିଲା ନାହିଁ କି ଶଚୀଦେବୀଙ୍କୁ ସେ ପାଇଲେ ନାହିଁ ।

ଇନ୍ଦ୍ର ଦେବ ଫେରିଆସି ତାଙ୍କର ଇନ୍ଦ୍ରପଦ ପାଇଲେ । ଶଚୀ ଦେବୀଙ୍କ ଦୁର୍ଦ୍ଦିନର ଅବସାନ ହେଲା । ଶଲ୍ୟ କହିଲେ, ''ହେ ଧର୍ମରାଜ ! ଏଇ ହେଉଛି ଦର୍ପାନ୍ଧ ନହୁଷଙ୍କର ଇତିବୃତ୍ତି । ଦୁର୍ଯ୍ୟୋଧନଙ୍କର ଗର୍ବ ଏବଂ ଅହଂକାର, ନହୁଷଙ୍କ ପରି ସର୍ବନାଶର କାରଣ ହେବ ।

ତୀର୍ଥାଟନ ସମୟରେ ଯେଉଁ ମହାତ୍ମା ନହୁଷଙ୍କ ଶାପ ମୁକ୍ତିର ସେ କାରଣ ହୋଇଥିଲେ, ତାଙ୍କର ଏହି କରୁଣ ଅଶ୍ଳୀଳ କାହାଣୀ, ତାଙ୍କ ମଧ୍ୟରେ ଗଭୀର ରେଖାପାତ କରିଥିଲା ।

ଷୋହଳ

## ।। ସନ୍ଧି ଓ ଶାନ୍ତିବାର୍ତ୍ତା ।।

କୁରୁପାଣ୍ଡବ ଉଭୟ ଶିବିରରେ ଯୁଦ୍ଧ ପ୍ରସ୍ତୁତି ଖୁବ ଜୋରରେ ଚାଲିଥାଏ । ରାଜା ମହାରାଜାମାନେ ସେମାନଙ୍କର ସୈନ୍ୟ ସାମନ୍ତ ନେଇ, ନିଜର ନିର୍ବାଚିତ ପକ୍ଷରେ ଯୋଗ ଦେଉଥାନ୍ତି ।

ପାଣ୍ଡବମାନଙ୍କ ପକ୍ଷରେ ଯୋଗଦେଲେ ଯଦୁବଂଶର ମହାନ୍ ବୀର ଯଯୁଧାନ, ସାତ୍ୟକି ଓ ଯଦୁପତି ଶ୍ରୀକୃଷ୍ଣ । ଏକା ଯୁଯୁଧାନ ଆଣିଥିଲେ ଏକ ଅକ୍ଷୌହିଣୀ ସେନା । ସେତେବେଳର ସମର ଶାସ୍ତ୍ର ଅନୁସାରେ, ଏକଅକ୍ଷୌହିଣୀ ମଧ୍ୟରେ ଥାଏ ୨୧୮୭୦ଟି ରଥ । ଠିକ୍ ସେତିକି ପରିମାଣରେ ହସ୍ତୀ, ଏହାର ତିନିଗୁଣ ଅଶ୍ୱ ଏବଂ ପାଞ୍ଚଗୁଣ ପଦାତିକ ସେନ୍ୟ । ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ ସୈନ୍ୟକୁ ନେଇ ଏହା ଗଠିତ ।

ଚେଦିର ରାଜା ଶିଶୁପାଳଙ୍କ ପୁତ୍ର  ଧୃଷ୍ଟକେତୁ ମଧ୍ୟ ଏକ ଅକ୍ଷୌହିଣୀ ସୈନ୍ୟ ଆଣି ତାଙ୍କ ସହିତ ଯୋଗ ଦେଲେ । ଧର୍ମରାଜ ଯୁଧିଷ୍ଠିର ଜରାସନ୍ଧଙ୍କ ପୁତ୍ର ଜୟନ୍ତସେନଙ୍କ ସାହାଯ୍ୟ ପାଇଥିଲେ । ସେ ମଧ୍ୟ ଏକ ଅକ୍ଷୌହିଣୀ ମଗଧ ସୈନ୍ୟ ନେଇ ଆସିଥିଲେ । ପଞ୍ଚାଳ ରାଜ ଦ୍ରୁପଦ, ମତ୍ସ୍ୟ ଦେଶର ରାଜା ବିରାଟ ଓ ଆଉ କେତେକ ରାଜା ନିଜର ସୈନ୍ୟବଳ ନେଇ ଯୋଗଦେଲେ । ପାଣ୍ଡବମାନଙ୍କର ମୋଟ ସୈନ୍ୟସଂଖ୍ୟା ହେଲା ସାତ ଅକ୍ଷୌହିଣୀ । ସେମାନେ ବିରାଟ ରାଜ୍ୟର ଉପପ୍ଲବ୍ୟ ନଗର ନିକଟରେ ଛାଉଣୀ ପକାଇଲେ ।

କୌରବମାନଙ୍କର ପକ୍ଷଭୁକ୍ତ ହୋଇଥିଲେ ଅଧିକ ରାଜା ଓ ତାଙ୍କର ସୈନ୍ୟବଳ ମଧ୍ୟ ଅଧିକ । ଯାଦବମାନଙ୍କ ମଧ୍ୟରୁ କେତେକ ଆସି ଦୁର୍ଯ୍ୟୋଧନଙ୍କୁ ସମର୍ଥନ କରିଥିଲେ । କୃତବର୍ମ୍ମା ସେମାନଙ୍କ ମଧ୍ୟରେ ପ୍ରଧାନ । ମହାଭାରତ ଯୁଦ୍ଧରୁ ସାତ୍ୟକି ଓ କୃତବର୍ମ୍ମା ଉଭୟ ଯଦୁ ବୀର ବଞ୍ଚିଥିଲେ । ଏ ଉଭୟ ମଧ୍ୟ ଦ୍ୱାରକାରେ ଆଉ ଏକ ମହାଭରତ ଯୁଦ୍ଧ ଆରମ୍ଭ କରିଥିଲେ । ପରେ ସେମାନେ ହେଲେ ଯଦୁବଂଶ ନାଶର ପ୍ରଧାନ ସୂତ୍ରଧର ।

ମହାବୀର ଭଗଦତ୍ତ, ଦୁର୍ଦ୍ଧର୍ଷ ରାଜା ଭୁରିଶ୍ରବା, ମଦ୍ରରାଜ ଶଲ୍ୟ ସିନ୍ଧୁରାଜ ଜୟଦ୍ରଥ, କମ୍ବୋଜ ଅଧିପତି ସୁଦକ୍ଷିଣ, ମାହିଷ୍ମତୀ ରାଜା ନୀଳଧ୍ୱଜ, ଅବନ୍ତୀର ରାଜା ବିନ୍ଦ ଓ ଅନୁବିନ୍ଦ କୌରବପକ୍ଷ ସମର୍ଥନ କରିଥିଲେ । ଏହା ବ୍ୟତୀତ କେୟରାଜ ମହିପାଳ ଓ ତାଙ୍କର ପାଞ୍ଚଭାଇ ସୈନ୍ୟବଳ ସହିତ ଆସି ଦୁର୍ଯ୍ୟୋଧନଙ୍କୁ ସାହାଯ୍ୟ କରିଥିଲେ । କୌରବ ମାନଙ୍କର ମୋଟ ସୈନ୍ୟ ସଂଖ୍ୟା ହେଲା ଏଗାର ଅକ୍ଷୌହିଣୀ । ଏମାନେ ପଞ୍ଚନଦ ଗଙ୍ଗାକୂଳ, କୁରୁଜାଙ୍ଗଳ ସମେତ ବିରାଟ ଅଞ୍ଚଳରେ ଡେରା ପକାଇଲେ ।

ଉଭୟ ପକ୍ଷ ସୈନ୍ୟବଳରେ ସୁସଜ୍ଜିତ । ସାରା ଭାରତ ବର୍ଷର ରାଜା ମହାରାଜାମାନେ ନିଜର ସମସ୍ତ ସାମରିକ ଶକ୍ତିନେଇ ଉଭୟ ପକ୍ଷରେ ଯୋଗ ଦେଇଛନ୍ତି ।ଯୁଦ୍ଧ ପୂର୍ବରୁ ଏକ ଶେଷ ଚେଷ୍ଟା କରାଗଲା । ପାଣ୍ଡବମାନେ ପୁଣିଥରେ ଦ୍ରୁପଦ ରାଜଙ୍କ ପୁରୋହିତଙ୍କୁ ଶାନ୍ତି ଦୂତ ରୂପେ ପଠାଇଲେ ଶାନ୍ତିସ୍ଥାପନ ପାଇଁ । ସେ କୌରବମାନଙ୍କୁ ଯୁଦ୍ଧର ଭୟାବହତା କଥା ବୁଝାଇ ସେମାନଙ୍କୁ ସେଇ ମହାପ୍ରଳୟରୁ କ୍ଷାନ୍ତ କରିବେ ।

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ଯଥା ସମୟରେ ପୁରୋହିତ ଯାଇ ପହଞ୍ଚିଲେ କୁରୁସଭାରେ । ସଭାକକ୍ଷରେ ଥିଲେ ଭୀଷ୍ମଦେବ, ବିଦୁର, କର୍ଣ୍ଣ, ଦ୍ରୋଣାଚାର୍ଯ୍ୟ ଏବଂ ଅନ୍ୟ ରାଜ ସହସ୍ୟଗଣ । ଯଥୋଚିତ ସମ୍ମାନ ଓ ସମ୍ଭାଷଣ ପରେ,ଦ୍ରୁପଦ ରାଜପୁରୋହିତ କହିଲେ, ''ହେ କୁରୁସମ୍ରାଟ ! ଏ ସଭାରେ କୌରବ କୁଳର ସର୍ବମାନ୍ୟ ଭୀଷ୍ମଦେବ, ମହାତ୍ମା ବିଦୁର ଆଚାର୍ଯ୍ୟ ଦ୍ରୋଣ ପ୍ରଭୃତି ବିଶିଷ୍ଟ ରାଜପ୍ରତିନିଧିମାନ ଅଛନ୍ତି । ମୁଁ ଧର୍ମରାଜ ଯୁଧିଷ୍ଠିର ଏବଂ ପାଣ୍ଡବମାନଙ୍କର ସଭକ୍ତି ସମ୍ମାନ ଆପଣଙ୍କୁ ଜଣାଉଛି । ସେମାନେ ଆପଣଙ୍କର ଆଶୀର୍ବାଦ ଭିକ୍ଷା କରିଛନ୍ତି । ଅନୁମତି ମିଳିଲେ ମୁଁ ମୋର ବକ୍ତବ୍ୟ ପ୍ରଦାନ କରିବି ।''

ରାଜା ଧୃତରାଷ୍ଟ୍ର ପାଣ୍ଡବମାନଙ୍କ ମଙ୍ଗଳ କାମନା କରି କହିଲେ, ''ହେ ବ୍ରାହ୍ମଣ ଶେଷ୍ଠ ! ଆପଣ ରାଜସନ୍ଦେଶ ଏବଂ ମତାମତ ଉପସ୍ଥାପନ କରିପାରନ୍ତି ।

ସେ କହିଲେ, ମୁଁ ପାଣ୍ଡବମାନଙଙ୍କର ଶାନ୍ତି ପ୍ରସ୍ତାବ ନେଇ ଆସିଛି । ଯୁଦ୍ଧ ବର୍ତ୍ତମାନ ପରିସ୍ଥିତିରେ କୌଣସି ପକ୍ଷର ହିତ ସାଧନ କରିବ ନାହିଁ । କେହି ଉପକୃତ ହେବେନି ଅନାବଶ୍ୟକ ମୁହୂର୍ତ୍ତରେ ସର୍ବଗ୍ରାସୀ ଯୁଦ୍ଧର ଆଶ୍ରୟ ନେଇ । ଆପଣ ଏବଂ ରାଜା ପାଣ୍ଡୁ ଦୁଇଭାଇ । ନୈତିକ ଦୃଷ୍ଟିରୁ ପୈତୃକ ସମ୍ପତ୍ତିରେ ଉଭୟଙ୍କର ସମାନ ଅଧିକାର । ପାଣ୍ଡବମାନେ ସେ ଅଧିକାରରୁ ବଂଚିତ ହୋଇଛନ୍ତି । ଆପଣ ରାଜା ଏବଂ ଅତ୍ୟନ୍ତ ହୃଦୟବାନ । ସହୃଦୟର ସହିତ, ତାଙ୍କ ଦ୍ୱାରା ଅର୍ପିତ ରାଜ୍ୟ, ତାଙ୍କୁ ଚୁକ୍ତି ଅନୁସାରେ ଫେରାଇ ଦେଲେ ନଖ କାମ କୁରାଢ଼ିକୁ ଯିବ ନାହିଁ । ଆପଣ ପାଣ୍ଡବମାନଙ୍କର ପିତାତୁଲ୍ୟ । ସେଇ ଭରସାରେ ସେମାନେ ତାଙ୍କ ରାଜ୍ୟକୁ ଆପଣଙ୍କ ଜିମା ଦେଇ କିଛିଦିନ ପାଇଁ ବଣକୁ ଯାଇଥିଲେ । ଏବେ ତାହା ତାଙ୍କୁ ଫେରାଇ ଦେବାରେ କିଛି ଅସୁବିଧା ନାହିଁ । କୁରୁସମ୍ରାଟ ଅତ୍ୟନ୍ତ ବିଚାରଶୀଳ ଏବଂ ବିବେକବନ୍ତ ହୋଇ ପାଣ୍ଡବମାନଙ୍କୁ ରାଜ୍ୟର ଅର୍ଦ୍ଧେକ ଦାନ କରି, ସେମାନଙ୍କର ଅଧିକାରକୁ ସମ୍ମାନ ଦେଇ ସାରିଛନ୍ତି ।'' ଉଭୟପକ୍ଷର ସମସ୍ୟା ବହୁ ପୂର୍ବରୁ ତୁଟିଛି । ଏବେ କେବଳ ନୀତି ଓ ଧର୍ମ ରକ୍ଷାର ସମୟ । ଆଶା, କୁରୁରାଜ ତାହା ରକ୍ଷାକରିବେ ।''

କର୍ଣ୍ଣ ଏବଂ ଦୁର୍ଯ୍ୟୋଧନ ରାଗରେ ଜଳିଗଲେଣି । ଦୁର୍ଯ୍ୟୋଧନ କହିଲେ, ''ହେ ପାଣ୍ଡବ ଦୂତ ! ଆପଣ ସୀମା ଲଂଘନ କରୁଛନ୍ତି । ଦୂତର ବାକ୍‌ସୀମା ଏତେ ଦୀର୍ଘ ନୁହେଁ । ରାଜ ସନ୍ଦେଶ ଅର୍ପଣ କରି, ରାଜାଦେଶକୁ ଅପେକ୍ଷା କରିବା ତାଙ୍କର କାମ । କୁରୁରାଜସଭାରେ ଏ ପ୍ରକାର ପ୍ରଗଲ୍‌ଭତା ପାଇଁ ତାଙ୍କୁ ଅଧିକାର ଦେଲାକିଏ ? ସେ ଚୁପ୍ ରହିବା ଦରକାର ।''

ଦ୍ରୁପଦଙ୍କ ପୁରୋହିତ ଏସବୁ ନ ଶୁଣିଲା ପରି ପୁଣି କହିଲେ, ''ହେ କୁରୁପତି ! ରାଜ୍ୟ ହରା ପାଣ୍ଡବମାନଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଇ ଆସନ୍ନ ଯୁଦ୍ଧର ଭୟାବହତାକୁ ଦୂରେଇ ଦିଅନ୍ତୁ । ପାଣ୍ଡବମାନେ ସାମରିକ ଶକ୍ତିରେ ଶକ୍ତିମାନ୍ ହେଲେ ମଧ୍ୟ ସେମାନେ ଶାନ୍ତି ସମାଧାନ ଚାହାନ୍ତି ।

ଭୀଷ୍ମଦେବ କହିଲେ, ''ଏ ପ୍ରସ୍ତାବ ନିଶ୍ଚୟ ଅଭିନନ୍ଦନୀୟ । ଯୁଦ୍ଧ କେବେହେଲେ ସମସ୍ୟା ସମାଧାନ କରେନାହିଁ । ବରଂ ନୂତନ ସମସ୍ୟା ସୃଷ୍ଟିକରେ । ଦ୍ରୁପଦରାଜପରୋହିତ ଯାହାସବୁ କହିଲେ, ସେ ସବୁ ନିଶ୍ଚୟ ସତ୍ୟ, ତେବେ ବ୍ରାହ୍ମଣର ଅହମିକାନେଇ ସେ ଯେପରି କହିଲେ, ତାହା ରାଜସଭାର ପାରମ୍ପରିକ ମର୍ଯ୍ୟାଦା ଲଂଘନ କରିଛି । ଏପରି କଠୋର କଣ୍ଠରେ ସତ୍ୟ ଉପସ୍ଥାପନ କରାଯାଏ ନାହିଁ । ଉଗ୍ରତା ସତ୍ୟକୁ ମଳିନ କରେ । ପାଣ୍ଡବ ମାନଙ୍କର ପିତୃଧନ ଉପରେ ଅଧିକାରକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଏହା ମଧ୍ୟ ଏକ ସରଳ ସତ୍ୟ ।''

''କଦାପି ନୁହେଁ କଦାପି ନୁହେଁ । ଏହା ସତ୍ୟର ଅପଳାପ ବ୍ୟତୀତ ଆଉ କିଛି ନୁହେଁ । ଦ୍ରୁପଦ ପୁରୋହିତଙ୍କ ଯୁକ୍ତିମଧ୍ୟ ଗ୍ରହଣୀୟ ନୁହେଁ । ପାଣ୍ଡବମାନେ ପଶାଖେଳରେ ପରାଜୟ ସ୍ୱୀକାର କରି ଶପଥରକ୍ଷାପାଇଁ ବଣକୁ ଗଲେ । ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସେମାନେ ଆସି ଚୁକ୍ତି ଭଙ୍ଗ କରିଛନ୍ତି । ଯୁଦ୍ଧର ଭୟ ଦେଖାଇ ରାଜ୍ୟ ପାଇବାପାଇଁ ପୁଣି ଦାବି କରୁଛନ୍ତି । ଯଦି ସେମାନଙ୍କର ରାଜ୍ୟଲାଭ ଆଶା ଅଛି, ତେବେ ଶପଥ ଭଙ୍ଗପାଇଁ ସେମାନଙ୍କୁ ପୁଣିଥରେ ବନବାସ ଦଣ୍ଡ ଭୋଗ କରିବାକୁ ପଡ଼ିବ । ଅନ୍ୟାୟ ଭାବରେ ରାଜ୍ୟ ଫେରି ପାଇବାର ପ୍ରଶ୍ନ ଉଠୁନାହିଁ । ଯୁଦ୍ଧ ଡାକରା ଦେଇ, ଥରକୁ ଥର ଶାନ୍ତିପ୍ରସ୍ତାବ ପଠାଇବାଏକ କୌଶଳ, ଆମେ ତାହା ଗ୍ରହଣ କରିବୁ ନାହିଁ ।'' ଏକ ନିଶ୍ୱାସରେ କହିଗଲେ କର୍ଣ୍ଣ । ଦୁର୍ଯ୍ୟୋଧନ ଆନନ୍ଦରେ ଏହାକୁ ସମର୍ଥନ କଲେ ।

ଭୀଷ୍ମ କହିଲେ, ''ହେ ରାଧେୟ ! ଯୁଦ୍ଧ ଭୂମିରେ ତମ ସହିତ ଛଅ ଜଣ ମହାରଥୀଙ୍କୁ ଅର୍ଜୁନ ଯେଉଁ ପରାଭବ ଦେଇଥିଲେ, ତୁମେ କଣ ଏତେ ଶୀଘ୍ର ତାହା ଭୁଲିଗଲଣି । ଆମେ ଯଦି ଏହି ସମୟୋଚିତ ପରାମର୍ଶକୁ ଗ୍ରହଣ ନକରିବା, ତା'ହେଲେ କୁରୁକୁଳର ଧ୍ୱଂସ ଅନିବାର୍ଯ୍ୟ ।

ଧୃତରାଷ୍ଟ୍ର କହିଲେ, ''ହେ ଦ୍ରୁପଦ ଦୂତ ! ମୁଁ ଏପ୍ରସ୍ତାବ ବିଚାରକରି, ଯୁଧିଷ୍ଠିରଙ୍କ ପାଖକୁ ସଞ୍ଜୟଙ୍କୁ ପଠାଇବି । ତାଙ୍କୁ ଏ ସମ୍ବାଦ ଜଣାଇ ଦିଅ ।

# ।। ପାଣ୍ଡବ ପୁରୀରେ ସଂଜୟ ।।

ଉପପ୍ଲବ୍ୟ ନଗରକୁ ଫେରିଆସିଛନ୍ତି ଦ୍ରୁପଦଙ୍କ ପୁରୋଧା । ସମସ୍ତଙ୍କର ଉତ୍କଣ୍ଠାର ଅବସାନ ହୋଇଛି । ଯୁଧିଷ୍ଠିରଙ୍କ ରାଜ ସଭାରେ, ସେ ସମସ୍ତ ଘଟଣା ବର୍ଣ୍ଣନା କଲେ । ପିତାମହ ଭୀଷ୍ମଙ୍କର ଶାନ୍ତି ପ୍ରସ୍ତାବ ପ୍ରତି ଅନୁକୂଳ ମନୋଭାବ, ମହାବୀର କର୍ଣ୍ଣଙ୍କ ପ୍ରତିକୂଳ ମନ୍ତବ୍ୟ, ରାଜା ଧୃତରାଷ୍ଟ୍ରଙ୍କର ରାଜୋଚିତ ଉପଚାର ତଥା କୂଟନୈତିକ ସମ୍ଭାଷଣ ଓ ସଞ୍ଜୟଙ୍କର ପାଣ୍ଡବ ପୁରୀକୁ ଦୂତ ଭାବରେ ଆଗମନର ସମ୍ବାଦ ପ୍ରଭୃତି ।

ଧର୍ମରାଜଯୁଧିଷ୍ଠିର ଏବଂ ପାଣ୍ଡବ ଭାଇମାନେ ଗମ୍ଭୀର ଏବଂ ନିବିଷ୍ଟ ଚିତ୍ତରେ ସବୁକଥା ଶୁଣୁଥାନ୍ତି । ପାଣ୍ଡବ ସଖା ଶ୍ରୀକୃଷ୍ଣ ମଧ୍ୟ ଉପସ୍ଥିତ ଅଛନ୍ତି ସେମାନଙ୍କ ଗହଣରେ । ସବୁଶୁଣି ସାରିବାପରେ ଯୁଧିଷ୍ଠିର ପ୍ରତ୍ୟେକ କଥାର ଅନ୍ତଃସ୍ୱରର ସମୀକ୍ଷା କରୁଥାନ୍ତି ମନେମନେ ।

''ପିତାମହ ଭୀଷ୍ମ ସତ୍ୟ, ଶାନ୍ତି, ଆଉ ନ୍ୟାୟର ଉପାସକ । ଶାନ୍ତିପ୍ରସ୍ତାବ ନିଶ୍ଚୟ ତାଙ୍କୁ ଆନନ୍ଦ ଦେଇଥିବ । ସେ ଭଲରୂପେ ଜାଣନ୍ତି, ଏହା ଦୁର୍ବଳର ଶାନ୍ତି ପ୍ରସ୍ତାବ ନୁହେଁ । ତେବେ ତାଙ୍କର ସମୟୋଚିତ ସଦ୍‌ପରାମର୍ଶ, ଧୃତରାଷ୍ଟ୍ରଙ୍କ ଉପରେ କିଛି ପ୍ରଭାବ କ'ଣ ପକାଇଥିବ ! ସଞ୍ଜୟ ଆସିବାପରେ ହୁଏତ ଏଚିତ୍ର ସ୍ପଷ୍ଟ ହୋଇଯାଇପାରେ । ପିତାମହ, ଦ୍ରୁପଦପୁରୋହିତଙ୍କ ପ୍ରଚଣ୍ଡ ଭାବାବେଗକୁ ପସନ୍ଦ କରିନାହାନ୍ତି । କିନ୍ତୁ ଏହା ଯେ ପାଣ୍ଡବମାନଙ୍କର ଆବେଗର ପ୍ରତିଫଳନ, ସେ କଣ ବୁଝି ପାରିଲେନାହିଁ

ବ୍ରାହ୍ମଣର ଅହମିକା ବୋଲି ମନ୍ତବ୍ୟ ଦେଲେ ! ପ୍ରକାଶଭଙ୍ଗୀର ତ୍ରୁଟୀ ନେଇ ବୋଧ ହୁଏ ଏପ୍ରକାର ସମସ୍ୟା ସୃଷ୍ଟି ହୋଇଛି । କର୍ଣ୍ଣତ ଦୁର୍ଯ୍ୟୋଧନଙ୍କ ମୁଖ ପାତ୍ର । ତାଙ୍କ ପରି ଅହମିକାରେ ଅନ୍ଧ ବ୍ୟକ୍ତିର ଅଭିବ୍ୟକ୍ତିରେ ଶାଳୀନତା ଆସିବ କେଉଁଠୁ ? ଠିକ୍ ଅଛି, ସଞ୍ଜୟ ଆଗମନକୁ ଅପେକ୍ଷା କରାଯାଉ ।''

ଧୃତରାଷ୍ଟ୍ର ସଂଜୟଙ୍କୁ ଟିକିନିଖି ପ୍ରତ୍ୟେକ କଥା ଜଣାଇଛନ୍ତି କ'ଣ କହିବାକୁ ହେବ, କିପରି କହିବାକୁ ହେବ । ସୌଜନ୍ୟ ରକ୍ଷାରବିଧିକୁ ଅନ୍ତରଙ୍ଗ କରିବା ପାଇଁ ତାଙ୍କର ଇଚ୍ଛା । ଦୀର୍ଘ ବନବାସ ଦଣ୍ଡଭୋଗକରି ଫେରିଆସିଥିବା ପାଣ୍ଡବମାନେ କ୍ଳାନ୍ତ ଓ ଜର୍ଜରିତ । ସେମାନଙ୍କର ମାନସିକତା ପ୍ରତି ଯଥାର୍ଥ ସମ୍ମାନ ଦେବା ଉଚିତ ।

ସଂଜୟ ତାଙ୍କର ଯାତ୍ରା ଆରମ୍ଭ କରିଛନ୍ତି 'ଉପପ୍ଲବ୍ୟ' ନଗରକୁ । ଏକ ଦୁରୂହ କର୍ତ୍ତବ୍ୟ ସଂପାଦନ କରିବାକୁ ସେ ଯାଉଛନ୍ତି । ତେବେ ସେ ସାମାନ୍ୟ ବାର୍ତ୍ତା ବାହକ ମାତ୍ର, ରାଜା ଧୃତରାଷ୍ଟ୍ରଙ୍କ ଭାଷାକୁ କେବଳ ପ୍ରତିଧ୍ୱନିତ କରିବା ତାଙ୍କର କର୍ତ୍ତବ୍ୟ । ସେ ରାଜପ୍ରତିନିଧିର କ୍ଷମତା ନେଇ ଯାଉନାହାନ୍ତି । କୌଣସି ପ୍ରଶ୍ନର ସମାଧାନ ମୂଳକ ଉତ୍ତର ସେ ଦେଇପାରିବେ ନାହିଁ । ପରିସ୍ଥିତିକୁ ସମ୍ମୁଖୀନ ହେବାର ଗୁରୁଦାୟିତ୍ୱ ନେଇ ଯାଉଥିଲେ ମଧ୍ୟ, ସମାଧାନର ସୂତ୍ର ସ୍ଥିର କରିବା ଅଧିକାର ତାଙ୍କର ନାହିଁ ।

ସଂଜୟ ଯାଇ ପହଞ୍ଚିଲେ ଉପପ୍ଲବ୍ୟ ନଗରରେ ।

ପ୍ରଥମେ ଯାଇ ସାକ୍ଷାତକଲେ ଶ୍ରୀକୃଷ୍ଣଙ୍କୁ । ଭକ୍ତିପୂତ ପ୍ରଣାମ ଜଣାଇଲେ । କୁରୁରାଜ ଧୃତରାଷ୍ଟ୍ରଙ୍କର ସମ୍ମାନଭରା ଅଭିନନ୍ଦନ ଜ୍ଞାପନ କଲେ । ଶ୍ରୀକୃଷ୍ଣ କୁରୁରାଜାଙ୍କର କୁଶଳ ଜିଜ୍ଞାସା କଲେ । ଉଭୟଙ୍କ ମଧ୍ୟରେ କିଛି ସମୟ ପାଇଁ ଭାବ ବିନିମୟ ହେଲା । ଧୃତରାଷ୍ଟ୍ରଙ୍କୁ ନିଜର ସମ୍ମାନ ଜଣାଇ ଦେବାକୁକହିଲେ ଶ୍ରୀକୃଷ୍ଣ ।

ରାଜସଭା ବସିଥାଏ । ସଂଜୟ ଯୁଧିଷ୍ଠିରଙ୍କୁ ରାଜୋଚିତ ଅଭିନନ୍ଦନ ଜଣାଇବା ପରେ ସମ୍ବୋଧନ କରି କହିଲେ, '' ହେ ଧର୍ମରାଜ ! ଆପଣଙ୍କର ଦର୍ଶନଲାଭ କରି ମୁଁ ନିଜକୁ ପୁଣ୍ୟବାନ୍ ମନେ କରୁଛି । କୁରୁରାଜ ଧୃତରାଷ୍ଟ୍ର ଆପଣଙ୍କର ଶୁଭକାମନା କରି ସମସ୍ତଙ୍କର କୁଶଳ ଜିଜ୍ଞାସା କରିଛନ୍ତି । ପୁଣ୍ୟଶୀଳ ପାଣ୍ଡବଗଣ ଦୀର୍ଘ ବନବାସ ଦୁଃଖ ଅତିକ୍ରମ କରି ପ୍ରତ୍ୟାବର୍ତ୍ତନ କରିଥିବାରୁ ସେ ମଧ୍ୟ ନିଜର ଗଭୀର ସନ୍ତୋଷ ଓ ଆନନ୍ଦ ପ୍ରକାଶ କରିଛନ୍ତି ।''

ଯୁଧିଷ୍ଠିର କହିଲେ, ''ହେ ସଂଜୟ ! ମୋର ଭକ୍ତିପୂତ ପ୍ରଣାମ ପିତାମହ ଭୀଷ୍ମ, କୁରୁସମ୍ରାଟ ଧୃତରାଷ୍ଟ୍ର ଓ ଅନ୍ୟାନ୍ୟ ସମ୍ମାନନୀୟ ଗୁରୁ ଓ ଗୁରୁଜନମାନଙ୍କୁ ଜଣାଇ ଦେବେ । କୌରବ ଭାଇମାନଙ୍କର ମୁଁ ଶୁଭ କାମନାକରେ । ମହାବୀର କର୍ଣ୍ଣ ଓ ମାମୁ ଶକୁନିଙ୍କୁ ମଧ୍ୟ ଆମର ସମ୍ମାନ ଜଣାଇ ଦେବେ । ଉଭୟଙ୍କ ମଧ୍ୟରେ କିଛି ସମୟ ଔପଚାରିକ ବାର୍ତ୍ତା ବିନିମୟ ପରେ, ସଂଜୟ ଧର୍ମରାଜ ଓ ପାଣ୍ଡବମାନଙ୍କୁ ଲକ୍ଷ୍ୟ କରି କହିଲେ,

''ହେ ଧର୍ମରାଜ ! ହେ ପାଣ୍ଡବ ବୃନ୍ଦ ! ଆପଣ ପଠାଇଥିବା ଶାନ୍ତି ପ୍ରସ୍ତାବକୁ କୁରୁଶ୍ରେଷ୍ଠ ଧୃତରାଷ୍ଟ୍ର ଅନ୍ତରର ସହିତ ସ୍ୱାଗତ ଜଣାଇଛନ୍ତି ।''

''ସ୍ୱାଗତ ଜଣାଇଛନ୍ତି କୁରୁରାଜ ! ତା'ହେଲେ ଏକ ଶୁଭ ସମ୍ବାଦ । ଅଯଥା ରକ୍ତକ୍ଷୟ ଓ ନରମେଧ ଯଜ୍ଞର ଅବସାନ ହେଲା । କୁରୁକୁଳ ଆସନ୍ନ ସର୍ବନାଶ କବଳରୁ ରକ୍ଷାପାଇଗଲେ ସଂଜୟ । ଏ ଶୁଭ ସମ୍ବାଦ ପାଇଁ ମୁଁ ତୁମକୁ ଧନ୍ୟବାଦ ଦେଉଛି ।'' କହିଲେ ଯୁଧିଷ୍ଠିର ।

''କୁରୁରାଜ ଆପଣଙ୍କୁ ଅଜାତଶତ୍ରୁ ବୋଲି ସମ୍ବୋଧନ କରିଛନ୍ତି । ଆପଣ ଧର୍ମର ଅବତାର । ଯାହାକିଛି ଘଟି ଯାଉନା କାହିଁକି, ଆପଣ ନିଶ୍ଚୟ ଧର୍ମ ପଥରେ ରହିବେ । ଧର୍ମ ରକ୍ଷାପାଇଁ କର୍ତ୍ତବ୍ୟ ପାଳନ କରିବେ । କୌରବମାନଙ୍କ ପକ୍ଷରେ ଅଛନ୍ତି ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ମହାବୀର କର୍ଣ୍ଣ ପ୍ରଭୃତି । ହୁଏତ ଯୁଦ୍ଧରେ ସେମାନେ ବିଜୟଲାଭ କରିପାରନ୍ତି । ଆପଣଙ୍କ ପକ୍ଷରେ ଅଛନ୍ତି ଅର୍ଜୁନଙ୍କ ପରି ତ୍ରିପୁର ବିଜୟୀ ଯୋଦ୍ଧା । ଅର୍ଜୁନଙ୍କର ସାରଥି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ, ଏହା ବ୍ୟତୀତ ଅଛନ୍ତି ମହାବଳୀ ଭୀମ, ନକୁଳ, ସହଦେବ ମଧ୍ୟ । କେହି କାହାକୁ ଊଣା ନୁହଁନ୍ତି । ଧର୍ମର ଯେ ଜୟ ନହେବ ତା'ନୁହେଁ, ତେବେ ଆପଣ ସେ ସର୍ବନାଶୀ ଯୁଦ୍ଧ ଭିତରକୁ ପ୍ରବେଶ କରିବେ କାହିଁକି ? ଯୁଦ୍ଧ ସର୍ବଗ୍ରାସୀ, ଏହା ମାଧ୍ୟମରେ ଲାଭ କରାଯିବା ବିଜୟ ବିଜୟ ନୁହେଁ । ଯୁଦ୍ଧରେତ ଉଭୟପକ୍ଷର ଧନ,ଜନ, ଓ ଧର୍ମ ବଳ କ୍ଷୟହେବ । ବିଜୟପରେ କାହାକୁ ନେଇ କିଏ ଶାସନ କରିବେ । ଆପଣ ବିବେକଶୀଳ, ପରଦୁଃଖହାରୀ ଧର୍ମ ପାଳକ । ଉଭୟ ପକ୍ଷର ଶାନ୍ତି ପାଇଁ କୁରୁରାଜ ଧୃତରାଷ୍ଟ୍ରଙ୍କ ସହିତ ସନ୍ଧି ସ୍ଥାପନ କରନ୍ତୁ । ଏହାହିଁ ତାଙ୍କର ଇଚ୍ଛା ଓ ଆପଣଙ୍କ ପାଇଁ ବାର୍ତ୍ତା ।''

ମୁଁ କେତେବେଳେ ହେଲେ ଯୁଦ୍ଧ ଚାହେଁ ନାହିଁ ସଞ୍ଜୟ । ସେଇଥିପାଇଁ ଆମ ତରଫରୁ ଶାନ୍ତିର ବାର୍ତ୍ତା ପଠାଯାଇଥିଲା । ସନ୍ଧି ସ୍ଥାପନପାଇଁ ବାର୍ତ୍ତା ପଠାଇ, ସେମାନେ କଣ ଶାନ୍ତି ପ୍ରସ୍ତାବକୁ ଏଇପରି ସ୍ୱୀକାର କରିଛନ୍ତି ? ଧର୍ମ ଆଉନ୍ୟାୟ ପାଇଁ ଆମେତ ତାଙ୍କର ସମସ୍ତ ଅବିଚାରକୁ ମୁଣ୍ଡପାତି ସହିନେଇଛୁ । ଆମକୁ ଆମରାଜ୍ୟ ଫେରାଇ ଦିଅନ୍ତୁ । ଆମେତ ଅଧିକ କିଛି ଆଶା କରୁନାହୁଁ । ଏହା ସମ୍ଭବ ହେଲେ, ଏକ ସାମ୍ରାବ୍ୟ ପ୍ରଳୟରୁ ସମସ୍ତେ ନିଶ୍ଚୟ ରକ୍ଷା ପାଇଯିବେ । ଶାନ୍ତି ଆପେ ଆପେ ସ୍ଥାପିତ ହୋଇ ପାରିବ । ରାଜା ଧୃତରାଷ୍ଟ୍ରଙ୍କର ବିବେକରକ୍ଷକ ଭାବରେ ତୁମର ଯଥେଷ୍ଟ ଖ୍ୟାତି ଅଛି । ତୁମେ ଧର୍ମରକ୍ଷା ସମ୍ବନ୍ଧରେ ଏହି ରାଜସଭାରେ ଆମ୍ଭମାନଙ୍କୁ ଯେତିକି ବୁଝାଇଲ ସେଥିପାଇଁ ଆମେ କୃତଜ୍ଞ । ଅନ୍ତତଃ ଏତିକି ଧୃତରାଷ୍ଟ୍ରଙ୍କୁ ବୁଝାଇ, ତାଙ୍କର ପ୍ରଜ୍ଞାଚକ୍ଷୁ ଉନ୍ମୋଚନ କଲେ ଏ ସମସ୍ୟାର ସମାଧାନ ସହଜରେହୋଇପାରନ୍ତା । ସେ ଅତୀତରେ ଆମକୁ ଯେତେ ଦୁଃଖ ଯନ୍ତ୍ରଣା ଦେଇଛନ୍ତି, ଆମେ ସବୁ ତାହା ଭୁଲିଯାଆନ୍ତୁ । ଅନ୍ୟର ସମ୍ପତ୍ତିକୁ ଅପହରଣ କରି ଧର୍ମ ଓ ନ୍ୟାୟ ବିଷୟରେ ଉପଦେଶ ଓ ପରାମର୍ଶ ଦେବାର ଅର୍ଥ କିଛି ନାହିଁ ସଂଜୟ । ମୋର ଆଉ କିଛି କହିବାର ନାହିଁ । କୃଷ୍ଣ ଉଭୟ କୁରୁ ପାଣ୍ଡବ ମାନଙ୍କର ମଙ୍ଗଳ କାମନା କରନ୍ତି । ତୁମେ ତାଙ୍କର ବହୁମୂଲ୍ୟ ପରାମର୍ଶ ଶୁଣ । ସେ ଯାହା କହିବେ ମୁଁ ତାହା ଗ୍ରହଣ କରିବି ।''

''ହେ ସଂଜୟ ମୋ ଆଖିରେ କୁରୁପାଣ୍ଡବ ଉଭୟେ ସମାନ । ମୁଁ ଉଭୟଙ୍କର ମଙ୍ଗଳ କାମନା କରେ । ରାଜ୍ୟ ଓ କୁଳ ରକ୍ଷା ପାଇଁ ଶାନ୍ତି ସ୍ଥାପନ ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ବ୍ୟବସ୍ଥା ନାହିଁ । ଯେଉଁ ରାଜ୍ୟପାଇଁ ରାଜା ଧୃତରାଷ୍ଟ୍ର ଓ ତାଙ୍କର ଶତପୁତ୍ର ଅନ୍ଧ ଓ ପାଗଳ, ସେହିରାଜ୍ୟରେ ନ୍ୟାୟୋଚିତ

ଅଂଶଲାଭପାଇଁ ପାଣ୍ଡବମାନେ ଶାନ୍ତି ନାମରେନୀରବ ରହିବେ କିପରି ? ପାଣ୍ଡବମାନଙ୍କର ପ୍ରାପ୍ୟ ମିଳିଗଲେ ଆପେ ଆପେ ଶାନ୍ତି ଓ ସନ୍ଧି ସ୍ଥାପିତ ହୋଇଯିବ । ବର୍ତ୍ତମାନ ଆଖି ଆଗରେ ଦୁଇଟି ବାଟ, ଶାନ୍ତି ଆଉଯୁଦ୍ଧ । କୁରୁସମ୍ରାଟ ଧୃତରାଷ୍ଟ୍ରଙ୍କ ଉପରେ ନିର୍ଭର କରୁଛି, ସେ କାହାକୁ ଗ୍ରହଣ କରିବେ ଓ କାହାକୁ ପରିହାର କରିବେ । ଭାବୁଛି, ମୁଁ ନିଜେ ଯାଇ ତାଙ୍କୁ ଏସବୁ ବୁଝାଇବି ।''

ଯୁଧିଷ୍ଠିର କହିଲେ, ''ତୁମେତ କେଶବଙ୍କ ଉପଦେଶ ଶୁଣିଲ । ହସ୍ତିନାପୁରକୁ ଫେରିଯାଇ କୁରୁଶ୍ରେଷ୍ଠଙ୍କର ହୃଦୟର ପରିବର୍ତ୍ତନ କର । ପିତାମହ ଭୀଷ୍ମଙ୍କୁ କୁହ, ସେ ଶାନ୍ତିର ପୂଜାରୀ, ଶାନ୍ତନୁ ବଂଶକୁ ନିଜ ପୁଣ୍ୟ ପ୍ରଭାବରେ ଧ୍ୱଂସ ମୁଖରୁ ରକ୍ଷାକରିବାର ଉପାୟ ସେ ସ୍ଥିର କରନ୍ତୁ । କୁରୁସମ୍ରାଟଙ୍କୁ କହିବ, ନିଜହତାରେ ଯାହାକୁ ସେ ଦିନେ ରାଜଗାଦି ଅର୍ପଣ କରିଥିଲେ ତାଙ୍କୁ ରାଜ୍ୟହରା କରି ଦାଣ୍ଡର ଭିକାରି କରିବା, ନୀତି ସମ୍ମତ ନୁହେଁ । କିଛି ନହେଲେ ପାଞ୍ଚ ଭାଇଙ୍କୁ ସର୍ବନିମ୍ନ ପାଞ୍ଚଖଣ୍ଡ ଗ୍ରାମ ସେ ଦେଇ ପାରିଲେ, ପାଣ୍ଡବମାନେ କୌଣସି ମତେ ଚଳି ଯାଆନ୍ତେ । କାକାବିଦୁରଙ୍କୁ କହିବ, ସେ ରାଜା ଧୃତରାଷ୍ଟ୍ରଙ୍କୁ ଧ୍ୱଂସ ପଥରୁ ରକ୍ଷାକରନ୍ତୁ । ପାଣ୍ଡବମାନେ ଶାନ୍ତି ତଥା ସମ୍ମାନର ସହିତ ରହିବାକୁ ସେ ଉପାୟ ସ୍ଥିର କରନ୍ତୁ । ଶାନ୍ତି ଆଉ ଯୁଦ୍ଧ, ଉଭୟ ପାଇଁ ଆମେ ପ୍ରସ୍ତୁତ । ତଥାପି ଆମେ ଶାନ୍ତି ଚାହୁଁ, ଶ୍ମଶାନର ଶାନ୍ତି ନୁହେଁ, ଜୀବନକୁ ଜୀବନ ପରି ଉପଭୋଗ କରିବାର ଶାନ୍ତି ।'' ହସ୍ତିନାକୁ ଫେରିଆସିଲେ ସଞ୍ଜୟ

## ।। ଅନିଦ୍ର ରଜନୀ ।।

ସଂଜୟଙ୍କୁ ଉପପ୍ଲବ୍ୟ ନଗରକୁ ପଠାଇ ଦେବାପରେ ଧୃତରାଷ୍ଟ୍ରଙ୍କ ଆଖିରେ ନିଦ ନାହିଁ । ସେ ଦୁଃଶ୍ଚିନ୍ତାରେ ଅତିଷ୍ଠ ହୋଇ ଉଠିଛନ୍ତି । ସାରା ରାତି ଜାଗ୍ରତ ଅଛନ୍ତି କୁରୁରାଜ । ବିଚାର ବିମର୍ଶ ପାଇଁ ବିଦୁରଙ୍କୁ ଡକାଇ ଆଣିଛନ୍ତି ପାଖକୁ । ବିଦୁର ରାତିସାରା ତାଙ୍କୁ ବୁଝାଇଛନ୍ତି ନାନା ନୀତି କଥାକହି ।

''ମହାରାଜା ! ଆପଣ ଏଇ ହାତରେ ପାଣ୍ଡବମାନଙ୍କୁ ଲାଳନ ପାଳନ କରି ମଣିଷ କରିଛନ୍ତି । ପାଣ୍ଡବମାନେ କୁରୁରାଜାଙ୍କ ଜୀବନର ଏକ ଅଂଶ । ସେମାନଙ୍କୁ ରାଜଧର୍ମ ଓ କ୍ଷାତ୍ରଧର୍ମ ଶିଖାଇବାର ବ୍ୟବସ୍ଥା କରିଛନ୍ତି ଆପଣ । ନିଜ ରାଜ୍ୟର ଅର୍ଦ୍ଧାଂଶ ସ୍ୱତଃ ପ୍ରବୃତ୍ତ ହୋଇ ଆପଣ ତାଙ୍କୁ ଦେଇଥିଲେ ଶାନ୍ତି ଓ ସହାବସ୍ଥାନ ପାଇଁ । ଧର୍ମରାଜ ଯୁଧିଷ୍ଠିରଙ୍କୁ ନିଜ ହାତରେ ଦିନେ ଅଭିଷେକ କରିଥିଲେ ଯୁବରାଜ ପଦରେ । ଏତେ ପ୍ରିୟ ଏତେ ଆପଣାର ଏତେ ଆତ୍ମୀୟ ମାନଙ୍କୁ କୁରୁରାଜ ପର କରି ଦେଇ ପାରିବେତ ! ନିଜର ପରିବାର ସହିତ ଯୁଦ୍ଧ କରିବାର ଧାରଣା ଅତ୍ୟନ୍ତ ମାରାତ୍ମକ । ସେମାନେତ ଅଧିକ କିଛି ମାଗୁନାହାନ୍ତି । ଆପଣ ଯାହା ଦେଇଥିଲେ ଅନ୍ତତଃ ସେତିକି ଦେଇଦେଲେ, ସୁରୁଖୁରୁରେ ସବୁ ସମସ୍ୟା ସମାଧାନ ହୋଇଯିବ । ପିତାର ହୃଦୟ ନେଇ ବିଚାର କରନ୍ତୁ । ରାଜ ଶକ୍ତି ବଳରେ ସମସ୍ୟାର ସମାଧାନ କରନ୍ତୁ ।''

ପୁଣି କହିଲେ ....

''ଆପଣ ସେମାନଙ୍କୁ ତାଙ୍କ ଅଂଶ ଦେଇଦେଲେ ଆପଣଙ୍କ ପିଲାମାନଙ୍କୁ ରାଜୋଚିତ ଜୀବନ ଯାପନ ପାଇଁ କୌଣସି ଅସୁବିଧା ରହିବନାହିଁ । ଏହାଦ୍ୱାରା ପ୍ରାଚୁର୍ଯ୍ୟ କିଛି କମିଯିବନାହିଁ । ତାଙ୍କ ସମ୍ପତ୍ତି ସେମାନେ ପାଇବେ । ସୁଖ ଶାନ୍ତିରେ ଉଭୟ ପକ୍ଷ ରହିବେ । ଦୁଇ ରାଜ୍ୟ ମଧ୍ୟରେ ଏକତା ଓ ସଂହତି ରହିବ । ପାଣ୍ଡବମାନେ, ଶାନ୍ତିରେ ରହିଲେ ଆପଣଙ୍କର ଦୁର୍ଗପରି ସେମାନେ ନିରାପତ୍ତା ରକ୍ଷାକରିବେ । କଥାରେ ଅଛି, ସେ ପରସ୍ୱ ଅପହରଣ କରେ ଏବଂ ଯେ ଦୁର୍ବଳ ହୋଇ ସବଳର ଭୟରେ ସର୍ବଦା ଶଙ୍କାକୁଳିତ, ଏ ଉଭୟଙ୍କୁ ରାତିରେ କେବେହେଲେ ନିଦ ହୁଏନାହିଁ ।''

ତା'ହେଲେ ତୁମେ କହୁଛ '' ମୁଁ ସେମାନଙ୍କର ସମ୍ପତ୍ତି ଅପହରଣ କରିଛି ବୋଲି ?'' ଏହା ମୋର ଉକ୍ତି ନୁହେଁ କୁରୁରାଜ ! ଶାସ୍ତ୍ର ବାଣୀ ମୁଁ କହୁଛି । ତେବେ ଆପଣଙ୍କ ପାଖରେ ଏ ପ୍ରଶ୍ନ ଉଠୁନାହିଁ । ଆପଣ ପାଣ୍ଡବମାନଙ୍କ ରାଜ୍ୟ ନିଜ ଅକ୍ତିଆରରେ ରଖିଛନ୍ତି । ସୁରକ୍ଷା ଦେଇଛନ୍ତି ସେମାନଙ୍କ ଅନୁପସ୍ଥିତିରେ । ଏବେ ଆମେ ସେମାନଙ୍କର ସଂପତ୍ତିକୁ ପାଖରେ ରଖି ଅସନ୍ତୋଷର ବୋଝ ବହନ କରିବା କାହିଁକି ? ସନ୍ତୋଷ ମଣିଷର ଅକ୍ଷୟ ସମ୍ପତ୍ତି । ମୋର କହିବାର ଅର୍ଥ, ଆପଣ ପାଣ୍ଡବଙ୍କ ସମ୍ପତ୍ତି ଅପହରଣ କରିନାହାନ୍ତି କି ତାଙ୍କ ତୁଳନାରେ ଦୁର୍ବଳ ନୁହଁନ୍ତି ମଧ୍ୟ । ତେବେ ରାତିରେ ନିଦହେଉନି କାହିଁକି ?''

''ହେ କୁରୁଶ୍ରେଷ୍ଠ ! ଆପଣଙ୍କ ପରି ଜ୍ଞାନ ଦୀପ୍ତ ବିଜ୍ଞ ବ୍ୟକ୍ତିଙ୍କୁ ମୁଁ ଅଧିକ କଣ କହିବି । ଆପର ପାଣ୍ଡବ ମାନଙ୍କ ପ୍ରାପ୍ୟ ଦେଇଦେଇ ନିଜ ପରିସ୍ଥିତିରେ ସନ୍ତୁଷ୍ଟ ରହିଲେ ସମସ୍ୟାର ସମାଧାନ ହୋଇଯିବ । ସୁଖନିଦ୍ରା ଓ ଶାନ୍ତି ଆପେ ଆପେ ମିଳିଯିବ ।''

ଶେଷରେ ମୁଁ ଏତିକି କହିବାକୁ ଚାହେଁ, ହେ କୁରୁରାଜ ! ଆପଣ ଭଲରୂପେ ଜାଣନ୍ତି, ଅହିଂସା ପରମଧର୍ମ । ଏହି ଶାସ୍ତ୍ର ବାଣୀ ଏ' ଅଶାନ୍ତ ସଂସାରକୁ ଆଜି ଶାନ୍ତିରେ ଚଳାଉଛି । ଅହିଂସ ଆଚରଣ ଦୁର୍ବଳର ଅସ୍ତ୍ର ନୁହେଁ, ଏହା ସବଳ ଓ ଶକ୍ତିମାନର ଅସ୍ତ୍ର । ଆପଣ ମନେ ରଖନ୍ତୁ ''ଆତ୍ମା ଏକ ନଦୀ, ସତ୍ୟ ତା'ର ଜଳ, ଧୈର୍ଯ୍ୟ ତା'ର କଳ, ଦୟା ତା'ର ତରଙ୍ଗ ଓ ପୁଣ୍ୟ ତାର ତୀର୍ଥ ସଦୃଶ । ଆତ୍ମାର ସମୃଦ୍ଧି ପାଇଁ ମନୁଷ୍ୟ ଚେଷ୍ଟିତ ହେବା ଉଚିତ । ''

ଏଇପରି ଆଲୋଚନା ମଧ୍ୟରେ ଅନିଦ୍ରରଜନୀ ବିତିଗଲା ।

ସକାଳେ ସଂଜୟ ଆସି ଧୃତରାଷ୍ଟ୍ରଙ୍କୁ ସାକ୍ଷାତ କଲେ । ପାଣ୍ଡବମାନେ ଯୁଦ୍ଧପାଇଁ କିପରି ପ୍ରସ୍ତୁତ ହୋଇଛନ୍ତି ସେ ସ୍ୱଚକ୍ଷୁରେ ଦେଖି ଆସିଥିବା ଦୃଶ୍ୟ ବର୍ଣ୍ଣନା କଲେ । ସେମାନଙ୍କ ସାମରିକ ପ୍ରସ୍ତୁତି କୌରବ ମାନଙ୍କଠାରୁ କୌଣସି ଦିଗରେ କମ୍ ନୁହେଁ ବୋଲି କହିଲେ । ଯୁଧିଷ୍ଠିରଙ୍କ ସହିତ ଯାହାସବୁ ଆଲୋଚନା ହୋଇଥିଲା ତା'ର ଟିକିନିଖି ସୂଚନା ଦେଲେ । ଭୀମ, ଅର୍ଜୁନ, ନକୁଳ ସହଦେବ ଯୁଦ୍ଧ ପାଇଁ ଗୋଡ଼ ଟେକି ବସିଛନ୍ତି । ଧର୍ମରାଜ ଯୁଧିଷ୍ଠିର ଯୁଦ୍ଧର ସମର୍ଥକ ନୁହଁନ୍ତି ତେବେ ଶାନ୍ତି ଉଦ୍ୟମ ବିଫଳ ହେଲେ ଯୁଦ୍ଧ ବ୍ୟତୀତ ତାଙ୍କ ପାଖରେ ଅନ୍ୟ କିଛି ପନ୍ଥା ନାହିଁ ବୋଲି ସେ କହିଛନ୍ତି ।''

''ସନ୍ଧି ପ୍ରସ୍ତାବ ସେମାନେ ତା'ହେଲେ ଗ୍ରହଣ କରି ନାହାନ୍ତି ସଂଜୟ ?'' ''ତାଙ୍କ ମତରେ ନିଜର ପ୍ରାପ୍ୟକୁ ପରିହାର କରି କେବଳ ବଞ୍ଚି ରହିବା ପାଇଁ ସନ୍ଧିକରିବାର ପ୍ରଶ୍ନ ଉଠୁନାହିଁ । ସେମାନେ

ରାଜପୁତ୍ର ହୋଇ ମଧ୍ୟ ଶପଥ ରକ୍ଷାପାଇଁ ଦୀର୍ଘ ସମୟ ବନବାସ ଦଣ୍ଡ ଭୋଗକଲେ । ବର୍ତ୍ତମାନ ନିଜ ରାଜ୍ୟ ଫେରି ପାଇବାର ଅଧିକାରରୁ ସେମାନଙ୍କୁ କେହି ବଞ୍ଚିତ କରି ପାରିବେ ନାହିଁ । ତାଙ୍କ ଆଖି ଆଗରେ କୌରବମାନେ ପାଣ୍ଡବରାଜ୍ୟ ଶାସନ କରିବାକୁ ସେ ବରଦାସ୍ତ କରିବେ ନାହିଁ । ଏଥିପାଇଁ ଆବଶ୍ୟକ ହେଲେ ଯୁଦ୍ଧ ହେବ ଏବଂ ପ୍ରଳୟ ଯଜ୍ଞରେ କୁରୁକୁଳର ଶେଷ ଆହୁତି ପଡ଼ିବ । କୁରୁରାଜ ଧୃତରାଷ୍ଟ୍ରଙ୍କ ଉପରେ ନିର୍ଭର କରୁଛି ହୁଏତ ସେ ଶାନ୍ତିର ପଥ ବାଛି ନେବେ କିମ୍ବା ପ୍ରଳୟକୁ ଆମନ୍ତ୍ରଣ କରିବେ । ସିଦ୍ଧାନ୍ତ ନେବାର ସୁଯୋଗ ଦେଇଛନ୍ତି ସେମାନେ କୌରବମାନଙ୍କୁ । ପାଣ୍ଡବମାନେ ଉଭୟ ଶାନ୍ତି ଏବଂ ଯୁଦ୍ଧ ଉଭୟ ପାଇଁ ପ୍ରସ୍ତୁତ, ତେବେ ଶାନ୍ତିକୁ ସେମାନେ ଅଧିକ ସମ୍ମାନ ଦିଅନ୍ତି ।''

ଦୁର୍ଯ୍ୟୋଧନ ଉପସ୍ଥିତ ଥିଲେ ରାଜ ସଭାରେ । ଏହା ଶୁଣିଲାକ୍ଷଣି ଉତ୍‌କ୍ଷିପ୍ତ ହୋଇ କହିଲେ, ''ହେ ସଂଜୟ ! ପାଣ୍ଡବମାନେ ଏତେ ଦର୍ପରେ ଯେ ଏତେ ଭୟଙ୍କର କଥା କହିଥିବେ ମୁଁ ବିଶ୍ୱାସ କରି ପାରୁନି । ଦ୍ୟୂତକ୍ରୀଡ଼ାରୁ ସେମାନଙ୍କର ପରାଜୟ ପର୍ବ ଆରମ୍ଭ ହୋଇଛି । ପରାଭବର ଗ୍ଳାନି ମଧ୍ୟରେ ସେମାନଙ୍କର ସମସ୍ତ ଦର୍ପ ଚୂର୍ଣ୍ଣୀଭୂତ । ମୋର ଧାରଣା ତୁମେ ପାଣ୍ଡବମାନଙ୍କୁ ଭଲପାଅତ, ସେଥିପାଇଁ ତମରି ମନର କଥା ଗୁଡ଼ାକ ସେମାନଙ୍କର ମତ ବୋଲି ବୋଧହୁଏ ପ୍ରକାଶ କରୁଛ । ଏପରି କଥା କହିବାର ଆସ୍ପର୍ଦ୍ଧା ପାଣ୍ଡବମାନଙ୍କର ନାହିଁ ।''

ଧୃତରାଷ୍ଟ୍ର ବାଧା ଦେଇ କହିଲେ, ''ଏହା ନିଶ୍ଚୟ ପାଣ୍ଡପମାନଙ୍କର ଉକ୍ତି ଏବଂ ଏ ଉକ୍ତିର ଯଥାର୍ଥତା ମଧ୍ୟ ରହିଛି । ପାଣ୍ଡବ ମାନଙ୍କର ସାମର୍ଥ୍ୟ ଯେ ନିଶ୍ଚୟ ଅଧିକ ଏଥିରେ ସନ୍ଦେହ କରିବାର କିଛି ନାହିଁ । ଅତୀତର ବିଭିନ୍ନ ଘଟଣାରେ ଏହା ପ୍ରମାଣିତ ହୋଇ ସାରିଛି । ଅଗ୍ନି,ଇନ୍ଦ୍ର, ବାୟୁ ଓ ସୂର୍ଯ୍ୟ ଦେବତା ପ୍ରଭୃତି ଦେବଗଣ ପାଣ୍ଡବମାନଙ୍କର ସହାୟକ । ନାରାୟଣ ରୂପୀ ସ୍ୱୟଂ ଶ୍ରୀକୃଷ୍ଣ ତାଙ୍କର ସଖା ଓ ଦିଗ୍‌ଦର୍ଶକ । ସେମାନଙ୍କ ସପକ୍ଷରେ ଅଛି ଦୈବିବଳ । ସେମାନଙ୍କ ହାତରେ ଅଛି ଦେବତା ମାନଙ୍କର ଅସ୍ତ୍ର । ସେମାନେ ମନ୍ତ୍ର ନିପୁଣ ଓ ଅସମ୍ଭବକୁ ସମ୍ଭବ କରିବାର ଶକ୍ତି ସେମାନଙ୍କ ଠାରେ ଅଧିକ ।''

''ଆପଣ ଏ କଣ କହୁଛନ୍ତି ମହାରାଜ !''

''ମୁଁ ଠିକ୍ କହୁଛି ବତ୍ସ ଦୁର୍ଯ୍ୟୋଧନ ! ମୋର ଅନ୍ତରର ନିଭୃତ କଥାଗୁଡ଼ିକ କହୁଛି । ମୁଁ ଅନୁଭବ କରିଛି, ଅର୍ଜୁନ ଏକ ଦୁର୍ଜ୍ଜୟ ବୀର । ତ୍ରିଭୁବନର କୌଣସି ଶକ୍ତି ତାଙ୍କୁ ପରାହତ କରିପାରିବନି । ଶ୍ରୀକୃଷ୍ଣଙ୍କ ଚକ୍ରର ଅସମ୍ଭବ ଶକ୍ତି ତୁମେ କ'ଣ ଦେଖି ନାହଁ । ଅବଶ୍ୟ ସେ ଆସନ୍ନ ଯୁଦ୍ଧରେ ଅସ୍ତ୍ରଧାରଣ କରିବେ ନାହିଁ ବୋଲି ଶପଥ କରିଛନ୍ତି କିନ୍ତୁ ସେ ଯେ ଜଣେ କୁଟିଳ କୂଟନୀତିଜ୍ଞ ଏହା କଣ ଅସ୍ୱୀକାର କରାଯାଇ ପାରିବ । ଉପସ୍ଥିତ କ୍ଷେତ୍ରରେ ପଣ୍ଡବମାନଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଲେ ବରଂ କୁରୁକୁଳର କୀର୍ତ୍ତି ବଢ଼ିବ । ଏକ ନିଶ୍ଚିତ ମହାପ୍ରଳୟରୁ ସମସ୍ତେ ରକ୍ଷାପାଇଯିବେ । ତୁମେମାନେ, ଉଭୟେ ଭାଇ ଏବଂ ଭାଇ ଭାଇ ପରି ଚଳିବା ଦ୍ୱାରା ବରଂ ଅଧିକ ଲାଭ ହେବ । ମୋ କଥାକୁ ହୃଦୟଙ୍ଗମ କର ।''

ଦୁର୍ଯ୍ୟୋଧନ ଦୃପ୍ତ କଣ୍ଠରେ କହିଲେ, ''ପିତା ! ଆପଣ ଏତେ ବ୍ୟସ୍ତ ଓ ବିବ୍ରତ ହେବାର କୌଣସି କାରଣ ନାହିଁ । କୁରୁକୁଳର ସମାର୍ଥ୍ୟ ଉପରେ ଆପଣ ବିଶ୍ୱାସ ସ୍ଥାପନ କରନ୍ତୁ । ମହାନ୍ ରଣ କୌଶଳୀ

ଶତ ଭ୍ରାତ କୌରବମାନେ ଗୋଟିଏ ଗୋଟିଏ ଦୁର୍ଜ୍ଜୟ ଦୁର୍ଗ । ସେମାନଙ୍କର ନିରାପତ୍ତା ରକ୍ଷାଲାଗି କୁରୁରାଜ ସନ୍ଦିଗ୍ଧ ହେବାର କୌଣସି କାରଣ ନାହିଁ । ନିଜର ପରାକ୍ରମ ବିଷୟରେ ସେମାନେ ସମ୍ପୂର୍ଣ୍ଣ ସଚେତନ । ଯୁଦ୍ଧ ହେଲେ ଆମେ ନିଶ୍ଚୟ ବିଜୟ ବୈଜୟନ୍ତୀ ଉଡ଼ାଇବୁ । ସେମାନଙ୍କର ଶାନ୍ତି ପ୍ରସ୍ତାବର ମୂଳତତ୍ତ୍ୱକୁ ଆପଣ ସମୀକ୍ଷା କରନ୍ତୁ ମହାରାଜ ! ଦେଖିବେ, ତା ଭିତରେ ପରାଜୟର କରୁଣ ସ୍ୱର କିପରି ପ୍ରଚ୍ଛନ୍ନ ଭାବରେ ଆତ୍ମଗୋପନ କରିଛି ।''

''ପରାଜୟର ସ୍ୱର ?''

ହଁ ନିଶ୍ଚୟ ପିତା, ନିଶ୍ଚୟ । ନିଜର ସଂପୂର୍ଣ୍ଣ ରାଜ୍ୟ ବଦଳରେ ମାତ୍ର ପାଞ୍ଚଖଣ୍ଡ ଗ୍ରାମ ପାଇବାପାଇଁ ବର୍ତ୍ତମାନ ସେମାନେ ବ୍ୟାକୁଳତା ପ୍ରକାଶ କଲେଣି । ଏହା କଣ ସେମାନଙ୍କର ଦୁର୍ବଳତାର ଯଥେଷ୍ଟ ସୂଚନା ନୁହେଁ । ବାହୁରେ ଯଦି ଏତେ ବଳଅଛି, ପୌରୁଷର ଯଦି ଏତେ ପରାକ୍ରମ ଅଛି, ରାଜ୍ୟ ଲୋଭକୁ ପରିହାର କରି ସାମାନ୍ୟ କେତେଖଣ୍ଡ ଗ୍ରାମଲାଭ ପାଇଁ ସେମାନେ ସଂଶୋଧିତ ପ୍ରସ୍ତାବ ପଠାଇଛନ୍ତି କାହିଁକି ? ମନ୍ତ୍ରବଳ ବିଷୟରେ ଚିନ୍ତିତ ହେବାର କୌଣସି କାରଣ ନାହିଁ । ମୁଁ ମଧ୍ୟ ମନ୍ତ୍ରଶକ୍ତିରେ ଶକ୍ତିଶାଳୀ । ଅସମ୍ଭବକୁ ସମ୍ଭବ କରିପାରିବି । ଆବଶ୍ୟକ ହେଲେ ଜଳରାଶିକୁ ସ୍ତମ୍ଭନ କରିବାର ଶକ୍ତି ମୋର ଅଛି । ମନ୍ତ୍ର ବଳରେ ହିଂସ୍ର ଜୀବଜନ୍ତୁଙ୍କୁ ମଧ୍ୟ ମୁଁ ବଶୀଭୂତ କରିଦେଇପାରେ । ଦେବତାମାନେ ଆମ୍ଭ ମାନଙ୍କ ପ୍ରତି ଅସନ୍ତୁଷ୍ଟ ନୁହନ୍ତି । ପାଣ୍ଡବମାନଙ୍କ ପ୍ରତି ସେମାନଙ୍କର ଯଦି ଶୁଭ ଦୃଷ୍ଟି ଥାଆନ୍ତା ତା'ହେଲେ ସେମାନେ ତେରବର୍ଷ ପର୍ଯ୍ୟନ୍ତ ବନବାସ ଦଣ୍ଡ ଭୋଗି ନଥାନ୍ତେ । ହେ ରାଜନ୍ ! ମନମଧ୍ୟରୁ ଅଯଥା ଆଶଙ୍କା ଦୂର କରନ୍ତୁ । ପାଣ୍ଡବମାନେ ଆମ ସହିତ ସଂଘର୍ଷକଲେ ନିଶ୍ଚୟ ବିନାଶ ପ୍ରାପ୍ତ ହେବେ । କ୍ଳିବ ପାଣ୍ଡବମାନଙ୍କର ଶାନ୍ତି ପ୍ରସ୍ତାବକୁ ମୁଁ ସମର୍ଥନ କରେନାହିଁ । ବିନାଯୁଦ୍ଧରେ ସୂଚ୍ୟଗ୍ର ପରିମିତ ସ୍ଥାନ ମଧ୍ୟ ମୁଁ ସେମାନଙ୍କୁ ଦେବି ନାହିଁ । ଏହା କହି ସେ ରାଜସଭା ପରିତ୍ୟାଗ କରି ଚାଲିଗଲେ ।

ଏ ସଂକ୍ରାନ୍ତରେ, ବ୍ୟାସକୃତ ମହାଭାରତରେ ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି ।

''ଯାବଦ୍ଧି ସୂଚ୍ୟାସ୍ତୀକ୍ଷ୍ଣାୟା ବିଧ୍ୟେଦଗ୍ରେଣ ମାରିଷ
ତାବଦପ୍ୟ ପରିତ୍ୟାଜ୍ୟାଂ ଭୂମେର୍ନ୍ନ ପାଣ୍ଡବାନ୍ ପ୍ରତି ।।''

ରାଜା ଧୃତରାଷ୍ଟ୍ର ସବୁ ଶୁଣିସାରିବା ପରେ ଗମ୍ଭୀର ହୋଇଗଲେ । ପୁତ୍ରସ୍ନେହ ରେ ଅନ୍ଧ ହେଲେ ମଧ୍ୟ ତାଙ୍କର କଣ୍ଠଥରାଇ ଏକ ଅସ୍ଫୁଟ ଗୁଞ୍ଜନ ବାହାରିଆସିଲା, ''ମଣିଷର ଇଚ୍ଛାଶକ୍ତି ସବୁ କ୍ଷେତ୍ରରେ ବଳିୟାନ୍ ନୁହେଁ, ଦୈବୀ ଶକ୍ତି ପ୍ରବଳ ।'' ବୁକୁଥରାଇ ବାହାରି ଆସିଲା ଏକ ଦୀର୍ଘ ନିଶ୍ୱାସ । ସେ ଶୂନ୍ୟ ଆକାଶକୁ ଶୂନ୍ୟ ଚକ୍ଷୁରେ ଚାହିଁ ରହିଲେ । ସତେ ଯେପରି ତାଙ୍କର ହୃଦୟ ଆଜି ଶୂନ୍ୟତାର ସାଗରଟିଏ ।

# ।। କୁରୁସଭାରେ ଶାନ୍ତିଦୂତ ଶ୍ରୀକୃଷ୍ଣ ।।

ସଂଜୟ ଫେରିଗଲାପରେ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ କହିଲେ, ''ହେ ଦ୍ୱାରକାନାଥ ବର୍ତ୍ତମାନର ସଂକଟମୟ ପରିସ୍ଥିତିରେ ଆପଣହିଁ ଏକମାତ୍ର ଭରସା । ଧୃତରାଷ୍ଟ୍ର ଓ ତାଙ୍କ ପୁତ୍ରମାନଙ୍କର ଇଚ୍ଛା ବିଷୟରେ ଅସ୍ପଷ୍ଟ ହୋଇ ଆଉ କିଛି ନାହିଁ । ଆମର ମନୋଭାବ ଆପଣଙ୍କୁ ଅଜଣା ନୁହେଁ । ସଂଜୟ ହେଉଛନ୍ତି ଧୃତରାଷ୍ଟ୍ରଙ୍କ ଆତ୍ମା ସ୍ୱରୂପ । ତାଙ୍କର ସ୍ୱର ଧୃତରାଷ୍ଟ୍ରଙ୍କ ସ୍ୱରର ପ୍ରତଧ୍ୱନି ମାତ୍ର । କୁରୁରାଜ ପ୍ରଲୁବ୍ଧ ହୋଇ ଅତୀତର ବିବେକ ସମ୍ମତ କର୍ତ୍ତବ୍ୟକୁ ଭୁଲିଛନ୍ତି । ରାଜ୍ୟ ଲୋଭରେ ବର୍ତ୍ତମାନର ପବିତ୍ର ରାଜଧର୍ମକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଛନ୍ତି ।''

ଶ୍ରୀକୃଷ୍ଣ କହିଲେ, ''ହଁ, ତାହାହିଁ ମୋର ଧାରଣା ।''

'' କେବଳ ସେତିକି ନୁହେଁ ବାସୁଦେବ ! ସବୁଠାରୁ ଆଶ୍ଚର୍ଯ୍ୟ କଥା ଯେ, ପାଣ୍ଡବମାନଙ୍କୁ ସେମାନଙ୍କର ରାଜ୍ୟ ଦାନ ନ କରି ସେ ଶାନ୍ତି ପାଇଁ ସନ୍ଧି ପ୍ରସ୍ତାବ ବାଢ଼ିଛନ୍ତି । ପାଣ୍ଡବମାନଙ୍କୁ ପ୍ରବର୍ତ୍ତାଇବାକୁ ସେ ସଂଜୟଙ୍କୁ ଦୂତ ରୂପେ ପଠାଇଛନ୍ତି । ମୁଁ ତ ସର୍ବନିମ୍ନ ପ୍ରସ୍ତାବ ପଠାଇଥିଲି, ପାଞ୍ଚ ଭାଇ ପାଇଁ ପାଞ୍ଚଖଣ୍ଡ ଗାଁ ଦେଲେ ଆମେ ସନ୍ତୁଷ୍ଟ ହେବୁ । ତାହା ବୋଧ ହୁଏ ଗ୍ରହଣଯୋଗ୍ୟ ହେଲାନାହିଁ । ମନେ ହୁଏ, ଏହାକୁ ସେମାନେ ଆମର ଦୁର୍ବଳତା ବୋଲି ବିଚାରକଲେ ।

ହେ ମଧୁସୂଦନ ! ଭରତବଂଶର ଧ୍ୱଂସ ଆମେ ଚାହୁଁ ନାହିଁ । ଆମ ରାଜ୍ୟ ପଛକେ ଆମକୁ ନମିକୁ କେବଳ, ଅବିସ୍ଥଳ, ବୃକସ୍ଥଳ, ମାକନ୍ଦୀ, ବାରଣାବତ ଓ ଅନ୍ୟକୌଣସି ଏକ ଗ୍ରାମ ମିଳିଲେ ଆମେ ପାଞ୍ଚଭାଇ ଏକାଠି ରହିବୁ । ଆପଣ ଦୟାକରି ଅନ୍ତତଃ ସେତିକି ବ୍ୟବସ୍ଥା କରି ଦିଅନ୍ତୁ ।''

ଶ୍ରୀକୃଷ୍ଣ କହିଲେ, ''ଠିକ ଅଛି, ତୁମ ଉଭୟକୁଳର ମଙ୍ଗଳ ପାଇଁ ମୁଁ ହସ୍ତିନାପୁରକୁ ଯିବି । ବିନାଯୁଦ୍ଧରେ ତୁମେ କିପରି ନିଜର ଲକ୍ଷ୍ୟ ହାସଲ କରି ପାରିବ ସେଥିପାଇଁ ମୁଁ ଧୃତରାଷ୍ଟ୍ର ଓ ତାଙ୍କର ଅବାଧ୍ୟ ପୁତ୍ରମାନଙ୍କୁ ବୁଝାଇବି । ଏଥିରେ ସଫଳ ହେଲେ ଏକ ନିଶ୍ଚୟ ପ୍ରଳୟରୁ ସମସ୍ତେ ରକ୍ଷା ପାଇଯିବେ । ଯୁଦ୍ଧର ହାରଜିତ୍ ଧର୍ମ ବଳ ଉପରେ ନିର୍ଭର କରେ, ଅସ୍ତ୍ର ବଳ ଉପରେ ନୁହେଁ ।''

''ମୁଁ ବି ସେଇପରି ଭାବୁଛି । କୌଣସି ମତେ ଯୁଦ୍ଧକୁ ଏଡ଼ାଯାଇ ସମସ୍ୟା ସମାଧାନ କରାଯାଇପାରିଲେ ସବୁ ଦିଗରୁ ମଙ୍ଗଳ ହୁଅନ୍ତା । ସେମାନଙ୍କର କଣ ସତରେ ସଦ୍‌ବୁଦ୍ଧି ଉଦିତ ହେବ ! ମୋର କାହିଁକି ଆଶଙ୍କା ହେଉଛି, କୁଚକ୍ରୀ କୌରବମାନେ ଆପଣଙ୍କର ନିରାପତ୍ତା ଏବଂ ସମ୍ମାନକୁ ହୁଏତ ବିପନ୍ନ କରି ପାରନ୍ତି । ମୋପାଇଁ ଏହା ଘୋର ଉଦ୍‌ବେଗର ବିଷୟ । ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଆବେଗ ଭରା ନୟନରେ ଚାହିଁ ରହିଲେ । ଶ୍ରୀକୃଷ୍ଣ କୋମଳ କଣ୍ଠରେ କହିଲେ,

''ହେ ଧର୍ମରାଜ ! ମୁଁ ଆପଣଙ୍କର ଭାବାବେଗକୁ ଠିକ୍ ଭାବରେ ବୁଝିପାରୁଛି । କୌଣସି ଚରମ ପରିସ୍ଥିତିର ସମ୍ମୁଖୀନ ହେବା ପୂର୍ବରୁ ସାମ୍ଭାବ୍ୟ ସୁଯୋଗ ହାତଛଡ଼ା କରିବା ଉଚିତ ନୁହେଁ । ଧୃତରାଷ୍ଟ୍ରଙ୍କର

ଅବିଚାର ଓ ଦୁର୍ଯ୍ୟୋଧନର ଦୁର୍ବୁଦ୍ଧି ସତ୍ତ୍ୱେ ତାଙ୍କ ପାଖକୁ ମୋତେ ଯିବାକୁ ହେବ । ନୀତି ଦୃଷ୍ଟିରୁ ଏହା କରଣୀୟ । ଶେଷଥର ପାଇଁ ମୁଁ ସେମାନଙ୍କୁ ବୁଝାଇବି । ଅନ୍ଧ ରାଜାଙ୍କ ଭିତରେ ବିବେକର ଆଲୋକ ଜଳାଇବାକୁ ଚେଷ୍ଟା କରୁଛି । ତଥାପି ସେମାନେ ମୋର କୌଣସି ଅନିଷ୍ଟ କଲେ, କୁରୁକୁଳ ଧ୍ୱଂସ କରିବାପାଇଁ ମୁଁ ପଛେଇବି ନାହିଁ । ଯାଏ, ଚେଷ୍ଟାକଲେ । ଭୀମ ! ତମର ଏ ବିଷୟରେ ମତ କଣ ?''

ଭୀମ ଗମ୍ଭୀର ହୋଇ ଶାନ୍ତ କଣ୍ଠରେ କହିଲେ, 'ମୁଁ ଶାନ୍ତି ଚାହେଁ ପାଣ୍ଡବ ସଖା, ମୁଁ ଶାନ୍ତି ଚାହେଁ । ଆମ୍ଭେମାନେ ଦୁର୍ଯ୍ୟୋଧନଙ୍କର ବରଂ ଅନୁଗତ ହେବୁ, କିନ୍ତୁ ଭରତବଂଶ ଧ୍ୱଂସର କାରଣ ହେବୁ ନାହିଁ । ସେମାନେ ଆମକୁ ଏ ସୁଯୋଗ ନଦେଲେ ନିଜ ଜାଳିଲା ନିଆଁରେ ନିଜେ ଦଗ୍ଧ ହେବେ ।''

ଶ୍ରୀକୃଷ୍ଣ ହସି ହସି, ପରିହାସ କଣ୍ଠରେ କହିଲେ, ''ରକ୍ତମୁଖା ବାଘର ସନ୍ୟାସ ଏବଂ ଯୁଦ୍ଧରଙ୍କ ଭୀମଙ୍କର ଧର୍ମନୀତି ମହାଭାଷ୍ୟ ଭିତରେ କିଛି ପ୍ରଭେଦ ଅଛିନା ନାହିଁ ? ଅହର୍ନିଶ ଯୁଦ୍ଧଚିନ୍ତା ବ୍ୟତୀତ ଯାହାର ଅନ୍ୟ କୌଣସିଥିରେ ମନ ଧ୍ୟାନ ନଥାଏ, ସେ ଆଜି ଅଦ୍ଭୁତ ଭାବରେ ଶାନ୍ତିର ପୂଜାରୀ ସାଜିଛନ୍ତି କିପରି ? 'ରକ୍ତସ୍ନାନ' ଶପଥର ମହାମନ୍ତ୍ର ଜପ କରି, ଏ ବୈରାଗ୍ୟ ବ୍ରତ ଅଙ୍ଗୀକାର କରିବାର ରହସ୍ୟ କଣ ?''

''ରହସ୍ୟ ଯେପରି କିଛି ନାହିଁ । ଏହା ପାଣ୍ଡବସଖାଙ୍କ ପରି ସତ୍‌ସଙ୍ଗର ସଂକ୍ରମଣ । ହସି ହସି କହିଲେ ଭୀମ ! ହେ ମାଧବ ! ଆପଣଙ୍କ ସ୍ୱର ବ୍ୟଞ୍ଜନା ବୁଝିବା ମୋ ପକ୍ଷରେ କଷ୍ଟକର ନୁହେଁ । ତଥାପି ମୁଁ ଭରତ ବଂଶର ବିନାଶ ଚାହେଁନାହିଁ । ଶାନ୍ତିରେ ସମସ୍ୟାର ସମାଧାନ କରାଯାଇ ପାରିଲେ ଯୁଦ୍ଧକୁ ଏଡ଼ାଇ ଦିଆଯାଇ ପାରନ୍ତା । ପାପୀର ଦଣ୍ଡବିଧାନ ପାଇଁ ଅସୁମାର ପଥ ଉନ୍ମୁକ୍ତ ଅଛି ।''

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ପଚାରିଲେ, ତୁମର ମତ କଣ ?

ଅର୍ଜୁନ କହିଲେ, ''ହେ ଯଦୁନାଥ ! ଯାହା କରଣୀୟ ସେ ବିଷୟରେ ଧର୍ମରାଜ ଆପଣଙ୍କୁ କହିସାରିଛନ୍ତି । ଶାନ୍ତିସ୍ଥାପନ କରିବା ଆପଣଙ୍କ ପକ୍ଷରେ ବିଶେଷ କିଛି ଅସାଧ୍ୟ ନୁହେଁ । ଉଭୟ ପକ୍ଷର ଶୁଭ ଚିନ୍ତକ ହିସାବରେ ସମସ୍ତଙ୍କର ମଙ୍ଗଳ ପାଇଁ କାମ କରନ୍ତୁ । ଏକଥା କିନ୍ତୁ ସତ୍ୟ ଯେ, ଦୁର୍ଯ୍ୟୋଧନ ପରି ପାପୀ, ଅହଂକାରୀ, କୁଚକ୍ରୀ ଓ କୁତ୍ସିତ ବ୍ୟକ୍ତିର ବିନାଶ ହେଲେ ନ୍ୟାୟ ତଥା ଧର୍ମ ପ୍ରତିଷ୍ଠା କରାଯାଇ ପାରିବ ।''

ଏହି ସମୟରେ ଅଶ୍ରୁମୁଖୀ ଦ୍ରୌପଦୀ ଆସି କଂପିତ କଣ୍ଠରେ କହିଲେ, '' ହେ ଯଦୁପତି ! ହେ ପାଣ୍ଡବ ସଖା ! କୁରୁସଭାରେ, କୁରୁବଂଶର କୁଳବଧୂକୁ ଯେପରି ଭାବରେ କେଶ ଆକର୍ଷଣ କରି ବିବସ୍ତ୍ର କରାଗଲା, ମାନବ ସଭ୍ୟତାର ଇତିହାସରେ ସେ ପ୍ରକାର ବର୍ବରତାର ପଟାନ୍ତର ନାହିଁ । ଆପଣଙ୍କର ଶାନ୍ତି ପ୍ରସ୍ତାବରେ ମୋର ଏହି ମୁକ୍ତ କେଶର ରକ୍ତ ପିପାସା ମେଣ୍ଟିବନାହିଁ । ଯେଉଁ ପବିତ୍ର ଭରତବଂଶର କୁଳପାଂଶୁଳ ମାନେ, ନିଜ କୁଳବଧୂର ମର୍ଯ୍ୟାଦା ଓ ନାରୀତ୍ୱକୁ ରାଜସଭାରେ ଲୁଣ୍ଠନ କଲେ, ସେମାନଙ୍କୁ ବଞ୍ଚି ରହିବାର ଅଧିକାର ପାଣ୍ଡବମାନେ ଯେ ଏ ପର୍ଯ୍ୟନ୍ତ ଦେଇଛନ୍ତି ଏହା ଅତ୍ୟନ୍ତ ଲଜ୍ଜାକର ଘଟଣା । ତ୍ରିଭୁବନ ବିଜୟୀ ପାର୍ଥଙ୍କର ଧନୁର୍ଦ୍ଧର ପଣ ଓ ଅତିବଳୀ ଭୀମଙ୍କର ଅକଳନ୍ତି ବଳକୁ ଶତ୍ ଧିକ୍ । ସେମାନେ ଯଦି ଶାନ୍ତି ତଥା ସନ୍ଧି ସ୍ଥାପନ ପାଇଁ ଆଗ୍ରହୀ, ତା'ହେଲେ ମୋରପିତା, ମହାରଥ ଦ୍ରୁପଦ, ଭ୍ରାତ ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡି ତଥା ମୋର ପାଞ୍ଚ ପୁତ୍ର ନିଶ୍ଚୟ ଯୁଦ୍ଧ କରିବେ । ବୀର ଅଭିମନ୍ୟୁ, ମହାପରାକ୍ରମଶାଳୀ ମୋର ପାଞ୍ଚପୁତ୍ରଙ୍କୁ ଯୁଦ୍ଧରେ ନିଶ୍ଚୟ ସାହାଯ୍ୟ କରିବେ । ଯୁଦ୍ଧ ଅନିବାର୍ଯ୍ୟ ।''

ନକୁଳ କହିଲେ, ''ହେ ପାଣ୍ଡବ ସଖା ! ଯାଜ୍ଞସେନୀ ଯାହା କହିଲେ ତାହା ଯଥାର୍ଥ, ଧର୍ମରାଜଙ୍କର ଶାନ୍ତି ପ୍ରସ୍ତାବ ତାଙ୍କର ସହଜାତ ଉଦାରତା । କୌରବମାନେ, ସମସ୍ତ ମାନ ମର୍ଯ୍ୟାଦା ଲଂଘନ କରିଛନ୍ତି । ନୀତି, ନିୟମ, ଧର୍ମ ସେମାନେ କିଛି ମାନି ନାହାନ୍ତି । ସେମାନଙ୍କର ନିଧନ ସହିତ ଅନ୍ୟାୟର ଅବସାନ ପାଇଁ ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ । ଅଶାନ୍ତ ଗ୍ରହ ପୁଞ୍ଜକୁ ଶାନ୍ତ କରିବାର ଏକମାତ୍ର ଉପଚାର ଯୁଦ୍ଧ ।''

''ହଁ, ଠିକ୍ କହିଛନ୍ତି ନକୁଳ । ଭୟଙ୍କର ବିଷଧର ସର୍ପକୁ ବଞ୍ଚାଇ ରଖିବା ଅର୍ଥ, ସେ ନିଶ୍ଚୟ ଦଂଶନ କରିବ । ଧର୍ମରାଜ ସନାତନ ଧର୍ମର ନୀତିରକ୍ଷା ପାଇଁ ଶାନ୍ତି ପ୍ରସ୍ତାବ ଦେଇଛନ୍ତି । ଉଦ୍‌ଫଣ ସର୍ପ ସହିତ ସହାବସ୍ଥାନ ସମ୍ଭବ ନୁହେଁ । ଦଂଶନର ଜ୍ୱାଳା ଆମେ ଭୋଗିଛୁ ଆଉ ଭୋଗିବାକୁ ସୁଯୋଗ ଦେବୁନାହିଁ । ଏକମାତ୍ର ଯୁଦ୍ଧ ହିଁ ସେ ଜ୍ୱାଳାକୁ ଉପଶମ କରି ପରିବ । ଗମ୍ଭୀର ହୋଇ କହିଲେ ସହଦେବ ।''

ଶ୍ରୀକୃଷ୍ଣ ଶାନ୍ତ ଓ ଉଦାର କଣ୍ଠରେ କହିଲେ, ''ମୁଁ ହସ୍ତିନାପୁରକୁ ଯାଉଛି । ଶାନ୍ତି ପ୍ରତିଷ୍ଠା ପାଇଁ ଶେଷଚେଷ୍ଟା କରିବି । ମୋରଧାରଣା, ଦୁର୍ଯୋଧନ ଶାନ୍ତିପ୍ରସ୍ତାବ ବୋଧହୁଏ ଗ୍ରହଣ କରିବେ ନାହିଁ । ଦ୍ରୌପଦୀଙ୍କୁ ଲକ୍ଷ୍ୟ କରି କହିଲେ, ''ହେ ପାଞ୍ଚାଳୀ ! ତୁମେ ବ୍ୟସ୍ତ ହୁଅନାହିଁ, ଧୈର୍ଯ୍ୟଧର । ଉତ୍ତୁଙ୍ଗ ପାପ ପାହାଡ଼ରେ ଯେଉଁମାନେ ଚଢ଼ିଛନ୍ତି, ସେମାନେ ଅଚିରେ ଭୂଲୁଣ୍ଠିତ ହେବେ । ଏହାଏକ ସାଧାରଣ ସତ୍ୟ । ସତୀ ସ୍ୱାଧ୍ୱୀ ନାରୀର କଷଣ ବ୍ୟର୍ଥ ହେବନି, ଏଥିପାଇଁ ପାପାଚାରୀକୁ ବହୁମୂଲ୍ୟ ଦେବାକୁ ପଡ଼ିବ ।''

ଏହାପରେ୍ ଉପପ୍ଳବ୍ୟ ନଗରରୁ ଶ୍ରୀକୃଷ୍ଣ ବିଦାୟ ନେଇ ହସ୍ତିନା ପୁରକୁ ଶାନ୍ତିଯାତ୍ରା ଆରମ୍ଭ କଲେ । ସାଥିରେ ଗଲେ ସାତ୍ୟକି । ଗରୁଡ଼ ଚିହ୍ନିତ ଧ୍ୱଜଯୁକ୍ତ ତାଙ୍କ ରଥର ସେ ସାରଥି । ମା' କୁନ୍ତୀଙ୍କୁ ସାକ୍ଷାତ୍ କରି, ତାଙ୍କୁ ସେମାନଙ୍କର ସଭକ୍ତିପ୍ରଣାମ ଜଣାଇ ଦେବାପାଇଁ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ପାଣ୍ଡବ ଭାଇମାନେ ତାଙ୍କୁ କିଛିଦୂର ପାଛୋଟି ନେବାପରେ, ବିଦାୟ ନେଇ ଚାଲି ଆସିଲେ କୃଷ୍ଣ ।

ଶ୍ରୀକୃଷ୍ଣ ଗମନ ସମୟରେ ବହୁଶୁଭାଶୁଭ ସଂଘଟିତ ହୋଇଥିଲା । ଶ୍ରୀକୃଷ୍ଣଙ୍କର ଆଗମନ ସମ୍ବାଦ, ରାଜା ଧୃତରାଷ୍ଟ୍ର ବିଦୁରଙ୍କ ଠାରୁ ପାଇଲେ । କୁରୁ ପାଣ୍ଡବ ମଧ୍ୟରେ ଶାନ୍ତି ସ୍ଥାପନ ପାାଇଁ ଶ୍ରୀକୃଷ୍ଣ ଆସୁଛନ୍ତି ।

ଧୃତରାଷ୍ଟ୍ର କହିଲେ, ''ଶ୍ରୀକୃଷ୍ଣ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯାହାଙ୍କ ଉପରେ କୁରୁକୁଳର ଭବିଷ୍ୟତ ନିର୍ଭର କରେ । ତାଙ୍କର ମନ ନେବାକୁ ହେବ, ହୃଦୟ କିଣିବାକୁ ହେବ । ତାଙ୍କ ପାଇଁ ରାଜକୀୟ ଭବ୍ୟ ସମ୍ବର୍ଦ୍ଧନାର ବ୍ୟବସ୍ଥା କରନ୍ତୁ ବିଦୁର । ସମ୍ମାନିତ ଅତିଥିଭାବରେ ବହୁମୂଲ୍ୟ ଉପହାର ଦେବାର ବ୍ୟବସ୍ଥା କରାଯାଉ । ହିରା,ନୀଳା, ମୋତି ମାଣିକ୍ୟ, ସ୍ୱର୍ଣ୍ଣାଭରଣ ଓ ଅନ୍ୟାନ୍ୟ ବିଳାସ ସାମଗ୍ରୀ । କେବଳ ସେତିକି ନୁହେଁ, ବେଗଶାଳୀ ଅଶ୍ୱ, ରଣକୁଶଳୀ ହସ୍ତୀ ଏବଂ ଏକ ସହସ୍ର ସୁନ୍ଦରୀ ତରୁଣୀ । ଏହାକୁ ଲାଭକରି ସେ ନିଶ୍ଚୟ ଆନନ୍ଦିତ ହେବେ ।''

ବିଦୁର ନମ୍ର ମଧୁର କଂଠରେ କହିଲେ, ''ହେ ରାଜନ୍ ! ହେ କୁରୁଶ୍ରେଷ୍ଠ ! ଆପଣ ଏସବୁ କଣ କହୁଛନ୍ତି । ତ୍ରିଭୁବନର ସମସ୍ତ ଧନ ବିନିମୟରେ ତାଙ୍କୁ ପରିତୁଷ୍ଟ କରାଯାଇ ପାରିବନାହିଁ । ଶାନ୍ତି ହିଁ ତାଙ୍କର ଏକମାତ୍ର ଭିକ୍ଷା । ଆପଣ ତାହାହିଁ ଦେଇ ତାଙ୍କୁ ସନ୍ତୁଷ୍ଟ କରନ୍ତୁ ।''

ସୁସଜ୍ଜିତ ହସ୍ତିନାପୁର ।

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ସହସ୍ରାଧିକ ତୋରଣ ନଗର ମଧ୍ୟରେ ରୂପଦର୍ପରେ ଦଣ୍ଡାୟମାନ । ରାଜପଥର ଉଭୟଧାରରେ ଅକଳନ୍ତି ଜନସମାଗମ । ବିଭିନ୍ନ ରାଜ୍ୟର ସୈନ୍ୟ ଓ ସେନାପତି ମାନେ ଲୋକାରଣ୍ୟ ମଧ୍ୟରେ ନିଜକୁ ହଜାଇ ଦେଇଛନ୍ତି । ଶ୍ରୀକୃଷ୍ଣଙ୍କ ରଥ ପଛେ ପଛେ ବିରାଟ ଶୋଭଯାତ୍ରା ଆଗେଇଛି । କୁରୁ ଶ୍ରେଷ୍ଠ, ସମ୍ଭାଷଣ ଜଣାଇବା ପାଇଁ ଅପେକ୍ଷା କରିଛନ୍ତି । ଶକୁନି, କର୍ଣ୍ଣ ଓ ଭାଇମାନଙ୍କ ଗହଣରେ ଅଛନ୍ତି ରାଜାଦୁର୍ଯ୍ୟୋଧନ । ଶ୍ରୀକୃଷ୍ଣ ପହଞ୍ଚିବା ପରେ ସମସ୍ତେ ଅଭିବାଦନ ଜଣାଇଲେ । ଶ୍ରୀକୃଷ୍ଣ ସେମାନଙ୍କର କୁଶଳ ଜିଜ୍ଞାସା କରିବାପରେ, ରାଜା ଧୃତରାଷ୍ଟ୍ରଙ୍କ ଉଆସକୁ ଆସିଲେ । ପାପମତୀ ଦୁର୍ଯ୍ୟୋଧନ, ପାଣ୍ଡବସଖାଙ୍କୁ ବନ୍ଦି କରି ରଖିବା ପାଇଁ ପୂର୍ବରୁ ଅଭିଳାଷ ପୋଷଣ କରିଥିଲେ ମଧ୍ୟ ରାଜା ଧୃତରାଷ୍ଟ୍ରଙ୍କ ପ୍ରତିକୂଳ ମନୋଭାବ ପାଇଁ ସେଥିରୁ କ୍ଷାନ୍ତ ହୋଇଥିଲେ । ଗଭୀର ଆନ୍ତରିକତାର ଅଭିନୟ କରି ଭୋଜନ ପାଇଁ ନିମନ୍ତ୍ରଣ କଲେ । ଶ୍ରୀକୃଷ୍ଣ କହିଲେ, ''ମୁଁ ଯେଉଁ ଲକ୍ଷ୍ୟ ନେଇ ଆସିଛି ତାହା ପରିପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ, ରାଜପୁରୀର ଆତିଥ୍ୟ ଗ୍ରହଣ କରିପାରିବି ନାହିଁ ।''

ଶ୍ରୀକୃଷ୍ଣ ରାଜା ଧୃତରାଷ୍ଟ୍ରଙ୍କୁ ସାକ୍ଷାତ କଲେ । ଔପଚାରିକ ସମ୍ଭାଷଣ ପରେ କିଛି ସମୟ ପାଇଁ ଆଳାପ ଆଲୋଚନା ଚାଲିଥିଲା । ତାପରେ ସେ ବିଦାୟ ନେଇ ଆସିଲେ ବିଦୁରଙ୍କ ପାଖକୁ । ସେଠାରେ ସେ ରତ୍ରି ଯାପନ କଲେ । ପାଣ୍ଡବ ଜନନୀ କୁନ୍ତୀଙ୍କ ସହିତ ସାକ୍ଷାତକରି ପୁତ୍ରମାନଙ୍କର କୁଶଳ ବାର୍ତ୍ତା ଜଣାଇଲେ । କୁନ୍ତୀଦେବୀ ପୁତ୍ରମାନଙ୍କର ଦୁର୍ଦ୍ଦଶାକୁ ସ୍ମରଣ କରି କ୍ରନ୍ଦିତ କଂଠରେ ନାନା ପ୍ରଶ୍ନ ପଚାରିଲେ । ତେର ବର୍ଷ ହେଲା ସେ ନିଜର ପୁତ୍ର ଓ ପୁତ୍ରବଧୂ ସୁକୁମାରୀ ଦ୍ରୌପଦୀଙ୍କୁ ଦେଖିବାର ସୁଯୋଗ ପାଇ ନାହାନ୍ତି । ସେମାନଙ୍କ ବିଚ୍ଛେଦରେ ତାଙ୍କର ଅନ୍ତର ବିଦୀର୍ଣ୍ଣ ହେଉଛି ।

ଶ୍ରୀକୃଷ୍ଣ ନିଜର ପିଉସୀ କୁନ୍ତୀଙ୍କୁ ଆଶ୍ୱାସନା ଦେଇ କହିଲେ, ''ହେ ଦେବି ! ଦୁଃଖର ସମୟ ଅତିକ୍ରାନ୍ତ ହୋଇଛି । ଆପଣ ଆଶୀର୍ବାଦ ଦିଅନ୍ତୁ, ପାଣ୍ଡବମାନଙ୍କର ଲକ୍ଷ୍ୟ ପୂରଣ ହେଉ । କୁରୁପାଣ୍ଡବ ଶାନ୍ତି ଓ ସମ୍ମାନର ସହ ପୁଣି ବସବାସ କରନ୍ତୁ । କୌରବ ମାନଙ୍କର ସଦ୍‌ବୁଦ୍ଧି ଫେରିଆସୁ । ସେମାନଙ୍କର ସିଦ୍ଧାନ୍ତ ଉପରେ କୁରୁବଂଶର ଭବିଷ୍ୟତ ନିର୍ଭର କରେ ।''

ମୋହାବିଷ୍ଟ କୁନ୍ତୀ ଦେବୀ, କ୍ରନ୍ଦିତ କଣ୍ଠରେ କହିଲେ, ''ହେ ମଧୁସୂଦନ ! ମୁଁ ଭଲ ଭାବରେ ଜାଣେ, ତୁମେ ହିଁ ପାଣ୍ଡବ ମାନଙ୍କର ମାର୍ଗଦର୍ଶକ, ତୁମେ ସେମାନଙ୍କର ସତ୍ୟ, ଧର୍ମ ଓ ନ୍ୟାୟର ପ୍ରତୀକ । ସେମାନଙ୍କ ମଙ୍ଗଳ ପାଇଁ ଯାହା କରଣୀୟ ତାହା କରିବା ଉଚିତ ।''

ଶ୍ରୀକୃଷ୍ଣ ପାଣ୍ଡବଜନନୀଙ୍କୁ ଆଶ୍ୱାସନା ଦେବାପରେ ମହାତ୍ମା ବିଦୁରଙ୍କ ସହିତ ରାତ୍ରି ଯାପନ କଲେ । ଉଭୟଙ୍କ ମଧ୍ୟରେ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଆଳାପ ଆଲୋଚନା ହୋଇଥିଲା । ବିଦୁର କହିଲେ, ଦୁର୍ଯ୍ୟୋଧନଙ୍କ ପରି ଦୁରାତ୍ମା ମୂଢ଼ତାର ଏକ ମୂର୍ତ୍ତିମନ୍ତ ପ୍ରତୀକ । ସେ ଶୁଭାକାଂକ୍ଷୀ ମାନଙ୍କର ଶୁଭ ଉପଦେଶ ଗ୍ରହଣ କରନ୍ତି ନାହିଁ । ପାପକୁ ପୁଣ୍ୟ ବୋଲି ଭାବିବା ତାଙ୍କର ଚାରିତ୍ରିକ ଗୁଣ । ସେ ଶାନ୍ତି ପ୍ରସ୍ତାବ ଗ୍ରହଣ କରିବେନାହିଁ । ବରଂ ଭାବିବେ, ଏହା ପାଣ୍ଡବମାନଙ୍କର କାପୁରୁଷତାକୁ ଘୋଡ଼ାଇବା ପାଇଁ ଏକ ଛଳନାମାତ୍ର । ତାଙ୍କର ଧାରଣା, କର୍ଣ୍ଣ, ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ ଅଶ୍ୱତ୍ଥାମା ପ୍ରଭୃତି ବୀରମାନଙ୍କୁ ପାଣ୍ଡବମାନେ ପରାଜିତ କରି ପାରିବେ ନାହିଁ । ଶାନ୍ତି ପ୍ରସ୍ତାବ ସେମାନଙ୍କ ପାଇଁ ସମ୍ମାନ ଯୋଗ୍ୟ କିଂବା ଗ୍ରହଣ ଯୋଗ୍ୟ ନୁହେଁ ।''

''ଠିକ୍ ଅଛି, ନ୍ୟାୟୋଚିତ କର୍ତ୍ତବ୍ୟ କରିବାପାଇଁ ମୁଁ ଆସିଛି । ମୋର ହିତବାଣୀକୁ କୌରବମାନେ ଯଦି ଗ୍ରହଣ ନକରନ୍ତି ସେମାନଙ୍କୁ ଚରମ ଦୁର୍ଦ୍ଦଶା ଭୋଗିବାକୁ ପଡ଼ିବ । ଯୁଦ୍ଧର ଭୟାବହତା ବିଷୟରେ ମୁଁ ସେମାନଙ୍କୁ ସୂଚାଇ ଦେବି, ତେଣିକି ପ୍ରଳୟକୁ ନିମନ୍ତ୍ରଣ କରିବେ କି ଶାନ୍ତିକୁ ସ୍ୱାଗତ ଜଣାଇବେ, ତାହା ତାଙ୍କ ଉପରେ ନିର୍ଭର କରେ । ମୋ ହାତରେ ଅଛି ମୃତ୍ୟୁର ବିଷପାତ୍ର ଏବଂ ଶାନ୍ତିର ଅମୃତ ପାତ୍ର । ସେମାନଙ୍କ ହାତରେ ଅଛି ଗ୍ରହଣ କରିବାର ସ୍ୱାଧୀନତା । ଏଣିକି ସେମାନେ ସ୍ଥିର କରିବେ ।''

ପରଦିନ ଦୁର୍ଯୋଧନ, ଶ୍ରୀକୃଷ୍ଣଙ୍କୁ ରାଜସଭାକୁ ପାଛୋଟି ନେବାପାଇଁ ବିଦୁରଙ୍କ ଘରେ ଆସି ପହଞ୍ଚିଲେ । ଶ୍ରୀକୃଷ୍ଣ ତାଙ୍କ ସହିତ ଗଲେ । ଏକ ଭବ୍ୟ ସମ୍ବର୍ଦ୍ଧନା ତାଙ୍କୁ ଦିଆଗଲା । ଭକ୍ତି ଓ ସମ୍ମାନର ପାରମ୍ପରିକ ବିନିମୟପରେ ଶ୍ରୀକୃଷ୍ଣ, ରାଜା ଧୃତରାଷ୍ଟ୍ରଙ୍କୁ ଲକ୍ଷ୍ୟକରି କହିଲେ, ''ମୁଁ ପାଣ୍ଡବମାନଙ୍କ ପକ୍ଷରୁ ଶାନ୍ତିର ବାର୍ତ୍ତା ନେଇ କୁରୁ ରାଜ ସଭାକୁ ଆସିଛି । ଆପଣ ନ୍ୟାୟ ଧର୍ମ ଏବଂ ନୀତି ନିପୁଣ । ଆପଣଙ୍କ ପୂର୍ବସୂରିମାନେ ନ୍ୟାୟ ତଥା ଧର୍ମ ପ୍ରତିଷ୍ଠାପାଇଁ ଜୀବନ ଦାନ କରିଛନ୍ତି । ସେମାନଙ୍କ ଉଦାରତା, ମହାନୁଭବତା, ନ୍ୟାୟ ବିଚାର ଓ ଧର୍ମରକ୍ଷା ପାଇଁ, କୁରୁକୁଳ ସୁପ୍ରତିଷ୍ଠିତ । ଆପଣ ରାଜପରମ୍ପରାର ରକ୍ଷକ ଓ ଆପଣଙ୍କ ପୁତ୍ରଗଣ ସେହି ମହାନ୍ ଧର୍ମକୁ ରକ୍ଷା କରିବାପାଇଁ ପଶ୍ଚାତପଦ ହେବେନାହିଁ । ଏହା ମୋର ବିଶ୍ୱାସ ।

ବୀର ପାଣ୍ଡବମାନେ ଶାନ୍ତିର ପୂଜାରୀ । ଆପଣଙ୍କ ପ୍ରତି ସେମାନଙ୍କର ଅଛି ଅଚଳାଭକ୍ତି । ଶାନ୍ତିରକ୍ଷାପାଇଁ ସେମାନେ ମିତ୍ରତାର ହସ୍ତ ପ୍ରସାରଣ କରିଛନ୍ତି କୌରବ ଭାଇମାନଙ୍କ ପାଖକୁ । ଯୁଦ୍ଧ କୌଣସି ପରିସ୍ଥିତିରେ ମଧ୍ୟ ଗ୍ରହଣୀୟ କିଂବା ସ୍ପୃହଣୀୟ ନୁହେଁ । ବିଶ୍ୱର ମଙ୍ଗଳ ପାଇଁ ଏହା ସର୍ବଦା ବର୍ଜନୀୟ । ବିଜୟୀ ଏବଂ ବିଜିତ କାହାରି, ଏହାଦ୍ୱାରା ଲାଭ ହୁଏ ନାହିଁ । ଏହା ଉଭୟଙ୍କର କ୍ଷତି ସାଧନ କରେ । ଯୁଦ୍ଧ ଅତ୍ୟନ୍ତ ବ୍ୟୟବହୁଳ ଓ ଅପଚୟର ଏକ ଅଛିଣ୍ଡାଗାର । ପ୍ରଜାକୁଳର ସ୍ୱାର୍ଥ ବିନିମୟରେ ଏହା କରାଯାଇଥାଏ । ରାଜପୁତ୍ରମାନଙ୍କର ପ୍ରଜାଙ୍କ ମଙ୍ଗଳ ପାଇଁ ସମସ୍ତ ସ୍ୱାର୍ଥ ତ୍ୟାଗ କରିବାର ଆବଶ୍ୟକତା ରହିଛି । ସେମାନଙ୍କର ଶାନ୍ତି, ସୁରକ୍ଷା ଓ ସମୃଦ୍ଧିକୁ ଯୁଦ୍ଧର ପ୍ରଳୟ ଯଜ୍ଞରେ ଆହୁତି ଦେବା ଏକ ଅକ୍ଷମଣୀୟ ଅପରାଧ । କୁରୁ ପାଣ୍ଡବ ମଧ୍ୟରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠିତ ହେଲେ, ନିବିଡ଼ ଭ୍ରାତୃତ୍ୱ ସୃଷ୍ଟି ହେବ, ଯାହାକି ଉଭୟକୁଳ ପାଇଁ ମଙ୍ଗଳ ଦାୟକ । ସର୍ବନାଶ ପଥରୁ ଓହରି ଆସି ଶାନ୍ତିର ପଥକୁ ଗ୍ରହଣ କରନ୍ତୁ କୁରୁସମ୍ରାଟ ।''

ଶ୍ରୀକୃଷ୍ଣଙ୍କ ବ୍ୟତୀତ ଉପସ୍ଥିତ ଅନ୍ୟ ମୁନି ଋଷିମାନେ ମଧ୍ୟ ଯୁଦ୍ଧରୁ ନିବୃତ୍ତ ହେବାପାଇଁ ରାଜାଙ୍କୁ ଓ ରାଜପୁତ୍ରମାନଙ୍କୁ ବୁଝାଇଲେ । ସଭାସଦ୍ ବୃନ୍ଦ ଶାନ୍ତି ପ୍ରସ୍ତାବକୁ ଅନ୍ତରର ସହିତ ସମର୍ଥନ କରୁଥିଲେ ମଧ୍ୟ, ଦୁର୍ଯ୍ୟୋଧନଙ୍କ ଭୟରେ ସମସ୍ତେ ନିରବ ରହିଲେ । ଗର୍ବ , ହିଂସା,ଅନ୍ୟାୟ ଅନୀତି ଓ ପାପକର୍ମର ବିଷମୟ ଫଳ ବିଷୟରେ ମୁନିଋଷିମାନେ ଅନେକ ଉଦାହରଣ ଦେଇ ବୁଝାଇଲେ । ଏ ସଂକ୍ରାନ୍ତରେ କହିଥିବା କଥନିକା ଗୁଡ଼ିକ ଅତ୍ୟନ୍ତ ତତ୍ତ୍ୱପୂର୍ଣ୍ଣ, ସାରଗର୍ଭକ ଓ ସୁସ୍ଥ ସମାଜଗଠନ ପାଇଁ ଗୋଟିଏ ଗୋଟିଏ ରକ୍ଷାକବଚ ।

ଧୃତରାଷ୍ଟ୍ରଙ୍କ ମନ ମଧ୍ୟରେ ଏକ ଅଶାନ୍ତ ଆଲୋଡ଼ନ ସୃଷ୍ଟି ହେଲା । ଦୁର୍ବିନୀତ, ଦୁର୍ଦ୍ଧର୍ଷ, ଦୁରାଚାରୀ ଦୁର୍ଯୋଧନ ଉପରେ ତାଙ୍କର କର୍ତ୍ତୃତ୍ୱ କିଛି ନାହିଁ । ସେ ଯୁଦ୍ଧ ବ୍ୟତୀତ ଆଉ କିଛି ଚାହେଁ ନାହିଁ । ତାର ପାଗଳାମି ପାଇଁ କୁରୁକୁଳର ଦୀପ୍ତିମାନ ବୀରଗଣ ବିନାଶ ପ୍ରାପ୍ତ ହେବେ । ଅସରନ୍ତି ପ୍ରଜାପୁଞ୍ଜ ପୋକମାଛିପରି ଅଚିରେ ମୃତ୍ୟୁବରଣ କରିବେ । ଅନୁଶୋଚନାର ଏକ ଦୀର୍ଘନିଶ୍ୱାସ ତ୍ୟାଗକରି ସେ

କହିଲେ, ''ଦୁର୍ଯ୍ୟୋଧନ ! ସ୍ୱୟଂ ଶ୍ରୀକୃଷ୍ଣ ଓ ଶ୍ରୁଭେଚ୍ଛୁ ମୁନି ଋଷିମାନେ ଯେଉଁ ନୀତି ଉପଦେଶ ଦେଲେ ତାହା ତୁମେ ହୃଦୟଙ୍ଗମ କର । ଭରତ କୁଳର ମଙ୍ଗଳ ପାଇଁ, ପ୍ରଜାମାନଙ୍କ ଶାନ୍ତି ସୁଖ ପାଇଁ, ଏବଂ ତୁମ ନିଜର ମଙ୍ଗଳମୟ ଭବିଷ୍ୟତ ପାଇଁ , ପାଣ୍ଡବ ମାନଙ୍କ ସହିତ ସନ୍ଧି ସ୍ଥାପନ କର । ସେମାନଙ୍କୁ ତାଙ୍କ ରାଜ୍ୟ ଫେରାଇ ଦିଅ ।''

ପିତାମହ ଭୀଷ୍ମ , ଗୁରୁ ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ମା' ଗାନ୍ଧାରୀ ଅନୁରୂପ ଉପଦେଶ ଦେଇଥିଲେ । ଦୁର୍ଯୋଧନ କୌଣସି ନୀତି ଉପଦେଶ ଗ୍ରହଣ କଲେ ନାହିଁ । ସେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି କହିଲେ, ''ହେ ମଧୁସୂଦନ ! ଆପଣ ଯାହା ସବୁ କହିଲେ ସେ ସବୁ ଉପଦେଶ ଛଳରେ ଆମ୍ଭମାନଙ୍କୁ ଭର୍ତ୍ସନା କରିବା ବ୍ୟତୀତ ଆଉ କିଛି ନୁହେଁ । ନୀତି କଥାର ଅନ୍ତଃସ୍ୱର ହେଉଛି ପାଣ୍ଡବମାନଙ୍କର ପ୍ରତିଷ୍ଠାଗାନ । ଆମେ ପାଣ୍ଡବମାନଙ୍କ ପାଖରେ ଆତ୍ମ ସମର୍ପଣ କରିବାର ପ୍ରଶ୍ନ ଉଠୁନାହିଁ । ଆମେ କ୍ଷତ୍ରିୟ । ଯୁଦ୍ଧ ହିଁ ଆମର ଏକମାତ୍ର ଧର୍ମ, ଆମର ଏକମାତ୍ର ସତ୍ୟ । କୌଣସି ଶକ୍ତି ଆମକୁ ଏଥିରୁ ନିବୃତ୍ତ କରିପାରିବ ନାହିଁ । ଆମେ କ୍ଷତ୍ରିୟ ଧର୍ମ ପାଳନ କରିବୁ । ଜୟ ଲାଭ ତ ନିଶ୍ଚୟ କରିବୁ ପରାଜିତ ହେଲେ ଯୁଦ୍ଧ ଭୂମିରେ ମୃତ୍ୟୁ ବରଣ କରି ସ୍ୱର୍ଗପ୍ରାପ୍ତ ହେବୁ । ଜୟ କିମ୍ବା ପରାଜୟ, କୌଣସିଥିରେ କ୍ଷତିର ସମ୍ଭାବନା ମୁଁ ଦେଖିବାକୁ ପାଉନି ।''

ହେ ଦ୍ୱାରକା ନାଥ ! ଆଉ ଗୋଟିଏ ନୀତି ଗତ କଥା ବିଚାର କରନ୍ତୁ । ଆପଣତ ଧର୍ମଜ୍ଞ, ଧର୍ମ ଓ ନ୍ୟାୟ ଦୃଷ୍ଟିରୁ କହନ୍ତୁ, ପାଣ୍ଡବମାନେ ରାଜ୍ୟ ଲାଭ କରିବାର କି ପ୍ରକାର ପ୍ରାସଙ୍ଗିକତା ଅଛି । ଆମ ପିତା ଜ୍ୟେଷ୍ଠ । ରାଜ୍ୟର ସର୍ବମୟ ଅଧିକାରୀ ହେଉଛନ୍ତି ସେ । ତାଙ୍କୁ ଅନ୍ଧବୋଲି ସେଥିରୁ ବଞ୍ଚିତ କରାଗଲା । ଆମେ ସେତେବେଳେ ଅଜ୍ଞାନ ବାଳକ । ତାର ପ୍ରତିବାଦ କରି ପାରିଲୁ ନାହିଁ । ଆମ ପିତା ଭୟରେ ନିଜ ରାଜ୍ୟ ପ୍ରଦାନ କରିଥିଲେ । ଆଜି ସେ ଅବସ୍ଥାର ପରିବର୍ତ୍ତନ ହୋଇଛି । ଆମେ ବଞ୍ଚିଥିବା ପର୍ଯ୍ୟନ୍ତ, ଆମ ରାଜ୍ୟ କାହାକୁ ଦେବୁନାହିଁ । ଅତୀତର ତ୍ରୁଟି ବିଚ୍ୟୁତିକୁ ସୁଧାରି ନେବାର ସମୟ ଆଜି ଉପସ୍ଥିତ ହୋଇଛି । ଆପଣତ ଉଭୟ ପକ୍ଷର ଶୁଭାକାଙ୍କ୍ଷୀ । ବର୍ତ୍ତମାନ ଆମକୁ ସେ ଦିଗରେ ସାହାଯ୍ୟ କରନ୍ତୁ ।''

ଶ୍ରୀକୃଷ୍ଣ କ୍ରୋଧ କମ୍ପିତ କଣ୍ଠରେ କହିଲେ, '' ଦୁର୍ଯ୍ୟୋଧନ ! ତୁମେ ପ୍ରତ୍ୟେକ କ୍ଷେତ୍ରରେ ସୀମାଲଂଘନ କରିବାରେ ସିଦ୍ଧହସ୍ତ । ମନେ ରଖିବାକୁ ହେବ ରାଜଧର୍ମର ଏକ ବଳିଷ୍ଠ ପରମ୍ପରା ଅଛି । ତାରି ନିର୍ଦ୍ଦେଶରେ ପାଣ୍ଡବମାନଙ୍କ ହାତକୁ ଆପେ ଆପେ ରାଜ୍ୟ ଶାସନର ଗୁରୁ ଦାୟିତ୍ୱ ଆସି ପହଞ୍ଚିଥିଲା । ସେଇ ପରମ୍ପରାର ଅନୁବର୍ତ୍ତୀ ହୋଇ ପାଣ୍ଡୁଙ୍କ ପରେ ରାଜା ଧୃତରାଷ୍ଟ୍ର ସିଂହାସନ ଆରୋହଣ କରିଥିଲେ ତାଙ୍କର ପ୍ରତିନିଧି ଭାବରେ । ପାଣ୍ଡୁଙ୍କ ପଞ୍ଚପୁତ୍ର ସେତେବେଳେ ଶିଶୁ ଥିଲେ । ପରେ ଉଭୟପକ୍ଷର ଶାନ୍ତି ପାଇଁ ଏବଂ ସମ୍ମାନିତ ଢ଼ଙ୍ଗରେ ନିଜର ପ୍ରତିଷ୍ଠାରକ୍ଷା କରିବା ପାଇଁ ରାଜା ଧୃତରାଷ୍ଟ୍ର ରାଜ୍ୟକୁ ଦୁଇଭାଗ କରି ପାଣ୍ଡବମାନଙ୍କୁ ତାଙ୍କର ନ୍ୟାଯ୍ୟ ଅଧିକାର ଫେରାଇ ଦେଲେ ।

ତମେ ଯେପରି ଆଜି ସାରା ରାଜ୍ୟକୁ ନିଜର କରଗତ କରିବାପାଇଁ ଦାବି କରୁଛ । ସେତେବେଳେ ପାଣ୍ଡବଗଣ ମଧ୍ୟ ତାହା ସାବ୍ୟସ୍ତ କରିପାରିଥାନ୍ତେ, କିନ୍ତୁ ସେମାନେ ଶାନ୍ତି, ସହାବସ୍ଥାନ ଓ ସହଯୋଗକୁ ସମ୍ମାନ ଦେଇ ଧୃତରାଷ୍ଟ୍ରଙ୍କ ନିଷ୍ପତ୍ତିକୁ ଆନନ୍ଦରେ ଗ୍ରହଣ କରିନେଲେ । ଏବେ ତମେ କ'ଣ କଲ । ପ୍ରତି ମୁହୂର୍ତ୍ତରେ ପାଣ୍ଡବମାନଙ୍କର ଜୀବନ ନାଶ ପାଇଁ ଚେଷ୍ଟା କରୁଛ । କେବଳ ଧର୍ମବଳ ସେମାନଙ୍କୁ ରକ୍ଷା କରିଛି । ନିଜର ଭ୍ରାତୃବଧୂଙ୍କୁ ଯେପରି ରାଜ ସଭାରେ ଅପମାନିତ କଲ ତାହା ଚରମ ବର୍ବରତାର ସୀମାକୁ

ଚପି ଯାଇଛି । କପଟୀ ଶକୁନିଙ୍କୁ ନେଇ ଯେଉଁ କପଟ ପଶାଖେଳ ଖେଳି ପାଣ୍ଡବମାନଙ୍କୁ ବନବାସ ଦଣ୍ଡ ଦେଲ, ତାହା, କାହାରିକୁ ଅଛପା ନାହିଁ । ତୁମେ ତୁମର ପ୍ରତିଟି କାମରେ ନିଜ ଘୃଣ୍ୟ ଚରିତ୍ରର ପ୍ରମାଣ ଦେଇଛ । ରାଜ ପଣ ପାଇଁ ତୁମର ଯୋଗ୍ୟତା ଅଛି କି ନାହିଁ ବିବେକକୁ ପଚାର । ତୁମେ ପାପ ଅନ୍ୟାୟର ଏକ ଉତ୍ତୁଙ୍ଗ ପର୍ବତ । ଏ ବସୁଧା ତୁମର ପାପଭାରା ସହ୍ୟ କରି ପାରିବ ନାହିଁ । ତୁମର ନିଧନ ଏକାନ୍ତ ଆବଶ୍ୟକ । ସ୍ୱର୍ଗ ପ୍ରାପ୍ତିର ଆଶ୍ୱାସନାକୁ ନେଇ ନର୍କଗତିର ପ୍ରଳୟ ମୁହୂର୍ତ୍ତକୁ ଅପେକ୍ଷାକର ।''

ଏହି ସମୟରେ ସଭାକକ୍ଷରେ ପ୍ରବେଶ କଲେ ଦୁଃଶାସନ । ସେ ଦୁର୍ଯ୍ୟୋଧନଙ୍କୁ କହିଲେ, ''ଭାଇ ! କୁରୁକୁଳର ଯେଉଁ ଦୁର୍ଜ୍ଜୟ ବୀରମାନଙ୍କ ଉପରେ ତୁମେ ଏତେ ଆଶା ଭରସା ରଖିଥିଲ ସେମାନେ ବର୍ତ୍ତମାନ ଶ୍ରୀକୃଷ୍ଣଙ୍କର ଅନୁଗାମୀ । ମୋ ଭିତରେ ଆଶଙ୍କା ସୃଷ୍ଟି ହେଉଛି, ହୁଏତ ସେମାନେ ଷଡ଼ଯନ୍ତ୍ର କରୁଛନ୍ତି, ତୁମକୁ ମୋତେ, ଓ କର୍ଣ୍ଣଙ୍କୁ ବନ୍ଦି କରି ଯୁଧିଷ୍ଠିରଙ୍କ ହାତରେ ଅର୍ପଣ କରିବେ ।''

ଦୁର୍ଯ୍ୟୋଧନ କ୍ରୋଧରେ ଜର୍ଜରିତ ହୋଇ ଭାଇମାନଙ୍କ ଗହଣରେ ସଭାକକ୍ଷ ତ୍ୟାଗ କଲେ ଓ କିଛି ସମୟପରେ ଶ୍ରୀକୃଷ୍ଣଙ୍କୁ ବନ୍ଦି କରିବା ପାଇଁ ମାଡ଼ି ଆସିଲେ । ଶ୍ରୀକୃଷ୍ଣ ଦଣ୍ଡାୟମାନ ହୋଇ କହିଲେ, ''ତୁମର ଶକ୍ତିଥିଲେ ମୋତେ ବନ୍ଦିକର । ତୁମର ଧାରଣା ମୁଁ ଏକା ଆସିଛି ଏବଂ ଅସହାୟ । ଠିକ୍ ଅଛି, ମୋତେ ବନ୍ଦି କରିବା ପୂର୍ବରୁ ମୋ ଅସଲରୂପକୁ ଦେଖ । ସାହସ ଥିଲେ ବନ୍ଦିକରିପାର ।''

ଏହା କହି ଶ୍ରୀକୃଷ୍ଣ ତାଙ୍କର ରୁଦ୍ରରୂପ ଧାରଣକଲେ । ତାଙ୍କର ଶରୀର ହେଲା ତେଜୋଦୀପ୍ତ, ନୟନରୁ ନିର୍ଗତ ହେଲା ସ୍ଫୁଲିଙ୍ଗ । ନାସା ପୁଟରୁ ପ୍ରଳୟ ପ୍ରଭଞ୍ଜନ, ତାଙ୍କର ରୁଦ୍ରରୂପ ଦେଖି ସଭାସ୍ଥ ସମସ୍ତ ବ୍ୟକ୍ତି ଭୟରେ ଅସ୍ଥିର ହୋଇ ଉଠିଲେ । ଆକାଶରୁ ଦେବତାମାନେ ପୁଷ୍ପ ବୃଷ୍ଟିକଲେ ।

ଧୃତରାଷ୍ଟ୍ର ଯୋଡ଼ ହସ୍ତରେ ପ୍ରାର୍ଥନା କରି କହିଲେ, ''ହେ କେଶବ ! ଦୟାକରି ମୋତେ ଚକ୍ଷୁଦାନ କରନ୍ତୁ କେବଳ ଆପଣଙ୍କର ଦିବ୍ୟ ରୂପ ଦେଖିବା ପାଇଁ, ତାପରେ ଆପଣ ମୋତେ ପୂର୍ବପରି ଦୃଷ୍ଟିହୀନ କରିଦିଅନ୍ତୁ ।''

ଶ୍ରୀକୃଷ୍ଣ କ୍ଷଣିକ ପାଇଁ ତାଙ୍କୁ ଦିବ୍ୟ ଚକ୍ଷୁ ପ୍ରଦାନ କରିଥିଲେ । ଦିବ୍ୟରୂପ ଦର୍ଶନ କରି ସାରିବାପରେ ତାଙ୍କର ପୂର୍ବାବସ୍ଥା ଫେରିଆସିଲା । ଧୃତରାଷ୍ଟ୍ର କହିଲେ, ''ହେପ୍ରଭୁ ! ମୋର ଜୀବ ଆଜି ସାର୍ଥକ ହେଲା । ଶାନ୍ତି ପ୍ରତିଷ୍ଠା ପାଇଁ ମୁଁ ଅକ୍ଳାନ୍ତ ଚେଷ୍ଟାକରିମଧ୍ୟ ବିଫଳ ହେଲି । ଆପଣ ଦୟାକରି ମୋତେ ଭୁଲ ବୁଝିବେନାହିଁ ।''

ଧୃତରାଷ୍ଟ୍ରଙ୍କ ଡାକରା ପାଇ ଗାନ୍ଧାରୀ ରାଜସଭାରେ ଉପସ୍ଥିତ ଥିଲେ । ସେ ଦୁର୍ଯ୍ୟୋଧନଙ୍କୁ କହିଲେ, '' ପୁତ୍ରମୋର ! ଆମେ ଉଭୟେ ପିତା ମାତା ଅନ୍ତରର ସହିତ ଚାହୁଁ ଯେ ତୁମେ ଶ୍ରୀକୃଷ୍ଣଙ୍କର ଶାନ୍ତି ପ୍ରସ୍ତାବ ଗ୍ରହଣ କରିବ । କେବଳ କୁରୁବଂଶ ନୁହେଁ, ଏ ପୃଥିବୀକୁ ନିଶ୍ଚିତ ପ୍ରଳୟରୁ ରକ୍ଷା କରିବାପାଇଁ ତୁମେ ଧ୍ୱଂସ ପଥକୁ ପରିହାର କର ।''

ଦୁର୍ଯ୍ୟୋଧନ ମା'ଙ୍କୁ ଭକ୍ତିପୂତ ପ୍ରଣାମ ବାଡ଼ି ଦୃଢ଼ କଣ୍ଠରେ କହିଲେ, ''ମା', ମୁଁ ଯୁଦ୍ଧ ବ୍ୟତୀତ ଅନ୍ୟ ପନ୍ଥା ଦେଖିବାକୁ ପାଉନି । ଯୁଦ୍ଧ ଅନିବାର୍ଯ୍ୟ । ତୁମେ ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ପନ୍ଥା ଦେଖିବାକୁ ପାଉନି । ଯୁଦ୍ଧ ଅନିବାର୍ଯ୍ୟ । ତୁମେ ଦୟାକରି ମୋତେ ଆଶୀର୍ବାଦ ଦିଅ, ମୁଁ ଯୁଦ୍ଧରେ ବିଜୟ ଲାଭ କରେ ।''

ଗାନ୍ଧାରୀ କହିଲେ '' ବତ୍ସ ମୋର ଆଶୀର୍ବାଦ ନ୍ୟାୟ ଓ ଧର୍ମ ରକ୍ଷା ପାଇଁ । ଯେ ଧର୍ମ ପଥର ଆଶ୍ରୟ ନେବ ତାର ନିଶ୍ଚୟ ଜୟଲାଭ ହେବ ।''

ଶ୍ରୀକୃଷ୍ଣ ରାଜସଭାରୁ ବିଦାୟ ନେଇ ଆସିବାପରେ ଏକାନ୍ତରେ କର୍ଣ୍ଣଙ୍କ ସହିତ ଆଲୋଚନା କଲେ । କହିଲେ, ''କର୍ଣ୍ଣ ! ତୁମେ ନିଜକୁ ସୂତ ପୁତ୍ର ବୋଲି ମନେକରନାହିଁ । ତୁମେ ହେଉଛ ସୂର୍ଯ୍ୟଦେବଙ୍କ ପୁତ୍ର ଓ କୁନ୍ତୀ ଦେବୀ ତୁମର ପ୍ରକୃତ ମା' । ସାରଥି ଅଧିରଥ ଓ ତାଙ୍କ ସ୍ତ୍ରୀ ରାଧା ତୁମର ପାଳକ ପିତା ମାତା । ପାଣ୍ଡବମାନେ ତୁମର ରକ୍ତର ଭାଇ । ଯୁଦ୍ଧରେ ଜୟଲାଭ କଲେ ପାଣ୍ଡବମାନଙ୍କ ମଧ୍ୟରେ ତୁମେ ଜ୍ୟେଷ୍ଠ । ଧର୍ମତଃ ତୁମେଇ ରାଜସିଂହାସନ ଲାଭ କରିବ । ଧର୍ମରାଜ ଯୁଧିଷ୍ଠିର ତୁମକୁ ପାଛୋଟି ନେଇ ସିଂହାସନରେ ଅଭିଷେକ କରାଇବେ । ଅନ୍ୟ ଭାଇମାନେ ତୁମର ହେବେ ଆଜ୍ଞାନୁବର୍ତ୍ତୀ । ଯାଦବମାନଙ୍କଠାରୁ ତୁମେ ପୂର୍ଣ୍ଣ ସାମରିକ ସାହାଯ୍ୟ ପାଇବ । ବଳରାମ ଏବଂ ମୁଁ ତୁମ ସହିତ ସହଯୋଗ ସୂତ୍ରରେ ଆବଦ୍ଧ ହୋଇ ରହିବୁ । ତୁମେ ତୁମର ପିତା ସୂର୍ଯ୍ୟଙ୍କ ପରି ଏ ମହିମଣ୍ଡଳରେ ପ୍ରତିଭାତ ହେବ । ମୋର ଅନୁରୋଧ ରକ୍ଷାକର କର୍ଣ୍ଣ । ମନେରଖ ମୁଁ ତୁମର ପରମ ଶୁଭେଚ୍ଛୁ । ଏହି ନିଭୃତ ରହସ୍ୟ ପାଣ୍ଡବମାନେ ମଧ୍ୟ ଜାଣନ୍ତି ନାହିଁ । ଆବଶ୍ୟକତା ଦୃଷ୍ଟିରୁ ମୁଁ ତୁମକୁ ଜଣାଇଲି ।''

କର୍ଣ୍ଣ ଗମ୍ଭୀର ହୋଇ କହିଲେ, ''ହେ ଯଦୁପତି ! ମୋର ଆଜି ପରମ ସୌଭାଗ୍ୟ , ଆପଣଙ୍କର ସଶ୍ରଦ୍ଧ ସାନିଧ୍ୟ ଆକସ୍ମିକ ଭାବରେ ମୋତେ ମିଳିଛି । ମୁଁ ଆହୁରି ମଧ୍ୟ ଆନନ୍ଦିତ ଯେ ଆପଣ ମୋର ଏକାନ୍ତ ଶୁଭାଧ୍ୟାୟୀ । ମୋ ଜନ୍ମ ବୃତ୍ତାନ୍ତ ନେଇ ଏକ ଅନାବଶ୍ୟକ ରହସ୍ୟ ଆପଣ ଉଦ୍‌ଘାଟନ କରିଛନ୍ତି । ଏହା ମୋର ଶ୍ରେଷ୍ଠତା ବଢ଼ାଇବା ଦିଗରେ ବିଶେଷ କିଛି ସାହାଯ୍ୟ କରିବ ନାହିଁ । ମୁଁ ରାଧେୟ ନାମରେ ସାରା ବିଶ୍ୱରେ ପରିଚିତ । ଆପଣଙ୍କ ଉକ୍ତି ଯଦି ସତ୍ୟ, କୁନ୍ତେୟ ଭାବରେ ପରିଚିତ ହେବାର ଆଉ ଅବକାଶ ନାହିଁ । ମୋର ଏ ଜନ୍ମର ଶ୍ରେଷ୍ଠ ପରିଚୟ ହେଉଛି ସୂତପୁତ୍ର । ସୂତ ସ୍ତ୍ରୀର ସ୍ତନ୍ୟପାନ କରି ମୁଁ ଜୀବନ ଧାରଣ କଲି । ବର୍ତ୍ତମାନ ସ୍ତନ୍ୟ ଦାୟିନୀ ମା'କୁ ମା'ବୋଲି ଅସ୍ୱୀକାର କରିବାର ଧୃଷ୍ଟତା ମୋର ନାହିଁ । ମୁଁ ମଧ୍ୟ ଏକ ସୂତ କନ୍ୟାକୁ ବିବାହ କରିଛି । ସନ୍ତାନ ଲାଭ କରିଛି ମଧ୍ୟ । ମୁଁ ରାଜପୁତ୍ର ଓ ରାଜକୁଳରେ ମୋର ଜନ୍ମ ବୋଲି କହିବାର ଅଧିକାର ମୁଁ ହରାଇଛି । ଘଟଣା ଯଦି ସତ୍ୟ ହୋଇଥାଏ, ତେବେ ଏହା ମୋ ଜୀବନର ଏକ ତିକ୍ତ ମଧୁରସ୍ୱପ୍ନ ।''

ହେ ଶ୍ରୀକୃଷ୍ଣ ! ଆପଣ ମୋ ସ୍ଥାନକୁ ଆସି ବିଚାର କରନ୍ତୁ, ମୋତେ ଯଦି ସାରା ପୃଥିବୀର ରାଜା କରିଦିଆଯାଏ, ତେବେ ମୁଁ ତାହା ଗ୍ରହଣ ନକରି ଦୁର୍ଯ୍ୟୋଧନଙ୍କୁ ରାଜସିଂହାସନ ସମର୍ପଣ କରିଦେବି । ତାଙ୍କର ଅନୁଗତ ହୋଇରହିବା ମୋର ଏକମାତ୍ର ଧର୍ମ । ବିପଦ ମହାସାଗରରେ ବୁଡ଼ିଲେ ଉଭୟେ ବୁଡ଼ିବୁ, ଓ ରକ୍ଷା ପାଇଲେ ଉଭୟେ ରକ୍ଷା ପାଇବୁ । ମୁଁ ପାଣ୍ଡବ ମାନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ତଥା ଅପମାନିତ । କେବଳ ଦୁର୍ଯ୍ୟୋଧନଙ୍କ ପାଇଁ ମୁଁ ରାଜସମ୍ମାନ ଲାଭ କରିଛି । ସେ ମୋତେ ପ୍ରିୟ ବନ୍ଧୁଭାବରେ ଆଦରି ନେଇଛନ୍ତି । ମୁଁ ଦୁର୍ଯ୍ୟୋଧନଙ୍କୁ ଛାଡ଼ି, ପାଣ୍ଡବ ପକ୍ଷରେ ଯୋଗ ଦେଇପାରିବି ନାହିଁ । ମୁଁ କୃତଘ୍ନ ନୁହେଁ ।''

ଶ୍ରୀକୃଷ୍ଣ କର୍ଣ୍ଣଙ୍କୁ ତାଙ୍କର ବିଶ୍ୱସ୍ତତା ପାଇଁ ଧନ୍ୟବାଦ ଦେଇଥିଲେ । ଏହାପରେ ସେ ପାଣ୍ଡବମାନଙ୍କ ପାଖକୁ ଉପପ୍ଲବ୍ୟ ନଗରକୁ ଫେରି ଆସିଲେ ।

# ।। କୁନ୍ତୀ କର୍ଣ୍ଣଙ୍କୁ ଭେଟିଲେ ।।

ଶ୍ରୀକୃଷ୍ଣ ଶାନ୍ତି ପ୍ରସ୍ତାବରେ ବିଫଳ ହୋଇ ପାଣ୍ଡବମାନଙ୍କ ପାଖକୁ ଫେରି ଆସିଲେ । ବିଦୁର କୁନ୍ତୀ ଦେବୀଙ୍କ ପାଖକୁ ଯାଇ ସମସ୍ତ ଘଟଣା ବର୍ଣ୍ଣନା କଲେ । ଦୁର୍ଯ୍ୟୋଧନର ଯୁଦ୍ଧପାଇଁ ଦୃଢ଼ତା, ଧୃତରାଷ୍ଟ୍ରଙ୍କର ଅସହାୟତା, ଭୀଷ୍ମ ଦ୍ରୋଣ, ପ୍ରଭୃତିଙ୍କର ଶାନ୍ତି ପ୍ରତିଷ୍ଠାଦିଗରେ ବିଫଳତା, ଶକୁନିଙ୍କର କପଟ ସମ୍ଭାଷଣ, ଏସବୁ ବିଷୟରେ ସେ ଟିକିନିଖି ସୂଚନା ଦେଲେ । ଶ୍ରୀକୃଷ୍ଣ କର୍ଣ୍ଣଙ୍କର ହୃଦୟ ପରିବର୍ତ୍ତନ ପାଇଁ ଚେଷ୍ଟାକରି କିପରି ସଫଳ ହୋଇ ପାରିଲେ ନାହିଁ, ତାହା ମଧ୍ୟ କହିଲେ । ଆସନ୍ନ ଯୁଦ୍ଧକୁ କର୍ଣ୍ଣ ଏକ ମହାନ୍ ସୁଯୋଗ ବୋଲି ଗ୍ରହଣ କରିଛନ୍ତି । ଏହା ମାଧ୍ୟମରେ ସେ ଦୁର୍ଯ୍ୟୋଧନଙ୍କ ଉପକାରର ପ୍ରତ୍ୟୁପକାର କରିବା ପାଇଁ ସୁଯୋଗ ପାଇବେ । ଯୁଦ୍ଧର ଭୟାବହ ପରିଣତି ବିଷୟରେ ସେ ସମ୍ପୂର୍ଣ୍ଣ ସଚେତନ । କିନ୍ତୁ ଦୁର୍ଯ୍ୟୋଧନଙ୍କ ପ୍ରତି ତାଙ୍କର ବିଶ୍ୱସ୍ତତାର ପ୍ରମାଣ ପାଇଁ ସେ ଯୁଦ୍ଧ ଚାହାନ୍ତି, ଶାନ୍ତି ନୁହେଁ ।''

କୁନ୍ତୀ କହିଲେ, ''ମୁଁ ଭଲରୂପେ ଜାଣେ, ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ, ଏବଂ କର୍ଣ୍ଣ କୁରୁପକ୍ଷର ଅଜେୟ ବୀର । ସେମାନେ ଯୁଦ୍ଧରେ କେବେ ପରାଜୟ ବରଣ କରି ନାହାନ୍ତି । ମୋର ପୁତ୍ରମାନେ ଯୁଦ୍ଧ ଭୂମିରେ ସେମାନଙ୍କର ସମ୍ମୁଖୀନ ହେବା ନିଶ୍ଚୟ କଷ୍ଟକର । ତେବେ ଆଚାର୍ଯ୍ୟ ଦ୍ରୋଣଙ୍କର ହାତ ବୋଧହୁଏ ଉଠିବନି, ନିଜର ଶିଷ୍ୟମାନଙ୍କୁ ହତ୍ୟା କରିବା ପାଇଁ । ପିତାମହ ହୁଏତ ସ୍ୱାଭାବିକ ସ୍ନେହ-ଦୃଷ୍ଟିରୁ ହେଉ କିମ୍ବା କୁଳରକ୍ଷା ଦୃଷ୍ଟିରୁ ହେଉ, ପାଣ୍ଡବମାନଙ୍କୁ ମାରିବାକୁ ଉଦ୍ୟତ ହେବେନାହିଁ । ମୋର ଏକମାତ୍ର ଭୟ, ସେଇ କର୍ଣ୍ଣ ପାଇଁ । ଦୁର୍ଯ୍ୟୋଧନକୁ ସନ୍ତୁଷ୍ଟ କରିବା ପାଇଁ ଯୁଦ୍ଧ କ୍ଷେତ୍ରରେ ସେ ମୋ ପିଲାମାନଙ୍କୁ ମାରି ଦେଇପାରେ । ତାରି ବଳରେ ବଳିୟାନ ଦୁର୍ଯ୍ୟୋଧନ ବିଜୟର ସ୍ୱପ୍ନ ଦେଖୁଛି । ସେ ମନେମନେ ସ୍ଥିରକଲେ, ଏଇ ହେଉଛି ପ୍ରକୃଷ୍ଟ ସମୟ । ମୁଁ ତା' ପାଖକୁ ଯାଇ ତାର ଜନ୍ମରହସ୍ୟ ଉଦ୍‌ଘାଟନ କରିବି । ମୋର ପୁତ୍ର ହିସାବରେ ସେ ନିଶ୍ଚୟ ତା'ରକ୍ତର ଭାଇମାନଙ୍କ ସହିତ ଯୋଗ ଦେବ । ଯାଏ, ପ୍ରଭୁଙ୍କର ଇଚ୍ଛା ପୂରଣ ହେଉ ।

ମଧ୍ୟାହ୍ନ ସୂର୍ଯ୍ୟର ପ୍ରଖର କିରଣରେ ଝଲସି ଉଠୁଛି ଗଙ୍ଗାର ବିପୁଳ ଜଳଶଯ୍ୟା । ଶୁଣାଯାଉଛି ଏକ ଉଦାତ୍ତ କଣ୍ଠସ୍ୱର । କେହି ଜଣେ ଉଚ୍ଚାରଣ କରୁଛନ୍ତି ।

''ଉଦୟେ 'ବ୍ରହ୍ମ'ଣୋ ପେତଂ, ମଧ୍ୟାହ୍ନେ ତୁ ମହେଶ୍ୱରମ୍
ଅସ୍ତକାଳେ ଭବେଦ୍ ବିଷ୍ଣୁଃ, ତ୍ରିମୂର୍ତ୍ତିଶ୍ଚ ଦିବାକରଃ ।। ''

ହଁ, ଏଇତ, ମହାଦାନୀ କର୍ଣ୍ଣ ପୂର୍ବଦିଗକୁ ମୁହଁ କରି ଉର୍ଦ୍ଧ୍ୱ ବାହୁ ହୋଇ, ଆଦିତ୍ୟ ହୃଦୟ ସ୍ତୋତ୍ର ଉଚ୍ଚାରଣ କରୁଛନ୍ତି । ମୁଦ୍ରିତ ନୟନ, ଭାବାବିଷ୍ଟ ମୁଖମଣ୍ଡଳ । କୁନ୍ତୀଦେବୀ ଯାଇ ତାଙ୍କର ପୃଷ୍ଠ ଭାଗରେ ଛିଡ଼ା ହେଲେ । ତପୋମଗ୍ନ କର୍ଣ୍ଣ ମା' ପୃଥାଙ୍କର ଉପସ୍ଥିତି ଲକ୍ଷ୍ୟ କରି ପାରିଲେ ନାହିଁ । ନିଜର ପ୍ରଣୟିନୀ ପୃଥାଙ୍କୁ ପରିତ୍ୟକ୍ତ ପୁତ୍ର ସମକ୍ଷରେ ଦେଖି, ସୂର୍ଯ୍ୟଦେବ ଆନନ୍ଦରେ ଉଦ୍ଭାସିତ ହୋଇ ଉଠିଲେ । ତାଙ୍କର କିରଣ ଜାଳ ପ୍ରଖର ହୋଇ ଉଠିଲା । କୁନ୍ତୀ ଦେବୀ ଭାବ ଗଦ୍ ଗଦ୍ ହୋଇ ସୂର୍ଯ୍ୟ ଦେବଙ୍କୁ ପ୍ରଣାମ କଲେ । ମାତା, ପିତା, ପୁତ୍ରର ଅପୂର୍ବ ମିଳନ ।

ମଧ୍ୟାହ୍ନ ସୂର୍ଯ୍ୟର ପ୍ରଖର କିରଣରେ କୁନ୍ତୀଦେବୀଙ୍କର ପଦ୍ମକୋମଳ ମୁଖମଣ୍ଡଳ ରକ୍ତାଭ ହୋଇ ଉଠିଲା ।ସେ ତେଜ ସହ୍ୟ କରି ପାରିଲେ ନାହିଁ, ଉତ୍ତରୀରେ ମସ୍ତକ ଆଚ୍ଛାଦନ କରି ଧୈର୍ଯ୍ୟର ସହିତ ଅପେକ୍ଷା କଲେ ।

ପ୍ରଖରତା ଆସ୍ତେ କମି ଆସିଲା ।

ମଧ୍ୟାହ୍ନ ସୂର୍ଯ୍ୟ ଆକାଶରେ ଅବନମିତ ହେଲେଣି । କର୍ଣ୍ଣଙ୍କର ଧ୍ୟାନ ଭଙ୍ଗ ହୋଇଛି । ପଛକୁ ମୁହଁ ଫେରାଇ ସେ ଆଶ୍ଚର୍ଯ୍ୟ ହୋଇଗଲେ । ସମ୍ମୁଖରେ ପାଣ୍ଡବଜନନୀ ମହାରାଣୀ କୁନ୍ତୀଦେବୀ । ପଦ ତୀର୍ଥରେ ପ୍ରଣାମ ଢ଼ାଳି ନମ୍ର, କୋମଳ, କଣ୍ଠରେ କହିଲେ, ''ହେ ଦେବି ! ପିତା ସାରଥ୍ ଅଧିରଥ ଓ ମାତା ରାଧାଙ୍କ ପୁତ୍ର ରାଧେୟର ଭକ୍ତିପୂତ ପ୍ରଣାମ ଗ୍ରହଣ କରନ୍ତୁ । ଆପଣଙ୍କ ଆଗମନର କାରଣ ଦୟାକରି ପ୍ରକାଶ କରନ୍ତୁ ରାଜାମାତା ।''

''ରାଜମାତା ନୁହେଁ ପୁତ୍ର ! ପାଣ୍ଡବ ଜନନୀ କୁନ୍ତୀ । ସେ ତାର ସ୍ୱ ଗର୍ଭସମ୍ଭୂତ ଜ୍ୟେଷ୍ଠ ସନ୍ତାନ ମହାବୀର ମହାଦାନୀ କର୍ଣ୍ଣଙ୍କ ପାଖକୁ ଆସିଛି । ପ୍ରାଣାଧିକ ପୁତ୍ରମୋର । ତୁମେ ରାଧେୟ ନୁହଁ, କୁନ୍ତେୟ । ତୁମେ ମୋରି ରକ୍ତର ପଦ୍ମ । ସୂର୍ଯ୍ୟଦେବ ତୁମର ପିତା, କନ୍ୟା ସମୟରେ ଦୁର୍ବାସା ଋଷିଙ୍କୁ ସେବାରେ ମୁଗ୍ଧକରି ତାଙ୍କଠାରୁ ଏକ ମନ୍ତ୍ର ଲାଭକରିଥିଲି । ସେହି ମନ୍ତ୍ର ଶକ୍ତି ବଳରେ ଯେକୌଣସି ଦେବତାଙ୍କୁ ସ୍ମରଣ କଲେ ତାଙ୍କଠାରୁ ପୁତ୍ର ସନ୍ତାନ ସମ୍ଭବ ହେବ ବୋଲି ମୁଁ ବରପ୍ରାପ୍ତ ହୋଇଥିଲି । କୁମାରୀ ଜୀବନର କୌତୂହଳ ଭିତରେ ସୂର୍ଯ୍ୟଦେବଙ୍କୁ ସ୍ମରଣ କରି, ମନ୍ତ୍ରବଳରେ ତୁମକୁ ଜନ୍ମ ଦେଇଥିଲି । ତୁମେ ମୋର କନ୍ୟା ବେଳର କାନୀନ ପୁତ୍ର କର୍ଣ୍ଣ । ପିତା ସୂର୍ଯ୍ୟଙ୍କର କବଚ କୁଣ୍ଡଳ ନେଇ ତୁମେ ମୋରି ଗର୍ଭରୁ ଜନ୍ମଗ୍ରହଣ କରିଥିଲ । ତୁମେ ସୂତପୁତ୍ର ନୁହଁ । ଦେବପୁତ୍ର, ରାଜପୁତ୍ର, ଜ୍ୟେଷ୍ଠ ପାଣ୍ଡବ ।''

କର୍ଣ୍ଣ ଭାବଗଦ୍‌ଗଦ୍ ହୋଇ ପୁଣିଥରେ ମା'ଙ୍କର ପଦସ୍ପର୍ଶ କରି ପ୍ରଣାମ କଲେ । କମ୍ପିତ କଣ୍ଠରେ କହିଲେ, ''ମା ! ମୋର ଆଜି ପରମ ସୌଭାଗ୍ୟ ଯେ ମୁଁ ମୋର ଜନ୍ମଦାୟିନୀ ଜନନୀଙ୍କୁ ଏ ଜୀବନରେ ଦର୍ଶନ କରିବାର ସୁଯୋଗ ପାଇଲି ।''

କୁନ୍ତୀଦେବୀ ପୁତ୍ର କର୍ଣ୍ଣଙ୍କୁ ଆଲିଙ୍ଗନ କରି ଭାବ ବିହ୍ୱଳ ହୋଇ କହିଲେ, ''ମୋ ପରି ପାପିନୀ ଜନନୀକୁ ତୁମପରି ପୁଣ୍ୟଶୀଳ ସନ୍ତାନ, ମାତୃତ୍ୱର ଅଧିକାର ଦେଇଛି, ତାହାହିଁ ତୁମର ପରମ ଉଦାରତାର ପରିଚୟ । ଅତୀତର ଅପକର୍ମ ପାଇଁ, ଲଜ୍ଜା ତଥା ଅନୁଶୋଚନାରେ ମୁଁ ତିଳେ ତିଳେ ଦଗ୍ଧ ହୋଇଛି । ଗର୍ଭଧାରିଣୀ ମା ତା ସନ୍ତାନ ପ୍ରତି ଯେଉଁ ଅବିଚାର କରିଛି ତାହା, କ୍ଷମଣୀୟ ନୁହେଁ । ଏହା ମାତୃ ଜାତିର କଳଙ୍କ । ତଥାପି ତୁମେ କ୍ଷମା ଦେଇ ମା' ବୋଲି ଯେ ସମ୍ବୋଧନ କଲ, ତାହାହିଁ ମୋ ଜୀବନର ପରମ ସୌଭାଗ୍ୟ । ଜନ୍ମଦାୟିନୀ ମା ଆଜି ତା'ର ପୁତ୍ର ପାଖକୁ ଆସିଛି ଏକାନ୍ତ ଏକ ଯାଚନା ନେଇ । ଆଶା, ମହା ଦାନୀପୁତ୍ର, ତା ମା'ର ଭିକ୍ଷାଥାଳ ଅପୂରଣ ରଖିବ ନାହିଁ ।''

''ଦୟା କରି କହନ୍ତୁ ମା ! ମୋତେ ନିର୍ଦ୍ଦେଶ ଦିଅନ୍ତୁ, ମୁଁ, କିପ୍ରକାର ମାତୃ ସେବା କରିପାରିବି ।'' ଯୋଡ଼ ହସ୍ତ ହୋଇ ତଦ୍‌ଗତ କଣ୍ଠରେ କହିଲେ କର୍ଣ୍ଣ ।

''ମୁଁ କିଛି ଚାହେଁନା, ଏକମାତ୍ର ଚାହେଁ, ମୋ କୋଳକୁ ମୋ ପୁତ୍ର ଫେରିଯାଉ । ଧର୍ମ ପରାୟଣ ଯୁଧିଷ୍ଠିର ଅନ୍ୟ ଭାଇମାନଙ୍କ ସହିତ ତୁମକୁ ଆନନ୍ଦରେ ଗ୍ରହଣ କରିବେ । ତୁମେ ଅଗ୍ରଜ ଓ ପାଣ୍ଡବମାନଙ୍କ ରାଜସିଂହାସନ ଲାଭ କରିବାର ଅଧିକାର ତୁମର । କୌରବପକ୍ଷ ସମର୍ଥନ କରି ସହୋଦର ପାଣ୍ଡବମାନଙ୍କ ବିରୁଦ୍ଧାଚରଣ କରିବା ଉଚିତ ନୁହେଁ । ତୁମେ ଟିକିଏ ବିଚାର କର । ତୁମେ ଏକା ଚାହିଁଲେ ଏ ପୃଥିବୀ ଏକ ମହାପ୍ରଳୟରୁ ରକ୍ଷା ପାଇଯିବ । ତୁମ ବଳରେ ବଳୀୟାନ ଦୁର୍ଯ୍ୟୋଧନ, ସମର୍ଥନ ପ୍ରତ୍ୟାହାର ପରେ ଆପେ ଆପେ ନରମି ଯିବ । ଅଯଥା ରକ୍ତପାତ, ନରମେଧ ଯଜ୍ଞ ସଂଘଟିତ ହେବନାହିଁ । ଏକ ଉଦ୍ଧତ ଆତ୍ମାଭିମାନୀ ରାଜାର ଅହେତୁକ ଖିଆଲପାଇଁ ଶରଣାଗତ ପ୍ରଜାପୁଞ୍ଜ ଅକାଳମୃତ୍ୟୁ ବରଣ କରିବେ ନାହିଁ । ମହାନ୍ ଭରତ ବଂଶ ଧ୍ୱଂସ ମୁଖରୁ ରକ୍ଷା ପାଇଯିବ ।

କର୍ଣ୍ଣଙ୍କର କଣ୍ଠ ଟିକିଏ କଠୋର ହୋଇ ଉଠିଲା ।

ସେ ଦୃଢ଼ ଭାବରେ କହିଲେ, ''ମା ! ତମରି ସ୍ପର୍ଶ ପାଇ ମୋ ଜୀବନ ଆଜି ଧନ୍ୟ ହୋଇଛି ତଥାପି 'କୌନ୍ତେୟ' ବୋଲି ପରିଚୟ ଦେବାର ଅଧିକାର, ତୁମେ ତୁମ ହାତରେ ମୋ ଠାରୁ ଛଡ଼ାଇ ନେଇଛ । ଅସହାୟ ଏକ ସଦ୍ୟ ଜାତ ଶିଶୁ ପାଇଁ ତାର ଜନନୀର କ୍ରୋଡ଼ ହିଁ ସ୍ୱର୍ଗ । ମୋ'ପରି ଏକ ନବଜାତକକୁ ଯେଉଁ ଜନନୀ ନିର୍ମମ ଭାବରେ ଗଙ୍ଗାର ଉତ୍ତାଳ ତରଙ୍ଗ ସହିତ ଲଢ଼ିବାକୁ ଛାଡ଼ି ଦେଇଥିଲେ, ତାଙ୍କରି ଜ୍ୟେଷ୍ଠ ସନ୍ତାନ ବୋଲି ପରିଚୟ ଦେବାର ସୌଭାଗ୍ୟରୁ ମୁଁ ବଞ୍ଚିତ । ମୁଁ ସୂତ ପୁତ୍ର । ମା ରାଧାଙ୍କର ସ୍ତନ୍ୟପାନ କରି ଶକ୍ତି ସାମର୍ଥ୍ୟ, ଗୌରବ ଲାଭ କରିଛି । ଏକ ସୂତ କନ୍ୟାଙ୍କୁ ମୁଁ ବିବାହ କରିଛି ମଧ୍ୟ । ଅଧିରଥଙ୍କ କୁଳ ଗୋତ୍ରକୁ ନେଇ ମୋର ସମସ୍ତ କୌଳିକ ଓ ସାମାଜିକ କର୍ମ ସମ୍ପାଦିତ ହୋଇଛି । ମୋର ସନ୍ତାନ ସେହି ସୂତ ପରମ୍ପରାର କ୍ରମିକମାତ୍ର । ଜନନୀ ଭାବରେ ଆପଣଙ୍କ କୋଳକୁ ଫେରିଯିବାର ସୁଯୋଗ ଥିଲେ ମଧ୍ୟ ପାଣ୍ଡବ କୁଳକୁ ଫେରିବାର ପଥ ଚିରଦିନ ପାଇଁ ଅବରୁଦ୍ଧ । ତେବେ ମାଆର ଅନୁରୋଧ ବିଫଳ ହୁଏନାହିଁ। ମୁଁ ଶପଥ କରୁଛି, ଯୁଧିଷ୍ଠିର, ଭୀମ, ନକୁଳ ଓ ସହଦେବଙ୍କୁ ଯୁଦ୍ଧ ଭୂମିରେ ହତ୍ୟାକରିବିନାହିଁ । ପ୍ରକୃତ ଯୁଦ୍ଧ ହେବ ମୋର ସମାନସ୍କନ୍ଧ ଯୋଦ୍ଧା, ବୀର ଅର୍ଜୁନଙ୍କ ସହିତ । ମୁଁ ତାଙ୍କୁ ହତ୍ୟାକରିବାରେ ମୋର ଗୌରବ ବହୁଗୁଣିତ ହେବ । ନତୁବା ସେ ମୋତେ ହତ୍ୟାକରି ତାଙ୍କର ଅପରାଜେୟ ବୀରତାର ପ୍ରମାଣ ଦେବେ ।

ହେ ଜନନୀ ! ଆପଣଙ୍କର କିଛି କ୍ଷତି ହେଉନି, ଅର୍ଜୁନ ମଲେ ମଧ୍ୟ ଆପଣଙ୍କର ସେଇ ପାଞ୍ଚ ପୁତ୍ର ରହିବେ, କର୍ଣ୍ଣ ମଲେବି ସେଇ ପାଞ୍ଚ ପୁତ୍ର ରହିବେ । ବ୍ୟସ୍ତ ହେବାର କଣ ଅଛି । ମା ନିଜେ ମୋର ଜନ୍ମରହସ୍ୟ ଉଦ୍‌ଘାଟନ କରିଥିବାରୁ ମୋର ସଂଶୟ ଦୂର ହୋଇଛି । ବାଲ୍ୟାବସ୍ଥାରେ ଏହି ଆଲୋକଟିକେ ମିଳିଥିଲେ, ଆଜି ଏହି ଅନ୍ଧକାର କୁରୁକୁଳକୁ ଗ୍ରାସ କରିନଥାନ୍ତା । ରାଜା ଦୁର୍ଯ୍ୟୋଧନ ମୋର ପ୍ରାଣର ପ୍ରାଣ । ସେ ସୂତ ପୁତ୍ରକୁ ଦେଇଛନ୍ତି ରାଜ ଶିରୀ । ପାଣ୍ଡବମାନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ବ୍ୟକ୍ତିକୁ ସେ ସମ୍ମାନର ସହ ନିଜ ଭିତରକୁ ଟାଣି ନେଇଛନ୍ତି । ପାଣ୍ଡବମାନଙ୍କ ଠାରୁ ସେ ଦିଗରେ ସେ ମହତ୍ତର । ତାଙ୍କ ପାଖରେ ଅଛି ପ୍ରକୃତ କ୍ଷତ୍ରିୟର ଆଦର୍ଶ । ସେ ଭଲରୂପେ ଜାଣନ୍ତି, ଯୁଦ୍ଧରେ କୌଣସ ପକ୍ଷର ଲାଭ ହୁଏ ନାହିଁ । ବୀରର କର୍ତ୍ତବ୍ୟ, ଯୁଦ୍ଧ ଭୂମିରେ ସେ ବୀରଗତି ଲାଭ କରିବ । ତାହାହିଁ ତା ପାଇଁ ମୁକ୍ତିର ସୋପାନ । ଲାଭ କ୍ଷତିର ବିଚାର ଅତ୍ୟନ୍ତ ଗୌଣ । ଯୁଦ୍ଧ ଅନିବାର୍ଯ୍ୟ । ପାଣ୍ଡବ ବୋଲି ପରିଚୟ ଦେବାର ପଥ ମୋ ଲାଗି ଚିରଦିନ ପାଇଁ ବନ୍ଦ ହୋଇ ଯାଇଛି ମା । ମୋର ଆଜି ପରମ ସୌଭାଗ୍ୟ ଯେ ଦୁର୍ଦ୍ଦିନ ମୋତେ ଗର୍ଭଧାରିଣୀ ମାଙ୍କ ଦର୍ଶନର ସୁଯୋଗ ଦେଲା, ନହେଲେ ଏ ଦୁର୍ଲଭ ସୁଯୋଗରୁ ମୋତେ ସାରାଜୀବନ ବଞ୍ଚିତ ହେବାକୁ ପଡ଼ିଥାନ୍ତା । ମୋତେ ଆଶୀର୍ବାଦ ଦିଅନ୍ତୁ ମା' ।''

କର୍ଣ୍ଣ ଭକ୍ତି ନମ୍ର ପ୍ରଣାମ ମାଙ୍କୁ ଜଣାଇଲେ ।

କୁନ୍ତୀଦେବୀ ପୁତ୍ରକୁ ଆଲିଙ୍ଗନ କରି କହିଲେ, '' ତୁମର ମଙ୍ଗଳ ହେଉ ।'' କର୍ଣ୍ଣ ବିଦାୟ ନେଲେ । ପାଣ୍ଡବ ଜନନୀ ଗଭୀର ଦୁଃଖାବେଗ ଭିତରେ ବିଦୁରଙ୍କ ଘରକୁ ଫେରିଆସିଲେ । ବାହାରେ ଏବଂ ଭିତରେ ତାଙ୍କର ପ୍ରସାରିତ ମୌନତାର ଏକ ନିର୍ବିକଳ୍ପ ଘନଛାୟା ।

──────────── ଅଠର

# ।। ଶ୍ରୀକୃଷ୍ଣଙ୍କର ପ୍ରତ୍ୟାବର୍ତ୍ତନ ।।

ଦ୍ୱାରକାନାଥ ଶ୍ରୀକୃଷ୍ଣ ହସ୍ତିନାପୁରରୁ ଉପପ୍ଲବ୍ୟ ନଗରକୁ ଫେରିଆସିଲେ । ନେଇ ଆସିଛନ୍ତି ପାଣ୍ଡବମାନଙ୍କ ପାଇଁ ନୈରାଶ୍ୟ ଓ ବିଫଳତା । ଯାତ୍ରାର ପରିଣତି ଯେ ସେଇଆ ହେବ ତାହା ସେ ଭଲରୂପେ ଜାଣିଥିଲେ । ତଥାପି ସେ ଯାଇଥିଲେ ଶେଷ ଚେଷ୍ଟା କରିବାକୁ । ହୁଏତ ପରିସ୍ଥିତିର ପ୍ରଭାବରେ କିଛି ପରିବର୍ତ୍ତନ ହୋଇପାରେ । କିନ୍ତୁ ଯାହା କିଛି ହେଲା ସବୁ ପ୍ରତିକୂଳ ଦିଗରେ । ଦୁର୍ଯୋଧନଙ୍କର କ୍ରୋଧାଗ୍ନି ଅଧିକ ପ୍ରଜ୍ୱଳିତ ହୋଇଛି । ଜନନୀ କୁନ୍ତୀଙ୍କର ଭାବମୂର୍ତ୍ତି କ୍ଷୁଣ୍ଣ ହୋଇଛି କର୍ଣ୍ଣଙ୍କ ପାଖରେ । କର୍ଣ୍ଣ ଓ ଦୁର୍ଯ୍ୟୋଧନଙ୍କର ସମ୍ପର୍କ ଅଧିକ ଦୃଢ଼ୀଭୂତ ହୋଇଛି । ଖାଲି ବିଫଳତା... ବିଫଳତା ।

ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ କହିଲେ , ''ମୋର ଶାନ୍ତି ପ୍ରସ୍ତାବ କୌରବମାନେ ଗ୍ରହଣ କରିନାହାନ୍ତି । ଯୁଦ୍ଧପାଇଁ ସେମାନେ ମାନସିକ ସ୍ତରରେ ପ୍ରସ୍ତୁତ ହୋଇ ସାରିଥିଲେ । ମୁଁ ଯିବାପରେ ତାହା ବାସ୍ତବତାର ରୂପ ନେଇ ଯାଇଛି । କୁରୁକ୍ଷେତ୍ରକୁ ସେମାନେ ସୈନ୍ୟ ପ୍ରେରଣ କଲେଣି । ପୁଷ୍ୟାନକ୍ଷତ୍ରରେ ଯୁଦ୍ଧାରମ୍ଭ କରିବେ ।''

''ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ମାତା ଗାନ୍ଧାରୀ, ମହାରାଜା ଧୃତରାଷ୍ଟ୍ର, ସମସ୍ତେ କଣ ଯୁଦ୍ଧ ପାଇଁ ଏକମତ ? କେହିବି ବାରଣ କରିପାରିଲେ ନାହିଁ ? ମହାପ୍ରଳୟକୁ ସମସ୍ତେ ଆମନ୍ତ୍ରଣ କଲେ, ଆମେତ ରାଜ୍ୟଲାଭର ଦାବିରୁ ଓହରିଗଲୁ । ମାତ୍ର ପାଞ୍ଚଖଣ୍ଡ ପଡ଼ା ପାଇଁ ଅନୁରୋଧ କରିଥିଲୁ, ତାହା ମଧ୍ୟ ଅଗ୍ରାହ୍ୟ ହେଲା । ଅଥଚ ଗ୍ରହଣୀୟ ହେଲା ସର୍ବଗ୍ରାସୀ ପ୍ରଳୟ ।'' ଗମ୍ଭୀର କଣ୍ଠରେ କହିଲେ ଯୁଧିଷ୍ଠିର ।

ଶ୍ରୀକୃଷ୍ଣ ହସି ହସି କହିଲେ, ''ଯାହା ଭବିତବ୍ୟ ତାକୁ ଲଂଘନ କରିବାର ଶକ୍ତି କାହାର ଅଛି । ସର୍ବନାଶର ପଥ ଅତ୍ୟନ୍ତ ପିଚ୍ଛିଳ, ଯେ ଥରେ ସେଥିରେ ଗୋଡ଼ ଦିଏ, ଖସି ଯିବାର କ୍ଷଣିକ ଆନନ୍ଦରେ ପାପର ପୂର୍ଣ୍ଣଛେଦ ପଡ଼େ । ଦୁର୍ଯ୍ୟୋଧନ ପ୍ରଳୟ ଯଜ୍ଞର ପୁରୋଧା ଭାବରେ, ପାପର ପୂର୍ଣ୍ଣାହୁତି ନପକାଇବେ କିପରି ?

ଭୀଷ୍ମଦେବ ଦୁର୍ଯ୍ୟୋଧନଙ୍କୁ ବହୁତ ବୁଝାଇଲେ । ବିନାଶ ପଥରୁ ଫେରିଯିବାପାଇଁ ଉପଦେଶ ଦେଲେ । କୌଣସି କଥାରେ ସେ କର୍ଣ୍ଣପାତ କଲେନାହିଁ । ଦ୍ରୋଣାଚାର୍ଯ୍ୟ ମଧ୍ୟ କମ ବୁଝାଇ ନାହାନ୍ତି । ସେ କହିଲେ, ତୁମେ ରାଜପରମ୍ପରାର ଶୃଙ୍ଖଳା ଭଙ୍ଗ କରନାହିଁ ଦୁର୍ଯ୍ୟୋଧନ । ରାଜା ପାଣ୍ଡୁ ନିଜର ଜ୍ୟେଷ୍ଠଭ୍ରାତ ଧୃତରାଷ୍ଟ୍ର ଓ କନିଷ୍ଠ ଭ୍ରାତ ବିଦୁରଙ୍କୁ ରାଜ୍ୟର ତତ୍ତ୍ୱାବଧାନପାଇଁ ତତ୍ତ୍ୱାବଧାୟକ ହିସାବରେ ରାଜ୍ୟଭାର ଅର୍ପଣ କରି ବନଗମନ କଲେ । ପାଣ୍ଡବ ପୁତ୍ରମାନେ ପରିଣତ ବୟସର ହୋଇଥିଲେ ଏ ପ୍ରଶ୍ନ ଉଠିନଥାନ୍ତା । ମହାତ୍ମା ବିଦୁର ଓ ଧୃତରାଷ୍ଟ୍ର ରାଜ୍ୟ ପରିଚାଳନା ଦିଗରେ ସମାନ ଭାବରେ ଭାରପ୍ରାପ୍ତ କିନ୍ତୁ ବିଦୁର ଜ୍ୟେଷ୍ଠ ଭାଇଙ୍କୁ ସମ୍ମାନ ଦେଇ ତାଙ୍କୁ ହସ୍ତିନାର ରାଜାରୂପେ ପ୍ରତିଷ୍ଠା କରି ନିଜେ ତାଙ୍କର

ଅଧୀନତା ସ୍ୱୀକାର କଲେ । ଆଜିପର୍ଯ୍ୟନ୍ତ ସେ ତାଙ୍କର ଜ୍ଞାନ ଚକ୍ଷୁରୂପେ କାମ କରୁଛନ୍ତି । ତାଙ୍କ କଥା ମାନ, ତ୍ୟାଗ ସମୃଦ୍ଧ କୁରୁକୁଳକୁ ବିନାଶ ବେଦିରେ ଉତ୍ସର୍ଗ କରନାହିଁ ।''

ବିଦୁରଙ୍କ ବାକ୍ୟ ଥିଲା କଠୋର ଓ ଅତ୍ୟନ୍ତ ମର୍ମସ୍ପର୍ଶୀ । ସେ କହିଲେ, ଅପରିଣାମ ଦର୍ଶୀ ଦୁର୍ଯ୍ୟୋଧନଙ୍କର କି ଅଧିକାର ଅଛି ନିଷ୍ପତ୍ତି ନେବାପାଇଁ । କୁରୁବଂଶର କୀର୍ତ୍ତି ରକ୍ଷାପାଇଁ ଯାହାର କିଛି ଅବଦାନ ନାହିଁ, ବିନାଶ ପାଇଁ ତାର ମତାମତକୁ ବିଚାରକୁ ନିଆଯାଉଛି କାହିଁକି ? ରାଜା ଧୃତରାଷ୍ଟ୍ର ଏ ଧର୍ମ ରାଜ୍ୟକୁ ଆସନ୍ନ ଧ୍ୱଂସ ମୁଖରୁ ରକ୍ଷାକରନ୍ତୁ । ସେ ରାଜା....ସେ ଦୃଢ଼ ନିଷ୍ପତ୍ତି ନିଅନ୍ତୁ ।''

ମାତା ଗାନ୍ଧାରୀ ମଧ୍ୟ ବିଦୁରଙ୍କ ମତକୁ ସମର୍ଥନ କରିଥିଲେ । କହିଲେ, ''ଏ କୁରୁ ରାଜ୍ୟର ପ୍ରକୃତ ଅଧିଶ୍ୱର ହେଉଛନ୍ତି ଭୀଷ୍ମ ଦେବ । ସେ ରାଜ୍ୟଲୋଭ ତ୍ୟାଗ କରି, ରାଜ ପରମ୍ପରାର ନିର୍ଦ୍ଦିଷ୍ଟ ନୀତି ସଂହିତା ବିଚାର କରି, ପାଣ୍ଡବଙ୍କୁ ସିଂହାସନ ଦାନ କରିଛନ୍ତି । ତୁମ ପିତା ଉତ୍ତରାଧିକାରୀ ସୂତ୍ରରେ ରାଜଗାଦି ପାଇନାହାନ୍ତି । ପାଣ୍ଡୁଙ୍କର ପ୍ରତିନିଧି ରୂପେ ସେ ରାଜ୍ୟ ଶାସନ କରୁଛନ୍ତି । ଭୀଷ୍ମଦେବ ଜୀବିତ ଥିବା ପର୍ଯ୍ୟନ୍ତ ତାଙ୍କର ଆଦେଶ ଉପଦେଶ ଓ ସିଦ୍ଧାନ୍ତ ଏକମାତ୍ର ସମାଧାନର ପନ୍ଥା ।''

ଧୃତରାଷ୍ଟ୍ର କହିଲେ, ' ପୁତ୍ର ଦୁର୍ଯ୍ୟୋଧନ ! ମୁଁ ତୁମର ଆବେଗକୁ ବୁଝିପାରୁଛି, ତେବେ କୁରୁବଂଶର ଆଦି ପୁରୁଷମାନଙ୍କଠାରୁ ଆମ ପର୍ଯ୍ୟନ୍ତ, ରାଜାମାନଙ୍କର ସିଂହାସନ ଆରୋହଣର ପରମ୍ପରାଗତ ଇତିହାସକୁ ଅନୁଧ୍ୟାନ କର । ଜ୍ୟେଷ୍ଠ ସର୍ବଦା ଶ୍ରେଷ୍ଠ ନୁହେଁ । ଯେଉଁ ଦୈବୀ କାରଣ ନେଇ ମୁଁ ରାଜ୍ୟ ଲାଭରୁ ବଞ୍ଚିତ ହୋଇଥିଲି, ସେହି ପ୍ରକାର କାରଣ ନେଇ ପୂର୍ବରୁ ଅନ୍ୟ ଜ୍ୟେଷ୍ଠ ଜନ୍ମା ରାଜପୁତ୍ରମାନେ ସିଂହାସନ ପାଇନାହାନ୍ତି । ଯେଉଁ ରାଜ୍ୟର ମୁଁ ସ୍ୱୀକୃତ ଅଧିକାରୀ ନୁହେଁ, କେବଳ ରକ୍ଷକମାତ୍ର, ସେ ରାଜ୍ୟ ଲାଭପାଇଁ ତୁମେ ବ୍ୟଗ୍ର କାହିଁକି ? ପାଣ୍ଡବମାନଙ୍କ ସହିତ ମିତ୍ରତା କରି ରାଜ୍ୟ ଭୋଗକର । ଯାହା ଆନନ୍ଦରେ ମିଳିଛି ତାହା ଆନନ୍ଦରେ ଗ୍ରହଣ କରି ସନ୍ତୁଷ୍ଟ ହୁଅ ।''

ଦୁର୍ଯ୍ୟୋଧନ ଏ ସବୁ ଉପଦେଶକୁ ସେମାନଙ୍କର ପ୍ରଳାପ ଭାବି ପ୍ରତ୍ୟାଖ୍ୟାନ କଲେ । ମୋର ଉପଦେଶର ମୂଲ୍ୟ କିଛି ରହିଲା ନାହିଁ । ଶାନ୍ତି ପ୍ରସ୍ତାବରେ ବିଫଳ ହେଲେ ମଧ୍ୟ ଏ ଯାତ୍ରା ଆମକୁ କିଛି ସଫଳତା ଦେଇଛି । ମୁଁ ସେମାନଙ୍କ ଯୁଦ୍ଧ ପ୍ରସ୍ତୁତିର ପୂର୍ଣ୍ଣଙ୍ଗ ଚିତ୍ର ପାଇଛି । କୁରୁସଭାର ପ୍ରତିକୂଳ ପ୍ରତିକ୍ରିୟା ଅନୁଭବ କରିଛି । ପ୍ରତ୍ୟେକଙ୍କୁ ଯୁଦ୍ଧର ଭୟାବହତା ବିଷୟରେ ବୁଝାଇ ତାଙ୍କର ମନକୁ ଆମ ଆଡ଼କୁ ଆକର୍ଷଣ କରିଛି ।''

ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଧନ୍ୟବାଦ ଦେଇ କହିଲେ, ''ହେ ମଧୁସୂଦନ ! ଆପଣ ଧନ୍ୟବାଦର ଊର୍ଦ୍ଧ୍ୱରେ ଆପଣ ଯେଉଁ ଦୁରୂହ କାର୍ଯ୍ୟ ସଂପାଦନ କରିଛନ୍ତି ତାର ପଟାନ୍ତର ନାହିଁ । ଆପଣତ ସବୁ ବିଦ୍ୟାରେ ନିପୁଣ । ସବୁ ଅବସ୍ଥାରେ ସମଭାବାପନ୍ନ । ଯୁଦ୍ଧ ଓ ଶାନ୍ତି,, ଉଭୟ ପରିସ୍ଥିତିରେ ଆପଣ ପ୍ରବୀଣ । ଆପଣହିଁ ଏହି ପାଣ୍ଡବ କୁଳର ମୁରବି । ଆମ୍ଭମାନଙ୍କ ଉପରେ ଯେଉଁ ଆକସ୍ମିକ ଯୁଦ୍ଧକୁ ଲଦି ଦିଆଯାଉଛି ତାର ସମ୍ମୁଖୀନ ହେବାପାଇଁ ଆପଣ ଆମର ପଥ ପ୍ରଦର୍ଶକ ହୁଅନ୍ତୁ ।''

ଅଳ୍ପସମୟପରେ ହସ୍ତିନାପୁରରୁ ଉଲୁକ ନାମରେ ଏକ ଦୂତ ଆସି ପହଞ୍ଚିଲେ । ସେ ଯୁଧିଷ୍ଠିରଙ୍କୁ କହିଲେ , ''ହେ ଧର୍ମ ରାଜ ! ରାଜା ଦୁର୍ଯ୍ୟୋଧନ ଆପଣଙ୍କ ପାଖକୁ ନିମନ୍ତ୍ରଣ ପଠାଇଛନ୍ତି । ମାର୍ଗଶିର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ କୁରୁକ୍ଷେତ୍ର ରଣାଙ୍ଗନରେ କୁରୁ ପାଣ୍ଡବ ମଧ୍ୟରେ ଯୁଦ୍ଧାରମ୍ଭ ହେବ । ନିମନ୍ତ୍ରଣ ରକ୍ଷାକରି ପ୍ରସ୍ତୁତ ହୋଇ ସେଠାରେ ପହଞ୍ଚିବେ । ଏପ୍ରକାର ଏକ ଅପ୍ରୀତିକର ଅଶୁଭ ସମ୍ବାଦ, ଦୂତର କର୍ତ୍ତବ୍ୟ ଦୃଷ୍ଟିରୁ ଦେଉଥିବାରୁ ମୋତେ କ୍ଷମା ଦେବେ ।''

ଯୁଧିଷ୍ଠିର କେଶବଙ୍କ ଆଡ଼କୁ ଚାହିଁଲେ । ଶ୍ରୀକୃଷ୍ଣ ଶକୁନିପୁତ୍ର ଉଲ୍ଲୂକଙ୍କୁ ଲକ୍ଷ୍ୟକରି କହିଲେ, ''ଠିକ୍ ଅଛି, ତୁମେ ଦୁର୍ଯ୍ୟୋଧନକୁ କହିବ, ତାଙ୍କର ଅଭିଳାଷ ପୂର୍ଣ୍ଣ ହେବ । କୁରୁଦୂତ ପ୍ରତ୍ୟାବର୍ତ୍ତନ କଲେ ।

ଧର୍ମରାଜ ଯୁଧିଷ୍ଠିର ଭାଇମାନଙ୍କୁ ଲକ୍ଷ୍ୟକରି କହିଲେ, ଆମର ସମସ୍ତ କଳ୍ପନା ଜଳ୍ପନାର ଅବସାନ ଘଟିଛି । କୁରୁକୁଳର ରଣନିମନ୍ତ୍ରଣ ଆମେ ରକ୍ଷା କରିଛେ । ବର୍ତ୍ତମାନ ଆମକୁ ପ୍ରସ୍ତୁତ ହେବାକୁ ପଡ଼ିବ ।''

ଶ୍ରୀକୃଷ୍ଣ କହିଲେ, ''ଏକାଦଶ ଅକ୍ଷୌହିଣୀ ସେନା କୌରବମାନେ ସଂଗ୍ରହ କରିଛନ୍ତି । ତାଙ୍କର ପ୍ରଧାନ ସେନାପତି ହେଉଛନ୍ତି ଭୀଷ୍ମଦେବ ।''

ଧର୍ମରାଜ କହିଲେ, ଅବଶ୍ୟ ଆମର ସୈନ୍ୟ ସଂଖ୍ୟା ସାତ ଅକ୍ଷୌହିଣୀ । କୌରବ ମାନଙ୍କର ସୈନ୍ୟ ସଂଖ୍ୟାର ସାମାନ୍ୟ ଅର୍ଦ୍ଧାଧିକ । ତେବେ ଆମେ ଚିନ୍ତିତ ହେବୁ । ଯଦୁପତି ଯାହାର ସହାୟ, ସୈନ୍ୟବଳ କଳନା କରିବାର ଆବଶ୍ୟକତା ସେଠାରେ ନାହିଁ । ବର୍ତ୍ତମାନ ଆମର ସପ୍ତ ଅକ୍ଷୌହିଣୀ ସୈନ୍ୟଙ୍କୁ ସାତ ଭାଗରେ ବିଭକ୍ତ କରିବାକୁ ପଡ଼ିବ । ସାତଜଣ ବୀର ସେନାପତିଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ସେମାନେ କୁରୁସେନାର ସମ୍ମୁଖୀନ ହେବେ । ମୁଁ ଭାବୁଛି, ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ସାତ୍ୟକି, ଚେକିତାନ ଓ ଭୀମସେନ ସେନାପତିର ଦାୟିତ୍ୱ ତୁଲାଇଲେ ଭଲ ହୁଅନ୍ତା ।

ଧର୍ମରାଜ ଯୁଧିଷ୍ଠିରଙ୍କ ପ୍ରସ୍ତାବକୁ ଅକୁଣ୍ଠଚିତ୍ତରେ ସମସ୍ତେ ସମର୍ଥନ କଲେ । ତାପରେ ପ୍ରଶ୍ନ ଉଠିଲା,ଏଇ ସାତଜଣ ସେନାପତିଙ୍କର ନେତୃତ୍ୱ ନେବ କିଏ । ତାଙ୍କରି ଇଙ୍ଗିତରେ ପରିଚାଳିତ ହେବେ ସେନାପତିମାନେ । ସେ ପ୍ରଥମେ ସହଦେବଙ୍କୁ ନିଜର ସ୍ପଷ୍ଟ ମତ ଦେବାପାଇଁ ଅନୁରୋଧକଲେ । ଏକ ନିର୍ଭୀକ ପ୍ରଭାବମୁକ୍ତ ମତାମତର ବାତାବରଣ ସୃଷ୍ଟିପାଇଁ ସାନରୁ ବଡ଼କ୍ରମରେ ସେ ପରାମର୍ଶ ଲୋଡ଼ିଥିଲେ ।

ସହଦେବ କହିଲେ, ''ମୋ ବିଚାରରେ, ଆମ୍ଭେମାନେ ଚରମ ଦୁଃଖ ବିପଦରେ ପଡ଼ି, ରାଜା ବିରାଟଙ୍କର ଆଶ୍ରିତ ଭାବରେ ନିରାପଦରେ ମସୟ ଅତିବାହିତ କରିଛେ । ସେ ଚରମ ଦୁର୍ଦ୍ଦିନ ଭିତରେ ଥିଲେ ଆମର ତଥାକଥିତ ନେତା ଓ ଦିଗ୍‌ଦର୍ଶକ । ସେ ଜଣେ ପରାକ୍ରମଶାଳୀ ଯୋଦ୍ଧା ଓ ଆମ ବିପଦ ଆପଦର ଅନ୍ତରଙ୍ଗ ସାଥି । ସେ ମୁଖ୍ୟ ସେନାପତି ହେଲେ ଭଲ ହୁଅନ୍ତା ।''

ନକୁଳ କହିଲେ, ''ସହଦେବଙ୍କ ପ୍ରସ୍ତାବ ଅଭିନନ୍ଦନୀୟ, ତେବେ ମୁଁ ଭାବୁଛି, ରାଜା ଦ୍ରୁପଦ ହେଉଛନ୍ତି କୌରବମାନଙ୍କର ପାରମ୍ପରିକ ଶତ୍ରୁ । ଆମ ଭିତରେ ସେ ଜ୍ୟେଷ୍ଠ ଓ ଶ୍ରେଷ୍ଠ ମଧ୍ୟ । ଶକ୍ତି, ସାମର୍ଥ୍ୟ ରଣକୌଶଳ ଓ ସାହସିକତାରେ ଭୀଷ୍ମ ଓ ଦ୍ରୋଣଙ୍କଠାରୁ କୌଣସି ଦିଗରେ ସେ କମ୍ ନୁହନ୍ତି । ସେମାନଙ୍କୁ ପରାହତ କରିବାର ସୁଯୋଗକୁ ସେ ଅପେକ୍ଷା କରିଛନ୍ତି । ତାଙ୍କୁ ପ୍ରଧାନ ସେନାପତି କଲେ ବୋଧହୁଏ ଅଧିକ ଯୁକ୍ତି ଯୁକ୍ତ ହୁଅନ୍ତା ।''

ଅର୍ଜ୍ଜୁନଙ୍କୁ ନିଜର ମତାମତ ଦେବାପାଇଁ ଯୁଧିଷ୍ଠିର ଅନୁରୋଧ କଲେ । ଅର୍ଜ୍ଜୁନ କହିଲେ, ''ପୂର୍ବ ପ୍ରସ୍ତାବ ଗୁଡ଼ିକ ନିଶ୍ଚୟ ଉତ୍ତମ, ତେବେ ମୁଁ ଭାବୁଥିଲି ଜଣେ ଯୁବକ ଏ ଗୁରୁ ଦାୟିତ୍ୱ ବହନ କଲେ ପ୍ରବୀଣ ମାନଙ୍କର ଭାରା କିଛି ମାତ୍ରାରେ ଲାଘବ ହୁଅନ୍ତା । ଧୃଷ୍ଟଦ୍ୟୁମ୍ନ ଏକ ଅଜେୟ ଯୁବଶକ୍ତିର ପ୍ରତୀକ । ସମୟର ପରିବର୍ତ୍ତନ ସହିତ ନୂତନ ରଣ କୌଶଳରେ ସେ ଧୁରୀଣ । ଦ୍ରୋଣଙ୍କ ନିଧନ ପାଇଁ ସେ ଜନ୍ମ ଗ୍ରହଣ କରିଛନ୍ତି । ଭୀଷ୍ମଙ୍କର ଶରଜାଳକୁ ବ୍ୟର୍ଥ କରିଦେବାର ଶକ୍ତି ତାଙ୍କର ଅଛି । ମୁଁ ଭାବୁଛି ସେ ମୁଖ୍ୟ ସେନାପତି ହେବାପାଇଁ ଏକମାତ୍ର ଯୋଗ୍ୟ ବ୍ୟକ୍ତି ।''

ଯୁଧିଷ୍ଠିର ତା'ପରେ ଭୀମଙ୍କର ମତାମତ ପଚାରିଲେ । ଭୀମସେନ କହିଲେ, ଯେତେଜଣଙ୍କ ନାମ ସୁପାରିଶ କରାଯାଇଛି ସେମାନେ ସମସ୍ତେ ଏ ଦାୟିତ୍ୱ ବହନ କରିବାପାଇଁ ଯୋଗ୍ୟ ଓ ବିଶେଷ

ଭାବରେ ସମର୍ଥ ମଧ୍ୟ । ମୁଁ ଆଉ ଏକ ଦୃଷ୍ଟିକୋଣରୁ ବିଚାର କରୁଥିଲି । ଭୀଷ୍ମଦେବଙ୍କ ପରି ଅଜେୟ ବୀରଙ୍କୁ ବିନାଶ କରିବାର ଶକ୍ତି ଏମାନଙ୍କ ଭିତରୁ କାହାରି ନାହିଁ । ପରମ ପରାକ୍ରମଶାଳୀ ଶିଖଣ୍ଡୀ ଭୀଷ୍ମଦେବଙ୍କ ବିନାଶପାଇଁ ବିଧିପ୍ରେରିତ । ତାଙ୍କ ବ୍ୟତୀତ ଅନ୍ୟ କେହି ଭୀଷ୍ମଦେବଙ୍କ ନିଧନର କାରଣ ହୋଇପାରିବେ ନାହିଁ । ମୋମତରେ ଶିଖଣ୍ଡୀ ହିଁ ଏହି ଅଧିନାୟକତ୍ୱ ଗ୍ରହଣ କରନ୍ତୁ ।''

ଯୁଧିଷ୍ଠିର କହିଲେ, ''ହେ କେଶବ ! ଆପଣତ ସମସ୍ତଙ୍କ ମତାମତ ଶୁଣିଲେ । କେଉଁ କଥା ବା ଆପଣଙ୍କୁ ଅଗୋଚର । ଯାହା ଶ୍ରେୟ ଓ କରଣୀୟ ତାହା ଆପଣଙ୍କୁ ଅବିଦିତ ନୁହେଁ । ଦୟା କରି ଆପଣ ସ୍ଥିର କରନ୍ତୁ କାହାର ନେତୃତ୍ୱରେ ସେନାପତିମାନେ ପରିଚାଳିତ ହେବେ ।''

ଶ୍ରୀକୃଷ୍ଣ କହିଲେ, ''ମୋ ବିଚାରରେ ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ କୁରୁବଳକୁ ପ୍ରତିହତ କରିବାପାଇଁ ସମର୍ଥ ତେବେ ଧୃଷ୍ଟଦ୍ୟୁମ୍ନ ପ୍ରଧାନ ସେନାପତି ହେଲେ ଭଲ ହୁଅନ୍ତା ବୋଲି ମୋର ଧାରଣା । ଅର୍ଜୁନଙ୍କ ସିଦ୍ଧାନ୍ତକୁ ମୁଁ ଗ୍ରହଣ କରୁଛି ।''

ସମସ୍ତେ ଆନନ୍ଦରେ ଏ ପ୍ରସ୍ତାବକୁ ସମର୍ଥନ କଲେ । ଧୃଷ୍ଟଦ୍ୟୁମ୍ନ ନମ୍ର ନମିତ ନୟନରେ ଏହି ଗୁରୁଦାୟିତ୍ୱ ବହନକଲେ । ଦୀର୍ଘ ତେର ବର୍ଷ ଧରି ନିଜ ଭିତରେ ଜଳୁଥିବା ପ୍ରତିଶୋଧ ବହ୍ନି, ଦ୍ରୋଣ, ଦୁର୍ଯ୍ୟୋଧନ ଓ ଦୁଃଶାସନର ରକ୍ତରେ ନିର୍ବାପିତ ହେବାପାଇଁ ଏହାଏକ ସୁଯୋଗ । ଏ ସୁଯୋଗର ଅପେକ୍ଷାରେ ଅଛନ୍ତି ଯନ୍ତ୍ରଣା ଜର୍ଜରିତା ଭଉଣୀ ଦ୍ରୌପଦୀ । ଦୀର୍ଘଦିନ ଧରି ତାଙ୍କର ରକ୍ତ ପିପାସୁ କେଶ ମୁକୁଳା ରହିଛି ଦୁଃଶାସନର ରକ୍ତ ପାଇଁ ।

ପାଣ୍ଡବ ସଭାରେ, ଉଲ୍ଲାସର ଶିହରଣ ଖେଳିଗଲା । ପାଣ୍ଡବ ବୀରଗଣ ବୀର ଦର୍ପରେ ଚିତ୍କାର କରି ଉଠିଲେ । ଭେରୀ, ତୂରୀ, ଶଙ୍ଖ ନାଦରେ ନିନାଦିତ ହେଲା ଆକାଶ । ପ୍ରଧାନ ସେନାପତି ପଦରେ ଅଭିମନ୍ତ୍ରିତ ହେଲେ ଧୃଷ୍ଟଦ୍ୟୁମ୍ନ । ରଣବାଦ୍ୟ ବାଜି ଉଠିଲା । ପାଣ୍ଡବ ପୁରୋହିତ ଧୌମ୍ୟ ଓ ବ୍ରାହ୍ମଣଗଣ ବେଦ ମନ୍ତ୍ରଗାନ କରି ଆଗେ ଆଗେ ଚାଲିଲେ । ଯୁଦ୍ଧ ଯାତ୍ରା ଆଗେଇଛି କୁରୁକ୍ଷେତ୍ର ଅଭିମୁଖରେ ସମୁଦ୍ର ଲହରି ପରି ମାଡ଼ି ଚାଲିଥାନ୍ତି ସୈନ୍ୟଗଣ ।

# ।। ଦୁର୍ଯ୍ୟୋଧନଙ୍କ ସୈନ୍ୟସଜ୍ଜା ।।

ଦୁର୍ଯ୍ୟୋଧନ ନିଜର ଏକାଦଶ ଅକ୍ଷୌହିଣୀ ସୈନ୍ୟଙ୍କୁ ଉତ୍ତମ, ମଧ୍ୟମ, ଅଧମ, ଏହି ତିନି ଶ୍ରେଣୀରେ ବିଭକ୍ତ କରି ସେହି ଅନୁସାରେ କାହାକୁ କେଉଁଠାରେ ଅବସ୍ଥାପନ କରାଯିବ ସ୍ଥିରକଲେ । ପ୍ରତ୍ୟେକ ରଥରେ ଚାରିଟି ଲେଖାଏଁ ଅଶ୍ୱ ଯୋଚାଗଲେ । ଅଶ୍ୱମାନେ ରଣବେଶରେ ମଣ୍ଡିତ ହେଲେ । ରଥରେ ପତାକା ବନ୍ଧାଗଲା । ହସ୍ତୀ ଯୂଥକୁ ସଜ୍ଜିତ କରାଗଲା ।

ଦୁର୍ଯ୍ୟୋଧନ ନିଜର ଭାଇମାନଙ୍କ ସହିତ ଆଲୋଚନା କରି କୌରବ ସେନା ବାହିନିର ସେନାଧ୍ୟକ୍ଷ ନିର୍ବାଚନ କଲେ । ଏକାଦଶ ଅକ୍ଷୌହିଣୀ ସେନା ଶ୍ରେଣୀ ପାଇଁ ଏକାଦଶ ସେନାନାୟକ ସ୍ଥିର କରାଗଲା । ସେମାନେ ହେଲେ, କୃପାଚାର୍ଯ୍ୟ, ଦ୍ରୋଣାଚାର୍ଯ୍ୟ, ଶଲ୍ୟ ଯେକି ନକୁଳ ସହଦେବଙ୍କ ମାମୁଁ ଓ ମଦ୍ରଦେଶରାଜା ଦୁର୍ଯ୍ୟୋଧନଙ୍କ ଭିଣୋଇ ଜୟଦ୍ରଥ , କାମ୍ବୋଦର ଅଧିପତି ସୁଦକ୍ଷିଣ । କୃତବର୍ମା, ଅଶ୍ୱତ୍ଥାମା । କର୍ଣ୍ଣ, ଭୂରିଶ୍ରବା, ମାମୁ ଶକୁନି ଓ ତାତାର ଦେଶର ରାଜା ବାହ୍ଲିକ ।

ତେବେ ମୁଖ୍ୟ ସେନାପତି ହେବେ କିଏ ?

ଅନେକ ବିଚାର ବିମର୍ଶ ପରେ ମହା ତେଜସ୍ୱୀବୀର, ଦୁର୍ଦମନୀୟ ଭୀଷ୍ମ ଦେବଙ୍କୁ କୌରବ ସେନା ବାହିନୀର ମୁଖ୍ୟ ସେନାପତି ଭାବରେ ମନୋନୀତ କରାଗଲା । ଭୀଷ୍ମଙ୍କର ଉତ୍ତୁଙ୍ଗ ବ୍ୟକ୍ତିତ୍ୱକୁ ଅବହେଳା ବା କରିଥାନ୍ତା କିଏ ।

ଦୁର୍ଯ୍ୟୋଧନ ଆନନ୍ଦିତ ହୋଇ ଭୀଷ୍ମଙ୍କ ପାଖକୁ ଯାଇ ନମ୍ର କଣ୍ଠରେ କହିଲେ, ‘‘ହେ ପିତାମହ ! କୌରବ ସେନା ବାହିନୀର ମୁଖ୍ୟ ସେନାନାୟକ ଭାବରେ ମୁଁ ଆପଣଙ୍କୁ ବରଣ କରୁଛି । ଉଦାରତାର ସହିତ ଆପଣ ଏହି ଗୁରୁଦାୟିତ୍ୱ ବହନ କରନ୍ତୁ । ଆପଣଙ୍କର ଦକ୍ଷ ଅଧିନାୟକତ୍ୱରେ ଆମେ ସଫଳତାର ସିଂହାସନ ଲାଭକରୁ । ଆପଣଙ୍କର ନେତୃତ୍ୱ ହେଉ ଆମ୍ଭମାନଙ୍କର ରକ୍ଷା କବଚ । ଆଶୀର୍ବାଦ ଦିଅନ୍ତୁ, ପିତାମହ ।’’

ଭୀଷ୍ମଦେବଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇ ଉଠିଲା । କୁରୁପାଣ୍ଡବ ଯୁଦ୍ଧର ପରିଣତି ଯେ, କି ଭୟାବହ ହେବ ସେ ତାଙ୍କର ମନଶ୍ଚକ୍ଷୁରେ ସବୁ ଦେଖି ପାରୁଥିଲେ । ଉଦାସ କଣ୍ଠରେ କହିଲେ, ଆଶୀର୍ବାଦତ ନିଶ୍ଚୟ ଅଛି ତେବେ ଏହି ସର୍ବନାଶୀ ଯୁଦ୍ଧ ପାଇଁ ମୋର ସମର୍ଥନ ନଥିଲା । ତାହା ଅବିଚାରିତ ଭାବରେ ଲଦିଦିଆଯାଇଛି । ପୁରୁ ରାଜ୍ୟକୁ ରକ୍ଷାକରିବାର ଦାୟିତ୍ୱ ମୁଁ ଗ୍ରହଣ କରିଥିବାରୁ ଆଜିର ଏ ନିମନ୍ତ୍ରଣ ରକ୍ଷାକରୁଛି । ତେବେ ଯେଉଁ କର୍ଣ୍ଣଙ୍କୁ ତୁମେ ସବୁବେଳେ ପ୍ରାଧାନ୍ୟ ଦେଇଆସିଛ, ଯାହାର ପ୍ରେରଣା ପାଇ ତୁମେ ପ୍ରଳୟକୁ ନିମନ୍ତ୍ରଣ କରିଛ, ତାଙ୍କୁ କାହିଁକି ମୁଖ୍ୟ ସେନାଧ୍ୟକ୍ଷ କଲନାହିଁ । ସେତ ସବୁବେଳେ ମୋର ନେତୃତ୍ୱକୁ ବିରୋଧ କରିଛନ୍ତି । ମୋର ମତାମତକୁ ସେ ପସନ୍ଦ କରନ୍ତି ନାହିଁ । ଏବେ କିପରି ଗ୍ରହଣ କରିବେ । ଯୁଦ୍ଧ ଆରମ୍ଭରୁ ସେ ସୈନ୍ୟମାନଙ୍କର ନେତୃତ୍ୱ ନିଅନ୍ତୁ । ମୁଁ ଆଦୌ ବିରୋଧ କରିବି ନାହିଁ । ଆଲୋଚନା ବେଳେ କର୍ଣ୍ଣ ଉପସ୍ଥିତ ଥିଲେ ।

ସେ କହିଲେ, ‘‘ ହେ ରାଜନ୍ ! ପିତାମହ ଭୀଷ୍ମଙ୍କର ଅଭିଯୋଗ ଠିକ୍ ନୁହେଁ । ମୁଁ ତ ପରୋକ୍ଷରେ କିମ୍ବା ପ୍ରତ୍ୟକ୍ଷରେ କେବେ ତାଙ୍କୁ ଅସମ୍ମାନ ଦେଖାଇନାହିଁ । ରାଜା ଦୁର୍ଯ୍ୟୋଧନଙ୍କର ସ୍ୱାର୍ଥ ରକ୍ଷା ଲାଗି, ବେଳେବେଳେ ନିର୍ଭୀକ ମତାମତ ଦେଇଛି । ହୁଏତ ଏହାକୁ ସେ ପସନ୍ଦ କରି ନଥିବେ । ସ୍ପଷ୍ଟ ମତଦାନ ଅସମ୍ମାନର ସୂଚନା ନୁହେଁ । ସେ ବହୁକ୍ଷେତ୍ରରେ ମୋ ମନରେ ଗଭୀର ଆଘାତ ଦେଇଛନ୍ତି, ଏବଂ ବର୍ତ୍ତମାନ ଦେଉଛନ୍ତି । ତାଙ୍କ ଅଧିନାୟକତ୍ୱ ଅଧୀନରେ ଯୁଦ୍ଧକରିବା ମୋ ପକ୍ଷରେ ସମ୍ଭବ ନୁହେଁ । ତାଙ୍କର ପତନ ପରେ ମୁଁ ଯୁଦ୍ଧ ଭୂମିକୁ ଯାଇ ଯୁଦ୍ଧର ନେତୃତ୍ୱ ନେବି । ଏବଂ ନିଶ୍ଚୟ ଅର୍ଜୁନଙ୍କୁ ହତ୍ୟା କରିବି ।’’

କର୍ଣ୍ଣଙ୍କ କଥାରେ ଭୀଷ୍ମଦେବ କୌଣସି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ । ଦୁର୍ଯ୍ୟୋଧନ କହିଲେ, ‘‘ହେ ପିତାମହ ! ଆପଣ ପ୍ରଧାନ ସେନାପତିର ଗୁରୁ ଦାୟିତ୍ୱ ଗ୍ରହଣ କରନ୍ତୁ । ଏହାହିଁ ମୋର ଏକାନ୍ତ ଇଚ୍ଛା ।’’

ଭୀଷ୍ମଦେବ କହିଲେ, ‘‘ ମୋର ଆପତ୍ତି ନାହିଁ, ମୁଁ ପ୍ରତିଦିନ ରଣଭୂମିରେ ଅଗଣିତ ପାଣ୍ଡବ ସୈନ୍ୟଙ୍କୁ ହତ୍ୟା କରିବି କିନ୍ତୁ ପାଣ୍ଡବ ତଥା ସେମାନଙ୍କର ପୁତ୍ରସନ୍ତାନମାନଙ୍କ ଉପରେ କେବେହେଲେ ଅସ୍ତ୍ର ପ୍ରୟୋଗ କରିବି ନାହିଁ । ଏହା ମୋର ପ୍ରଥମ ସର୍ତ୍ତ ।

ଦ୍ୱିତୀୟ ସର୍ତ୍ତଟି ହେଉଛି, ମୁଁ ତୁମର ମଙ୍ଗଳ ପାଇଁ ସମସ୍ତ ଶକ୍ତି ଖଟାଇ ଯୁଦ୍ଧ କରିବି କିନ୍ତୁ ଯୁଦ୍ଧରେ ବିଜୟଲାଭ କରିବାର ପ୍ରତିଶ୍ରୁତି ଦେଇ ପାରିବି ନାହିଁ । ତୁମେ ଯଦି ଏଇ ଦୁଇ ସର୍ତ୍ତକୁ ଗ୍ରହଣ କରିବ ତା’ହେଲେ ମୁଁ ପ୍ରଧାନ ସେନାପତିର ଦାୟିତ୍ୱ ତୁଲାଇବାକୁ ଆପତ୍ତି କରିବିନାହିଁ ।’’

ପିତାମହ ଭୀଷ୍ମଙ୍କୁ ବାଦଦେଇ ଯୁଦ୍ଧ ବିଷୟରେ ଚିନ୍ତା କରାଯାଇ ନପାରେ । ତାଙ୍କର ଆରୋପିତ ସର୍ତ୍ତ, ଆକସ୍ମିକ ନୁହେଁ, ଏହା ତାଙ୍କର ପ୍ରତିଷ୍ଠିତ ଧାରଣାର ପରିପ୍ରକାଶ ମାତ୍ର । ଏଥିରେ ବିଚଳିତ କିମ୍ବା ବିବ୍ରତ ହେବାର କିଛି ନାହିଁ । ଦୁର୍ଯ୍ୟୋଧନ ମନ ସ୍ଥିର କରି ସାମରିକ ଆଭିଜାତ୍ୟ ଭିତରେ ଭୀଷ୍ମଦେବଙ୍କୁ ପ୍ରଧାନ ସେନାପତି ପଦରେ ଅଭିଷିକ୍ତ କଲେ ।

ଦୁର୍ଯ୍ୟୋଧନ କହିଲେ, ''ହେ ପିତାମହ ! ଆପଣଙ୍କର ବିରଳ ଅନୁଭୂତି, ପରିପକ୍ୱ ପ୍ରଜ୍ଞା, ଅମିତ ତେଜ ଓ ସାମରିକ ଦକ୍ଷତା ବିଶ୍ୱବିଶ୍ରୁତ । ଦୂରଦୃଷ୍ଟି ଓ ଉପସ୍ଥିତ ବୁଦ୍ଧିରେ ଆପଣ ଅତୁଳନୀୟ । ବର୍ତ୍ତମାନ ଆପଣ ନିଜ ନୀତିରେ ସମର ସଜ୍ଜାର ବ୍ୟବସ୍ଥା କରନ୍ତୁ ।''

ଭୀଷ୍ମଦେବ କହିଲେ, ''ହେ ରାଜନ୍ ! ପାଣ୍ଡବ ଶକ୍ତିକୁ ପ୍ରତିହତ କରିବାପାଇଁ ପ୍ରତିରୋଧ ପ୍ରସ୍ତୁତି, ପ୍ରତିପକ୍ଷଠାରୁ ଉନ୍ନତ ହେବା ଆବଶ୍ୟକ । ପାଣ୍ଡବମାନଙ୍କ ମଧ୍ୟରେ ଅଛନ୍ତି ରଥୀ, ମହାରଥୀ, ଅତିରଥ ଓ ଅତିରଥଶ୍ରେଷ୍ଠ ଯୋଦ୍ଧା । ସେମାନଙ୍କୁ ଆଖି ଆଗରେ ରଖି ଆମର ସମାନସ୍କନ୍ଧ ସୈନ୍ୟ କିମ୍ବା ଅଧିକ ଶକ୍ତି ସଂପନ୍ନ ମହାବୀର ମାନଙ୍କୁ ସବୁ ଦିଗରୁ ପ୍ରସ୍ତୁତ କରିବାକୁ ପଡ଼ିବ ।

ଦୁର୍ଯ୍ୟୋଧନ କହିଲେ, ଆପଣ ତାହେଲେ କହନ୍ତୁ, କାହାକୁ କିଏ ପ୍ରତିରୋଧ କରିବ ।

ଭୀଷ୍ମଦେବ କହିଲେ, '' ମୋ ମତରେ ଯୁଧିଷ୍ଠିର ଭୀମ, ନକୁଳ, ସହଦେବ ହେଉଛନ୍ତି ମହାରଥୀ ତାଙ୍କ ବ୍ୟତୀତ ବିରାଟ, ଦ୍ରୁପଦ, ଦ୍ରୁପଦରାଜାଙ୍କ ପୁଅମାନେ, ସାତ୍ୟକି ପ୍ରଭୃତି ଜଣେ ଜଣେ ମହାରଥୀ ଅଟନ୍ତି । ପାଣ୍ଡବମାନଙ୍କୁ ସାହାଯ୍ୟ କରୁଥିବା ଅନ୍ୟ ରାଜାମାନଙ୍କ ମଧ୍ୟରେ ଅନେକ ମହାରଥୀ ବି ରହିଛନ୍ତି । ସେମାନଙ୍କୁ ଉପେକ୍ଷା କରାଯାଇ ନପାରେ । ଘଟୋତ୍କଚର ଆଦିଅନ୍ତ ପାଇବା କଷ୍ଟ । ତାକୁ ବିଶେଷ ସାବଧାନ ରହିବା ଦରକାର ।

ଅର୍ଜୁନ ଓ ତାଙ୍କ ପୁତ୍ର ଅଭିମନ୍ୟୁ ଅତିରଥର ଊର୍ଦ୍ଧ୍ୱରେ । ତାଙ୍କୁ ଅତିରଥ ଶ୍ରେଷ୍ଠ ବୋଲି କୁହାଯାଇପାରେ । ସେମାନଙ୍କର ସମତୁଲ ଯୋଦ୍ଧା କୌରବ ଶିବିରରେ ପ୍ରାୟ ନାହାନ୍ତି ।

ହଁ, ଶିଖଣ୍ଡୀ କଥା ମୁଁ ଆଦୌ ବିଚାରକୁ ନେଇନି । ତାକୁ ପୁରୁଷବୋଲି ମୁଁ ଗ୍ରହଣ କରିନାହିଁ । ନୀତି ଦୃଷ୍ଟିରୁ ମୁଁ ନାରୀ କିମ୍ବା ଅର୍ଦ୍ଧନାରୀ ବା କ୍ଳୀବମାନଙ୍କ ସହିତ ଯୁଦ୍ଧ କରେନାହିଁ । ଶିଖଣ୍ଡୀ ସହିତ ମୁଁ ଯୁଦ୍ଧ କରିବାର ପ୍ରଶ୍ନ ଉଠୁନି । ମୋ ସମ୍ମୁଖରେ ତାକୁ ଦେଖିଲେ, ମୁଁ ନିଶ୍ଚୟ ଅସ୍ତ୍ର ତ୍ୟାଗ କରିବି । ଶିଖଣ୍ଡୀକୁ ଯୁଦ୍ଧ କ୍ଷେତ୍ରରେ ସର୍ବଦା ମୋଠାରୁ ଦୂରେଇ ରଖିବାକୁ ହେବ । ସେ ଯେପରି ମୋର ସମ୍ମୁଖୀନ ନହୁଏ ।

ହେ ଦୁର୍ଯ୍ୟୋଧନ ! ତୁମେ ଜଣେ ମହାରଥୀ ଓ ତୁମର ଭାଇମାନେ ମଧ୍ୟ । ଆଚାର୍ଯ୍ୟ ଦ୍ରୋଣ ଏବଂ ତାଙ୍କ ପୁତ୍ର ଅଶ୍ୱତଥାମା ଦୁହେଁ ଅତିରଥ । ପାଣ୍ଡବମାନଙ୍କ ଶିବିରରେ ଅତିରଥ ବୀର ସଂଖ୍ୟା ନଗଣ୍ୟ ।

ତୁମର ପ୍ରାଣାଧିକ ବନ୍ଧୁ କର୍ଣ୍ଣ, ଜଣେ ଅର୍ଦ୍ଧରଥୀ କହିଲେ ଅତ୍ୟୁକ୍ତି ହେବନାହିଁ । ଏପରିକି ରଥୀ ହେବାର ସୌଭାଗ୍ୟରୁ ମଧ୍ୟ ସେ ବଞ୍ଚିତ । ପର୍ଶୁରାମଙ୍କର ଅଭିଶାପ ଫଳରେ, ତାଙ୍କ ବୀରତ୍ୱ ବିକଶିତ ହେବାର ସୁଯୋଗ ନାହିଁ । ଠିକ୍ ଆବେଗପୂର୍ଣ୍ଣ ମୁହୂର୍ତ୍ତରେ ତାଙ୍କର ଦିବ୍ୟାସ୍ତ୍ର ବିଫଳ ହୋଇଯିବ । ସେ ଜଣେ କ୍ଷଣକୋପୀ ଓ ତାହାହିଁ ତାଙ୍କ ବ୍ୟର୍ଥତାର ଏକ ବଳିଷ୍ଠ କାରଣ । କଠିନ ମୁହୂର୍ତ୍ତକୁ ଧୈର୍ଯ୍ୟର ସହିତ ସମ୍ମୁଖୀନ ହେବାର ଶକ୍ତି ତାଙ୍କର ନାହିଁ । କେତେବେଳେ ଯେ ସେ ଯୁଦ୍ଧ କ୍ଷେତ୍ରରୁ ଆକସ୍ମିକ ଭାବରେ ପଳାୟନ ନ କରିବେ କିଏ କହିବ । ତାଙ୍କର ଆତ୍ମବଡ଼ିମା ଖୁବ୍ ବେଶି । ନିଜ ଉପରେ ଅତିମାତ୍ରାରେ ବିଶ୍ୱାସ, ସର୍ବଦା ବିପର୍ଯ୍ୟୟର କାରଣ ହୋଇଥାଏ ।

ପିତାମହ ଭୀଷ୍ମଙ୍କର କର୍ଣ୍ଣ ବିରୋଧୀ ଏଇକଥା ଗୁଡ଼ିକ ଦୁର୍ଯ୍ୟୋଧନଙ୍କୁ ଆଦୌ ଭଲ ଲାଗୁନଥିଲା । କର୍ଣ୍ଣ ଉଠିପଡ଼ି କ୍ରୋଧ କଂପିତ କଣ୍ଠରେ କହିଲେ, ''ପିତାମହ ! ସମ୍ମାନର ସର୍ବଶ୍ରେଷ୍ଠ ଆସନରେ ଥାଇମଧ୍ୟ, ଆପଣ ଅନ୍ୟ ସହଯୋଗୀମାନଙ୍କୁ ଅସମ୍ମାନିତ କରିବାରେ ନିପୁଣ । ଯେ ମୁଖ୍ୟ ଏବଂ ଦକ୍ଷ ତାଙ୍କ ପାଖରେ ଏ ପ୍ରକାର ଆଚରଣ ଶୋଭନୀୟ ନୁହେଁ । ମୁଁ ଭାବୁଛି ଏ ସବୁକଥା ପକ୍ୱକେଶର ବିଳାପ ବ୍ୟତୀତ ଆଉ କିଛି ନୁହେଁ ।''

ଆଚାର୍ଯ୍ୟ ଦ୍ରୋଣ, ଏହାର ପ୍ରତିବାଦ କରି କହିଲେ, '' କୁରୁ କୁଳର ସର୍ବଶ୍ରେଷ୍ଠବୀର ଓ ବରେଣ୍ୟ ମୁଖ୍ୟ ସେନାପତିଙ୍କୁ, ଏପରି ଭାବରେ ଅପମାନିତ କରିବା କେଉଁ ପ୍ରକାରର ଶାଳୀନତା । କର୍ଣ୍ଣ ସର୍ବନିମ୍ନ ଶୃଙ୍ଖଳା ଓ ମାର୍ଜିତ ଆଚରଣ ପ୍ରକାଶ କରିବାକୁ ଅସମର୍ଥ ହୋଇଛନ୍ତି । ଏହା ମଧ୍ୟ ଶୋଭନୀୟ ନୁହେଁ ।''

ଦୁର୍ଯ୍ୟୋଧନ ପରିସ୍ଥିତିକୁ ଅଧିକ ଜଟିଳ କରିବାକୁ ନ ଦେଇ, ଯୋଡ଼ ହସ୍ତରେ କହିଲେ, ''ପିତାମହ ! ଆପଣ ଆଉ କର୍ଣ୍ଣ ଉଭୟେ ମୋ ପାଇଁ ମୂଲ୍ୟବାନ । ତେବେ ଆପାତତଃ ବର୍ତ୍ତମାନ ପାଇଁ କର୍ଣ୍ଣଙ୍କ କଥା ଭୁଲି ଯାଆନ୍ତୁ । କୁରୁକ୍ଷେତ୍ରକୁ ଅଭିଯାନ ଆରମ୍ଭ କରିବାପାଇଁ, ଏକ ଶୁଭ ମୁହୂର୍ତ୍ତ ସ୍ଥିର କରନ୍ତୁ ।

# ।। ବଳରାମଙ୍କ ତୀର୍ଥାଟନ ।।

ମହାଭାରତ ଯୁଦ୍ଧର ପୂର୍ବଦିନର ଘଟଣା ।

ସମ୍ବାଦ ଆସି ପହଞ୍ଚିଲା । ପିତାମହ ଭୀଷ୍ମ କୁରୁପକ୍ଷର ପ୍ରଧାନ ସେନାପତି ଦାୟିତ୍ୱ ବହନ କରିଛନ୍ତି । ପାଣ୍ଡବ ମାନଙ୍କର ପ୍ରଥମ ଯୁଦ୍ଧ, ପିତାମହଙ୍କ ସହିତ ହେବ । ଯେଉଁ ପିତାମହଙ୍କ ସ୍ନେହ ଶ୍ରଦ୍ଧାରେ, ପାଣ୍ଡବମାନେ ପାଳିତ ହୋଇଥିଲେ, ରଣକ୍ଷେତ୍ରରେ ସେମାନେ ତାଙ୍କର ସମ୍ମୁଖୀନ ହେବାକୁ ଯାଉଛନ୍ତି । ବିଧିର ବିଡ଼ମ୍ବନା ।

ଯୁଧିଷ୍ଠିର ସାତ ଅକ୍ଷୌହିଣୀ ସୈନ୍ୟଙ୍କ ପାଇଁ, ପୂର୍ବନିର୍ଦ୍ଧାରିତ ସାତଜଣ ମହାବୀରଙ୍କୁ ସେନାପତି ପଦରେ ଅଭିଷିକ୍ତ କଲେ । ମହାତ୍ମା ଦ୍ରୋଣଙ୍କର ବିନାଶକାରୀ ଭାବରେ ଅଗ୍ନିରୁ ଜନ୍ମଗ୍ରହଣ କରିଥିବା ଦ୍ରୁପଦ ପୁତ୍ର ଧୃଷ୍ଟଦ୍ୟୁମ୍ନ ପ୍ରଧାନ ସେନାପତି ହେଲେ । ସମସ୍ତଙ୍କ ଉପରେ ଆଧିପତ୍ୟ ପ୍ରୟୋଗ କରିବାର କ୍ଷମତା ଦିଆଗଲା ଅର୍ଜୁନଙ୍କୁ । ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କର ସାରଥି ହେଲେ । ଯୁଦ୍ଧ ପରିଚାଳନା ବିଷୟରେ ଆଲୋଚନା ଚାଲିଥାଏ ।

ସଭାଗୃହରେ ଆସି ପହଞ୍ଚିଲେ ବଳରାମ, ଶ୍ରୀକୃଷ୍ଣଙ୍କର ବଡ଼ଭାଇ । କାନ୍ଧରେ ଅଛି ଲଙ୍ଗଳ, ଯାହାକି ଶାନ୍ତି ଓ ପ୍ରାଚୁର୍ଯ୍ୟର ପ୍ରତୀକ । ସମସ୍ତେ ଗଭୀର ସମ୍ମାନ ପୂର୍ବକ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ । ବଳରାମ ବର୍ଷୀୟାନ୍ ଦ୍ରୁପଦ ଓ ରାଜା ବିରାଟଙ୍କୁ ପ୍ରଣାମ ଜଣାଇ, ଯାଇ ଯୁଧିଷ୍ଠିରଙ୍କ ପାଖରେ ବସିଲେ । କହିଲେ,''ଭରତ ବଂଶର ଦାୟଦ ଗଣ ଆଜି ନିଜର ବିବେକ ହରାଇ, ଶାନ୍ତି ମନ୍ଦିରରୁ ଯୁଦ୍ଧ ଭୂମିକୁ ଓହ୍ଲାଇ ଆସିଛନ୍ତି । ଲୋଭ, କ୍ରୋଧ, ମୋହ, ଈର୍ଷା ଓ ଘୃଣା ସେମାନଙ୍କୁ ଗ୍ରାସ କରିଛି । ଭାଗ୍ୟର ନିଷ୍ଠୁର ପରିହାସ ନେଇ ନିଜ ପିରବାରର ଆତ୍ମୀୟ ସ୍ୱଜନମାନେ, ପ୍ରତ୍ୟେକେ ପ୍ରତ୍ୟେକର ଶତ୍ରୁ ପାଲଟି ଯାଇଛନ୍ତି । ଶ୍ରୀକୃଷ୍ଣଙ୍କର ଶାନ୍ତି ପ୍ରସ୍ତାବ ବିଫଳ ହୋଇଛି । ଯୁଦ୍ଧର ପ୍ରଳୟ ପ୍ରଭଞ୍ଜନକୁ ଆମନ୍ତ୍ରଣ କରା ଯାଇଛି । ଏହା ଆଦୌ ଶୁଭପ୍ରଦନୁହେଁ ।

ହେ ଧର୍ମ ରାଜ ! ସମ୍ମୁଖରେ ସର୍ବନାଶର ଅଗ୍ନି ହୁତୁହୁତୁ ହୋଇ ଜଳୁଛି । ତଥାପି ପତଙ୍ଗ ପରି ସମସ୍ତେ ପ୍ରଲୁବ୍ଧ । ଅବଶ୍ୟ ଏଥିପାଇଁ କାହାକୁ ବୋଧହୁଏ ଦାୟୀ କରାଯାଇ ପାରିବ ନାହିଁ । ଏହା ବିଧି ନିର୍ଦ୍ଦିଷ୍ଟ । ଭାରତର କ୍ଷତ୍ରିୟ ମାନଙ୍କ ପାଇଁ, ଧର୍ମରକ୍ଷା ନାମରେ ଅନ୍ତିମ ନିମନ୍ତ୍ରଣ ଆସି ପହଞ୍ଚିଛି ରଣ ଭୂମିରୁ । କୁରୁକ୍ଷେତ୍ର ହେବ ରକ୍ତ ରଂଜିତ ଓ କର୍ଦମାକ୍ତ । ବୀର କ୍ଷତ୍ରିୟମାନଙ୍କର ଶବସ୍ତୂପ ଉପରେ ଗୃଧ୍ର, ଶ୍ୱାନ ଓ ଶୃଗାଳମାନେ ବିଚରଣ କରିବେ । କୁରୁକୁଳ ଧ୍ୱଂସ ପ୍ରାପ୍ତ ହେବ ।''

ଯୁଧିଷ୍ଠିର ଗମ୍ଭୀର ହୋଇ କହିଲେ, '' ଏ ଯୁଦ୍ଧର ସୂତ୍ରଧର ଆମେ ନୋହୁ । କୌରବମାନେ ଆମ ଉପରେ ଏ ଯୁଦ୍ଧକୁ ଲଦି ଦେଇଛନ୍ତି । ମୁଁ ଯୁଦ୍ଧର ସମର୍ଥକ ନୁହେଁ, ପାଣ୍ଡବମାନେ ଯୁଦ୍ଧ ଚାହାନ୍ତି ନାହିଁ । ଯୁଦ୍ଧ ଏଡ଼ାଇବା ପାଇଁ ସେମାନେ ଏକ ବିରାଟ ରାଜ୍ୟକୁ ଛାଡ଼ି, କେବଳ ପାଞ୍ଚଖଣ୍ଡ ଗାଁ ପାଇଁ ପ୍ରସ୍ତାବ ଦେଇଥିଲେ । ବିନାଯୁଦ୍ଧରେ ସୂଚ୍ୟାଗ୍ର ପରିମିତ ସ୍ଥାନ ଦେବେ ନାହିଁ ବୋଲି, ସେମାନେ ରୋକ୍‌ଠୋକ୍ ଜଣାଇ ଦେଲେ । ଆମ ଶାନ୍ତି ପ୍ରସ୍ତାବକୁ, ଭୀରୁର ଆତ୍ମରକ୍ଷା ମୂଳକ କୌଶଳ ବୋଲି ସେମାନେ ଗ୍ରହଣ କଲେ । ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ସାମ୍ଭାବ୍ୟ ପନ୍ଥା ନଥିଲା ।''

''ମୁଁ ତାହା ଜାଣିଛି ଧର୍ମରାଜ! ତେବେ ଏ ଯୁଦ୍ଧରେ ଶ୍ରୀକୃଷ୍ଣ କୌଣସି ପକ୍ଷଭୁକ୍ତ ହେବା ଉଚିତନଥିଲା । ମୁଁ ତାଙ୍କୁ କହିଛି, ଆମ ପାଇଁ ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିର ଉଭୟେ ସମାନ । କୁରୁ ପାଣ୍ଡବ ଭିତରେ ଆମ ଆଖିରେ କିଛି ତାରତମ୍ୟ ନାହିଁ । ତେଣୁ କୌଣସି ଗୋଟିଏ ପକ୍ଷକୁ ସମର୍ଥନ କରିବା ଅନୁଚିତ । ନିରପେକ୍ଷତା ଅବଲମ୍ବନ କରିବା ଆମ ପକ୍ଷରେ ଶ୍ରେୟସ୍କର ଥିଲା । ମୋ କଥା ସେ ଶୁଣିଲେନି । ଧନଞ୍ଜୟଙ୍କ ପ୍ରତି ତାଙ୍କର ଅହେତୁକ ମମତା ତାଙ୍କୁ ପାଣ୍ଡବମାନଙ୍କର ପକ୍ଷଭୁକ୍ତ କଲା । ବର୍ତ୍ତମାନ ପରିସ୍ଥିତିରେ, ମୁଁ କୌରବପକ୍ଷ ସମର୍ଥନ କରି ପାରିବି ନାହିଁ । କୃଷ୍ଣ ଏବଂ ବଳରାମ ଦୁଇ ବିପରୀତ ପକ୍ଷରେ ରହିବେ ଏହା କଣ କେବେ ସମ୍ଭବ ।''

''ସମ୍ଭବତ ନୁହେଁ, ତେବେ ଆପଣ ପାଣ୍ଡବପକ୍ଷ ସମର୍ଥନ କରିବାରେ କିଛି ଅସୁବିଧା ନାହିଁ ।'' କହିଲେ ଧର୍ମରାଜ ।''

''ତା କିପରି ସମ୍ଭବ । ଭୀମ ଏବଂ ଦୁର୍ଯ୍ୟୋଧନ, ଉଭୟେ ମୋର ପ୍ରିୟ ଶିଷ୍ୟ । ମୁଁ ପ୍ରାଣ ଦେଇ ଉଭୟଙ୍କୁ ଭଲପାଏ । ଗଦାଯୁଦ୍ଧରେ ଉଭୟେ ପ୍ରବୀଣ । କେହି କାହାଠାରୁ ଊଣା ନୁହଁନ୍ତି । ସେ ଉଭୟଙ୍କୁ ନିଜନିଜ ବିରୁଦ୍ଧରେ ଲଢ଼ିବାକୁ ମୁଁ ଉତ୍ସାହିତ କରି ପାରିବି ନାହିଁ, କିମ୍ବା ନିଜେ କୌଣସି ପକ୍ଷ ସମର୍ଥନ କରିବି ନାହିଁ । ମୁଁ ବର୍ତ୍ତମାନ ଦୋଦୁଲ୍ୟମାନ ଅବସ୍ଥାରେ ଅଛି । କୁରୁକ୍ଷେତ୍ର ଯୁଦ୍ଧର ସଂହାର ଲୀଳା ସହ୍ୟ କରିବାର ଶକ୍ତି ମୋଠାରେ ନାହିଁ । ଏ ଯୁଦ୍ଧରେ, ନିରବ ଦ୍ରଷ୍ଟା ହେବା ବ୍ୟତୀତ ମୋର କୌଣସି ଭୂମିକା ନାହିଁ । ବର୍ତ୍ତମାନ ଯେଉଁ ନରମେଧ ଯଜ୍ଞ ସଂଘଟିତ ହେବାକୁ ଯାଉଛି, ତାହା ସଂସାର ପ୍ରତି ମୋର ଶ୍ରଦ୍ଧା ଓ ଆଗ୍ରହକୁ ତୁଟାଇ ଦେଇଛି । ମୁଁ ତୀର୍ଥାଟନରେ ବାହାରିଲି । ବିଦାୟ ପୂର୍ବରୁ କହିଯାଉଛି, ତଥାପି ମଧ୍ୟ ସମୟ ଅଛି, ଯୁଦ୍ଧକୁ ବନ୍ଦ କରିଦେବା ପାଇଁ । ଯଦି ସମ୍ଭବ ନୁହେଁ, ଯୁଦ୍ଧ ବିରୁଦ୍ଧରେ ଯୁଦ୍ଧ ଚାଲୁ । ଯୁଦ୍ଧ ଦାନବର ମୃତ୍ୟୁ ହେଉ, ମାନବ ଜାତି ଧ୍ୱଂସ ମୁଖରୁ ରକ୍ଷା ପାଇଯାଉ । ଶ୍ରୀକୃଷ୍ଣଙ୍କୁ ମୋର ଏହା ଶେଷ ବାର୍ତ୍ତା । ପାଣ୍ଡବମାନଙ୍କୁ ମୋର ଅନ୍ତିମ ଉଦ୍‌ବୋଧନ ।''

ଏହାପରେ ବଳରାମ ଏକ ଭାରାକ୍ରାନ୍ତ ମନ ନେଇ ସେଠାରୁ ବିଦାୟ ନେଲେ । ଆଖିରେ ତାଙ୍କର ଉଦ୍‌ଗତ ଅଶ୍ରୁର କଂପନ । ପାଣ୍ଡବମାନଙ୍କ ମୁଖ ମଣ୍ଡଳରେ ବିଷାଦର ଘନଛାୟା ।

# ।। ରୁକ୍ମି ଅପମାନରେ ଫେରିଲେ ।।

ଭୋଜରାଜ ଭୀଷ୍ମକଙ୍କ ପୁତ୍ର, ରୁକ୍ମି । ଶ୍ରୀକୃଷ୍ଣଙ୍କ ସ୍ତ୍ରୀ ରୁକ୍ମଣୀଙ୍କ ଭାଇ । ସେ ଆସି ଆକସ୍ମିକ ଭାବରେ ପହଞ୍ଚିଲେ ପାଣ୍ଡବମାନଙ୍କ ଶିବିରରେ । ଯୁଧିଷ୍ଠିର ଓ ଅନ୍ୟ ପାଣ୍ଡବ ଭାଇମାନେ ତାଙ୍କୁ ସାଦର ସମ୍ଭାଷଣ ଜଣାଇଲେ । ସେ ସମ୍ମାନିତ ହୋଇ ଆନନ୍ଦରେ କହିଲେ, 'ହେ ଧର୍ମ ରାଜ ! ତୁମେ ତ ଜାଣିଚ, ଶ୍ରୀକୃଷ୍ଣ ମୋର ବିରୋଧୀ । ସେ ମୋ ଭଉଣୀ ରୁକ୍ମ୍ଣୀଙ୍କୁ ବର୍ବରୋଚିତ ଢ଼ଙ୍ଗରେ ବିବାହ ଦିବସରେ ଅପହରଣ କରି ଆଣି, ବିବାହକଲେ । ଶିଶୁପାଳଙ୍କୁ ବିବାହ ବେଦିରୁ ଫେରିଯିବାକୁ ପଡ଼ିଲା । ମୋର ପ୍ରତିରୋଧର କୌଣସି ମୂଲ୍ୟ ରହିଲା ନାହିଁ । ଆଜିବି ସେ କ୍ଷତ ଲିଭିନି । ସେହି ଅବିବେକୀ ଶ୍ରୀକୃଷ୍ଣ ହିଁ ତୁମ ଯୁଦ୍ଧର ପ୍ରଧାନ ପୁରୋଧା । ତଥାପି ମୁଁ ତମ ପାଖକୁ ଆସିଛି, ତୁମକୁ ସାହାଯ୍ୟ କରିବିବୋଲି ।''

ଯୁଧିଷ୍ଠିର ଅର୍ଜୁନଙ୍କୁ ଲକ୍ଷ୍ୟ କରି ହସିଲେ । କହିଲେ, ''କଣ କହୁଛ ଅର୍ଜୁନ ''

ଶ୍ରୀକୃଷ୍ଣ ନିବରରେ ବସି ସବୁ ଶୁଣୁଥାନ୍ତି ।

ଅର୍ଜୁନ ରୁକ୍ମିଙ୍କୁ ପଚାରିଲେ, ତଥାପି କାହିଁକି ଆପଣ ଆମକୁ ସାହାଯ୍ୟ କରିବାପାଇଁ ମନ ବଳାଇଲେ ?

''ତୁମ ମାନଙ୍କର ଭଦ୍ର ବ୍ୟବହାର, ନ୍ୟାୟ ପରାୟଣତା, ମୋତେ ମୁଗ୍ଧ କରିଛି । କୌରବ ମାନଙ୍କୁ ତୁମେ ଭୟ କରିବାର କୌଣସି କାରଣ ନାହିଁ । ମୁଁ ମୋର ଦୁର୍ଦ୍ଧର୍ଷ ସୈନ୍ୟବଳ ନେଇ ତୁମ ମାନଙ୍କ ପଛରେ ଅଛି । ଯୁଦ୍ଧ ଭୂମିରେ ମୁଁ କୌରବମାନଙ୍କ ପାଇଁ ଏକ ଆତଙ୍କ । ମୁଁ ସେମାନଙ୍କୁ ଧ୍ୱଂସ କରି ଦେଇପାରିବି, ଭୟକରନାହିଁ ।''

ଯୁଧିଷ୍ଠିର ସ୍ମିତହାସ୍ୟ ଖେଳାଇ ଅର୍ଜୁନଙ୍କୁ ଓ ଶ୍ରୀକୃଷ୍ଣଙ୍କୁ ଥରକୁ ଥର ଚାହୁଁଥାନ୍ତି । ମହାବୀର ରୁକ୍ମି ଭାବୁଥାନ୍ତି, ଏହା ଧର୍ମ ରାଜଙ୍କର ତାଙ୍କ ବୀରତାର ସସ୍ମିତ ସମର୍ଥନ ।

ରୁକ୍ମି ଅତୀତରେ ଶ୍ରୀକୃଷ୍ଣଙ୍କ ଦ୍ୱାରା ପରାଭୂତ ହୋଇ ନିଜର ରାଜଧାନୀକୁ ଲଜ୍ଜାରେ ଫେରି ନଥିଲେ । ''ଭୋଜ କଟକ'' ନାମରେ ଏକ ନଗର ନିର୍ମାଣ କରି ନିଜ ସୈନ୍ୟ ସାମନ୍ତମାନଙ୍କ ସହିତ ସେଠାରେ ରହିଲେ । ସେ ସେହିଠାରୁ ଏଠାକୁ ଆସିଛନ୍ତି ବୋଲି ଯୁଧିଷ୍ଠିର ଜାଣିଥିଲେ । ଅତୀତର ପରାଭବକୁ ଲିଭାଇ କୁରୁକ୍ଷେତ୍ର ଯୁଦ୍ଧରେ ନିଜର ପରାକାଷ୍ଠା ପ୍ରତିପାଦନ କରିବା ତାଙ୍କର ଲକ୍ଷ୍ୟ ଥିଲା ।

ଅର୍ଜୁନ, ଯୁଧିଷ୍ଠିର ଓ ଶ୍ରୀକୃଷ୍ଣଙ୍କୁ ଚାହିଁ ରୁକ୍ମିଙ୍କୁ କହିଲେ, ''ହେ ବୀରଶ୍ରେଷ୍ଠ! ଆମ୍ଭେ କୌରବମାନଙ୍କୁ ଭୟ କରୁନାହୁଁ । ଯେଉଁ ଶ୍ରୀକୃଷ୍ଣ ଆମର ସାରଥି, ଯେଉଁ ମାନଙ୍କର ଗୁରୁ ହେଉଛନ୍ତି ଦ୍ରୋଣାଚାର୍ଯ୍ୟ, ସେମାନେ ଯେ କୌରବମାନଙ୍କୁ ଭୟକରୁଛନ୍ତି ବୋଲି ତୁମେ ଭାବୁଛ, ତାହା କଦାପି ନୁହେଁ । ପାଣ୍ଡବମାନେ ଭୟାତୁର ନୁହଁନ୍ତି ।''

ଯୁଧିଷ୍ଠିର ରୁକ୍ମିଙ୍କୁ ଲକ୍ଷ୍ୟକରି କହିଲେ, ''ହେ ନରଶ୍ରେଷ୍ଠ ! ଆପଣଙ୍କ ଉଦାରତା ପାଇଁ ଆମେ ନିଜକୁ ଧନ୍ୟ ମନେ କରୁଛୁ । ବର୍ତ୍ତମାନ ପରିସ୍ଥିତିରେ ଆପଣଙ୍କର ସାହାଯ୍ୟ ସହଯୋଗର ବିଶେଷ କିଛି ଆବଶ୍ୟକତା ନାହିଁ । ଯଦି ଆବଶ୍ୟକ ପଡ଼ିବ, ଆମେ ନିଶ୍ଚୟ ଆପଣଙ୍କ ସହଯୋଗ କାମନା କରିବୁ ।''

ରୁକ୍ମି ଏପ୍ରକାର ଏକ ଅଭାବିତ ଉତ୍ତର ପାଇବା ପାଇଁ ଆଦୌ ଆଶା କରିନଥିଲେ । ତାଙ୍କର ଆତ୍ମାଭିମାନ ଉପରେ ସତେ ଯେପରି ଏହାଥିଲା ଏକ ପ୍ରଚଣ୍ଡ ଆକ୍ରମଣ । ବିଶେଷତଃ ଶ୍ରୀକୃଷ୍ଣଙ୍କ ଉପସ୍ଥିତରେ ଏପ୍ରକାର ଅପମାନ ତାଙ୍କ ପାଇଁ ଥିଲା ଅତ୍ୟନ୍ତ ଅସହ୍ୟ । ସେ କ୍ରୋଧ ଜର୍ଜରିତ ହୋଇ ଯାଇ ପହଞ୍ଚିଲେ କୌରବ ଶିବିରରେ ।

ଦୁର୍ଯ୍ୟୋଧନ ତାଙ୍କୁ ସମ୍ମାନର ସହିତ ସମ୍ଭାଷଣ ଜଣାଇଲେ । ରୁକ୍ମି କହିଲେ, ''ହେ କୁରୁଶ୍ରେଷ୍ଠ ! ମୁଁ ମୋର ସୈନ୍ୟବଳ ନେଇ ତୁମ ସପକ୍ଷରେ ଯୁଦ୍ଧ କରିବା ପାଇଁ ଆସିଛି । ଉଦ୍ଧତ ଓ ଗର୍ବୀ ପାଣ୍ଡବମାନଙ୍କୁ ସମୁଚିତ ଶାସ୍ତି ଦେବାପାଇଁ ମୁଁ ବ୍ୟଗ୍ର । ସେମାନେ ମୋର ବନ୍ଧୁତାକୁ ପ୍ରତ୍ୟାଖ୍ୟାନ କରିଛନ୍ତି ।

ଦୁର୍ଯ୍ୟୋଧନ ପରିସ୍ଥିତିକୁ ଠିକ୍ ଭାବରେ କଳନା କରି ନେଲେ ଏବଂ କହିଲେ, ହେ ଭୋଜକଟକ ଅଧିପତି ! ଆପଣ ପାଣ୍ଡବମାନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବାପରେ ଆମ ପାଖକୁ ଆସିଛନ୍ତି । ଆପଣ ହୁଏତ ପ୍ରଥମେ ମୋ ପାଖକୁ ଆସିଥିଲେ ଏ ପ୍ରଶ୍ନ ଉଠି ନଥାନ୍ତା । ଦୁଃଖର ସହିତ ଜଣାଇବାକୁ ପଡୁଛି ଯେ ଆପଣଙ୍କର ସାହାଯ୍ୟ ଓ ସହଯୋଗ କୌରବମାନଙ୍କ ପାଇଁ ଗ୍ରହଣୀୟ ନୁହେଁ । ଆବଶ୍ୟକ ହେଲେ ଆମେ କହିବୁ ।

ରୁକ୍ମି ଗଭୀର ଆତ୍ମଦାହ ଓ ଅପମାନ ଭିତରେ ନିଜ ରଜଧାନୀକୁ ଫେରିଗଲେ । ଏହା ଥିଲା ତାଙ୍କ ଆତ୍ମବିଶ୍ୱାସ ଉପରେ ଆଉ ଏକ ପ୍ରଚଣ୍ଡ ଆକ୍ରମଣ । ଜୀବନରେ ବାସ୍ତବତାକୁ ସ୍ୱୀକାର କରିନେଇ, ଆଚରଣ ଓ ଆଭିମୁଖ୍ୟର ପରିବର୍ତ୍ତନ କରିପାରିଥିଲେ ହୁଏତ ଏପ୍ରକାର ଦୟନୀୟ ପରିସ୍ଥିତି ଭୋଗ କରିବାକୁ ପଡ଼ିନଥାନ୍ତା ।

———————ଉଣେଇଶ

# ।। ପ୍ରଳୟ ପର୍ବର ପୂର୍ବରାଗ ।।

ଆଜି ମହାଭାରତ ଯୁଦ୍ଧର ମହାପ୍ରଳୟ ପର୍ବ ରୂପନ୍ୟାସ ନେବାକୁ ଯାଉଛି । କୌରବ ଓ ପାଣ୍ଡବ ପକ୍ଷର ସୈନ୍ୟମାନେ କୁରୁକ୍ଷେତ୍ର ଅଭିମୁଖେ ଯାତ୍ରା କରିଛନ୍ତି । ଦେଖାଯାଉଛି, ସତେ ଯେପରି ଦୁଇଟି ଉଦ୍‌ବେଳିତ ମହାସାଗର ବେଳାଭୂମି ଅତିକ୍ରମ କରି ମାଡି ଆସୁଛି ଦୁଇ ବିପରୀତ ଦିଗରୁ । ଧୂଳି ପଟଳରେ ଆକାଶ ଧୂମାୟିତ । ତରଙ୍ଗ ବିକ୍ଷୁବ୍ଧ ସାଗର ଗର୍ଜ୍ଜନପରି, କୁରୁକ୍ଷେତ୍ରର ଶାନ୍ତ ପରିବେଶ କୋଳାହଳମୟ ।

ଭୀଷ୍ମଦେବଙ୍କ ନେତୃତ୍ୱରେ କୌରବ ସୈନ୍ୟଗଣ ପ୍ରଥମେ ଆସି ଅଧିକାର କରିଛନ୍ତି କୁରୁକ୍ଷେତ୍ରର ପୂର୍ବଭାଗ । ସେମାନଙ୍କର ଲକ୍ଷ୍ୟ, ପୂର୍ବଦିଗର ପବିତ୍ର ପରିବେଶ, ସଫଳତା ଲାଭ ଦିଗରେ ସହାୟକ ହେବ । ମାତୁଳ ଶକୁନି ଓ କୁରୁରାଜ ଦୁର୍ଯ୍ୟୋଧନ ଏ ପ୍ରକାର ସିଦ୍ଧାନ୍ତ ନେଇଛନ୍ତି । ବୟୋଜ୍ୟେଷ୍ଠଙ୍କ ମତାମତ ଲୋଡ଼ି ନାହାନ୍ତି । ସେମାନେ ନିରବ, ଗୋଟାଏ ଅଶୁଭ କାମପାଇଁ ଶୁଭା ଶୁଭ ଖୋଜିବାର କି ଆବଶ୍ୟକତା

ଅଛି । ସୈନ୍ୟମାନେ ଯେ ପଶ୍ଚିମ ମୁଖ ହୋଇ ପ୍ରଳୟଯଜ୍ଞ ଆରମ୍ଭ କରିବେ, ଏ ଧାରଣା ଦୁର୍ଯ୍ୟୋଧନଙ୍କ ମନକୁ ସ୍ପର୍ଶ କରିନଥିଲା । ଠିକ୍ ଏତିକି ବେଳେ ଦେଖିବାକୁ ମିଳିଲା ଅନେକ ଅଶୁଭ ଶକୁନ । ଦୁର୍ଯ୍ୟୋଧନ ବ୍ୟଥିତ ନେତ୍ରରେ ସେଇଆଡକୁ ଚାହିଁ ରହିଲେ । ପିତାମହ ପରିସ୍ଥିତିକୁ ବଦଳାଇ ଦେଲେ ନିଜର ବୀରତ୍ୱ ବ୍ୟଞ୍ଜକ ଉଦ୍‌ବୋଧନୀ ଭିତରେ ।

ପାଣ୍ଡବମାନଙ୍କର ଶିବିର ପଡିଛି ସ୍ୟମନ୍ତ ପଞ୍ଚକ ବା ପଞ୍ଚହ୍ରଦର ପବିତ୍ର ତୀର୍ଥରେ । ନିକଟରେ କୁରୁକ୍ଷେତ୍ର । ଧର୍ମରାଜ ଯୁଧିଷ୍ଠିର ଭାବମଗ୍ନ । ଯୁଦ୍ଧକ୍ଷେତ୍ରରେ ଶୃଙ୍ଖଳାରକ୍ଷା ପାଇଁ ସେ ସୈନ୍ୟମାନଙ୍କୁ ଉପଦେଶ ଦେଉଛନ୍ତି । ସ୍ୱପକ୍ଷ ସୈନ୍ୟମାନଙ୍କୁ ଚିହ୍ନିବା ପାଇଁ ନିର୍ଦ୍ଦିଷ୍ଟ ସଙ୍କେତ ଓ ଛଦ୍ମନାମ ବିଷୟରେ ଧାରଣା ଦିଆଯାଉଛି । ସୈନ୍ୟମାନଙ୍କ ମନୋବଳ ବୃଦ୍ଧିକରିବା ପାଇଁ କ୍ଷତ୍ରିୟ ଧର୍ମ ବିଷୟରେ ଉଦ୍‌ବୋଧନ ଦେଉଛନ୍ତି । ପରିବେଶ ଯେତିକି ସାତ୍ତ୍ୱିକ ସେତିକି ଉନ୍ମାଦମୟ ।

ବାଜିଉଠିଲା ରଥାରୂଢ଼ ଅର୍ଜୁନଙ୍କ ଶଙ୍ଖ ଦେବଦତ୍ତ ।ଶ୍ରୀକୃଷ୍ଣଙ୍କ ମହାଶଙ୍ଖ ପାଞ୍ଚଜନ୍ୟର ପ୍ରଳୟ ନିର୍ଘୋଷ ଆକାଶ ପୃଥିବୀ ପ୍ରକମ୍ପିତ କଲା । ଅର୍ଜୁନଙ୍କ ରଥର ସାରଥି ସ୍ୱୟଂ ଶ୍ରୀକୃଷ୍ଣ । ସମର ଶଙ୍ଖ ତୁହାକୁ ତୁହା ବାଜି ଉଠୁଥାଏ । ଯୁଦ୍ଧ ଆରମ୍ଭ ହେବ.....ଯୁଦ୍ଧ ଆରମ୍ଭ ହେବ... ପ୍ରସ୍ତୁତ ହୁଅ...ପ୍ରସ୍ତୁତ ହୁଅ ।

ଯୁଧିଷ୍ଠିର କୌରବ ପକ୍ଷର ଦିଗହଜା ସୁସଜ୍ଜିତ ସୈନ୍ୟଶ୍ରେଣୀ ଦେଖି କହିଲେ,''ଅର୍ଜୁନ ! ଦେଖୁଚତ,ବିପୁଳତାର କି ବିପୁଳାୟନ । ଭୀଷ୍ମଦେବ ଏବଂ ଦ୍ରୋଣାଚାର୍ଯ୍ୟ ଦୁଇ ଅଜେୟ ଦୁର୍ଗ । ସୁଯୋଗର ସମୃଦ୍ଧିରେ କୌରବମାନେ ଶକ୍ତିଶାଳୀ । ନିରସ୍ତ୍ର ନାରାୟଣଙ୍କୁ ନେଇ ତଥାପି ଆମେ କମ୍ ଭାଗ୍ୟବାନ୍ ନୋହୁଁ । ସଖା ଶ୍ରୀକୃଷ୍ଣଙ୍କୁ ଚାହିଁ ହସିଲେ ଅର୍ଜୁନ, କହିଲେ,''ହେ ପାଣ୍ଡବ ଶ୍ରେଷ୍ଠ ! ସଂଖ୍ୟାର ସମୃଦ୍ଧିରେ ସୁଯୋଗ ସମୃଦ୍ଧ ହୁଏନା । ଭାଇ ଭୀମଙ୍କର ଭୀମତ୍ୱ ଉପରେ ଆସ୍ଥାରଖ, ମୋ ଗାଣ୍ଡୀବଧନୁ ମହାଶକ୍ତିର ପ୍ରତୀକ । ପ୍ରତିପକ୍ଷର ଅମିତ ଶକ୍ତିକୁ ମଧ ପ୍ରତିହତ କରି ପାରିବ । ମହାଧନୁର୍ଦ୍ଧର ରାଜା ଦ୍ରୁପଦ, ବିରାଟ, ଦୁର୍ଦ୍ଧର୍ଷବୀର ଚେକିତାନ, ସାତ୍ୟକି, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡି, ଅଭିମନ୍ୟୁ କେହି କାହାକୁ ଊଣାନୁହନ୍ତି । କୌରବ ମାନଙ୍କ ମଧ୍ୟରୁ କେତେଜଣ ଅଗ୍ରପୂଜ୍ୟ ବୀରଙ୍କୁ ଛାଡିଦେଲେ ଅନ୍ୟମାନେ କେହି ସମକକ୍ଷ ହୋଇପାରିବେ ନାହିଁ ।

ଦ୍ରୁପଦ ପୁତ୍ର ଧୃଷ୍ଟଦ୍ୟୁମ୍ନଙ୍କୁ ଅଭିଷିକ୍ତ କରାଯାଇଛି, ପାଣ୍ଡବ ମାନଙ୍କ ପ୍ରଧାନ ସେନାପତି ପଦରେ । ତାଙ୍କର ନେତୃତ୍ୱରେ ପାଣ୍ଡବ ସୈନ୍ୟ କୁରୁକ୍ଷେତ୍ର ଯୁଦ୍ଧଭୂମିକୁ ଅଗ୍ରସର ହେଲେ । ଶଙ୍ଖନାଦ ଓ ରଣବାଦ୍ୟରେ ଯୁଦ୍ଧଭୂମି ପ୍ରକମ୍ପିତ ହେଉଥାଏ ।

କୁରୁକ୍ଷେତ୍ର ରଣପ୍ରାନ୍ତରର ପଶ୍ଚିମ ପ୍ରାଙ୍ଗଣ ପାଣ୍ଡବ ବାହିନୀଙ୍କୁ ସ୍ୱାଗତ ଜଣାଇଲା । ଏହା ଏକ ଶୁଭ ସଙ୍କେତ, ସୈନ୍ୟଗଣ ପୂର୍ବାଭିମୁଖୀ ହୋଇ ଯୁଦ୍ଧ କରିବାର ସୁଯୋଗ ପାଇଲେ । ପରମ ସଖା ଶ୍ରୀକୃଷ୍ଣ ତାତ୍ତ୍ୱିକ ତଥ୍ୟ ତଥା ସାମରିକ ଗୁରୁତ୍ୱ ଦୃଷ୍ଟିରୁ ଦିଗମଣ୍ଡଳର ପ୍ରାଧାନ୍ୟ ବିଷୟରେ ଯୁଧିଷ୍ଠିରଙ୍କୁ ବୁଝାଇଲେ ।

ଉଭୟ ପକ୍ଷ ବର୍ତ୍ତମାନ ମୁହାମୁହିଁ ଅବସ୍ଥାରେ ଅଛନ୍ତି ।

ସମସ୍ତେ ସେଇ ମହାନିର୍ଦ୍ଦେଶକୁ ଅପେକ୍ଷା କରିଛନ୍ତି ।

ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ରଣନୀତି ସ୍ଥିର କରାଗଲା । ଏହାକୁ ମାନି ଚଳିବା ପାଇଁ ଉଭୟପକ୍ଷ ହେଲେ ପ୍ରତିଜ୍ଞାବଦ୍ଧ । ସ୍ଥିର ହେଲା.....

* କେହିକେବେ ଅନ୍ୟାୟ ଯୁଦ୍ଧର ଆଶ୍ରୟ ନେବେ ନାହିଁ । ଧର୍ମାନୁମୋଦିତ ପନ୍ଥାରେ ଯୁଦ୍ଧ ପରିଚାଳିତ ହେବ । ଯୁଦ୍ଧରେ ଛଳନାର ପ୍ରଶ୍ନ ରହିବ ନାହିଁ ।

* ସମଯୋଦ୍ଧା ସହିତ ସମଯୋଦ୍ଧାର କେବଳ ଯୁଦ୍ଧହେବ । ଅସମତାକୁ ପ୍ରଶ୍ରୟ ଦିଆଯିବ ନାହିଁ । ମହାରଥୀ ସହିତ ମହାରଥୀ, ରଥୀ ସହିତ ରଥୀ, ଗଜାରୋହୀ ସହିତ ଗଜାରୋହୀ, ଅଶ୍ୱାରୋହୀ ସହିତ ଅଶ୍ୱାରୋହୀ ଓ ପଦାତିକ ସୈନ୍ୟ ସହିତ ପଦାତିକ ସୈନ୍ୟର ଯୁଦ୍ଧ ହେବ ।

* ଅସମର୍ଥ, ଯୁଦ୍ଧତ୍ୟାଗୀ ଓ ନିରସ୍ତ୍ର ସୈନିକ ସହିତ ଯୁଦ୍ଧ କରାଯିବ ନାହିଁ ।

* ରଣ୍ୟବାଦ୍ୟ ବଜାଉଥିବା ସୈନ୍ୟ ଉପରେ ଆକ୍ରମଣ କରାଯିବ ନାହିଁ ।

* ସୂର୍ଯ୍ୟାସ୍ତ ପରେ ଯୁଦ୍ଧ ବନ୍ଦ ହୋଇଯିବ । କେହି କାହା ଉପରେ ଆକ୍ରମଣ କରି ପାରିବେ ନାହିଁ ।

* ଯୁଦ୍ଧ ଭୂମିରୁ ଶିବିରକୁ ଫେରି ଆସିବାପରେ ଉଭୟପକ୍ଷ ମିତ୍ର ମନୋଭାବ ପୋଷଣ କରିବେ ।

ମହାଭାରତ କାଳୀନ ଯୁଦ୍ଧନୀତି ଉପରେ ଆଉଅନେକ ସିଦ୍ଧାନ୍ତ ନିଆଗଲା । ବର୍ତ୍ତମାନ ଉଭୟପକ୍ଷ ରଣରଙ୍ଗ ସୁସଜ୍ଜିତ ଓ ଯୁଦ୍ଧପାଇଁ ପ୍ରସ୍ତୁତ । ଏଯାଏ ନିର୍ଦ୍ଦେଶ ମିଳିନି । ସମସ୍ତଙ୍କ ମଧ୍ୟରେ ଆବେଗ ଓ ଉତ୍କଣ୍ଠା

## ।। ସଞ୍ଜୟଙ୍କର ଦିବ୍ୟଚକ୍ଷୁଲାଭ ।।

ଯୁଦ୍ଧ ଆରମ୍ଭର କିଛି ସମୟ ପୂର୍ବରୁ କୁରୁକ୍ଷେତ୍ରରେ ଆସି ପହଞ୍ଚିଲେ ବ୍ୟାସଦେବ । କୌରବ ଓ ପାଣ୍ଡବ ମାନଙ୍କର ପିତାମହ । ସେ ଉଭୟ ପକ୍ଷର ସୈନ୍ୟସଜ୍ଜା ଦେଖି ସ୍ତମ୍ଭୀଭୂତ ହୋଇଗଲେ । ନିର୍ଦ୍ଦିଷ୍ଟ ପକ୍ଷକୁ ସମର୍ଥନ କରି ଆର୍ଯ୍ୟାବର୍ତ୍ତର ରାଜନ୍ୟମଣ୍ଡଳୀ, ନିଜର ସୈନ୍ୟଦଳ ନେଇ ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହୋଇଛନ୍ତି ।

ବ୍ୟାସଦେବ ତ୍ରିକାଳଜ୍ଞ । ବର୍ତ୍ତମାନ, ଭୂତ, ଭବିଷ୍ୟତ ବିଷୟରେ ସେ ସବୁକଥା ଜାଣନ୍ତି । ତାଙ୍କ ଆଖି ଆଗରେ ନାଚି ଉଠିଲା ଯୁଦ୍ଧ ବିଭୀଷିକାର ପ୍ରଳୟ ଦୃଶ୍ୟ । କୁରୁବଂଶ ନିଶ୍ଚିତ ଭାବରେ ଧ୍ୱଂସ ହେବ । ଏହି ମହାଯୁଦ୍ଧରେ ପୃଥିବୀ ହେବ ନିଃକ୍ଷତ୍ରିୟ । ରାଜ୍ୟମାନଙ୍କରେ ଅରାଜକତା ବ୍ୟାପିଯିବ । ଅବିବେକୀ ଦୁର୍ଯ୍ୟୋଧନ କିମ୍ବା ତାଙ୍କର ଅଦୂରଦର୍ଶୀ ଅନ୍ଧପିତା ଧୃତରାଷ୍ଟ୍ର ଏ ପ୍ରଳୟ ପରିଣତିକୁ ବୁଝି ପାରିଲେ ନାହିଁ ।

ବ୍ରହ୍ମର୍ଷି ବ୍ୟାସଦେବ ହସ୍ତିନାପୁରକୁ ଫେରି ଆସିଲେ । କୁରୁରାଜ ଧୃତରାଷ୍ଟ୍ର ତାଙ୍କର ପଦବନ୍ଦନା କରି ଆବେଗ ମଥିତ କଣ୍ଠରେ କହିଲେ, ''ପିତଃ ! ମୁଁ ଅସହାୟ । ହତଭାଗ୍ୟ । ପରିସ୍ଥିତିର ଆବର୍ତ୍ତ ମଧ୍ୟରେ ଆକୁଳ ହୋଇ ଘୂରିବୁଲୁଛି । ଲୋପ ପାଇଛି ମୋର ସମସ୍ତଶକ୍ତି, ସାମର୍ଥ୍ୟ ଓ ରାଜପଣ । ଦର୍ପାନ୍ଧ ଦୁର୍ଯ୍ୟୋଧନକୁ ମୁଁ ଶାସନ କରି ପାରିଲି ନାହିଁ । ଅନ୍ୟ ପୁତ୍ରମାନେ ଉପଦେଶ ଗ୍ରହଣ କଲେ ନାହିଁ । କଥାକୁ ମଧ କେହି କର୍ଣ୍ଣପାତ କଲେ ନାହିଁ । ଆପଣଙ୍କର ଏ ଅନ୍ଧ ସନ୍ତାନ କଣବା କରି ପାରିଥାନ୍ତା ।

ପରିବାରର ପ୍ରବଳପ୍ରତିରୋଧ ଭିତରେ, ମୋର ପାରିବାର ପଣିଆ ପଣ୍ଡ ହୋଇ ଯାଇଛି ପ୍ରଭୁ ! ମୋତେ ବୁଦ୍ଧି ଆଉ ଆଶୀର୍ବାଦ ଦିଅନ୍ତୁ । ଏ ଚରମ ମୁହୂର୍ତ୍ତରେ ମୁଁ କଣ କରିବି । କେବଳ କର୍ମଫଳ ଭୋଗ କରିବା ବ୍ୟତୀତ, ମୋ ପାଇଁ ସତରେ କଣ ଅନ୍ୟକିଛି ପନ୍ଥା ନାହିଁ ! ଆପଣ ଏ ଦୀନ ସନ୍ତାନର ପଥ ପ୍ରଦର୍ଶକ ହୁଅନ୍ତୁ । ଆଶୀର୍ବାଦ ଦିଅନ୍ତୁ ।

ବ୍ୟାସଦେବ ଧୃତରାଷ୍ଟ୍ରଙ୍କୁ ଉଠାଇ କହିଲେ, ''ହେ ରାଜନ୍ ! ଶୋକାକୁଳିତ ହେବାର ସମୟ ବର୍ତ୍ତମାନ ନୁହେଁ । ମୁଁ ତୁମର ଉଦ୍‌ବେଗ ବୁଝିପାରୁଛି । କିନ୍ତୁ ପ୍ରତିକାର ପଥ ରୁଦ୍ଧହୋଇଛି ଚିରଦିନ ପାଇଁ ପ୍ରଳୟ ନିଶ୍ଚିତ । ଧ୍ୱଂସ ମୁଖରୁ କୁରୁବଂଶକୁ ଆଉକେହି ରକ୍ଷାକରି ପାରିବେ ନାହିଁ । ଉଦ୍‌ଗୀରଣମୁଖୀ ଆଗ୍ନେୟଗିରିକୁ ଆଉକଣ ଏ ଅବସ୍ଥାରେ ରୋକାଯାଇ ପାରିବ ! ବର୍ତ୍ତମାନ ଧୈର୍ଯ୍ୟର ସହିତ ପରିସ୍ଥିତିର ସମ୍ମୁଖୀନ ହୁଅ । ଧର୍ମର ଜୟ ସୁନିଶ୍ଚିତ । ଯେଉଁ ଯୁଦ୍ଧକୁ ନିର୍ବିଚାର ଭାବରେ ନିମନ୍ତ୍ରଣ କରିଛ, ତାହା ଆସନ୍ନ । ତୁମେ ଯଦି ସ୍ୱଚକ୍ଷୁରେ ଯୁଦ୍ଧ ଦେଖିବାକୁ ଚାହୁଁଛ ତେବେ ମୁଁ ତୁମକୁ ଦୃଷ୍ଟିଶକ୍ତି ଦାନ କରିବି ।

ଧୃତରାଷ୍ଟ୍ର କମ୍ପିତ କଣ୍ଠରେ କହିଲେ, ''ହେ ପିତା ! ଆପଣଙ୍କର ଏହି ଶୁଭଆଶୀର୍ବାଦ ପାଇଁ ମୁଁ ନିଜକୁ ଧନ୍ୟମନେ କରୁଛି । କିନ୍ତୁ କୁହନ୍ତୁ ପ୍ରଭୁ ! ଯେଉଁ ଚକ୍ଷୁ ଶୁଭ ଉତ୍ସବ ଦେଖି ପାରିଲା ନାହିଁ, କୁରୁପାଣ୍ଡବଙ୍କର ମିଳନ ଦୃଶ୍ୟ ଦେଖିବାର ସୌଭାଗ୍ୟ ପାଇଲା ନାହିଁ, ସେ ଚକ୍ଷୁ ପ୍ରଳୟ ଯୁଦ୍ଧର ନାରକୀୟ ଦୃଶ୍ୟ ଦେଖିବ କାହିଁକି ? ଅନ୍ତତଃ ସେ ଜୀବନରେ ଥରକ ପାଇଁ ଶାନ୍ତି ତଥା ସାନ୍ତ୍ୱନା ପାଉଯେ, ତା' ଅନ୍ଧତ୍ୱ ଆଶୀର୍ବାଦରେ ପରିଣତ ହୋଇଛି । ତେବେ.....

''ହଁ କୁହ ରାଜନ୍, ମୁଁ ତୁମର ଶୁଭେଚ୍ଛା ପୂରଣ କରିବି ।

''ପ୍ରଭୁ ! ମୋ ଉପରେ ଯଦି ଆପଣଙ୍କର ଏତେ ଦୟା, ତା' ହେଲେ ମୋତେ ଏତିକି ଆଶୀର୍ବାଦ ଦିଅନ୍ତୁ, ମୁଁ ଯୁଦ୍ଧର ଟିକିନିଖି ବିବରଣୀ ଶୁଣିବାକୁ ସମର୍ଥ ହେବି ।''

ବ୍ୟାସଦେବ କୋମଳ କଣ୍ଠରେ କହିଲେ ''ବତ୍ସ ! ତୁମର ଆତ୍ମ ଯନ୍ତ୍ରଣା ମୋତେ ମଧ ବ୍ୟଥିତ କରୁଛି । ତୁମ ଇଚ୍ଛା ପୂରଣ ହେଉ । ସଞ୍ଜୟଙ୍କୁ ମୁଁ ଦିବ୍ୟଚକ୍ଷୁ ଦାନ କରୁଛି । ସେ ତୁମରି ପାଖେ ପାଖେ ଥାଇ ମଧ ଯୁଦ୍ଧ କ୍ଷେତ୍ରର ସ୍ପଷ୍ଟ ଦୃଶ୍ୟ ଦେଖିପାରିବେ । ଏଥିପାଇଁ କୌଣସି ସମୟସୀମା ନାହିଁ । ତାଙ୍କର ଦିବ୍ୟଦୃଷ୍ଟି ବଳରେ ପ୍ରକାଶ୍ୟ ଓ ଅପ୍ରକାଶ୍ୟ ସମସ୍ତ ସଂଘଟନ ସେ ପ୍ରତ୍ୟକ୍ଷ କରିପାରିବେ । ଯେତେବେଳେ ଯାହାଜାଣିବା ପାଇଁ ସେଇଚ୍ଛା କରିବେ, ତାହା ଜାଣିବା ପାଇଁ କିଛି ଅସୁବିଧା ସୃଷ୍ଟି ହେବ ନାହିଁ । ସଞ୍ଜୟ ହେବେ ଯୁଦ୍ଧର ପ୍ରତ୍ୟକ୍ଷଦର୍ଶୀ ଏବଂ ସମ୍ବାଦ ପରିବେଷଣ କରିବେ । ସୂକ୍ଷ୍ମ ଶରୀରସତ୍ତା ନେଇ ସେ ଯୁଦ୍ଧଭୂମିରେ ବିଚରଣ କରିପାରିବେ । କୌଣସି ଅସ୍ତ୍ର ତାଙ୍କୁ ସ୍ପର୍ଶ କରିପାରିବ ନାହିଁ । ଉଭୟ ଶିବିରର ଗୁପ୍ତ ତଥ୍ୟ ତାଙ୍କ ପାଇଁ ଅଜ୍ଞାତ ରହିବନାହିଁ । ଦିନରାତି ପରିଶ୍ରମ କଲେ ମଧ ସେ କ୍ଳାନ୍ତ ହେବେ ନାହିଁ ।''

ସର୍ବନାଶର ଶିଖରରେ ବସିଥିବା ଧୃତରାଷ୍ଟ୍ରଙ୍କ ନୟନରୁ ଆନନ୍ଦର ଅବାରିତ ଅଶ୍ରୁନିର୍ଗତ ହେଲା । ପିତାଙ୍କର ଚରଣ ସ୍ପର୍ଶ କରି ସେ ପ୍ରଣାମ ଜଣାଇଲେ । ସଞ୍ଜୟ ବ୍ୟାସଦେବଙ୍କର ଆଶୀର୍ବାଦ ଲାଭକରି ଭାବ ବିହ୍ୱଳ ହୋଇ ଉଠିଲେ । ଗଦ୍‌ଗଦ୍ କଣ୍ଠରେ କହିଲେ, ପ୍ରଭୁ ! ଆପଣଙ୍କର କରୁଣାଲୋକ ମୋତେ ପଥ ପ୍ରଦର୍ଶନ କରୁ । ମୁଁ ନିରପେକ୍ଷଭାବରେ କର୍ତ୍ତବ୍ୟ ସଂପାଦନ କରେ ।'' ସଂଜୟ ଭୂମିଷ୍ଠ ପ୍ରଣାମ କରି ଚରଣଧୂଳି ନେଲେ ।

# ।। ଅର୍ଜୁନଙ୍କର ମୋହ ଭଙ୍ଗ ।।

ଉଭୟ ପକ୍ଷରେ ସୈନ୍ୟଗଣ ମୁହାଁମୁହିଁ ଅବସ୍ଥାରେ ଅଛନ୍ତି । ପରିବେଶ ଅତ୍ୟନ୍ତ ବିସ୍ଫୋରକ । ନିର୍ଦ୍ଦେଶ ଅପେକ୍ଷାରେ ସମସ୍ତେ ଚାହିଁଛନ୍ତି । ନିର୍ଦ୍ଦେଶ ମିଳୁନି । ସମସ୍ତେ ଅପେକ୍ଷା କରିଛନ୍ତି ଚରମ ଉଦ୍‌ବେଗ ମଧ୍ୟରେ ।

ଭୀଷ୍ମଦେବ ବସିଛନ୍ତି ସ୍ୱର୍ଣ୍ଣମୟ ରଥରେ । ଶୁଭ୍ରତାଳଧ୍ୱଜ ଆକାଶ ବକ୍ଷରେ ଫରଫର ହୋଇ ଉଡୁଛି । ସେଥିରେ ଚିହ୍ନିତ ହୋଇଛି ପାଞ୍ଚଟି ନକ୍ଷତ୍ର । ତାଙ୍କ ମସ୍ତକ ଉପରେ ଶୁଭ୍ରଛତ୍ର । ନିକଟରେ ଅଛନ୍ତି ଅଶ୍ୱତ୍ଥାମା । ସେ ତାଙ୍କର କେତୁରଥରେ ସମାସୀନ । ସିଂହ ଲାଙ୍ଗୁଡ଼ ଲାଞ୍ଛିତ ପତାକା, ତାଙ୍କ ରଥରେ ସଦର୍ପରେ ଉଡୁଛି ।

ଆଚାର୍ଯ୍ୟ ଦ୍ରୋଣଙ୍କ ରଥ ପତକାରେ ସୁବର୍ଣ୍ଣ କମଣ୍ଡଳୁର ଚିହ୍ନ । ଦୁର୍ଯ୍ୟୋଧନଙ୍କର ରଥଧ୍ୱଜରେ ଉଦ୍‌ଫଣ ମଣିମୟ ନାଗର ଚିହ୍ନ । କୃପାଚାର୍ଯ୍ୟଙ୍କ ରଥଧ୍ୱଜରେ ବିକ୍ଷୁବ୍ଧ ବୃଷଭର ଚିତ୍ର । ସିନ୍ଧୁରାଜ ଜୟଦ୍ରଥଙ୍କ ରଥ ଧ୍ୱଜରେ ଚିତ୍ରିତ ହୋଇଛି ଏକ ବଣ୍ୟ ବରାହ । ବୋଧହୁଏ ଏସବୁ ବୀରମାନଙ୍କର ପ୍ରକୃତିର ପ୍ରତୀକ । କିମ୍ବା ବୀରଗଣ ପ୍ରତୀକ ଗୁଡିକର ପ୍ରକୃତି ପରି ।

ଅର୍ଜୁନଙ୍କର ରଥର ପତାକା ସବୁଠାରୁ ଉଚ୍ଚରେ ଉଡୁଥିଲା । ମହାକପି ଚିହ୍ନିତ ତାଙ୍କ ରଥଧ୍ୱଜ । ସେଥିରେ ସ୍ୱୟଂ ହନୁମାନ ସୂକ୍ଷ୍ମ ଶରୀରରେ ବିରାଜମାନ ଥିଲେ । ଅର୍ଜୁନଙ୍କର କପିଧ୍ୱଜ ରଥ, ଶ୍ୱେତ ତୁରଙ୍ଗ ଯୁକ୍ତ । ତାର ସାରଥି ହେଉଛନ୍ତି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ । ଅର୍ଜୁନଙ୍କ ହାତରେ ଗାଣ୍ଡୀବଧନୁ ଇନ୍ଦ୍ରଧନୁ ପରି ଶୋଭା ପାଉଛି ।

ଧର୍ମରାଜ ଯୁଧିଷ୍ଠିରଙ୍କ ରଥ ସ୍ୱର୍ଣ୍ଣଖଚିତ । ଅଶ୍ୱମାନେ ସ୍ୱର୍ଣ୍ଣ ଓ ରତ୍ନଭୂଷଣରେ ମଣ୍ଡିତ ହୋଇଛନ୍ତି । ତାଙ୍କ ଛତ୍ରର ବର୍ଣ୍ଣପାଣ୍ଡୁର ଓ ସେଥିରେ ଗଜଦନ୍ତ ଖଚିତ ହୋଇଛି ।

ଶଙ୍ଖଧ୍ୱନି ଆରମ୍ଭ ହେଲା ।

ଶ୍ରୀକୃଷ୍ଣଙ୍କ ହାତରେ ''ପାଞ୍ଚଜନ୍ୟ'' ଶଙ୍ଖ, ଅର୍ଜୁନଙ୍କର ଦେବଦତ୍ତ ଶଙ୍ଖ, ଭୀମସେନଙ୍କ ଶଙ୍ଖ ହେଉଛି ''ପୌଣ୍ଡ୍ର'', ନକୁଳଙ୍କ ଶଙ୍ଖ ସୁଘୋଷ ଏବଂ ସହଦେବଙ୍କ ଶଙ୍ଖ ''ମଣିପୁଷ୍ପକ'' । ଧର୍ମରାଜ ଯୁଧିଷ୍ଠିର ତାଙ୍କର 'ଅନନ୍ତ ବିଜୟ' ଶଙ୍ଖ ବଜାଇଲେ । ତା ସହିତ ଅନ୍ୟମାନଙ୍କର ଶଙ୍ଖ ବାଜି ଉଠିଲା ସମତାନରେ । କୁରୁକ୍ଷେତ୍ରର ଆକାଶମଣ୍ଡଳ ଶଙ୍ଖଧ୍ୱନିରେ ବିଦୀର୍ଣ୍ଣ ହେଲା ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଲେ, ''ହେ ଧନଞ୍ଜୟ ! ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ଶତ୍ରୁ ସଂହାର କରି ଧର୍ମ ପ୍ରତିଷ୍ଠା କରିବା ପାଇଁ ମା' ଦୁର୍ଗାଙ୍କୁ ପ୍ରାର୍ଥନା କର ।

ଅର୍ଜୁନ ତଦ୍‌ଗତ କଣ୍ଠରେ ଦୁର୍ଗାଙ୍କର ସ୍ତବ ପାଠ କଲେ ।

ହେ କାଳି ! କାପାଳି ! ହେ ଚଣ୍ଡି ! ହେ ଭଗବତୀ ଦୁର୍ଗେ ! ତୁମେ ଦୁର୍ଗମ ପଥ ବାସିନୀ ! ତୁମେ ସରସ୍ୱତୀ, ସାବିତ୍ରୀ, ଦେବମାତା, ତୁମେ ବେଦାନ୍ତରୂପା ମହାଦେବୀ । ମୁଁ ତୁମଙ୍କୁ ଶୁଦ୍ଧ ଚିତ୍ତରେ ପ୍ରାର୍ଥନା କରୁଛି । ତୁମେ ବରଦାୟିନୀ ହୁଅ । ମୁଁ ତୁମର ଶୁଭ ଆଶୀର୍ବାଦ ଭିକ୍ଷା କରୁଛି ।''

ଭକ୍ତିନମ୍ର ପ୍ରଣାମ ଢ଼ାଳିଲେ ଅର୍ଜୁନ ।

ମା'ଦୁର୍ଗା ସନ୍ତୁଷ୍ଟ ହୋଇ, ସୂକ୍ଷ୍ମରୂପରେ ଶ୍ରୀକୃଷ୍ଣଙ୍କ ସମ୍ମୁଖସ୍ଥ ରଥର ଶୂନ୍ୟ ଭାଗରେ ଉପସ୍ଥିତ ହୋଇ ଅର୍ଜୁନଙ୍କୁ ଆଶୀର୍ବାଦ ଦେଲେ । କୌରବ ପକ୍ଷର କେହି ଏ ବିଷୟରେ ଅବହିତ ନଥିଲେ ।

# କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ମହାବୀର କର୍ଣ୍ଣଙ୍କ ପୁତ୍ର ବୃଷକେତୁ, ମହାନ୍ ପରାକ୍ରମୀ ରାଜା ଭଗଦତ୍ତ, ଦୁର୍ଦ୍ଧର୍ଷ ବୀର ଅବନ୍ତିରାଜ ବିନ୍ଦ ଓ ଅନୁବିନ୍ଦ, ଭୂରିଶ୍ରବା, ମାତୁଳ ଶକୁନି, ଶଲ୍ୟ ପ୍ରଭୃତି ରଥାରୂଢ଼ ହୋଇ ସୈନ୍ୟ ବ୍ୟୂହ ରଚନା କଲେ ।

ପାଣ୍ଡବମାନଙ୍କର ଅଗ୍ରନେତା ଭୀମସେନଙ୍କ ପୃଷ୍ଠରକ୍ଷକ ହେଲେ ଧୃଷ୍ଟଦ୍ୟୁମ୍ନ, ନକୁଳ, ସହଦେବ ଓ ବୀର୍ଯ୍ୟବାନ୍ । ବିରାଟ ରାଜ ଓ ରାଜା ଧୃଷ୍ଟକେତୁ ସେମାନଙ୍କୁ ସହଯୋଗ କଲେ । ଯୁବ ପୀଢ଼ିର ବୀର ମାନଙ୍କ ମଧ୍ୟରୁ ଅର୍ଜ୍ଜୁନଙ୍କର ବୀରପୁତ୍ର ଅଭିମନ୍ୟୁ ଓ ଦ୍ରୌପଦୀଙ୍କର ପାଞ୍ଚପୁତ୍ର ସେମାନଙ୍କ ସହିତ ମିଶିଥିଲେ । ନକୁଳ ଓ ସହଦେବ ଭୀମଙ୍କର ଚକ୍ରରକ୍ଷାକରିବାର ଦାୟିତ୍ୱ ଗ୍ରହଣ କଲେ ।

ଅର୍ଜ୍ଜୁନଙ୍କର ପୃଷ୍ଠରକ୍ଷାର ଭାର ନେଲେ ଅତ୍ୟନ୍ତ ପରାକ୍ରମଶାଳୀ ଯୁଯୁଧାନ, ଚେକିତାନ । ଭୀଷ୍ମଦେବଙ୍କ ଚରମ ଶତ୍ରୁ ଶିଖଣ୍ଡୀଙ୍କ ସୁରକ୍ଷାଭାର ଅର୍ଜ୍ଜୁନ ବହନ କଲେ । ପାଣ୍ଡବ ଶ୍ରେଷ୍ଠ ଯୁଧିଷ୍ଠିର, ସୈନ୍ୟଶ୍ରେଣୀର ମଧ୍ୟ ଭାଗରେ ରହିଲେ ।

ପ୍ରଳୟ ଯୁଦ୍ଧର ଠିକ୍ ଜନ୍ମ ମୁହୂର୍ତ୍ତ ।

କୁରୁପିତାମହ ଭୀଷ୍ମ ଶଙ୍ଖଧ୍ୱନି କଲେ । ଏଥର ଯୁଦ୍ଧ ଆରମ୍ଭ ହେବ । ଆନନ୍ଦ ବିହ୍ୱଳ ହୋଇ ଉଠିଲେ ଦୁର୍ଯ୍ୟୋଧନ । ଗମ୍ଭୀର ଉଦାତ୍ତ କଣ୍ଠରେ ଭୀଷ୍ମଦେବ ନିଜର ସୈନ୍ୟମାନଙ୍କୁ ଅନ୍ତିମ ଉଦ୍‌ବୋଧନ ବାଣୀ ଶୁଣାଇଲେ ।

''ହେ ବୀର ବୃନ୍ଦ ! ତୁମେମାନେ ଆଜି ମହାପୁଣ୍ୟର ଅଧିକାରୀ । ବୀରଧର୍ମ ପାଳନ କରିବା ପାଇଁ ପବିତ୍ର କୁରୁକ୍ଷେତ୍ରର କୋଳମଣ୍ଡନ କରିଛ । ଏହା ତୁମମାନଙ୍କ ପାଇଁ ପରମ ସୌଭାଗ୍ୟ ଓ ଚରମ ସୁଯୋଗ । ବୀର ବୀରଭୂମିରେ ବୀରଗତି ଲାଭ କରିବ । କ୍ଷତ୍ରିୟ ଯୁଦ୍ଧ ଭୂମିରେ ଜୀବନଯଜ୍ଞ ସମାପ୍ତ କରି ସ୍ୱର୍ଗଯାତ୍ରା କରେ । ସ୍ୱର୍ଗଦ୍ୱାର ତୁମମାନଙ୍କ ପାଇଁ ଉନ୍ମୁକ୍ତ । ତୁମେ ଏଠାରେ ଜୀବନ ଯଜ୍ଞର ପୂର୍ଣ୍ଣାହୁତି ଦେଇ ସ୍ୱର୍ଗଲାଭ କର । ତୁମେ ନିଜର ପରମ କର୍ତ୍ତବ୍ୟ ସମ୍ପାଦନ କଲେ ନିଶ୍ଚିତ ଭାବରେ ବ୍ରହ୍ମପଦରେ ଲୀନ ହେବ, ବାର୍ଦ୍ଧକ୍ୟ, ଜରା ରୋଗ ଭୋଗକରି ସଂସାରର ଗତାନୁଗତିକ ମୃତ୍ୟୁ ଲାଭ କରିବାରେ କୌଣସି ବିଶେଷତ୍ୱ ନଥାଏ । ସଚ୍ଚା କ୍ଷତ୍ରିୟ ପାଇଁ ଏହା ଅପବିତ୍ର ମୃତ୍ୟୁ । ଏ ପ୍ରକାର ମୃତ୍ୟୁରେ ସାର୍ଥକତା କିଛି ନାହିଁ । ରଣଭୂମିରେ ମୃତ୍ୟୁହିଁ କ୍ଷତ୍ରିୟର ମହାନ୍ ମୃତ୍ୟୁ । କ୍ଷତ୍ରିୟର ଜୟ ହେଉ, ରଣରଙ୍ଗ କ୍ଷତ୍ରିୟର ମହନୀୟତା ପ୍ରତିଷ୍ଠିତ ହେଉ ।''

ଉଭୟ ଶିବିରର କ୍ଷତ୍ରିୟ ମାନଙ୍କର ରଣହୁଁକାରରେ କୁରୁକ୍ଷେତ୍ର ପ୍ରକମ୍ପିତ ହେଲା । ବର୍ତ୍ତମାନ ଯୁଦ୍ଧ ଲାଗିଯିବ ।

ହଠାତ୍ ଥମିଗଲା ଏ ପ୍ରଳୟ ହୁଂକାର । ଯୁଦ୍ଧର ନିର୍ଦ୍ଦେଶ ନାହିଁ ଅଥଚ ରଣଭୂମିର କେନ୍ଦ୍ରସ୍ଥଳକୁ ଅର୍ଜ୍ଜୁନଙ୍କର ଶ୍ୱେତ ଅଶ୍ୱଯୁକ୍ତ ପ୍ରକାଣ୍ଡ ରଥ ଆଗେଇ ଆସୁଛି । ଶ୍ରୀକୃଷ୍ଣ ରଥଚାଳନା କରୁଛନ୍ତି । ଉଭୟ ସେନାର ମଧ୍ୟ ଭାଗରେ ରଥ ଅଟକି ଗଲା । ଅର୍ଜ୍ଜୁନ ହସ୍ତ ଉତ୍ତୋଳନ କରି ଗୁରୁଜନ ମାନଙ୍କୁ ପ୍ରଣାମ ଜଣାଇଲେ । ସେ ଚକ୍ଷୁଚାଳି ଚତୁର୍ଦ୍ଦିଗକୁ ଚାହିଁଲେ । ଉଦାସ ଗମ୍ଭୀର ତାଙ୍କର ଚାହାଣୀ । ମୁଖମଣ୍ଡଳ ନିସ୍ପ୍ରଭ । ସାରା ଶରୀରରେ କାତର କମ୍ପନ । ସ୍ୱେଦସିକ୍ତ ଶରୀର । ହାତରୁ ଖସିଆସୁଛି ଗାଣ୍ଡୀବ ଧନୁ । ସମସ୍ତେ ଆଶ୍ଚର୍ଯ୍ୟ, ଏପରିକି ଦୁର୍ଯ୍ୟୋଧନ ମଧ୍ୟ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ଅର୍ଜ୍ଜୁନ...ପୁଣି ତାଙ୍କ ଭିତରେ ଏ ପ୍ରକାର ଦୁର୍ବଳତା !

ଠିକ୍ ଏତିକି ବେଳେ ଅର୍ଜୁନ ଉଦାସ କଣ୍ଠରେ କହିଲେ, ''ହେ ଅଚ୍ୟୁତ ! ମୁଁ ଏକଣ ଦେଖୁଛି । ଯାହାର ସ୍ନେହ ଛାୟାତଳେ ମୁଁ ଲାଳିତ ପାଳିତ ହୋଇ ମଣିଷ ହୋଇଛି ସେଇ ପିତାମହ ଭୀଷ୍ମଙ୍କ ସହିତ ମୋତେ ଯୁଦ୍ଧ କରିବାକୁ ପଡିବ ! ଯେଉଁଗୁରୁ ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ ମୋତେ ବୀରମନ୍ତ୍ର ଦାନ କରିଛନ୍ତି ଯାହାଙ୍କ ଠାରୁ ସମସ୍ତ ଅସ୍ତ୍ରଶସ୍ତ୍ର ଚାଳନା ଓ ଧନୁର୍ବିଦ୍ୟା ଶିକ୍ଷାକରିଛି, ମୁଁ କୃତଘ୍ନ ତାଙ୍କରି ଉପରକୁ ଅସ୍ତ୍ର ନିକ୍ଷେପ କରିବି ! ମୁଁ ଦେଖୁଛି, ମୋର ଚତୁଃପାର୍ଶ୍ୱରେ ଆତ୍ମୀୟ ସ୍ୱଜନ, ଜ୍ଞାତି କୁଟୁମ୍ବ, ବନ୍ଧୁ ବାନ୍ଧବ, ସମବେତ ହୋଇଛନ୍ତି ମୋଠାରୁ ଅସ୍ତ୍ରାଘାତ ପାଇବା ପାଇଁ । ସେମାନଙ୍କୁ ହତ୍ୟା କରିବା ପାଇଁ ମୋ'ପରି କୁଳ ପାଂଶୁଳ ଜନ୍ମ ହୋଇଥିଲା । ମୋ ହୃଦୟ ଦୁଃଖରେ ବିଦୀର୍ଣ୍ଣ ହୋଇ ଯାଉଛି ହେ ପ୍ରଭୁ ! ମୁଁ ବଜ୍ର କଣ୍ଠରେ କହୁଛି, ଯୁଦ୍ଧ କରିବି ନାହିଁ । ଯୁଦ୍ଧନାମରେ ସ୍ୱଜନମାନଙ୍କୁ ବଧ କରିବାର ଆବଶ୍ୟକତା ମୁଁ ଆଦୌ ଅନୁଭବ କରୁନାହିଁ । ମୁଁ, ବିଜୟ, ପ୍ରତିଷ୍ଠା, ରାଜ୍ୟ ଓ ସୁଖ ସମୃଦ୍ଧି କିଛି ଚାହେଁ ନାହିଁ । ମୁଁ ଅସ୍ତ୍ର ଉତ୍ତୋଳନ କରିବି ନାହିଁ । ସେମାନେ ମୋତେ ମାରନ୍ତୁ । କୁଳନାଶ ଓ ଧର୍ମନାଶ କରିବାକୁ ମୁଁ ଚାହେଁନା । ମୋ ବୀର ଗତିର ଆବଶ୍ୟକତା ନାହିଁ... ମୁଁ ଚାହେଁ ଜୀବନରକ୍ଷା ଭିତରେ ନର୍କ ଗତି... ନର୍କଗତି..!! ମୁଁ ନର୍କଗତି ଚାହେଁ ହେ ପ୍ରଭୁ, ମୋତେ ନର୍କଗତି ମିଳୁ ।''

ଭୀଷ୍ମଦେବଙ୍କ ଉନ୍ମାଦଭରା ଅଭିଭାଷଣରେ ସୈନ୍ୟମାନେ ଯେତିକି ଚହଲି ଉଠିଥିଲେ, ସେତିକି ସଙ୍କୁଚିତ ହୋଇଗଲେ । ଉନ୍ମାଦନାର ଉଷ୍ଣତା କିଛିଟା କମିଗଲା ।

ଅର୍ଜୁନଙ୍କର ଭାବାବେଗ ଶ୍ରୀକୃଷ୍ଣଙ୍କୁ ମଧ୍ୟ ଚହଲାଇ ଦେଲା । ସେ ଭାବି ପାରିଲେନି, ଅଗ୍ନିସ୍ଫୁଲିଙ୍ଗର ସ୍ୱରରେ ଏତେ ଶୀତଳତା କିପରି । ଅର୍ଜୁନ, ମୋହଗ୍ରସ୍ତ ।

ଶ୍ରୀକୃଷ୍ଣ ମୃଦୁ ମଧୁର ହସର ରେଖାଟିଏଟାଣି କହିଲେ,''ଅର୍ଜୁନ ! ଏ ପ୍ରକାର ମୋହାବିଷ୍ଟ କ୍ଷତ୍ରିୟ ପକ୍ଷରେ ଶୋଭନୀୟ ନୁହେଁ । ମୟାମମତାର ଇନ୍ଦ୍ରଜାଲ ମଧ୍ୟରେ ତୁମେ କ୍ଷଣିକ ପାଇଁ ଆବଦ୍ଧ ହୋଇ ଯାଇଛ । ଆତ୍ମାନୁଶୀଳନ କର । ଆତ୍ମ ଶୋଧନ ପାଇଁ ଯୋଗାବିଷ୍ଟ ହୁଅ । ଅନ୍ତରରୁ ମୋହମେଘ ଅପସରି ଯିବ ।''

''ହେ ଅନ୍ତର୍ଯ୍ୟାମି ! ଆପଣ ମୋତେ ଦୟାକରି ଉପଦେଶ ଦିଅନ୍ତୁ, ମୋ ଅବୁଝା ମନକୁ ବୁଝାନ୍ତୁ । ମୁଁ ବର୍ତ୍ତମାନ ଧର୍ମ ଓ କର୍ମ ସଙ୍କଟ ମଧ୍ୟରେ ପଡ଼ିଛି ।''

''ହେ ଅର୍ଜୁନ ! ତୁମ ଭିତରେ ମୋହ ଓ ମାୟା ଏକୀଭୂତ ହୋଇ ମନକୁ ଦୁର୍ବଳ କରିଦେଇଛି । ଏହା ଧର୍ମ ବିରୋଧୀ ଓ ଏହାକୁ ତ୍ୟାଗ କରିବା ଉଚିତ । ଯେ ତତ୍ତ୍ୱଦର୍ଶୀ, ସେ କୌଣସି ପରିସ୍ଥିତିରେ ଅନୁଶୋଚନା କରେ ନାହିଁ । ଜୀବିତ କିମ୍ୱା ମୃତ, କାହାପାଇଁ ଶୋକ କରିବାର ଆବଶ୍ୟକତା ନାହିଁ । ମୃତ୍ୟୁ ଶରୀରକୁ ସ୍ପର୍ଶକରେ କିନ୍ତୁ ଆତ୍ମାକୁ ସ୍ପର୍ଶକରି ପାରେ ନାହିଁ । ଆତ୍ମା ଅବିନାଶୀ । ବାର୍ଦ୍ଧକ୍ୟ, ଜରା, ରୋଗ, ଯନ୍ତ୍ରଣା ଓ ଶେଷରେ ମୃତ୍ୟୁ ଭୋଗ କରିବା ପାଇଁ ଦେହର ସୃଷ୍ଟି । ତୁମେ ସେଇ ଅନିତ୍ୟ ଦେହ ଗୁଡାକ ପାଇଁ ଏତେ କାତର କାହିଁକି । ଦେହଧାରୀ ଆତ୍ମସ୍ୱରୂପକୁ ଦର୍ଶନ କର । ସେ ମହାସତ୍ତାର ଅଂଶବିଶେଷ । ସେ କାହାରି ପିତା ମାତା ବନ୍ଧୁ ପରିଜନ, ଆତ୍ମୀୟ ସ୍ୱଜନ ନୁହେଁ । ଅନିତ୍ୟ ପାଇଁ ତୁମର ଏତେ ଆସକ୍ତି କାହିଁକି ? ନିତ୍ୟ ଓ ନିର୍ମଳତାର ଉପାସକ ହୁଅ । ମନକୁ ସ୍ଥିରକର ।

ଯେ ବିଜ୍ଞ ଏବଂ ବିଚାର ଶୀଳ ସେ ସୁଖ କିମ୍ୱା ଦୁଃଖରେ ପ୍ରଭାବିତ ହୁଏନାହିଁ । ସୁଖ ଦୁଃଖର ସ୍ଥିତି ଶୀଳତା ନାହିଁ । ତାହା ମନର ଅବସ୍ଥା ମାତ୍ର । ଦେଖି ଜାଣିଲେ ଦୁଃଖ ସୁଖର ରୂପ ନିଏ । ଦେଖିନଜାଣିଲେ ସୁଖ ଦୁଃଖରେ ପରିଣତି ହୋଇଥାଏ । ଦିବ୍ୟଦୃଷ୍ଟି ଦେଇ ପରିସ୍ଥିତିକୁ ଦେଖ, ତୁମର ମୋହଭଙ୍ଗ ହୋଇଯିବ । ମନକୁ ଉର୍ଦ୍ଧ୍ୱମୁଖୀ କର, ତାହା ସୁଖାତୀତ ଓ ଦୁଃଖାତୀତ ଅବସ୍ଥାକୁ ଆସିଯିବ । ସେତେବେଳେ ମାୟା ମନକୁ ସ୍ପର୍ଶକରି ପାରିବ ନାହିଁ, ଦୁଃଖ ମନକୁ ବିଚଳିତ କରିବ ନାହିଁ ।

ହେ ଅର୍ଜୁନ ! ମଣିଷର ଅଧିକାର କର୍ମଉପରେ, କର୍ମଫଳ ଉପରେ ନୁହେଁ । ତୁମେ କର୍ମ କରିଯାଅ । ଫଳ ବିଚାର କରନାହିଁ । ନିଷ୍କାମ କର୍ମ ତୁମର ଏକମାତ୍ର ଧ୍ୟେୟ ହେବା ଉଚିତ ।

ତୁମେ କ୍ଷତ୍ରିୟ, କ୍ଷାତ୍ରଧର୍ମ ପାଳନ କରିବା ତୁମର କର୍ତ୍ତବ୍ୟ । ତୁମେ କିନ୍ତୁ ତା'ର ବିରୁଦ୍ଧା ଚରଣ କରି ଧର୍ମଦ୍ରୋହୀ ହେବାକୁ ଯାଉଛ । ଅନ୍ୟାୟ ବିରୁଦ୍ଧରେ ଅସ୍ତ୍ର ଧାରଣ କରିବା କ୍ଷତ୍ରିୟର ଧର୍ମ । ତୁମେ ତାହାହିଁ କରିବାକୁ ଯାଉଛ ଏଥିରେ ଅଧର୍ମ ବା ଅନ୍ୟାୟ ରହିଲା କେଉଁଠି ?

ତୁମେ ଯେତେବେଳେ କଠୋର ସଂଗ୍ରାମର ସମ୍ମୁଖୀନ ହୋଇଛ, ସେତେବେଳେ ସାମାନ୍ୟ ସଂସାରୀ ମଣିଷପରି ମୋହଗ୍ରସ୍ତ ହୋଇ ସ୍ୱାର୍ଥର ସମୀକ୍ଷା କରୁଛ । ତୁମେ ଯାହାସବୁ କହୁଛ ସେ ସବୁ କାପୁରୁଷତାର କାବ୍ୟବାଣୀ । ବୀର ସୈନିକର ସଂହିତାରେ ସେ ସଙ୍କୀର୍ଣ୍ଣ କଥା ଗୁଡାକ ଲେଖା ନଥାଏ । ଧର୍ମ ରକ୍ଷାପାଇଁ ତୁମେ ଅସି ଉତ୍ତୋଳନ କରୁଛ । କିଏ ବଳି ପଡ଼ିବ ଏବଂ ତା ସହିତ ତୁମର ବ୍ୟକ୍ତିଗତ ସମ୍ପର୍କ କଣ, ଏ ସଙ୍କଟ ମୁହୂର୍ତ୍ତରେ ସେ ହିସାବ ରଖିବାର କି ଆବଶ୍ୟକତା ଅଛି ?''

ଅର୍ଜୁନ ତଥାପି ତାଙ୍କ ମୁହଁକୁ ପ୍ରଶ୍ନଭରା ନୟନରେ ଚାହିଁ ରହିଲେ, ସତେ ଯେପରି ସେ ଅନେକ କଥା କହିବାକୁ ଚାହୁଁଛନ୍ତି କିନ୍ତୁ କିଛି କହିପାରୁ ନାହାଁନ୍ତି । କହିବାକୁ ସାହସ ଅକୁଳନ ହେଉଛି । ଭାଷା ତା' ପ୍ରକାଶ ଶକ୍ତି ହରାଇଛି ।

ଶ୍ରୀକୃଷ୍ଣ ହସିଲେ ।

''ଅର୍ଜୁନ ! ଏଥର ମୋତେ ନିରୀକ୍ଷଣ କର । ମୁଁ ତୁମକୁ ଦିବ୍ୟଦୃଷ୍ଟି ଦାନ କରୁଛି । ସେଇ ମହାନ୍ ଧର୍ମ ସଂସ୍ଥାପନ ପାଇଁ ମୁଁ ପୃଥିବୀକୁ ଆସିଛି । ଅଧର୍ମ, ଅନ୍ୟାୟ ଓ ପାପର ବିନାଶନ ହିଁ ମୋର କାମ । ତୁମେ ଏଣିକି ନିରୁଦ୍‌ବେଗ ମନରେ ଅସ୍ତ୍ରଧାରଣ କର । ମୋର ଲକ୍ଷ୍ୟ ପୂରଣର ନିମିତ୍ତ ରୂପେ କର୍ତ୍ତବ୍ୟ ସମ୍ପାଦନ କର ।''

ଅର୍ଜୁନ ହତବାକ୍ ହୋଇ ଚାହିଁ ରହିଲେ । ଶ୍ରୀକୃଷ୍ଣଙ୍କ ଭିତରେ ତାଙ୍କର ବିଶ୍ୱରୂପ ଦର୍ଶନ ମୋହଭଙ୍ଗ କଲା । ସେ ଦେଖିଲେ, ଶ୍ରୀକୃଷ୍ଣ ହେଉଛନ୍ତି ବିଶ୍ୱବ୍ରହ୍ମାଣ୍ଡର ଆଧାର । ତାଙ୍କରି ଭିତରେ ଅନନ୍ତ ସୃଷ୍ଟିଲୀନ ହୋଇଛି । ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର ସମସ୍ତେ ସେଇ ବ୍ରହ୍ମଲୋକ ଭିତରେ ନିଜର ଅସ୍ତିତ୍ୱ ହରାଇଛନ୍ତି । ତାଙ୍କ ସଖା ଶ୍ରୀକୃଷ୍ଣ ସାଧାରଣ ମନୁଷ୍ୟ ନୁହଁନ୍ତି । ସେ ବିଶ୍ୱ ରୂପର ପ୍ରତୀକ, ସର୍ବ ବ୍ୟାପକ ।ସେ ତାଙ୍କରି ଭିତରେ ସମସ୍ତଙ୍କୁ ଦେଖିବାକୁ ପାଉଛନ୍ତି । ଏଇତ ଏଇ କୁରୁକ୍ଷେତ୍ର ତାଙ୍କ ଭିତରେ ପ୍ରତିବିମ୍ବିତ । ସେ ଭାବ ଗମ୍ଭୀର କଣ୍ଠରେ କହିଲେ,''ହେ ପ୍ରଭୁ ! ବାଟମିଳିଗଲା । ଅନ୍ଧକାର ଦୂରେଇ ଗଲା । ମୁଁ ନିଶ୍ଚୟ ଯୁଦ୍ଧ କରିବି । ପୃଥିବୀର କୌଣସି ଶକ୍ତି ଅର୍ଜୁନଙ୍କୁ ଆଉ ଅଟକାଇ ପାରିବ ନାହିଁ । ହେ ପରମ ସଖା ! ତୁମର ନିର୍ଦ୍ଦେଶ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି । ରଥକୁ ତା ସ୍ଥାନକୁ ଲେଉଟାଇ ନିଅ ।''

ଶ୍ରୀକୃଷ୍ଣ ରଥ ଫେରାଇ ଆଣିଲେ ।

ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କର ଆଧାତ୍ମିକ ଉପଦେଶ ହେଉଛି ପବିତ୍ର ଗୀତାର ବିଷୟବସ୍ତୁ । ଗୀତାର ପ୍ରତ୍ୟେକ ବାଣୀକୁ ହିନ୍ଦୁମାନେ ସ୍ୱୟଂ ଈଶ୍ୱରଙ୍କର ମୁଖନିସୃତ ବାଣୀବୋଲି ବିଚାର କରନ୍ତି । ଗୀତାବାଣୀ ସମସ୍ତ ମାନବ ଜାତିପାଇଁ ଅଭିପ୍ରେତ । ମାୟାଲୁବ୍ଧ ମଣିଷକୁ ଶାନ୍ତି, ମୁକ୍ତି ଓ ପ୍ରଗତି ଦାନକରିବା ପାଇଁ ଗୀତା ଅଭିପ୍ରେତ । ଏହା ଦେଶକାଳ, ଧର୍ମ, ସମ୍ପ୍ରଦାୟ ଜାତି ଓ ଗୋଷ୍ଠିକୁ ଅତିକ୍ରମ କରିପାରିଛି । ସାର୍ବଜନୀନ ଶାନ୍ତି ମୁକ୍ତି ଓ ସମୃଦ୍ଧି ହିଁ ଏହାର ସ୍ୱର ।

ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ବିଶଦ ବିବରଣୀ ଶୁଣାଉଲେ ।

# ।। ଯୁଧିଷ୍ଠିରଙ୍କ ଆଶୀର୍ବାଦ ଭିକ୍ଷା ।।

ପରିବେଶ ଅତ୍ୟନ୍ତ ଗମ୍ଭୀର । ଯୁଦ୍ଧପାଇଁ ଅପେକ୍ଷା କରିବାକୁ କୌରବ ମାନଙ୍କର ଆଉ ଧୈର୍ଯ୍ୟ ନାହିଁ । ଅର୍ଜୁନଙ୍କର ଅଭିମାନ ଅଯଥାରେ ଏତେ ସମୟ ବିଳମ୍ବ କରିଦେଲା । ଆଉ ସେ ଅପେକ୍ଷା କରିପାରିବେନି, ଏଥର ନିର୍ଦ୍ଦେଶ ଦେଇଦେବେ ଯୁଦ୍ଧ ଆରମ୍ଭ କରିବାକୁ । ବିଳମ୍ବ, ସୈନ୍ୟମାନଙ୍କ ମଧ୍ୟରେ ବିଚଳନ ସୃଷ୍ଟି କରିପାରେ । ଦୁର୍ଯ୍ୟୋଧନ ସଙ୍କେତର ସୂଚନା ଦେଇ, ଚାହିଁ ରହିଲେ ଭୀଷ୍ମଦେବଙ୍କ ମୁହଁକୁ । ଠିକ୍ ଏତିକି ବେଳେ ଆଉ ଏକ ନାଟକୀୟ ପରିସ୍ଥିତି ସୃଷ୍ଟି ହେଲା ।

ଆଶ୍ଚର୍ଯ୍ୟ କଥା ।

ଯୋଡ଼ ହସ୍ତରେ ଖାଲି ପାଦରେ ନତ ମସ୍ତକ ହୋଇ ଧର୍ମରାଜ ଯୁଧିଷ୍ଠିର ରଥରୁ ଓହ୍ଲାଇ ସେମାନଙ୍କ ଆଡକୁ ଅଗ୍ରସର ହେଉଛନ୍ତି । କଥା କଣ କିଛି ବୁଝିହେଉନି । ତାଙ୍କର କଣ ଅର୍ଜୁନଙ୍କ ପରି ପୁଣି ବିଚାର ବିଭ୍ରାଟ ଘଟିଛି । ଏପ୍ରକାର ଦୁର୍ବଳତା ପ୍ରକୃତ ବୀରର ଚିହ୍ନନୁହେଁ । ଉଭୟ ପକ୍ଷର ସୈନ୍ୟମାନେ ଏଇପରି ନାନାକଥା ଭାବୁଛନ୍ତି । ପାଣ୍ଡବ ଭାଇମାନେ ନିଜନିଜ ଭିତରେ ଦୃଷ୍ଟିବିନିମୟ କରୁଛନ୍ତି ଏହାର ରହସ୍ୟ ଭେଦ କରିବା ପାଇଁ । ସେ କାହାକୁ କିଛତ କହିନାହାଁନ୍ତି । ସେମାନଙ୍କ ମଧ୍ୟରେ ଆଲୋଚନା ହୋଇ ଏପରିକିଛି ସିଦ୍ଧାନ୍ତମଧ୍ୟ ନିଆଯାଇ ନାହିଁ । ସେ କଣ ଆତ୍ମସମର୍ପଣ କରିବାକୁ ଯାଉଛନ୍ତି !!

ଅର୍ଜୁନ ବ୍ୟତିବ୍ୟସ୍ତ ହୋଇ ରଥରୁ ଡେଇଁ ଦଉଡିଲେ ଯୁଧିଷ୍ଠିରଙ୍କ ପାଖକୁ । ନିରସ୍ତ୍ର ଓ ନିରାପତ୍ତା ବିହୀନ ଧର୍ମରାଜ । ଭୀମ ନକୁଳ ଓ ସହଦେବ ଦଉଡିଲେ ତାଙ୍କ ପାଖକୁ । ପଛେ ପଛେ ଗଲେ ଶ୍ରୀକୃଷ୍ଣ । ସମସ୍ତଙ୍କ ମଧ୍ୟରେ ଉଦ୍‌ବେଗର ଉଦ୍‌ବେଳନ । ଶ୍ରୀକୃଷ୍ଣ କିନ୍ତୁ ଆଦୌ ଚିନ୍ତିତ ନଥିଲେ । ଜଣାଯାଉଥିଲା, ସତେ ଯେପରି କିଛି ଅଘଟଣ ଘଟିନି । ସମସ୍ତେ ତାଙ୍କ ମୁହଁକୁ ଚାହିଁଲେ ପ୍ରଶ୍ନଭରା ନୟନରେ । ଶ୍ରୀକୃଷ୍ଣ କହିଲେ, ''ବ୍ୟସ୍ତ ହୁଅନି, ଯାହାକିଛି ଘଟିବାକୁ ଯାଉଛି ତାହା ଯଥାର୍ଥ ଓ ଶୁଭପ୍ରଦ । ତାଙ୍କ ଭିତରେ ସୃଷ୍ଟହୋଇଥିବା ଅନୁଚିତ ଅପରାଧବୋଧକୁ ଦୂର କରିବା ପାଇଁ ସେ କୁରୁବଂଶର ଜ୍ୟେଷ୍ଠ, ଶ୍ରେଷ୍ଠ ଓ ଗୁରୁଜନମାନଙ୍କର ଅନୁମତି ତଥା ଆଶୀର୍ବାଦ ଭିକ୍ଷା କରିବାକୁ ଯାଉଛନ୍ତି ।

ସନ୍ଦେହର କୃଷ୍ଣମେଘ ଅପସରି ଗଲା ।

ଦୁର୍ଯ୍ୟୋଧନ ଧର୍ମରାଜଙ୍କର ବିନୀତ ଓ ସମର୍ପଣ ଭାବକୁ ଦେଖି ମନେକଲେ, ଯୁଧିଷ୍ଠିରଙ୍କର ଚୈତନ୍ୟ ଉଦୟ ହୋଇଛି । ସେ ଆମର ଅଜେୟ ସୈନ୍ୟବଳ ଦେଖି ତ୍ରସ୍ତ କାତର ହୋଇ ଉଠିଛନ୍ତି । ଅନ୍ୟଉପାୟ ନଦେଖି ସନ୍ଧି ପ୍ରାଥନା ପାଇଁ ଯୋଡ଼ ହସ୍ତରେ ଆଗେଇ ଆସୁଛନ୍ତି କୁରୁପିତାମହ ଭୀଷ୍ମଦେବଙ୍କ ପାଖକୁ । ହାଃ...ହାଃ....ହାଃ... ଚମତ୍କାର... ଚମତ୍କାର ଏ ଦୃଶ୍ୟ ।

ଶକୁନି ହାତ ଠାରି ସଂଯତ ହେବାକୁ ଦୁର୍ଯ୍ୟୋଧନଙ୍କୁ କହିଲେ । ତଥାପି ତାଙ୍କ ଚାହାଣିରେ ରହସ୍ୟଭାବର ଆବର୍ତ୍ତ । ସେ ଭାବିଲେ ଏହା ବୋଧହୁଏ ଅଭିମାନ ନାଟକର ଦ୍ୱିତୀୟ ଅଙ୍କ । ଏହାମଧ ଉପଭୋଗ୍ୟ, ତେବେ ଯୁଦ୍ଧର ଉଷ୍ଣତାକୁ ଏସବୁ ଅଭିନୟ କମାଇ ଦେଉଛି । ଠିକ୍ ଅଛି, ରଣମଞ୍ଚରେ ଏପ୍ରକାର ଅଭିନୟ ପାଇଁ ଆଉ ଅଭୟ ଦିଆଯିବ ନାହିଁ ।

ଯୁଧିଷ୍ଠିରଙ୍କର ଅଦ୍ଭୁତ ଆଚରଣ ଦେଖି କୌରବ ଶିବିରରେ ଚହଳ ପଡ଼ିଯାଇଛି । ବହୁବ୍ୟକ୍ତି ବହୁ ମନ୍ତବ୍ୟ ଦେଇଛନ୍ତି । ଶାନ୍ତି ପାଗଳ ଧର୍ମପୁତ୍ର ଚରମ ସାମରିକ ବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରି, ଜୀବନ ବିନିମୟରେ ଶାନ୍ତି ପ୍ରସ୍ତାବ କାର୍ଯ୍ୟକାରୀ କରିବାକୁ ଆଗେଇ ଆସୁଛନ୍ତି । କିଏ କହୁଛି, ଧର୍ମପୁତ୍ରଙ୍କୁ କ୍ଷୁଦ୍ର ମୂଷିକଟିଏ ବୋଲି ଭାବନାହିଁ, ସେ ତାଙ୍କ କାଳଦନ୍ତରେ ସବୁକିଛି କାଟି ଟିକ୍ ଟିକ୍ କରିଦେଇ ପାରିବେ । ଆଉ କିଏ କହୁଚି, ଧର୍ମରାଜ ଜଣେ ଦାନ୍ତୁରା ଦାନବ । ତାଙ୍କର ହସ କାନ୍ଦ ଠଉରାଇବା ସହଜ କଥାନୁହେଁ । ତାଙ୍କ କୂଟନୀତିର ଖାଲ ଢ଼ିପ ଆଦୌ ଜାଣିହେବ ନାହିଁ ।

ଯୁଧିଷ୍ଠିର ସୈନ୍ୟ ବ୍ୟୂହ ଭେଦକରି ସିଧା ଯାଇ ପହଞ୍ଚିଲେ ପିତାମହ ଭୀଷ୍ମଙ୍କ ପାଖରେ । ସେ ନତ ଜାନୁହୋଇ ପ୍ରଣାମକରି ହାତ ଯୋଡି କହିଲେ "ମୁଁ ବିବେକ ବିରୁଦ୍ଧରେ ଆପଣଙ୍କ ସହିତ ଯୁଦ୍ଧ କରିବାକୁ ଆଗେଇ ଆସିଛି । ସେଥିପାଇଁ ମୋତେ କ୍ଷମା ଦିଅନ୍ତୁ । ଆପଣ ଅମିତ ପରାକ୍ରମର ଅଧିକାରୀ । ଆପଣ ଅଜେୟ । ଆପଣ କୁରୁକୁଳର ପରିପାଳକ, ଶୁଭ ଚିନ୍ତକ, ମଙ୍ଗଳମୟ । ଆମର ଧୃଷ୍ଟତା କ୍ଷମା ଦିଅନ୍ତୁ । ଆଜିର ସଂହାର ଲୀଳା ସଂଘଟିତ କରିବାକୁ ଅନୁମତି ଦିଅନ୍ତୁ । ତଥାପି ମୁଁ ଆପଣଙ୍କର ଆଶୀର୍ବାଦ ଭିକ୍ଷାକରେ ।"

"ବତ୍ସ ! ଯାହା ଭବିତବ୍ୟ ସେଥିରେ ମଣିଷର କିଛି ହାତ ନାହିଁ । ଆମେ ସମସ୍ତେ ନିମିତ୍ତ ମାତ୍ର । ଧର୍ମରାଜ ପଦର ପବିତ୍ରତା ତୁମେ ରକ୍ଷା କରିଛ । ନୀତି, ନିୟମ, କର୍ତ୍ତବ୍ୟ ଓ ଶୃଙ୍ଖଳାରୁ ତୁମେ ବିଚ୍ୟୁତ ହୋଇନାହଁ । ସଜାଗ, ସତର୍କ ଓ ବିଚାରଶୀଳତା ପ୍ରକାଶ କରି ତୁମେ ଧର୍ମପଥ ଅନୁସରଣ କରିଛ । ମୁଁ ବ୍ୟକ୍ତିଗତ ଭାବରେ ଏଥିପାଇଁ ଆନନ୍ଦିତ । କୁରୁସିଂହାସନ ରକ୍ଷା କରିବାର ଦାୟିତ୍ୱ ମୋର ତେଣୁ କୌରବମାନଙ୍କ ତରଫରୁ ଯୁଦ୍ଧ କରିବା ପାଇଁ ମୁଁ ନିୟମ ବଦ୍ଧ । କୁରୁରାଜା ଓ କୁରୁରାଜ୍ୟ ପାଇଁ ମୋତେ ଯୁଦ୍ଧ କରିବାକୁ ପଡିବ । ନୀତି ଦୃଷ୍ଟିରୁ ଏହାର କିଛି ବିକଳ୍ପ ପନ୍ଥା ନାହିଁ । ତୁମପକ୍ଷ ସମର୍ଥନ କରିବାର ସୁଯୋଗ ମୋ ପାଇଁ ନାହିଁ । ମୁଁ ତଥାପି ଆଶୀର୍ବାଦ ଦେଉଛି, ତୁମେ ବିଜୟୀ ହୁଅ । ନ୍ୟାୟ ଓ ଧର୍ମ ପ୍ରତିଷ୍ଠା କର ।

ଭୀଷ୍ମଦେବଙ୍କ ଠାରୁ ଆଶୀର୍ବାଦ ଲାଭ କରି ସାରିବାପରେ ଯୁଧିଷ୍ଠିର, ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଗଲେ । ତାଙ୍କର ପଦଯୁଗରେ ପ୍ରଣାମ କଲେ । କହିଲେ, "ହେ ଗୁରୁଦେବ ! ମୁଁ ଆପଣଙ୍କ ବିରୁଦ୍ଧରେ ଅସ୍ତ୍ରଉତ୍ତୋଳନ କରିବାକୁ ଦୁଃସାହସ କରିଛି । ମୋର ଏ ଆମାର୍ଜନୀୟ ଅପରାଧ ପାଇଁ କ୍ଷମା ଭିକ୍ଷାକରେ । ଆପଣଙ୍କର ଆଶୀର୍ବାଦ ଭିକ୍ଷା କରୁଛି ଗୁରୁଦେବ । ଆଶୀର୍ବାଦ ତଥା ଅନୁମତି ଦିଅନ୍ତୁ ।

ଆଚାର୍ଯ୍ୟ ଦ୍ରୋଣ ଆଶୀର୍ବାଦ ମୁଦ୍ରାରେ ମଧୁର କଣ୍ଠରେ କହିଲେ, "ବତ୍ସ ! ଏ ଯୁଦ୍ଧ ସମସ୍ତଙ୍କ ଉପରେ ଲଦିଦିଆଯାଇଛି । ମୁଁ ଆଚାର୍ଯ୍ୟ ଭାବରେ କୁରୁସିଂହାସନ ପାଖରେ ଉତ୍ତର ଦାୟୀ ତେଣୁ ସିଂହାସନ ରକ୍ଷାପାଇଁ ମୋତେ କୌରବ ମାନଙ୍କ ସପକ୍ଷରେ ଯୁଦ୍ଧ କରିବାକୁ ପଡିବ । ମୁଁ ଆଶୀର୍ବାଦ ଦେଉଛି ତୁମେ ବିଜୟୀ ହୁଅ ଓ ଧର୍ମ ପ୍ରତିଷ୍ଠା କର । ସର୍ବଶକ୍ତିମୟ ଶ୍ରୀକୃଷ୍ଣ ତୁମର ପଥପ୍ରଦର୍ଶକ । ସେ ତୁମକୁ ଧର୍ମ ମାର୍ଗରେ ପରିଚାଳନା କରିବେ ।"

ବର୍ତ୍ତମାନ ସେ ଗୁରୁ କୃପାଚାର୍ଯ୍ୟଙ୍କ ପାଖକୁ ଆସି ଭୂମିଲଗ୍ନ ପ୍ରଣାମ କଲେ । ତାଙ୍କୁ ମଧ୍ୟ ଅନୁମତି ତଥା ଆଶୀର୍ବାଦ ଭିକ୍ଷାକଲେ ।

କୃପାଚାର୍ଯ୍ୟ ଆନନ୍ଦିତ ହୋଇ କହିଲେ, ରାଜନ୍ ! ମୁଁ ତୁମକୁ ମୋର ଶ୍ରଦ୍ଧା ଓ ଶୁଭେଚ୍ଛା ଦେଉଛି । ତୁମେ ବିଜୟୀ ହୁଅ । ଧର୍ମରାଜ୍ୟରେ ଧର୍ମ ପ୍ରତିଷ୍ଠିତ ହେଉ ।

ଶେଷରେ ଧର୍ମରାଜ ମାତୁଳ ଶଲ୍ୟଙ୍କ ପାଖକୁ ଆସି ପ୍ରଣାମ କଲେ । କହିଲେ, ''ହେ ବୀରଶ୍ରେଷ୍ଠ ରାଜନ୍ ! ଆପଣ ଆମମାନଙ୍କର ପିତୃ ପ୍ରତିମ । ମୁଁ ଯୁଦ୍ଧ ପୂର୍ବରୁ ଆପଣଙ୍କର ଆଶୀର୍ବାଦ ଭିକ୍ଷାକରେ ।''

ଶଲ୍ୟ ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ସେ ଭାବିନଥିଲେ ତାଙ୍କ ବିଚାରକୁ ଅତିକ୍ରମ କରି ଧର୍ମରାଜ ତାଙ୍କ ପାଖକୁ ଆସି ଆଶୀର୍ବାଦ ଭିକ୍ଷାକରିବେ । ସେ ଆବେଗାକୁଳିତ କଣ୍ଠରେ କହିଲେ, ''ବତ୍ସ ! ମୋର ଆଶୀର୍ବାଦ ତୁମପାଇଁ ସବୁବେଳେ ରହିଛି । ତୁମର ମହାନୁଭବତାହିଁ ପାଣ୍ଡବମାନଙ୍କର ରକ୍ଷା କବଚ । ଯାଅ କର୍ତ୍ତବ୍ୟ କର । ସଫଳତା ଆପେ ଆପେ ଆସିବ ।''

ଯୁଧିଷ୍ଠିର ସାତ୍ୟକି ଓ ଭାଇମାନଙ୍କ ସହିତ, ଫେରି ଆସିଲେ ନିଜର ସୈନ୍ୟ ଶ୍ରେଣୀ ପାଖକୁ । ଶ୍ରୀକୃଷ୍ଣ କର୍ଣ୍ଣଙ୍କୁ ଦେଖି ଅଟକିଯାଇ ଅଭିନନ୍ଦନ ଜଣାଇଲେ । କର୍ଣ୍ଣ ସେତେବେଳେ କୌରବ ସୈନ୍ୟଶ୍ରେଣୀର ଅବସ୍ଥାକୁ ଅନୁଧ୍ୟାନ କରୁଥିଲେ । କୃଷ୍ଣ ତାଙ୍କୁ ଦେଖି ହସିହସି କହିଲେ, ''ବୀରଶ୍ରେଷ୍ଠ ! ତଥାପି ସମୟ ଅତିକ୍ରାନ୍ତ ହୋଇନି । ତୁମେ ନିସ୍ପୃହ ରହିବା ଅପେକ୍ଷା ପାଣ୍ଡବ ପକ୍ଷରେ ଯୋଗଦିଅ । ଏହା ଫଳରେ ଭୀଷ୍ମଙ୍କ ଉପରେ ପ୍ରତିଶୋଧ ନେବାର ସୁଯୋଗ ପାଇପାରିବ । ସେ ତୁମର ଭାବମୂର୍ତ୍ତିକୁ ସମ୍ପୂର୍ଣ୍ଣ ନଷ୍ଟ କରିଦେଉଛନ୍ତି । ଆସ ପାଣ୍ଡବ ପକ୍ଷ ସମର୍ଥନ କର ।''

''କର୍ଣ୍ଣ କୋମଳ କଣ୍ଠରେ କହିଲେ, ''ହେ କୃଷ୍ଣ ! ଆପଣ କୂଟନୀତିର ଏକ ଅତଳ ସାଗର । ମୁଁ ଆପଣଙ୍କୁ କଣ କହି ଆନନ୍ଦିତ କରିବି । ଆପଣ ଜାଣନ୍ତି, ମୋର ମନ, ପ୍ରାଣ, ଶରୀର ଦୁର୍ଯ୍ୟୋଧନଙ୍କ ପାଖରେ ସମର୍ପିତ । ଅନ୍ୟକାହାକୁ ଅର୍ପଣ କରିବାର ପ୍ରଶ୍ନ ଉଠୁନି । ମୁଁ କେବେହେଲେ ନିସ୍ପୃହ ନୁହେଁ, ପରିସ୍ଥିତି ଦୃଷ୍ଟିରୁ ଭୀଷ୍ମଦେବଙ୍କ ନେତୃତ୍ୱରେ ମୁଁ ଯୁଦ୍ଧ ନକଲେ ମଧ ତାଙ୍କର ବିଜୟ ମୋର ଏକାନ୍ତ କାମ୍ୟ । କୁଳଶ୍ରେଷ୍ଠ ପିତାମହ ଭୀଷ୍ମଙ୍କ ନେତୃତ୍ୱ ପ୍ରତି ମୋର ଆକୁଣ୍ଠ ସମର୍ଥନ ଅଛି ।

ଶ୍ରୀକୃଷ୍ଣ ହସିହସି ଚାଲିଆସିଲେ ନିଜର ରଥ ପାଖକୁ ।

ଶେଷଥର ପାଇଁ ଯୁଧିଷ୍ଠିର କୌରବ ସୈନ୍ୟମାନଙ୍କୁ ସମ୍ଭାଷଣ ଜଣାଇ କହିଲେ, କୌରବ ପକ୍ଷରୁ ଯେ କୌଣସି ବ୍ୟକ୍ତି ଆସି ଆମପକ୍ଷରେ ଯୋଗ ଦେଲେ ମୁଁ ଅଭିନନ୍ଦନ ଜଣାଇବି । ପ୍ରତିଜ୍ଞା କରୁଛି, ଯେ ଆସିବେ ସେ ମୋର ନିଜ ଭାଇପରି ସମ୍ମାନିତ ହେବେ । ଧର୍ମ ଓ ନ୍ୟାୟ ପ୍ରତିଷ୍ଠା ପାଇଁ ଆମପକ୍ଷ ସମର୍ଥନ କରନ୍ତୁ ।''

ଧୃତରାଷ୍ଟ୍ରଙ୍କର ଅନ୍ୟଏକ ପୁତ୍ର 'ଯୁଯୁତ୍ସୁ' ସେ ନିଜର ସୈନ୍ୟବଳ ନେଇ ପାଣ୍ଡବମାନଙ୍କ ଗହଣରେ ଯୋଗଦେଲେ । ପାଣ୍ଡବଗଣ ତାଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଇ ଗ୍ରହଣ କଲେ । ସୈନ୍ୟଗଣ ଯୁଯୁତ୍ସୁଙ୍କୁ ସାମରିକ ରୀତିରେ ଅଭିବାଦନ ଜଣାଇଲେ । ଦୁର୍ଯ୍ୟୋଧନ ଉଦ୍‌ଫଣ ନାଗପରି ଗର୍ଜି ଉଠିଲେ । ପାଣ୍ଡବମାନଙ୍କର ଝଙ୍କୃତ ସମରବାଦ୍ୟ ଭିତରେ ସେ ଗର୍ଜନ କୁଆଡେ ହଜିଗଲା ।

କୋଡ଼ିଏ

# ।। ପ୍ରଥମ ଦିନ ଯୁଦ୍ଧ ।।

ଧୃତରାଷ୍ଟ୍ର ଗଭୀର ଉତ୍କଣ୍ଠା ମଧ୍ୟରେ କହିଲେ, ''ସଂଜୟ ! ତୁମେ ବର୍ତ୍ତମାନ କୁହ, ଯୁଦ୍ଧ ଆରମ୍ଭ ହେଲାଣି କି ନାହିଁ । ଯଦି ହୋଇଛି ତେବେ କିପରି ଆରମ୍ଭ ହେଲା ଓ କିଏ ପ୍ରଥମେ ଆରମ୍ଭ କଲା ?''

ସଂଜୟ ବିଶଦ ଭାବରେ ଯୁଦ୍ଧର ବିବରଣୀ ଦେଲେ ।

''ହେ ରାଜନ୍ ! ଯୁଦ୍ଧ ଆରମ୍ଭ ହୋଇଗଲାଣି । ଦୁଃଶାସନ ପ୍ରଥମେ ପାଣ୍ଡବମାନଙ୍କ ଉପରକୁ ଅସ୍ତ୍ର ଚାଳାନାକଲେ । ପାଣ୍ଡବମାନଙ୍କର ପ୍ରଧାନ ସେନାପତି, ଧୃଷ୍ଟଦ୍ୟୁମ୍ନ । କୌରବ ପକ୍ଷର ମୁଖ୍ୟ ସେନାପତି, ପିତାହମ ଭୀଷ୍ମ ।

ଯୁଦ୍ଧର ପୂର୍ବ ପ୍ରସ୍ତୁତ ନିୟମ ଅନୁସାରେ ସମଯୋଦ୍ଧା ସହିତ ସମଯୋଦ୍ଧାର ସଂଘର୍ଷ ଚାଲିଛି । ଦୁଃଶାସନଙ୍କ ସହିତ ଭୀମଙ୍କର ଲଢ଼େଇ ଆରମ୍ଭ ହୋଇଛି । ହସ୍ତୀମାନଙ୍କର ବୃହିଂତ, ଅଶ୍ୱମାନଙ୍କର ହ୍ରେଷାରବ, ସୈନ୍ୟମାନଙ୍କରର ସିଂହ ଗର୍ଜନରେ, ରଣସ୍ଥଳୀ ବିଦୀର୍ଣ୍ଣ ହେଉଛି । ଶଙ୍ଖନାଦ, ଭେରୀ, ତୂରୀ, ଓ ରଣ ବାଦ୍ୟର ଗର୍ଜ୍ଜନ, ଭୟଙ୍କର କୋଳାହଳ ସୃଷ୍ଟି କରିଛି । ଆକାଶ ମଣ୍ଡଳ ଧୂଳି ପଟଳରେ ପରିପୂର୍ଣ୍ଣ । କୁରୁକ୍ଷେତ୍ର ପ୍ରଳୟନାଦରେ ପ୍ରକମ୍ପିତ । ଚତୁର୍ଦ୍ଦିଗରୁ ତୀର ସବୁ ବର୍ଷାପରି ଛୁଟିଛି । ସମସ୍ତେ ଯୁଦ୍ଧ ନିଶାରେ ପ୍ରମତ୍ତ । ପାରିବାରିକ ବନ୍ଧନ, ରକ୍ତ ସଂପର୍କ ପ୍ରିୟାପ୍ରୀତି, ବନ୍ଧୁଭାବ, କେହି କିଛି ଦେଖୁ ନାହାନ୍ତି । ସମସ୍ତେ ରକ୍ତରଙ୍କ । କଟାମୁଣ୍ଡ ଭୂମିରେ ଲୋଟୁଛି । ରକ୍ତ ସୁଅ ପ୍ରବାହିତ ହେଉଛି । ଦୁଃଶାସନ, ଦୁର୍ମୁଖ, ଦୁଃସ୍ରହ, ବୃଷସେଣ, ଚିତ୍ରଶେଣ, ବିକର୍ଣ୍ଣ ପ୍ରଭୃତି ଭୀମଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇଛନ୍ତି । ସେମାନଙ୍କ ମଧ୍ୟରେ ଭୟାବହ ଯୁଦ୍ଧ ଚାଲିଛି ।''

ଧୃତରାଷ୍ଟ୍ରଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଲା ।

''ହଁ, ତାପରେ କଣ ହେଲା ? ସଂଜୟ ଠିକ୍ ଭାବରେ କୁହ, କିଛି ଏ ପାଖ ସେପାଖ କରନାହିଁ''

''ଭୀଷ୍ମଦେବ ପାଣ୍ଡବ ପକ୍ଷର ବହୁ ସୈନ୍ୟଙ୍କୁ ମାରି ଦେଲେଣି । ପାଣ୍ଡବ ଶିବିରରେ ହତାଶା ଖେଳି ଯାଇଛି । ସେମାନେ ସମସ୍ତ ଶକ୍ତି ଦେଇ ପ୍ରତିରୋଧ କରୁଛନ୍ତି । ତଥାପି ସେମାନେ ବ୍ୟସ୍ତ, ବ୍ୟଥିତ, ବିଚଳିତ ।''

ଧୃତରାଷ୍ଟ୍ର ଆନନ୍ଦରେ କହିଲେ, ''ଆଛା, କ'ଣ ଦେଖୁଛ କୁହ ।

''ଏଇତ ସେଠାରେ ଭୟଙ୍କର କୋଳାହଳ ଶୁଣାଯାଉଛି । ଭୀଷ୍ମଦେବ ପ୍ରଳୟ ପ୍ରଭଞ୍ଜନ ପରି ତାଙ୍କ ତାଳଧ୍ୱଜ ଉଡ଼ାଇ ରଥରେ ମାଡ଼ି ଆସୁଛନ୍ତି । ଯେ ମୁହଁରେ ପଡୁଛି ଆଉ ରକ୍ଷାନାହିଁ । ତା' ମୁଣ୍ଡ ଭୂଇଁରେ ଲୋଟୁଛି । ପାଣ୍ଡବ ସୈନ୍ୟମାନେ ଭାଗ ଭାଗ ହୋଇ ଯାଉଛନ୍ତି । ଭୀଷ୍ମଦେବଙ୍କ ଅଗ୍ରଗତିକୁ ବାଧା ଦେବକୁ ଅର୍ଜୁନ ନିଜର ସୈନ୍ୟବଳ ନେଇ ପ୍ରବଳ ବେଗରେ ଆଗେଇଛନ୍ତି । ହଁ, ଏଥର ତାଙ୍କର ଗତି ରୁଦ୍ଧ ହୋଇଗଲା । ଦୁଇ ମହାରଥୀଙ୍କ ଭିତରେ ଘମାଘୋଟ ଲଢ଼େଇ ଲାଗିଛି । ଏହା ଦେଖିବାପାଇଁ ସ୍ୱର୍ଗପୁରରୁ ଦେବତାମାନେ ଆକାଶ ମାର୍ଗକୁ ଓହ୍ଲାଇ ଆସିଛନ୍ତି । ପୁଷ୍ପବୃଷ୍ଟି ହେଉଛି ।''

''ଠିକ୍ ଅଛି ସଂଜୟ । ଠିକ୍ ଅଛି ।'' କହିଲେ ରାଜା ଧୃତରାଷ୍ଟ୍ର, 'ହଁ ତାପରେ !''

''ଅନ୍ୟ ପାଖରେ ଭୟଙ୍କର ଯୁଦ୍ଧ ମଧ୍ୟ ଚାଲିଛି । ସାତ୍ୟକୀ କୃତବର୍ମାଙ୍କୁ ଆକ୍ରମଣ କରିଛନ୍ତି । ଅଭିମନ୍ୟୁ ଓ କୋଶଳରାଜାଙ୍କ ମଧ୍ୟରେ ଲଢ଼େଇ ଚାଲିଛି । ଯୁଧିଷ୍ଠିର ଓ ଶଲ୍ୟଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଚାଲିଛି । ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ଆକ୍ରମଣ କରିଛନ୍ତି । ଭୂରିଶ୍ରବାଙ୍କ ବିରୁଦ୍ଧରେ ସହଦେବ ବ୍ୟୂହ ରଚନା କରିଛନ୍ତି । ଧୃଷ୍ଟକେତୁ ଓ ବହ୍ଲିକ, ଘଟୋତ୍କଚ ଓ ଅଳମ୍ବୁଷ, ଶିଖଣ୍ଡୀ ଓ ଅଶ୍ୱତ୍ଥାମା, ଦ୍ରୁପଦ ଓ ଜୟଦ୍ରଥ, ଚେତିକାନ ଓ ସୁଶର୍ମାଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଚାଲିଛି । ପ୍ରତିବିନ୍ଧ୍ୟ ଓ ଶକୁନି,ଯୁଦ୍ଧାମନ୍ୟୁ ଓ ବିକର୍ଣ୍ଣ, କୁନ୍ତିଭୋଜ ଓ ବିନ୍ଦ୍ୟ, ଯୁଦ୍ଧରେ ବ୍ୟାପୃତ ଅଛନ୍ତି । ଶହ ଶହ ସୈନ୍ୟ ହାତୀ ଘୋଡ଼ା ମରୁଛନ୍ତି । କେତେ ରଥ ଭାଙ୍ଗିରୁଜି ଖଣ୍ଡ ଖଣ୍ଡ ହୋଇ ଏଣେତେଣେ ପଡୁଛି କହିହେବ ନାହିଁ । ଭଗ୍ନ ଅସ୍ତ୍ର ସବୁ ଚତୁର୍ଦ୍ଦିଗରେ ବିଛେଇ ହୋଇ ପଡୁଛି । ରଣଭୂମିରେ ଅସରନ୍ତି କବନ୍ଧ ନାଚୁଛି । ତା' ଭିତରୁ ପିଚ୍ ପିଚ୍ ରକ୍ତ ଉପରକୁ ଉଠି ରଣଭୂମି ଭିଜାଇ ଦେଉଛି । କି ଆର୍ତ୍ତଚିତ୍କାର, କି ସିଂହ ରଡ଼ି । କେତେ ଯେ କଟାମୁଣ୍ଡ ବିକଟାଳ ତଥା ବିଭତ୍ସରୂପ ଧରି ମାଟିରେ ଗଡୁଛି ତାର ହିସାବ ନାହିଁ ।

ବୃଦ୍ଧ ଭୀଷ୍ମଙ୍କୁ ସତେ ଯେପରି ବାର୍ଦ୍ଧକ୍ୟ ସ୍ପର୍ଶ କରିନି । ଅଶାନ୍ତ ସମୁଦ୍ରର ଉତ୍ତାଳ ତରଙ୍ଗ ପରି ସେ ମାଡ଼ି ଚାଲିଛନ୍ତି । କି ଭୟଙ୍କର ମୂର୍ତ୍ତି ତାଙ୍କର । ମଦମତ୍ତ ହସ୍ତୀ ପରି ମାଡ଼ି, ମକଚି, ସେ ଆଗେଇଛନ୍ତି । କେତେ ଯେ ସୈନ୍ୟ ପାଣ୍ଡବ ମାନଙ୍କର ମରୁଛନ୍ତି, ଭାବି ହେଉନି ।

ଅର୍ଜୁନ, ଭୀଷ୍ମଙ୍କର ଅଗ୍ରଗତିକୁ ରୋକିପାରୁ ନାହାନ୍ତି । ଭୀଷ୍ମଙ୍କ ସହିତ ଯୁଦ୍ଧରତ ଥିବା ପାଞ୍ଚାଳ ଓ ଚେଦୀର ରାଜା ପଛଘୁଞ୍ଚା ଦେଲେଣି । ସେ ବିଜୁଳି ବେଗରେ ଯୁଦ୍ଧ ଭୂମିରେ ବୁଲୁଛନ୍ତି । ତାଙ୍କୁ ପାଣ୍ଡବ ପକ୍ଷ ସନ୍ଧାନ କରିବା ସବୁବେଳେ ସମ୍ଭବ ହେଉନାହିଁ । ସେ ଯୁଦ୍ଧ ଭୂମିରେ ଆତଙ୍କ ଖେଳାଇ ଦେଲେଣି । ସତେ ଅବା ମହାପ୍ରଳୟ, ବିଗ୍ରହ ମଣ୍ଡିତ ହୋଇ ତାଣ୍ଡବ ନୃତ୍ୟ ରଚନା କରିଛି ।''

ଧୃତରାଷ୍ଟ୍ର ଆନନ୍ଦରେ କହିପକାଇଲେ, ''ହେ ପିତା ! ଅଧମ ପୁତ୍ର ପ୍ରତି ଶୁଭଦୃଷ୍ଟି ପକାଅ । ତୁମକୁ ଜୟ କରିବାପାଇଁ ବିଶ୍ୱ ବ୍ରହ୍ମାଣ୍ଡରେ କୌଣସି ଶକ୍ତି ନାହିଁ ।''

''ଶୁଣନ୍ତୁ ରାଜନ୍ ! ଅର୍ଜୁନଙ୍କ ତରୁଣପୁତ୍ର ଅଭିମନ୍ୟୁ, ପ୍ରଳୟର ଅବତାର ଭୀଷ୍ମଦେବଙ୍କ ସହିତ ଯୁଦ୍ଧ କରିବାକୁ, କକ୍ଷଚ୍ୟୁତ ତାରକାପରି ଖସି ଆସିଛନ୍ତି । ଅଭୂତପୂର୍ବ ଯୁଦ୍ଧ ଚାଲିଛି । ଭୀଷ୍ମଦେବଙ୍କର ସମସ୍ତ ଅବ୍ୟର୍ଥ ବାଣକୁ ସେ ବ୍ୟର୍ଥ କରି ଦେଇଛନ୍ତି । ତାଙ୍କର ଶରମାଡ଼ରେ, ଭୀଷ୍ମଙ୍କର ରଥଧ୍ୱଜ ତଳକୁ ଖସି ପଡ଼ିଲାଣି । ହସି ଉଠୁଛନ୍ତି ଭୀଷ୍ମଦେବ । ନବୀନ ଯୋଦ୍ଧାର ଅମିତ ବିକ୍ରମ ତାଙ୍କୁ ଆନନ୍ଦ ଦେଇଛି । ସେ ପୁଣି ସିଂହ ଗର୍ଜନ କରି ତାଙ୍କୁ ଉତ୍ତେଜିତ କରୁଛନ୍ତି ସମ୍ମୁଖ ଯୁଦ୍ଧ ପାଇଁ । ଅର୍ବାଚୀନ ଓ ପୁରାତନ ମଧ୍ୟରେ ଚାଲିଥିବା ଯୁଦ୍ଧକୁ ଉପଭୋଗ କରୁଛନ୍ତି ଦେବତାମାନେ । ଆକାଶରୁ ପୁଷ୍ପବୃଷ୍ଟି ହେଉଛି । ଭୀଷ୍ମ ଦେବ ବୋଧହୁଏ ଅଭିମନ୍ୟୁଙ୍କୁ ସୁଯୋଗ ଦେବାପାଇଁ ପରିସ୍ଥିତି ସୃଷ୍ଟି କରୁଛନ୍ତି ।

ଏଇତ, ଆସିପହଞ୍ଚିଗଲେଣି ଭୀମ କଳାରଡ଼ି ତୋଳି । ସାଥିରେ ଅଛନ୍ତି ବିରାଟ ରାଜାଙ୍କ ପୁତ୍ର ଉତ୍ତର, ଦ୍ରୁପଦଙ୍କ ପୁତ୍ର, ଧୃଷ୍ଟଦ୍ୟୁମ୍ନ । ସମସ୍ତେ ନିଜର ସୈନ୍ୟ ବଳ ନେଇ ଆକ୍ରମଣ କରିଛନ୍ତି ପିତାମହଙ୍କୁ । ଶଲ୍ୟ ଓ ଉତ୍ତରଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଚାଲିଛି । ଶଲ୍ୟଙ୍କ ରଥର ଅଶ୍ୱମାନେ ଉତ୍ତରଙ୍କ ଶରମାଡ଼ରେ ପ୍ରାଣ ହରାଇଲେଣି । ଶଲ୍ୟ କ୍ଷୁବ୍ଧ ହୋଇ ତାଙ୍କ ଉପରକୁ ଭାଲା ନିକ୍ଷେପ କରିଛନ୍ତି । ତାହା ଉତ୍ତରଙ୍କର ବକ୍ଷଭେଦ କରିଛି । ଏଇତ ସେ ରଥର ତଳକୁ ଗଡ଼ି ପଡ଼ି ପ୍ରାଣ ହରାଇଲେଣି । ଶଲ୍ୟ କୃତବର୍ମାଙ୍କ ରଥରେ ବସି ପଳାଇ ଯାଉଛନ୍ତି ।

'ଶ୍ୱେତ' ଅନୁସରଣ କରୁଛନ୍ତି ଶଲ୍ୟଙ୍କୁ । ନିଜର ଭାଇ ଉତ୍ତରଙ୍କୁ ହତ୍ୟା କରିବାର ପ୍ରତିଶୋଧ ନେବାପାଇଁ ସେ ଆଗେଇ ଆସିଛନ୍ତି । ଶଲ୍ୟଙ୍କ ସୁରକ୍ଷା ପାଇଁ ତାଙ୍କୁ ନିଜର ସୈନ୍ୟମାନେ ଘେରିଗଲେଣି । ଶ୍ୱେତଙ୍କ ଉପରକୁ ତୀର ବର୍ଷଣ ହେଉଛି । ସେ ସବୁକୁ ଶ୍ୱେତ ପ୍ରତିହତ କରୁଛନ୍ତି । ସେମାନଙ୍କର ଅସ୍ତ୍ରାଘାତ ତାଙ୍କୁ ସ୍ପର୍ଶ କରିପାରୁନି । ତାଙ୍କର ରଣ କୌଶଳ ସମସ୍ତଙ୍କୁ ଅଭିଭୂତ କରିଛି । ହଜାରହଜାର କୌରବ ସୈନ୍ୟଙ୍କୁ ଶ୍ୱେତ ହତ୍ୟାକଲେଣି । ଅନେକ ରଥ ଭାଙ୍ଗିଲେଣି । କୌରବ ସୈନ୍ୟମାନେ ଛିନ୍ନ ବିଚ୍ଛିନ୍ନ ହୋଇ ପଳାଉଛନ୍ତି । ଭୀଷ୍ମଙ୍କୁ ଶ୍ୱେତ ଅଣଆୟତ୍ତ କରି ଦେଲେଣି ।''

''ଏଁ , କଣ କହୁଛ ସଂଜୟ ! ଭୀଷ୍ମଙ୍କ ପରି ମହାବଳୀଙ୍କୁ ଗୋଟାଏ ମେଞ୍ଚଡ଼ ଟୋକା ଅଣଆୟତ୍ତ କରି ଦେଲାଣି । ତୁମେଠିକ୍ ଭାବରେ ଦେଖିକରି କହୁଛ ତ ?''

''ହଁ, ରାଜନ୍ ! ସେଥିରେ ତିଳେ ମାତ୍ର ବ୍ୟତିକ୍ରମ ନାହିଁ । ଯାହା ଦେଖୁଛି ଠିକ୍ ସେଇଆ କହୁଛି । କୌରବ ଶିବିରରେ ଚହଳ ପଡ଼ିଗଲାଣି । ଶ୍ୱେତ, ଲକ୍ଷ୍ୟକରି ଗୋଟାଏ ବିରାଟଗଦାରେ ଭୀଷ୍ମଙ୍କ ରଥକୁ ପ୍ରହାର କରୁଛନ୍ତି । ଭୀଷ୍ମଦେବ ରଥରୁ ଡେଇଁ ପଡ଼ି, ଶ୍ୱେତଙ୍କୁ ଲକ୍ଷ୍ୟକରି ବର୍ତ୍ତମାନ ଏକ ପ୍ରାଣଘାତୀ ତୀର ଛାଡ଼ିଛନ୍ତି । ଏଇତ, ସେ ତୀର ଶ୍ୱେତଙ୍କ ଶିରଚ୍ଛେଦନ କରି ଭୂଲୁଣ୍ଠିତ କରିଦେଲା । କୌରବ ଶିବିରରେ ଆନନ୍ଦ କୋଳାହଳ । ଦୁଃଶାସନ ଆନନ୍ଦରେ ନାଚିନାଚି ଶଙ୍ଖ ବଜାଉଛନ୍ତି ।''

''ବାଃ...ବାଃ.. 'ଶ୍ୱେତ'ର ମୃତ୍ୟୁ ହୋଇଛି । ଏବେ ଭୀଷ୍ମ କଣ କରୁଛନ୍ତି ସଂଜୟ ?''

''ଭୀଷ୍ମଦେବ ଗୋଟାଏ ନୂଆ ରଥରେ ଚଢ଼ି ପୁଣି ପାଣ୍ଡବମାନଙ୍କ ଉପରକୁ ଝାମ୍ପ ଦେଲେଣି । ସତେଯେପରି ମହାକାଳ ନାଚି ନାଚି ଯାଉଛି । ପାଣ୍ଡବପକ୍ଷ ବ୍ୟତିବ୍ୟସ୍ତ ହୋଇଗଲେଣି । ସୂର୍ଯ୍ୟଦେବଙ୍କୁ ପ୍ରାର୍ଥନା କରୁଛନ୍ତି  ମନେ ମନେ । ସେ ଶୀଘ୍ର ଅସ୍ତାଚଳଗାମୀ ହେଲେ ସେମାନଙ୍କ ଦୁଃଖ ଦୁର୍ଦ୍ଦଶାର ଅବସାନ ହେବ ।''

ଯୁଦ୍ଧ ଚାଲିଛି, ସମସ୍ତେ ରଣକ୍ଳାନ୍ତ । ପଶ୍ଚିମ ଆକାଶ ଉପରେ ସବୁରି ଦୃଷ୍ଟି । ହଁ, ସୂର୍ଯ୍ୟାସ୍ତ ହେଲା । ଭୀଷ୍ମଦେବ ଶଙ୍ଖବାଦନ କରି ଯୁଦ୍ଧ ବିରତି ଘୋଷଣା କଲେ । ପ୍ରଥମ ଦିନର ଯୁଦ୍ଧ ସମାପ୍ତ ହେଲା । ଆଜିର ଯୁଦ୍ଧରେ ପାଣ୍ଡବ ମାନଙ୍କର କ୍ଷତି ସର୍ବାଧିକ । ଅମାପ ଆନନ୍ଦର ଉରାନଈରେ ପହଁରୁଛନ୍ତି ଦୁର୍ଯ୍ୟୋଧନ । ଧର୍ମପୁତ୍ର ବିଷାଦ ଗ୍ରସ୍ତ ।''

ସଂଧ୍ୟା ହେଲା

ଯୁଧିଷ୍ଠିର ଭାଇମାନଙ୍କ ଗହଣରେ ଶ୍ରୀକୃଷ୍ଣଙ୍କ ପାଖକୁ ଯାଇ କହିଲେ, ''ହେ ମଧୁସୂଦନ ଆଜି ଯୁଦ୍ଧରେ, ଭୀଷ୍ମଦେବଙ୍କ ସୈନ୍ୟମେଧ ଯଜ୍ଞରେ ପାଣ୍ଡବ ସୈନ୍ୟମାନେ ବଳିପଶୁପରି ବଳି ପଡ଼ିଛନ୍ତି । ତାଙ୍କୁ ଜୟକରିବା ସ୍ୱପ୍ନର ବାହାରେ । ମୁଁ ମୋ ଉପରୁ ଆସ୍ଥା ହରାଇଛି । ଯୁଦ୍ଧ ବନ୍ଦ କରି ଦେଇ ମୁଁ ବଣକୁ ଚାଲି ଯିବାକୁ ଚାହେଁ ।''

''ଶ୍ରୀକୃଷ୍ଣ କହିଲେ, ''ଧର୍ମପୁତ୍ର ! ଏତେବ୍ୟସ୍ତ କାହିଁକି ? ଆଜି ଧୈର୍ଯ୍ୟ ପରୀକ୍ଷାର ଦିନ । ଅଧୀର ହୁଅନି । ତୁମ ପଛରେ ଅଛନ୍ତି ତୁମର ମହାଯୋଦ୍ଧା ଭାଇମାନେ । ମହାବୀର ସାତ୍ୟକୀ, ଧୃଷ୍ଟଦ୍ୟୁମ୍ନ, ଦୁର୍ଦ୍ଧର୍ଷବୀର ବିରାଟ, ଦ୍ରୁପଦ-ସମସ୍ତେ ମହାଶକ୍ତିର ଗୋଟାଏ ଗୋଟାଏ ଦୁର୍ଗ । ମୁଁ ମଧ୍ୟ ତୁମ ଗହଣରେ ଅଛି । ତୁମର ଧର୍ମବଳ ତୁମ ପଛରେ ଅଛି । ବ୍ୟସ୍ତ ହୁଅନା । ପ୍ରଥମଦିନ ପ୍ରସ୍ତୁତିରଦିନ, କାଲିଠାରୁ ପ୍ରୟୋଗ ପର୍ବ  ଆରମ୍ଭ ହେବ । ସମସ୍ତେ ନିଜର କାଳରୂପ ଦେଖାଇବେ । ମୋ ଆଖି ଆଗରେ ବିଜୟବାନା ଉଡୁଛି । ଯାଅ ମହା ଆନନ୍ଦରେ ନିଦ୍ରାଦେବୀଙ୍କ କୋଳରେ ବିଶ୍ରାମ ନିଅ ।''

# ।। ଦ୍ୱିତୀୟ ଦିନ ଯୁଦ୍ଧ ।।

ପ୍ରଥମ ଦିନର ବିଫଳତା ପରେ ଆଜି ପାଣ୍ଡବ ସୈନ୍ୟଗଣ ସଜାଗ ଓ ସତର୍କ । ସେନାପତି ଧୃଷ୍ଟଦ୍ୟୁମ୍ନ ନୂତନ ସାମରିକ କୌଶଳ ଅବଲମ୍ବନ କରିଛନ୍ତି । ଗଭୀର ନିଷ୍ଠା ଓ ବିଚାର ଉପରେ ସୈନ୍ୟମାନଙ୍କୁ ସଜାଯାଇଛି । ସେମାନେ 'ବଗବ୍ୟୂହ'' ରଚନା କରିଛନ୍ତି । ଅର୍ଜୁନ ଅଛନ୍ତି ବଗର ଚଞ୍ଚୁ ପାଖରେ । କୁନ୍ତିଭୋଜ ଓ ଶୈବ୍ୟ, ତାହାର ଆଖି ସ୍ଥାନରେ ଅଛନ୍ତି ।

ପଞ୍ଚାଳ ରାଜା ଦ୍ରୁପଦ ନିଜର ସୈନ୍ୟମାନଙ୍କୁ ନେଇ ପକ୍ଷୀ ଡେଣାର, ପରପର୍ଦା ପାଖରେ ଅଛନ୍ତି ଦଶାର୍ଣ୍ଣ ରାଜା ଓ କିରାତ ଅଛନ୍ତି ଗଳା ପାଖରେ । ଭୀମ ସେନ ଓ ଧୃଷ୍ଟଦ୍ୟୁମ୍ନ ଏ ପାଖ ସେପାଖ ଦୁଇଟି ଡେଣାର ପ୍ରତିନିଧି । ଶରୀରର ମଧ୍ୟ ଅଂଶରେ ଅଛନ୍ତି ନକୁଳ, ସହଦେବ, ରାଜା ବିରାଟ, କାଶୀର ରାଜା ଏବଂ ଘଟୋତ୍କଚ । ଯୁଧିଷ୍ଠିର ଓ ଅନ୍ୟମାନେ ପଶ୍ଚାତ ଭାଗରେ ପାଦ ପର୍ଯ୍ୟନ୍ତ ଲମ୍ବିଛନ୍ତି । ଏହି ମନ୍ତ୍ରପୂତ ବଗବ୍ୟୂହ କୌରବ ସେନାର ସମ୍ମୁଖୀନ ହେବ ।

ପୂର୍ବଦିନର ସଫଳତାନେଇ ଦୁର୍ଯ୍ୟୋଧନ ଆଜି ଆଶାତୀତ ଭାବରେ ଆଶାୟୀ । ସେ ସମ୍ମାନିତ ସୈନ୍ୟମାନଙ୍କୁ ସମ୍ମୋହିତ କଣ୍ଠରେ କହିଲେ, ''ବୀରଗଣ ! ଆମେ ନିଶ୍ଚିତ ଭାବରେ ବିଜୟ ଶ୍ରୀ ଲାଭ କରିବା । ଆଶା ଓ ବିଶ୍ୱାସ ନେଇ ଆଗେଇ ଚାଲ । ରକ୍ତରଙ୍ଗ କୌରବ ସୈନ୍ୟମାନଙ୍କୁ ରଣଭୂମି ସମ୍ଭାଷଣ ଜଣାଉଛି । ପାଣ୍ଡବ ସୈନ୍ୟମାନଙ୍କ ରକ୍ତରେ ଆମେ ହୋରି ଖେଳିବା'' ।

ଭୀଷ୍ମଦେବ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମାଙ୍କୁ ଲକ୍ଷ୍ୟ କରି କହିଲେ, ପାଣ୍ଡବ ସୈନ୍ୟମାନଙ୍କୁ ସଂହାର କରିବା ପାଇଁ ଆପଣଙ୍କ ପରି ଜଣେ ଜଣେ ମହାନ୍ ଯୋଦ୍ଧା ଯଥେଷ୍ଟ । ଆମର ସୌଭାଗ୍ୟଯେ, ଆମପାଖରେ ସମସ୍ତ ମହାଶକ୍ତି ସମ୍ମିଳିତ ହୋଇଛି । କାଲି ପାଣ୍ଡବମାନଙ୍କର ନୈତିକବଳ ଭାଙ୍ଗିଯାଇଛି । ପ୍ରଳୟ ଯଜ୍ଞରେ ଆଜି ସେମାନଙ୍କୁ ପୂର୍ଣ୍ଣାହୁତି ପକାନ୍ତୁ ।

ପାଣ୍ଡବମାନଙ୍କ ସୈନ୍ୟ ସଜ୍ଜା ଦେଖି ଭୀଷ୍ମ, କୌରବସେନ୍ୟିମାନଙ୍କୁ ଚାରି ଭାଗରେ ବିଭକ୍ତ କଲେ । ବଗବ୍ୟୂହର ଶୀର୍ଷ, ପଶ୍ଚାଦ୍ ମଧ୍ୟ, ଓ ନିମ୍ନ ଭାଗରେ ଆକ୍ରମଣ କରାଯିବ । ଉପର ଭାଗ ପାଇଁ ଦୁଃଶାସନ, ବିକ୍ରମ, ବିନ୍ଦ୍ୟ, ଅନୁବିନ୍ଦ୍ୟ ଓ ସୁରସେନଙ୍କ ସହିତ ସୈନ୍ୟମାନେରହିଲେ । ନିମ୍ନ ଭାଗକୁ ଜଗି ରହିଲେ ଦ୍ରୋଣାଚାର୍ଯ୍ୟ ଓ ବିଦର୍ଭ, ଗାନ୍ଧାର, ସିନ୍ଧୁ ପ୍ରଭୃତିର ସୈନ୍ୟମାନେ । କେନ୍ଦ୍ର ସ୍ଥଳରେ ଅଛନ୍ତି ଭୀଷ୍ମ ଓ ଅନ୍ୟାନ୍ୟ ସୈନ୍ୟମାନେ କୃତବର୍ମା, ଶଲ୍ୟ, ଦୁର୍ଯ୍ୟୋଧନ ଓ ତାଙ୍କର ଅନ୍ୟ ଭାଇମାନେ ପଶ୍ଚାଦ୍ଭାଗକୁ ଜଗିଛନ୍ତି ।

ଶଙ୍ଖବାଜି ଉଠିଲା ।

ଯୁଦ୍ଧ ଆରମ୍ଭ ହେଲା । ସଞ୍ଜୟ ତାଙ୍କର ପ୍ରତ୍ୟକ୍ଷ୍ୟ ଧାରାବିବରଣୀ ଆରମ୍ଭ କଲେ ।

ହେ ରାଜନ୍ ! ''ଭୀଷ୍ମ କାଳ ବୈଶାଖୀ ପରି ମାଡ଼ି ଆସୁଛନ୍ତି ପାଣ୍ଡବମାନଙ୍କ ଆଡ଼କୁ । ଏଇତ, ପାଣ୍ଡବମାନଙ୍କ ସୈନ୍ୟ ପଂକ୍ତି ଅତିକ୍ରମ କରିଗଲେ । ସେମାନେ ପ୍ରତିରୋଧ କରି ପାରୁନାହାନ୍ତି । ଅର୍ଜୁନ ତାଙ୍କର ସାରଥି ଶ୍ରୀକୃଷ୍ଣଙ୍କୁ କହୁଛନ୍ତି ,'ଆଉ ରକ୍ଷା ନାହିଁ, ଯୁଦ୍ଧ ଆରମ୍ଭରୁ ଏତେ ବିପର୍ଯ୍ୟୟ ।ଏପରି ଆଉକିଛି ସମୟ ଚାଲିଲେ ପାଣ୍ଡବ ସୈନ୍ୟ ନିର୍ମୂଳ ହୋଇଯିବେ ।''

''ହୁଅନ୍ତୁ, ହୁଅନ୍ତ ଭୀଷ୍ମଦେବଙ୍କର ଜୟ ହେଉ । ହଁ, ତାପରେ କଣ ହେଲା ସଂଜୟ ? କୁହ.. କୁହ... ବେଶ୍ ଉପଭୋଗ୍ୟ । '' ଆନନ୍ଦରେ କହିଲେ ରାଜା ଧୃତରାଷ୍ଟ୍ର । ଭୀଷ୍ମଙ୍କ ଆଡ଼କୁ ରଥ ଚଳାଇ ନେବାପାଇଁ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ ।

ପାର୍ଥଙ୍କ ରଥ ବିଦ୍ୟୁତ୍ ବେଗରେ ସେଇ ଆଡ଼କୁ ମୁହାଁଇଛି । ହଁ, ଭୀଷ୍ମ ଓ ଅର୍ଜୁନ ମୁହାଁ ମୁହିଁ ହୋଇଗଲେଣି । ଯୁଦ୍ଧ ଆରମ୍ଭ ହୋଇଗଲା । ଅର୍ଜୁନ ଶରନିକ୍ଷେପ କରି ପିତାମହଙ୍କୁ ସାମରିକ ଅଭିବାଦନ ଜଣାଇଲେ । ଭୀଷ୍ମଦେବଙ୍କ ପାଦପାଖରେ ଶର, ଭୂମି ଲଗ୍ନହୋଇ ପ୍ରଣାମ ଜଣାଉଛି । ଏହାର ଉତ୍ତରରେ ପିତାମହ ଏପରି ଭାବରେ ଶରନିକ୍ଷେପ କଲେ ଯେ, ଶର ଆକାଶ ମାର୍ଗରୁ ଧୀରେ ଧୀରେ ଓହ୍ଲାଇ ଅର୍ଜୁନଙ୍କ ମସ୍ତକ ଉପରେ ଆଶୀର୍ବାଦ ମୁଦ୍ରାରେ କିଛି ସମୟ ରହି ତଳେ ପଡ଼ିଗଲା । ଅର୍ଜୁନ ଆନନ୍ଦରେ ବିହ୍ୱଳ ।'

ଧୃତରାଷ୍ଟ୍ରଙ୍କ ମୁଖ ମଳିନ ଦେଖାଗଲା । ସେ ସଂଜୟଙ୍କୁ ଉଦାସ କଣ୍ଠରେ କହିଲେ, ଆଚ୍ଛା କୁହ, ତାପରେ କଣ ହେଲା ?

''ଉଭୟ ପକ୍ଷର ଶର ବର୍ଷଣରେ ଆକାଶ ଅନ୍ଧକାର ଦେଖାଯାଉଛି । ଏତେ କ୍ଷିପ୍ର ଗତିରେ ରଥଚାଳନା  ହେଉଛି ଯେ ଭୀଷ୍ମ ଓ ଅର୍ଜୁନଙ୍କ ରଥକୁ ଚିହ୍ନି ହେଉନି । ସେମାନଙ୍କ ରଥ ପତାକା ଶର ଭିତରେ ଲୁଚିଯାଇଛି ।

ଦୁର୍ଯ୍ୟୋଧନ ଭୀଷ୍ମଙ୍କ ସୁରକ୍ଷାପାଇଁ ସୈନ୍ୟବଳ ପଠାଇଲେଣି । ଦ୍ରୋଣ, କୃପ, ବିକର୍ଣ୍ଣ, ଶଲ୍ୟ ପ୍ରଭୃତି ଆସିଗଲେଣି । ଅର୍ଜୁନଙ୍କ ଉପରେ ମିଳିତ ଆକ୍ରମଣ ଆରମ୍ଭ ହୋଇଗଲାଣି । ଅର୍ଜୁନ ଦୃଢ଼ଭାବରେ ତାର ପ୍ରତିରୋଧ କରୁଛନ୍ତି । ଭୀଷ୍ମ, ଦ୍ରୋଣ କୃପ, ବିକର୍ଣ୍ଣ , ଶଲ୍ୟ ସମସ୍ତେ ଅର୍ଜୁନଙ୍କ ଶରାଘାତରେ ଅସ୍ଥିର ।

ଧନଞ୍ଜୟଙ୍କୁ ସାହାଯ୍ୟ କରିବାପାଇଁ ଅଭିମନ୍ୟୁ, ଦ୍ରୌପଦୀଙ୍କ ପାଞ୍ଚପୁଅ ଓ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ଆସି ପହଞ୍ଚିଗଲେଣି । ଘମାଘୋଟ ଲଢ଼େଇ ଚାଲିଛି । ଉଭୟ ପକ୍ଷର ହଜାରହଜାର ସୈନ୍ୟ ମଲେଣି । ଯୁଦ୍ଧ ଭୂମିରେ ରକ୍ତନଦୀ ଛୁଟିଛି । କେହି କାହାଠାରୁ ଊଣା ନୁହଁନ୍ତି ।

ଭୀଷଣ ଲଢ଼େଇ ଭିତରେ ଦୁର୍ଯ୍ୟୋଧନ ମୁହାଁଇଛନ୍ତି ପିତାମହଙ୍କ ଆଡ଼କୁ । ସେ କହୁଛନ୍ତି, 'ପିତାମହ ! ଅର୍ଜୁନ ଆଜି ଆମ ସୈନ୍ୟମାନଙ୍କ ଭିତରେ ଆତଙ୍କ ଖେଳାଇ ଦେଲେଣି । ଏ ପ୍ରକାର ପରିସ୍ଥିତି ସୃଷ୍ଟି ହେବବୋଲି ମୁଁ ଆଶା କରିନଥିଲି । ଭାବିଥିଲି, ଆପଣଙ୍କ ଉପସ୍ଥିତିରେ ସେ ପାଦେ ମଧ୍ୟ ଆଗକୁ ଆଗେଇ ପାରିବେ ନାହିଁ । କର୍ଣ୍ଣତ ପାଖରେ ନାହାନ୍ତି । ତାଙ୍କର ଭବିଷ୍ୟତବାଣୀ କ'ଣ ସତ ହେବ ?' ଭୀଷ୍ମଦେବ ଅତ୍ୟନ୍ତ ମର୍ମାହତ ।''

''ମୁଁ ଜାଣେ ଜାଣେ ସଂଜୟ ! ଦୁର୍ଯ୍ୟୋଧନର ଦୁର୍ବୁଦ୍ଧି ହିଁ ତାର କାଳ । ଯୁଦ୍ଧ ଭୂମିରେ ଭୀଷ୍ମଦେବଙ୍କ ମନରେ ଆଘାତ ଦେଲା କାହିଁକି ? ତାର କ'ଣ ଏତିକି ସାଧାରଣ ଜ୍ଞାନ ନାହିଁ । ପରିସ୍ଥିତି ପରିପକ୍ୱ ହେବାକୁ ଯାଉଥିବା ସମୟରେ, ସେ ସବୁ ପଣ୍ଡ କରି ଦେଉଛି ! ହଁ, ତା'ପରେ କଣ  ହେଲା ?''

'ପିତାମହ ଆଉରି ଉତ୍ୟକ୍ତ ହୋଇ ଉଠିଛନ୍ତି । ତାଙ୍କର ଶର ଅର୍ଜୁନଙ୍କୁ ବିଦ୍ଧ କରିଛି । ଅର୍ଜୁନ ଅଗ୍ନିବାଣ ଛାଡ଼ିଛନ୍ତି । ପିତାମହ ବରୁଣାସ୍ତ୍ର ଛାଡ଼ି ତାକୁ ଶାନ୍ତ କରି ଦେଇଛନ୍ତି । ଦେବତାମାନେ ଆକାଶ ମାର୍ଗରୁ ପୃଥିବୀର ଦୁଇ ସର୍ବଶ୍ରେଷ୍ଠ ବୀରଙ୍କର ଯୁଦ୍ଧ କୌଶଳ ଦେଖୁଛନ୍ତି । ଅସ୍ତ୍ରପତିଯୋଗିତା ଚାଲିଛି

ଉଭୟ ପକ୍ଷରୁ । କେତେ ଭାଙ୍ଗୁଛି, କେତେ ଅକାମି ହୋଇ ଯାଉଛି, ଆଉ କେତେ ଅସ୍ତ୍ର ଆସି ଲକ୍ଷ୍ୟଭେଦ କରୁଛି । ଏଇତ, ଭୀଷ୍ମଦେବଙ୍କ ଅସ୍ତ୍ର ଆସି ଶ୍ରୀକୃଷ୍ଣଙ୍କ ବକ୍ଷ, ରୁଧିରାକ୍ତ କଲାଣି । ତଥାପି କୃଷ୍ଣ ଅବିଚଳିତ । ଅର୍ଜୁନ ମଧ୍ୟ ଶରବିଦ୍ଧ । ସେ ଅତୀବ ଭୟଙ୍କର ହୋଇ ଉଠିଲେଣି । ତାଙ୍କର ସଖା ଶରବିଦ୍ଧ -ଏ ଦୃଶ୍ୟ ସେ ସହ୍ୟ କରିପାରୁ ନାହାନ୍ତି । ପିତାମହଙ୍କ ଉପରକୁ ପ୍ରାଣଘାତୀ ତୀର ଛାଡ଼ିଛନ୍ତି । ଘନ ଘୋର ଯୁଦ୍ଧ ଘନେଇଛି । ଆଖି କ୍ଲାନ୍ତ ହୋଇ ଉଠିଲାଣି ।

'କୁରୁକ୍ଷେତ୍ରର ଅନ୍ୟ ଏକ ଦିଗରେ ଧୃଷ୍ଟଦ୍ୟୁମ୍ନ ଏବଂ ଦ୍ରୋଣାଚାର୍ଯ୍ୟଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଚାଲିଛି । ଦୁଇଟା ମତ୍ତହସ୍ତୀ ସତେଯେପରି ଲଢ଼େଇ କରୁଛନ୍ତି । ଧୃଷ୍ଟଦ୍ୟୁମ୍ନଙ୍କ ଅସ୍ତ୍ର ଅନେକ ଅକାମି ଓ ନଷ୍ଟ ହୋଇଗଲାଣି । ତଥାପି ସେ ବିଚଳିତ ନୁହନ୍ତି । ଦ୍ରୋଣାଚାର୍ଯ୍ୟ ଶରାଘାତରେ ବ୍ୟତିବ୍ୟସ୍ତ ହୋଇ ଉଠିଲେଣି । ତାଙ୍କ ରଥଧ୍ୱଜ ଭୂତଳଶାୟୀ ହେଲାଣି ।' ଦ୍ରୋଣ, ଧୃଷ୍ଟଦ୍ୟୁମ୍ନଙ୍କ ସାରଥି ଓ ଅଶ୍ୱମାନଙ୍କୁ ମାରି ଦେଲେଣି ।

''ଏଁ... ମାରିଦେଲେଣି ?? ଆଚ୍ଛା... ଆଚ୍ଛା...କୁହ ସଂଜୟ ।'' କହିଲେ କୁରୁରାଜ ।

ହଁ ମାରିଦେଲେଣି । ସେ ରଥରୁ ଓହ୍ଲାଇ ଗୋଟିଏ ବିରାଟ ଗଦାଧରି ଦଉଡ଼ୁଛନ୍ତି ଦ୍ରୋଣଙ୍କୁ ପ୍ରହାର କରିବେ ବୋଲି । ଦ୍ରୋଣ ଅସ୍ତ୍ର ଚାଳନା କରି ସେ ଗଦାକୁ ଖଣ୍ଡ ଖଣ୍ଡ କେରିଦେଲେ । ଭୀମ ଧୃଷ୍ଟଦ୍ୟୁମ୍ନଙ୍କୁ ନିଜରଥକୁ ନେଇଗଲେଣି ।

''ବାଃ....ବାଃ.... ବାଃ.... । ତେବେ ଦ୍ରୋଣାଚାର୍ଯ୍ୟ କ'ଣ ଏକା.....?''

'ନା...ନା....ଭୀଷ୍ମଦେବ ଦ୍ରୋଣଙ୍କୁ ରକ୍ଷାକରିବାପାଇଁ ମାଡ଼ି ଆସିଲେଣି । କଳିଙ୍ଗ ସୈନ୍ୟମାନେ ଭୀମ ଓ ଧୃଷ୍ଟଦ୍ୟୁମ୍ନଙ୍କୁ ଅବରୋଧ କରୁଛନ୍ତି । ସାତ୍ୟକୀ ଭୀଷ୍ମଙ୍କୁ ଆକ୍ରମଣ କରୁଛନ୍ତି । ତାଙ୍କର ସାରଥିଙ୍କୁ ମାରି ଦେଲେଣି । ଘୋଡ଼ାମାନେ ରଥାରୂଢ଼ ଭୀଷ୍ମଙ୍କୁ ନେଇ ପଳାଉଛନ୍ତି । ଅର୍ଜୁନ, ଏ ସୁଯୋଗରେ ଅସୁମାର କୌରବ ସୈନ୍ୟକୁ ହତ୍ୟାକଲେ ।

ଏଇତ ଭୀଷ୍ମ ପୁଣି ଫେରି ଆସିଲେଣି ଆଉ ଗୋଟିଏ ନୂଆ ରଥରେ । କୌରବ ପକ୍ଷର ଆକ୍ରମଣରେ ଭୀମଙ୍କର ରଥଭାଙ୍ଗି ପଡ଼ିଲା । ଘୋଡ଼ାମାନେ ଇତଃସ୍ତତଃ ହୋଇ ପଳାଇଲେଣି । ଭୀମ ବୀର ଦର୍ପରେ ଆଗେଇଛନ୍ତି । କାନ୍ଧରେ ଗଦା । ଗଦା ପ୍ରହାରରେ କୌରବ ପକ୍ଷର ଭାନୁମନ୍ତ ମୃତ୍ୟୁ ବରଣ କଲେ ।

ଧୃଷ୍ଟଦ୍ୟୁମ୍ନ ଆଖିପିଛୁଳାକେ ଆସି ଭୀମଙ୍କୁ ତାଙ୍କ ରଥରେ ବସାଇ ନେଇଗଲେ । କୌରବ ସୈନ୍ୟମାନଙ୍କର ମନୋବଳ ଭାଜିଗଲା । ପାଣ୍ଡବମାନେ ପ୍ରଥମଦିନ ଯେଉଁ ଦଶା ଭୋଗିଥିଲେ, ଆଜି ସେଇ ଦଶା ଭୋଗିଛନ୍ତି କୌରବମାନେ । ଅର୍ଜୁନ କୌରବ ମାନଙ୍କର ଏପରି କ୍ଷତି କରିଛନ୍ତି ଯାହା ଭରଣା ହୋଇ ପାରିବ ନାହିଁ । ସାତ୍ୟକୀଙ୍କର ସଫଳତା ମଧ୍ୟ କମ୍ ନୁହେଁ । ଭୀମଙ୍କର ଭୀମତ୍ୱ ପାଣ୍ଡବମାନଙ୍କର ଗର୍ବ ଓ ଗୌରବରେ ଆଜି ପରିଣତ ହୋଇଛି ।

ଭୀଷ୍ମଦେବ ଶଙ୍ଖନାଦ କରି ଯୁଦ୍ଧ ବିରତି ଘୋଷଣା କଲେ । ସୂର୍ଯ୍ୟଦେବ ଅସ୍ତ ଶିଖରକୁ ସ୍ପର୍ଶ କରୁଛନ୍ତି ।'' କୁରୁରାଜ ମ୍ଳାନ ଗମ୍ଭୀର ।

# ॥ ତୃତୀୟ ଦିନ ଯୁଦ୍ଧ ॥

ତୃତୀୟ ଦିନ ପ୍ରତ୍ୟୁଷରୁ ଭୀଷ୍ମ ତାଙ୍କର ସୈନ୍ୟମାନଙ୍କୁ ନେଇ ଯୁଦ୍ଧ ଭୂମିରେ ପହଞ୍ଚିଲେ ବହୁ ଆଲୋଚନା ପରେ ଠିକ୍ କରାଗଲା ସେମାନେ ''ବାଜବ୍ୟୂହ'' ରଚନା କରିବେ । ତାହା ଅଧିକ ଫଳପ୍ରଦ ହେବ । ଆଜି ଯୁଦ୍ଧରେ ସେମାନେ ନିଶ୍ଚିତ ଭାବରେ ସଫଳତା ହାସଲ କରିବେ । ଏ ଆତ୍ମବିଶ୍ୱାସ ନେଇ ସେ ସୈନ୍ୟମାନଙ୍କୁ ସଜାଇଲେ ବ୍ୟୂହରଚନା କରି ।

ପାଣ୍ଡବମାନେ ବାଜବ୍ୟୂହକୁ ଭେଦ କରିବାପାଇଁ 'ଅର୍ଦ୍ଧଚନ୍ଦ୍ରବ୍ୟୂହ' ରଚନା କଲେ । ଭୀମ, ଅର୍ଜ୍ଜୁନ, ଦୁଇ ପ୍ରାନ୍ତ ଭାଗକୁ ଜଗି ରହିଲେ । ମଧ୍ୟ ଭାଗରେ ରହିଲେ ଅନ୍ୟମାନେ । ସେମାନଙ୍କର ମଧ୍ୟରେ ଯୁଧିଷ୍ଠିର ନକୁଳ, ସହିଦେବ, ସାତ୍ୟକି, ଅଭିମନ୍ୟୁ ପ୍ରଭୃତି ଭାରସାମ୍ୟ ରକ୍ଷା କରି ସ୍ଥାନ ବାଛି ନେଲେ ।

ଭୀଷ୍ମଦେବ ବାଜବ୍ୟୂହର ନାସାଗ୍ରରେ ରହିଲେ । ଦ୍ରୋଣାଚାର୍ଯ୍ୟ ଓ କୃତବର୍ମା ତାର ଦୁଇଟି ଆଖି । କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା ଏହାର ଶିରଭାଗରେ ରହିଲେ । ତ୍ରିଗର୍ତ୍ତ, ଭୂରିଶ୍ରବା, ଶଲ୍ୟ, ଏବଂ ଭଗଦତ୍ତ ଏହାର ଗଳା ଭାଗରେ ରହିଲେ । ଜୟଦ୍ରଥ, ବିନ୍ଦ, ଅନୁବିନ୍ଦ, ସୁରଶେଣ, ଏବଂ କୌରବ ପୁତ୍ରଗଣ ରହିଲେ ଲାଞ୍ଜ ପାଖରେ । କଳିଙ୍ଗ ରଜା ଓ ତାଙ୍କ ସୈନ୍ୟମାନେ ବାଜ ବ୍ୟୂହର ଡାହାଣ ପକ୍ଷ ଓ କୋଶଳ ରାଜ ବାମ ପକ୍ଷ ପ୍ରସ୍ତୁତ କଲେ । ଏଥର ସୈନ୍ୟ ସଜ୍ଜା, ଠିକ୍ ଗୋଟିଏ ବାଜପକ୍ଷୀପରି ଜଣାଗଲା ।

ଧୃତରାଷ୍ଟ୍ର ସଂଜୟଙ୍କୁ କହିଲେ, ''ଏପର୍ଯ୍ୟନ୍ତ କଣ ଯୁଦ୍ଧ ଆରମ୍ଭ ହୋଇନି ?

ସଂଜୟ ଯୁଦ୍ଧର ଧାରାବିବରଣୀ ଧୃତରାଷ୍ଟ୍ରଙ୍କୁ ଶୁଣାଇବା ଆରମ୍ଭ କଲେ,

''ହେ ରାଜନ ! ଯୁଦ୍ଧ ଆରମ୍ଭ ହୋଇଗଲାଣି । ଭୟଙ୍କର ଯୁଦ୍ଧ । ଆକାଶ ତୀର ଭାରରେ ଆବୃତ । ଧୂଳିପଟଳ ତାହାକୁ ଆଚ୍ଛାଦିତ କରିଛି । ତାରିଭିତରେ ସୂର୍ଯ୍ୟ ଲୁଚିଗଲେଣି । ରକ୍ତ ସ୍ରୋତରେ ଭୂମି ଭିଜି ଯିବାପରେ ଧୂଳି ଉଠିବା ବନ୍ଦ ହୋଇ ଆସୁଛି । ରଣପ୍ରାନ୍ତର କର୍ଦ୍ଦମାକ୍ତ ହେବାକୁ ବସିଲାଣି ।

ଅର୍ଜ୍ଜୁନ ଭୟଙ୍କର ହୋଇ ଉଠିଛନ୍ତି । କୌରବ ସୈନ୍ୟମାନେ ପୋକମାଛି ପରି ଟିକି ପଡୁଛନ୍ତି । ତଥାପି ତାଙ୍କ ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ଅର୍ଜ୍ଜୁନଙ୍କ ଚାରିପାଖରେ କୌରବ ମାନଙ୍କର ଘନ ସୈନ୍ୟ ସମାବେଶ ଚାଲିଛି । ଦୁର୍ଯୋଧନ ଏହାର ନେତୃତ୍ୱ ନେଇଛନ୍ତି ।

ଗୋଟିଏ ପାଖରେ ଭୀଷ୍ମ, ଦ୍ରୋଣ, ସୈନ୍ଧବ ଓ ସୁବଳ, ପାଣ୍ଡବ ସୈନ୍ୟ ମାନଙ୍କୁ ଆକ୍ରମଣ କରୁଛନ୍ତି । ଭୀମ, ସାତ୍ୟକି, ଘଟୋତ୍କଚ ଓ ଅନ୍ୟାନ୍ୟ ସୈନ୍ୟଗଣ ସେମାନଙ୍କୁ ପ୍ରତିରୋଧ କରୁଛନ୍ତି । ଉଭୟ ପକ୍ଷର ସଂଘର୍ଷ ଅତୀବ ଭୟାବହ । ଭୀଷ୍ମ ଏବଂ ଦ୍ରୋଣ ଶରଚାଳନା କରୁଛନ୍ତି ଧର୍ମରାଜଙ୍କ ଉପରକୁ । ଅର୍ଜ୍ଜୁନ ତୀର ବେଗରେ ଛୁଟିଛନ୍ତି ତାଙ୍କୁ ରକ୍ଷା କରିବାପାଇଁ । ପହଞ୍ଚିଗଲେଣି ମଧ୍ୟମ ପାଣ୍ଡବ । ଧର୍ମପୁତ୍ର ବର୍ତ୍ତମାନ ନିରାପଦ । କୌରବ ସୈନ୍ୟମାନଙ୍କର ଅଗ୍ରଗତି ଧିମେଇ ଗଲାଣି । ଭୀମ ଏବଂ ତାଙ୍କ ରାକ୍ଷସ ପୁତ୍ର ଘଟୋତ୍କଚ, ଦୁର୍ଯ୍ୟୋଧନଙ୍କ ସୈନ୍ୟମାନଙ୍କ ଉପରେ ଆକ୍ରମଣ ଆରମ୍ଭ କରିଛନ୍ତି । ଦୁହିଙ୍କ ଗଦା ପ୍ରହାରରେ ପ୍ରତିପକ୍ଷ ଅତିଷ୍ଠ ହୋଇ ଉଠିଲେଣି । ଭୀମଙ୍କୁ ଟପି ଗଲେଣି ତାଙ୍କ ପୁଅ

ଗଦାଯୁଦ୍ଧରେ । ଅଭିମନ୍ୟୁ ଏବଂ ସାତ୍ୟକି ଗାନ୍ଧାର ସୈନ୍ୟମାନଙ୍କ ସହିତ ଲଢ଼େଇ କରୁଛନ୍ତି । ଭୀଷଣ ଲଢ଼େଇ ଚାଲିଛି ।

ଏଇତ, ଦୁର୍ଯ୍ୟୋଧନ ଓ ଭୀମଙ୍କ ମଧ୍ୟରେ ଗଦା ଯୁଦ୍ଧ ଚାଲିଛି । ଦୁର୍ଯ୍ୟୋଧନ ପିତାପୁତ୍ରଙ୍କ ରଣବ୍ୟୂହଭିତରୁ ପଳାଇ ଆସୁଛନ୍ତି ବୋଧହୁଏ । ସାରଥି ରଥକୁ ଅନ୍ୟ ଦିଗକୁ ବାହି ନେଇଛି । କୌରବ ସୈନ୍ୟମାନେ ଛିନିଛତ୍ର ହୋଇ ପଳାଇଲେଣି । ଘଟୋତ୍କଚ ତାଙ୍କୁ ଅନୁସରଣ କରୁଛନ୍ତି । ଭୀମ ଗୋଡ଼ାଇଛନ୍ତି ଦୁର୍ଯ୍ୟୋଧନଙ୍କୁ । ରଣଭୂମିରେ ଆତଙ୍କ ଖେଳି ଗଲାଣି ।

ଧୃତରାଷ୍ଟ୍ରଙ୍କ ମୁଖମଣ୍ଡଳ ମଳିନ ପଡ଼ିଗଲା । ସେ ଉଦାସ କଣ୍ଠରେ କହିଲେ, ''ସଞ୍ଜୟ ! ତୁମେ ଠିକ୍ ଭାବରେ ଦେଖିକରି କହୁଛ ତ ! ବତ୍ସ ଦୁର୍ଯ୍ୟୋଧନ ମୋର, ଭୀମ ଭୟରେ ପଳାଇ ଆସୁଛି ମୋ ମନ ବୁଝୁନି ସଂଜୟ । ଠିକ୍ ଭାବରେ ଦେଖିକରି କୁହ ।''

''ରାଜନ ! ମୁଁ ସତ୍ୟର ଅପଳାପ କରୁନି । ମନରୁ ପଦିଏବି କହୁନି । ଯାହା ଦେଖୁଛି, ତାହାହିଁ କହୁଛି ।''

କୌରବ ମାନଙ୍କର ବିପର୍ଯ୍ୟୟ ଦେଖି ଦ୍ରୋଣାଚାର୍ଯ୍ୟ ଏବଂ ଭୀଷ୍ମ ଦେବ ଚାଲି ଆସିଲେଣି ସେମାନଙ୍କୁ ସାହାଯ୍ୟ କରିବାପାଇଁ । ବିକ୍ଷିପ୍ତ ସୈନ୍ୟମାନେ ପୁଣି ଏକତ୍ରିତ ହେଲେଣି । ଦୁର୍ଯ୍ୟୋଧନ ପୁଣି ଫେରିଆସିଲେଣି । ବର୍ତ୍ତମାନ ସେମାନଙ୍କର ସମ୍ମିଳିତ ଆକ୍ରମଣ ଭୀମ ଓ ତାଙ୍କର ସୈନ୍ୟମାନଙ୍କ ଉପରେ ଆରମ୍ଭ ହୋଇଛି ।

ଦୁର୍ଯ୍ୟୋଧନ ପିତାମହଙ୍କୁ ଅଭିମାନ ଭରା କଣ୍ଠରେ କହୁଛନ୍ତି; 'ପିତାମହ ! ଆପଣ ଏବଂ ଦ୍ରୋଣାଚାର୍ଯ୍ୟ ଉଭୟେ ଏଠାରେ ଉପସ୍ଥିତ । କୌରବ ପକ୍ଷର ଚରମ ଶକ୍ତିପୁଞ୍ଜ ଏଠାରେ କେନ୍ଦ୍ରିତ ହୋଇଛି । ଭୀମ କିମ୍ବା ପାଣ୍ଡବପକ୍ଷର କେହି ଆପଣଙ୍କର ସମଯୋଦ୍ଧା ନୁହନ୍ତି । ଅତି ସହଜରେ ଆପଣ ସେମାନଙ୍କୁ ହତ୍ୟାକରି ପାରିବେ ।ଏହା ସମ୍ଭବ ହେଲେ ପାଣ୍ଡବ ପକ୍ଷର ମନୋବଳ ଭୁଶୁଡ଼ି ପଡ଼ନ୍ତା । ତାଙ୍କ ଦମ୍ଭ ଦୋହଲି ଯାଆନ୍ତା । ଆପଣ ସେମାନଙ୍କୁ ମାରୁ ନାହାନ୍ତି କାହିଁକି ? ଭୀମ ବର୍ତ୍ତମାନ ମୃତ୍ୟୁର ଶେଷ ପାହାଚରେ ପାଦ ଦେଇଛି । ମୁଁ ଦେଖୁଛି, ଆପଣ ଦୁହିଁଙ୍କର ପାଣ୍ଡବ ପ୍ରୀତି ଅଧିକ । ସେଥିପାଇଁ ଏ ଶିଥିଳତା ।'

ପିତାମହ ଯନ୍ତ୍ରଣାଦଗ୍ଧ ପରି ଜଣାଯାଉଥିଲେ ମଧ୍ୟ ସରୁହସର ରେଖାଟିଏ ଟାଣି କହିଲେ, ''ଦୁର୍ଯ୍ୟୋଧନ ! ତୁମର ବିଚାର ବ୍ରିଭାଟ ଏ ଘଡ଼ିସନ୍ଧି ମୁହୂର୍ତ୍ତରେ ଆଦୌ ଶୋଭନୀୟ ନୁହେଁ । ଯୁଦ୍ଧଭୂମି ରାଜସଭା ନୁହେଁ । ତୁମେ ତୁମର କର୍ତ୍ତବ୍ୟକର । ଆମେ ରାଜସିଂହାସନ ପ୍ରତି ଯଥୋଚିତ କର୍ତ୍ତବ୍ୟ କରୁଛୁ । ଦୁଇଜଣ ଅନୁରକ୍ତ ବୃଦ୍ଧଙ୍କ ଠାରୁ ଆଉ କେତେ ବୀରତା ତୁମେ ଆଶାକରୁଛ ? ଯୁଦ୍ଧକର । ତୁମପାଇଁ ମୁଁ ପ୍ରାଣଦାନ କରିବାକୁ ପଣ କରିଛି, ଦ୍ରୋଣାଚାର୍ଯ୍ୟ ଜୀବନ ବିନିମୟରେ ତୁମର ସେବା କରିବା ପାଇଁ ପ୍ରତିଜ୍ଞାବଦ୍ଧ । ତୁମେ ଆଉ ଅଧିକ କଣ ଚାହଁ ?''

ଦୁର୍ଯ୍ୟୋଧନ ନମ୍ର କଣ୍ଠରେ କହୁଛନ୍ତି, ହେ ପିତାମହ, ହେ ଗୁରୁ ଦେବ ! ମୁଁ ଗଭୀର ଆତ୍ମଯନ୍ତ୍ରଣା ଭିତରେ ଏପରି କହିଛି । ମୋତେ କ୍ଷମା ଦେବେ, ମୁଁ ଆପଣଙ୍କର ଆଶୀର୍ବାଦ ଚାହେଁ ।'

'ଭୀଷ୍ମଦେବ ପ୍ରଳୟ ପ୍ରଭଞ୍ଜନ ପରି ପାଣ୍ଡବ ସୈନ୍ୟମାନଙ୍କ ଉପରକୁ ମାଡ଼ିଗଲେଣି । ଦ୍ରୋଣାଚାର୍ଯ୍ୟ ପ୍ରଳୟର ପ୍ରତିମୂର୍ତ୍ତି । ବନାଗ୍ନି ମାଡ଼ି ଗଲାପରି ଉଭୟ ମହାବୀରଙ୍କର କ୍ରୋଧାଗ୍ନି, ଯୁଦ୍ଧଭୂମିକୁ ଗ୍ରାସ କଲାଣି । ଧୃଷ୍ଟଦ୍ୟୁମ୍ନ, ସାତ୍ୟକି, ଭୀମ, ଶିଖଣ୍ଡୀ ସେମାନଙ୍କ ଗତିକୁ ପ୍ରତିରୋଧ କରିପାରୁନାହାନ୍ତି । ଭୀଷ୍ମ ଶିଖଣ୍ଡୀଙ୍କୁ ଅତିକ୍ରମ କରି ଅନ୍ୟମାନଙ୍କୁ କବଳିତ କରି ନେଲେଣି । ପାଣ୍ଡବ ସୈନ୍ୟମାନେ ପଛଘୁଞ୍ଚା ଦେବାକୁ ଉଦ୍ୟତ ହେଲେଣି । ଅବସ୍ଥା ବର୍ତ୍ତମାନ ଅସମ୍ଭାଳ । ପାଣ୍ଡବମାନଙ୍କ ଅବସ୍ଥା ଶୋଚନୀୟ ହୋଇ ଉଠିଲାଣି ।

ଏଦୃଶ୍ୟ ଅସହ୍ୟ ହୋଇଛି ଅର୍ଜୁନଙ୍କୁ । ଶ୍ରୀକୃଷ୍ଣ ମଧ୍ୟ ମାନସିକ ଭାରସାମ୍ୟ ହରାଇବାକୁ ବସିଲେଣି । ସେ କହିଲେ, ଧନଞ୍ଜୟ ! ଆଉ ବିଚାର କରିବାର ବେଳ ନାହିଁ । ତୁମକୁ, କୌଣସିମତେ ଭୀଷ୍ମଦେବଙ୍କୁ ହତ୍ୟାକରିବାକୁ ପଡ଼ିବ । ତା'ନହେଲେ ଏ ପ୍ରଳୟ ଯଜ୍ଞରେ ପାଣ୍ଡବମାନଙ୍କର ପ୍ରାଣହିଁ ଆହୁତିପଡ଼ିବ । ଯୁଦ୍ଧ, ଯୁଦ୍ଧର ମର୍ଯ୍ୟାଦା ହରାଇବ । ବନ୍ଧା ହୋଇଥିବା ବଳିପଶୁପରି ପାଣ୍ଡବ ଓ ତାଙ୍କ ସୈନ୍ୟମାନେ ବଳିପଡ଼ିବେ ।

ଅର୍ଜୁନ ଚିତ୍କାର କରି ଉଠିଲେ । ''କେଶବ ! ଭୀଷ୍ମଙ୍କ ଆଡ଼କୁ ରଥ ବାହି ନିଅନ୍ତୁ । ମୁଁ ନିଶ୍ଚୟ ଆଜି ପିତାମହଙ୍କୁ ହତ୍ୟାକରିବି । ଶ୍ରୀକୃଷ୍ଣ ସେଇଆଡ଼କୁ ରଥ ଛୁଟାଇଛନ୍ତି । ପିତାମହ ଓ ଅର୍ଜୁନ ଯୁଦ୍ଧ ଭୂମିରେ ମୁହାଁ ମୁହିଁ ହୋଇ ଗଲେଣି । ପିତାମହ ଆନନ୍ଦରେ ଅର୍ଜୁନଙ୍କୁଅଭିନନ୍ଦନ ଜଣାଉଛନ୍ତି । ଭୀଷ୍ମ ଓ ଅର୍ଜୁନଙ୍କ ମଧ୍ୟରେ ଭୟାବହ ଯୁଦ୍ଧ ଆରମ୍ଭ ହୋଇ ଯାଇଛି । ଭୀଷ୍ମଙ୍କ ଶରାଘାତରେ କେତେ ଯେ ସୈନ୍ୟ ମଲେଣି ତାହା କଳନାକରି ହେଉନି । ଅର୍ଜୁନ ପ୍ରାଣାନ୍ତକ ଚେଷ୍ଟା ଚଳାଇଛନ୍ତି ପ୍ରତିରୋଧ କରିବାପାଇଁ । ସେ କ୍ଷତାକ୍ତ ହୋଇ ସାରିଲେଣି, ଆଉ ରକ୍ଷାନାହିଁ । ଭୀଷ୍ମଙ୍କ ଶର ଆସି ଶ୍ରୀକୃଷ୍ଣଙ୍କ ବକ୍ଷ ଭେଦକଲାଣି ।

ଶ୍ରୀକୃଷ୍ଣ କ୍ରୋଧରେ ଗର୍ଜିଉଠିଲେ । ଅର୍ଜୁନ ! ତୁମେ ଭୀଷ୍ମଙ୍କର ସମ୍ମୁଖୀନ ହେବା ପାଇଁ ଅସମର୍ଥ । ପରିସ୍ଥିତି ଭୟାବହ ହେବାକୁ ବସିଲାଣି । ମୋତେ ଛାଡ଼ିଦିଅ । ମୁଁ ଯୁଦ୍ଧକରେ । ତୁମେତ ଭୀଷ୍ମଙ୍କୁ ମାରି ପାରିଲ ନାହିଁ । ମୁଁ ନିଶ୍ଚୟ ମାରିବି । ଶ୍ରୀକୃଷ୍ଣ ରଥରୁ ତଳକୁ ଡେଇଁ ପଡ଼ି ପ୍ରଳୟ ବେଗରେ ମାଡ଼ିଗଲେ ଭୀଷ୍ମଦେବଙ୍କ ଆଡ଼କୁ ।

ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ।

କୌରବ ସୈନ୍ୟଗଣ ତ୍ରସ୍ତ ହରିଣ ପରି ପଳାଇ ଯାଉଛନ୍ତି । ଭୀଷ୍ମଦେବ ଶ୍ରୀକୃଷ୍ଣଙ୍କୁ ଅସ୍ତ୍ରସଜ୍ଜିତ ହୋଇ ଆସିବାର ଦେଖି ହାତ ଯୋଡ଼ି କହିଲେ, , ''ହେ ବିଶ୍ୱପୁରୁଷ ! ହେ ଅଚ୍ୟୁତ ! ହେମଧୁସୂଦନ ! ହେ ଜଗତ ପାଳକ ଆସନ୍ତୁ... ଆସନ୍ତୁ । ଯେତେ ଶୀଘ୍ର ସମ୍ଭବ ମୋତେ ହତ୍ୟା କରନ୍ତୁ । ଏ ସୌଭାଗ୍ୟ ମୋ ପାଇଁ ଦୁର୍ଲ୍ଲଭ । ସତରେ ମୁଁ ଭାଗ୍ୟବାନ, ସ୍ୱୟଂ ବିଶ୍ୱମ୍ଭରଙ୍କ ହାତରେ ମୋତେ ମୁକ୍ତିର ପଥମିଳିଯିବ । ମୁଁ ମର୍ତ୍ତ୍ୟ ଜୀବନ ଭିତରେ କ୍ଳାନ୍ତ, ମମତାହୀନ ହୋଇ ଗଲିଣି । ବଞ୍ଚିରହିବାକୁ ମୋର ଆଉ ଟିକିଏ ମଧ୍ୟ ଲୋଭ ନାହିଁ । ଯେଉଁ ମୃତ୍ୟୁ ମୋ ଠାରୁ ବହୁ ଦୂରରେ ଥିଲା, ସେଇ ମହାନ୍ ମୃତ୍ୟୁକୁ, ମୁଁ ଆଜି ଆପଣଙ୍କର

କ୍ରୋଧ ଉଦ୍ଦିପିତ କରି ଲାଭ କରିବାକୁ ଯାଉଛି । ଏହା ମୋର ପରମ ସୌଭାଗ୍ୟ ଯେ, ପ୍ରଭୁ ମୋତେ ଆଶୀର୍ବାଦ ଦେବାପାଇଁ ନିଜର ପ୍ରତିଜ୍ଞା ଭଙ୍ଗ କରି ଅସ୍ତ୍ର ଧାରଣ କରିଛନ୍ତି ।'

ଶ୍ରୀକୃଷ୍ଣ ହଠାତ୍ ସେଠାରେ ଅଟକି ଗଲେ । ହାତମୁଠା ଶିଥିଳ ହୋଇଗଲା । ଦୌଡ଼ି ଆସିଲେ ଅର୍ଜୁନ । ଶ୍ରୀକୃଷ୍ଣଙ୍କ ହାତଧରି ଅତ୍ୟନ୍ତ କୋମଳ କଣ୍ଠରେ କହିଲେ, 'ସଖା ! ଆପଣ ପରମ କାରୁଣିକ । ପାଣ୍ଡବମାନଙ୍କର ସ୍ୱାର୍ଥ ରକ୍ଷା କରିବାପାଇଁ, ନିଜର ପ୍ରତିଜ୍ଞା ଭଙ୍ଗ କରି, ଅସ୍ତ୍ର ଧାରଣ କରିଛନ୍ତି । ଆପଣ ନିଜେତ କହିଥିଲେ, ସତ୍ୟ ଏବଂ ଧର୍ମ ହିଁ ପାଣ୍ଡବମାନଙ୍କର ବଳ । ଆପଣଙ୍କର ଚିରଅନୁଗତ ପାଣ୍ଡବ ମାନଙ୍କ ପାଇଁ କାହିଁକି ସତ୍ୟଭଙ୍ଗ କରିବେ । ଆସନ୍ତୁ ଆସନ୍ତୁ ସଖା ! ରଥ ଉପରକୁ ଆସନ୍ତୁ । ମୁଁ ପ୍ରତିଜ୍ଞା କରୁଛି, ମୋର ସମସ୍ତ ଶକ୍ତି ଖଟାଇ ଆପଣଙ୍କର ସନ୍ତୋଷ ବିଧାନ ପାଇଁ ଯୁଦ୍ଧ କରିବି । ରଥରେ ବସି ଆମକୁ ଆଶୀର୍ବାଦ ଦିଅନ୍ତୁ ।'

ଶ୍ରୀକୃଷ୍ଣ ରଥକୁ ଫେରି ଆସିଲେ ।

ପୁଣି ଭୟଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା । ଭୀଷ୍ମଦେବ, ଭୂରିଶ୍ରବା, ଦୁର୍ଯ୍ୟୋଧନ ଓ ଶଲ୍ୟ ପ୍ରଭୃତି ଅର୍ଜୁନଙ୍କୁ ଚତୁର୍ଦ୍ଦିଗରୁ ଆକ୍ରମଣ କଲେ । ଅର୍ଜୁନଙ୍କ ଶରାଘାତରେ ବହୁ ସୈନ୍ୟ ମଲେ ତଥାପି ସେ ଅଶାନୁରୂପ ଅଗ୍ରଗତି କରି ପାରିଲେ ନାହିଁ । ପରିସ୍ଥିତିର ମୁକାବିଲା ପାଇଁ ଶେଷରେ ସେ ''ଇନ୍ଦ୍ରାସ୍ତ୍ର' ପ୍ରୟୋଗ କଲେ । ହଜାର ହଜାର ସୈନ୍ୟ, ହସ୍ତୀ, ଅଶ୍ୱ ମଲେ । ଅଜସ୍ର ରଥ ଭୂତଳଶାୟୀ ହେଲାଣି । କୌରବ ଶିବିରରେ ହାହାକାର ଖେଳିଗଲାଣି । ସୂର୍ଯ୍ୟାସ୍ତ ପରେମଧ୍ୟ ଅର୍ଜୁନ ବିରତ ହେଲେ ନାହିଁ । ରାତ୍ରିର ଅନ୍ଧକାର ମଧ୍ୟରେ ରଣବିରତି ଘୋଷଣା କରାଗଲା ।

ସମସ୍ତେ ନିଜ ନିଜ ଶିବିରକୁ ପ୍ରତ୍ୟାବର୍ତ୍ତନ କଲେ ।

ସବୁରି ପାଟିରେ ସେଇ ଗୋଟିଏ କଥା, 'ଅର୍ଜୁନଙ୍କ ରଣକୌଶଳ ଅତୁଳନୀୟ । ତାଙ୍କର ସମକକ୍ଷ କେହି ହୋଇ ପାରିବେ ନାହିଁ ।'

ଆଜି ଦିନର ଶେଷାର୍ଦ୍ଧରେ, କୌରବମାନଙ୍କର ଅପୂରଣୀୟ କ୍ଷତି ସାଧନହେଲା ରାଜନ୍ ।''

ଧୃତରାଷ୍ଟ୍ର ଦୀର୍ଘ ନିଶ୍ୱାସ ପକାଇ ଅନନ୍ତ ଆକାଶ ଆଡ଼କୁ ମୁହଁ ବୁଲାଇଲେ । ଶୂନ୍ୟତା ତାଙ୍କର ସମଗ୍ର ସତ୍ତାକୁ ଗ୍ରାସ କରିଛି ।

———————————— ଏକୋଇଶ

## ।। ଚତୁର୍ଥଦିନ ଯୁଦ୍ଧ ।।

ପ୍ରଳୟ ଯଜ୍ଞର ଆଜି ଚତୁର୍ଥ ଦିନ । ଯୁଦ୍ଧରେ କିଛି ନୂଆ ଘଟଣା ଘଟେନାହିଁ । ସେଇ ହଣା ମରା, କଟାଛଟା, ଶ୍ମଶାନ ଭୂମିର ମଢ଼ା ମୁର୍ଦାର ଗନ୍ଧ । ଶବ ଚତୁର୍ଦିଗରେ ଶ୍ୱାନ ଶିବାର ମେଳା । ନୂଆ କିଛି ନାହିଁ, କେବଳ ରଣ କୌଶଳରେ କିଛିଟା ନୂତନତ୍ୱ । ପରିସ୍ଥିତିର କିଛିଟା ଚମକପ୍ରଦ ଘଟଣା । ଭାଗ୍ୟ ଓ ପୌରୁଷର କରାମତି । ତା ବ୍ୟତୀତ ସବୁଠାରୁ ଅଧିକ ଆକର୍ଷଣୀୟ ହେଉଛି କେଉଁ ମହାଯୋଦ୍ଧାର ମହାପ୍ରୟାଣ ସଂଘଟିତ ହେଲା ।

ମହାଭାରତ ଯୁଦ୍ଧର ପ୍ରତ୍ୟେକଟି ଦିନର କିଛିନା କିଛି ବିଶେଷତ୍ୱ ଅଛି । ଯୁଦ୍ଧ ଏବଂ ହତ୍ୟା କହି ତାହାକୁ ଉପେକ୍ଷା କରାଯାଇ ପାରିବ ନାହିଁ । ପ୍ରତ୍ୟେକ ଦିନର ଘଟଣା ଅନେକ ନୂତନ ଦିଗ ଆବିଷ୍କାର କରେ । ପ୍ରତ୍ୟେକ ଦିନର ପ୍ରଚୁର ଅନୁଭୂତି ତା' ପରଦିନ ପାଇଁ ଶକ୍ତି, ସାମର୍ଥ୍ୟ ଓ ନୂତନ ଚିନ୍ତାଧାରାର ଖୋରାକ ଯୋଗାଏ । ସଞ୍ଜୟଙ୍କର ଧାରା ବିବରଣୀ ଆରମ୍ଭ ହେଲା ।

''ହେ ରାଜନ୍ ! ଆଜି ରାତି ନପାହୁଣୁ ଭୀଷ୍ମଦେବଙ୍କ ନେତୃତ୍ୱରେ କୌରବ ସୈନ୍ୟଗଣ ଯୁଦ୍ଧ ଭୂମିକୁ ଯାଇଛନ୍ତି, ଯୁଦ୍ଧବାଦ୍ୟ, ଶଙ୍ଖନାଦ, ସୈନ୍ୟମାନଙ୍କର ବିକଟାଳ ଚିତ୍କାର ପରିବେଶକୁ କୋଳାହଳମୟ କରିଛି । ଭୀଷ୍ମଦେବ, ଦୁର୍ଯ୍ୟୋଧନ ଓ ବହ୍ଲିକଙ୍କ ଗହଣରେ କୌରବ ସୈନ୍ୟମାନଙ୍କୁ ନେଇ ଯୁଦ୍ଧ ଭୂମିକୁ ଯାତ୍ରା କରିଛନ୍ତି ।

ଅର୍ଜୁନ ତାଙ୍କ ସୈନ୍ୟମାନଙ୍କ ସମ୍ମୁଖଭାଗରେ ରଥରେ ବସି ଆଗେଇଛନ୍ତି । ଶ୍ରୀକୃଷ୍ଣ ରଥ ଚଳାଉଛନ୍ତି । ଦୁହେଁ ଦିଶୁଛନ୍ତି ସୂର୍ଯ୍ୟ ଓ ଚନ୍ଦ୍ରପରି ।

'ମୁଁ କୌଣସି ଉପମା ଅଳଙ୍କାର ଶୁଣିବାକୁ ଚାହେଁ ନାହିଁ ସଂଜୟ । ଯାହା ଦେଖୁଛ କେବଳ ତାହାହିଁ କୁହ । ସେ ଦୁହେଁ କାହିଁକି ସୂର୍ଯ୍ୟଚନ୍ଦ୍ର ହେବେ ? ଏ ବିଶେଷଣ ପାଇବା ପାଇଁ କୌରବମାନଙ୍କ ମଧ୍ୟରେ କ'ଣ କେହି ନାହାନ୍ତି ?' କହିଲେ ବେଦନା ବିବଶ ଧୃତରାଷ୍ଟ୍ର ।

'ହେ କୁରୁପତି ! ମୁଁ ଯାହ ଦେଖୁଛି ତାହା କହୁଛି । ଶ୍ରୀକୃଷ୍ଣ ମୋତେ ଦେଖାଯାଉଛନ୍ତି ବାଳରବି ପରି ତେଜୋମୟ । ଅର୍ଜୁନ ପୂର୍ଣ୍ଣଚନ୍ଦ୍ରପରି ଜ୍ୟୋତ୍ସ୍ନାମୟ । ମୁଁ କୁରୁକ୍ଷେତ୍ରର ମହାଯୋଦ୍ଧା ମାନଙ୍କର ମହନୀୟ ପ୍ରକାଶ ବର୍ଣ୍ଣନାନକଲେ, ସତ୍ୟଠାରୁ ଦୂରେଇ ଯିବି ବୋଲି ଭାବୁଛି । ମୋ ଦୃଷ୍ଟିରେ ଉଭୟପକ୍ଷର ମହାନ୍ ଯୋଦ୍ଧାମାନେ ମହନୀୟ । ଯାହାକୁ ଯେଉଁ ରୂପରେ ଦେଖିବି ତାହାହିଁ କହିବି ।'

'ଆଚ୍ଛା କୁହ ! ଠିକ୍ ଭାବରେ ଯୁଦ୍ଧର ଧାରା ବିବରଣୀ ଦିଅ । ନିଜକୁ ପକ୍ଷଭୁକ୍ତ କରନାହିଁ ।'

'ହେ ରାଜନ୍ ! ମୁଁ ପ୍ରତିଜ୍ଞା କରିଛି ସତ୍ୟ ପ୍ରକାଶ କରିବି ବୋଲି । ଆପଣ ସେ ଦିଗରେ ନିଶ୍ଚିତ ରହନ୍ତୁ ।' କହିଲେ ସଂଜୟ ।

ଧୃତରାଷ୍ଟ୍ରଙ୍କ ଭିତରେ ଅସ୍ଥିରତାର ଆବେଗ । ସେ ବଡ଼ ବ୍ୟସ୍ତ ଓ ଚଞ୍ଚଳ ଜଣାପଡୁଥାନ୍ତି । ଥରକୁଥର ପାର୍ଶ୍ୱପରିବର୍ତ୍ତନ କରିବା, ହାଇ ମାରିବା, ଏପାଖ ସେପାଖ ମୁହଁ ଘୂରାଇବାରେ ଲାଗିଥାନ୍ତି ।

'ରାଜନ୍ ! ପାଣ୍ଡବ ସୈନ୍ୟଗଣ କୁରୁକ୍ଷେତ୍ରରେ ଆସି ପହଞ୍ଚି ଗଲେଣି । ଭୀଷ୍ମଦେବଙ୍କ ନିର୍ଦ୍ଦେଶରେ ଯୁଦ୍ଧ ଆରମ୍ଭ ହେଲା । କୌରବ ମାନଙ୍କର ଲକ୍ଷ୍ୟ ଆଜି ଅଭିମନ୍ୟୁଙ୍କ ଉପରେ, ତାଙ୍କୁ ଘେରି ଯାଇଛନ୍ତି, ଅଶ୍ୱତଥାମା, ଭୂରିଶ୍ରବା, ଶଲ୍ୟ, ଚିତ୍ରସେନ, ଦୁର୍ଯ୍ୟୋଧନ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ପ୍ରଭୃତି । ଏ ଆକ୍ରମଣରେ ନେତୃତ୍ୱ ନେଇଛନ୍ତି ଭୀଷ୍ମଦେବ । ଭୟଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା । ଦୁର୍ଦ୍ଧର୍ଷ ତରୁଣ ବୀର ଅଭିମନ୍ୟୁ ଓ ତାଙ୍କର ସୈନ୍ୟଗଣ ସେମାନଙ୍କ ଆକ୍ରମଣର ପ୍ରତିରୋଧ କରୁଛନ୍ତି ।

ଦୂରରୁ ଦେଖି ପାରିଲେ ଅର୍ଜୁନ ।

ଆଖି ପିଛୁଳାକେ ଆସି ପହଞ୍ଚିଲେ ଅଭିମନ୍ୟୁଙ୍କ ପାଖରେ । ସେ ଅତର୍କିତ ଆକ୍ରମଣ କଲେ ଭୀଷ୍ମଦେବଙ୍କୁ । ନାହିଁ ନଥିବା ଯୁଦ୍ଧ । ପଲକ ପଡ଼ିଲାନାହିଁ । ରଣସ୍ଥଳୀସ୍ତବ୍ଧ ହୋଇଗଲା । ଉଭୟ ପକ୍ଷର ସୈନ୍ୟମାନେ ଥକା ହୋଇଠିଆ ହୋଇଗଲେ । ପୃଥିବୀର ଦୁଇ ପ୍ରଧାନ ଯୋଦ୍ଧାଙ୍କ ମଧ୍ୟରେ ଅସ୍ତ୍ର ସମ୍ଭାଷଣ ଚାଲିଛି । ଅସ୍ତ୍ରଗୁଡ଼ାକ ଯେପରି ନିଜର ସଂହାର ଶକ୍ତି ପରିହାର କରି ଆକାଶମଣ୍ଡଳରେ ସେମାନଙ୍କର ଚିତ୍ତାକର୍ଷକ କସରତ ଦେଖାଉଛନ୍ତି, ସମସ୍ତେ ମୁଗ୍ଧ ।

ଏଇତ କୌରବ ପକ୍ଷର ମିଳିତ ଆକ୍ରମଣ ଅର୍ଜୁନଙ୍କ ଉପରେ ଆରମ୍ଭ ହୋଇଛି । ଅର୍ଜୁନ ଦୁର୍ଯ୍ୟୋଧନଙ୍କ ଅସ୍ତ୍ରକୁ ଅକାମି କରି ଦେଉଛନ୍ତି । ଶଲ୍ୟଙ୍କ ରଥଧ୍ୱଜ, ତଳେ ଲୋଟାଇ ଦେଲେଣି । ଅନ୍ୟମାନେ ଅଳ୍ପ ସମୟ ମଧ୍ୟରେ ଅତିଷ୍ଠ ହୋଇ ଉଠିଛନ୍ତି । ଏତିକିବେଳେ ଆସି ପହଞ୍ଚିଛନ୍ତି ଭୀମସେନ । ଗଦାମାଡ଼ରେ କୌରବ ପକ୍ଷ ଧ୍ୱସ୍ତ ବିଧ୍ୱସ୍ତ । ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କ ମଧ୍ୟରୁ ଅନେକ ଗଦା ମାଡ଼ରେ ପ୍ରାଣ ହରାଇଲେଣି ।

ଦୁର୍ଯ୍ୟୋଧନ ଗଦାଧରି ଭୀମଙ୍କ ଉପରକୁ ମାଡ଼ି ଆସୁଛନ୍ତି । ଦୁହିଁଙ୍କ ମଧ୍ୟରେ ଭୀଷଣ ଗଦାଯୁଦ୍ଧ ଆରମ୍ଭ ହୋଇଗଲା । କେହି କାହାକୁ ଊଣା ନୁହଁନ୍ତି । ସୈନ୍ୟସହ ଅନେକ ହାତୀ ଭୀମଙ୍କ ଉପରକୁ ମାଡ଼ି ଆସିଲେଣି । ଭୀମ ମତ୍ତହସ୍ତୀମାନଙ୍କୁ ଦେଖି ଡେଇଁ ପଡ଼ିଲେ ରଥ ଉପରୁ । ହାତରେ ଲୌହ ମୁଦ୍‌ଗର । ସେ ହାତୀମାନଙ୍କୁ ଏପରି ମୁଦ୍‌ଗର ମାଡ଼ ଦେଲେ ଯେ, ସେମାନେ ଏଣେତେଣେ ପ୍ରାଣ ବିକଳରେ ଦଉଡ଼ି ପଳାଇଲେ । ସେମାନଙ୍କଦଳା ଚକଟାରେ ଅସରନ୍ତି କୌରବ ସେନା ମଲେ । ସୈନ୍ୟମାନଙ୍କର ଶୃଙ୍ଖଳା ନଷ୍ଟ ହୋଇଗଲା । ମୁଦ୍‌ଗର ମାଡ଼ରେ ହାତୀମାନେ ମରି ତଳେ ଲୋଟୁଛନ୍ତି । ମଲାହାତୀ ମାନଙ୍କର ଗଦା ବିରାଟ ପାହାଡ଼ ପରି ଜଣା ପଡୁଛି ।

''ସଞ୍ଜୟ ! ଏତେବେଳେ ଭୀଷ୍ମଦେବ, ଦ୍ରୋଣ, କୃପାଚାର୍ଯ୍ୟ, ଅଶ୍ୱତଥାମା ପ୍ରଭୃତି କୁଆଡ଼େ ଯାଇଛନ୍ତି ? ଗୋଟାଏ ପାଗଳା କୁକୁରକୁ ସେମାନେ ଆୟତ୍ତ କରି ପାରୁନାହାନ୍ତି ? ସେ ଏତେ ଉପଦ୍ରବ କରୁଛି ଯୁଦ୍ଧ ପଡ଼ିଆରେ ! ତୁମେ କଣ ସେମାନଙ୍କୁ ଦେଖି ପାରୁନ ସଞ୍ଜୟ ?''

''ହଁ ଦେଖିପାରୁଛି । ମାଡ଼ଖିଆ ମାତାଲହାତୀ ଗୁଡ଼ାକ ସବୁ ବିଶୃଙ୍ଖଳା କରି ଦେଇଛନ୍ତି ମହାରାଜ । ସବୁ ଏପାଖ ସେପାଖ ହୋଇଯାଇଛି ।'' କହିଲେ ସଂଜୟ ।

'ହଁ...ହଁ....ଏଇତ, ସେମାନେ ସମସ୍ତେ ପୁଣି ଦାନା ବାନ୍ଧିଲେଣି । ମିଳିତ ଆକ୍ରମଣ ପାଇଁ ମାଡ଼ି ଆସିଲେଣି ଭୀମଙ୍କ ଆଡ଼କୁ । କୌରବ ପକ୍ଷର ଯୋଦ୍ଧାମାନେ ନୂତନ ଶକ୍ତି ଓ ସାମର୍ଥ୍ୟନେଇ ଆକ୍ରମଣ

ଆରମ୍ଭ କରିଛନ୍ତି । ଦୁର୍ଯ୍ୟୋଧନଙ୍କ ଅସ୍ତ୍ର ଆସି ବିଦ୍ଧ କରିଛି ଭୀମଙ୍କର ବକ୍ଷସ୍ଥଳୀ । ସେ ଦଉଡ଼ି ଦଉଡ଼ି ଯାଇ ନିଜର ରଥ ଉପରେ ଚଢ଼ିଯାଉଛନ୍ତି । ତାଙ୍କ ସାରଥି । 'ବିଶୋକ' ରଥ ମୁହାଁଇ ନେଇଛନ୍ତି ଅନ୍ୟ ଦିଗକୁ ।

ଚିତ୍କାର ଶୁଣା ଯାଉଛି..... ।

''ବିଶୋକ.... ବିଶୋକ... ! ଦେଖ ଦେଖ ସେଇ ଦିଗକୁ ଚାହଁ । ଦୁର୍ଯ୍ୟୋଧନର ଭାଇମାନେ ଖଣ୍ଡେ ଘନକଳାମେଘ ପରି ସେଠାରେ ଘନୀଭୂତ ହୋଇଛନ୍ତି । ଶୀଘ୍ର ରଥ ଚଳାଅ ସେଇଦିଗକୁ । ମୁଁ ସେମାନଙ୍କୁ ଯମାଳୟକୁ ନପଠାଇବା ପର୍ଯ୍ୟନ୍ତ ମୋ ମନରେ ଶାନ୍ତି ନାହିଁ । ଘୋର ବର୍ଷା ପୂର୍ବରୁ, ମୁଁ କୁରୁକ୍ଷେତ୍ର ଆକାଶରୁ ସେଇ କଳା ମେଘକୁ ଲିଭାଇ ଦେବି । କହିଲେ ଭୀମ ।

ଏଇତ ବିଜୁଳି ବେଗରେ ରଥ ସେଇ ଆଡ଼କୁ ଛୁଟିଛି । ସେମାନଙ୍କର ସହିତ ଯୁଦ୍ଧ ଆରମ୍ଭ ହୋଇଗଲା । କୌରବ ଭାଇମାନେ ଭୟଙ୍କର ଯୁଦ୍ଧ କରୁଛନ୍ତି ।''

ଚମତ୍କାର ଚମତ୍କାର ସଂଜୟ ! ଏଥର ସେମାନେ ନିଶ୍ଚୟ ଭୀମକୁ ଛାଡ଼ିବେନି । ତା' ଭୀମ ପଣିଆର ଠିକ୍ ଜବାବ ଦେବେ ।ହଁ କୁହ କୁହ ତା'ପରେ କଣ ହେଲା ?'

'ରାଜନ୍ ! ଭୟଙ୍କର ଯୁଦ୍ଧ ଚାଲିଛି । ଅର୍ଦ୍ଧାଧିକ କୌରବ ଭାଇ ସେଠାରେ ଏକତ୍ର ଲଢୁଛନ୍ତି । ଏଇତ ଅନ୍ୟମାନେ ତୀରବେଗରେ ଛୁଟି ଆସିଲେଣି ସେମାନଙ୍କୁ ସାହାଯ୍ୟ କରିବାକୁ । ପାଣ୍ଡବପକ୍ଷର ବୀରଗଣ ଭୀମଙ୍କୁ ନିରାପତ୍ତା ଦେବାପାଇଁ ମୁହାଁଉଛନ୍ତି । ଆହା କି ଦୁର୍ଭାଗ୍ୟ... ଏକ, ଦୁଇ, ତିନି, ଚାରି, ପାଞ୍ଚ, ସାତ, ଆଠ, ।

''କଣ ହେଲା ? କଣ ହେଲା ସଂଜୟ ? କୁହ ..କହୁନା କାହିଁକି ?'' 'କହିବାକୁ ଖୋଲୁନି ରାଜନ୍ ! କଣ କହିବି, ଜଣକ ପରେ ଜଣେ, ଏକସହିତ ଆଠ ଜଣ କୌରବ ଭାଇଙ୍କୁ ହତ୍ୟା କରି ଭୀମ କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଗଲେଣି ।

''ଏଁ.. କଣ କହିଲ ? କ..ଅ..ଣ କହିଲ ସ..ଞ୍ଜ..ୟ ! ହତଭାଗ୍ୟ ଧୃତରାଷ୍ଟ୍ରର ଆଠଟି ସନ୍ତାନଙ୍କ ଖେଳାଲୀଳା ଶେଷ କରିଦେଲା ରାକ୍ଷସ ଭୀମ !! ଆଉ ରକ୍ଷାନାହିଁ । ଭାଗ୍ୟ ଭାଗ୍ୟହିଁ ବଳୀୟାନ । ପୌରୁଷ ନୁହେଁ, ପୌରୁଷ ନୁହେ !''

କଇଁ କଇଁ ହୋଇ କାନ୍ଦିଲେ ଧୃତରାଷ୍ଟ୍ର ।

''ହେ ପ୍ରାଣପ୍ରିୟ ସନ୍ତାନଗଣ ! ତମ ମାନଙ୍କ ପାଇଁ ଏ ଅନ୍ଧପିତା ଅଶ୍ରୁତର୍ପଣ କରୁଛି ।'' 'ରାଜନ୍ ! ଧୈର୍ଯ୍ୟ ଧରନ୍ତୁ । ଯୁଦ୍ଧ ମହାକାଳର ପ୍ରତୀକ । ଏହାହିଁ ସେଇ କାଳର ଗତି । ତାକୁ ଅବଜ୍ଞା କରିବାର ଶକ୍ତି କାହାର ଅଛି ?''

''ମୋତେ ବୁଝାଅନା ସଂଜୟ... ମୁଁ ବୁଝୁଛି, ସବୁ ବୁଝିଛି । ମୋତେ କାନ୍ଦିବାକୁ ଦିଅ । ହଁ, କୁହ ତାପରେ କଣ ହେଲା ?''

'ପାଣ୍ଡବ ସୈନ୍ୟମାନଙ୍କ ସହିତ ଦୁର୍ଯ୍ୟୋଧନଙ୍କର ଯୁଦ୍ଧ ଚାଲିଛି । ଆକ୍ରମଣ ପ୍ରତିଆକ୍ରମଣ ଭିତରେ ଶୀତେଇ ଉଠିଛି କୁରୁକ୍ଷେତ୍ର । ଭୀମଙ୍କ ପୁତ୍ର ଘଟୋତ୍କଚ ଆସି ପହଞ୍ଚିଲେଣି । ଅବସ୍ଥା ଆହୁରି ଗୁରୁତର ହୋଇ ଉଠିଲାଣି । ପାଣ୍ଡବପକ୍ଷ ଆଜି ସତେଯେପରି କାଳଭୈରବୀଙ୍କ ଆଶୀର୍ବାଦ ପାଇଛି । ଭଗଦତ୍ତ ଘଟୋତ୍କଚଙ୍କୁ ପ୍ରତିରୋଧ କରିବା ପାଇଁ ବିଫଳ ହୋଇଛନ୍ତି । ଭୀଷ୍ମଦେବ, ଦ୍ରୋଣାଚାର୍ଯ୍ୟ, ଭୂରିଶ୍ରବା,

କୃପାଚାର୍ଯ୍ୟ -ଏମାନେ ସମସ୍ତେ ଦୁର୍ଯ୍ୟୋଧନଙ୍କୁ ରକ୍ଷା କରିବାକୁ ଦଉଡ଼ିଲେଣି । ଏପାଖରେ ଯୁଧିଷ୍ଠିର, ବିରାଟ, ଦ୍ରୁପଦ,ଘଟୋତ୍କଚଙ୍କୁ ସହାୟତା ଦେବାପାଇଁ ଆଗେଇ ଆସିଲେଣି । ଯୁଦ୍ଧ ଭୟଙ୍କର ରୂପ ଧାରଣ କଲାଣି । ଉଭୟପକ୍ଷର ବହୁ ସୈନ୍ୟସାମନ୍ତ ମୃତାହତ ହେଲେଣି ।'

ଅସ୍ତାଚଳ ଶିଖରକୁ ସ୍ପର୍ଶ କଲେଣି ସୂର୍ଯ୍ୟଦେବ । ଭୀଷ୍ମଦେବ ଦ୍ରୋଣାଚାର୍ଯ୍ୟଙ୍କୁ କହିଲେ, ଆଜି ପାଣ୍ଡବ ପକ୍ଷର ସୈନ୍ୟମାନେ ରାକ୍ଷସ ମାନଙ୍କ ପରି ମାତିଛନ୍ତି । ରାକ୍ଷସମାନେ ବେଶିମାତନ୍ତି ଅନ୍ଧକାର ଭିତରେ । ଯଥାଶୀଘ୍ର ରଣ ବିରତି ଘୋଷଣା କରିବା ।

ଠିକ୍ ସୂର୍ଯ୍ୟାସ୍ତ ସମୟରେ ଭୀଷ୍ମଦେବ ଶଙ୍ଖବଜାଇ ଦେଲେ ଯୁଦ୍ଧ ବିରତି ପାଇଁ । ଯୁଦ୍ଧ ବନ୍ଦ ହୋଇଗଲା । ସମସ୍ତେ ନିଜ ଶିବିରକୁ ଫେରିଆସିଲେ । ଦୁର୍ଯ୍ୟୋଧନ ଏକାକି ବସି ମୃତ ଭାଇମାନଙ୍କ ପାଇଁ ଅଶ୍ରୁତର୍ପଣ କରୁଛନ୍ତି ।'

''ନା...ନା... ତୁମେ ସେପରି କୁହନା ସଂଜୟ । ମୁଁ ଦେଖୁଛି ତୁମେ ନିରପେକ୍ଷ ନୁହଁ । ସତ୍ୟ ବିବରଣୀ ବୋଧହୁଏ ଦେଉନାହଁ । ଭଲ ଖବରତ କିଛି ଦେଇ ପାରୁନ । ପ୍ରତିଦିନ ମୋତେ ବିଫଳତାର ଦୁଃଖଦ କାହାଣୀ ଶୁଣାଉଛ । ମୋ ହୃଦୟ ବିଦୀର୍ଣ୍ଣ ହୋଇଯାଉଛି । ଭାଗ୍ୟ ଭାଗ୍ୟ, ହିଁ ବଳବାନ ।''

ମୋତେ ଭୁଲ ବୁଝନ୍ତୁ ନାହିଁ ରାଜନ୍ । ଆପଣ ଯେଉଁ ଭୁଲ କରିଛନ୍ତି ତାର ଫଳାଫଳ ହିଁ ଦୁଃଖ... ଆତ୍ମଯନ୍ତ୍ରଣା, ତାହାହିଁ ହୋଇଛି । ମୁଁ ଚେଷ୍ଟାକରି ମଧ୍ୟ ସେ ଦୁଃଖକୁ ସୁଖରେ ପରିଣତ କରିପାରିବି ନାହିଁ । ସୁଖତ ପ୍ରଥମରୁ ମରିଛି, ସୁଖ ଖବର କୁରୁସମ୍ରାଟଙ୍କୁ ଦେବି କୋଉଠୁ ?? ଭାଗ୍ୟକୁ ଦୋଷ ଦେଇ ଲାଭ କିଛି ନାହିଁ । ଜାଣୁ ଜାଣୁ ନିଜ ହାତରେ ଦୁଃଖ ଦେବତାକୁ ଦ୍ୱାର ଖୋଲିଦେଇ ଭାଗ୍ୟକୁ ଭର୍ତ୍ସନା କରିବାର କି ଆବଶ୍ୟକତା ଅଛି । ସେ ଅପଦେବତାଙ୍କ ଆଶୀର୍ବାଦ ମୁଣ୍ଡପାତି ଗ୍ରହଣକରିବାକୁ ପଡ଼ିବ ।

## ।। ପଞ୍ଚମ ଦିନ ଯୁଦ୍ଧ ।।

ଚତୁର୍ଥ ଦିନର ଯୁଦ୍ଧ ସରିଯାଇଛି । ଦୁର୍ଯ୍ୟୋଧନ ଭାରାକ୍ରାନ୍ତ ମନରେ ବସିଛନ୍ତି । ତାଙ୍କର ଚିତ୍ତ ବିନୋଦନ ପାଇଁ ନର୍ତ୍ତକୀର ନୂପୁର ନିକ୍ୱଣ ସଂଗୀତର ମଧୁର ମୂର୍ଚ୍ଛନା ସହିତ ମିଶି ଯାଇଛି । ସେ କିନ୍ତୁ ଅନ୍ୟ ମନସ୍କ ଭାବରେ ବସିଛନ୍ତି । ସତେଯେପରି, ଆଖିଦୁଇଟା ନର୍ତ୍ତକୀର ନୀଳକୁବଳୟ ଜିଣା ମୁଗ୍ଧନୟନ ପାଖରେ ଅଟକି ନଯାଇ ହତାଶାର ପବନରେ ପହଁରୁଛି । ସେ ଅର୍ଥହୀନ ଦୃଷ୍ଟିରେ ଚାହିଁଛନ୍ତି ଆକାଶକୁ । ସାକୀ ତାଙ୍କ ଆଡ଼କୁ ବଢ଼ାଇ ଦେଇଚି ସୋମରସର ପିଆଲା । ସେ ତାହା ଶେଷ କରିସାରି ଗମ୍ଭୀର କଣ୍ଠରେ କହିଲେ, ''ବନ୍ଦ କର ତ୍ରୌର୍ଯ୍ୟତ୍ରିକ ।''

ନାଚ, ଗାନ, ବାଦ୍ୟ ଏକସହିତ ବନ୍ଦ ହୋଇଗଲା । ଆଖିର ଇସାରା ପାଇ, ସମସ୍ତେ ଚାଲିଗଲେ । ଦୁର୍ଯ୍ୟୋଧନ ବିଚଳିତ ଜଣା ପଡୁଥିଲେ । ସେ ସେଇ ଅନ୍ଧକାର ଭିତରେ ଏକା ଲୁଚିଗଲେ । ପହଞ୍ଚିଲେ ଯାଇ ପିତାମହ ଭୀଷ୍ମଙ୍କ ଶିବିରରେ ।

ଭୀଷ୍ମଦେବ ସ୍ୱାଗତ ଜଣାଇ ଆସନ ଗ୍ରହଣ କରିବାକୁ କହିଲେ । ''ବତ୍ସ ! ଅନ୍ଧକାର ଭିତରେ ଏକା ଏକା ଚାଲିଆସିଲ କାହିଁକି ?''

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

''ପିତାମହ ! ମରଣରଥରେ ଯେ ସବାର ହୋଇଛି, ତାର ସାଥି ସେଇ ମୃତ୍ୟୁ ବ୍ୟତୀତ ଆଉ କିଏ ହୋଇପାରେ ! ମୁଁ ଭାବିଥିଲି ଆପଣ ମୃତ୍ୟୁର ମୃତ୍ୟୁ । ଏ ବିଶ୍ୱ ବ୍ରହ୍ମାଣ୍ଡରେ ଏପରି କୌଣସି ଶକ୍ତି ନାହିଁ ଯେକି ଆପଣଙ୍କୁ ଅତିକ୍ରମ କରି ପାରିବ । ଆଚାର୍ଯ୍ୟ ଦ୍ରୋଣ ମଧ୍ୟ ସେ ଶକ୍ତିର ଆଧାର । ଆମେ ଦୁଇ ମହାଶକ୍ତିର ସାନିଧ୍ୟ ପାଇ ନିଜକୁ ଗର୍ବୀତ ମନେ କରୁଥିଲୁ । କିନ୍ତୁ ପରିଣତି ଠିକ୍ ବିପରୀତ ହେଉଛି କାହିଁକି ? ଆପଣମାନଙ୍କ ପାଖେ ପାଖେ ଅଛନ୍ତି କୌରବ ପକ୍ଷର ଦୁର୍ଦ୍ଧର୍ଷ ବୀରବୃନ୍ଦ,କୃପାଚାର୍ଯ୍ୟ, ଅଶ୍ୱଥାମା,କୃତବର୍ମା, ଭୂରିଶ୍ରବା ଇତ୍ୟାଦି । ସେମାନେ ବ୍ୟକ୍ତିଗତ ଭାବରେ ପ୍ରଳୟର ପ୍ରତିମୂର୍ତ୍ତି । ସେମାନଙ୍କ ସଂହାର ଶକ୍ତିର ପଟାନ୍ତର ନାହିଁ । କିନ୍ତୁ ଫଳ କଣ ହେଉଛି ! ସବୁ ପାଣ୍ଡବ ଏକ ହେଲେମଧ୍ୟ ଏମାନଙ୍କ ଭିତରୁ କୌଣସି ଜଣକୁ ପରାସ୍ତ କରି ପାରିବେ ନାହିଁ । ଅଥଚ ପ୍ରତିଦିନ ପରାଜୟର ପରାଭବ ଭୋଗିବାକୁ ପଡୁଛି । ଏହା ପଛରେ କି ପ୍ରଚ୍ଛନ୍ନ ରହସ୍ୟ ଅଛି ମୁଁ ବୁଝି ପାରୁନି ।''

ଭୀଷ୍ମଦେବ କହିଲେ, ''ରାଜନ୍ ! ମୋ କଥା ଭଲକରି ଶୁଣ, ହୃଦୟଙ୍ଗମ କର । ରହସ୍ୟ ନିଶ୍ଚୟ ଭେଦକରି ପାରିବ । ମୁଁ ସର୍ବଦା ତୁମର ମଙ୍ଗଳ ଚାହେଁ ଓ ସେଇମଙ୍ଗଳ ସାଧନ ପାଇଁ ନିରନ୍ତର ଉପଦେଶ ଦେଇଆସିଛି । ଭଲ ମନ୍ଦ ଉଭୟର ଅନୁଶୀଳନ କରି, ଭଲକୁ ଗ୍ରହଣ କରିବାକୁ ବୁଝାଇଛି । ତୁମେ କିନ୍ତୁ ମୋର ନିର୍ମଳ ଉପଦେଶ ଗ୍ରହଣ କରିନାହଁ । ଯାହା ମଙ୍ଗଳ ମୟ, ଶୁଭମୟ, ଶାନ୍ତି ଦାୟକ ଓ କରଣୀୟ, ତାହାତୁମେ ଉପେକ୍ଷା କରି ଗୁରୁଜନ ମାନଙ୍କୁ ଅସମ୍ମାନିତ କରିଛ । ବର୍ଜନୀୟ ଆଚରଣକୁ ଗ୍ରହଣକରି ଅମଙ୍ଗଳକୁ ସ୍ୱାଗତ ଜଣାଇଛ ।

ତୁମେ ଜାଣ ପାଣ୍ଡବମାନେ ତୁମର ଭାଇ । ରକ୍ତ ସମ୍ପର୍କରେ ସେମାନେ ତମର ଅତି ନିକଟତର । ସେମାନଙ୍କୁ ନିଜର ବନ୍ଧୁଭାବରେ ରଖିପାରିଥିଲେ ଏ ସସାଗରା ଧରାକୁ କେତେ ଆନନ୍ଦରେ ଭୋଗ କରିଥାନ୍ତ । ସେମାନଙ୍କୁ କିନ୍ତୁ ଶତ୍ରୁ ଶ୍ରେଣୀରେ ରଖିଲ ଅଧିକ ସ୍ୱାର୍ଥଲାଭ ପାଇଁ । ତାହା ମିଳିଲା କି ? ତୁମମାନଙ୍କ ଭିତରେ ଶାନ୍ତି, ସଂହତି ଓ ସୌହାର୍ଦ୍ଦ୍ୟ ଥିଲେ, ନିଜ ସହିତ ବିଶ୍ୱର ମଙ୍ଗଳ ସାଧିତ ହୋଇଥାନ୍ତା । ତାହା ତୁମେ ନିଜ ହାତରେ ଆଡ଼େଇ ଦେଇ ଶରୀର ଶକ୍ତି ବଳରେ ପ୍ରତିଷ୍ଠିତ ହେବାକୁ ପସନ୍ଦ କଲ । ଯୁଦ୍ଧକୁ ଆମନ୍ତ୍ରଣ କଲ । ତାହା ଏପରି ଏକ ଅସ୍ତ୍ର, ଯାହାର ଉଭୟଧାର ଶାଣିତ । କେତେବେଳେ କେଉଁ ପାଖ କିପରି ଭାବରେ କାଟିବ ଆଦୌ କହି ହେବନାହିଁ ।

ତୁମେ ନାରାୟଣଙ୍କୁ ପ୍ରତ୍ୟାଖ୍ୟାନ କରି ନାରାୟଣୀ ସେନାକୁ ନିଜ ପକ୍ଷକୁ ସହାୟତା ପାଇଁ ମାଗିଆଣିଛ । ସ୍ୱୟଂ ନାରାୟଣ ପାଣ୍ଡବ ପକ୍ଷର ରକ୍ଷକ । ସେ ଦିନତ ତୁମେ ପାଣ୍ଡବମାନଙ୍କ ହାତକୁ ବିଜୟ ଉପହାର ଟେକି ଦେଇଛ । ଅର୍ଜୁନଙ୍କ କପାଳରେ ବିଜୟ ତିଳକ ମାଖି ଦେଇଛ । ବର୍ତ୍ତମାନ ବିଫଳତା ପାଇଁ ଏତେ ବିମୁଖ କାହିଁକି ? ଏହା କଣ ବିଧିର ବିଡ଼ମ୍ବନା ନୁହେଁ । କୁହ, କିଏ ସେଇ ନର ନାରାୟଣ ରୂପକ ବିଶ୍ୱଶକ୍ତିକୁ ଦୁର୍ବଳ କରି ଦେଇପାରିବ ?

ବତ୍ସ ! ମୁଁ ତୁମକୁ ତଥାପି ଆଶୀର୍ବାଦ ଦେଉଛି । ତୁମେ ଯାଅ ସମୟ ଅତିକ୍ରାନ୍ତ ହୋଇନି । ପାଣ୍ଡବମାନଙ୍କୁ ଶାନ୍ତି ପ୍ରସ୍ତାବ ଦିଅ । ଭାଇମାନଙ୍କୁ ଭାଇଭାବରେ କୋଳେଇନିଅ । ବିଶ୍ୱକୁ ଏଇ ମହାମନ୍ତ୍ର ଶିଖେଇଦିଅ, ଭାଇ ଭାଇ, ଶତ୍ରୁହୋଇ ପାରେନା ।'

ଦୁର୍ଯ୍ୟୋଧନ ନତ ମସ୍ତକରେ ନିରବରେ ଫେରିଆସିଲେ । ସାରାରାତି ମନ ଭିତରେ ଭୀଷଣ ଝଡ଼ । ସେ ପ୍ରଳୟ ଝଡ଼କୁ ଶାନ୍ତ କରିବ କିଏ ?

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ସୂର୍ଯ୍ୟ ଉଦିତ ହୋଇଛନ୍ତି, ଯୁଦ୍ଧ ଆରମ୍ଭ ହୋଇଛି ।

ସେପାଖେ, ଭୀଷ୍ମଦେବ କୌରବ ସୈନ୍ୟମାନଙ୍କୁ ନେଇ ଏକ କୁମ୍ଭୀର ବ୍ୟୂହ ରଚନା କରିଛନ୍ତି । ଏପାଖେ, ଧୃଷ୍ଟଦ୍ୟୁମ୍ନ ପାଣ୍ଡବ ସୈନ୍ୟମାନଙ୍କୁ ନେଇ 'ବତକ ବ୍ୟୂହ'ରଚନା କରିଛନ୍ତି । ଭୀମସେନ ନାସାଗ୍ରରେ ଅଛନ୍ତି । ଧୃଷ୍ଟଦ୍ୟୁମ୍ନ ଏବଂ ଶିଖଣ୍ଡୀ ଦୁଇ ଆଖି ପାଖରେ ଅଛନ୍ତି । ଗଳାପାଖରେ ସାତ୍ୟକି । ଅର୍ଜ୍ଜୁନ ଦକ୍ଷିଣ ପକ୍ଷ, ରାଜାବିରାଟ ଓ ଦ୍ରୁପଦ ବାମପକ୍ଷରେ ଦଣ୍ଡାୟମାନ । ଉଦର ଭାଗରେ ଅଛନ୍ତି ଅଭିମନ୍ୟୁ ଓ ଦ୍ରୌପଦୀଙ୍କ ପଞ୍ଚପୁତ୍ର । ଯୁଧିଷ୍ଠିର ନକୁଳ ସହଦେବ ତାର ଅଗ୍ର ଭାଗରେ ଅଛନ୍ତି ।

ଭୀମ ହାତରେ ଲୌହ ମୁଦ୍‌ଗର ଧରି କୌରବମାନଙ୍କ କୁମ୍ଭୀର ବ୍ୟୁହ ଆକ୍ରମଣ କଲେ ।ତାହା ଏକାଧିକ ଭାଗରେ ବିଭକ୍ତ ହୋଇଗଲା । ଶୃଙ୍ଖଳା ନଷ୍ଟ ହୋଇଗଲା ସେମାନଙ୍କର । ଦୁର୍ଯ୍ୟୋଧନ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଯାଇ କ୍ରୋଧିତ କଣ୍ଠରେ କହିଲେ, '' ମୁଁ କିଛି ବୁଝିପାରୁନି । ଆପଣମାନେ ଯୁଦ୍ଧ କରିବାକୁ ଆସିଛନ୍ତି ନା ପଶା ଖେଳିବାକୁ ଆସିଛନ୍ତି । ଯୁଦ୍ଧ ଆରମ୍ଭରୁ ବିଫଳତା । ଗୋଟାଏ ଭୀମ ଏତେବଡ଼ ବ୍ୟୂହକୁ ଭାଙ୍ଗି ଦେଇପାରିଲା ?

ଦ୍ରୋଣାଚାର୍ଯ୍ୟ କଠୋର କଣ୍ଠରେ କହିଲେ, '' ଯେଉଁମାନେ ତୁମପାଇଁ ଜୀବନ ଦେବାକୁ ପଣ କରିଛନ୍ତି, ସେମାନଙ୍କୁ ଅସମ୍ମାନିତ କରି, ଏକ ମାନସିକ ସଂଘାତ ଭିତରକୁ ଠେଲି ଦେବା ତୁମ ଚାରିତ୍ରିକ ସଂସ୍କୃତିରେ ପରିଣତ ହୋଇଗଲାଣି । ତାହାକୁ ପରିହାର କର, ନିଜର ତଥା କୁରୁ ସାମ୍ରାଜ୍ୟର ମଙ୍ଗଳ ପାଇଁ । ମୋତେ ମୋର ପବିତ୍ର କର୍ତ୍ତବ୍ୟ ସମ୍ପାଦନ କରିବାକୁ ସୁଯୋଗ ଦିଅ । ମୁଁ ଶପଥ କରୁଛି, ମୋର ସମସ୍ତ ଶକ୍ତି ଦେଇ ସମସ୍ୟାର ସମ୍ମୁଖୀନ ହେବି । ତୁମର ଆଶା ସେଥିରେ କେତେ ସଫଳ ହେବ ତାହା ତୁମ ଭାଗ୍ୟ ଉପରେ ନିର୍ଭର କରେ ।

ଦୁର୍ଯ୍ୟୋଧନ ଫେରିଆସିଲେ । ମନରେ ଅସନ୍ତୋଷ,କ୍ରୋଧ, ଅଭିମାନର ବୋଝ ।

''ସଂଜୟ ! ମୋତେ ତୁମେ ଆଉ କିଛି କୁହନି, କାନ୍ଦିବାକୁ ଦିଅ । ମୁଁ ମନଭରି କାନ୍ଦେ । ଭୀଷ୍ମଦେବ କୁରୁକୁଳର ରକ୍ଷକ ହୋଇ ଯାହା କହିଲେ, ମୋ ଛାତି ଫାଟି ଯାଉଛି । ସବୁ ଦୋଷ କ'ଣ ଦୁର୍ଯୋଧନର । ପାଣ୍ଡବମାନେ କିଛି ଅପରାଧ କରିନାହାନ୍ତି । ଏବେ ସନ୍ଧିପ୍ରସ୍ତାବ ଦିଆଗଲେ ଦୁର୍ଯ୍ୟୋଧନକୁ ରଜା ହିସାବରେ କିଏ ଗ୍ରହଣ କରିବ ? ନା ପ୍ରଜା, ନା ଅନୁଗତ ରାଜା । ଭୀରୁ କାପୁରୁଷ କହି ସମସ୍ତେ ବିଦ୍ରୂପ କରିବେ । ପ୍ରଥମରୁ ତାହା କରାଯାଇ ପାରିଥାନ୍ତା । ଏବେ ଯୁଦ୍ଧ ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଦ୍ରୋଣାଚାର୍ଯ୍ୟ ରାଜ କୁଳର ଆଚାର୍ଯ୍ୟ ହିସାବରେ ସୀମା ଲଂଘନ କରି କଥାବାର୍ତ୍ତା କରୁଛନ୍ତି । କୁରୁ ଯୁବରାଜର ଚରିତ୍ର ଉପରେ ଟିପ୍ପଣୀ ଦେବାର ଅଧିକାର ତାଙ୍କର ନାହିଁ । ତାଙ୍କୁ ସତର୍କ କରି ଦିଆଯାଉ । ନିଜର ତଥା ନିଜ କୁଳର ଅନ୍ନସଂସ୍ଥାନ ପାଇଁ ତାଙ୍କୁ ଦକ୍ଷତାର ସହିତ ଯୁଦ୍ଧ କରିବାକୁ ପଡ଼ିବ ।'' ଗର୍ଜି ଉଠିଲେ ଧୃତରାଷ୍ଟ୍ର ।

ସଂଜୟ କହିଲେ, ''ମଣିମା ! ଆପଣ ମନର ଭାରସାମ୍ୟ ରକ୍ଷାକରନ୍ତୁ । ଭୀଷ୍ମଦେବ, ବିଦୁର ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟଙ୍କ ପରି, ଆପଣଙ୍କର ଓ କୁରୁକୁଳର ମଙ୍ଗଳାକାଙ୍କ୍ଷୀ ବ୍ୟକ୍ତି ଆଉ କେହି ନାହାନ୍ତି । ସେମାନେ ଯେତେବେଳେ ଯାହା କହନ୍ତି ତାହା କୁରୁବଂଶର ମଙ୍ଗଳପାଇଁ ଅଭିପ୍ରେତ । ମଙ୍ଗଳ ଭାବନା ହିଁ, କଠୋର କଥା କହିବାକୁ ବେଳେବେଳେ ବାଧ୍ୟ କରିଥାଏ । ସେଥିରେ ପକ୍ଷପାତ ବିଚାର ଆଦୌ ନାହିଁ । କୁରୁବଂଶର ଅମଙ୍ଗଳ ଚିନ୍ତା ସେମାନଙ୍କୁ ସ୍ପର୍ଶ କରିନାହିଁ । ଆପଣ କୁରୁସାମ୍ରାଜ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ । ପାରିବାରିକ କ୍ଷେତ୍ରରେ ଦୁର୍ଯ୍ୟୋଧନ ଅନମନୀୟ ହୋଇଥିଲେ ମଧ୍ୟ, ରାଜାଦେଶ ତାଙ୍କୁ

ନମନୀୟ ଓ ଶୃଙ୍ଖଳିତ କରିପାରିଥାନ୍ତା । ରାଜାଦେଶକୁ ଲଂଘନ କରିବାର ଶକ୍ତି ଆର୍ଯ୍ୟାବର୍ତ୍ତରେ କାହାରନାହିଁ । ଆପଣ ସ୍ନେହଶୀଳ ପିତା ହିସାବରେ ଯୁବରାଜଙ୍କର ସମସ୍ତ ଦୋଷ, ଦୁର୍ବଳତା ସଂଶୋଧନ କରିପାରିଥାନ୍ତେ । କିନ୍ତୁ ତାର ଅପବ୍ୟବହାର ହେଲା । ରାଜଶକ୍ତି ପ୍ରୟୋଗ କରିଥିଲେ ସେ ଠିକ୍ ବାଟକୁ ଆସି ପାରିଥାନ୍ତେ । ତାହା ମଧ୍ୟ ଆପଣ କଲେ ନାହିଁ । ବର୍ତ୍ତମାନ କାନ୍ଦିବାର କି ମୂଲ୍ୟ ଅଛି । କୁରୁ ସମ୍ରାଟ ଚାହିଁଲେ ଏବେ ମଧ୍ୟ ମହାପ୍ରଳୟକୁ ରୋକି ଦେଇ ପାରିବେ । ଯାହା ଘଟିବ ତାକୁ ଯଦି ଘଟିବାକୁ ଦିଆଯିବ ତେବେ ଧୈର୍ଯ୍ୟର ସହିତ ସବୁ ସହ୍ୟ କରିବାକୁ ହେବ । ଆଗକୁ ଅନେକ ଦାରୁଣ ଘଟଣା ଘଟିବାର ଅଛି । ତାହାକୁ ସମ୍ମୁଖୀନ ହେବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ । ଆପଣ ସେଇ ସର୍ବ ନିୟନ୍ତାଙ୍କ ପରମ ପଦରେ ସବୁ ସମର୍ପଣ କରିଦିଅନ୍ତୁ ରାଜନ ! ମାନସିକ ଶାନ୍ତି ମିଳିବ ।

ଧୃତରାଷ୍ଟ୍ର କାନ୍ଦି କାନ୍ଦି କହିଲେ, 'କୁହ ଯୁଦ୍ଧ ଭୂମିରେ କଣ ଘଟୁଛି । ଖାଲି ତ ଦୁଃସମ୍ବାଦ...ଦୁଃସମ୍ବାଦ । ସତରେ କଣ ସୁସମ୍ବାଦ ମିଳିବ ନାହିଁ ସଞ୍ଜୟ ।'

ସଂଜୟ କହିଲେ, ''ଦ୍ରୋଣାଚାର୍ଯ୍ୟ ପାଣ୍ଡବ ସୈନ୍ୟମାନଙ୍କୁ ପୋକମାଛି ପରି ମାରୁଛନ୍ତି । ସାତ୍ୟକିଙ୍କ ସହିତ ତାଙ୍କର ଭୟଙ୍କର ଲଢ଼େଇ ଚାଲିଛି । ଧୃଷ୍ଟଦ୍ୟୁମ୍ନ, ଦ୍ରୌପଦୀଙ୍କର ପୁଅମାନେ ଭୀମଙ୍କ ସହିତ ଆସି ସାତ୍ୟକିଙ୍କୁ ସାହାଯ୍ୟ କଲେଣି । ତଥାପି ଦ୍ରୋଣାଚାର୍ଯ୍ୟଙ୍କୁ ଦବାଇ ପାରୁନାହାନ୍ତି ।

''ନା...ନା... କେହି ଦବାଇ ପାରିବେ ନାହିଁ ସଂଜୟ । ଠିକ୍ ଭାବରେ ଯୁଦ୍ଧକଲେ କେହି ଦବାଇ ପାରିବେ ନାହିଁ । ''ହଁ, ତା'ପରେ କଣ ହେଲା ?''

'ପୁଣି ଅସୁବିଧା ହୋଇଗଲା, ମହାରାଜ ! ଶିଖଣ୍ଡୀ ଠିକ୍ ଏତିକି ବେଳେ ଆସି ପହଞ୍ଚିଛନ୍ତି । ଭୀଷ୍ମଦେବ ତାଙ୍କୁ ଦେଖିବାକ୍ଷଣି ଅସ୍ତ୍ର ସମ୍ବରଣ କଲେ । ସେତ ପ୍ରତିଜ୍ଞା କରିଛନ୍ତି ନାରୀ ସହିତ ଯୁଦ୍ଧ କରିବେ ନାହିଁ । ଠିକ୍ ବେଳରେ ଦ୍ରୋଣାଚାର୍ଯ୍ୟ ଶିଖଣ୍ଡୀଙ୍କୁ ପ୍ରତିରୋଧ କଲେ । ଭୀଷ୍ମଦେବଙ୍କୁ ସେ ଆଉ ଅନୁସରଣ କରି ପାରିଲେ ନାହିଁ । ଦ୍ରୋଣଙ୍କ ତୀରମାଡ଼ରେ ବ୍ୟତିବ୍ୟସ୍ତ ହୋଇ ଅନ୍ୟ ଦିଗକୁ ପଳାଇଛନ୍ତି ଶିଖଣ୍ଡୀ ।

'ଏଇତ, ଅଭିମନ୍ୟୁ ଓ ଦୁର୍ଯ୍ୟୋଧନଙ୍କ ପୁତ୍ର ଲକ୍ଷ୍ମଣଙ୍କ ମଧ୍ୟରେ ଭୀଷଣ ଲଢ଼େଇ ଚାଲିଛି । ଦୁଇ ତରୁଣ ବୀରଙ୍କର ଯୁଦ୍ଧ, ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଛି । ସମସ୍ତେ ଉପଭୋଗ କରୁଛନ୍ତି । ଅଭିମନ୍ୟୁ ଲକ୍ଷ୍ମଣଙ୍କ ରଥ ଭାଙ୍ଗିଦେଲେ । ତାଙ୍କ ସାରଥି ଓ ଅଶ୍ୱମାନଙ୍କୁ ହତ୍ୟାକଲେ । କୃପାଚାର୍ଯ୍ୟ ଆଖି ପିଛୁଳାକେ ଆସି ନିଜରଥରେ ଉଠାଇନେଉଛନ୍ତି ଲକ୍ଷ୍ମଣଙ୍କୁ ।'

ଭୀଷ୍ମ ପୁଣି ଫେରିଛନ୍ତି । ଖୁବ୍ ଦୂରରେ ସାତ୍ୟକିଙ୍କ ସହିତ ତାଙ୍କର ସଂଘର୍ଷ ଚାଲିଛି ।

ସାତ୍ୟକିଙ୍କ ଦଶପୁଅଙ୍କ ସହିତ ଭୂରିଶ୍ରବାଙ୍କର ଯୁଦ୍ଧ ଚାଲିଛି । ମହାନ୍ ବୀର ଭୂରିଶ୍ରବା ଏଯୁଦ୍ଧକୁ ପିଲାଖେଳ ପରି ଗ୍ରହଣ କରିଛନ୍ତି । ସତେ ଯେପରି ଚାଲିଛି ଦଳେ ପିଲାଙ୍କ ସହିତ ରଣକ୍ରୀଡ଼ା । ଆଃ...ଆଖି ଦେଖି ପାରୁନି... ଦଶଟିଯାକ ତରୁଣଯୁବକ ରଣଭୂମିରେ ଟଳିପଡ଼ିଲେ ।''

''ହା....ହାଃ....ହାଃ..... ! ହଁ ତା'ପରେ କଣ ହେଲା ସଂଜୟ ?''

'ପୁତ୍ରଶୋକରେ ଅଧୀର ହୋଇ ସାତ୍ୟକି ଭୂରିଶ୍ରବାଙ୍କ ଉପରକୁ ଝାମ୍ପ ଦେଲେ । ଦୁଇ ମହାନ୍ ଯୋଦ୍ଧାଙ୍କ ମଧ୍ୟରେ ଭୀଷଣ ଲଢ଼େଇ ଚାଲିଛି । ହଠାତ୍ ଆସି ପହଞ୍ଚିଗଲେ ଭୀମସେନ । ସାତ୍ୟକିଙ୍କୁ ନିଶ୍ଚିତ ବିପଦରୁ ରକ୍ଷାକରିଦେଲେ ।'

ଅପରାହ୍ନର ଯୁଦ୍ଧ ସବୁଠାରୁ ଭୟଙ୍କର । ଅର୍ଜୁନ ଦୁର୍ଯ୍ୟୋଧନଙ୍କର ଅଜସ୍ର ସୈନ୍ୟ ବଳକୁ ହତ୍ୟା ଓ ହୀନବଳ କରିଦେଲେ । ପ୍ରାୟ କୋଡ଼ିଏହଜାର ସୈନ୍ୟ ଅର୍ଜୁନଙ୍କ କ୍ରୋଧର ଶିକାର ହେଲେଣି । ଭୀଷ୍ମଦେବ ବିଚଳିତ ହୋଇ ଉଠିଲେ ।''

''କଣ ହେଲା ! ଏକକାଳୀନ କୋଡ଼ିଏ ହଜାର ସୈନ୍ୟ ? ଗୋଟାଏ ଅର୍ଜୁନଙ୍କୁ ପାରିଲେନି ? ସେମାନେ ସୈନ୍ୟ ନା ଶୃଗାଳ ??? ଗର୍ଜି ଉଠିଲେ ଧୃତରାଷ୍ଟ୍ର । ଠିକ୍ ଏତିକିବେଳେ ସୂର୍ଯ୍ୟଦେବ ବାରୁଣୀ ଆକାଶକୁ ସ୍ପର୍ଶ କଲେ । ଭୀଷ୍ମଦେବ ଯୁଦ୍ଧ ବିରତି ଘୋଷଣା କଲେ । ପଞ୍ଚମ ଦିନ ଯୁଦ୍ଧ ସମାପ୍ତ ହେଲା ।

# ।। ଷଷ୍ଠଦିନ ଯୁଦ୍ଧ ।।

ମହାଭାରତ ଯୁଦ୍ଧର ଆଜି ଷଷ୍ଠ ଦିବସ ।

ପାଣ୍ଡବମାନେ ଆଜି କୁମ୍ଭୀର ବ୍ୟୂହ ରଚନା କରିଛନ୍ତି । ଏହାର ମସ୍ତକ ଭାଗରେ ଅଛନ୍ତି ଅର୍ଜୁନ ଓ ପାଞ୍ଚାଳ ରାଜା ଦ୍ରୁପଦ । ନକୁଳ ସହଦେବ ଭୀମସେନ ତାର ପୁଚ୍ଛ । ଘଟୋତ୍କଚ ଏବଂ ସାତ୍ୟକି ଅଛନ୍ତି ଉଭୟ ପାର୍ଶ୍ୱରେ । ଅନ୍ୟମାନେ ରହିଛନ୍ତି ଶରୀରକୁ ବେଷ୍ଟନକରି । ସୈନ୍ୟସଜ୍ଜା ଠିକ୍ କୁମ୍ଭୀରଟିଏ ପରି ଦେଖାଯାଉଛି ।

କୌରବ ପକ୍ଷ 'ବକବ୍ୟୂହ' ରଚନା କରିଛନ୍ତି । ଭୀଷ୍ମ ଏହାର ଥଣ୍ଟ ଭାଗରେ ଅଛନ୍ତି, ଦ୍ରୋଣାଚାର୍ଯ୍ୟଙ୍କ ସହିତ କୃପାଚାର୍ଯ୍ୟ ଏବଂ ଅଶ୍ୱତ୍ଥାମା ଦୁଇଚକ୍ଷୁ । କୃତବର୍ମା ତାର ମସ୍ତକ । ବହ୍ଲିକ ଓ କମ୍ବୋଜର ରାଜା ଏହାର ଗଳା ଭାଗରେ ଅଛନ୍ତି । ଦୁର୍ଯ୍ୟୋଧନ ଓ ତାଙ୍କର ଭାଇମାନେ ଉଦର ଭାଗରେ ଅବସ୍ଥିତ । ବିନ୍ଦ, ଅନୁବିନ୍ଦ ଓ ସୁଶର୍ମା ଏହାର ଡାହାଣ ଓ ବାମ ଡେଣାରୂପେ ରହିଛନ୍ତି ।

ଶଙ୍ଖବାଜିଲା ! ଦ୍ରୋଣାଚାର୍ଯ୍ୟ ପ୍ରଥମେ ଯୁଦ୍ଧ ଆରମ୍ଭ କଲେ । ଭୀମସେନ ତାଙ୍କୁ ପ୍ରତିରୋଧ କଲେ । ଦ୍ରୋଣ ଓ ଭୀମଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଚାଲିଲା । ଗୁରୁ ଶିଷ୍ୟ ମଧ୍ୟରେ ଯୁଦ୍ଧ । କେହି କାହାକୁ ଊଣା ନୁହଁନ୍ତି । ଦ୍ରୋଣ ଭୀମଙ୍କୁ ବ୍ୟତିବ୍ୟସ୍ତ କରି ଦେଲେଣି । ଭୀମ, ତୀରମାଡ଼ରେ ଦ୍ରୋଣଙ୍କର ସାରଥିକୁ ମାରିଦେଲେ । ଏଇତ, ଦ୍ରୋଣ ନିଜେ ରଥଚାଳନା କରି ମାଡ଼ି ଯାଉଛନ୍ତି ପ୍ରଳୟ ପରି । ଭୀଷ୍ମଦେବ ଆସି ତାଙ୍କ ସହିତ ମିଶିଲେଣି । କୌରବ ସୈନ୍ୟମାନଙ୍କ କବଳରେ ପଡ଼ିଗଲେ, ଭୀମ ।

''ଚମତ୍କାର...ଚମତ୍କାର ସଂଜୟ । ଭୀମକୁ ସମସ୍ତେ ବେଢ଼ିଗଲେଣିତ । ଏଇଟା ଚରମ ଘଡ଼ି ସନ୍ଧି ମୁହୂର୍ତ୍ତ । ଭଲକରି ଧ୍ୟାନଦିଅ । ଦେଖ କଣ ହେଉଛି । କିଛି ଛାଡ଼ନି । ଟିକି ନିଖି ସବୁ ବିବରଣୀ ମୋତେ ଜଣାଅ ।'' କହିଲେ କୁରୁରାଜ ଧୃତରାଷ୍ଟ୍ର ।

''ରାଜନ୍ ! ମୁଁ ସତର୍କଅଛି । ଆପଣ ସ୍ଥିର ହୋଇ ସବୁକଥା ଶୁଣନ୍ତୁ । ମନକୁ ବିଚଳିତ କରନ୍ତୁ ନାହିଁ । ଭାବନା ଓ ଘଟଣା ଭିତରେ ସାମଞ୍ଜସ୍ୟ ନ ରହିପାରେ । ମନ ଖୋଲା ରହିଲେ ବିବରଣୀ ଠିକ୍ ଭାବରେ ଗ୍ରହଣୀୟ ହେବ ।''

'ଉଭୟ ପକ୍ଷର ବ୍ୟୂହ ଭାଙ୍ଗି ଗଲାଣି । ଆବଶ୍ୟକତାକୁ ଚାହିଁ, ପରିସ୍ଥିତିକୁ ନେଇ ସୈନ୍ୟଚାଳନା କରା ଯାଉଛି । ଦ୍ରୋଣାଚାର୍ଯ୍ୟ ପାଣ୍ଡବ ପକ୍ଷ'ର ବହୁକ୍ଷତି କଲେଣି । ପାଣ୍ଡବ ସୈନ୍ୟମାନେ, ନିଆଁରେ ପତଙ୍ଗ ଝାସ ଦେଲାପରି ଝଡ଼ି ପଡୁଛନ୍ତି । ମାଡ଼ି ଆସୁଛନ୍ତି ଦୁର୍ଯ୍ୟୋଧନଙ୍କ ଭାଇମାନେ । ସେମାନଙ୍କର ଲକ୍ଷ୍ୟ, ଭୀମ

ବର୍ତ୍ତମାନ କକ୍ଷଚ୍ୟୁତ ହୋଇଛନ୍ତି । ସମସ୍ତେ ଚତୁର୍ଦ୍ଦିଗରୁ ବେଢ଼ିଯାଇ ଭୀମଙ୍କୁ ପାଣ୍ଡବ ସେନା ବାହିନୀଠାରୁ ଅଲଗା କରି ଦେବେ । ଭୀମଙ୍କର ଭୀମବଳ ମଉଳିଯିବ । ଶେଷରେ ତାଙ୍କୁ ସେମାନେ ହତ୍ୟା କରିବେ ।

''ସଂଜୟ ! ଯୁଦ୍ଧ ଭୂମିରେ ଏତେ ବିଚାର କରି ପାଗ ବାନ୍ଧିବାକୁ କଣ ସମୟ ଅଛି ? ଆଖି ପିଛୁଳାକେ ମାଡ଼ିଯାଉ ନାହାନ୍ତି କାହିଁକି ? ସୁଯୋଗ ହାତଛଡ଼ା ହୋଇଯିବ । ଯାଆନ୍ତୁ... ମାଡ଼ି ଯାଆନ୍ତୁ । ଭ୍ରାତୃହତ୍ୟାର ପ୍ରତିଶୋଧ ନିଅନ୍ତୁ ।''

''ରାଜନ୍ ! ଯାହା ଘଟୁଛି ସଦ୍ୟ ସମ୍ବାଦ ଶୁଣନ୍ତୁ । ଭୀମସେନ କୌରବ ଭାଇମାନଙ୍କର ମନକଥା ବୁଝିପାରିଲେ ବୋଧହୁଏ । ସେ ତାଙ୍କର ସାରଥି 'ବିଶୋକଙ୍କୁ କହୁଛନ୍ତି । ବିଶୋକ ! ତୁମେ ଏଇଠାରେ ଥାଅ । ଦୁଃଶାସନ, ଦୁର୍ମୁଖ, ଦୁର୍ବିସହ ପ୍ରଭୃତି କୌରବଭାଇମାନେ ମୋରି ଆଡ଼କୁ ମୁହାଁଇ ଲେଣି । ମୋତେ ଘେରାଉ କରି ହତବଳ କରିଦେବେ ବୋଲି ବୋଧହୁଏ ମସୁଧା କରିଛନ୍ତି । ତୁମେ ଆବଶ୍ୟକ ସମୟରେ ମୋ ପାଖକୁ ଯିବ । ମୁଁ ମୋ ଗଦାନେଇ ତାଙ୍କ ସହିତ ଯୁଦ୍ଧ କରିବି । ମାଡ଼ି ଆସୁଥିବା ରଥ ଓ ରଥୀଙ୍କୁ ବାଡ଼େଇ ପକାଇଲେ ତାଙ୍କ ଅଣ୍ଟ ଭାଙ୍ଗିଯିବ । ଆଦୌ ଭୟକରିବନି । ମୁଁ ତାଙ୍କୁ ଶେଷ କରିଦେବି ।'

ମାଡ଼ିଆସିଲେଣି କୌରବ ଭାଇମାନେ । ଭୀମ ସେମାନଙ୍କ ସହିତ ଭୀଷଣ ଯୁଦ୍ଧରେ ମାତିଛନ୍ତି । ସେମାନଙ୍କ ମିଳିତ ଶକ୍ତି ଓ ଭୀମଙ୍କର ଏକକ ଶକ୍ତି । ଭୀମଙ୍କ ଗଦାମାଡ଼ରେ କୌରବ ସୈନ୍ୟ ଓ ଦୁର୍ଯ୍ୟୋଧନଙ୍କ ଭାଇମାନେ ଅସ୍ତବ୍ୟସ୍ତ ହୋଇଗଲେଣି । ସେମାନେ ମଧ୍ୟ ଭୀମଙ୍କୁ ଦୋହଲାଇ ଦେଲେଣି । କେତେଯେ ସୈନ୍ୟ ମରୁଛନ୍ତି, ରଥ ଭାଙ୍ଗୁଛି, ଅଶ୍ୱମାନେ ମରି ପଡୁଛନ୍ତି କଳନା କରି ହେଉନାହିଁ ।

ଧୃଷ୍ଟଦ୍ୟୁମ୍ନ ଭୀମଙ୍କ ରଥକୁ ନଦେଖି ବ୍ୟସ୍ତ ହୋଇ ପଡ଼ିଲେ । ଦୂରରୁ ଲକ୍ଷ୍ୟକଲେ ଶତ୍ରୁ ସୈନ୍ୟମାନଙ୍କ କବଳରେ ବୋଧହୁଏ ଭୀମସେନ ପଡ଼ି ଯାଇଛନ୍ତି; ରଥ ଶୂନ୍ୟ ଦେଖାଯାଉଛି । ଭୀମ ତା'ହେଲେ ଗଲେକୁଆଡ଼େ ? କୌରବମାନେ କଣ ବନ୍ଦି କରି ନେଲେ ? ସେ ବିଚଳିତ ହୋଇ ରଥ ଛୁଟାଇଲେ ଭୀମଙ୍କ ରଥ ପାଖକୁ ।

''ବିଶୋକ ! ଭୀମ ସେନ କାହାନ୍ତି ?

''ହେ ଦ୍ରୁପଦ ରାଜ ! ସେ ରଥରୁ ଓହ୍ଲାଇ ଗଦାଧରି କୌରବ ମାନଙ୍କ ସହିତ ଲଢୁଛନ୍ତି । ତାଙ୍କ ପାଖରେ ପାଣ୍ଡବ ପକ୍ଷର ଅନ୍ୟ କେହି ନାହାନ୍ତି । ଆପଣ ଶୀଘ୍ର ତାଙ୍କୁ ସହାୟତା ଦିଅନ୍ତୁ ।''

ଧୃଷ୍ଟଦ୍ୟୁମ୍ନ ଆଖି ପିଛୁଳାକେ ଆଗେଇଲେ । ସଦ୍ୟମୃତ ସୈନ୍ୟମାନଙ୍କୁ ଲକ୍ଷ୍ୟ କରି ସେ ଭୀମଙ୍କ ପାଖକୁ ଯିବା ପାଇଁ ବାଟ ପାଇଗଲେ । ଦେଖିଲେ କୌରବ ଭାଇମାନେ ତାଙ୍କୁ ବେଢ଼ି ଯାଇଛନ୍ତି । ସେମାନଙ୍କ ଚକ୍ରବ୍ୟୂହ ଭିତରେ ପଡ଼ି ଯାଇଛନ୍ତି ଭୀମସେନ । ଗଦା ମାଡ଼ରେ ସେ ଚତୁଃ ସୀମାକୁ ସୁରକ୍ଷା କରୁଛନ୍ତି । ଧୃଷ୍ଟଦ୍ୟୁମ୍ନ ବ୍ୟୂହ ଭଙ୍ଗକରି ତାଙ୍କ ପାଖରେ ପହଞ୍ଚିଲେ । ଭୀମଙ୍କର ମନୋବଳ ବଢ଼ିଗଲା ସେ ଆଉରି ବୀରଦର୍ପରେ ମାଡ଼ି ଆସୁଛନ୍ତି । କୌରବ ଭାଇ ମାନଙ୍କର ରଣ କୌଶଳ ବ୍ୟର୍ଥ ହୋଇଗଲା ।

ଦୁର୍ଯ୍ୟୋଧନ ସେମାନଙ୍କର ଦୁଃସ୍ଥିତି ଦେଖି, ସୈନ୍ୟବଳ ନେଇ ସେମାନଙ୍କ ପାଖକୁ ଆଗେଇ ଆସିଲେ । ସମସ୍ତେ ମିଶି ଭୀମ ଓ ଧୃଷ୍ଟଦ୍ୟୁମ୍ନଙ୍କୁ ଆକ୍ରମଣ କଲେ । ଭାରସାମ୍ୟ ରହିଲାନାହିଁ । ଧୃଷ୍ଟଦ୍ୟୁମ୍ନ ସେମାନଙ୍କ ଉପରକୁ ଏକ ମୋହାସ୍ତ୍ର ପ୍ରୟୋଗ କଲେ । ଜାଣିପାରିଲେ ଦୁର୍ଯ୍ୟୋଧନ । ସେ ଏହି ଅସ୍ତ୍ରକୁ ଅକାମି କରିଦେବା ପାଇଁ ଅନ୍ୟ ଏକ ଅସ୍ତ୍ରନିକ୍ଷେପ କଲେ । ଫଳରେ କୌରବମାନେ ରକ୍ଷାପାଇଗଲେ । ଭାଇମାନଙ୍କୁ ନେଇ ସେ ଅଦମ୍ୟ ଉତ୍ସାହ ମଧ୍ୟରେ ଯୁଦ୍ଧକଲେ । ସୁଯୋଗ ମିଳିଛି, ସେ ଭୀମଙ୍କୁ ପାଖରେ ଏକାକି ପାଇଛନ୍ତି । ନିଭୃତ ଅଭିଳାଷ ପୂରଣ କରିବେ ।''

ଭୀଷଣ ଯୁଦ୍ଧ ଚାଲିଲା । ଏଇତ, ଭୀମ ଓ ଦୁର୍ଯ୍ୟୋଧନ ମୁହାଁ ମୁହିଁ ହୋଇଗଲେଣି । ଗଦାଯୁଦ୍ଧ ଉଭୟଙ୍କ ମଧ୍ୟରେ ଚାଲିଛି ଭୀଷଣରୁ ଭୀଷଣତର ହୋଇ । ଦୁଇ ମହାରଥୀଙ୍କ ଭିତରେ ଯୁଦ୍ଧ । ଦୁର୍ଯ୍ୟୋଧନ ସୁଯୋଗ ବଳୟ ଭିତରେ ଅଛନ୍ତି । ଭୀମ କିନ୍ତୁ....

''ସେ 'କିନ୍ତୁ' କଥା କୁହନାହିଁ ସଂଜୟ । ସବୁ କିନ୍ତୁର ସମାଧି ଏଇଥର ହୋଇ ଯିବ । ଦୁର୍ଯ୍ୟୋଧନ ତାକୁ ଛାଡ଼ିବନି । ତାର ଭାଇମାନେ ସମସ୍ତେ ମିଶି ଯାଇଛନ୍ତି । ମହାସ୍ରୋତରେ ଏକ ହୋଇ ଯାଇଛନ୍ତି ଭୀମକୁ ଶେଷ ଶିକ୍ଷା ଦେବାପାଇଁ । ହଁ, ତାପରେ କଣ ହେଲା କୁହ ।

ସଂଜୟ କହିଲେ ରାଜନ୍ ! ସେ ପ୍ରଳୟଙ୍କର 'କିନ୍ତୁ' ଟାକୁ ସିନା ଆପଣ ଶୁଣିଲେ ନାହି ସେଇଠାରେ ପରିସ୍ଥିତି ଭିନ୍ନମୋଡ଼ ନେଇଛି । ମହାଭାରତ ଯୁଦ୍ଧର ଗୋଟାଏ ଗୋଟାଏ 'କିଁନ୍ତୁ' କେତେ ଯେ ଭୟଙ୍କର ତାହା ଭଲରୂପେ ଜାଣିବା ଉଚିତ । ଭୀମଙ୍କ ଗଦାମାଡ଼ରେ ଦୁର୍ଯ୍ୟୋଧନଙ୍କ ସାରଥିର ମୃତ୍ୟୁ ହୋଇଛି । ରଥ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯାଇଛି ।'

''ଭାଙ୍ଗୁ... ଭାଙ୍ଗୁ ସେ ରଥ । ମରୁପଛେ ସେ ସାରଥି । ମୋ ଦୁର୍ଯ୍ୟୋଧନର କିଛି ହୋଇ ନାହିଁତ ?'' ଗଭୀର ଉଦ୍‌ବେଗ ଭିତରେ ପଚାରିଲେ ଧୃତରାଷ୍ଟ୍ର ସଂଜୟଙ୍କୁ ।

''ନା...ନା... କିଛି ହୋଇନାହିଁ । ରକ୍ଷାପାଇ ଯାଇଛନ୍ତି କୃପାଚାର୍ଯ୍ୟଙ୍କ ପାଇଁ । ସେ ଚିଲପରି ଆସି ଉଠାଇ ନେଲେ ଦୁର୍ଯ୍ୟୋଧନଙ୍କୁ, ନିଜ ରଥ ଉପରକୁ । ଭୀମଙ୍କର କାଳଦୃଷ୍ଟିରୁ ତାଙ୍କୁ ଦୂରେଇ ଦେଲେ । ରକ୍ଷାହୋଇଗଲା, ରକ୍ଷା ହୋଇଗଲା । ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ ରାଜନ ।

''ସଂଜୟ ! ସେପରି କୁହନାହିଁ । ଦୁର୍ଯ୍ୟୋଧନ ଭୀମକୁ ଡରି ଆତ୍ମରକ୍ଷା କରିନାହିଁ । ତାର ମଧ୍ୟ କାଳଦୃଷ୍ଟି ଅଛି । ସେ ମହାକାଳ ...ମହାକାଳ । ଭୀମକୁ ନିଶ୍ଚୟ କାଳଗର୍ଭକୁ ପଠାଇବ । ଆଚ୍ଛା, ତାପରେ କଣ ହେଲା ?''

ଧୃଷ୍ଟଦ୍ୟୁମ୍ନ ପୁଣି ମୋହାସ୍ତ୍ର ଛାଡ଼ି କୌରବ ସୈନ୍ୟମାନଙ୍କୁ ସଂଜ୍ଞାହରା କରିଦେଲେଣି । ଦ୍ରୋଣାଚାର୍ଯ୍ୟ 'ଚେତନ' ବାଣ ପ୍ରୟୋଗ କରି ସେମାନଙ୍କର ଚେତା ଫେରାଇ ଆଣିଲେଣି । ସେମାନେ ଉଠିଲେଣି ଅମିତ ଶକ୍ତି ଓ ସାମର୍ଥ୍ୟ ନେଇ । ପୁଣି ଘମାଘୋଟ ଯୁଦ୍ଧ ଚାଲିଛି । ଜୟଦ୍ରଥ ଆସି ଭୀମଙ୍କୁ ଆକ୍ରମଣ କଲେଣି । ଅଭିମନ୍ୟୁଙ୍କ ସହିତ କୁରୁରାଜକୁମାରମାନେ ଯୁଦ୍ଧ କରୁଛନ୍ତି । ଅଭିମନ୍ୟୁଙ୍କୁ ସହାୟତା ଦେଉଛନ୍ତି ଶତାନିକ, ନକୁଳଙ୍କ ପୁତ୍ର ।'

'ଭୀଷ୍ମଦେବ ଓ ଅର୍ଜୁନଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଚାଲିଛି ଖୁବ୍ ଦୂରରେ ଉଭୟପକ୍ଷର ବହୁ ସୈନ୍ୟ ମୃତାହତ ହେଲେଣି । ସୂର୍ଯ୍ୟ ଦେବ ଅସ୍ତାଚଳଗାମୀ । ଭୀଷ୍ମଦେବ ଶଙ୍ଖନାଦ କରି ଯୁଦ୍ଧ ବିରତି ଘୋଷଣା କଲେ । ସମସ୍ତେ ନିଜ ନିଜର ଶିବିରକୁ ଫେରିଗଲେ ।'

ରାତ୍ରିର ଅନ୍ଧକାର ଭିତରେ ଦୁର୍ଯ୍ୟୋଧନ ପିତାମହଙ୍କ ପାଖକୁ ଯାଇ ଭୀମ ସୃଷ୍ଟିକରିଥିବା କ୍ଷତସବୁ ଦେଖାଇଲେ । ପିତାମହ ନିଜେହାତ ଧରି ଔଷଧ ଲଗାଇ ଦେଇ ତାଙ୍କୁ ଯନ୍ତ୍ରଣା ମୁକ୍ତକଲେ । ଦୁର୍ଯ୍ୟୋଧନ କହିଲେ, ''ପିତାମହ ! ଆପଣ ମୋର ଏକମାତ୍ର ଆଶା ଭରସା । ଆପଣଙ୍କ ଶକ୍ତି ଉପରେ ମୁଁ ମହାଭାରତ ଯୁଦ୍ଧର ସଫଳତା ଆଶାକରିଛି । ପାଣ୍ଡବମାନଙ୍କୁ ପରାସ୍ତ କରିବାକୁ ହେବ । ମୋତେ ଏତିକି ଅଭୟ ଓ ଆଶୀର୍ବାଦ ଦିଅନ୍ତୁ ।

ପିତାମହ ତାଙ୍କୁ ଆଶ୍ୱସନା ଦେଲେ ।

# ।। ସପ୍ତମ ଦିନ ଯୁଦ୍ଧ ।।

ଦୁର୍ଯ୍ୟୋଧନ ଉଲ୍ଲସିତ ଦେଖା ଯାଉଛନ୍ତି । ପିତାମହ ପୂର୍ବଦିନ ଦେଇଥିବା ପ୍ରେରଣା ଆଜି ତାଙ୍କୁ ପଲ୍ଲବିତ କରିଛି । ଯୁଦ୍ଧ ଭୂମିରେ ଉଭୟପକ୍ଷର ସୈନ୍ୟଗଣ ପହଞ୍ଚିଗଲେଣି । ଭୀଷ୍ମଦେବ ତାଙ୍କର ସୈନ୍ୟମାନଙ୍କୁ ନେଇ ରଚନା କରିଛନ୍ତି 'ବୃତ୍ତବ୍ୟୂହ' । ପ୍ରତ୍ୟେକ ଯୁଦ୍ଧ ହସ୍ତୀରେ, ଅସ୍ତ୍ର ଶସ୍ତ୍ର ସୁସଜ୍ଜିତ ସାତଟି ରଥ ଖଞ୍ଜାଯାଇଛି । ଅଛନ୍ତି ଅଶ୍ୱାରୋହୀ ଓ ଢ଼ାଲଧାରୀ ସୈନିକଗଣ । ଦୁର୍ଯ୍ୟୋଧନ ବୃତ୍ତବ୍ୟୂହର କେନ୍ଦ୍ରରେ ଅଛନ୍ତି ।

''ଆଜିର ସଜ୍ଜୀକରଣ ଖୁବ୍ ଚମତ୍କାର ହୋଇଛି ସଂଜୟ । ମୁଁ ଆଶାକରୁଛି କୌରବମାନଙ୍କୁ ଏହା ଯଥେଷ୍ଟ ଲାଭବାନ କରାଇବ । ଆଚ୍ଛା ପାଣ୍ଡବମାନେ କି ବ୍ୟୂହ ରଚନା କରିଛନ୍ତି । ତାଙ୍କ ପାଖରେତ ଶ୍ରୀକୃଷ୍ଣ ଅଛନ୍ତି, ଚିନ୍ତା କଣ ।'' କହିଲେ ରାଜା ଧୃତରାଷ୍ଟ୍ର ।

''ରାଜନ୍ ! ପାଣ୍ଡବମାନେ ଆଜି ବଜ୍ରବ୍ୟୂହ' ରଚନା କରିଛନ୍ତି । କୌରବମାନଙ୍କର ଚକ୍ରବ୍ୟୂହକୁ ଭେଦ କରିବାପାଇଁ ଏହା ସମର୍ଥ ହୋଇ ପାରିବ ବୋଲି ଯୁଧିଷ୍ଠିରଙ୍କର ଧାରଣା ।''

ଏଇତ, ଭୀଷ୍ମଦେବ ଶଙ୍ଖ ବଜାଇ ଦେଲେ । ଯୁଦ୍ଧ ଆରମ୍ଭ ହୋଇଗଲା । ବ୍ୟୂହ ଭେଦକରି ସୈନ୍ୟମାନେ ଆଗେଇଗଲେ । ରଣଭୂମିର ବିଭିନ୍ନ ସ୍ଥାନରେ ଉଭୟପାଖରେ ବୀର ମାନଙ୍କ ଭିତରେ ଲଢ଼େଇ ଚାଲିଛି ।

ବିରାଟ ରାଜାଙ୍କର ଦୁଇପୁତ୍ର ଉତ୍ତର ଓ ଶ୍ୱେତ ପ୍ରଥମ ଦିନର ଯୁଦ୍ଧରେ ମରିଥିଲେ । ଆଜି ଦ୍ରୋଣାଚାର୍ଯ୍ୟ ଓ ବିରାଟ, ଅଶ୍ୱତ୍ଥାମା ଓ ଶିଖଣ୍ଡୀ, ଦୁର୍ଯ୍ୟୋଧନ ଓ ଧୃଷ୍ଟଦ୍ୟୁମ୍ନ, ମଦ୍ରରାଜ ଶଲ୍ୟଙ୍କ ସହିତ ତାଙ୍କ ଦୁଇ ଭଣଜା ନକୁଳ ସ ସହଦେବ, କୃତବର୍ମା ଓ ଭୂରିଶ୍ରବା, ଅଭିମନ୍ୟୁ ଓ ଦୁଃଶାସନ, ଭଗଦତ୍ତ ଓ ଘଟୋତ୍କଚଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ଆରମ୍ଭ ହୋଇଛି ।

କୃପାଚାର୍ଯ୍ୟ ଓ ଯୁଧିଷ୍ଠିର ସମ୍ମୁଖ ଯୁଦ୍ଧରେ ମାତିଛନ୍ତି ।

ଅର୍ଜୁନ ଦେଖିଲେ, କୌରବ ଓ ତ୍ରିଗର୍ତ୍ତ ସେନ୍ୟମାନେ ପବନ ବେଗରେ ମାଡ଼ି ଆସୁଛନ୍ତି ତାଙ୍କରି ଆଡ଼କୁ, ବୋଧହୁଏ ତାଙ୍କୁ ଘେରିଯାଇ ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ କରିଦେବେ । ସେ ଶ୍ରୀକୃଷ୍ଣଙ୍କୁ କହିଲେ, ''ସଖା ! ସେଇଆଡ଼କୁ ରଥଚଳାନ୍ତୁ । ମାଡ଼ି ଆସୁଥିବା ସ୍ରୋତର ତଙ୍କ ମୁଁ ମୋଡ଼ିଦିଏ ।'

ରଥ ସେମାନଙ୍କ ଆଡ଼କୁ ମୁହାଁଇଲା । ଅର୍ଜୁନ ସେମାନଙ୍କୁ ଲକ୍ଷ୍ୟକରି ଇନ୍ଦ୍ରାସ୍ତ୍ର ପ୍ରୟୋଗ କଲେ । ତାହାକୁ କେହି ବ୍ୟର୍ଥ କରିପାରିଲେ ନାହିଁ । ଆଖି ପିଛୁଳାକେ ଅଜସ୍ର ସୈନ୍ୟ ମଲେ । କୌରବ ପକ୍ଷର ନାହିଁ ନଥିବା କ୍ଷତି ହେଲା । ଭୀଷ୍ମ ଦେବ ଦୂରରୁ ଏହା ଦେଖି ଅର୍ଜୁନଙ୍କୁ ପ୍ରତିରୋଧ କରିବାପାଇଁ ମାଡ଼ିଆସିଲେ । ଦୁର୍ଯ୍ୟୋଧନ ସୈନ୍ୟ ସହ ଆସି ପହଞ୍ଚିଲେ ଭୀଷ୍ମଦେବଙ୍କ ପାଖରେ । ଅର୍ଜୁନଙ୍କ ଉପରେ ମିଳିତ ଆକ୍ରମଣ ଆରମ୍ଭ ହେଲା । ଅର୍ଜୁନ ଅସୀମ ବୀରତାର ସହିତ ଏହାକୁ ପ୍ରତିରୋଧ କରୁଛନ୍ତି । ପ୍ରଳୟରୂପ ଧାରଣ କରିଛନ୍ତି ଦୁର୍ଯ୍ୟୋଧନ ।

ଦ୍ରୋଣାଚାର୍ଯ୍ୟ ବିରାଟ ରାଜାଙ୍କର ଧନୁର୍ବାଣ ଭାଙ୍ଗିଦେଲେଣି । ତାଙ୍କ ରଥ ଭାଙ୍ଗି ପତାକା ଚିରି ତାକୁ ତଳେ ପକାଇ ଦେଲେଣି । ବିରାଟ, ଉତ୍‌ଫଣ ସାପପରି ଆକ୍ରମଣ କରୁଛନ୍ତି ଦ୍ରୋଣାଚାର୍ଯ୍ୟଙ୍କୁ ।

ସେ ମଧ୍ୟ ଆଚାର୍ଯ୍ୟଙ୍କ ରଥ ଭାଙ୍ଗିଦେଲେଣି । ଅଶ୍ୱତ୍ଥାମା ଆସି ପହଞ୍ଚିଲେ । ତାଙ୍କ ରଥରେ ଚଢ଼ିଗଲେ ଦ୍ରୋଣ । ଉଭୟ, ପିତାପୁତ୍ର ବିରାଟ ରାଜାଙ୍କୁ ଆକ୍ରମଣ କଲେ । ପ୍ରଥମ ଦିନ ଯୁଦ୍ଧରେ ବିରାଟଙ୍କର ଦୁଇପୁତ୍ର ମୃତ୍ୟୁ ଲାଭକରିଥିଲେ । ଆଜି ତାଙ୍କ ପାଖରେ ଅଛନ୍ତି ଅନ୍ୟ ଏକପୁତ୍ର 'ସଙ୍ଖ' । ସେ ତାଙ୍କ ରଥରେ ଚଢ଼ି, ପିତାପୁତ୍ର ଦୁହେଁ ଯୁଦ୍ଧରେ ବ୍ୟାପୃତ ହେଲେ । ସେ ପାଖରେ ପିତାପୁତ୍ର, ଏପାଖରେ ପିତାପୁତ୍ର । ଅନେକ ସମୟଧରି ଲଢ଼େଇ ଚାଲିଛି । ଦ୍ରୋଣଙ୍କ ଅସ୍ତ୍ରାଘାତରେ ସଙ୍ଖ ମୃତ୍ୟୁବରଣ କଲେ ।

ଠିକ୍ ଏତିକିବେଳେ ପହଞ୍ଚିଗଲେ ଶିଖଣ୍ଡୀ । ସେ ଅଶ୍ୱତଥାମାଙ୍କୁ ଆକ୍ରମଣ କଲେ । ଅଶ୍ୱତଥାମା ଶିଖଣ୍ଡୀଙ୍କ ସାରଥିକୁ ମାରି ରଥଭାଙ୍ଗି ଦେଲେ ଓ ତାଙ୍କ ଅସ୍ତ୍ର ସବୁ ଅକାମି କରିଦେଲେ । ସାତ୍ୟକି ପହଞ୍ଚିଯାଇ ଶିଖଣ୍ଡୀଙ୍କୁ ନିଜ ରଥକୁ ନେଇ ଆସିଲେ । ରକ୍ଷାପାଇଗଲେ ଶିଖଣ୍ଡୀ ।

ଏଁ କଣ ହେଲା ! ସେ ମାଇଚିଆଟାକୁ ମାରିଦେଇ ପାରିଲେନି ଅଶ୍ୱତ୍ଥାମା । ଟିକିଏ ଅବହେଳାରେ ସେ ହାତରୁ ଖସିଗଲା ସେଇ ଶିଖଣ୍ଡୀଟା ହେଉଛି ମହାଭାରତ ଯୁଦ୍ଧର ଗୋଟାଏ ଦୁଷ୍ଟବ୍ରଣ । ଭୀଷ୍ମଦେବଙ୍କୁ ସେଇଟା ହିଁ ଯନ୍ତ୍ରଣା ଦେଉଛି । ସେ ବ୍ରଣଟାକୁ କେହି କାଟି ସଫାକରି ଦେଇ ପାରୁନାହାଁନ୍ତି । ଆଚ୍ଛା କୁହ ସଂଜୟ ତାପରେ କଣ ହେଲା ।' ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ କହିଲେ, ରାଜା ଧୃତରାଷ୍ଟ୍ର ।

'ରାଜନ୍ ! ଦୁର୍ଯ୍ୟୋଧନ ଓ ଧୃଷ୍ଟଦ୍ୟୁମ୍ନଙ୍କ ଭିତରେ ଘମାଘୋଟ ଲଢ଼େଇଚାଲିଛି । ଦୁର୍ଯ୍ୟୋଧନଙ୍କ ସାରଥି ମରି ତଳେ ପଡ଼ିଗଲାଣି । ରଥ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲାଣି । ଘୋଡ଼ାମାନେ ମରିଗଲେଣି । ଦୁର୍ଯ୍ୟୋଧନ କିନ୍ତୁ ଅବିଚଳିତ ଭାବରେ ତୀରବର୍ଷଣ କରୁଛନ୍ତି । ଏଇତ, ଶକୁନି ଆସି ପହଞ୍ଚିଗଲେଣି ଦୁର୍ଯ୍ୟୋଧନଙ୍କ ପାଖରେ । ସେ ତାଙ୍କୁ ନିଜ ରଥ ଉପରକୁଟାଣି ନେଉଛନ୍ତି । ତାଙ୍କରି ଆଡ଼କୁ ପ୍ରାଣ ବିକଳରେ ଦଉଡ଼ୁଛନ୍ତି କୃତବର୍ମା । ଭୀମଙ୍କ ଗଦାମାଡ଼ରେ ତାଙ୍କ ସାରଥି ମରିଛି, ରଥ ଭାଙ୍ଗିଛି, ଅଶ୍ୱ ମାନେ ମରିଛନ୍ତି । ସେ ଜୀବନ ବିକଳରେ ପଳାଇ ଆସିଛନ୍ତି ଶକୁନିଙ୍କ ରଥକୁ ।

ଆଉ ଗୋଟିଏ ପାଖରେ ଚାଲିଛି ମାମୁ ଭଣଜାଙ୍କ ଯୁଦ୍ଧ । ମଦ୍ରରାଜ ଶଲ୍ୟଙ୍କ ସାଥିରେ ନକୁଳ ସହଦେବ ଲଢୁଛନ୍ତି । ନକୁଳଙ୍କ ରଥର ଅଶ୍ୱମାନଙ୍କୁ ଶଲ୍ୟ ମାରିଦେଲେ । ରଥ ଆଗେଇ ପାରୁନି । ସେ ପଳାଇ ଆସିଲେ ସହଦେବଙ୍କ ରଥକୁ । ଦୁଇଭାଇ ମାମୁଙ୍କ ଉପରକୁ ପ୍ରାଣଘାତୀ ଅସ୍ତ୍ର ଛାଡ଼ୁଛନ୍ତି । ଘମାଘୋଟ ଲଢ଼େଇ ଚାଲିଛି । ସହଦେବଙ୍କ ତୀରଯାଇ ଶଲ୍ୟଙ୍କ କପାଳ ବିଦ୍ଧ କଲାଣି । ସେ ମୂର୍ଚ୍ଛାପ୍ରାୟ । ସାରଥି, ରଥକୁ ଅନ୍ୟ ଦିଗକୁ ବାହିନେଲାଣି ତାଙ୍କ ପ୍ରାଣରକ୍ଷା ପାଇଁ ।

ଚେକିତାନଙ୍କ ସହିତ କୃପାଚାର୍ଯ୍ୟଙ୍କ ଯୁଦ୍ଧରେ, ବେଶିକ୍ଷତି ହେଲା କୃପାଚାର୍ଯ୍ୟଙ୍କର ।ସେ ତାଙ୍କର ସାରଥି ଓ ରଥ ହରାଇଲେ । ଦ୍ୱନ୍ଦ୍ୱ ଯୁଦ୍ଧରେ ଉଭୟେ ଆଘାତପ୍ରାପ୍ତ ହୋଇ ଚେତାଶୂନ୍ୟ ହୋଇଗଲେ । ଶକୁନି ଆସି କୃପାଚାର୍ଯ୍ୟଙ୍କୁ ଓ ସାତ୍ୟକି ଆସି ଚେକିତାନଙ୍କୁ ନିଜ ରଥରେ ନେଇଗଲେଣି । ଉଭୟେ ରକ୍ଷା ପାଇଗଲେ ।

ଅଳମ୍ବୁଷ ଓ ସାତ୍ୟକିଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଚାଲିଛି । ସାତ୍ୟକିଙ୍କ ଆକ୍ରମଣ ଏତେ ତୀବ୍ର ଯେ, ଅଳମ୍ବୁଷ ତାହାର ସମ୍ମୁଖୀନ ହୋଇ ପାରୁ ନାହାଁନ୍ତି । ସେ ପ୍ରାଣ ବିକଳରେ ପଳାଇଯିବା ବେଳେ ପାଣ୍ଡବପକ୍ଷର ସୈନ୍ୟମାନେ ତାଙ୍କୁ ଗୋଡ଼ାଇଛନ୍ତି ହତ୍ୟା କରିବାପାଇଁ । ଅଚ୍ଛକେ ରକ୍ଷା ପାଇଗଲେ ସେ । କୌରବପକ୍ଷର ସୈନ୍ୟମାନେ ତାଙ୍କୁ ନିଜ ଭିତରକୁ ନେଇଗଲେ ।

ଘଟୋତ୍କଚ ଏବଂ ଭଗଦତ୍ତଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ଚାଲିଛି । ତାଙ୍କର ହାତୀମାନଙ୍କୁ ମାରିଦେଲେଣି ଘଟୋତ୍କଚ । ଅନେକ ହାତୀଙ୍କର ଶୁଣ୍ଢ କଟି ଯାଇଛି, କାହାର ଗୋଡ଼ ଭାଙ୍ଗି ଯାଇଛି, କାର କାନ କଟି ଯାଇଛି । ସେମାନେ ପାଗଳ ହୋଇ ଛତ୍ରଭଙ୍ଗ ଦେଇଛନ୍ତି । ତଥାପି ଭଗଦତ୍ତ ଲଢୁଛନ୍ତି ଘଟୋତ୍କଚଙ୍କ ସହିତ । ସେ ମଧ୍ୟ କ୍ଷତାକ୍ତ ହୋଇଗଲେଣି । ତାଙ୍କୁ ରକ୍ଷା କରିବାକୁ କୌରବ ପକ୍ଷର ସୈନ୍ୟମାନେ ଆସି ପହଞ୍ଚିଗଲେଣି । ଦୁଃଶାସନ ଆସି ତାଙ୍କ ରଥରେ ଭଗଦତ୍ତଙ୍କୁ ନେଇ ଯାଉଛନ୍ତି ।

ଅଭିମନ୍ୟୁଙ୍କୁ ଆକ୍ରମଣ କରିଛନ୍ତି କୌରବ ରାଜପୁତ୍ରମାନେ । ସେମାନଙ୍କ ଗହଣରେ ଅଛନ୍ତି ପିତାହମ ଭୀଷ୍ମ । ଆକ୍ରମଣ ପ୍ରତିଆକ୍ରମଣ ଚାଲିଛି । ପୁତ୍ରକୁ ରକ୍ଷାକରିବାପାଇଁ ଅର୍ଜୁନ ଆସି ପହଞ୍ଚିଗଲେଣି । କୁରୁ ପାଣ୍ଡବ ସୈନ୍ୟମାନଙ୍କ ମଧ୍ୟରେ ଭୀଷଣ ଲଢ଼େଇ ଚାଲିଛି ।

ଶିଖଣ୍ଡୀଙ୍କ ଲକ୍ଷ୍ୟ ଭୀଷ୍ମଦେବ କିନ୍ତୁ ଠିକ୍ ବେଳେ ପହଞ୍ଚିଗଲେ ଶଲ୍ୟ । ଶିଖଣ୍ଡୀଙ୍କ ଉପରକୁ ଆଗ୍ନେୟାସ୍ତ୍ର ପ୍ରୟୋଗକଲେ । ଶିଖଣ୍ଡୀ ବରୁଣାସ୍ତ୍ର ପ୍ରୟୋଗ କରି ଏହାକୁ ଦୁର୍ବଳ କରିଦେଲେ । ଯୁଧିଷ୍ଠିରଙ୍କ ରଥର ଅଶ୍ୱ ଓ ସାରଥି ମରିଗଲେଣି । ନକୁଳଆସି ଯୁଧିଷ୍ଠିରଙ୍କୁ ନିଜ ରଥ ଉପରକୁ ନେଇଗଲେ ।

ଦୀର୍ଘ ସମୟ ପର୍ଯ୍ୟନ୍ତ କୌରବ ରାଜକୁମାରଓ ପଞ୍ଚପାଣ୍ଡବଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହେଲା । ଭୀଷ୍ମଦେବ ପାଣ୍ଡବ ପକ୍ଷର ଅସୁମାର କ୍ଷତିକଲେ ମଧ୍ୟ ପାଣ୍ଡବମାନଙ୍କୁ ସ୍ପର୍ଶ କରି ନଥିଲେ । ସମସ୍ତେ ଅସ୍ତ ବ୍ୟସ୍ତ ହୋଇ ଉଠିଲେଣି । ସୈନ୍ୟମାନେ ରଣକ୍ଲାନ୍ତ । ପଶ୍ଚିମ ଆକାଶ ଆଡ଼କୁ ସମସ୍ତଙ୍କର ଦୃଷ୍ଟି । ସୂର୍ଯ୍ୟଦେବ କେତେବେଳେ ବାରୁଣୀ ବୁକୁରେ ବିଦାୟ ନେବେ ।''

କିଛି ସମୟପରେ ସୂର୍ଯ୍ୟ ଅସ୍ତ ହେଲେ ।

ଭୀଷ୍ମଦେବ ଶଙ୍ଖନାଦ କରି ରଣ ବିରତି ଘୋଷଣା କଲେ ।

ସଂଜୟଙ୍କୁ ଧୃତରାଷ୍ଟ୍ର କଂପିତ କଣ୍ଠରେ କହିଲେ, ''ସଂଜୟ ! ତୁମେ ବୋଧହୁଏ ଗୋଟିଏ ନିର୍ଦ୍ଦିଷ୍ଟ ପକ୍ଷକୁ ସମର୍ଥନ କରି ସେମାନଙ୍କର ସଫଳତା ବିଶେଷ ଭାବରେ ବର୍ଣ୍ଣନା କରୁଛ । ତୁମ ପ୍ରଦତ୍ତ ଯୁଦ୍ଧ ବିବରଣୀ କେବଳ ପାଣ୍ଡବ ମାନଙ୍କ ପ୍ରଶସ୍ତି ଓ ବିଜୟ ବାର୍ତ୍ତାରେ ପରିପୂର୍ଣ୍ଣ । କୌରବ ମାନେ କଣ ଏତେହୀନ ବଳ ! ସେମାନଙ୍କ ସଫଳତା ବିଷୟରେ କାଇଁ ପଦିଏ ମଧ୍ୟ କହୁନ ?''

'ରାଜନ୍ ! ମୋତେ କ୍ଷମା ଦେବେ, ମୁଁ ଜଣେ ସାମାନ୍ୟ ଘୋଷକ । ରାଜାଜ୍ଞା ପାଳନ କରୁଛି ମାତ୍ର । ହତଭାଗ୍ୟ ଘୋଷକ, କାହାର ଭାଗ୍ୟ ନିୟାମକ ନୁହେଁ । ସତ୍ୟ ଘୋଷଣା କରିବା ବ୍ୟତୀତ ତା'ର ବିକଳ୍ପ ପନ୍ଥା ନାହିଁ । ସତ୍ୟ ଯେତେ ତିକ୍ତ ହେଲେ ମଧ୍ୟ ସେ ତାହା ପ୍ରକାଶ କରିବ । ଆପଣ ଖୋଲାମନରେ ସବୁ ଶୁଣନ୍ତୁ । ଆପଣ ସନ୍ଦେହ ମୁକ୍ତ ନହେଲେ ମୁଁ ପକ୍ଷଭୁକ୍ତ ବୋଲିସୃଷ୍ଟି ହୋଇଥିବା ଧାରଣା , ଯନ୍ତ୍ରଣାକୁ ଅଯଥା ବଢ଼ାଇବ ।''

──────────────────── ବାଇଶ

# ।। ଅଷ୍ଟମ ଦିନ ଯୁଦ୍ଧ ।।

କୁରୁରାଜ ଧୃତରାଷ୍ଟ୍ର ସଭାଗୃହରେ ଆସି ଅନେକ ସମୟରୁ ବସିଗଲେଣି । ସଞ୍ଜୟ ନିର୍ଦ୍ଦିଷ୍ଟ ସମୟରେ ଆସି ପହଞ୍ଚିଲେ । ସମ୍ରାଟଙ୍କୁ ଅଭିବାଦନ ଜଣାଇଲେ ।

''ସଂଜୟ ! ବସ, ଯୁଦ୍ଧ ଆରମ୍ଭ ହେବାର ସମୟ ବୋଧହୁଏ ହୋଇଗଲାଣି । କାଲି ସାରା ରାତି ମୁଁ ଶୋଇପାରିନି । ଅନେକ ଦୁଃସ୍ୱପ୍ନ ମୋ ମନକୁ ଭାରାକ୍ରାନ୍ତ କରିଛି । ଆଜି ରାଜପୁତ୍ର ମାନଙ୍କର ଶୁଭ ମନାସି, ଯୁଦ୍ଧର ଧାରା ବିବରଣୀ ଦିଅ । ସଂଜୟ ! ମଝିରେ ମଝିରେ ମୁଁ ତୁମକୁ ଟିକିଏ ବିରକ୍ତ କଲାପରି ବୋଧହୁଏ କ'ଣ କହିଦେଉଛି । ତୁମେ ତାକୁ ଆକ୍ଷେପ କିମ୍ବା ସନ୍ଦେହ ବୋଲି ଭାବିବନାହିଁ । ଅପମାନ ବୋଲି ମନେକରିବନି । ରାଜ ପ୍ରତିକ୍ରିୟା ବୋଲି ଗ୍ରହଣ କରିବନି । ତାହା ଏକ ଯନ୍ତ୍ରଣା ଜର୍ଜରିତ ଅସହାୟ ଅନ୍ଧପିତାର ବିକଳନ ବୋଲି ବିଚାର କରିବ । ମୁଁ ଜାଣେ ସଂଜୟ ! କୁରୁ ସିଂହାସନ ପ୍ରତି ତୁମର ଅନୁରକ୍ତି ଅସୀମ ।''

''ରାଜନ୍ ! ମନକୁ ଭାରାକ୍ରାନ୍ତ କରନ୍ତୁ ନାହିଁ, ଶୁଣନ୍ତୁ । ମୁଁ ସମ୍ପୂର୍ଣ୍ଣ ନିରପେକ୍ଷ ।

ଯୁଦ୍ଧ ଆରମ୍ଭ ହେବାପାଇଁ ପ୍ରସ୍ତୁତି ଚାଲିଛି । ପିତାମହଭୀଷ୍ମ ଆଜି କୌରବପକ୍ଷର ସୈନ୍ୟମାନଙ୍କୁ ନେଇ 'କୁର୍ମବ୍ୟୂହ' ରଚନା କରିଛନ୍ତି । ଯୁଧିଷ୍ଠିରଙ୍କ ନିର୍ଦ୍ଦେଶ ପାଇ, ଧୃଷ୍ଟଦ୍ୟୁମ୍ନ ରଚନା କରିଛନ୍ତି ତ୍ରିଶୂଳ ବ୍ୟୂହ । ମହେଶ୍ୱରଙ୍କ ତ୍ରିଶୂଳ ମହା ପ୍ରଳୟ ସୃଷ୍ଟି କରିପାରେ । ସାମାନ୍ୟ କୁର୍ମକୁ ଏ ତ୍ରିଶୂଳ ସଂହାର କରିବା ଅତିସହଜ ବୋଲି ଧୃଷ୍ଟଦ୍ୟୁମ୍ନ ଯୁଧିଷ୍ଠିରଙ୍କୁ କହୁଛନ୍ତି । ହସର ଢେଉ ଖେଳି ଯାଇଛି ପାଣ୍ଡବ ଶିବିରରେ ।

ପିତାମହ ଶଙ୍ଖ ଫୁଙ୍କି ଯୁଦ୍ଧ ଆରମ୍ଭ କଲେ । ଠିକ୍ ସୂର୍ଯ୍ୟୋଦୟର ଶୁଭ ମୁହୂର୍ତ୍ତରେ ଯୁଦ୍ଧ ଆରମ୍ଭ ହୋଇଛି । ଯୁଦ୍ଧବାଦ୍ୟ ବାଜୁଛି । ଆରମ୍ଭ ହୋଇଗଲା ଅସି ଯୁଦ୍ଧ । ଖଡ୍ଗ ଝଣତ୍କାର, ସୈନ୍ୟମାନଙ୍କର ସିଂହ ରଡ଼ି, ଯୁଦ୍ଧ ବାଦ୍ୟର ନିର୍ଘୋଷ, କୁରୁକ୍ଷେତ୍ରକୁ କରାଳତର କରି ଦେଇଛି ।

ଲଢ଼େଇ ଆରମ୍ଭ ହୋଇଛି ଭୀମସେନ ଓ ଭୀଷ୍ମଦେବଙ୍କ ମଧ୍ୟରେ । ପୃଥିବୀର ଅପ୍ରତିଦ୍ୱନ୍ଦୀ ଭୀଷ୍ମଦେବଙ୍କ ସହିତ ଯୁଦ୍ଧ ରେ କିଏ ବା ସମକକ୍ଷ ହୋଇପାରିବ । ସେ ମହାପ୍ରଳୟର ମହାନାୟକ । ସଂହାର ପାଇଁ ଉଦ୍ଦିଷ୍ଟ ଯେତେ ଅସ୍ତ୍ର, ସେ ସବୁ ସତେଯେପରି ସେଇ ଯୁଦ୍ଧ ଦେବଙ୍କର ବୋଲକରା କିଙ୍କର । ଯାହାକୁ ଯେପରି ପ୍ରୟୋଗ କରିବେ, ତାହା ସେହିପରି ତାର କରାମତି ଦେଖାଇବ । ସେ ସବୁ ଅସ୍ତ୍ରକୁ, ତାଙ୍କ ପରି ମହାବୀର ନହେଲେ ବ୍ୟର୍ଥ କରିଦେବା ସହଜନୁହେଁ ।'

''ଚମତ୍କାର ..ଚମତ୍କାର ବିବରଣୀ । ସଂଜୟ ସେଇପରି କୁହ । ନିରପେକ୍ଷ ବିବରଣୀର ଏହା ନିର୍ମଳ ନମୁନା ।'' ହସି ହସି କହିଲେ ରାଜାଧୃତରାଷ୍ଟ୍ର ।

ଶୁଣନ୍ତୁ ରାଜନ୍ । ଭୀମ ଦେଖିଲେଣି, ତାଙ୍କର ଭୀମତ୍ୱ ପିତାମହଙ୍କ ପାଖରେ ଉଗ୍ରତା ହରାଉଛି । ପିତାମହଙ୍କ ଅସ୍ତ୍ରକୁ ସେ ମୁକାବିଲା କରିବା ସମ୍ଭବ ନୁହେଁ । ଯୁଦ୍ଧ ଭୂମିରୁ ଓହରି ଯିବାର ପ୍ରଶ୍ନ ଉଠୁନି ।

କୌଣସିମତେ ସେ ଏହାର ସମ୍ମୁଖୀନ ହେବେ । ଏକ ନୂତନ ରଣକୌଶଳ ସେ ପ୍ରୟୋଗ କଲେ । ଭୀଷ୍ମଦେବଙ୍କ ବଦଳରେ ସେ ଶରନିକ୍ଷେପ କଲେ ରଥର ସାରଥି ଓ ଅଶ୍ୱମାନଙ୍କ ଉପରକୁ । ତାଙ୍କ ସହିତ ଲଢୁ ଥିବା ଅନ୍ୟ ସୈନ୍ୟମାନେ ପ୍ରତ୍ୟକ୍ଷ ଶରମାଡ଼ରେ ମୃତାହତ ହେଲେ । ସାରଥି ମରିଯିବାରୁ ଆହତ ଅଶ୍ୱମାନେ ଉତ୍‌କ୍ଷିପ୍ତ ହୋଇ ଭୀଷ୍ମଦେବଙ୍କ ରଥକୁ ବିଶୃଙ୍ଖଳିତ ଭାବରେ ଏଣେତେଣେ ଟାଣି ନେଲେ । ଲକ୍ଷ୍ୟଭ୍ରଷ୍ଟ ହେଲେ ଭୀଷ୍ମଦେବ । ଅମାପ ଆନନ୍ଦରେ ଉତ୍‌ଫୁଲ୍ଲିତ ଭୀମସେନ ଶଙ୍ଖବାଦନ କଲେ ।

କିଛି ସମୟପରେ,ଗୋଟିଏ ନୂତନ ରଥରେ ଆସି ପହଞ୍ଚିଲେ ଭୀଷ୍ମଦେବ । ସେତେବେଳକୁ ଭୀମସେନ କୌରବ ରାଜପୁତ୍ରମାନଙ୍କ ସହିତ ଯୁଦ୍ଧ କରୁଥାନ୍ତି । ମତ୍ତହସ୍ତୀ ପଦ୍ମବନ ଦଳି ଦେଲାପରି, ଭୀମ ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କ ଭିତରୁ ଅନେକଙ୍କୁ ମାରିଦେଲେଣି ।

''କଣ କହିଲ ସଂଜୟ ! ଭୀମ ମୋର ପୁତ୍ରମାନଙ୍କୁ ମାରିଦେଲା । ଦ୍ରୋଣାଚାର୍ଯ୍ୟ କୃପାଚାର୍ଯ୍ୟ, ଅଶ୍ୱତ୍‌ଥାମା ପ୍ରଭୃତି ଏତେବେଳେ ଗଲେକୁଆଡ଼େ ?''

'ସେମାନେ ଯୁଦ୍ଧ ଭୂମିର ଅନ୍ୟ ଅଂଶରେ ଯୁଦ୍ଧ କରୁଛନ୍ତି ସମ୍ରାଟ ।'

''ରାଜପୁତ୍ରଙ୍କୁ ସୁରକ୍ଷା ନ ଦେଇ ଅନ୍ୟଆଡ଼େ ଯୁଦ୍ଧ କରିବାର କି ଅର୍ଥ ଅଛି ? ମଣିଷଖିଆ ବଣୁଆ ବାଘଟା ମାତିଛି । ତାକୁ ଆଗ ନମାରି ଏଣେତେଣେ ଯୁଦ୍ଧ କରୁଛନ୍ତି । କି ଯୁଦ୍ଧ କରୁଛନ୍ତି !''

''ଭୀଷ୍ମଦେବଙ୍କ ଉପସ୍ଥିତିରେ ପରିସ୍ଥିତି ବଦଳି ଗଲାଣି ସମ୍ରାଟ । ଭୀମଙ୍କ ଦୃଷ୍ଟି ଫେରି ଆସିଲାଣି ଭୀଷ୍ମଙ୍କ ଉପରକୁ । ପୁଣି ଆରମ୍ଭ ହୋଇଗଲାଣି ଭୀମ ଭୀଷ୍ମ ଯୁଦ୍ଧ । ଯୁଧିଷ୍ଠିର ଦୂରରୁ ଲକ୍ଷ୍ୟକଲେ, ଭୀମ ଭୀଷ୍ମଙ୍କ ସହିତ ଏକା ଲଢୁଛନ୍ତି । ସେ ଧୃଷ୍ଟଦ୍ୟୁମ୍ନଙ୍କୁ ନେଇ ଆଖିପିଛୁଳାକେ ଆସି ପହଞ୍ଚିଲେ । ଭୀମଙ୍କର ମନୋବଳ ବଢ଼ିଗଲା । ବର୍ତ୍ତମାନ ମିଳିତ ଆକ୍ରମଣ ଚାଲିଛି ।

ଆଉ ଗୋଟାଏ ପାଖରେ ଅର୍ଜୁନଙ୍କ ସହିତ ଦ୍ରୌପଦୀଙ୍କର ପଞ୍ଚପୁତ୍ର ମିଶି, ବିପକ୍ଷୀ ଚେକିତାନ ସହିତ ଯୁଦ୍ଧ କରୁଛନ୍ତି । ତାଙ୍କୁ ସହାୟତା ଦେଉଛନ୍ତି ଦୁର୍ଯ୍ୟୋଧନ ଓ ଅନ୍ୟ କେତେକ ସହଯୋଗୀ । ଭୀଷଣ ଯୁଦ୍ଧ ଚାଲିଛି । ଉଭୟ ପକ୍ଷରୁ ଅନେକ ମୃତାହତ ହେଲେଣି । ଅର୍ଜୁନଙ୍କ ନାଗପୁତ୍ର ଇରାବଣ, ଯେକି ପାତାଳପୁରୀର ନାଗରାଜକନ୍ୟା ଉଲୁପୀଙ୍କ ଗର୍ଭରୁ ଜାତ ହୋଇଥିଲେ, ସେ ପିତାଙ୍କ ଗହଣରେ ଯୁଦ୍ଧ କରୁଛନ୍ତି । ତାଙ୍କ ସହିତ ଲଢୁଛନ୍ତି ଗାନ୍ଧାର ରାଜପୁତ୍ରମାନେ । ଯୁଦ୍ଧରେ ଇରାବଣଙ୍କ ଘୋଡ଼ାମାନେ ପ୍ରଥମେ ତୀରବିଦ୍ଧ ହୋଇ ପ୍ରାଣତ୍ୟାଗ କଲେ । ଇରାବଣ ରଥରୁ ଡ଼େଇଁ ପଡ଼ି ଗାନ୍ଧାର ରାଜପୁତ୍ର ମାନଙ୍କ ସହିତ ଭୀଷଣ ଯୁଦ୍ଧ କଲେ । ସେମାନେ ମଧ୍ୟ ନିଜ ରଥର ଘୋଡ଼ା ମାନଙ୍କୁ ହରାଇଲେ । ଇରାବଣ ଛଞ୍ଚାଣ ପରି ସେମାନଙ୍କ ଉପରକୁ ମାଡ଼ିଆସି ଛଅଜଣ ଯାକ ଗାନ୍ଧାର ରାଜପୁତ୍ରଙ୍କୁ ଛଅଗଡ଼ କରି ହାଣି ପକାଇଦେଲେ । କୌରବ ମାନଙ୍କ ମଧ୍ୟରେ ଚଳହ ପଡ଼ିଗଲାଣି ।

ଦୁର୍ଯ୍ୟୋଧନ ହତ ବାକ୍ ହୋଇଯାଇଛନ୍ତି । ଏ ନାଗପୁତ୍ରର ହଳାହଳ ବିଷ ଅସ୍ତ୍ରକୁ ଏକମାତ୍ର ରାକ୍ଷସ ଅଳମ୍ବୁଷ ବ୍ୟତୀତ ଆଉକେହି ପ୍ରତିରୋଧ କରିପାରିବେ ନାହିଁ ।

ଦୁର୍ଯ୍ୟୋଧନ ଅଳମ୍ବୁଷଙ୍କୁ ତାଙ୍କର ସାମରିକ କୃତିତ୍ୱପାଇଁ ଗଭୀର ସମ୍ମାନ ଜଣାଇଲେ । ତାଙ୍କୁ ପ୍ରଶଂସା କରି କହିଲେ, '' ହେ ବୀର ! ଇରାବଣ ପାଖରେ ତା' ମା'ର ବିଷ ଶକ୍ତି ଆଉ ବାପ ଅର୍ଜୁନଙ୍କର ସଂହାର ଶକ୍ତି ମିଶି ଏକ ହୋଇ ଯାଇଛି । ଆମ ଭିତରୁ କେହି ତାର ସମକକ୍ଷ ନୋହୁ । ତାକୁ ଜୟ କରିବା ଆମପକ୍ଷରେ କଠିନ । ତୁମେ ମହାଶକ୍ତିର ପ୍ରତୀକ । ଇରାବଣର ସଂହାର ଶକ୍ତିକୁ ତୁମେ ଏକା ସଂହାର

କରିଦେଇ ପାରିବ । ତାକୁ ହତ୍ୟାକରି ପାରିଲେ, ମହାଭାରତ ଯୁଦ୍ଧର ଅଜେୟବୀର ଭାବରେ ତୁମ ନାଁ କାଳକାଳକୁ ରହିବ ।''

ଉତ୍ତାଳ ତରଙ୍ଗ ପରି ଫୁଲି ଉଠିଲେ ଅଳମ୍ବୁଷ । ସେ ତାଙ୍କର ଖଣ୍ଡାଳିଆ ମୁଛରେ ହାତମାରି ଗର୍ଜନ କରି ଡେଇଁ ପଡ଼ିଲେ । କାଇଁ...କାଇଁ.... ସେଇ ଧୂଳିଆ ନାଗ ଛୁଆଟା । ମୁଁ ତାକୁ କାଟି ଟିକ୍ ଟିକ୍ କରି ଫୋପାଡ଼ି ଦେବି । ଅଳମ୍ବୁଷ.. ଅଳମ୍ବୁଷ । ସବୁ ବିଷ ହଜମ କରି ଦେଇ ପାରିବ । ବଜ୍ରଶକ୍ତିକୁ ମଧ୍ୟ ବିରୋଧ କରିପାରିବ । ସାମାନ୍ୟ ନାଗଛୁଆଟାର ଏତେ ଉତ୍ପାତ ।

ଅଳମ୍ବୁଷ ନିଜର ଅସୁର ସୈନ୍ୟମାନଙ୍କୁ ନେଇ ତୀବ୍ର ଆକ୍ରମଣ କଲେ ଇରାବଣ ଉପରେ । ଆସୁରୀ ଅସ୍ତ୍ରର ଆକ୍ରମଣରେ ସେ ବ୍ୟତିବ୍ୟସ୍ତ ହୋଇ ଉଠିଲେ । ଅସୁରମାନେ ବହୁରୂପୀ । ଇରାବଣ ଅଳମ୍ବୁଷଙ୍କ ଉପରେ ଆକ୍ରମଣ କଲାବେଳେ, ସେ ଛଦ୍ମ ରୂପରେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଯାଆନ୍ତି । ପୁଣି ଆସି କରନ୍ତି ଅତର୍କିତ ଆକ୍ରମଣ । ଇରାବଣ ଅଳମ୍ବୁଷଙ୍କୁ ପ୍ରତିରୋଧ କରିପାରିଲେ ନାହିଁ । ଶେଷରେ ସେ ନିହତ ହେଲେ ।

ଭୀମସେନଙ୍କ ରାକ୍ଷସ ପୁତ୍ର ଘଟୋତ୍କଚ, ଭାଇର ମୃତ୍ୟୁ ଖବର ପାଇ ଗୋଟାଏ କଳା ମେଘପରି ସୈନ୍ୟମାନଙ୍କ ସହିତ ମାଡ଼ି ଆସିଲେ ।ଦୁଇ ଅସୁର ଶକ୍ତି ଭିତରେ ଘମାଘୋଟ ଲଢ଼େଇ ଆରମ୍ଭ ହୋଇଗଲାଣି । ଅଳମ୍ବୁଷଙ୍କର ଅସୁମାର ଅସୁରସୈନ୍ୟ ପ୍ରାଣ ହରାଇଲେଣି । ଏତିକିବେଳେ ପହଞ୍ଚିଗଲେ ଦୁର୍ଯ୍ୟୋଧନ ସହାୟତା ଦେବାକୁ । ଘଟୋତ୍କଚ ତାଙ୍କ ଉପରେ ଆକ୍ରମଣ ଆରମ୍ଭ କରି ଦେଲେ ।

ଦୁର୍ଯ୍ୟୋଧନଙ୍କୁ ରକ୍ଷା କରିବାକୁ ମାଡ଼ି ଆସିଲେ କୃପାଚାର୍ଯ୍ୟ, ଦ୍ରୋଣାଚାର୍ଯ୍ୟ, ଅଶ୍ୱତ୍ଥାମା, ସିନ୍ଧୁରାଜ, ବିନ୍ଦ, ଅନୁବିନ୍ଦ ପ୍ରଭୃତି । ଘଟୋତ୍କଚଙ୍କ ଚାରିପାଖରେ ଘେରି ଯାଇ ଆକ୍ରମଣ କଲେ । ଏହି ଚକ୍ରବ୍ୟୂହ ଭେଦ କରିବାକୁ ଘଟୋତ୍କଚ ବାଟ ନପାଇ ଆସୁରିକ ଶକ୍ତିବଳରେ ଉପରକୁ ଉଠିଗଲେ ମେଘ ଖଣ୍ଡପରି ।

ଠିକ୍ ଏତିକି ବେଳେ ପଛରୁ ଆସି ଭୀମ ଆକ୍ରମଣ କଲେ ଦୁର୍ଯ୍ୟୋଧନଙ୍କୁ ।ଘଟୋତ୍କଚ ତଳକୁ ଖସିଆସି ଅଭିମନ୍ୟୁଙ୍କ ସହିତ ମିଶି ଅସୁମାର କୌରବ ସୈନ୍ୟ ମାନଙ୍କୁ ହତ୍ୟାକଲେ । ଦ୍ରୌପଦୀଙ୍କ ପୁଅମାନେ ଆସି ପହଞ୍ଚିଲେ । ପାଣ୍ଡବପକ୍ଷର ତରୁଣମାନଙ୍କର ଯୁଦ୍ଧ, କୌରବପକ୍ଷର ରଣଦକ୍ଷ ବୟସ୍କ ମାନଙ୍କୁ ବିଚଳିତ କରି ଦେଇଥିଲା । ସେତେବେଳେ ଭୀଷ୍ମଦେବ ଦୂରରେ ପଞ୍ଚାଳ ମାନଙ୍କ ସହିତ ଯୁଦ୍ଧ କରୁଥିଲେ । ଦୁର୍ଯ୍ୟୋଧନଙ୍କ ଦୁରବସ୍ଥା ଲକ୍ଷ୍ୟକରି ସେ ପଠାଇଲେ ଭଗଦତ୍ତଙ୍କୁ । ଭଗଦତ୍ତ ଆସି ଦୁର୍ଯ୍ୟୋଧନଙ୍କୁ ଅସମୟରେ ସାହାଯ୍ୟ କଲେ । ତାଙ୍କର ମନୋବଳ ଏବଂ ଦମ୍ଭ ବଢ଼ିଗଲା । ଠିକ୍ ଏତିକିବେଳେ ସେମାନଙ୍କୁ ସାହାଯ୍ୟ କରିବାପାଇଁ ପହଞ୍ଚିଲେ କୃପାଚାର୍ଯ୍ୟ ଓ ଅନ୍ୟମାନେ । ଅବଶ୍ୟ ସେମାନେ ଅଳ୍ପ ଦୂରରେ ଥିଲେ । ବର୍ତ୍ତମାନ କୌରବପକ୍ଷ, ଅଦମ୍ୟ ଶକ୍ତିର ଅଧିକାରୀ । ଘଟୋତ୍କଚ ଅଧିକ କିଛି ଆଗେଇ ପାରିଲେନି । ବରଂ କ୍ଷତି ହେଲା । ପାଣ୍ଡବମାନଙ୍କର ଅଧିକ ।

ଅର୍ଜୁନ ତାଙ୍କ ପୁତ୍ର ଇରାବଣର ମୃତ୍ୟୁ ସମ୍ବାଦ ପାଇ ମାନସିକ ଭାରସାମ୍ୟ ହରାଇଲେ । ପୁତ୍ର ଶୋକରେ ଅଧୀର ପିତା ଯେପରି ବିଳାପ କରନ୍ତି ଯୁଦ୍ଧ ଭୂମିରେ ସେ ସେଇପରି ବିଳାପ କଲେ । ଯୁଦ୍ଧ ପ୍ରତି ବିତୃଷ୍ଣା ସୃଷ୍ଟି ହେଲା । ଭାବିଲେ, ଆଉ ଯୁଦ୍ଧ କରିବେ ନାହିଁ ।

''ହଁ, ଠିକ୍ ଅଛି ଅର୍ଜୁନ ଏଥର ବୁଝୁ, ପୁତ୍ର ଶୋକ କଅଣ । ମୋ ପୁତ୍ରମାନଙ୍କୁ ହତ୍ୟାକରି କେତେ ଯନ୍ତ୍ରଣା ମୋତେ ଦେଇଛନ୍ତି, ସେମାନେ ବୁଝିବେକି ?'' ଆଚ୍ଛା ତା'ପରେ କଣ ହେଲା ? ଏତିକିରେ ଯୁଦ୍ଧ ବନ୍ଦ ହୋଇଗଲେ ଭଲ ହୁଅନ୍ତା ସଂଜୟ ।''

''ସେ ରାଜାଦେଶ ଆପଣ କଣ ଦେଇ ପାରିବେ ? ପରିସ୍ଥିତି ଆଜି ଆୟତ୍ତର ବାହାରକୁ ଚାଲିଯାଇଛି । କୁରୁପାଣ୍ଡବଙ୍କ ପାଇଁ ବର୍ତ୍ତମାନ ତିନୋଟି ବାଟ ରହିଛି । ଗୋଟିଏ ହେଉଛି ସର୍ବନାଶ ଯେଉଁ ପଥରେ ସମସ୍ତେ ଚାଲିଛନ୍ତି । ଦ୍ୱିତୀୟଟି ହେଉଛି ଆତ୍ମ ସମର୍ପଣ, ଯେଉଁ ପଥ କାହାରି ପାଇଁ ଗ୍ରହଣ ଯୋଗ୍ୟ ନୁହେଁ । ତୃତୀୟ ଏବଂ ଶେଷ ପଥଟି ହେଉଛି ସନ୍ଧିପ୍ରସ୍ତାବ କିମ୍ବା ଶାନ୍ତି ପ୍ରସ୍ତାବ, ଯାହାକୁ ପ୍ରଥମରୁ ଆପଣ ଅଗ୍ରାହ୍ୟ କରିଛନ୍ତି । କହିଲେ ସଂଜୟ ।

କୁହ, ତାପରେ କଣ ହେଲା ?

'ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇ ପୁଣି ଯୁଦ୍ଧ ଆଡ଼କୁ ମୁହାଁଇ ଦେଲେଣି । ସେମାନେ ଭଗଦତ୍ତଙ୍କ ପାଖରେ ଏକତ୍ରିତ ହୋଇଥିବା କୌରବ ମହାଶକ୍ତିକୁ ପଣ୍ଡକରି ଦେବାପାଇଁ ସେଠାକୁ ଚାଲିଗଲେଣି । ଇସ୍ କି ଯୁଦ୍ଧ । ଏତେ ବିପର୍ଯ୍ୟୟ ଆଖି ଦେଖିନଥିଲା । ଭୀଷ୍ମଦେବଙ୍କ ପ୍ରତିରୋଧ ସତ୍ତ୍ୱେ କୌରବ ରାଜପୁତ୍ରମାନଙ୍କ ମଧ୍ୟରୁ ପୁଣି କେତେକ ମୃତ୍ୟୁର ସମ୍ମୁଖୀନ ହେଲେଣି । ଆଜି ଦିନ ଭିତରେ ସର୍ବମୋଟ ଷୋହଳ ଜଣ ଭାଇଙ୍କୁ ଦୁର୍ଯ୍ୟୋଧନ ହରାଇଲେଣି ।

''କୁରୁରାଜ ନିଜ ହାତରେ ଛାତିକୁ ଆଘାତ କରି କହିଲେ, ଆଉ ସେ ଦାରୁଣ ସମ୍ବାଦ ଦିଅନାହିଁ ସଂଜୟ । ତା'ପୂର୍ବରୁ ଏ ହତଭାଗ୍ୟ ପିତାର ମୃତ୍ୟୁ ହୋଇଯିବା ଉଚିତ । ସୂର୍ଯ୍ୟ ଅସ୍ତହେଲେ ।

ଭୀଷ୍ମଦେବ ଶଙ୍ଖବାଦନ କରି ଯୁଦ୍ଧ ବିରତି ଘୋଷଣାକଲେ ।

ଦୁର୍ଯ୍ୟୋଧନ ଶିବିରକୁ ଫେରି ଆସିଲେ । ଦୁଃଶାସନ, ଶକୁନି ଓ କର୍ଣ୍ଣଙ୍କୁ ଡାକି ମନ୍ତ୍ରଣାକରାଗଲା । କର୍ଣ୍ଣ କହିଲେ, ଭୀଷ୍ମଦେବ, ଦ୍ରୋଣ, କୃପାଚାର୍ଯ୍ୟ, ଏମାନେ ଆମ ପକ୍ଷରେ ଲଢ଼ିଲେ ମଧ୍ୟ ସେମାନଙ୍କର ଆନ୍ତରିକ ସମର୍ଥନ ପାଣ୍ଡବମାନଙ୍କ ପାଇଁ ରହିଛି । ଏ ଯୁଦ୍ଧର ବୈଚିତ୍ର୍ୟ ହେଉଛି, ଆମ ପକ୍ଷର ମହାଯୋଦ୍ଧା ମାନଙ୍କରର ମନ ରହିଛି ଶତ୍ରୁ ଶିବିରରେ, ଶରୀର ରହିଛି ଆମପକ୍ଷରେ । ବ୍ୟକ୍ତିର ବିଭାଜିତ ବ୍ୟକ୍ତିତ୍ୱ ଆମର ବେଶିକ୍ଷତି କରୁଛି । ମୁଁ ପ୍ରଥମରୁ କହିଛି, ଭୀଷ୍ମଦେବ କୌରବ ମାନଙ୍କ ପାଇଁ ଏକ ମାୟା ମରିଚିକା । ପ୍ରଲୁବ୍ଧ କୁରୁରାଜ ତାଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ ନିଜର ଷୋହଳଜଣ ଭାଇଙ୍କୁ ହରାଇଲେଣି । ଅସୁମାର ସୈନ୍ୟ ସାମନ୍ତ ଓ ଅନୁଗତ ବୀରରାଜା ରଣ ଭୂମିରେ ବଳିପଡ଼ିଲେଣି । ଆଉ କେତେଦିନ ଆମେ ଏପରି ରଣଯଜ୍ଞରେ ଆମ ସୈନ୍ୟମାନଙ୍କୁ ପଶୁପରି ବଳି ପଡ଼ିବାକୁ ପଠାଇ ଚାଲିଥିବା !

ଶକୁନି କହିଲେ, ''ମୋତେ ମଧ୍ୟ ଏ ପରିସ୍ଥିତି ଗଭୀର କଷ୍ଟ ଦେଲାଣି । କୌରବ ପୁତ୍ରମାନେ ପୋକମାଛି ପରି ମରିବାକୁ ମୁଁ ସହ୍ୟ କରି ପାରୁନି । ଶୀଘ୍ର ଏହାର ସମାଧାନ ଆବଶ୍ୟକ ।

ଦୁଃଶାସନ କହିଲେ, ''ରାଜନ୍ ! ପାଣ୍ଡବପ୍ରାଣ ପିତାମହଙ୍କୁ ଆମ ସୈନ୍ୟ ବାହିନୀର ସର୍ବୋଚ୍ଚ ସେନାପତି କରି ଭୁଲ କରାଯାଇଛି । ଏବେ ମଧ୍ୟ ସମୟ ଅଛି, ତାର ସଂଶୋଧନ କରାଯାଇ ପାରିବ । ଆପଣ ବିଚାର କରନ୍ତୁ ।

''ଅଙ୍ଗରାଜ ! ଆପଣ କୁହନ୍ତୁ ବର୍ତ୍ତମାନ ପରିସ୍ଥିତିରେ କଣ କରାଯାଇ ପାରିବ ?''

'ମୋ ମତରେ ଭୀଷ୍ମଦେବଙ୍କୁ ମୁଖ୍ୟ ସେନାପତି ପଦରୁ ଅବ୍ୟାହତି ଦେବା ଉଚିତ । ମୋ ଆଖି ଆଗରେ ଏତେ ଅଘଟଣ ଘଟିଯିବ, କୌରବ ପକ୍ଷ ଏତେ କ୍ଷତି ସହିବେ, ମୁ ଆଉ ସହ୍ୟ କରି ପାରିବି ନାହିଁ । ମୁଁ ସେନାପତି ହୋଇ ଯୁଦ୍ଧ ଚଳାଇବାକୁ ଚାହେଁ । ଅର୍ଜୁନଙ୍କୁ ନିଶ୍ଚୟ ହତ୍ୟା କରିବି । ଏ ସୁଯୋଗ ମୋତେ ଶୀଘ୍ର ଦିଆଯାଉ ।

ଦୁର୍ଯ୍ୟୋଧନ ଶକୁନିଙ୍କ ମୁହଁକୁ ଚାହିଁଲେ । ଶକୁନି ନିରବ । ସେ ବୋଧହୁଏ ସମ୍ମତିର ସୂଚନା ପାଇ ସଙ୍ଗେ ସଙ୍ଗେ ଭୀଷ୍ମଦେବଙ୍କ ଶିବିରକୁ ଗଲେ । ସାଥିରେ ଗଲେ ଭାଇ ଦୁଃଶାସନ ।

ଭୀଷ୍ମଦେବ ସଂଧ୍ୟା ପୂଜା ପ୍ରାର୍ଥନା ସାରି ଉଠୁଥିଲେ ।

ଦୁର୍ଯ୍ୟୋଧନଙ୍କୁ ଦେଖି କୋଳାଗ୍ରତ କଲେ । ଉଭୟଙ୍କୁ କହିଲେ ବସିବା ପାଇଁ । ଦୁର୍ଯ୍ୟୋଧନ କ୍ରନ୍ଦିତ କଣ୍ଠରେ କହିଲେ, ''ପିତାମହ ! ଆଜି ଯୁଦ୍ଧରେ ମୁଁ ମୋର ଷୋହଳ ଜଣ ଭାଇଙ୍କୁ ହରାଇଛି । ପୂର୍ବରୁ ଆଠଜଣଙ୍କୁ ହରାଇଥିଲି । ଏପର୍ଯ୍ୟନ୍ତ ପାଣ୍ଡବ ଭାଇଙ୍କ ଭିତରୁ ଜଣେ ମଧ୍ୟ ସମଦଶା ଭୋଗି ନାହାନ୍ତି । ଆପଣ ବୋଧହୁଏ, ପାଣ୍ଡବମାନଙ୍କ ପ୍ରତି ସଦୟ, । ଆପଣଙ୍କର ପାଣ୍ଡବ ପ୍ରୀତି ଆମର ଦୁର୍ଯୋଗର କାରଣ ହୋଇଛି । ଯଦି ପାଣ୍ଡବମାନଙ୍କୁ ପରାସ୍ତ କରି ନପାରିବେ ତେବେ ସେନାପତିପଦ ଛାଡ଼ି ଦିଅନ୍ତୁ ।''

''ମୁଁ ସେଥିପାଇଁ ଭୀଷଣ ମର୍ମାହତ ରାଜନ୍ । ଅର୍ଜୁନ ମଧ୍ୟ ତାଙ୍କର ପ୍ରିୟ ପୁତ୍ରକୁ ହରାଇଛନ୍ତି । ଯାହା ହେଲେବି ଏହା ଯୁଦ୍ଧ ଓ ଯୁଦ୍ଧ କ୍ଷେତ୍ରରେ ହରାଇବାର ହିସାବ କରାଯାଏନାହିଁ । ଆପଣ ମୋ ପ୍ରତି ଯେଉଁ ଆକ୍ଷେପ କରିଛନ୍ତି, ଠିକ୍ ସେଇ ଆକ୍ଷେପ ଯେ ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟଙ୍କ ପ୍ରୀତି ନ କରିବେ ଏକଥା କୁହାଯାଇ ପାରିବ ନାହିଁ । ମନେ ରଖନ୍ତୁ, ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ ଓ ଅଶ୍ୱଥାମାଙ୍କୁ ବାଦ ଦେଇ ଆପଣଙ୍କର ଭାଗ୍ୟର ଗତି କଣ ହେବ ତାହା କେବେ ବିଚାର କରିଛନ୍ତି ? ମୁଁ ପାଣ୍ଡବମାନଙ୍କୁ ନିଶ୍ଚୟ ପରାସ୍ତ କରିବି । ପୂର୍ବରୁ କହିଛି, ଶିଖଣ୍ଡୀ ସହିତ ସମ୍ମୁଖ ଯୁଦ୍ଧ କରିବିନାହିଁ କିମ୍ବା ଅର୍ଜୁନଙ୍କୁ କବଳିତ କରିବାର ପ୍ରତିଶ୍ରୁତି ମଧ୍ୟ ଦେଇ ପାରିବି ନାହିଁ । ତୁମେ ସମସ୍ତେ ସେଇ ଦୁହିଁଙ୍କୁ ଜଗ । ସେମାନଙ୍କୁ ମୋ ମୁହଁକୁ ଛାଡ଼ନାହିଁ । ଅନ୍ୟମାନଙ୍କ ସହିତ ଲଢ଼ିବାର ସୁଯୋଗ ମୋତେ ଦେଇ ଦେଖ । ମୁଁ କଣ କରି ପାରିବି । ସାହସର ସହିତ କାଲି ଶତ୍ରୁର ସମ୍ମୁଖୀନ ହେବା । ମୁଁ ସମସ୍ତଙ୍କର ସହଯୋଗ ଚାହେଁ, ସମସ୍ତେ ମୋର ସଫଳତା ଆଶା କରନ୍ତୁ ।

ଦୁର୍ଯ୍ୟୋଧନ ଆନନ୍ଦରେ ଚହଲି ଉଠିଲେ । ବିଦାୟ ନେଲେ ପିତାମହଙ୍କ ଠାରୁ ।

# ।। ନବମ ଦିନ ଯୁଦ୍ଧ ।।

ସଂଜୟ ଯୁଦ୍ଧର ଧାରାବିବରଣୀ ଆରମ୍ଭ କଲେ । ''ରାଜନ୍ ! ଆଜି ମହାଭାରତ ଯୁଦ୍ଧର ନବମ ଦିବସ । ଯୁଦ୍ଧ ଭୂମିକୁ ଯିବାପାଇଁ କୌରବ ଓ ପାଣ୍ଡବ ପକ୍ଷର ସୈନ୍ୟଗଣ ପ୍ରସ୍ତୁତ ହୋଇଗଲେଣି । ବର୍ତ୍ତମାନ ଯାତ୍ରା ଆରମ୍ଭ ହେଲା ।

କୌରବ ପକ୍ଷ ଏକ ନୂତନ ବ୍ୟୂହ ରଚନା କରିଛନ୍ତି । ସମକୋଣୀ ତ୍ରିଭୁଜ ଭିତରେ ଗୋଟିଏ ବୃତ୍ତ ସୃଷ୍ଟି ହୋଇଛି, ତ୍ରିଭୁଜର ସମ୍ମୁଖ ଭାଗରେ ଅଛନ୍ତି, ଭୀଷ୍ମ, ଶଲ୍ୟ, ଶକୁନି, କୃତବର୍ମା, ଓ-କୃପାଚାର୍ଯ୍ୟ । ଗୋଟିଏ ବାହୁରେ ଅଛନ୍ତି ଦ୍ରୋଣ ଓ ସୋମଦତ୍ତ । ଦ୍ୱିତୀୟ ବାହୁରେ ଅଛନ୍ତି ଅଶ୍ୱତ୍ଥାମା ଓ ବିନ୍ଦ ଅନୁବିନ୍ଦ । କେନ୍ଦ୍ରରେ ଅଛନ୍ତି ଦୁର୍ଯ୍ୟୋଧନ, ତ୍ରିଗର୍ତ୍ତ ରାଜା ଓ ସୈନ୍ୟମାନେ ।

ଧୃଷ୍ଟଦ୍ୟୁମ୍ନଙ୍କ ନେତୃତ୍ୱରେ ପାଣ୍ଡବମାନଙ୍କର ସୈନ୍ୟମାନଙ୍କୁ ନେଇ 'ପଦ୍ମ ବ୍ୟୂହ' ରଚିତ ହୋଇଛି । ସୈନ୍ୟମାନେ ସଜ୍ଜିତ ହୋଇଛନ୍ତି ପାଖୁଡ଼ାପରି । କେନ୍ଦ୍ରରେ ଅଛନ୍ତି ଶିଖଣ୍ଡୀ । ପ୍ରତ୍ୟେକ ପାଖୁଡ଼ାର ଉଭୟ ଶୀର୍ଷରେ ଶ୍ରେଷ୍ଠ ଯୋଦ୍ଧାମାନେ ଅଛନ୍ତି ।

ପ୍ରଥମେ ଯୁଦ୍ଧ ଆରମ୍ଭ ହେଲା । ଅଭିମନ୍ୟୁ ଏବଂ ଅଳମ୍ବୁଷଙ୍କ ମଧ୍ୟରେ । ତୁମୁଳ ସଂଗ୍ରାମ । ମହାବୀର ଅଭିମନ୍ୟୁଙ୍କ ଅସ୍ତ୍ରାଘାତରେ ଅସୁମାର କୌରବ ସୈନ୍ୟ ମୃତାହତ ହେଲେ । ଅଳମ୍ବୁଷ ପ୍ରାଣବିକଳରେ ଛଦ୍ମରୂପନେଇ ପଳାଇଗଲେ । ଅଭିମନ୍ୟୁ ଭାବିଲେ, ରାକ୍ଷସଗଣ ପାନେ ପାଇ ପଳାଇଗଲେ, ଆଉ ଫେରିବେନି । କିନ୍ତୁ ଦେଖାଗଲା ଆଳମ୍ବୁଷ ପୁଣି ତାଙ୍କର ରାକ୍ଷସ ସୈନ୍ୟମାନଙ୍କୁ ନେଇ ମାଡ଼ି ଆସୁଛନ୍ତି । ସତେଯେପରି ପ୍ରଳୟ ପ୍ରଭଞ୍ଜନ ମାତିଛି । ପାଣ୍ଡବ ସୈନ୍ୟମାନେ ସାମରିକ ଶୃଙ୍ଖଳା ରକ୍ଷାକରି ପାରିଲେ ନାହିଁ । ଅସୁମାର ସୈନ୍ୟ ପ୍ରାଣହରାଇଲେ ।

ଏଇତ, ମୁହାଁ ମୁହିଁ ଯୁଦ୍ଧ କରୁଛନ୍ତି ଅଭିମନ୍ୟୁ ଏବଂ ଅଳମ୍ବୁଷ । ସତେଯେପରି ଦୁଇଟା ପଥର ପାହାଡ଼ ଭିତରେ ଯୁଦ୍ଧ ଚାଲିଛି । ସୈନ୍ୟମାନେ ଯୁଦ୍ଧ କରିବେକଣ । ସମସ୍ତେ ସ୍ତବ୍ଧ ହୋଇ ଚାହିଁ ରହିଛନ୍ତି ।

'ସଂଜୟ ! ମୋର ଧାରଣା, ଅଭିମନ୍ୟୁ କାଲିର ମେଞ୍ଚଡ଼ ପିଲାଟା, ସେ କଣ ରାକ୍ଷସ ଶକ୍ତିକୁ ପ୍ରତିରୋଧ କରିପାରିବ ?''

'ପ୍ରତିରୋଧ କରି ସାରିଲେଣି ରାଜନ୍ । ଅଭିମନ୍ୟୁଙ୍କ ତୀରମାଡ଼ରେ ଅଳମ୍ବୁଷର ରଥ ଭାଙ୍ଗି ଯାଇଚି । ସେ ତଳକୁ ଡ଼େଇଁ ପଡ଼ି ଆତ୍ମରକ୍ଷା ପାଇଁ ଲଢୁଛନ୍ତି । ଏଇତ ଦୃଶ୍ୟ ପଟରୁ ଅଦୃଶ୍ୟ ହୋଇଗଲେ ଅଳମ୍ବୁଷ । ମାୟାବୀ ରାକ୍ଷସର ମାୟା ଜାଣିବାକଷ୍ଟ । ପାଣ୍ଡବମାନେ ତୂରୀ ବଜାଇ ଆନନ୍ଦରେ ନାଚୁଛନ୍ତି । କୌରବ ସୈନ୍ୟମାନେ ଏଣେତେଣେ ବିକ୍ଷିପ୍ତ ହୋଇ ଗଲେଣି । ସତେଯେପରି କାହାରି ନେତୃତ୍ୱ ନାହିଁ ।

ଭୀଷ୍ମଦେବ ଏ ଦୃଶ୍ୟ ଦେଖି ପବନ ପରି ମାଡ଼ି ଆସିଲେଣି । ତାଙ୍କୁ ଦେଖି କୌରବ ସୈନ୍ୟମାନେ ପୁଣି ତାଙ୍କ ଚାରିପାଖରେ ଦାନା ବାନ୍ଧିଲେଣି । ଅର୍ଜୁନ ଦୂରରୁ ଲକ୍ଷ୍ୟ କରି ପ୍ରବଳ ବେଗରେ ଆସୁଛନ୍ତି ଅଭିମନ୍ୟୁଙ୍କ ପାଖକୁ । ଭୀଷ୍ମଙ୍କ ପାଖରେ ପହଞ୍ଚିଗଲେଣି କୃପାଚାର୍ଯ୍ୟ ଏବଂ ଅଶ୍ୱତଥାମା । ଅର୍ଜୁନଙ୍କୁ ସାହାଯ୍ୟ କରିବାକୁ ଚାଲିଆସିଲେଣି ସାତ୍ୟକି । ସେ କୃପାଚାର୍ଯ୍ୟଙ୍କୁ ଆକ୍ରମଣ କଲେ । ଅଶ୍ୱତ୍ଥାମା ସାତ୍ୟକିଙ୍କୁ ପ୍ରତିରୋଧ କଲେ । ପାଣ୍ଡବ ମାନଙ୍କର ଆଜି ବହୁତ କ୍ଷୟକ୍ଷତି ହୋଇଛି ।

''ମୁଁ ଭାବୁଛି, ଭୀଷ୍ମଦେବ ଆନ୍ତରିକତାର ସହିତ ଯୁଦ୍ଧ କଲେ ପାଣ୍ଡବମାନେ ନିଶ୍ଚୟ ପରାସ୍ତ ହେବେ । ଭୀଷ୍ମ ଦେବ ଓ ଦ୍ରୋଣାଚାର୍ଯ୍ୟଙ୍କ ନିଷ୍ଠା ଉପରେ ସବୁ ନିର୍ଭର କରେ । ଆଚ୍ଛା କୁହ ସଂଜୟ, ତା'ପରେ କଣ ହେଲା ।''

'ସାମାନ୍ୟ ଟିକିଏ ବ୍ୟବଧାନରେ ଧର୍ମରାଜ ରକ୍ଷା ପାଇଗଲେ ଭୀଷ୍ମ ଦେବଙ୍କ ଶରାଘାତରୁ । ଶିଖଣ୍ଡୀଙ୍କୁ ଆଜି କୌରବ ପକ୍ଷର ସୈନ୍ୟମାନେ ଘେରି ରହିଛନ୍ତି । ସେ ଚେଷ୍ଟା କରୁଛନ୍ତି ବ୍ୟୂହ ଭେଦ କରି ଭୀଷ୍ମଦେବଙ୍କୁ ଆକ୍ରମଣ କରିବାପାଇଁ, କିନ୍ତୁ ସୁଯୋଗ ମିଳୁନି । ବ୍ୟୂହାବର୍ତ୍ତ ମଧ୍ୟରେ ସେ ଉବୁଟୁବୁ ହେଉଛନ୍ତି ।

ଏଇତ ଶକୁନି ଆଉ ଦୁଃଶାସନ ।

ସାଥିରେ ତାଙ୍କର ଅସୁମାର ସୈନ୍ୟ, ସମସ୍ତେ ଆସି ମିଶିଗଲେଣି ଭୀଷ୍ମଦେବଙ୍କ ସୈନ୍ୟମାନଙ୍କ ସହିତ । ବିରାଟ ସୈନ୍ୟ ସମାବେଶ । ପାଣ୍ଡବ ପକ୍ଷ ଏହି ସମ୍ମିଳିତ ଶକ୍ତିର ସମ୍ମୁଖୀନ ହେବାପାଇଁ ଅସମର୍ଥ । ସତେଯେପରି ବନ୍ୟା ଦ୍ୱାରା ଘାଇ ଟଳମଳ । ଦୁର୍ଯ୍ୟୋଧନ ତାକୁ ଟିକିଏ ଖୋଲିଦେବାପାଇଁ ଶଲ୍ୟଙ୍କୁ ପଠାଇଛନ୍ତି । ପାଣ୍ଡବ ପକ୍ଷର ବନ୍ଧ ଆଜି ଭାଙ୍ଗି ଦେବାକୁ ହେବ । ଜଗିରହିଛନ୍ତି ସେଠାରେ କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ଦ୍ରୋଣାଚାର୍ଯ୍ୟ ପ୍ରଭୃତି । ସେମାନେ ଘାଇ ଫିଟାଇବାରେ ସାହାଯ୍ୟ କରିବେ । ପାଣ୍ଡବମାନଙ୍କୁ ଶକ୍ତିର ବନ୍ୟା ସ୍ରୋତରେ ଭସାଇ ଦେବେ ।

''ଠିକ୍ କରିଛନ୍ତି...ଠିକ୍ କରିଛନ୍ତି ସଂଜୟ । ଆଜି ତୁମର ଧାରାବିବରଣୀ ଖୁବ୍ ଚମତ୍କାର । ପାଣ୍ଡବମାନେ ଶିକ୍ଷା ପାଆନ୍ତୁ ।''

'ରାଜନ୍ ! ଘଟଣା ପ୍ରବାହକୁ କେହି ଏଡ଼ାଇପାରିବେ ନାହିଁ । ଯାହା ଯୁଦ୍ଧ ଭୂମିରେ ସଂଘଟିତ ହେଉଛି, ମୁଁ ସେ ସତ୍ୟକୁ ପ୍ରକାଶ କରୁଛି ମାତ୍ର । ଏଥିରେ ମୋ ନିଜର କିଛି ଚମତ୍କାରିତା ନାହିଁ । ହଁ, ଶୁଣନ୍ତୁ ।'

'ଅର୍ଜୁନ ଓ ପାଣ୍ଡବପକ୍ଷର ବିଶିଷ୍ଟ ବୀରଗଣ ସେଠାରେ ସମବେତ ହୋଇଗଲେଣି । କୌରବ ପକ୍ଷର ସୈନ୍ୟମାନେ ଆପ୍ରାଣ ଚେଷ୍ଟା କରୁଛନ୍ତି ଶିଖଣ୍ଡୀଙ୍କ ପରି ଅର୍ଜୁନଙ୍କୁ ଅବରୁଦ୍ଧ କରି ରଖିବାକୁ । ଏତିକି କରି ଦେଇପାରିଲେ ଭୀଷ୍ମଦେବ ପ୍ରଳୟ ପ୍ଲାବନ ସୃଷ୍ଟି କରିବେ । ପାଣ୍ଡବ ପକ୍ଷର ସୈନ୍ୟଗଣ ଏତେ ବିରାଟ ଶକ୍ତିପୁଞ୍ଜର ସମ୍ମୁଖୀନ ହେବା ସମ୍ଭବ ହେଉନି । ଦୁର୍ଯ୍ୟୋଧନ ଆନନ୍ଦରେ ଭିଣାତୁଳାପରି ଉଡୁଛନ୍ତି । ଭାଇଦୁଃଶାସନଙ୍କୁ କହୁଛନ୍ତି, ଏତେ ଦିନପରେ ପିତାମହ ତାଙ୍କ କରାମତି ଦେଖାଇଲେ । ମଝିରେ ମଝିରେ ତାଙ୍କୁ ସ୍ୱାଭିମାନମନ୍ତ୍ର ଶୁଣାଇ ବାକୁ ହେବ ।''

''ଠିକ୍ କହିଛି... ଠିକ୍ କହିଛି ମୋର ପ୍ରାଣପ୍ରିୟ ବତ୍ସ ଦୁର୍ଯ୍ୟୋଧନ । ସ୍ୱାଭିମାନର ସୌରଭ ତାକୁ ସର୍ବଦା ସୁରଭିତ କରିଛି ସଂଜୟ ! ସ୍ୱାଭିମାନର ମୂଲ୍ୟ ସେ ଠିକ୍ ବୁଝିଛି । ଭୀଷ୍ମଦେବଙ୍କ ମନରେ ଆଘାତ ଦେଇ କିଛି କାମ କରିହେବନାହିଁ । ତାଙ୍କର ସ୍ୱାଭିମାନକୁ ଜାଗ୍ରତ କରି ଅସମ୍ଭବ କାମକୁ ସମ୍ଭବ କରାଯାଇ ପାରିବ ।''

ଆପଣଙ୍କର ଅନୁମାନ ଅଭ୍ରାନ୍ତ । ଆପଣ ଶୁଣନ୍ତୁ ରାଜନ୍, ଶ୍ରୀକୃଷ୍ଣ ବର୍ତ୍ତମାନ ଅର୍ଜୁନଙ୍କୁ ଉଦ୍ଦୀପିତ କରୁଛନ୍ତି । କହୁଛନ୍ତି, ହେ ଅର୍ଜୁନ ! ତୁମେ ହାତରେ ଗାଣ୍ଡୀବ ଧନୁର ମନ୍ତ୍ର ପୂତ ବିନିଯୋଗ କର । ସେ ମହାଧନୁର ମହାତେଜ ପ୍ରକାଶିତ ହେବ । ତୁମେ ତାର ପ୍ରକୃତ ସେବା ପାଇପାରିବ । ଯୁଦ୍ଧର ନଅଦିନ ବିତିଗଲାଣି, ଅଥଚ ଭୀଷ୍ମ,ଦ୍ରୋଣ ତଥାପି ରଣ ଭୂମିରେ ନିର୍ବାଧରେ ବୁଲୁଛନ୍ତି । ସେମାନଙ୍କୁ ହତ୍ୟା ନକଲେ ଯୁଦ୍ଧର ପରିସମାପ୍ତି ଘଟିବ ନାହିଁ । ସେମାନଙ୍କୁ ବୀରଗତି ଦେବା ପରେ ଦୁର୍ଯ୍ୟୋଧନ ବା କର୍ଣ୍ଣଙ୍କର କରାମତି ଭାଙ୍ଗିଦେବାକୁ କେତେ ସମୟ ଲାଗିବ ? ଦୁଇ ମହା ଶକ୍ତିକୁ ବଞ୍ଚାଇରଖି ଆମେ କେତେଦିନ ଆଉ ଯୁଦ୍ଧକୁ ଆମ ଉପରେ ଝୁଲାଇ ରଖିବା । ଉଠ, ଜାଗ୍ରତ ହୁଅ । ତୁମେ କ୍ଷତ୍ରିୟ । ବୀର ଓ ବରେଣ୍ୟ । ବୀରର କଠୋର ମନ ନେଇ ଯୁଦ୍ଧ ଭୂମିରେ କର୍ତ୍ତବ୍ୟ କର । ଆବେଗକୁ ମନରେ ସ୍ଥାନ ଦିଅନାହିଁ । ଆବେଗ ଦୃଷ୍ଟିରେ ଦେଖିଲେ ସେ ତୁମର ପିତାମହ, ପାଳକ, ଗୁରୁ, ଆଚାର୍ଯ୍ୟ । ବୀରର ନିର୍ମୋହ ଦୃଷ୍ଟିରେ ଦେଖିଲେ, ସେ ତୁମର ଶରସେବା ପାଇଁ ଯୋଗ୍ୟ । ମନେରଖ, ଏଇପରି ଆଉଦିନେ ଦୁଇଦିନ ଯୁଦ୍ଧ ଚାଲିଲେ ପାଣ୍ଡବ ସୈନ୍ୟମାନେ ନିର୍ମୂଳ ହୋଇଯିବେ ।

ଅର୍ଜୁନ ରଣହୁଁକାର ତୋଳିଲେ ।

'ସଖା ! ଆପଣ ଏ ଅବରୋଧ ବ୍ୟୂହକୁ ଭେଦକରି ତାଙ୍କରି ପାଖକୁ ରଥ ଚଳାଇ ନିଅନ୍ତୁ । ମହାଭରତ ଯୁଦ୍ଧର ଅଗ୍ରପୂଜ୍ୟ ସେଇ ଉଭୟବୀରଙ୍କୁ ବୀରଗତି ଦେଇ ମୁଁ ମୋ ମହାଧନୁର ମହନୀୟତା ରକ୍ଷା କରିବି ।'

ରଥ ଆଗେଇଗଲା । ବର୍ତ୍ତମାନ ଭୀଷ୍ମଦେବ, ଅର୍ଜୁନ ମୁହାଁ ମୁହିଁ । ଅର୍ଜୁନଙ୍କ ଶରାଘାତରେ କ୍ଷତାକ୍ତ ଭୀଷ୍ମଦେବ । ସେ ଯନ୍ତ୍ରଣା କାତର । ବହୁ ଆତ୍ମଘାତୀ ଶରକୁ ସେ ଅକାମି କରି ଦେଇ ସାରିଲେଣି । ତଥାପି ଶରବର୍ଷା ଚାଲିଛି । ଭୀଷ୍ମଙ୍କ ଶର ଆସି ଅର୍ଜୁନ, ଶ୍ରୀକୃଷ୍ଣ ଓ ତାଙ୍କର ରଥଅଶ୍ୱକୁ ଆଘାତ କଲାଣି । ଅଶ୍ୱମାନେ ତଥାପି ଛତ୍ରଭଙ୍ଗ ଦେଇନାହାଁନ୍ତି ।

ଶ୍ରୀକୃଷ୍ଣ ଗର୍ଜନ କରି କହିଲେ, '' ଅର୍ଜୁନ ! ଦେଖିଲଣି, ମୋ ଶରୀରରେ କେତେ ଶର ବିଦ୍ଧ ହେଲାଣି ? ରଥର ଅଶ୍ୱମାନେ ନିଜ ଶରୀରରେ କେତେ ତୀକ୍ଷ୍ଣ ଶରାଘାତ ସହିଲେଣି । କି ଆଶ୍ଚର୍ଯ୍ୟ କଥା, ତୁମେ ତ ତୁମ ସାରଥି କିମ୍ୱା ରଥର ଅଶ୍ୱମାନଙ୍କୁ ରକ୍ଷା କରିପାରୁନାହଁ, ଭୀଷ୍ମଙ୍କୁ ମାରିବ କଣ ?

ଏତିକି କହି ସେ ଅର୍ଜୁନଙ୍କ ହାତରୁ ଅସ୍ତ୍ର ଛଡ଼ାଇ ନେଇ, ରଥରୁ ଡେଇଁ ଦଉଡ଼ିଲେ ଭୀଷ୍ମଦେବଙ୍କ ଆଡ଼କୁ । ମୁଁ ଆଜି ସବୁ ସମାଧାନ କରିଦେବି ।'' ଭୀଷ୍ମଦେବ ଭାବ ଗଦ୍ ଗଦ୍ ହୋଇ କହିଲେ, ''ହେ ମଙ୍ଗଳମୟ ! ମୁଁ କଣ ସତରେ ଏତେ ଭାଗ୍ୟବାନ । ଆପଣ ନିଜହାତରେ ମୋତେ ପୁଣ୍ୟଗତି ଦେବାପାଇଁ ଆଗେଇ ଆସିଛନ୍ତି, ଆସନ୍ତୁ । ଆସନ୍ତୁ ପ୍ରଭୁ ପୁଣ୍ୟା ହୁତି ଦିଅନ୍ତୁ ।

ଅର୍ଜୁନ ରଥରୁ ଡେଇଁ ପଡ଼ି ଦଉଡ଼ି ଆସିଲେ ଶ୍ରୀକୃଷ୍ଣଙ୍କ ପାଖକୁ । ତାଙ୍କ ଦୁଇବାହୁବନ୍ଧନ ଭିତରେ ଆଲିଙ୍ଗନ କରି କହିଲେ, '' ହେ ସଖା ! ମୁଁ ଆପଣଙ୍କୁ ଆଉ ଆଗେଇବାକୁ ଦେବିନାହିଁ । ଆପଣ ନିଜର ପ୍ରତିଜ୍ଞା କଣ ପାସୋରି ଦେଲେ । ଅସ୍ତ୍ରଧାରଣ କରିବେ ନାହିଁ ବୋଲି ପରା ଶପଥ କରିଛନ୍ତି, ପୁଣି ଅସ୍ତ୍ର ଧରୁଛନ୍ତି କାହିଁକି ? ମୋ କର୍ତ୍ତବ୍ୟ ମୁଁ କରିବି । ଆପଣ ରଥକୁ ଫେରି ଆସନ୍ତୁ ।

ଶ୍ରୀକୃଷ୍ଣ ଅଟକି ଗଲେ । ତାଙ୍କ କ୍ରୋଧ ଶାନ୍ତ ହୋଇଗଲା । ଅର୍ଜୁନଙ୍କ ହାତକୁ ଅସ୍ତ୍ରବଢ଼ାଇ ଦେଇ, ରଥକୁ ଫେରିଆସିଲେ । ଯୁଦ୍ଧ ପୁଣି ଆରମ୍ଭ ହେଲା ।

ଭୀଷ୍ମଦେବ ପାଣ୍ଡବ ପକ୍ଷର ବହୁସୈନ୍ୟମାନଙ୍କୁ ହତ୍ୟା କଲେ । ପାଣ୍ଡବ ମାନଙ୍କ ମଧ୍ୟରେ ଚହଳ ପଡ଼ିଗଲା ।

ସୂର୍ଯ୍ୟ ଅସ୍ତ ହେଲେ । ଭୀଷ୍ମଦେବ ଶଙ୍ଖ ଫୁଙ୍କି ଯୁଦ୍ଧ ବିରତି ଘୋଷଣା କଲେ ।

ରାତ୍ରିର ପ୍ରଥମ ପହର ।

ପାଣ୍ଡବ ଶିବିରରେ ବିଷାଦର ବନ୍ୟା । କୌରବ ଶିବିରରେ ଉନ୍ମାଦନାର ଉତ୍ତାଳ ତରଙ୍ଗ । ଦୁର୍ଯ୍ୟୋଧନଙ୍କ ନିର୍ଦ୍ଦେଶରେ ସୈନ୍ୟମାନଙ୍କ ମନୋରଂଜନ ପାଇଁ ଏକ ନୃତ୍ୟଗୀତର ଆସର ବ୍ୟବସ୍ଥା କରାଯାଇଛି । ହସ୍ତିନାର ବିଦୁଷୀ ଗଣିକା ଓ ନର୍ତ୍ତକୀମାନେ ଏଥିରେ ଅଂଶ ଗ୍ରହଣ କରିଛନ୍ତି । ରାଜ ଚିତ୍ତ-ହାରିଣୀ କଳା ବିଳାସିନୀ ଅନ୍ତପୁରରୁ ଓହ୍ଲାଇ ଆସିଛନ୍ତି ସମରଭୂମିକୁ ରଣକ୍ଳାନ୍ତ ରାଜାଙ୍କୁ ଯନ୍ତ୍ରଣା ମୁକ୍ତ କରି ଆନନ୍ଦ ଦେବାପାଇଁ । ଆଜି ଏକ ବ୍ୟତିକ୍ରମ, ସଂଗୀତ ନୃତ୍ୟର ତାଳେ ତାଳେ ସେ ଯନ୍ତ୍ରଣା ଜର୍ଜରିତ ସୈନ୍ୟମାନଙ୍କୁ ଆହ୍ଲାଦିତ କରିବେ । ପ୍ରେରଣା ଦେବେ । ସମ୍ମୋହନ ଶକ୍ତି ବଳରେ ଯନ୍ତ୍ରଣା ଦୂର କରିବେ ।

ଅଶ୍ୱତ୍ଥାମା, ଦୁର୍ଯ୍ୟୋଧନ, ଦୁଃଶାସନ,କର୍ଣ୍ଣ, ଶକୁନି, ଶଲ୍ୟ, ପ୍ରଭୃତି ମହାନ୍ ବୀରଗଣ ଏଠାରେ ଉପସ୍ଥିତ ଅଛନ୍ତି । ଆସର ଆରମ୍ଭ ହେବା ପୂର୍ବରୁ ଦୁର୍ଯ୍ୟୋଧନ ସୈନ୍ୟମାନଙ୍କୁ ଆଜି ଦିନର ସଫଳତା ପାଇଁ ଉଦ୍‌ବୋଧନ ଦେଲେ । ତାପରେ ଆସର ଆରମ୍ଭ ହେଲା ।

ଭୀଷ୍ମଦେବ, କୃପାଚାର୍ଯ୍ୟ,ଦ୍ରୋଣାଚାର୍ଯ୍ୟ ନିଜ ନିଜ ଶ୍ରଦ୍ଧା ଓ ସଦିଚ୍ଛା ପଠାଇ ଥିଲେ ସଭାମଞ୍ଚକୁ । ସେମାନେ ସଂଧ୍ୟା ତର୍ପଣ, ପ୍ରାର୍ଥନା ଓ ଜପ ପାଇଁ ଶିବିର ଆଶ୍ରମରେ ଉପସ୍ଥିତ ଥିଲେ ।

ଯୁଧିଷ୍ଠିର କୃଷ୍ଣଙ୍କ କୋଠରିକୁ ଆସିଲେ ନିଜ ଭାଇମାନଙ୍କ ଗହଣରେ । ବିଷାଦ ବିବର୍ଣ୍ଣ ମୁଖମଣ୍ଡଳ । କୃଷ୍ଣ ସେମାନଙ୍କୁ ଆଲିଙ୍ଗନ କରି କହିଲେ, ''ଧର୍ମରାଜ ! ମୁଁ ଏଇତ ଆପଣମାନଙ୍କୁ ମନେ ପକାଉଥିଲି । ଉପସ୍ଥିତି ଆଶା କରୁଥିଲି ମଧ୍ୟ । ଠିକ୍ ସମୟରେ ଆସିଛନ୍ତି ।

ଯୁଧିଷ୍ଠିର ବିଗଳିତ କଣ୍ଠରେ କହିଲେ, '' ମଧୁସୂଦନ ! ଆଜି ଦିନର ଅବସ୍ଥା ଦେଖିଲେ ତ ! ତ । ଭୀଷ୍ମଦେବଙ୍କ ପ୍ରଳୟ ପର୍ବ ଆଉ ଆଗେଇବା ପାଇଁ ସୁଯୋଗ ଦେବାକୁ ମୁଁ ଚାହେଁ ନାହିଁ । ମୁଁ ଯୁଦ୍ଧର ପରିସମାପ୍ତି ଚାହେଁ । ହୁଏତ ପିତାମହଙ୍କ ପଦରେ ସଂପୂର୍ଣ୍ଣ ଆତ୍ମ ସମର୍ପଣ କରି ବନଚାରୀ ହେବି କିମ୍ବା ...

ହଁ,ମୁଁ,ସେଇ 'କିମ୍ବା'ର ନିଭୃତ ଅର୍ଥକୁ ସମର୍ଥନ କରେ ଧର୍ମପୁତ୍ର ! ପ୍ରଥମ ପନ୍ଥା ମୋ ପାଇଁ ଗ୍ରହଣୀୟ ନୁହେଁ । ପ୍ରଥମରୁ ତାହା ପ୍ରତ୍ୟାଖ୍ୟାତ ହୋଇଛି ଏବଂ ଆମେ ସମସ୍ତେ କ୍ଷତ୍ରିୟ ନୀତିରେ ପରିସ୍ଥିତିର ସମାଧାନ ପାଇଁ ଏ ପବିତ୍ର ରଣକ୍ଷେତ୍ରକୁ ଆସିଛନ୍ତି । କ୍ଷତ୍ରିୟର ଏକମାତ୍ର ଧର୍ମ, ଧର୍ମସଂସ୍ଥାପନ ପାଇଁ ସେ ଖଣ୍ଡାରେ ଖେଳିବେ । ହାର୍‌ଜିତ୍‌ର ଶବ୍ଦକୁହୁକରେ ନିଜକୁ କବଳିତ କରିବେ ନାହିଁ । କ୍ଷତ୍ରିୟ ଆଖିରେ କେହି ହାରେନି କେହି ଜିତେନି । କେହି ମରେନି କେହି ଜୀଏଁ ନି । ସେଗୁଡ଼ାକ ସବୁ ମୋହର ଭାଷା, ମହାଭାଷ୍ୟ ନୁହେଁ ।

ଯୁଧିଷ୍ଠିର ନତ ମସ୍ତକରେ ନିରବ ରହିଲେ ।

ମୋ ମତରେ ପିତାମହଙ୍କୁ ଯାଇ ସାକ୍ଷାତ୍ କରିବା । ବିଜୟଲାଭ କରିବାପାଇଁ ସେ ଯେଉଁ ଆଶୀର୍ବାଦ ଦେଇଛନ୍ତି, ତାହା ତାଙ୍କୁ ହାତପାତି ମାଗିନେବା । ମୋର ଧାରଣା, ଧର୍ମପୁତ୍ର ତାଙ୍କର ହୃଦୟ ଜୟ କରିପାରିବେ । ଏ ଜୟ, ଯୁଦ୍ଧ ବିଜୟ ଠାରୁ ହେବ ଅଧିକ ମହତ୍ତ୍ୱପୂର୍ଣ୍ଣ । ଅନେକ ତ୍ୟାଗ ସ୍ୱୀକାର କରାଗଲାଣି । ଆଶୀର୍ବାଦର ଅଭିଷେକ ହେବ ।

ସମସ୍ତେ ଏଥିରେ ଏକମତ ହେଲେ । ସ୍ଥିର ହେଲା, ଶ୍ରୀକୃଷ୍ଣଙ୍କ ସହିତ କେବଳଯୁଧିଷ୍ଠିର ଓ ଅର୍ଜୁନ ଯିବେ । ଗହଳ ଚହଳ ସୃଷ୍ଟି କରାଯିବ ନାହିଁ । ଶ୍ରୀକୃଷ୍ଣ, ଯୁଧିଷ୍ଠିର ଓ ଅର୍ଜୁନ ଯାଇ ପହଞ୍ଚିଲେ ଭୀଷ୍ମଦେବଙ୍କ ଶିବିର ଆଶ୍ରମରେ । ତାଙ୍କୁ ଭକ୍ତିନମ୍ର ପ୍ରଣାମ ଜଣାଇଲେ । ସେ ଆସନରୁ ଉଠି ସମସ୍ତଙ୍କୁ ଆଲିଙ୍ଗନ କଲେ । ସମସ୍ତଙ୍କ ମୁଣ୍ଡ ଆଉଁଶି ଆଶୀର୍ବାଦ ମୁଦ୍ରାରେ କୁଶଳ ଜିଜ୍ଞାସା କଲେ, କି ଆନନ୍ଦ ।

ଯୁଧିଷ୍ଠିର ଯୋଡ଼ ହସ୍ତରେ କହିଲେ, ''ପିତାମହ ! ଏଧର୍ମ ଯୁଦ୍ଧରେ ବିଜୟଲାଭ କରିବା ପାଇଁ ଆପଣ ମୋତେ ଆଶୀର୍ବାଦ ଦେଇଥିଲେ । କହିଥିଲେ, ଚରମ ମୁହୂର୍ତ୍ତରେ ସମର ଶିବିରରେ ସାକ୍ଷାତ କରିବା ପାଇଁ । ସେଇ ପରମ ମୁହୂର୍ତ୍ତ ବର୍ତ୍ତମାନ ଆସି ପହଞ୍ଚିଛି । ଆଜି ଯୁଦ୍ଧରେ ପ୍ରମାଣିତ ହୋଇ ଯାଇଛି ଯେ କେବଳ ଅର୍ଜୁନ ନୁହଁନ୍ତି, ସୃଷ୍ଟିର କୌଣସି ଶକ୍ତି ଆପଣଙ୍କୁ ପରାହତ କରି ପାରିବ ନାହିଁ । ଆଜି ପରି ଆପଣ ପ୍ରଳୟ ସୃଷ୍ଟିକଲେ ପାଣ୍ଡବ ପକ୍ଷ ଆଉ ଦିନେ ଦୁଇଦିନ ମଧ୍ୟରେ ନିଜର ସତ୍ତା ହରାଇବେ । ମୋର ଅନୁରୋଧ, ଆପଣଙ୍କ ଆଶୀର୍ବାଦ ଆପଣ ସାକାର କରନ୍ତୁ ।''

ଭୀଷ୍ମଦେବ ହସିଲେ ।

''ଧର୍ମରାଜ ! ତୁମେ ଯାହା କହୁଛ, ତାହା ଅଭ୍ରାନ୍ତ । ସ୍ୱେଚ୍ଛାମୃତ୍ୟୁ ବରଣ ନକରିବା ପର୍ଯ୍ୟନ୍ତ ମୋତେ କେହି ମାରିପାରିବେ ନାହିଁ । ତଥାପି ମୁଁ ରଣକ୍ଳାନ୍ତ, ମର୍ତ୍ତ୍ୟକ୍ଳାନ୍ତ, ମୋର ଏ ମାନବ ଶରୀର ଯଥାଶୀଘ୍ର ପରିହାର କରିବାକୁ ମୁଁ ଚାହେଁ ଏବଂ ତା ସହିତ ଚାହେଁ ତୁମର ବିଜୟ । ଏ ଉଭୟ ପରିସ୍ଥିତି ଅଙ୍ଗାଙ୍ଗି ଭାବରେ ଜଡ଼ିତ । ମୁଁ ତ ଶପଥ କରିଛି ଶିଖଣ୍ଡୀ ସହିତ ଯୁଦ୍ଧ କରିବି ନାହିଁ । ସେ ନାରୀ, ସ୍ଥୂଣାକର୍ଣ୍ଣର ପୁରୁଷତ୍ୱ ନେଇ, ପୁରୁଷ ପଣର କାୟାପ୍ରତିଷ୍ଠା କରା ଯାଇଛି । ତଥାପି ସେ ନାରୀ, ପୁରୁଷ ବେଶରେ ଏକ ନାରୀ ମୂର୍ତ୍ତି । ମୁ ତାକୁ ସ୍ପର୍ଶ କରିବିନାହିଁ । ସମସ୍ୟାର ସମାଧାନ ପାଇଁ ତୁମେ ଏଇ ପ୍ରତିଶ୍ରୁତ ଆବେଗର ସୁଯୋଗ ନେଇପାର । ମୁଁ ତ ସ୍ୱୀକୃତି ଦେଲି, ଏଣିକି ତୁମେ ବାସୁଦେବଙ୍କ ଶ୍ରଦ୍ଧାର ସୁଯୋଗ ନିଅ ସେ ତୁମକୁ ବାଟ ବତାଇ ଦେବେ । ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦେବେ । ଏହାମାଧ୍ୟମରେ ମୋତେ ମଧ୍ୟ ସୁଯୋଗ ମିଳିଯିବ ମୋ ଘର ବାହୁଡ଼ା ପାଇଁ ।

ଯୁଧିଷ୍ଠିର, ଅର୍ଜୁନ ମୁଣ୍ଡଲୁଆଇଁ ପାଦଛୁଇଁ ପିତାମହଙ୍କୁ ପ୍ରଣାମ କଲେ । ଶ୍ରୀକୃଷ୍ଣ ହସି ହସି ପ୍ରଣାମ ଜଣାଇଲେ । ଭାବ ଗଦ୍ ଗଦ୍ ହୋଇ ବିଦାୟ ଦେଲେ ଭୀଷ୍ମଦେବ ।

ସମସ୍ତେ ଶିବିରକୁ ଫେରିଆସିଲେ । ଅର୍ଜୁନଙ୍କ ମୁଖମଣ୍ଡଳରେ ବିଷାଦ ଭାବ । ସେ ତାଙ୍କର ପ୍ରିୟ ପିତାମହଙ୍କୁ କୌଶଳ ଓ ଅପପନ୍ଥା ପ୍ରୟୋଗ କରି ହତ୍ୟା କରିବେ । ନ୍ୟାୟ ପ୍ରତିଷ୍ଠା ପାଇଁ ଅନ୍ୟାୟ କଣ ଏକମାତ୍ର ପନ୍ଥା । ଧର୍ମ ପ୍ରତିଷ୍ଠାପାଇଁ ଅଧର୍ମ କଣ ଏକମାତ୍ର ମାର୍ଗ । ତା'ହେଲେ ଏ ଯୁଦ୍ଧ ହେଉଥିଲା କାହିଁକି ? କି ଆବଶ୍ୟକତା ଥିଲା ? କେଉଁ ଦିନୁ ଆମେ ଆମର ଲକ୍ଷ୍ୟପୂରଣ କରି ସାରିଥାନ୍ତୁ ।

ଠିକ୍ ଏତିକିବେଳେ ତାଙ୍କ କାନରେ ଶ୍ରୀକୃଷ୍ଣଙ୍କ ମହାବାଣୀ ଗୁଞ୍ଜରିତ ହେଲା ।'' ଉଠ, ଜାଗ୍ରତ ହୁଅ ! ତୁମେ କ୍ଷତ୍ରିୟ । ବୀରଭୋଗ୍ୟା ବସୁନ୍ଧରା । ଭୀଷ୍ମଙ୍କର ଜୀବନକାଳ ସମାପ୍ତ ହୋଇଛି । ନିୟତିର ବିଧାନ । ସେ ତୁମ ହାତରେ ବିଦାୟ ନେବେ । ତୁମେ ସେ ମହାଗତିର ନିମିତ୍ତ ମାତ୍ର ।'' ଅର୍ଜୁନଙ୍କ ଭାବାବେଶ ବଦଳିଗଲା ।

## ।। ଦଶମ ଦିନ ଯୁଦ୍ଧ- ଭୀଷ୍ମଙ୍କ ଶରଶଯ୍ୟା ।।

ଆଜି ମହାଭାରତ ଯୁଦ୍ଧର ଦିଗହଜା ଦିବସ, ଦଶମ ଦିନ । ସବୁ ଦିନର ଯୁଦ୍ଧ ଠାରୁ ଯାହାର ମାନବୀୟ ତାତ୍ପର୍ଯ୍ୟ ଅଧିକ । ଆଜି ଏପରି ଏକ ସଂଘଟନ ଘଟିବାକୁ ଯାଉଛି ଯାହାର ମାନବୀୟ ମୀମାଂଷା ଏ ପର୍ଯ୍ୟନ୍ତ ମନୁଷ୍ୟ ଖୋଜି ପାଇନି । ଏ ଦିଗରେ ମଣିଷ ତାର ବୌଦ୍ଧିକ ବିଚାର ଦେଇଛି । ତାତ୍ତ୍ୱିକ ସିଦ୍ଧାନ୍ତ ଥୋଇଛି । ଧାର୍ମିକ ନିଶ୍ଚିତ ବାଦ ପ୍ରତିଷ୍ଠା କରିଛି । ଆବେଗାତ୍ମକ ପ୍ରବଣତା ପ୍ରତିପାଦନ କରିଛି । କିନ୍ତୁ ଅବୁଝା ମନକୁ ଘଟଣା ପ୍ରବାହର ଯଥାର୍ଥତା ନେଇ ଏପର୍ଯ୍ୟନ୍ତ ବୁଝାଇ ପାରିନାହିଁ । ସେ ଦ୍ୱନ୍ଦ୍ୱ ଏପର୍ଯ୍ୟନ୍ତ ଅମୀମାଂସିତ ରହିଛି ।

ଫସର ଫାଟି ଫାଟି ଆସୁଚି । ପ୍ରଭାତର ଏଇ ପୁଣ୍ୟ ପ୍ରହରରେ ପାଣ୍ଡବମାନେ ଅଭିଯାନ ପାଇଁ ପ୍ରସ୍ତୁତ ହୋଇଗଲେଣି ।

ଭୀଷ୍ମଦେବଙ୍କ ମଧ୍ୟରେ ଆଜି ଅହେତୁକ ଉଲ୍ଲାସ ଦେଖା ଦେଇଛି । ତା'ର ଆଲୋକରେ ଉଦ୍ଭାସିତ କୌରବମାନେ । ସେମାନେ ଆଶାୟୀ, ଆଜି ନିଶ୍ଚିତ ଭାବରେ ପିତାମହ ତାଙ୍କ ବୀରତ୍ୱର ବୈଜୟନ୍ତୀ ଉଡ଼ାଇବେ । ଆସୁର ଓ ପୈଶାଚ ଆଦି ସବୁ ପଦ୍ଧତିରେ ବ୍ୟୂହ ରଚନା କରିବାର ସାମର୍ଥ୍ୟ ତାଙ୍କର ଅଛି । ସେ ଆଜି ଏକ ନୂତନ ବ୍ୟୂହ ରଚନା କରିଛନ୍ତି, ପାଣ୍ଡବମାନଙ୍କର ସମ୍ମୁଖୀନ ହେବେ ନୂତନ ଢ଼ଙ୍ଗରେ ।

କୌରବ ସୈନ୍ୟମାନଙ୍କର କେନ୍ଦ୍ର ବିନ୍ଦୁରେ ରହିଲେ ଭୀଷ୍ମଦେବ । ଗୋଟିଏ ପାଖରେ ରହିଲେ ଦ୍ରୋଣାଚାର୍ଯ୍ୟ ଓ ଅପର ପାର୍ଶ୍ୱରେ କୃପାଚାର୍ଯ୍ୟ । ଦୁର୍ଯ୍ୟୋଧନ, କୃତବର୍ମା, ଭଗଦତ୍ତ ପ୍ରଭୃତି ସମ୍ମୁଖଭାଗରେ ଜଗି ରହିଲେ । ଅନ୍ୟମାନେ ରହିଲେ ପଛରେ । ଶିଖଣ୍ଡୀଙ୍କୁ କୌଣସି ମତେ ଭୀଷ୍ମଦେବଙ୍କର ମୁହାଁ ମୁହିଁ ହେବାକୁ ଦିଆଯିବ ନାହିଁ ।

ପାଣ୍ଡବମାନେ ଆଜି ତାଙ୍କ ସେନାବ୍ୟୂହର ସମ୍ମୁଖ ଭାଗରେ ରଖିଛନ୍ତି ଶିଖଣ୍ଡୀଙ୍କୁ । ତାଙ୍କର ଦକ୍ଷିଣ ଭାଗରେ ଅଛନ୍ତି ଅର୍ଜୁନ । ବାମ ଭାଗରେ ଭୀମସେନ । ପଛରେ ଅଛନ୍ତି ଅଭିମନ୍ୟୁ, ଚେକିତାନ ଏବଂ ସାତ୍ୟକି । ସମ୍ମୁଖ ଭାଗରେ ଅଛନ୍ତି, ଯୁଧିଷ୍ଠିର, ଧୃଷ୍ଟଦ୍ୟୁମ୍ନ ଓ ବିରାଟ ରାଜ ।

ସୂର୍ଯ୍ୟଦେବ ଉଦିତ ହେଲେ ।

ରାଜନ୍ ! ଆଜି ମହାଭାରତ ଯୁଦ୍ଧର ଦଶମ ଦିବସ ।

ଶଙ୍ଖ ବଜାଇ ଯୁଦ୍ଧାରମ୍ଭର ନିର୍ଦ୍ଦେଶ ଦେଲେଣି ଭୀଷ୍ମଦେବ । ଯୁଦ୍ଧ ଆରମ୍ଭ ହୋଇଗଲାଣି । ଉଭୟ ପକ୍ଷରୁ ତୀର ବର୍ଷଣ ଚାଲିଛି । ଘମାଘୋଟ ଯୁଦ୍ଧ । ଉଭୟ ପକ୍ଷର ଅଜସ୍ର ସୈନ୍ୟ ମୃତାହତ । ଦୀପ ଲିଭିବା ପୂର୍ବରୁ ଜୋରରେ ଜଳି ଉଠିବା ପରି, ଭୀଷ୍ମଦେବଙ୍କ ପ୍ରଚଣ୍ଡ ଆକ୍ରମଣରେ ପାଣ୍ଡବ ସୈନ୍ୟମାନେ ବିଚଳିତ ହୋଇ ଉଠିଛନ୍ତି । ଠିକ୍ ଏତିକିବେଳେ ସମ୍ମୁଖଭାଗକୁ ଚାଲିଆସିଲେ ଭୀଷ୍ମଦେବ ।

ମହାରଥୀ ଶିଖଣ୍ଡୀ ଓ ମହାମହିମ ଭୀଷ୍ମ ମୁହାଁ ମୁହିଁ ହୋଇଗଲେ । ମାଡ଼ି ଆସୁଥିବା ଭୀଷ୍ମଙ୍କୁ ସେ ଅଟକାଇ ଦେଲେ । ଶିଖଣ୍ଡୀଙ୍କ ଶର, ଭୀଷ୍ମଙ୍କ ବକ୍ଷ ଭେଦକଲା । ଶିଖଣ୍ଡୀଙ୍କ ପଛରେ ରହି ଅଜସ୍ର ଶର ବର୍ଷଣ କଲେ ଅର୍ଜୁନ । ଭୀଷ୍ମଦେବ ଶର ସମ୍ବରଣ କରି ସେଇଠାରେ ଅଟକିଗଲେ । ପ୍ରତିଆକ୍ରମଣ କିମ୍ବା ପ୍ରତିରୋଧ କଲେନାହିଁ । ଅର୍ଜୁନଙ୍କ ଶର ବିଛେଇ ହୋଇଗଲା ସାରା ଶରୀରରେ । ସେ ଯନ୍ତ୍ରଣା କ୍ଲିଷ୍ଟ , ରୁଧିରାକ୍ତ ତଥାପି ଅବିଚଳିତ ।

ଶିଖଣ୍ଡୀ ଏ ପରିସ୍ଥିତିର ପ୍ରଚ୍ଛନ୍ନରୂପ ଦେଖି ପାରିନଥିଲେ । ସେ ଭାବିଥିଲେ ନିଜ ପ୍ରଚଣ୍ଡ ତପସ୍ୟାର ଏହା ପୁଣ୍ୟଫଳ । ଭୀଷ୍ମଙ୍କ ଉପରେ ପ୍ରତିଶୋଧ ନେବାର ସ୍ୱପ୍ନ ତାଙ୍କର ସଫଳ ହୋଇଛି । ସେ ବିଜୟ ଦୃପ୍ତ କଣ୍ଠରେ କହିଲେ, ''ଭୀଷ୍ମଦେବ ! ତୁମେ ପରା ଦିନେ ମହାଧନୁର୍ଦ୍ଧର ପର୍ଶୁରାମଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲ କିନ୍ତୁ ମନେରଖ, ମୋତେ ତୁମେ ଆଦୌ ସ୍ପର୍ଶ କରି ପାରିବ ନାହିଁ । ତୁମର ପୂର୍ବ ଯଶଖ୍ୟାତିକୁ ପରାହତ କରି ମୁଁ ଆଜି ନିଶ୍ଚୟ ତୁମକୁ ପରାସ୍ତ କରିବି । ଏହା ହିଁ ତୁମ ଭାଗ୍ୟର ବିଡ଼ମ୍ବନା ଓ ପୂର୍ବାର୍ଜିତ ପାପର ଫଳ ।''

ଭୀଷ୍ମଦେବ ହସି ହସି କହିଲେ, ''କୁମାରୀ ଶିଖଣ୍ଡିନୀ! ଏହା ମଧ୍ୟ ଭାଗ୍ୟର ବିଡ଼ମ୍ବନା ଯେ ରଣଯଜ୍ଞରେ ଅସୁମାର ସୈନ୍ୟମାନଙ୍କ ଜୀବନ ଯେ ଆହୁତି ଦେଉଛନ୍ତି ତାଙ୍କର କ୍ରୋଧାଗ୍ନିକୁ ଉପଶମ କରି ତୁମେ ତାଙ୍କୁ ଆଜି ହସାଉଛ । ତୁମ ବୀରତାନୁହେଁ, ନିର୍ବୋଧତା ମୋତେ ହସାଉଛି । ମୁଁ ଉପଭୋଗ କରୁଛି ତୁମର ଶର କ୍ରୀଡ଼ା । ମୋ ଶକ୍ତିକୁ ଉପଯୋଗ କରୁନି । ସମସ୍ତ ଶକ୍ତି ଖଟାଇ ତୁମେ ଖେଳ, ଖେଳ

ଶିଖଣ୍ଡିନୀ, ମୁଁ ଉପଭୋଗକରେ । ଅନ୍ତତଃ କିଛି ସମୟ ପାଇଁ ରଣବେଦି ଭୋଗବେଦିରେ ପରିଣତ ହେଉ । ମୁଁ ଏକ କୁମାରୀ କନ୍ୟା ସହିତ ଯୁଦ୍ଧ କରିବି ନାହିଁ ।

ଶିଖଣ୍ଡୀ ଲଜ୍ଜିତ ହୋଇକହିଲେ, ''ହେ ବୀର ! ଯୁଦ୍ଧ କ୍ଷେତ୍ର ରଂଗମଞ୍ଚ ନୁହେଁ । ଅଭିନୟ କିମ୍ବା ବ୍ୟଙ୍ଗ କରିବାର ସୁଯୋଗ ଏଠାରେ ନାହିଁ । ଯଦି ଶକ୍ତି ଅଛି, ମୋ ସହିତ ଯୁଦ୍ଧ କରି ତାର ପ୍ରମାଣ ଦିଅ । ଏହା କହି ସେ ତୀବ୍ର ଶରବର୍ଷଣ କଲେ ।

ଦୁର୍ଯ୍ୟୋଧନ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ପ୍ରଭୃତି ଘେରିଯାଇ ଭୀଷ୍ମଦେବଙ୍କୁ ଅନ୍ୟ ଆଡ଼କୁ ମୁହାଇଁ ଦେଲେ । ସେମାନେ ଶିଖଣ୍ଡୀ ଓ ଅର୍ଜୁନ ପ୍ରଭୃତିଙ୍କ ସହିତ ଯୁଦ୍ଧକଲେ । ସୁଯୋଗ ଦେଲେନି ଶିଖଣ୍ଡୀଙ୍କୁ ପୁଣି ଥରେ ଭୀଷ୍ମଙ୍କ ସମ୍ମୁଖକୁ ଆସି ଯୁଦ୍ଧ କରିବା ପାଇଁ ।

ଭୀଷ୍ମ ପ୍ରଳୟ ସୃଷ୍ଟିକରି ମାଡ଼ିଗଲେ ପାଣ୍ଡବମାନଙ୍କର ସୈନ୍ୟ ବ୍ୟୂହ ଭିତରକୁ । ଅସୁମାର ସୈନ୍ୟ ମୃତାହତ ହେଲେ । ପଞ୍ଚାଳ ସୈନ୍ୟମାନଙ୍କୁ ସେ ପୋକମାଛି ପରି ମାରି ପକାଇଲେ । ସେମାନଙ୍କ ମଧ୍ୟରେ ହାହାକାର ପଡ଼ିଗଲା ।

ଧୃଷ୍ଟଦ୍ୟୁମ୍ନ ପାଣ୍ଡବ ସୈନ୍ୟମାନଙ୍କୁ ଏକଜୁଟ କରି ପୁଣି ମୁହାଁଇଲେ ଭୀଷ୍ମଦେବଙ୍କ ଆଡ଼କୁ । କେକୟ, ପାଣ୍ଡ୍ୟ, ମତ୍ସ୍ୟ ଏବଂ ପଞ୍ଚାଳ ସୈନ୍ୟମାନେ ଭୀଷ୍ମଦେବଙ୍କୁ ଘେରିଗଲେ । ତାଙ୍କୁ ସାହାଯ୍ୟ କଲେ ସାତ୍ୟକି, ଧୃଷ୍ଟକେତୁ, ଚେକିତାନ ପ୍ରଭୃତି ମହାବୀରମାନେ ।

ଭୀଷ୍ମଦେବଙ୍କୁ ସାହାଯ୍ୟ କରିବା ପାଇଁ ଚାଲିଆସିଲେ ଭୂରିଶ୍ରବା, ବହ୍ଲିକ, କୃତବର୍ମା ଏବଂ କୃପାଚାର୍ଯ୍ୟ ପ୍ରଭୃତି । ଦୁଃଶାସନ ଓ ତାଙ୍କର ଭାଇମାନେ ତାଙ୍କୁ ସହଯୋଗ କଲେ । ଦୁଃଶାସନ ଆଖିବୁଜା ଆକ୍ରମଣ କଲେ ଶିଖଣ୍ଡୀଙ୍କୁ । ଅର୍ଜୁନଙ୍କ ତୀର ମାଡ଼ରେ ଭୀଷଣ ଆହତ ହୋଇ ଦୁଃଶାସନ ଛତ୍ରଭଙ୍ଗ ଦେଲେ ।

ଭୀଷ୍ମଙ୍କ ନିରାପତ୍ତାକୁ ଶିଥିଳ କରିଦେବା ପାଇଁ ପାଣ୍ଡବମାନେ କୌରବ ସୈନ୍ୟମାନଙ୍କୁ ସବୁ ଦିଗରୁ ଆକ୍ରମଣ କରି ଅତିଷ୍ଠ କରିଦେଲେ । ସତର୍କତା କୋହଳ ହୋଇଗଲା, ପୁଣି ଭୀଷ୍ମଦେବ ଓ ଶିଖଣ୍ଡୀ ମୁହାଁ ମୁହିଁ ହୋଇଗଲେ । ଠିକ୍ ଏତିକିବେଳେ ଦୁଃଶାସନ ପୁଣି ଚାଲିଆସି ଶିଖଣ୍ଡୀଙ୍କୁ ଆକ୍ରମଣ କଲେ ଓ ଅର୍ଜୁନଙ୍କ ତୀବ୍ର ଆକ୍ରମଣ ସହିନପାରି ଚାଲିଗଲେ ଯୁଦ୍ଧକ୍ଷେତ୍ରରୁ । ଭୀଷ୍ମଙ୍କ ପାଖରେ ଆସି ପହଞ୍ଚିଲେ ଅଶ୍ୱତ୍ଥାମା । ତାଙ୍କୁ ଆକ୍ରମଣ କଲେ ଅଭିମନ୍ୟୁ । ଏହି ସମୟରେ ଭଗଦତ୍ତ ଆସି ପହଞ୍ଚିଲେ ଏବଂ ଅର୍ଜୁନ ତାଙ୍କ ହସ୍ତୀ ସୁପ୍ରତିକ'କୁ ଏପରି ଆକ୍ରମଣ କଲେ ଯେ ସେ ତାଙ୍କୁ ନେଇ ଅନ୍ୟ ଦିଗକୁ ପଳାଇଲା ।

ଶିଖଣ୍ଡୀଙ୍କ ପାଇଁ ବର୍ତ୍ତମାନ ବାଟ ପରିଷ୍କାର ହୋଇଗଲା । ଭୀଷ୍ମଙ୍କୁ ନିରାପତ୍ତା ଦେବାକୁ ସେପରି କେହି ମହାରଥୀ ପାଖରେ ନାହାନ୍ତି । ସେ ଭୀଷ୍ମଙ୍କ ଉପରକୁ ପାଞ୍ଚଥର ଶରନିକ୍ଷେପ କଲେ । ସେ ଶର ତାଙ୍କର ବକ୍ଷ ଭେଦ କଲା । ତଥାପି ଭୀଷ୍ମଦେବ ଶିଖଣ୍ଡୀଙ୍କ ଉପରକୁ ଅସ୍ତ୍ର ଉତ୍ତୋଳନ କଲେ ନାହିଁ । ଶିଖଣ୍ଡୀ ତୁହାକୁ ତୁହା ଶର ନିକ୍ଷେପ କଲେ । ଅର୍ଜୁନ ଶିଖଣ୍ଡୀଙ୍କ ଅନ୍ତରାଳରେ ରହି ଅମୋଘ ଅସ୍ତ୍ର ପ୍ରୟୋଗ କଲେ । ଭୀଷ୍ମ ଜାଣିପାରିଲେ, ଏହା ଅର୍ଜୁନଙ୍କ ଅସ୍ତ୍ର । ତାଙ୍କ ସାରା ଶରୀରରେ ଅସ୍ତ୍ର ଛାଇ ହୋଇଗଲା । ଠିକ୍ ଏତିକିବେଳେ ଆସି ପହଞ୍ଚିଲେ ଦୁର୍ଯ୍ୟୋଧନ । ସେ କାତର କଣ୍ଠରେ କହିଲେ, 'ପିତାମହ ! ଆପଣଙ୍କର ଏ କି ଦଶା ! ଆପଣ ପରା ପଣ କରିଥିଲେ ଆଜି ଯୁଦ୍ଧରେ ପାଣ୍ଡବମାନଙ୍କୁ ପରାସ୍ତ କରିବେ ?''

ମୁଁ ବି କହିଥିଲି ରାଜନ୍ ! ଯଦି ପାଣ୍ଡବମାନଙ୍କୁ ପରାସ୍ତ କରି ନପାରିବି ତା'ହେଲେ ମୁଁ ଚିରବିଦାୟ

ଦୁର୍ଯ୍ୟୋଧନ କଂପିତ କଣ୍ଠରେ କହିଲେ, ''ପିତାମହ ! ଆପଣ ସେ ହତାଶାର ବାଣୀ ଶୁଣାନ୍ତୁ ନାହିଁ । ପିତାମହ ହିଁ ଆମର ଆଶା,ଆଶ୍ୱସନା, ତଥା ଶକ୍ତି କେନ୍ଦ୍ର । ଆପଣଙ୍କୁ ସହାୟତା ଦେବାକୁ କୌରବ ପକ୍ଷର ମହାରଥୀମାନେ ସଜାଗ ଅଛନ୍ତି ।''

ଭୀଷ୍ମଦେବ ହସିଲେ, କହିଲେ, ''ଦୁର୍ଯ୍ୟୋଧନ ! ମୋର ମହା ପ୍ରୟାଣର ସମୟ ଉପସ୍ଥିତ ହୋଇଛି । ମୋ ଶରୀରରେ ଯେଉଁ ଶରବିଦ୍ଧ ହୋଇଛି ତାହା ନିଶ୍ଚିତ ଭାବରେ ଅର୍ଜୁନଙ୍କର ଅବ୍ୟର୍ଥ ଶର । ଏ ମର୍ତ୍ତ୍ୟ ଭୂମିରୁ ବିଦାୟନେବା ପାଇଁ ମୋ ଭିତରେ ବ୍ୟାକୁଳତା ସୃଷ୍ଟି ହୋଇଛି । ତାହାକୁ ପରିପୂର୍ଣ୍ଣ କରିଛନ୍ତି ମହା ଧନୁର୍ଦ୍ଧର ଅର୍ଜୁନ । ମୁଁ ମୋ କର୍ତ୍ତବ୍ୟ କୌରବମାନଙ୍କ ପାଇଁ ସମ୍ପାଦନ କରିଚି । ଏଣିକି ବିଦାୟ ଦିଅ ।

ଏତିକି କହି ଭୀଷ୍ମଦେବ ରଥରୁ ତଳକୁ ଖସି ପଡ଼ିଲେ । ତାଙ୍କର ମୁଣ୍ଡଥିଲା ପୂର୍ବ ଦିଗକୁ । ତାଙ୍କ ଦେହ ଏପରି ଭାବରେ ଶରରେ ଆଚ୍ଛାଦିତ ଥିଲା ଯେ ତାହା ଭୂମି ସ୍ପର୍ଶ କଲାନାହିଁ । ସେ 'ଶରଶଯ୍ୟା'ରେ ଅନ୍ତିମ ଶୟନ ରଚନା କଲେ । ପିତା ଶାନ୍ତନୁ ତାଙ୍କୁ ବର ଦେଇଥିଲେ, ସେ ଇଚ୍ଛାମୃତ୍ୟୁ ବରଣ କରିବେ । ସେତେବେଳେ ସୂର୍ଯ୍ୟଙ୍କର ଦକ୍ଷିଣାୟନ ଥିଲା । ସେ ମୃତ୍ୟୁବରଣ କରିବାକୁ ଚାହିଁଲେ ନାହିଁ । ସୂର୍ଯ୍ୟ ଉତ୍ତରାୟଣ ହେବା ପର୍ଯ୍ୟନ୍ତ ସେ ଏଇ ଶରଶଯ୍ୟାରେ ରହି ଅପେକ୍ଷା କରିବେ । ଭୀଷ୍ମଦେବ ଶରଶଯ୍ୟାରେ ଯୋଗାରୂଢ଼ ହୋଇ ଜପକଲେ ।

ଏ ସମ୍ବାଦ ଚତୁର୍ଦ୍ଦିଗରେ ପ୍ରସାରିତ ହୋଇଗଲା । ସୂର୍ଯ୍ୟ ଅସ୍ତ ହୋଇଗଲେ, ତାଙ୍କ ସହିତ ଅସ୍ତମିତ ହେଲେ ପୁରୁବଂଶର ସୂର୍ଯ୍ୟ ଭୀଷ୍ମଦେବ । ଯୁଦ୍ଧ ବନ୍ଦ ହୋଇଗଲା । ଉଭୟ ପକ୍ଷର ବୀର ବୃନ୍ଦ ଅଶ୍ରୁ ମଥିତ ନୟନରେ ନତ ମସ୍ତକ ହୋଇ ସେମାନଙ୍କର ଭକ୍ତିଅର୍ଘ୍ୟ ଅର୍ପଣ କରିବାକୁ ଆସି ଉପସ୍ଥିତ ହେଲେ । ସମସ୍ତ ସୈନ୍ୟ ମୁଣ୍ଡପାତି ନୀରବରେ ଛିଡ଼ା ହୋଇଥାନ୍ତି ।

ଭୀଷ୍ମଦେବ ସେମାନଙ୍କୁ ଲକ୍ଷ୍ୟକରି କହିଲେ, ''ହେ ବୀରଗଣ ! ତୁମ ମାନଙ୍କର ସମ୍ମାନ ମୋତେ ଅଭିଭୂତ କରିଛି । ମୁଁ ତୁମମାନଙ୍କୁ ମୋର ଗଭୀର ସ୍ନେହ, ଶ୍ରଦ୍ଧା, ଓ ଆଶୀର୍ବାଦ ଜଣାଉଛି । ଯେଉଁ ବୀରଗଣ ବୀରଗତି ଲାଭ କରିଛନ୍ତି, ସେମାନଙ୍କୁ ମୁଁ ମୋ ସମ୍ମାନ ଏବଂ ଭକ୍ତି ନୈବେଦ୍ୟ ଅର୍ପଣ କରୁଛି ।

ଶରଶଯ୍ୟା ହିଁ ବୀରର ପୁଷ୍ପଶଯ୍ୟା । ମୁଁ ତାହା ଲାଭକରି ଆଜି ଅତ୍ୟନ୍ତ ଆନନ୍ଦିତ । ମୋ ମୁଣ୍ଡ ଶଯ୍ୟା ତଳକୁ ଝୁଲି ରହିଛି । ମୋତେ କଷ୍ଟ ଦେଉଛି । ମୋର ଗୋଟିଏ ତକିଆ ଆବଶ୍ୟକ ।

ଦୁର୍ଯ୍ୟୋଧନ ଆଖି ପିଛୁଳାକେ ଗୋଟିଏ ଅତି କୋମଳ ରେଶମି ତକିଆ ଆଣି ଦେଲେ । ପିତାମହ ତାଙ୍କୁ ଧନ୍ୟବାଦ ଜଣାଇ କହିଲେ; ଏହା ବୀର ଉପଯୋଗୀ ତକିଆ ନୁହେଁ, ଫେରାଇଦିଅ । ତାପରେ ସେ ଅର୍ଜୁନଙ୍କୁ ଅନୁରୋଧ ଭରାନୟନରେ ଚାହିଁଲେ । ଅର୍ଜୁନ କିଛି ସମୟ ପାଇଁ ଯୋଗସ୍ଥ ହୋଇ, ମନ୍ତ୍ରପୂତ ତିନୋଟି ଶର ଭୂମିବିଦ୍ଧ କଲେ ଓ ତାଙ୍କର ଝୁଲୁଥିବା ମସ୍ତକ ସେଇ ଶରଉପରେ ଟେକି ହୋଇ ରହିଗଲା । ସେ ଆନନ୍ଦିତ ହେଲେ ।

ଭୀଷ୍ମଦେବ କହିଲେ, ''ମୁଁ ଏଇ ଶରଶଯ୍ୟାରେ ସୂର୍ଯ୍ୟଙ୍କ ଉତ୍ତରାୟଣ ପର୍ଯ୍ୟନ୍ତ ଏଇପରି ଅବସ୍ଥାରେ ରହିବି । ସେ ପର୍ଯ୍ୟନ୍ତ ମୋର ପ୍ରାଣ ପ୍ରୟାଣ ହେବନାହିଁ । ମୁଁ ସେ ପର୍ଯ୍ୟନ୍ତ ବଞ୍ଚିରହିବି ।

ମୋର ମର୍ତ୍ତ୍ୟ ବିଦାୟ ପରେ, ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ ଥିବ, ମୋତେ ଆସି ଦେଖିବ । ମୁଁ ଅତ୍ୟନ୍ତ କ୍ଳାନ୍ତ, ଶୋଷରେ ତଣ୍ଟି ଶୁଖିଯାଉଛି, ମୋତେ କିଛି ଶୀତଳ ଜଳ ପିଇବାକୁ ଦିଅ ।''

ଦୁର୍ଯ୍ୟୋଧନ ଓ ଦୁଃଶାସନ ସ୍ୱର୍ଣ୍ଣ କମଣ୍ଡଳୁରେ ଶୀତଳ ଜଳ ଓ ସ୍ୱର୍ଣ୍ଣ ପାତ୍ରରେ କିଛି ସୁମିଷ୍ଟ ଖାଦ୍ୟ ନେଇଆସିଲେ । ପିତାମହ ତାହା ଗ୍ରହଣ ନକରି କହିଲେ, ଅର୍ଜ୍ଜୁନଙ୍କୁ ଡାକ ।

ଅର୍ଜ୍ଜୁନ ଆସିବାପରେ ସେ କହିଲେ, '' ଅର୍ଜ୍ଜୁନ ! ତୁମ ଶରାଘାତରେ ମୋ ସାରା ଶରୀର ଜଳୁଛି । ଶୋଷରେ ତଣ୍ଟି ଶୁଖି ଯାଉଛି । ମୋତେ କିଛି ଶୀତଳ ଜଳ ଦିଅ । ଅର୍ଜ୍ଜୁନ ପୁଣି ଯୋଗାବିଷ୍ଟ ହୋଇ ତାପରେ ଉଠିଲେ । ଧନୁଶର ହାତରେ ନେଇ ତାଙ୍କୁ ତିନିଥର ପ୍ରଦକ୍ଷିଣ କଲେ । ତା'ପରେ ସେ ଗୋଟିଏ ମନ୍ତ୍ରସିକ୍ତ ଶର ଦ୍ୱାରା ପୃଥିବୀ ବିଦ୍ଧ କଲେ । ଅମୃତ ସମ ଶୀତଳ ଜଳ, ଝର ଝର ହୋଇ ଉର୍ଦ୍ଧ୍ୱକୁ ଉଠି ତାଙ୍କ ପାଟିରେ ପଡ଼ିଲା । ପିତାମହ ତାହା ଆକଣ୍ଠ ପାନ କରି ତୃପ୍ତ ହେଲେ । ଅର୍ଜ୍ଜୁନଙ୍କୁ ଆଶୀର୍ବାଦ ଦେଇ କହିଲେ, ତୁମେ ବିଜୟୀ ହୁଅ ।''

ସେ ଦୁର୍ଯ୍ୟୋଧନଙ୍କୁ ଲକ୍ଷ୍ୟକରି କହିଲେ, '' ବତ୍ସ ! ମୋର ମୃତ୍ୟୁରେ, ତୁମ ଭାଇ ଭାଇ ମଧ୍ୟରେ ସୃଷ୍ଟି ହୋଇଥିବା ତିକ୍ତତାର ମୃତ୍ୟୁ ହେଉ । ଏ ଯୁଦ୍ଧର ପରିସମାପ୍ତି ଘଟୁ । ସମୟ ତଥାପି ଅତିକ୍ରାନ୍ତ ହୋଇନି । ଆଜି ମଧ୍ୟ ତୁମେ ପାଣ୍ଡବମାନଙ୍କ ସହିତ ସନ୍ଧିସ୍ଥାପନ କରିପାରିବ । ତୁମେ ତାଙ୍କ ରାଜ୍ୟ ତାଙ୍କୁ ଫେରାଇ ଦିଅ । ଦୁଇ ଭାଇ ଅତୀତର ସବୁ ବିଭେଦତା ଭୁଲି, ଶାନ୍ତିରେ ପ୍ରଜାପାଳନ କର । ଏତିକି କରି ପାରିଲେ ମୁଁ ଭାବିବି, ମୋର ଆତ୍ମୋତ୍ସର୍ଗ ସାର୍ଥକ ହୋଇଛି ।''

ଦୁର୍ଯ୍ୟୋଧନ ମୃତଆଗ୍ନେୟଗିରି ପରି ଗମ୍ଭୀର ହୋଇ ଉଠିଲେ । ସୈନ୍ୟମାନେ ବିଦାୟ ନେଲେ । କୌରବ ଓ ପାଣ୍ଡବମାନଙ୍କୁ ନିଜ ନିଜ ଶିବିରକୁ ଫେରିବା ପାଇଁ ଭୀଷ୍ମଦେବ ଆଦେଶ ଦେଲେ । ଦୁର୍ଯ୍ୟୋଧନ ଓ ତାଙ୍କର ଭାଇମାନେ କାନ୍ଦିକାନ୍ଦି ବିଦାୟ ନେଲେ । ପାଣ୍ଡବମାନେ ତାଙ୍କ ପଦ ଯୁଗରେ ପ୍ରଣାମ ଢ଼ାଳି ଶ୍ରୀକୃଷ୍ଣଙ୍କ ସହିତ ନିଜ ଶିବିରକୁ ଫେରିଆସିଲେ ।''

ସାମରିକ ବିଧି ବ୍ୟବସ୍ଥା ଅନୁସାରେ, ଭୀଷ୍ମଙ୍କର ସୁରକ୍ଷା ପାଇଁ ସର୍ବବିଧ ବ୍ୟବସ୍ଥା କରାଗଲା ।

ସଂଜୟଙ୍କ ଠାରୁ ଏ ସମ୍ବାଦ ଶୁଣିଲାକ୍ଷଣି ଧୃତରାଷ୍ଟ୍ର ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । କିଛି ସମୟ ପରେ ସଞ୍ଜ୍ଞାଲାଭ କରି କହିଲେ, ''ସଂଜୟ ! ପିତୃପ୍ରତିମ, କୁରୁକୁଳ ରକ୍ଷକ ଭୀଷ୍ମଦେବଙ୍କ ସହିତ, ଏ ଅଧମ ଅନ୍ଧ ସନ୍ତାନର ମଧ୍ୟ ଆଜିଠାରୁ ମୃତ୍ୟୁ ହୋଇଗଲା । ତାର ଏଣିକି ବଞ୍ଚିବାଟା ମୃତ୍ୟୁ ସହିତ ସମାନ । କୁରୁ କୁଳର କର୍ତ୍ତା ଚାଲିଗଲେ । କରାଳ ମୃତ୍ୟୁ ଉତ୍ସବ ଆଜିଠାରୁ ଆମପାଇଁ ବିଧିବଦ୍ଧ ଭାବରେ ଆରମ୍ଭ ହୋଇଗଲା । ଏ କୁଳର ଉଜ୍ଜ୍ୱଳ ଦୀପ ଆଜିଠାରୁ ଗୋଟି ଗୋଟି ହୋଇ ଲିଭିଯିବେ । ଏ ସମ୍ବାଦ ଆଉ ଶୁଣିବାକୁ ଧୈର୍ଯ୍ୟନାହିଁ ସଂଜୟ ଆଉ ଧୈର୍ଯ୍ୟ ନାହିଁ । କୁରୁକୁଳକୁ ଆଉ ଆନନ୍ଦର ପୂର୍ଣ୍ଣିମା ଆସିବ ନାହିଁ । କରାଳ କୃଷ୍ଣପକ୍ଷ ଅନନ୍ତ କାଳପାଇଁ ଘୋଟି ରହିବ ।

# ।। କର୍ଣ୍ଣ ଓ ଭୀଷ୍ମଙ୍କ ମିଳନ ।।

ପିତାମହ ଭୀଷ୍ମଙ୍କ ଶରଶଯ୍ୟା ସମ୍ବାଦ ପାଇଥିଲେ ମଧ୍ୟ, କର୍ଣ୍ଣ ସମସ୍ତଙ୍କ ଗହଣରେ ତାଙ୍କୁ ଦର୍ଶନ କରିବାକୁ ଆସି ନଥିଲେ । ନିର୍ଜନରେ ପିତାମହଙ୍କୁ ସାକ୍ଷାତ କରିବାପାଇଁ ତାଙ୍କର ନିଭୃତ ଇଚ୍ଛାଥିଲା । ସମସ୍ତ ବୀର ତାଙ୍କଠାରୁ ଫେରି ଆସିବା ପରେ, ଅନ୍ଧକାର ମଧ୍ୟରେ ସେ ଏକା ଚାଲିଚାଲି ଆସି ପହଞ୍ଚିଲେ । ପରିଧାନ କରିଥିଲେ ଶୋକ ପୋଷାକ । ନୀରବରେ, ନତମସ୍ତକରେ, ପାଦ ପାଖରେ ଛିଡ଼ା ହେଲେ । ପ୍ରହରୀଗଣ ସେଠାରୁ ଦୂରେଇ ଗଲେ ।

ଭୀଷ୍ମଦେବଙ୍କର ଚକ୍ଷୁ ସେତେବେଳେ ମୁଦ୍ରିତ ଥିଲା, ବୋଧହୁଏ ସେ ଧ୍ୟାନ ମୁଦ୍ରାରେ ଥିଲେ । କର୍ଣ୍ଣଙ୍କର ଅଶ୍ରୁଧାର ଅବାରିତ ଭାବରେ ବୋହିଆସି, ପିତାମହଙ୍କର ପଦଧୌତ କଲା । ସେ ଆଖି ଖୋଲିଲେ । ସେତେବେଳେ କର୍ଣ୍ଣ ତାଙ୍କର ପଦ ସ୍ପର୍ଶ କରି ପ୍ରଣାମ କଲେ । କହିଲେ, ମୁଁ ରାଧେୟ, ଆପଣଙ୍କର ଚିର ଅସନ୍ତୋଷର ପାତ୍ର । ଆପଣଙ୍କୁ ମୋର ଭକ୍ତି ନମ୍ର ପ୍ରଣାମ ଜଣାଉଛି । ଅନୁରୋଧ କରୁଛି ଆପଣ ମୋର ବିନୀତ ଭକ୍ତି ଅର୍ଘ୍ୟ ଗ୍ରହଣ କରନ୍ତୁ ।''

କର୍ଣ୍ଣଙ୍କୁ ଆଲିଙ୍ଗନ କରିବା ପାଇଁ ଭୀଷ୍ମଦେବ ଶ୍ରଦ୍ଧାସିକ୍ତ ହାତ ବଢ଼ାଇଲେ । ଆନନ୍ଦ ଗଦ୍‌ଗଦ୍ ହୋଇ ପିତୃ ସୁଲଭ କଣ୍ଠରେ କହିଲେ, ''ହେ ସୂର୍ଯ୍ୟପୁତ୍ର ! ତୁମେ ରାଧେୟ ନୁହଁ, କୁନ୍ତେୟ । କୁନ୍ତୀ ଦେବୀଙ୍କର ଜ୍ୟେଷ୍ଠ ପୁତ୍ର । ତୁମେ ସାଧାରଣ ମାନବ ନୁହଁ । କବଚ ଓ କୁଣ୍ଡଳ ନେଇ ଜନ୍ମଗ୍ରହଣ କରିଥିଲ । ତୁମ ମସ୍ତକ ଚାରିପାଖରେ ଏକ ପବିତ୍ର ଆଲୋକ ମେଖଳା ବେଢ଼ି ରହିଛି ମହନୀୟତାର ସୂଚନା ଦେଇ । ତୁମ ପ୍ରତି ମୋର ଆଦୌ ବିଦ୍ୱେଷ ନାହିଁ । ବରଂ ମୁଁ ତୁମର ଅଲୌକିକ ବୀରତା ଓ ପ୍ରଥିତ ପ୍ରଜ୍ଞାକୁ ସମ୍ମାନ ଦିଏ ।''

ହେ ବୀର ଶ୍ରେଷ୍ଠ ! ଧର୍ମଜ୍ଞ ପାଣ୍ଡବ ମାନଙ୍କ ପ୍ରତି ତୁମର ଅସ୍ୱାଭାବିକ ଘୃଣା ମୋତେ ବହୁବାର ବିରକ୍ତ କରାଇଛି । ଅଥଚ ସେମାନେ ବ୍ୟକ୍ତିଗତ ଭାବରେ ତୁମର କିଛି କ୍ଷତି କରିନାହାନ୍ତି । ମୁଁ ତୁମର ବିରାଟତ୍ୱକୁ ଜାଣିଜାଣି କ୍ଷୁଣ୍ଣ କରିଛି, ଅନ୍ୟାୟ ପଥରୁ ତୁମକୁ କ୍ଷାନ୍ତ କରିବି ବୋଲି । ତାହା ହେଉଛି ମୋର ତୁମ ପ୍ରତି ଗଭୀର ସମ୍ମାନର ବ୍ୟଥିତ ରୂପ । ତୁମେ, ଦୁର୍ଯ୍ୟୋଧନଙ୍କୁ ପ୍ରଳୟପଥରେ ଯିବାପାଇଁ ଉତ୍ସାହିତ ନକରିବାକୁ, ତୁମର ଭାବମୂର୍ତ୍ତି ତାଙ୍କ ପାଖରେ ମଳିନ କରିଥିଲି । ମୋ ଚେଷ୍ଟା ସଫଳ ହୋଇଥିଲେ ଆଜିର ଭୟାବହ ଧ୍ୱଂସଲୀଳା ଓ ବିଭତ୍ସ ନରସଂହାର ସୃଷ୍ଟି ହୋଇ ନଥାନ୍ତା । ମୋ ଭର୍ତ୍ସନାର କଳାମେଘ, ଦୁର୍ଯ୍ୟୋଧନଙ୍କର ତୁମ ପ୍ରତି ଅତୁଟ ବିଶ୍ୱାସର ସୂର୍ଯ୍ୟକୁ ଲୁଚାଇ ପାରିଲା ନାହିଁ । କୂଟନୀତିରେ ମୁଁ ତ ହାରିଛି, ତୁମେ ତ ଜିତିଛ । ଯାହା ହେଉ, ତୁମର ତ୍ୟାଗ, ଅନନ୍ୟ ପରାକ୍ରମ, ମୁକ୍ତ ମନୋଭାବ, ଆତ୍ମୋତ୍ସର୍ଗ, ବନ୍ଧୁବତ୍ସଳତା ଓ ଦୃଢ଼ବିଶ୍ୱାସ ଇତିହାସର ଉଦାହରଣ ହୋଇ ରହିବ । ମୋର ଅନ୍ତିମ ଅନୁରୋଧ, ମୋ ଜୀବନର ଅବସାନ ସହିତ, ତୁମ ବୈରିତାର ଅବସାନ ହେଉ । ପାଣ୍ଡବମାନଙ୍କ ସହିତ ଶାନ୍ତି ଚୁକ୍ତି କର । ମୋର ପରମ ଆଶୀର୍ବାଦ ତୁମ ସମସ୍ତଙ୍କ ପାଇଁ ରହିଛି ।''

କର୍ଣ୍ଣ ସମ୍ମାନର ସହିତ ସବୁ ଶୁଣିଲେ ଏବଂ ଭକ୍ତି ଭରା ବିନୀତ କଣ୍ଠରେ କହିଲେ, ''ପିତାମହ ! ମୁଁ ଜାଣେ, ମୁଁ ହେଉଛି କୁନ୍ତୀ ଦେବୀଙ୍କର ଜ୍ୟେଷ୍ଠ ସନ୍ତାନ । ଅଧିରଥ ମୋର ପାଳକପିତା । ରାଧା ମୋର ଜନ୍ମଦାତ୍ରୀ ନହେଲେ ମଧ୍ୟ, ମୁଁ ତାଙ୍କର ସ୍ତନ୍ୟପାନ କରିଛି । ସେ ତାଙ୍କର ଅମୃତ ମାତୃତ୍ୱ ମୋ ଉପରେ ଢ଼ାଳି ଦେଇଛନ୍ତି । ସେ ମୋର ପାଳିକା ମାତା ଓ ମୁଁ ତାଙ୍କର ପାଳିତ ପୁତ୍ର ବୋଲି କହିପାରିବି ନାହିଁ । ରାଧେୟ ନାମରେ ମୁଁ ଗର୍ବ ଅନୁଭବ କରେ ।

ମୁଁ ଜାଣେ ପାଣ୍ଡବମାନେ ଶୁରଶ୍ରେଷ୍ଠ । ଯୁଧିଷ୍ଠିର ନ୍ୟାୟ ଓ ଧର୍ମର ମୂର୍ତ୍ତିମନ୍ତ ପ୍ରତୀକ । ସେମାନଙ୍କ ପ୍ରତିମୋର ଅତୁଟ ସମ୍ମାନ ରହିଛି । ଭଗବାନ ଶ୍ରୀକୃଷ୍ଣ ସେମାନଙ୍କର ସାଥୀ ଓ ସହାୟକ । ଅର୍ଜୁନ ଓ ଶ୍ରୀକୃଷ୍ଣ ଆପଣଙ୍କ ଅନୁପସ୍ଥିତିରେ କୌରବ ପକ୍ଷର କି ଅପୂରଣୀୟ କ୍ଷତି କରିବେ ଓ ଯୁଦ୍ଧର ପରିଣତି କଣ ହେବ ତାହା ସ୍ପଷ୍ଟ । ତଥାପି ହେ ପିତାମହ ! ମୁଁ ଦୁର୍ଯ୍ୟୋଧନଙ୍କ ଐଶ୍ୱର୍ଯ୍ୟ ଓ ବିଭୂତିରେ ପରିପୁଷ୍ଟ । ଦୁର୍ଯ୍ୟୋଧନଙ୍କ ପାଖରେ ମୋର ସମସ୍ତ ଶକ୍ତି ସମର୍ପିତ । ଯେକୌଣସି ପରିସ୍ଥିତି ହେଉନା କାହିଁକି, ମୁଁ ତାଙ୍କ ପାଖେ ପାଖେ ରହିବି । ତାଙ୍କ ପାଇଁ ପ୍ରାଣଦାନ କରିବି । ମୁଁ ପାଣ୍ଡବ ମାନଙ୍କର ଅଗ୍ରଜ ହିସାବରେ ସେମାନଙ୍କ ଶିବିରକୁ ଯିବାପାଇଁ ଦ୍ୱାର ସର୍ବଦା ଉନ୍ମୁକ୍ତ । ସେମାନେ ଆଦରର ସହିତ ମୋତେ ଗ୍ରହଣ କରିବେ ଓ ନିଶ୍ଚିତ ଭାବରେ ଆର୍ଯ୍ୟାବର୍ତ୍ତର ସମ୍ରାଟ ହେବାପାଇଁ ମୋତେ ଯୁଧିଷ୍ଠିର ସିଂହାସନ ଅର୍ପଣ କରିବେ । ଏସବୁ ଜାଣିମଧ୍ୟ ମୁଁ ବିବେକ ବିରୁଦ୍ଧରେ କିଛି କରି ପାରିବିନାହିଁ । ଯାହା ଜୀବନରେ ଥରେ ପଣ କରିଛି, ସେଇ ପଣରକ୍ଷା ପାଇଁ ପ୍ରାଣ ବିସର୍ଜନ କରିବି । ଦୁର୍ଯ୍ୟୋଧନ ଯୁଦ୍ଧ କରିବା ପାଇଁ ବଦ୍ଧପରିକର । ତାଙ୍କ ଇଚ୍ଛା ବିରୁଦ୍ଧରେ ଯିବିନାହିଁ ବୋଲି ମୁଁ ତାଙ୍କୁ ସମର୍ଥନ କରିଛି ଯୁଦ୍ଧ କରିବା ପାଇଁ । ମୁଁ ତାଙ୍କୁ ପ୍ରବର୍ତ୍ତାଇ ନାହିଁ । ତାଙ୍କର ମୁଁ ଉପଦେଷ୍ଟା ନୁହେଁ । କୌଣସିକାମ କରିବେ କି ନାହିଁ ବୋଲି ସେ ମୋତେ ଉପଦେଶ ମାଗନ୍ତି ନାହିଁ । ତାଙ୍କର ସିଦ୍ଧାନ୍ତକୁ କାର୍ଯ୍ୟରେ ପରିଣତ କରିବାପାଇଁ, ସେ ମୋର ସମର୍ଥନ ଓ ସହଯୋଗ ଚାହାନ୍ତି । ମୁଁ ତାଙ୍କୁ ସେଥିରୁ ନିବୃତ୍ତ କରାଇବାର ପ୍ରଶ୍ନ ଉଠୁନି । ଯେହେତୁ ମୁଁ ସମର୍ଥନ ପାଇଁ ବଚନ ବଦ୍ଧ । ଦୁର୍ଯ୍ୟୋଧନଙ୍କ ବିଜୟ ପାଇଁ ମୁଁ ପ୍ରାଣ ବିନିମୟରେ ଯୁଦ୍ଧ କରିବି । ଆପଣ ମୋତେ ଆଶୀର୍ବାଦ ଦିଅନ୍ତୁ । ମୁଁ ସଫଳତାହାସଲ କରେ ।''

ପିତାମହ କହିଲେ, ''ହେ ବୀର ଶ୍ରେଷ୍ଠ ! ମୁଁ ତୁମର କର୍ତ୍ତବ୍ୟ ବୋଧ ପାଇଁ ପ୍ରଶଂସା ନକରି ରହିପାରୁନାହିଁ । ତୁମ ପାଇଁ ମୋର ଶ୍ରଦ୍ଧାଥିଲା । ଆଶୀର୍ବାଦ ସର୍ବଦା ରହିଛି । ତୁମେ ଦୁର୍ଯୋଧନଙ୍କ ସପକ୍ଷରେ ଯୁଦ୍ଧକର । ତାଙ୍କର ବିଜୟ ପାଇଁ ଚେଷ୍ଟିତ ହୁଅ । କୌରବ ସେନାବାହିନୀର ନେତୃତ୍ୱ ନିଅ । ବଂଧୁ ପ୍ରତି ବନ୍ଧୁର ବିଶ୍ୱସ୍ତତା ଯୁଦ୍ଧ ଇତିହାସର ଅଲିଭା ଅଧ୍ୟାୟ ହୋଇ ରହୁ । ମୁ ତୁମର ସର୍ବ ସଫଳତା କାମନା କରେ । ସ୍ୱର୍ଗଲାଭ ପାଇଁ, ନ୍ୟାୟ ଯୁଦ୍ଧର ନିର୍ଣ୍ଣାୟକ ହୁଅ ।''

କର୍ଣ୍ଣ ପିତାମହଙ୍କର ଆଶୀର୍ବାଦ ଲାଭପରେ ତାଙ୍କ ପାଦରେ ପ୍ରଣାମ କରି ନତ ମସ୍ତକରେ କୌରବ ଶିବିରକୁ ଫେରିଆସିଲେ ।

କର୍ଣ୍ଣ ଭୀଷ୍ମଙ୍କର ନିଭୃତ ମନ୍ତ୍ରଣା, ମହାଭାରତ ମହକାବ୍ୟର ଏକ ମହାନ୍ ଅଧ୍ୟାୟ । •

————————————ତେଇଶ

# ।। ଏକାଦଶ ଦିନ ଯୁଦ୍ଧ ।।

କୁରୁସମ୍ରାଟ ଧୃତରାଷ୍ଟ୍ରଙ୍କ ଉଲ୍ଲାସ ମରିଯାଇଛି । ସେ ନିସ୍ପୃହ ହୋଇ ବସିଛନ୍ତି ଯୁଦ୍ଧ ବିବରଣୀ ଶୁଣିବାପାଇଁ । ସଂଜୟଙ୍କ କହିଲେ, ବସ ।

''ହେ ରାଜନ ! ଭୀଷ୍ମଙ୍କ ଶରଶଯ୍ୟା ପରେ କୌରବ ଶିବିରରେ ନୈରାଶ୍ୟର ଘନଛାୟା ଖେଳିଯାଇଛି । ସମସ୍ତେ ଅନୁଭବ କରୁଛନ୍ତି, ସତେଯେପରି ସେମାନେ ନାବିକହୀନ ଗୋଟିଏ ନୌକାରେ ବସିଛନ୍ତି, ଅଶାନ୍ତ ସମୁଦ୍ର ଭିତରେ । ବିପଦର ଉତ୍ତାଳ ତରଙ୍ଗମାଳା ମାଡ଼ି ଆସୁଛି । ପରିସ୍ଥିତି କେତେବେଳେ କଣ ହେବ କିଛି କହି ହେଉନି ।

ସମସ୍ତଙ୍କ ଭିତରେ ଆଶାର ଆଲୋକ ଖେଳାଇ, ବୀରଦର୍ପରେ ଆସି ପହଞ୍ଚିଗଲେ ମହାବୀର କର୍ଣ୍ଣ । ସାଥିରେ ନିଜର ସନ୍ତାନ ଓ ସୈନ୍ୟଗଣ । ଦର୍ପଦୀପ୍ତ ମୁଖମଣ୍ଡଳ । ସତେଯେପରି ପ୍ରତ୍ୟେକେ ଗୋଟିଏ ଗୋଟିଏ ପ୍ରଳୟ ପୁରୁଷ, ମହାପ୍ରଳୟର ମହାନାୟକ ମହାବୀର କର୍ଣ୍ଣ । ମହାଭାରତ ଯୁଦ୍ଧ ଆରମ୍ଭ ହେଲାଦିନଠାରୁ, ସେ ଭୀଷ୍ମଙ୍କ ଉପରେ ଅଭିମାନକରି, ତାଙ୍କ ଆଧିନାୟକତ୍ୱରେ ଯୁଦ୍ଧ କରିବେନି ବୋଲି ଦୂରେଇ ରହିଥିଲେ । ଆଜିଠାରୁ ସେ ସକ୍ରିୟ ଅଂଶ ଗ୍ରହଣ କଲେ । ସମସ୍ତଙ୍କର ଧାରଣା, ଭୀଷ୍ମଙ୍କ ପରେ ସୃଷ୍ଟି ହୋଇଥିବା ଶୂନ୍ୟସ୍ଥାନ ପୂରଣ ହୋଇଗଲା । ଦୁର୍ଯ୍ୟୋଧନଙ୍କ ମନରେ ଅପାର ଆନନ୍ଦ ।

କୌରବ ରାଜପୁତ୍ରମାନେ ଆନନ୍ଦରେ ନାଚୁଥାନ୍ତି । ସୈନ୍ୟମାନେ ହର୍ଷଧ୍ୱନି କରୁଥାନ୍ତି । ଦୁର୍ଯ୍ୟୋଧନ ଆସି କର୍ଣ୍ଣଙ୍କ ସହିତ କିଛି ସମୟ ମନ୍ତ୍ରଣା କଲେ । ପଚାରିଲେ, ''ବନ୍ଧୁ ! ଆପଣ କୁହନ୍ତୁ, ଆଜି ଯୁଦ୍ଧରେ ମହା ସେନାପତି ପଦରେ କେଉଁ ମହାନ୍ ବୀରଙ୍କୁ ବରଣ କରିବା ?

''ହେ କୁରୁ ରାଜ ! ମୁଁ ତ ଭାବୁଛି, ଆପଣଙ୍କର ଯେତେ ସେନାପତି ଅଛନ୍ତି, ସମସ୍ତେ ଏକୁ ଆରେକ ମହାବଳୀ । କାହାକୁ ବଡ଼ କିମ୍ବା ସାନ ବୋଲି କୁହାଯାଇ ପାରିବ ନାହିଁ । ମହାସେନାପତି ହେବାପାଇଁ ସମସ୍ତଙ୍କର ଯୋଗ୍ୟତା ଅଛି । ତେବେ ମୋ ମତରେ ,ଆମ ସମସ୍ତଙ୍କ ମଧ୍ୟରେ ଆଚାର୍ଯ୍ୟ ଦ୍ରୋଣ ହେଉଛନ୍ତି ବୟସରେ ବଡ଼ । ତାଙ୍କର ପରିପକ୍ୱ ଅନୁଭୂତି, ବିହୁବିଧ ଦକ୍ଷତା, ଅନନ୍ୟ ପରାକ୍ରମ, ଓ ଅତୁଳନୀୟ ରଣ ନିପୁଣତା ରହିଛି । ସେ ମଧ୍ୟ ସବୁ ବୀରଙ୍କର ଅସ୍ତ୍ରଗୁରୁ ଏବଂ ଆଚାର୍ଯ୍ୟ । ମୋ ମତରେ ମହାସେନାପତି ପଦରେ ତାଙ୍କୁ ବରଣ କରାଯିବା ଉଚିତ୍ ।''

ଦୁର୍ଯ୍ୟୋଧନ ହସି ହସି କହିଲେ, ଆପଣଙ୍କର ପରିପକ୍ୱ ବିଚାର ଓ ମନସ୍ତାତ୍ତ୍ୱିକ ଦକ୍ଷତାପାଇଁ ମୁଁ ଧନ୍ୟବାଦ ଜଣାଉଛି । ମୋ ମନୋଭାବ ଅଙ୍ଗରାଜଙ୍କ ଭାଷାରେ ପ୍ରତିଫଳିତ ହୋଇଛି । ଆସନ୍ତୁ ଆଚାର୍ଯ୍ୟଙ୍କ ପାଖକୁ ଯାଇ ଅନୁରୋଧ କରିବା ।

ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଶକୁନି ଓ ଅନ୍ୟାନ୍ୟ ବୀରବୃନ୍ଦ ଦ୍ରୋଣଙ୍କ ପାଖରେ ପହଞ୍ଚିଲେ, ଦୁର୍ଯ୍ୟୋଧନ ଓ ଅନ୍ୟମାନେ ଭକ୍ତିଭରା ପ୍ରଣତି ଜଣାଇଲେ । ଦ୍ରୋଣାଚାର୍ଯ୍ୟଙ୍କ ମୁଖମଣ୍ଡଳରେ ଉଦାସର ଅବଚ୍ଛାୟା ।

ଦୁର୍ଯ୍ୟୋଧନ କହିଲେ, ''ହେ କୁଳଗୁରୁ ! ଆପଣ ସମଗ୍ର ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ରଣବିଶାରଦ, ମହାନ୍‌ବୀର । ମୁଁ ଆପଣଙ୍କୁ କୌରବ ମାନଙ୍କର ମହାସେନାପତି ପଦରେ ବରଣ କରୁଛି । ଏହା ସର୍ବ ସମ୍ମତ ମତ । ଆଶା ଆପଣ ଏହା ଗ୍ରହଣ କରିବେ । ସେଠାରେ ସମବେତ ହୋଇଥିବା ରାଜନ୍ୟମଣ୍ଡଳୀ ଏକସ୍ୱରରେ କହିଲେ ଆମେ କୁରୁ ରାଜଙ୍କର ଏ ପ୍ରସ୍ତାବକୁ ଆନନ୍ଦର ସହିତ ଅଭିନନ୍ଦନ ଜଣାଉଛୁ । ଆନନ୍ଦ କୋଳାହଳ ଭିତରେ ରଣବାଦ୍ୟ ବାଜିଉଠିଲା । ଦ୍ରୋଣାଚାର୍ଯ୍ୟ ମହାସେନାପତି ପଦରେ ଅଭିମନ୍ତ୍ରିତ ହେଲେ । ଆନନ୍ଦ ଗଦ୍ ଗଦ୍ କଣ୍ଠରେ କହିଲେ, ମୋତେ ଏତେ ବଡ଼ ସମ୍ମାନ ଦିଆଯାଇଥିବାରୁ ମୁଁ କୁରୁରାଜଙ୍କ ପାଖରେ ଋଣୀ । ଭୀଷ୍ମଦେବ ଆମ ଗହଣରୁ ଚାଲି ଯାଇଛନ୍ତି । ତାଙ୍କ ପରି ବିଶ୍ୱବନ୍ଦିତ ବୀରଙ୍କର ସ୍ଥାନ ପୂରଣ କରିବାକୁ ମୁଁ ଯୋଗ୍ୟ ନୁହେଁ । ତଥାପି ମୁଁ ପ୍ରାଣ ବିନିମୟରେ ମୋ ପବିତ୍ର କର୍ତ୍ତବ୍ୟ ସମ୍ପାଦନ କରିବି । ସେ ବାକି ରଖିଯାଇଥିବା କାମକୁ ମୁଁ ସଂପୂର୍ଣ୍ଣ କରିବି । ହେ କୁରୁରାଜ ! ଆଜିର ଏହି ଶୁଭ ମୁହୂର୍ତ୍ତରେ ମୋତେ ମନ ଖୋଲି କହନ୍ତୁ, ଆପଣଙ୍କର କି ବିଶେଷ ଇଚ୍ଛା ମୁଁ ପୂରଣ କରି ପାରିବି ?''

ଦୁର୍ଯ୍ୟୋଧନ ଏପରି ଏକ ମୁଗ୍ଧ ମାନସିକତା ଆଶା କରିନଥିଲେ, ତାହା ଥିଲା ତାଙ୍କ ପାଇଁ ଆକସ୍ମିକ । ସେ ଏହାର ସୁଯୋଗ ନେବାକୁ ଯାଇ କହିଲେ, ''ହେ ଗୁରୁଶ୍ରେଷ୍ଠ ! ଆପଣ ଯଦି ମୋ ଉପରେ ପ୍ରୀତ ତା'ହେଲେ ମୋର ଏଇ ପରମ ଇଚ୍ଛାକୁ ପୂର୍ଣ୍ଣ କରନ୍ତୁ । ମୁଁ ଯୁଧିଷ୍ଠିରଙ୍କୁ ବନ୍ଦି ଭାବରେ ମୋ ହାତରେ ପାଇବାକୁ ଇଚ୍ଛାକରେ । ଆପଣ ତାଙ୍କୁ ମାରି ଦେବାକୁ ମୁଁ ଚାହେଁନାହିଁ । ଏତିକି କରାଯାଇ ପାରିଲେ ସବୁ ସମସ୍ୟାର ସମାଧାନ ହୋଇପାରିବ ।''

ସ୍ତବ୍ଧ ହୋଇଗଲେ ଦ୍ରୋଣାଚାର୍ଯ୍ୟ । ଆଶ୍ଚର୍ଯ୍ୟରେ ଦୁର୍ଯ୍ୟୋଧନଙ୍କ ମୁହଁକୁ ଚାହିଁ ରହିଲେ । ସେ କ'ଣ କହୁଛନ୍ତି । ଯୁଧିଷ୍ଠିରଙ୍କର ମୃତ୍ୟୁ ଚାହାନ୍ତି ନାହିଁ । ପିତାମହଙ୍କ ବିଦାୟରେ ବୋଧହୁଏ ବିବେକ ଉଦୟ ହୋଇଛି । ବହୁତ ଆନନ୍ଦର କଥା । ସେ ଯୁଧିଷ୍ଠିରଙ୍କର ମୃତ୍ୟୁ ଭିକ୍ଷାକରି ନାହାନ୍ତି । ମୋତେ ଧର୍ମ ସଂକଟରେ ପକାଇ ନାହାନ୍ତି ।

ଦ୍ରୋଣାଚାର୍ଯ୍ୟ ହସିହସି କହିଲେ, ''ରାଜନ୍ ! ଏଇଛାପୂରଣ କରିବାଖୁବ୍ ସହଜ ଓ ଖୁବ୍ କଠିନ ମଧ୍ୟ । ଅର୍ଜୁନ ଯୁଦ୍ଧ ଭୂମିରେ ଯୁଧିଷ୍ଠିରଙ୍କ ପାଖରେ ନଥିଲେ ଏ କାମଟା ଅତି ସହଜରେ କରିଦେଇ ହେବ । କିନ୍ତୁ, ସେପାଖରେ ଥିଲେ ତାଙ୍କ ହାତରୁ ଧର୍ମରାଜଙ୍କୁ ଛଡ଼ାଇ ଆଣିବା କଠିନ ବ୍ୟାପାର । କଠିନ କାହିଁକି ଆଦୌ ସମ୍ଭବନୁହେଁ ।''

''ଆମେ ନିଶ୍ଚିତ ଭାବରେ ଅର୍ଜୁନଙ୍କୁ ଯୁଧିଷ୍ଠିରଙ୍କ ଠାରୁ ଦୂରେଇ ରଖିବୁ ।'' କହିଲେ, ଦୁର୍ଯ୍ୟୋଧନ ।

''ତା' ହେଲେ ମଁ କୁରୁରାଜଙ୍କ ହାତରେ ଯୁଧିଷ୍ଠିରଙ୍କୁ ବନ୍ଦି କରି ଅର୍ପଣ କରିଦେଇ ପାରିବି ।'' ଦୁର୍ଯ୍ୟୋଧନ ଆନନ୍ଦରେ ତହଲି ଉଠିଲେ ।

ତେବେ ଆପଣ ବନ୍ଦୀ ଯୁଧିଷ୍ଠିରଙ୍କୁ ନେଇ କ'ଣ କରିବେ ? ଯୁଦ୍ଧ ବନ୍ଦିକୁ ହତ୍ୟା କରାଯିବା ଉଚିତ ନୁହେଁ ।

ଦୁର୍ଯ୍ୟୋଧନ ହସି ହସି କହିଲେ, ଜୁଆଡ଼ୀ ଯୁଧିଷ୍ଠିରଙ୍କୁ ଯୁଦ୍ଧ ଭୂମିରେ ମାରିଦେଇ କୁରୁକ୍ଷେତ୍ରର ପବିତ୍ରତା ନଷ୍ଟ କରିବା କାହିଁକି ? ତାଙ୍କୁ ବନ୍ଦି କରିଦେଲେ, ଜୁଆଖେଳରେ ହରାଇ ପୁଣି ଥରେ ବଣକୁ ପଠାଇଦେବା । ଏ ଭୟଙ୍କର ଯୁଦ୍ଧ ବନ୍ଦ ହୋଇଯିବ । ଆମ ଲକ୍ଷ୍ୟ ମଧ୍ୟ ପୂରଣ ହୋଇଯିବା କ୍ଷତି କଣ ?

ଦ୍ରୋଣାଚାର୍ଯ୍ୟ ହସିଲେ । ଜୁଆ ଯୁଦ୍ଧରେ ସମସ୍ୟାର ସମାଧାନ ହେଲାନାହିଁ ବୋଲିତ, ଆମେ ଅସ୍ତ୍ରଯୁଦ୍ଧକୁ ସ୍ୱାଗତ ଜଣାଇଲେ । ପୁଣି ପଛକୁ ଫେରିବା ?''

ଏହା ମଧ୍ୟ ଏକ ରଣ କୌଶଳ ।

ଠିକ୍ ଅଛି । ଅର୍ଜୁନଙ୍କୁ କୌରବ ଶିବିରର ସମସ୍ତ ଶକ୍ତି ଖଟାଇ ମୋଠାରୁ ଦୂରେଇ ରଖା ଯାଇପାରିଲେ, ଯୁଧିଷ୍ଠିରଙ୍କୁ ଜୀବିତ ଅବସ୍ଥାରେ ମୁଁ ବାନ୍ଧିଆଣି କୁରୁରାଜଙ୍କୁ ଅର୍ପଣ କରିବି । ଏଇ ଶପଥ ନେଇ ମୁଁ ଯୁଦ୍ଧ ଭୂମିରେ ଅବତୀର୍ଣ୍ଣ ହେଉଛି । ଆପଣ ଯୁଧିଷ୍ଠିରଙ୍କୁ ଯୁଦ୍ଧ ଭୂମିରେ ନ ମାରିବା ପାଇଁ ନେଇଥିବା ସିଦ୍ଧାନ୍ତ, ପରିପକ୍ୱତାର ପରିଚୟ ଦିଏ । ଯୁଧିଷ୍ଠିରଙ୍କର ଅନ୍ୟନାମ ଅଜାତଶତ୍ରୁ । ତାଙ୍କର ଶତ୍ରୁବୋଲି ସଂସାରରେ କେହି ନାହାନ୍ତି । ଆପଣଙ୍କର ନିଷ୍ପତ୍ତି ଫଳରେ ଅଜାତଶତ୍ରୁ ନାମର ସାର୍ଥକତା ରକ୍ଷା କରାଯାଇ ପାରିବ । ମୋର ଅନୁରୋଧ, ଆଉଥରେ ଜୁଆ ଖେଳିବାର ମନୋଭାବ ପରିହାର କରିବା ଉଚିତ ।

ଦୁର୍ଯ୍ୟୋଧନ ହସି ହସି କହିଲେ, ହେ ବୀର ଶ୍ରେଷ୍ଠ ! ଆପଣ ନିଜର ଶପଥ ରକ୍ଷା କରନ୍ତୁ । ଯୁଧିଷ୍ଠିରଙ୍କୁ ମୁଁ ବନ୍ଦିଭାବରେ ଦେଖିବାକୁ ଚାହେଁ ।''

ଗୁପ୍ତଚର ମାଧ୍ୟମରେଏ ଖବର ଯାଇ ପହଞ୍ଚିଲା ପାଣ୍ଡବ ଶିବିରରେ । ସେମାନେ ସତର୍କ ହୋଇଗଲେ । ସ୍ଥିର ହେଲା, ଅର୍ଜୁନ ଯୁଧିଷ୍ଠିରଙ୍କୁ ଯୁଦ୍ଧ ଭୂମିରେ ଜଗିରହିବେ । ସେମାନଙ୍କ ଚକ୍ରାନ୍ତର ଠିକ୍ ଜବାବ ଦେବେ ।

ଏକଦଶ ଦିନରେ ଯୁଦ୍ଧ ଯଥା ସମୟରେ ଦ୍ରୋଣାଚାର୍ଯ୍ୟଙ୍କ ଅଧିନାୟକତ୍ୱରେ ଆରମ୍ଭ ହେଲା । ଆଜି ଦିନର ସଂଗ୍ରାମ ଥିଲା ଅତ୍ୟନ୍ତ ଭୟାନକ । ଦ୍ରୋଣାଚାର୍ଯ୍ୟ ତାଙ୍କର ଅମିତ ପରାକ୍ରମ ପ୍ରକାଶ କଲେ । ଯୁଧିଷ୍ଠିରଙ୍କୁ ବନ୍ଦି କରିବା ପାଇଁ ଉତ୍ସାହିତ ହୋଇ ଶପଥ କରିଦେଲେସିନା, କିନ୍ତୁ ତାହା ସମ୍ଭବ ହେଉନାହିଁ । ସେ ଜାଣନ୍ତି, ଅର୍ଜୁନଙ୍କୁ ଯୁଦ୍ଧରେ ଦେବତା, ଅସୁରମଧ୍ୟ ପରାସ୍ତ କରି ପାରିବେ ନାହିଁ । ସେ ତାଙ୍କୁ ପରାସ୍ତ କରି ଯୁଧିଷ୍ଠିରଙ୍କୁ ନେଇଆସିବାର ସ୍ୱପ୍ନ ସଫଳ ହେବା ସମ୍ଭବ ନୁହେଁ । ଅର୍ଜୁନଙ୍କୁ କୌରବ ସୈନ୍ୟମାନେ ବ୍ୟୂହ ବଦ୍ଧ କରି ରଖିବାପାଇଁ ଆପ୍ରାଣ ଚେଷ୍ଟା କଲେ କିନ୍ତୁ ପାଣ୍ଡବ ପକ୍ଷର ସଂଗଠିତ ଆକ୍ରମଣ ତାହା ପଣ୍ଡ କରିଦେଲା । କେତେ ଯେ ସୈନ୍ୟ ବିନାଶ ହେଲେ ତାହାର କଳାନା ନାହିଁ । ରଣଭୂମିରେ ମହାକାଳର ତାଣ୍ଡବ ଲୀଳା ସଂଘଟିତ ହେଲା ।

ଗୋଟିଏ ପାଖେ ସହଦେବ ଓ ଶକୁନି ଯୁଦ୍ଧରେ ମାତିଥାନ୍ତି । ସତେ ଯେପରି ଦୁଇଟି ପାହାଡ଼ ଭିତରେ ସଂଗ୍ରାମ ଚାଲିଛି । ଉଭୟଙ୍କ ରଥ ଭାଙ୍ଗିଗଲା । ଉଭୟେ ଉଭୟଙ୍କୁ ଗଦାରେ ଆକ୍ରମଣ କଲେ । ଶକୁନି ପ୍ରାଣ ବିକଳରେ ଯୁଦ୍ଧ ଭୂମିରୁ ପଳାଇଗଲେ ।

ଭୂରିଶ୍ରବା ଏବଂ ଧୃଷ୍ଟଦ୍ୟୁମ୍ନ, ବିବିସ୍ମତୀ ଓ ଭୀମ, ଚେକିତାନ ଓ ବିନ୍ଦ୍ୟ, ଅମଳମ୍ବୁଷ ଓ ଘଟୋତ୍କଚ, କର୍ଣ୍ଣ ଏବଂ ବିରାଟ, ଅଭିମନ୍ୟୁ ଓ ସିନ୍ଧୁରାଜଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଚାଲିଛି । ସିନ୍ଧୁରାଜ କ୍ଷତାକ୍ତ ହୋଇ ଛତ୍ରଭଙ୍ଗ ଦେଲେ । ଶଲ୍ୟ ମାଡ଼ି ଆସିଲେ ଅଭିମନ୍ୟୁଙ୍କ ଉପରକୁ । ଠିକ୍ ଏତିକିବେଳେ ପହଞ୍ଚିଗଲେ ଭୀମସେନ । ଗଦାଯୁଦ୍ଧରେ କେହି କାହାଠାରୁ ଊଣା ନୁହଁନ୍ତି । ଦୁଇ ମହାଯୋଦ୍ଧାଙ୍କ ଭିତରେ ଚାଲିଛି, ଭୟଙ୍କର ଗଦାଯୁଦ୍ଧ । ରଣଭୂମି ଗଦାମାଡ଼ର ଶବ୍ଦରେ ପ୍ରକମ୍ପିତ ହେଉଥାଏ । ଉଭୟ ପକ୍ଷର ସୈନ୍ୟମାନଙ୍କ ପାଇଁ ଏହା ଥିଲା ଏକ ଲୋଭନୀୟ ଦୃଶ୍ୟ । ଆକାଶରେ ଥାଇ ଦେବତାମାନେ ମଧ୍ୟ ଏ ଦୃଶ୍ୟ ଉପଭୋଗ କରୁଥିଲେ । ଶଲ୍ୟ ପରାସ୍ତ ହୋଇ ପଳାଇଗଲେ । କୌରବ ସୈନ୍ୟମାନେ ଛତ୍ରଭଙ୍ଗ ଦେଲେ । ପାଣ୍ଡବ ସୈନ୍ୟମାନେ ଏହାର ସୁଯୋଗ ନେଇ କୌରବ ପକ୍ଷରେ ହଇଚଇ ସୃଷ୍ଟି କରିଦେଲେ ।

ଏତିକିବେଳେ ବେଳକାଳ ଉଣ୍ଡି ଯୁଧିଷ୍ଠିରଙ୍କ ସମ୍ମୁଖୀନ ହୋଇଗଲେ ଦ୍ରୋଣାଚାର୍ଯ୍ୟ । ହତୋତ୍ସାହିତ କୌରବମାନଙ୍କ ମଧ୍ୟରେ ନୂତନ ଶକ୍ତିର ଅଭ୍ୟୁଦୟ ହେଲା । ସମସ୍ତେ ଭାବିଲେ, ଏଥର ନିଶ୍ଚୟ ଦ୍ରୋଣ ଯୁଧିଷ୍ଠିରଙ୍କୁ ବନ୍ଦିକରି ଆଣି ଦୁର୍ଯ୍ୟୋଧନଙ୍କ ହାତରେ ସମର୍ପି ଦେବେ ।

ଦ୍ରୋଣାଚାର୍ଯ୍ୟ ଠିକ୍ ଏତିକିବେଳେ ନିଜର ନାଗଫାଶ ଅସ୍ତ୍ର ପ୍ରୟୋଗ କଲେ ଯୁଧିଷ୍ଠିରଙ୍କ ଉପରକୁ । ତାହା ତାଙ୍କୁ ପାଶବଦ୍ଧ କରିଦେବ ।

ଆଖିପିଛୁଳାକେ ଆଚାର୍ଯ୍ୟଙ୍କ ନାଗଫାଶ ଅସ୍ତ୍ର ଅଧାବାଟରେ ଭାଙ୍ଗି ଦୁଇଖଣ୍ଡ ହୋଇଗଲା । ସେ ଲକ୍ଷ୍ୟ କଲେ, ସବ୍ୟସାଚୀଙ୍କ ଅସ୍ତ୍ର ଆସି ତାଙ୍କ ଅସ୍ତ୍ରକୁ ଅକାମି କରି ଦେଇଛି । ସେ ଚିତ୍କାର କରି ଉଠିଲେ ''ଅର୍ଜୁନ ଆସିଗଲେ ? ଏହା ସହସା ସଂକ୍ରମିତ ହେଲା ତାଙ୍କ ସୈନ୍ୟମାନଙ୍କର ଭିତରକୁ । ସେମାନେ ମଧ୍ୟ ଚିତ୍କାର କରି ଉଠିଲେ, ''ଅର୍ଜୁନ ଆସିଗଲେ, ଅର୍ଜୁନ ଆସିଗଲେ । ଚାରିଆଡ଼େ ଚହଳ ପଡ଼ିଗଲା । ଅର୍ଜୁନ ଆସିଗଲେ । କୌରବ ସୈନ୍ୟମାନେ ଛିନ୍ନଛତ୍ର ହୋଇଗଲେ । ଅର୍ଜୁନ ନାଁଟା ସେମାନଙ୍କର ଆତଙ୍କର କାରଣ ହେଲା । ମହା ସେନାପତି ଦ୍ରୋଣାଚାର୍ଯ୍ୟ ସେ ନାଁରେ ଆତଙ୍କିତ ।

ସତକୁ ସତ ଅର୍ଜୁନ ଆସି ପହଞ୍ଚିଲେ ଯୁଧିଷ୍ଠିରଙ୍କ ପାଖରେ । ପାଣ୍ଡବ ସୈନ୍ୟମାନେ ଆନନ୍ଦରେ ମଧ୍ୟ ଚିତ୍କାର କଲେ ''ଅର୍ଜୁନ ଆସିଗଲେ । ଗୋଟାଏ ପାଖରେ ଗଭୀର ଆତଙ୍କ ଅନ୍ୟ ଏକ ପାଖରେ ଅମାପ ଆନନ୍ଦ । ରଣଭୂମିରେ ନନ୍ଦିଘୋଷ ରଥ କାଳଚକ୍ରପରି ମାଡ଼ିଆସିଲା । ଅର୍ଜୁନ, ଯୁଧିଷ୍ଠିରଙ୍କୁ ଅଭୟ ଦାନ କରି ଶତ୍ରୁପକ୍ଷର ସର୍ବନାଶ କଲେ । କୌରବ ସେନା ତ୍ରାହି ତ୍ରାହି ଡାକି ଛତ୍ରଭଙ୍ଗ ଦେଲେ । ଦ୍ରୋଣାଚାର୍ଯ୍ୟ କିଛି କରି ପାରିଲେ ନାହିଁ ।

ସୂର୍ଯ୍ୟ ଅସ୍ତ ହେଲେ । ଦ୍ରୋଣାଚାର୍ଯ୍ୟ ଶଙ୍ଖବଜାଇ ସେ ରଣ ବିରତି ଘୋଷଣା କଲେ । କୌରବ ସୈନ୍ୟମାନେ ସେଦିନ ରକ୍ଷାପାଇଗଲେ ।

ସଂଧ୍ୟାର ପ୍ରଥମ ପ୍ରହରରେ ଦୁର୍ଯ୍ୟୋଧନ ଯାଇ ସାକ୍ଷାତ କଲେ ଦ୍ରୋଣାଚାର୍ଯ୍ୟଙ୍କୁ । ନିଜର ଅତୃପ୍ତି ପ୍ରକାଶକଲେ । ଦ୍ରୋଣ କହିଲେ, ''ମୁଁ ତ ଯୁଧିଷ୍ଠିରଙ୍କୁ ବନ୍ଧନ କରି ଦେଇଥିଲି । ସେତିକିବେଳେ ଅର୍ଜୁନଙ୍କୁ ଆବଦ୍ଧ କରି ପାରିଥିଲେ ନିଶ୍ଚିତ ସଫଳତା ହାତରୁ ଖସି ଯାଇ ନଥାନ୍ତା । ପରଦିନ ଯୁଦ୍ଧ ପାଇଁ କୌଶଳ ନିର୍ଦ୍ଧାରଣ କରି ସେ ଚାଲିଆସିଲେ ।

ଅର୍ଜୁନ ଯାଇ ପହଞ୍ଚିଲେ ଶ୍ରୀକୃଷ୍ଣଙ୍କ ପାଖରେ । ଦ୍ରୋଣାଚାର୍ଯ୍ୟଙ୍କ ଅମିତ ଶକ୍ତିର ପ୍ରଶଂସା କରି କହିଲେ ହୁଏତ କାଲି ଯୁଦ୍ଧରେ ମୁଁ ତାଙ୍କର କୌଣସି ଅମୋଘ ଅସ୍ତ୍ରାଘାତରେ ଯଦି ମୃତ୍ୟୁ ବରଣ କରିବି ତାହେଲେ ସଖା କଣ କରିବେ ?

ଶ୍ରୀକୃଷ୍ଣ ଗମ୍ଭୀର ହୋଇ କହିଲେ, ''ଏପରିକି ପାଶୁପତଅସ୍ତ୍ର ପ୍ରୟୋଗ ହେଲେ ମଧ୍ୟ ତାହା ବିଫଳ ହୋଇଯିବ । ମୁଁ ବଞ୍ଚି ଥାଉ ଥାଉ ସଖାଙ୍କର ମୃତ୍ୟୁ ଆଦୌ ସଂଭବ ନୁହେଁ । ଯଦି ଅସମ୍ଭବ କେବେ ସମ୍ଭବ ହେବ, ତାହେଲେ ସଖାଙ୍କ ଚିତାଗ୍ନିରେ ପ୍ରବେଶ କରି ମୁଁ ମଧ୍ୟ ବିଦାୟ ନେବି ।'' ଅର୍ଜୁନ ଶ୍ରୀକୃଷ୍ଣଙ୍କ ଚରଣ ଅଶ୍ରୁଜଳରେ ଧୌତ କରି ବିଦାୟ ନେଲେ । ରାଜା ଧୃତରାଷ୍ଟ୍ର ଉତୁରା ମେଘପରି ଭିତରେ ଭିତରେ ଗର୍ଜନ କରୁଥାନ୍ତି, କିନ୍ତୁ କିଛି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ ।

# ।। ଦ୍ୱାଦଶ ଦିନ ଯୁଦ୍ଧ ।।

ଆଜି ମହାଭାରତ ଯୁଦ୍ଧର ଦ୍ୱାଦଶ ଦିବସ । ଭୀଷ୍ମଦେଙ୍କ ଶରଶଯ୍ୟା ପରଠାରୁ ଧୃତରାଷ୍ଟ୍ର ଯୁଦ୍ଧର ସମସ୍ତ ବିବରଣୀ ଶୁଣିମଧ୍ୟ ନୀରବତା ଅବଲମ୍ବନ କରିଛନ୍ତି । ସେ ନିଜର ପ୍ରତିକ୍ରିୟା ଆଉ ପ୍ରକାଶକରୁ ନାହାନ୍ତି ।

ଆଜିଦିନ ଯୁଦ୍ଧର ବିଶେଷତ୍ୱ ହେଉଛି, 'ସଂସପ୍ତକ' ଅଭିଯାନ । କୌରବମାନେ ଅର୍ଜୁନଙ୍କୁ ଯୁଦ୍ଧ ଭୂମିରେ କବଳିତ କରି ପାରୁନଥିବାରୁ, ଯୁଧିଷ୍ଠିରଙ୍କୁ ବନ୍ଦିକରାଯାଇ ପାରୁନାହିଁ । ସଂସପ୍ତକ ଅଭିଯାନ ଏକ ନିଶ୍ଚିତ ସାମରିକ କୌଶଳ, ଯାହାମାଧ୍ୟମରେ ଲକ୍ଷ୍ୟପୂରଣ କରାଯାଇ ପାରିବ ।

ତ୍ରିଗର୍ତ୍ତର ରାଜା ସୁଶର୍ମା ଏହାର ନେତୃତ୍ୱ ନେଇଚନ୍ତି । ତାଙ୍କ ଅଧିନାୟକତ୍ୱରେ ଏକ ବିପୁଳ ସୈନ୍ୟ 'ସଂସପ୍ତକ ଶପଥ' ଗ୍ରହଣ କଲେ । ଗୋଟାଏ ବିରାଟ କାଠ ଗଦାରେ ନିଆଁ ଜଳାଗଲା । ସମସ୍ତେ ଅଗ୍ନିକୁ ସାକ୍ଷିରଖି ଶପଥ ନେଲେ ଅର୍ଜୁନଙ୍କୁ ବଧ କରିବେ କିମ୍ବା ନିଜେ ବଧହେବେ । ପ୍ରତ୍ୟେକ ସୈନିକ ଏଥିପାଇଁ ନିଜ ଜୀବନକୁ ବାଜିଲଗାଇଲେ । ଶାଣିତ ଖଡ଼ଗ ଧାରରେ ନିଜ ଶରୀରରୁ ରକ୍ତ ବାହାର କରି ବିଜୟ ତିଳକ କପାଳରେ ମାରିଲେ । ନିଜର ଶେଷକୃତ୍ୟ ନିଜେ ପାଳନକଲେ । ଲକ୍ଷ୍ୟପୂରଣ ପାଇଁ ସେମାନେ ସମସ୍ତେ ଆତ୍ମଘାତୀ ସୈନିକ ।

ଦୁର୍ଯ୍ୟୋଧନ ଆନନ୍ଦରେ ବିଭୋର । ତାଙ୍କର ଲକ୍ଷ୍ୟ ପୂରଣ ହେବ । ଦ୍ରୋଣାଚାର୍ଯ୍ୟ ଏ ପ୍ରକାର ଦୃଢ଼ପଦକ୍ଷେପ ପାଇଁ ଆନନ୍ଦିତ ।

ସଂଶପ୍ତକ ସୈନ୍ୟଗଣ ଦକ୍ଷିଣାଭିମୁଖୀ ହୋଇ ରଣଭୂମିକୁ ଯାତ୍ରା କଲେ । ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ, ଦ୍ରୋଣାଚାର୍ଯ୍ୟ ନିଜ ସୈନ୍ୟମାନଙ୍କୁ ନେଇ, ଗରୁଡ଼ ବ୍ୟୂହ ରଚନା କଲେ । ତାଙ୍କର ଲକ୍ଷ୍ୟ, ଏହି ବ୍ୟୂହ ମାଧ୍ୟମରେ ସେ ଯୁଧିଷ୍ଠିରଙ୍କୁ କବଳିତ କରିବେ । ସଂସପ୍ତକ ସେନାବାହିନୀ ଅର୍ଜୁନଙ୍କୁ ଅନ୍ୟ ଦିଗରେ ଯୁଦ୍ଧ ଭୂମିରେ ଜଗିରହିବେ ।

ପାଣ୍ଡବମାନେ ରଚନାକଲେ 'ଅର୍ଦ୍ଧଚନ୍ଦ୍ର' ବ୍ୟୂହ । ଯୁଧିଷ୍ଠିରଙ୍କର ଆତ୍ମରକ୍ଷା କରିବାପାଇଁ ଏହା ସହାୟକ ହେବ ।

ଶଙ୍ଖ ବାଜି ଉଠିଲା ।

ଯୁଦ୍ଧ ଆରମ୍ଭ ହେଲା ।

ସଂସପ୍ତକ ସୈନ୍ୟଗଣ ରଣକ୍ଷେତ୍ରର ଦକ୍ଷିଣ ଭାଗରେ ଗର୍ଜି ଉଠିଲେ, ''ହେ ଅର୍ଜୁନ ! ତୁମେ ଶୃଗାଳ ପରି ସେପାଖରେ ଆତ୍ମଗୋପନ କରିଛ କାହିଁକି ? ଯଦି ଶକ୍ତି ଅଛି, ଏ ପାଖକୁ ଚାଲିଆସ । ଆମେ ସିଂହଦଳ ତୁମପରି ମେଷ ଶାବକକୁ ଅପେକ୍ଷା କରିଛୁ । ଆସ.... ଚାଲିଆସ । ଆମ ଖଡ୍ଗ ତୃଷାର୍ତ୍ତ ତମର ରକ୍ତପାନ କରିବା ପାଇଁ । ଆସ ଶୀଘ୍ର ଆସ ।''

ଅର୍ଜୁନ ସେ ରଣ ହୁଙ୍କାର ସହ୍ୟ କରି ପାରିଲେ ନାହିଁ । ରାଜା ଯୁଧିଷ୍ଠିରଙ୍କ ପାଖକୁ ଯାଇ ବିନୀତ କଣ୍ଠରେ କହିଲେ, ''ରାଜନ୍ ! ସାତ୍ୟକି, ପଞ୍ଚାଳ ରାଜକୁମାର ସତ୍ୟଜିତ୍ ଓ ଭୀମସେନ ଆପଣଙ୍କ ସୁରକ୍ଷା ଦାୟିତ୍ୱରେ ରହିବେ । ସଂସପ୍ତକ ସୈନ୍ୟମାନଙ୍କର ଆହ୍ୱାନକୁ ମୁଁ ଏଡ଼ି ଦେଇ ପାରିବି ନାହିଁ । ଦୟାକରି ମୋତେ ଅନୁମତି ଦିଅନ୍ତୁ । ମୁଁ ସେମାନଙ୍କ ଉଦ୍ଧତ ଆହ୍ୱାନର ଉତ୍ତର ଦିଏ ।''

ଯୁଧିଷ୍ଠିର କହିଲେ, ''ପ୍ରିୟ ଭାଇ ଅର୍ଜୁନ ! ତୁମେ ସେମାନଙ୍କୁ ସମୁଚିତ ଶିକ୍ଷା ଦେବାର ଆବଶ୍ୟକତା ରହିଛି । ତେବେ ତୁମେ ତ ଜାଣିଛ, ଆଚାର୍ଯ୍ୟ ଦ୍ରୋଣ ମୋତେ ଜୀବିତ ଅବସ୍ଥାରେ ବନ୍ଦି କରି ନେବାକୁ ଶପଥ କରିଛନ୍ତି । ତାଙ୍କ ପଣ ରକ୍ଷାକରିବା ପାଇଁ ସେ ନିଶ୍ଚିତ ଭାବରେ ଅଟଳ ରହିବେ । ଅସ୍ତ୍ର ଚାଳନାରେ ତାଙ୍କର ଦକ୍ଷତା କେତେ, ତୁମେ ସବୁ ଜାଣିଛ । ତୁମ ବ୍ୟତୀତ ଅନ୍ୟ କେହି ସେ ଅସ୍ତ୍ରସବୁକୁ ଅଚଳକରି ପାରିବେ ନାହିଁ । ଏ ପରିସ୍ଥିତିରେ କଣ କରିବ, ତୁମେ ସ୍ଥିର କର ।''

''ପାଣ୍ଡବ ପକ୍ଷର ମହାନ୍ ବୀରଗଣ ତୁମ ପାଖେ ପାଖେ ରହିବେ । ସେମାନଙ୍କ ଦକ୍ଷତାଉପରେ ମୋର ଅଗାଧ ବିଶ୍ୱାସ ଅଛି । ଦ୍ରୋଣାଚାର୍ଯ୍ୟ ଦୁର୍ଦ୍ଧର୍ଷ ହେଲେ ମଧ୍ୟ ଭୀମ, ସାତ୍ୟକି, ସତ୍ୟଜିତ୍,ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ଦୁର୍ଦ୍ଦମନୀୟ । ମୁଁ ଆସୁଛି'' ପ୍ରଣାମ ଢ଼ାଳି ଅର୍ଜୁନ ବିଦାୟ ନେଲେ । ଯୁଧିଷ୍ଠିର ଆଶୀର୍ବାଦ ଦେଇକହିଲେ ବିଜୟୀ ହୁଅ ।''

ଦକ୍ଷିଣଦିଗକୁ ରଥବାହି ନେବାପାଇଁ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ସେ ସ୍ତମ୍ଭୀଭୂତ ହୋଇଗଲେ ସଂଶପ୍ତକ ବୀରମାନଙ୍କର ବୀରତା ଦେଖି । ପ୍ରଳୟର ଅବତାର ନେଇଛନ୍ତି ସେମାନେ । ଅର୍ଜୁନ ତାଙ୍କର ଗାଣ୍ଡୀବ ଧନୁ ଉତ୍ତୋଳନ କଲେ । ତା'ର ଟଙ୍କାର ଶବ୍ଦରେ ରଣଭୂମି ପ୍ରକମ୍ପିତ ହେଲା । କେତେ ଯେ ସୈନ୍ୟମଲେ ତାର ଇୟତ୍ତା ନାହିଁ । ତଥାପି ସଂଶପ୍ତକ ସୈନ୍ୟମାନଙ୍କର ନିଃଶେଷ ହେଉନାହିଁ । ଅର୍ଜୁନ ପାଣ୍ଡବ ସୈନ୍ୟମାନଙ୍କୁ ନେଇ ଦିନ ତମାମ ଲଢୁଛନ୍ତି । ସଂଶପ୍ତକ ଶକ୍ତି କେନ୍ଦ୍ର ଉପରୁ ଆଖି ଫେରାଇ ଆଣିବାର ଅବକାଶ ନାହିଁ । ଜଳୁଥିବା ନିଆଁକୁ ସେ କିଛି ପରିମାଣରେ ଦବାଇ ଦେଲେ ।

ଅର୍ଜୁନ ଦେଖିଲେ, ଦୂରରେ ହାତୀମାନଙ୍କର ବିକଟାଳ ଶବ୍ଦ ଶୁଣାଯାଉଛି । ଆକାଶକୁ ଉଠୁଛି ଧୂଳିର ଧୂମପଟଳ । ସେ ଅନୁମାନ କଲେ, ପ୍ରାଗ୍‌ଜ୍ୟୋତିଷ ପୁରର ନରେଶ ଭଗଦତ୍ତଙ୍କର ଗଜାରୋହୀ ସୈନ୍ୟ ସର୍ବାଧିକ । ସେମାନେ ବୋଧହୁଏ ପାଣ୍ଡବମାନଙ୍କ ସହିତ ସେଠାରେ ଲଢୁଛନ୍ତି । ତାଙ୍କର ସମକକ୍ଷ ଯୋଦ୍ଧା ପାଣ୍ଡବମାନଙ୍କ ମଧ୍ୟରେ ପ୍ରାୟ କେହି ନାହାନ୍ତି । ସେ ପୃଥିବୀର ଶ୍ରେଷ୍ଠତମ ବୀରମାନଙ୍କ ମଧ୍ୟରେ ଅନ୍ୟତମ ।

କଣ କରିବେ ସବ୍ୟଶାଚୀ ସ୍ଥିରକରି ପାରିଲେ ନାହିଁ । ସଂଶପ୍ତକ ସୈନ୍ୟମାନଙ୍କ ମଧ୍ୟରୁ ଅର୍ଦ୍ଧାଧିକ ଶେଷ ହୋଇ ଗଲେଣି । ଯେଉଁମାନେ ଅଛନ୍ତି, ତାଙ୍କ ରଣ ହୁଙ୍କାର ମଧ୍ୟ କମ୍ ନୁହେଁ । ତାଙ୍କୁ ଛାଡ଼ି ଦେଇ ଚାଲିଗଲେ, ଅର୍ଜୁନ ଛତ୍ରଭଙ୍ଗ ଦେଲେ ବୋଲି ସେମାନେ ପ୍ରଚାର କରିବେ । ସେମାନଙ୍କୁ ମଧ୍ୟ ପରାସ୍ତ କରିବା ଅନ୍ୟ ପାଣ୍ଡବ ସୈନ୍ୟଙ୍କ ପକ୍ଷରେ ସମ୍ଭବ ନୁହେଁ । ଦିବ୍ୟାସ୍ତ୍ର ପ୍ରୟୋଗ କଲେ ଅର୍ଜୁନ ।

ସଂଶପ୍ତକ ସୈନ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଭୂତଳଶାୟୀ ହେଲେ । ଏହି ଆତ୍ମଘାତୀ ସମର ଶକ୍ତିର ନାୟକ ସୁଶର୍ମା, ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ପ୍ରଳୟ ଶିଖା ଲିଭିଗଲା । ସେ ସଖା ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ, ମୁଖ୍ୟରଣବେଦିକୁ ରଥ ଫେରାଇ ନେବାପାଇଁ । ଦେଖିଲେ ଭଗଦତ୍ତ ମହା ପ୍ରଳୟ ସୃଷ୍ଟି କରିଛନ୍ତି । ଅସୁମାର ପାଣ୍ଡବ ସୈନ୍ୟ ମୃତାହତ ହେଲେଣି । ହାହାକାର ଖେଳିଗଲାଣି ସେମାନଙ୍କ ମଧ୍ୟରେ । ଅର୍ଜୁନ କୌରବ ସେନାଙ୍କ ଉପରେ ଶରବର୍ଷା କରି ସେମାନଙ୍କର ଅଗ୍ରଗତିକୁ ସେଇଠାରେ ଅଟକାଇ ଦେଲେ । ଅର୍ଜୁନଙ୍କ ଅସ୍ତ୍ରାଘାତରେ ଭଗଦତ୍ତଙ୍କର ସମସ୍ତ ଅସ୍ତ୍ର ଅକାମି ହୋଇଗଲା । ଆଉ ଏକ ଅସ୍ତ୍ର ତାଙ୍କର ମର୍ମସ୍ଥଳ ଭେଦକଲା । ସେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ସେ ବୈଷ୍ଣବାସ୍ତ୍ର ଆବାହନ କରି ପ୍ରୟୋଗ କଲେ ଅର୍ଜୁନଙ୍କ ଉପରେ । ଏହି ଅସ୍ତ୍ରର ଶୀର୍ଷ ଭାଗରେ ଥିଲା ଅଭିମନ୍ତ୍ରିତ ଏକ ଅଙ୍କୁଶ ।

ଏହା ବଜ୍ରଠାରୁ ଥିଲା ଅଧିକ ଶକ୍ତିଶାଳୀ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ସାମନାରେ ଛିଡ଼ା ହୋଇଗଲେ । ଫଳରେ ତାହା ତାଙ୍କ ବକ୍ଷସ୍ଥଳକୁ ବିଦ୍ଧ କଲା । ଅର୍ଜୁନ ରକ୍ଷା ପାଇଗଲେ । ଅଙ୍କୁଶ ମାଡ଼ରେ ଶ୍ରୀକୃଷ୍ଣ ଆହତ ହେଲେ । କିନ୍ତୁ ସେ ଅସ୍ତ୍ରକୁ ଅକାମି କରିଦେଲେ । ଭଗଦତ୍ତ ଦିବ୍ୟଅସ୍ତ୍ର ରହିତ ହୋଇଗଲେ । ଅର୍ଜୁନ ଶ୍ରୀକୃଷ୍ଣଙ୍କ ସହାୟତା ନେଇ ତାଙ୍କର ମରଣ ମନ୍ତ୍ର ଜାଣିଗଲେ । ଶେଷରେ ଇନ୍ଦ୍ରଙ୍କର ପରମମିତ୍ର ଭଗଦତ୍ତର ଶିରଚ୍ଛେଦନ କଲେ ଅର୍ଜୁନ । କୌରବ ଶକ୍ତି ବହୁଗୁଣରେ ଦୁର୍ବଳ ହୋଇଗଲା । ଭଗଦତ୍ତଙ୍କର ହସ୍ତୀ ସୁପ୍ରତିକର ସଂହାର ଲୀଳା ସମାପ୍ତ ହେଲା ।

ଯୁଦ୍ଧ ଭୂମିର ଉତ୍ତର ଭାଗରେ ଦ୍ରୋଣାଚାର୍ଯ୍ୟ ପାଣ୍ଡବ ସୈନ୍ୟମାନଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ କରୁଥାନ୍ତି । ଯୁଧିଷ୍ଠିରଙ୍କୁ ବେଢ଼ି ରହିଥାନ୍ତି ସାତ୍ୟକି, ସତ୍ୟଜିତ୍, ଭୀମସେନ ପ୍ରଭୃତି । ସତ୍ୟଜିତ୍ ଦ୍ରୋଣଙ୍କର ବହୁଅସ୍ତ୍ର ଭାଙ୍ଗି ଅକାମି କରିଦେଲେ । ଦ୍ରୋଣ ସତ୍ୟଜିତ୍ଙ୍କର ରଥକୁ ଅସ୍ତ୍ରମାଡ଼ରେ ଖଣ୍ଡ ଖଣ୍ଡ କରିଦେଲେ । ତାଙ୍କ ଅଶ୍ୱମାନଙ୍କୁ ହତ୍ୟାକଲେ । ଆଉ ଏକ ନୂତନ ରଥରେ ବସି ସତ୍ୟଜିତ୍ ଦ୍ରୋଣଙ୍କ ଉପରକୁ ଅସ୍ତ୍ରପ୍ରୟୋଗ କଲେ । ଦ୍ରୋଣ କ୍ରୋଧାନ୍ୱିତ ହୋଇ ତାଙ୍କର ଶିରଚ୍ଛେଦନ କଲେ । ତାଙ୍କର ଅନ୍ୟ ଏକ ଭାଇ ବୃକ ମଧ୍ୟ ନିହତ ହେଲେ ।

ସାତ୍ୟକି, ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ଯୁଧିଷ୍ଠିରଙ୍କୁ ବେଢ଼ିଯାଇ ତାଙ୍କୁ ସୁରକ୍ଷା ପ୍ରଦାନ କଲେ । ଦ୍ରୋଣାଚାର୍ଯ୍ୟ ତାଙ୍କର ସମସ୍ତ ଶକ୍ତି ଖଟାଇ ସେମାନଙ୍କ ସହିତ ସଂଗ୍ରାମ କଲେ । ସେ କିନ୍ତୁ ଭଲରୂପେ ଜାଣିଥିଲେ ଯେ ଧୃଷ୍ଟଦ୍ୟୁମ୍ନ ହେଉଛନ୍ତି ତାଙ୍କ ମୃତ୍ୟୁର କାରଣ । ସେ କୌଶଳ ଅବଲମ୍ବନ କରି ସେମାନଙ୍କ ଠାରୁ ନିଜକୁ ଦୂରେଇ ନେଲେ ।

ଦୁର୍ଯ୍ୟୋଧନ ଦ୍ରୋଣାଚାର୍ଯ୍ୟଙ୍କ ସମର ଶକ୍ତି ଦେଖି ଅଭିଭୂତ ହୋଇ ଯାଇଥିଲେ । ତାଙ୍କର ଦୃଢ଼ଧାରଣା ଥିଲା, ଦ୍ରୋଣ ନିଶ୍ଚୟ ଯୁଧିଷ୍ଠିରଙ୍କୁ ବନ୍ଦି କରି ତାଙ୍କୁ ଅର୍ପଣ କରିବେ ।

ପାଣ୍ଡବ ସୈନ୍ୟମାନଙ୍କ ସହିତ ଭୀମ, ନକୁଳ ସହଦେବ, ବିରାଟ, ଦ୍ରୁପଦ ପ୍ରଭୃତି ଅନୁଧାବନ କଲେ ଦ୍ରୋଣାଚାର୍ଯ୍ୟଙ୍କୁ । ଦୁର୍ଯ୍ୟୋଧନ, କର୍ଣ୍ଣ, ଦୁଃଶାସନ,କୃତବର୍ମା, ବିନ୍ଦ, ଅନୁବିନ୍ଦ, ଶଲ୍ୟ ଓ କୃପାଚାର୍ଯ୍ୟ ପ୍ରଭୃତି ଦ୍ରୋଣାଚାର୍ଯ୍ୟଙ୍କୁ ସହଯୋଗ ପ୍ରଦାନ କଲେ ।

ଆରମ୍ଭ ହେଲା ଉଭୟ ପକ୍ଷ ମଧ୍ୟରେ ଭୀଷଣ ଯୁଦ୍ଧ । ଭୀମସେନ ଓ ଦୁର୍ଯ୍ୟୋଧନ ମୁହାଁ ମୁହିଁ ହୋଇଗଲେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ପ୍ରବଳରୂପ ଧାରଣ କଲା । ଦୁର୍ଯ୍ୟୋଧନ ଜୀବନ ରକ୍ଷାକରି ଯୁଦ୍ଧ କ୍ଷେତ୍ରରୁ ପଳାଇଆସିଲେ । ଏତିକିବେଳେ ଆସି ପହଞ୍ଚିଲେ ଅର୍ଜୁନ । ଦ୍ରୋଣାଚାର୍ଯ୍ୟ ନିର୍ଦ୍ଦେଶ ଦେଲେ କର୍ଣ୍ଣଙ୍କୁ ଅର୍ଜୁନଙ୍କ ସହିତ ଯୁଦ୍ଧ କରିବା ପାଇଁ । କର୍ଣ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଆରମ୍ଭ ହେଲା ପ୍ରଥମ ଥର ପାଇଁ । କର୍ଣ୍ଣ ତାଙ୍କର ଆଗ୍ନେୟାସ୍ତ୍ର ଅର୍ଜୁନଙ୍କ ଉପରେ ପ୍ରୟୋଗ କଲେ । ଅର୍ଜୁନ ବରୁଣାସ୍ତ୍ର ପ୍ରୟୋଗ କରି ଏହାକୁ ବିଫଳ କରିଦେଲେ । ବହୁ ସମୟପର୍ଯ୍ୟନ୍ତ କର୍ଣ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ଯୁଦ୍ଧ ଚାଲିଲା । କିଛି ସମୟପରେ ସୂର୍ଯ୍ୟ ଅସ୍ତହେଲେ ।

ଦ୍ରୋଣାଚାର୍ଯ୍ୟ ଶଙ୍ଖ ଫୁଙ୍କି ଯୁଦ୍ଧ ବିରତି ଘୋଷଣାକଲେ । ଦୁଇଦିନ ପ୍ରଚଣ୍ଡ ଯୁଦ୍ଧକରି ମଧ୍ୟ ଦ୍ରୋଣାଚାର୍ଯ୍ୟ ଧର୍ମରାଜଙ୍କୁ ବନ୍ଦି କରି ପାରିଲେ ନାହିଁ ।

——————————ଚବିଶ

# ।। ତ୍ରୟୋଦଶ ଦିନ ଯୁଦ୍ଧ ।।

ଅନ୍ଧ ବିଶ୍ୱାସ ହେଲେ ମଧ୍ୟ, ତ୍ରୟୋଦଶ ସଂଖ୍ୟାଟି ଅଶୁଭ ବୋଲି ଅନେକଙ୍କର ଧାରଣା । ଆଜି ମହାଭାରତ ଯୁଦ୍ଧର ତ୍ରୟୋଦଶ ଦିବସ । ଏ ଦିନଟି ପାଣ୍ଡବ ମାନଙ୍କ ପାଇଁ ଏତେ ଅଶୁଭ ଆଣିଦେବ ବୋଲି କିଏ ବା ଭାବିଥିଲା ।

ପୂର୍ବଦିନ ରାତିରେ ଦୁର୍ଯ୍ୟୋଧନ ଭାରାକ୍ରାନ୍ତ ମନରେ ଯାଇ ପହଞ୍ଚିଲେ ଦ୍ରୋଣାଚାର୍ଯ୍ୟଙ୍କ ପାଖରେ । ଆହତ କଣ୍ଠରେ କହିଲେ, ''ହେ ଗୁରୁ ଶ୍ରେଷ୍ଠ ! ମୁଁ ମୋ ତରଫରୁ ଆପଣଙ୍କୁ ବରପ୍ରାର୍ଥନା କରି ନଥିଲି । ଆପଣ ପ୍ରସନ୍ନ ହୋଇ ମୋତେ ବର ଦେଇଥିଲେ । ସବୁ ସୁଯୋଗ ଥାଇମଧ୍ୟ ଆପଣ ସେ ବର ଏପର୍ଯ୍ୟନ୍ତ ପୂରଣ କଲେ ନାହିଁ । ଯୁଧିଷ୍ଠିରଙ୍କୁ ହାତ ପାଖରେ ପାଇ ମଧ୍ୟ ଛାଡ଼ିଦେଲେ । ମୁଁ ଭାବୁଛି, ମୋ ଅପେକ୍ଷା ସେମାନଙ୍କ ପ୍ରତି ଆପଣଙ୍କର ମମତା ଅଧିକ । ଆପଣ ଜାଣି ଜାଣି ସୁଯୋଗ ହାତଛଡ଼ା କରିଛନ୍ତି । ବରଦାନର ମୂଲ୍ୟ ରହିଲା କଣ, ଆପଣ ବିଚାର କରନ୍ତୁ ।''

କ୍ରୋଧରେ ଗର୍ଜନ କରି ଉଠିଲେ ଦ୍ରୋଣାଚାର୍ଯ୍ୟ । ''ରାଜନ୍ ! ମୁଁତ ପ୍ରଥମରୁ କହିଛି, ଅର୍ଜୁନଙ୍କୁ ପରାସ୍ତ କରିବା ଅସମ୍ଭବ । ଯୁଦ୍ଧର ଏପରି କୌଣସି କୌଶଳନାହିଁ ଯାହା ଅର୍ଜୁନ ଜାଣନ୍ତି ନାହିଁ । ତାଙ୍କୁ ସାହାଯ୍ୟ କରିବାକୁ ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ପାଖେ ପାଖେ ଅଛନ୍ତି । ସୁଯୋଗ ଅବଶ୍ୟ ଆସିଥିଲା, କିନ୍ତୁ ତାହା ଉପଯୋଗ କରିବା ସମ୍ଭବ ନଥିଲା । ମୁଁ ଆଜି ଶପଥ କରୁଛି, ତୁମେ କାଲିଯଦି କୃଷ୍ଣ ଓ ଅର୍ଜୁନଙ୍କୁ ଯୁଧିଷ୍ଠିରଙ୍କ ଠାରୁ ଦୂରେଇ ରଖିବ, ତା'ହେଲେ ମୋ କାଳ ବ୍ୟୂହ ଭିତରେ ପାଣ୍ଡବ ପକ୍ଷର ଜଣେନାଜଣେ ମହାରଥୀ ମୃତ୍ୟୁବରଣ କରିବେ । ମୁଁ ଯୁଧିଷ୍ଠିରଙ୍କୁ ନିଶ୍ଚୟ ବନ୍ଦି କରିବି ।''

ଦୁର୍ଯ୍ୟୋଧନ ଆନନ୍ଦରେ ଫେରିଯାଇ ଶୟନ କଲେ । ପାଣ୍ଡବମାନେ ଏ ସମ୍ବାଦ ଗୁପ୍ତଚର ସୂତ୍ରରୁ ପାଇ ଯାଇଚନ୍ତି । ସେମାନେ ମଧ୍ୟ ନିଜର ରଣ କୌଶଳ ସ୍ଥିର କଲେ ।

ରାତି ପାହିଲା ।

ସୂର୍ଯ୍ୟୋଦୟ ସମୟରେ କୁରୁକ୍ଷେତ୍ର ପୁଣି ରଣବାଦ୍ୟ ନିର୍ଘୋଷରେ ପ୍ରକମ୍ପିତ ହେଲା । କୌରବ ପକ୍ଷ ସୈନ୍ୟମାନେ, ଦ୍ରୋଣଙ୍କ ନିର୍ଦ୍ଦେଶରେ ପଦ୍ମବ୍ୟୂହ ରଚନା କରିଛନ୍ତି । ଏହା ଚକ୍ରାକାର ଏବଂ ଏପରି କୁଟୀଳ ଯେ ତା' ଭିତରକୁ କେହି ଥରେ ପଶିଗଲେ, ସେଥିରୁ ବାହାରି ଆସିବା ଏତେ ସହଜ ନୁହେଁ । ଏଥିପାଇଁ ଆବଶ୍ୟକ ପ୍ରଚୁର ଅନୁଭୂତି ଓ ଗଭୀର ରଣକୌଶଳ । ଏହି ପଦ୍ମବ୍ୟୂହର କେବଳ ଗୋଟିଏ ମାତ୍ର ପ୍ରବେଶଦ୍ୱାର ଏବଂ ତାହାହିଁ ତାର ପ୍ରସ୍ଥାନ ପଥ । ଦ୍ରୋଣାଚାର୍ଯ୍ୟ ନିଜେ ସେହି ପ୍ରବେଶପଥକୁ ଜଗି ରହିଲେ । କୃପାଚାର୍ଯ୍ୟ, କୃତବର୍ମା, ଶଲ୍ୟ, ଶକୁନି, ଭୂରିଶ୍ରବା ଓ କର୍ଣ୍ଣ ପ୍ରଭୃତି ବ୍ୟୂହର ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଅବସ୍ଥାପିତ ହେଲେ । ମାଛିଟିଏ ବି, ତା' ଭିତରକୁ ପଶିବା ସମ୍ଭବ ନୁହେଁ ।

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ତ୍ରିଗର୍ତ୍ତରାଜ ସୁଶର୍ମା ପୂର୍ବଦିନ ପରି ସଂଶପ୍ତକ ସୈନ୍ୟମାନଙ୍କୁ ନେଇ ଦକ୍ଷିଣ ଭାଗରେ ଅର୍ଜୁନଙ୍କୁ ଆହ୍ୱାନ ଦେଲେ । ଅର୍ଜୁନ ଭାବିଲେ, ଗତକାଲି ମୁଁ ସେମାନଙ୍କୁ ଉଚିତ ଶିକ୍ଷା ଦେଇଛି । ଆଜି ସେମାନଙ୍କୁ ମୂଳପୋଛ କରିଦେଲେ ଗୋଟାଏ ଦିଗରୁ ନିଶ୍ଚିନ୍ତ ହୋଇଯିବାକୁ ପଡ଼ିବ । ପାଉଁଶ ତଳର ନିଆଁ ପୁଣି ଜଳି ଉଠିବା ଆଗରୁ ଲିଭାଇ ଦେବା ଉଚିତ । ସେ ସଂଶପ୍ତକ ସୈନ୍ୟମାନଙ୍କ ସହିତ ଲଢ଼ିବା ପାଇଁ ରଥ ନେଇ ଚାଲିଗଲେ । ଯୁଧିଷ୍ଠିର ଆଶଙ୍କା ଗ୍ରସ୍ତ ।

ସେ ଜାଣନ୍ତି, ଅର୍ଜୁନଙ୍କ ବ୍ୟତୀତ ପଦ୍ମବ୍ୟୂହ ଭେଦକରିବାର କୌଶଳ ପାଣ୍ଡବ ପକ୍ଷର କୌଣସି ବୀର ଜାଣନ୍ତି ନାହିଁ । ସେ ଚିନ୍ତିତ ଅବସ୍ଥାରେ ଥାଆନ୍ତି । ଅଭିମନ୍ୟୁ ତାଙ୍କର ମନକଥା ଜାଣିପାରି କହିଲେ, ''ହେ ରାଜନ୍ ! ମୁଁ ପିତାଙ୍କଠାରୁ ପଦ୍ମବ୍ୟୂହ ଭେଦ ଶିକ୍ଷା କରିଛି । ସେଥିରୁ ନିବର୍ତ୍ତି ଆସିବାର କୌଶଳ ସେ ମୋତେ ଏ ପର୍ଯ୍ୟନ୍ତ ଶିଖାଇ ନାହାନ୍ତି । ଆପଣ କହନ୍ତୁ କଣ କରିବା ।''

ଯୁଧିଷ୍ଠିର କିଛି ଉପାୟ ନ ପାଇ କହିଲେ, ''ବତ୍ସ ! ତୁମ ପିତାଙ୍କ ଅନୁପସ୍ଥିତିରେ ତୁମେହିଁ ବର୍ତ୍ତମାନ ଆମର ଆଶା ଭରସା । ପାଣ୍ଡବମାନଙ୍କର ସମ୍ମାନ ରକ୍ଷାର ଭାର ତୁମ ଉପରେ ନିର୍ଭର କରେ । ତୁମେ ଆଦୌ ଭୟ କରନାହିଁ । ଦ୍ରୋଣାଚାର୍ଯ୍ୟ ପ୍ରବେଶ ପଥକୁ ଜଗିରହିଛନ୍ତି । ତୁମେ କୌଣସିମତେ ତାହା ଖୋଲିଦେଲେ ଆମେ ସବୁ ତା' ଭିତରକୁ ପଶିଯିବୁ । ଭୀମସେନ, ଧୃଷ୍ଟଦ୍ୟୁମ୍ନ, ସାତ୍ୟକି ଓ ଆମ ପାଣ୍ଡବ ପକ୍ଷର ମହାବୀରମାନେ ତୁମକୁ ତା' ଭିତରେ ସୁରକ୍ଷା ଦେବେ । ସେମାନେ ମଧ୍ୟ ବ୍ୟୂହ ଭଙ୍ଗକରି ଚତୁର୍ଦ୍ଦିଗକୁ ବାଟ ଖୋଲିଦେବେ ।''

ଭୀମସେନ କହିଲେ, ''ତୁମେ ବ୍ୟସ୍ତ ହୁଅନାହିଁ । ମୁଁ ତୁମ ପାଖେ ପାଖେ ରହିବି । ଆମେ ସମସ୍ତେ ତୁମର ସୁରକ୍ଷା ଦାୟିତ୍ୱ ନେଉଛୁ । ଥରେ ବ୍ୟୂହ ଭଙ୍ଗକରି ଦେଲେ ଆମକୁ ବାଟ ମିଳିଯିବ ।''

ଅଭିମନ୍ୟୁ ସମସ୍ତଙ୍କର ଅନୁରୋଧ ଗ୍ରହଣକଲେ । ନିଜର ସାରଥି ସୁମିତ୍ରଙ୍କୁ କହିଲେ, ''ବନ୍ଧୁ ! ତୁମେ ଶୀଘ୍ର ସେହି ବ୍ୟୂହ ସ୍ଥଳୀକୁ ରଥ ବାହିନିଅ ।''

ସାରଥି କହିଲେ, ଭଗବାନ୍ ତୁମର ମଙ୍ଗଳ କରନ୍ତୁ । ଧର୍ମରାଜ ତୁମ ଉପରେ ଏକ ଗୁରୁ ଦାୟିତ୍ୱ ଲଦି ଦେଇଛନ୍ତି କିନ୍ତୁ ତୁମେ କିଶୋର ବୀର । ଯାତ୍ରା ଆରମ୍ଭ ପୂର୍ବରୁ ସବୁଦିଗରୁ କଥା ବିଚାର କର । ଦ୍ରୋଣାଚାର୍ଯ୍ୟ ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ବୀର । ତାଙ୍କର ରଣକୌଶଳ ଭେଦକରିବା ସହଜନୁହେଁ । ତୁମେ ପରାକ୍ରମରେ ନିଶ୍ଚିତ ଭାବରେ ତାଙ୍କର ସମକକ୍ଷ କିନ୍ତୁ ଦୀର୍ଘ ଜୀବନର ପରିପକ୍ୱତା କିଶୋର ଜୀବନରେ ସୁଲଭନୁହେଁ । ଆଉ ଥରେ ଚିନ୍ତାକରି ସିଦ୍ଧାନ୍ତ ନିଅ ।''

ଅଭିମନ୍ୟୁ ହସିଲେ । କହିଲେ, ''ବନ୍ଧୁ ! ତୁମର ଶ୍ରଦ୍ଧାପାଇଁ ମୁଁ କୃତଜ୍ଞତା ଜଣାଉଛି । ତେବେ ମନେରଖ, ମୁଁ ପୃଥିବୀର ଅନନ୍ୟବୀର ପାର୍ଥପୁତ୍ର ଅଭିମନ୍ୟୁ । ସର୍ବଶକ୍ତିମାନ୍ ଶ୍ରୀକୃଷ୍ଣଙ୍କର ମୁଁ ଭଣଜା । ମୋର ଶତ୍ରୁ ସଂହାରକାରୀ ଶକ୍ତି ଉପରେ ଆସ୍ଥାରଖ । ଲକ୍ଷ୍ୟସ୍ଥଳକୁ ରଥ ବାହିନିଅ ।''

ସୁମିତ୍ର ଘର୍ଘରନାଦରେ ରଥ ବାହିନେଲେ ।

କୌରବ ପକ୍ଷରେ ଚହଳ ପଡ଼ିଗଲା । ଅଭିମନ୍ୟୁ ଆସୁଛନ୍ତି, ଅଭିମନ୍ୟୁ ଆସୁଛନ୍ତି । ପାଣ୍ଡବ ପକ୍ଷର ରଥୀ ମହାରଥୀ ଓ ସୈନ୍ୟଗଣ ତାଙ୍କ ପଛେ ପଛେ ଆସୁଛନ୍ତି । ଅର୍ଜୁନଙ୍କ ଠାରୁ ଆଉରି ଭୟଙ୍କର ଅଭିମନ୍ୟୁ । ସେ ଭୟଙ୍କର ତୀରନିକ୍ଷେପ କରି ବ୍ୟୂହ ଦ୍ୱାର ଆଚ୍ଛାଦିତ କରିଦେଲେ । କୌରବ ସୈନ୍ୟମାନେ ବ୍ୟତିବ୍ୟସ୍ତ ହୋଇ ପ୍ରବେଶ ପଥରୁ ଅପସରି ଗଲେ । ଦ୍ରୋଣାଚାର୍ଯ୍ୟ ଓ ଅଭିମନ୍ୟୁଙ୍କ ମଧ୍ୟରେ ପ୍ରଚଣ୍ଡ

ଅସ୍ତ୍ର ବିନିମୟ ହେଲା । ଦ୍ରୋଣ, କିଶୋରବୀର ଅର୍ଜୁନ ପୁତ୍ର ଅଭିମନ୍ୟୁର ରଣ କୌଶଳ ଦେଖି ସ୍ତମ୍ଭୀଭୂତ ହୋଇଗଲେ । ଉଲ୍ଲାସ ଗଦ୍ ଗଦ୍ କଣ୍ଠରେ କହିଲେ, ''ଅଭିମନ୍ୟୁ ! ତୁମର ରଣ କୌଶଳରେ ମୁଁ ମୁଗ୍ଧ । ଏହି କାଳ ବ୍ୟୂହ ଭେଦକରିବା ପାଇଁ ଚେଷ୍ଟାକର ନାହିଁ ।

ଅଭିମନ୍ୟୁ ସସ୍ମିତ କଂଠରେ କହିଲେ, ''କୁଳାଚାର୍ଯ୍ୟଙ୍କର ଅସ୍ତ୍ର ଆଶୀର୍ବାଦ ଭିକ୍ଷାକରେ । ଦ୍ରୋଣ ବିସ୍ମିତ ହୋଇଗଲେ । ଅଭିମନ୍ୟୁ ଅମିତ ପରାକ୍ରମ ସହ ଦ୍ରୋଣାଚାର୍ଯ୍ୟଙ୍କୁ ଆକ୍ରମଣ କଲେ, ତଥାପି ସେ ବ୍ୟୂହ ଦ୍ୱାର ରକ୍ଷା କରିଥାନ୍ତି । ବୃତ୍ତର ଏକ ନିର୍ଦ୍ଦିଷ୍ଟ ଅଂଶ ଅଭିମନ୍ୟୁଙ୍କ ତୀରମାଡ଼ରେ ଚହଲିଗଲା ଓ ସାମାନ୍ୟ ଏକ ସଂକୀର୍ଣ୍ଣ ପଥ ସୃଷ୍ଟି ହୋଇଗଲା । ସେଇ ବାଟ ଦେଇ ଅଭିମନ୍ୟୁ ବ୍ୟୂହ ଭିତରକୁ ପଶିଗଲେ । ପାଣ୍ଡବ ବୀରଗଣ.ପଶିବାକୁ ଚେଷ୍ଟା କରିବା ସମୟରେ କୌରବ ସୈନ୍ୟମାନେ ସେମାନଙ୍କୁ ଘେରିଗଲେ । ଭିତରକୁ ପଶିବା ପାଇଁ ସୁଯୋଗ ଦେଲେ ନାହିଁ । ଅଭିମନ୍ୟୁ ପଛକୁ ନଚାହିଁ ସିଂହପରି ମାଡ଼ିଗଲେ ଆଗକୁ । କୌରବ ସୈନ୍ୟମାନଙ୍କ ଭିତରେ ହାହାକାର ପଡ଼ିଗଲା ।

ପାଣ୍ଡବ ବୀରଗଣ, କୌରବ ସୈନ୍ୟମାନଙ୍କୁ ହତ୍ୟାକରି ମାଡ଼ିଆସିଲେ ବ୍ୟୂହର ପ୍ରବେଶ ପଥକୁ । ସେମାନଙ୍କର ସମୂହ ଆକ୍ରମଣ, ଦ୍ରୋଣଙ୍କର ସ୍ଥିତିକୁ ଟଳମଳ କରିଦେଲା । ଆଖିପିଛୁଳାକେ ସିନ୍ଧୁରାଜ ଜୟଦ୍ରଥ, ସେଠାରେ ଉପସ୍ଥିତ ହୋଇନିଜର ସୈନ୍ୟବଳ ସହିତ ପ୍ରବେଶପଥ ଅବରୁଦ୍ଧ କରି ଦେଲେ । ସେ ଶିବଙ୍କଠାରୁ ବରପ୍ରାପ୍ତ ହୋଇଥିଲେ, ଅର୍ଜୁନଙ୍କ ବ୍ୟତୀତ ଅନ୍ୟ ସମସ୍ତ ପାଣ୍ଡବମାନଙ୍କୁ ଯୁଦ୍ଧରେ ପରାସ୍ତ କରିଦେଇ ପାରିବେ । ଦ୍ରୋଣଙ୍କର ସ୍ଥିତି ଶକ୍ତ ହୋଇଗଲା । ପାଣ୍ଡବମାନେ ଅକ୍ଲାନ୍ତ ଚେଷ୍ଟାକରି ମଧ୍ୟ, ଜୟଦ୍ରଥଙ୍କ ପ୍ରତିରୋଧକୁ ପ୍ରତିହତ କରି ପାରିଲେ ନାହିଁ । ସେମାନେ ପଛଘୁଞ୍ଚା ଦେଲେ ।

ପଦ୍ମବ୍ୟୂହ ଭିତରେ ସଂଗ୍ରାମରତ କିଶୋର ବୀର ଅଭିମନ୍ୟୁ । କୌରବ ପକ୍ଷର କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, କୃତବର୍ମା, କର୍ଣ୍ଣ, ଶଲ୍ୟ, ଶକୁନି, ଭୂରିଶ୍ରବା ପ୍ରଭୃତି ମହାରଥୀମାନେ ଅଭିମନ୍ୟୁଙ୍କୁ ଘେରିଗଲେ । ଚତୁର୍ଦ୍ଦିଗରୁ ସେମାନେ ତାଙ୍କୁ ଆକ୍ରମଣ କଲେ । କର୍ଣ୍ଣ ଅଭିମନ୍ୟୁଙ୍କ ଦ୍ୱାରା ଶରବିଦ୍ଧ ହେଲେ । ଶଲ୍ୟଙ୍କ ରଥ ଭାଙ୍ଗିଗଲା ଓ ସେ ତ୍ରାହିତ୍ରାହି ଡାକି ପଳାଇଗଲେ । ଶଲ୍ୟଙ୍କ ଭାଇ ତାଙ୍କ ଶରମାଡ଼ରେ ମୃତ୍ୟୁ ବରଣକଲେ । ଦୁର୍ଯ୍ୟୋଧନ ନିଜେ ଆସି ତାଙ୍କ ସହିତ ଯୁଦ୍ଧକରି ଅଭିମନ୍ୟୁଙ୍କୁ ଦବାଇ ପାରିଲେ ନାହିଁ । ଦ୍ରୋଣଙ୍କୁ ଦେଖି କହିଲେ, ଆପଣ ଠିକ୍ ଭାବରେ ଯୁଦ୍ଧ କରୁନାହାନ୍ତି ବୋଧହୁଏ । ଅର୍ଜୁନ ଓ ତାଙ୍କ ପୁତ୍ର ପ୍ରତି ଆପଣ ସଦୟ ନହେଲେ ଗୋଟାଏ ମେଞ୍ଚଡ଼ ଟୋକା ଏହି କାଳ ବ୍ୟୂହ ଭିତରେ ଏକା ଉତ୍ପାତ କରୁଥାନ୍ତା । ଆମେ ସମସ୍ତେ ଚାରିପାଖରୁ ଘେରି ଯାଇ ତାକୁ ଅକ୍ତିଆରକୁ ନେଇଆସି ପାରନ୍ତେ ।

ଦୁଃଶାସନ ଏତିକିବେଳେ ଅପୂର୍ବ ସାହସର ସହିତ ଅଭିମନ୍ୟୁଙ୍କ ଉପରକୁ ଲମ୍ଫ ଦେଲେ । ଅଭିମନ୍ୟୁ ଆନନ୍ଦିତ ହୋଇ କହିଲେ, ''ରେ ହତ ଭାଗ୍ୟ ! ଠିକ୍ ସମୟରେତୁ ମୋ ସାମନାକୁ ଆସିଛୁ । ମୁଁ ତୋ ଦୁଷ୍କୃତିର ପରାଭବ ଆଜି ତୋତେ, ଏଇଠି ଦେଇଦେବି । ଏହାକହି ସେ ତାଙ୍କର ରଥ ଭାଙ୍ଗିଦେଲେ, ଘୋଡ଼ାମାନଙ୍କୁ ମାରିଦେଲେ । ସାରଥିକୁ ହତ୍ୟାକଲେ । ଦୁଃଶାସନଙ୍କ ଦେହରେ ଭୀଷଣ କ୍ଷତ ସୃଷ୍ଟି ହେଲା । ଦୁର୍ଯ୍ୟୋଧନ ତାଙ୍କୁ ନିଜ ରଥରେ ବସାଇ ନେଇଗଲେ ।

କର୍ଣ୍ଣ ପୁଣି ଥରେ ଝାମ୍ପ ଦେଲେ ଅଭିମନ୍ୟୁଙ୍କ ଉପରକୁ । କିଛି ସମୟ ପାଇଁ ଉଭୟଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଶେଷରେ କର୍ଣ୍ଣ ପରାଜିତ ହୋଇ ପଳାୟନ କଲେ । ତାଙ୍କ ଶରାଘାତରେ କର୍ଣ୍ଣଙ୍କର ଭାଇମାନେ ମଲେ । ଶଲ୍ୟଙ୍କ କନିଷ୍ଠ ପୁତ୍ର ରୁକ୍ମରଥ ନିହତ ହେଲେ ।

ବର୍ତ୍ତମାନ ଅଭିମନ୍ୟୁଙ୍କୁ ଆକ୍ରମଣ କଲେ ଦୁର୍ଯ୍ୟୋଧନଙ୍କ ତରୁଣ ପୁତ୍ର ଲକ୍ଷ୍ମଣ । ଉଭୟେ ଦୀର୍ଘ ସମୟ ପର୍ଯ୍ୟନ୍ତ ଯୁଦ୍ଧକଲେ, ଶେଷରେ ରାଜକୁମାର ଲକ୍ଷ୍ମଣ ନିହତ ହେଲେ । ଦୁର୍ଯ୍ୟୋଧନ ଜ୍ୱଳନ୍ତ ଆଗ୍ନେୟଗିରି ପରି କ୍ରୋଧରେ ଅଗ୍ନି ବର୍ଷଣ କଲେ । ବ୍ୟଥିତ ଓ ବିଚଳିତ ହୋଇ ଉଠିଲେ ଦ୍ରୋଣାଚାର୍ଯ୍ୟ । ତାଙ୍କର ଅନ୍ତର୍ନିହିତ ସ୍ୱରୂପ ଦୁର୍ଯ୍ୟୋଧନଙ୍କୁ ଅଛପା ରହିଲା ନାହିଁ । ସିଂହପଲ ଭିତରେ ଗୋଟାଏ ଶୃଗାଳ ଉତ୍ପାତ କରୁଛି ଅଥଚ ଆର୍ଯ୍ୟାବର୍ତ୍ତ ବୀରମାନଙ୍କର ଅସ୍ତ୍ରଗୁରୁ ମୂଷିକ ପାଲଟି ଯାଇଛନ୍ତି । ସେ ଗର୍ଜନ କଲେ, ଏ ଶୃଗାଳ ଶାବକକୁ ମାର ଅଥବା ମର । ମୁଁ କାହାକୁ ଛାଡ଼ିବି ନାହିଁ ।

ଦ୍ରୋଣ, କୃପ, କର୍ଣ୍ଣ, କୃତବର୍ମା, ଅଶ୍ୱତଥାମା ଓ ବୃହଦ୍‌ବଳ ଏହି ଛଅ ଜଣ ମହାବୀର ଏକ ସହିତ ଅଭିମନ୍ୟୁଙ୍କୁ ଖୁବ୍ ନିକଟରେ ଘେରିଗଲେ । ଏହି ମିଳିତ ଶକ୍ତିର ଅଧିନାୟକ ହେଲେ ଜୟଦ୍ରଥ । ଆଖିବୁଜା ମିଳିତ ଆକ୍ରମଣ ଚାଲିଲା । ଅଭିମନ୍ୟୁ ଦେଖିଲେ ତାଙ୍କ ଚତୁଃପାର୍ଶ୍ୱରେ ପାଣ୍ଡବ ମହାରଥୀମାନଙ୍କ ଭିତରୁ କେହି ଜଣେ ମଧ୍ୟ ନାହାନ୍ତି । ସେମାନେ କଣ ତାଙ୍କ ପଛେ ପଛେ ବ୍ୟୁହ ଭିତରକୁ ପ୍ରବେଶ କରି ପାରି ନାହାନ୍ତି ? ସେମାନଙ୍କୁ କଣ କୌରବ ପକ୍ଷର ସୈନ୍ୟମାନ ମାରିଦେଲେ ?? ସେମାନେ କଣ ବାଟରେ ଅବରୁଦ୍ଧ ହୋଇଗଲେ ?? ମନ ଭିତରେ ଅନେକ ପ୍ରଶ୍ନ ! ତଥାପି ସେ ମନୋବଳ ହରାଇଲେ ନାହିଁ ।

ଦ୍ରୋଣାଚାର୍ଯ୍ୟ କର୍ଣ୍ଣଙ୍କୁ କହିଲେ, ''ଅଭିମନ୍ୟୁଙ୍କୁ ସମ୍ମୁଖ ଯୁଦ୍ଧରେ ଜୟକରାଯାଇ ପାରିବ ନାହିଁ । ତୁମେ ପ୍ରଥମେ ତାଙ୍କ ରଥର ରଜ୍ଜୁ ଛିନ୍ନ କରିଦିଅ । ଅଶ୍ୱମାନଙ୍କୁ ହତ୍ୟାକର ଏବଂ ପଛରୁ ଆକ୍ରମଣ କର ।

କର୍ଣ୍ଣ ତାହା କଲେ ଓ ପଛରୁ ତାଙ୍କ ଶର ଆସି ଅଭିମନ୍ୟୁଙ୍କ ଶରକୁ ଭାଙ୍ଗି ଦେଲା । ତାଙ୍କ ରଥ ଭାଙ୍ଗିଗଲା, ସାରଥି ଓ ଅଶ୍ୱମାନେ ନିହତ ହେଲେ । ବର୍ତ୍ତମାନ ଅଭିମନ୍ୟୁ ନିସଙ୍ଗ ପଦାତିକ । ଆଗକୁ ପଛକୁ କେହି ନାହାନ୍ତି । ପାଣ୍ଡବମାନେ ସହାୟତା ଦେଇ ପାରିଲେ ନାହିଁ । ପିତାମଧ୍ୟ ସାରାଦିନର ଯୁଦ୍ଧ ଭିତରେ ମୁହୂର୍ତ୍ତକ ପାଇଁ ତାଙ୍କ ଆଡ଼କୁ ମୁହଁ ଫେରାଇ ପାରିଲେ ନାହିଁ ।

ତଥାପି ମନରେ ଅସରନ୍ତି ବଳ । ସେ ପିତା ଅର୍ଜୁନ ଓ ମାମୁ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି, ଖଡ୍ଗ ହସ୍ତରେ ସେମାନଙ୍କ ସହିତ ଯୁଦ୍ଧ କଲେ । ଦ୍ରୋଣଙ୍କ ଅସ୍ତ୍ରାଘାତରେ ହାତରଖଡ୍ଗ ଭାଙ୍ଗି ତଳେ ପଡ଼ିଗଲା । ଦ୍ରୋଣ ତାଙ୍କ ଢ଼ାଲକୁ ଖଣ୍ଡ ଖଣ୍ଡ କରିଦେଲେ ।

ଶେଷରେ ଅଭିମନ୍ୟୁ ଅସ୍ତ୍ରହୀନ ହୋଇ ନିଜ ଭଗ୍ନ ରଥ ଚକକୁ ହାତରେ ଧରି ଚକ୍ରପରି ବୁଲାଇଲେ । ଦୀର୍ଘ ସମୟ ପ୍ରତିରୋଧ କରିବାପରେ, ଶତ୍ରୁମାନେ ତାଙ୍କୁ କବଳିତ କରିନେଲେ । ଏତିକିବେଳେ ଦୁଃଶାସନଙ୍କ ପୁତ୍ର ଆସି ତାଙ୍କ ସହିତ ସଂଘର୍ଷ କଲେ । ସମ୍ମୁଖ ଯୁଦ୍ଧରେ ଉଭୟେ ମୃତ୍ୟୁ ବରଣ କଲେ । କୌରବ ସୈନ୍ୟ ଆନନ୍ଦରେ ଶଙ୍ଖନାଦ କଲେ । ସୂର୍ଯ୍ୟଙ୍କ ଅସ୍ତାଚଳ ଗମନ ସହିତ କୁରୁବଂଶର ଏକ ତେଜୋଦୀପ୍ତ ତରୁଣ ସୂର୍ଯ୍ୟ ଅସ୍ତ ହୋଇଗଲେ ।

କୌରବ ସୈନ୍ୟମାନେ ଆନନ୍ଦରେ ଅଭିମନ୍ୟୁଙ୍କ ମର ଶରୀର ଚତୁର୍ଦ୍ଦିଗରେ ଉନ୍ମତ୍ତ ନୃତ୍ୟ କରୁଥିଲେ । ଧୃତରାଷ୍ଟ୍ରଙ୍କର ନୀତିପୁଣ ପୁତ୍ର ଯୁଯୁତ୍ସୁ, ଏହିଦାରୁଣ ସମ୍ବାଦ ପାଇଁ ଏ ପାପ ଯୁଦ୍ଧରେ ଆଉ ଅଂଶ ଗ୍ରହଣ କରିବେ ନାହିଁ ବୋଲି, ଅସ୍ତ୍ର ଶସ୍ତ୍ର ଫୋପାଡ଼ି ଦେଇ ରଣଭୂମି ତ୍ୟାଗକଲେ ।

# ।। ଶୋକ ସନ୍ତପ୍ତ ପରିବାର ।।

ସଂଜୟଙ୍କ ଠାରୁ ଯୁଦ୍ଧ ବିବରଣୀ ଶୁଣିବାପରେ ଏ ପର୍ଯ୍ୟନ୍ତ ନୀରବ ଥିବା କୁରୁରାଜ ଧୃତରାଷ୍ଟ୍ର କ୍ରନ୍ଦିତ କଣ୍ଠରେ କହିଲେ, ''ସଂଜୟ ! ଦେଖୁଛ.. ଦେଖୁଛ ନିୟତିର ରୂପ । ପଳିତ ପତ୍ରଟା ପବନରେ ଦୋହୁଲୁଛି ଅଥଚ କଅଁଳ କିଶୋର ପତ୍ର ଗୁଡ଼ାକ ଅକାଳରେ ଝଡ଼ି ପଡ଼ିଲେ । ଦୁର୍ଯ୍ୟୋଧନଙ୍କର ପ୍ରାଣପ୍ରିୟ ପୁତ୍ର ରାଜକୁମାର ଲକ୍ଷ୍ମଣ ଚାଲିଗଲା । ଆହାଃ... ଦୁଃଶାସନର ଅଲିଅଳ ପୁତ୍ରବି ଚାଲିଗଲା । ମୁଁ ଜାଣେ, ସେ ଅଭିମନ୍ୟୁଟା ଅର୍ଜୁନଙ୍କର ସମସ୍ତ କରାଳତା ଆଣିଥିଲା । ବାପାଠାରୁ ଥିଲା ସେ ଆଉରି ଭୟଙ୍କର । କୌରବ ପକ୍ଷର ଏତେ ମହାରଥୀଙ୍କୁ ସେ ଏକା ଏତେ ଶାସ୍ତି ଦେଇ ପାରିଲା ? ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କର ଗୁରୁପଣିଆ ଗଲାକୁଆଡ଼େ ? ମହାବୀର କର୍ଣ୍ଣଙ୍କର ବୀରପଣିଆ ଲୁଚିଲା କୋଉଁଠି ? ହାଃ ବିଧାତା, ଭାଗ୍ୟ ଅନୁକୂଳ ନହେଲେ ଏପରି ଅଘଟନ ଘଟିଥାଏ । ଅବଶ୍ୟ ସେ ସିଂହ ଛୁଆଟାକୁ ମାରିଦିଆ ଯାଇଛି ତେବେ ତାକୁ ନିରସ୍ତ୍ର କରି ମାରିଦେବାର କଳଙ୍କ ଏହି କୌରବ ମାନଙ୍କୁ ସବୁବେଳେ ଭୋଗିବାକୁ ପଡ଼ିବ । ତା'ହାତକୁ ଅସ୍ତ୍ର ବଢ଼ାଇ ଦେଇ ପାଲଟା ଅସ୍ତ୍ରରେ ତାରପ୍ରାଣ ନାଶ କରିଥିଲେ, କି ଚମତ୍କାର ହୋଇନଥାନ୍ତା ।''

''ରାଜନ୍ ! ମହାପ୍ରଳୟ କାହାକୁ କିପରି ସମ୍ମାନ ଦେବ କିଏ ବା କହିବ । ଶୁଣନ୍ତୁ ରଣଭୂମିରେ ଯୁଦ୍ଧ ସିନା ସରିଯାଇଛି ସୂର୍ଯ୍ୟାସ୍ତ ପରେ କିନ୍ତୁ ସଂନ୍ଧ୍ୟାର ଅନ୍ଧକାର ଭିତରେ ପାଣ୍ଡବ ଶିବିରରେ ଆଉ ଏକ ପ୍ରଳୟ ସୃଷ୍ଟି ହୋଇଛି ।''

''କଣ ହୋଇଛି ସଂଜୟ ?''

''ସଂଶପ୍ତକ ସୈନ୍ୟମାନଙ୍କୁ ସଂହାର କରି ଅର୍ଜୁନ ଶ୍ରୀକୃଷ୍ଣଙ୍କ ସହିତ ଶିବିରକୁ ଫେରି ଆସିଲେ । ବାଟରେ ଅନେକ ଅମଙ୍ଗଳ ସୂଚକ ଦୃଶ୍ୟ ଦେଖିବାକୁ ମିଳିଲା । ଶିବିରରେ ପହଞ୍ଚି ଦେଖିଲେ ସବୁରି ମୁହଁରେ ଉଦାସଛାୟା ଖେଳି ଯାଇଛି । କେହି ମୁଣ୍ଡ ଟେକି ଅର୍ଜୁନଙ୍କୁ ଚାହିଁ ପାରୁନାହାନ୍ତି । ଅର୍ଜୁନଙ୍କ ଆଖି ସମସ୍ତଙ୍କ ଉପରେ ପହଁରି ଆସିଲା । ସେ ପଚାରିଲେ ଅଭିମନ୍ୟୁ କାହାନ୍ତି ?

କାହାରି ପାଟିରୁ କିଛି ଉତ୍ତର ମିଳିଲା ନାହିଁ । ସମସ୍ତେ ମୁହଁ ତଳକୁ କରିଦେଲେ । ଯୁଧିଷ୍ଠିର ଅଶ୍ରୁସିକ୍ତ ହୋଇ କହିଲେ, ''ଅଭିମନ୍ୟୁଙ୍କର ମୃତ୍ୟୁ ପାଇଁ ମୁଁଦାୟୀ । କୌରବ ମାନଙ୍କର ପଦ୍ମବ୍ୟୂହ ଭେଦ କରିବାର କ୍ଷମତା ଆମ ଭିତରୁ କାହାରି ନଥିଲା । ତୁମେ ଏକମାତ୍ର ବୀର ଯେକି ଏହି କୌଶଳ ଆୟତ୍ତ କରିଥିଲ । ତୁମେ ତ ସଂଶପ୍ତକ ସୈନ୍ୟମାନଙ୍କୁ ସଂହାର କରିବାକୁ ଚାଲିଗଲ । ମୁଁ ବାଧ୍ୟ କଲି ଅଭିମନ୍ୟୁଙ୍କୁ ଏହାର ସମ୍ମୁଖୀନ ହେବାପାଇଁ  ସେ କହିଲେ, ମୁଁ ପିତାଙ୍କ ଠାରୁ ପଦ୍ମବ୍ୟୂହ ଭେଦର କୌଶଳ ଶିଖିଛି କିନ୍ତୁ ସେଥିରୁ ବାହାରି ଆସିବାର କୌଶଳ ମୁଁ ଜାଣିନାହିଁ । ଆମେ ସମସ୍ତେ କହିଲୁ, ତୁମେ ପଶିଗଲେ ଆମେ ପଶିଯାଇ ବ୍ୟୂହ ଭାଙ୍ଗିଦେବୁ । ସେ ଉଲ୍‌କାପରି ବ୍ୟୂହ ବୁକୁବିଦୀର୍ଣ୍ଣ କରି ତା ଭିତରେ ପଶିଗଲେ । ଆଖି ପିଛୁଳାକେ ପ୍ରବେଶ ଦ୍ୱାରରେ ଆମ ସମସ୍ତଙ୍କୁ ଜଗିଦେଲେ ଜୟଦ୍ରଥ । ଯେତେ ଚେଷ୍ଟାକରି ମଧ୍ୟ ଆମେ ତା'ଭିତରକୁ ପ୍ରବେଶ କରି ପାରିଲୁନାହିଁ । ଅଭିମନ୍ୟୁ ବାହାରି ଆସିବାକୁ ଚେଷ୍ଟା କଲାବେଳେ ଜୟଦ୍ରଥର ପ୍ରବଳ ପ୍ରତିରୋଧ  ତାଙ୍କୁ ଭିତରେ ଅଟକାଇ ଦେଲା । ଦ୍ରୋଣ, କୃପ, କୃତବର୍ମା, ଅଶ୍ୱତ୍ଥାମା, କର୍ଣ୍ଣ, ଶକୁନି ଶଲ୍ୟ ପ୍ରଭୃତି ତାଙ୍କୁ ନିରସ୍ତ୍ର କରି ହତ୍ୟାକଲେ ।''

ମୋ ଅଭିମନ୍ୟୁ ଚାଲିଗଲା । କିନ୍ତୁ ମୁଁ ପାପ ପୁରୁଷ ବଞ୍ଚିଛି ଆଉରି ଅନେକ ଶାସ୍ତି ଭୋଗିବାପାଇଁ ।

ଅର୍ଜୁନ ଶୁଣୁ ଶୁଣୁ ଶୋକାବେଗରେ ସେଠାରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । କିଛି ସମୟ ପରେ ସଂଜ୍ଞା ଫେରିଆସିଲା । ବିଳାପ ବିଧୁର ଅର୍ଜୁନ । ଯିଏ ଯେତେ ବୁଝାଇଲେ ମଧ୍ୟ ସେ କିଛି ବୁଝିଲେ ନାହିଁ । ବିଳାପର ବନ୍ୟା ଛୁଟିଛି । ପିତୃତ୍ୱ ଓ ବୀରତ୍ୱ ମଧ୍ୟରେ ଘୋର ସଂଘର୍ଷ । ବୀରବାଣୀ, ବୀରମନ୍ତ୍ର, ବୀରଗତି, ଆହତ ପିତୃପ୍ରାଣକୁ ଶାନ୍ତି ଦେଇ ପାରୁନାହିଁ । ଧର୍ମ ଦର୍ଶନର ପୁରୁଣାକଥା ଶୋକକୁଳିତ ପ୍ରାଣକୁ ଶୀତଳ କରି ପାରୁନାହିଁ । ଶ୍ରୀକୃଷ୍ଣ ପ୍ରିୟସଖାଙ୍କୁ ଅନେକ ବୁଝାଇଲେ, ଅନେକ ଉଦାହରଣ ଦେଲେ । ରଣନୀତିର ତାତ୍ପର୍ଯ୍ୟ ଉପରେ ଅସରନ୍ତି ଉପଦେଶ ଦେଲେ । ଆଶ୍ୱାସନା ବାଣୀ ଶୁଣାଇଲେ, ତଥାପି ଅର୍ଜୁନ ଅଧୀର । ସତେଯେପରି ସଂସାରର କୌଣସି ଶକ୍ତି ତାଙ୍କୁ ଶାନ୍ତି ଦେଇ ପାରୁନି ...ପାରିବ ନାହିଁ ମଧ୍ୟ ।

ଅର୍ଜୁନ ଅଶ୍ରୁପ୍ଲୁତ ନୟନରେ କହିଲେ,'' ମୋତେ କାନ୍ଦିବାକୁ ଦିଅ ସଖା ! ମୋତେ କାନ୍ଦିବାକୁ ଦିଅ ।''

ମୋ ଅନ୍ତର ବି କାନ୍ଦୁଚି ଅର୍ଜୁନ ! ଅଭିମନ୍ୟୁ କେବଳ ତୁମର ନୁହଁନ୍ତି । ସେ ମଧ୍ୟ ମୋ ପ୍ରାଣର ପ୍ରାଣ । ମୋ ଜୀବନର ଜାହ୍ନବୀ । ମୋ ଆତ୍ମାର ଉଭାସ । ମୋ ଅଶ୍ରୁକୁ ସାଇତି ରଖିବାପାଇଁ ସମୁଦ୍ରବି ସମର୍ଥ ନୁହେଁ । କିନ୍ତୁ ମୁଁ କାନ୍ଦିପାରୁନି । କ୍ଷତ୍ରିୟ ତାର କ୍ଷାତ୍ର ଧର୍ମ ପାଳନ କରିଛି । ମୁଁ ଠିକ୍ ଭାବରେ ମୋ ଅନ୍ତଶ୍ଚକ୍ଷୁରେ ଦେଖିପାରୁଛି, ଅଭିମନ୍ୟୁ ସ୍ୱର୍ଗର ସିଦ୍ଧି ସ୍ଥଳରେ ସ୍ଥାନ ପାଇଛନ୍ତି । ସେ ଜ୍ୟୋତିର୍ଯୁକ୍ତ ଏକ ଉଜ୍ଜ୍ୱଳ ତାରକା । ସଚ୍ଚା କ୍ଷତ୍ରିୟର ଏହାହିଁ ଶ୍ରେଷ୍ଠଗତି । ତୁମେ ଭାଗ୍ୟବାନ ପିତା ଭାଗ୍ୟବାନ ପୁତ୍ରକୁ ଜନ୍ମ ଦେଇଥିଲ । ଏ ଧର୍ମ ଯୁଦ୍ଧରେ ସେ ତାଙ୍କର  କାପୁରୁଷ ପ୍ରତିଦ୍ୱନ୍ଦୀମାନଙ୍କୁ ବଞ୍ଚିବାର ଆଶୀର୍ବାଦ ଭିତରେ ମୃତ୍ୟୁ ଦଣ୍ଡ ଦେଇଛନ୍ତି । ସେମାନେ ଅନୁତାପ ଭିତରେ ତିଳେ ତିଳେ ମୃତ୍ୟୁ ବରଣ କରି, ମାନସିକ ମୃତ୍ୟୁ ଲାଭ କରିବା ପରେ, ଯୁଦ୍ଧ ଭୂମିରେ ଶରୀରକୁ ବିସର୍ଜନ କରିବେ ।

ନା...ନା... ଅନୁତାପ କରିବା ପାଇଁ ମୁଁ ଆଉ ଅଧିକ ସମୟ ଦେଇପାରିବିନାହିଁ, ସଖା ! ଯେଉଁ କାଳ ସର୍ପ ଜୟଦ୍ରଥର ଦଂଶନରେ ମୋର କୋମଳ ସୁକୁମାର ଶିଶୁପୁତ୍ରର ଜୀବନ ସଂହାର ହେଲା, ମୁଁ ତାକୁ କାଲି ରଣଭୂମିରେ ଚିରବିଦାୟ ଦେବି । ଏ ଅଗ୍ନି ଶପଥ ଯଦି ପୂରଣ କରି ନପାରିବି, ତା'ହେଲେ ପ୍ରଜ୍ୱଳିତ ଅଗ୍ନିରେ ପ୍ରବେଶ କରି ଏ ଶରୀର ବିସର୍ଜନ କରିବି ।''

ଚାରିଆଡ଼େ ହଇଚଇ ସୃଷ୍ଟି ହୋଇଗଲା ।

ଅଭିମନ୍ୟୁ ହତ୍ୟା ସମ୍ବାଦ ଉପପ୍ଲବ୍ୟ ନଗରରେ ପହଞ୍ଚିଲା । ମାତା ସୁଭଦ୍ରା, ଦ୍ରୌପଦୀ ଓ ସ୍ତ୍ରୀ ଉତ୍ତରା ପ୍ରଭୃତି କାନ୍ଦି କାନ୍ଦି ଆସି ପହଞ୍ଚିଲେ । ଶୋକ ଦଗ୍ଧ ସବ୍ୟସାଚୀ, ଏତେ କାତର ହୋଇ ପଡ଼ିଥିଲେ ଯେ କ୍ରନ୍ଦନରତା ସ୍ତ୍ରୀ ଓ ପୁତ୍ରବଧୂର ସମ୍ମୁଖକୁ ଆସି ପାରିଲେ ନାହିଁ । କମ୍ପିତ କଣ୍ଠରେ କହିଲେ, ''ଅଚ୍ୟୁତ ! ମୁଁ ସେମାନଙ୍କୁ ବୁଝାଇବା ପାଇଁ ଅସମର୍ଥ । ତୁମେ ଯାଇ ତୁମ ଭଉଣୀ ଓ ପୁତ୍ରବଧୂକୁ ଆଶ୍ୱସନା ଦିଅ ।''

ସୁଭଦ୍ରା ଭାଇଙ୍କୁ ଦେଖିଲାକ୍ଷଣି ଗଗନ ପବନ ଫଟାଇ କାନ୍ଦିବାକୁ ଲାଗିଲେ । କହିଲେ, ''ଭାଇ ତୁମେ ଥାଉ ଥାଉ ଏ କ'ଣ ହେଲା ? ତୁମ ପାଇଁ ମୋ ସଂସାର ଚୁରମାର ହୋଇଗଲା ଭାଇ । ମାଧବ, ମଧୁସୂଦନ, ମୁରାରୀ, ତ୍ରୀପୁରାରୀ ଏ ଆଳଙ୍କାରିକ ନାଁ ଗୁଡିକର କି ଅର୍ଥ ଅଛି ମୁଁ ବୁଝି ପାରୁନି  । ସାମାନ୍ୟ ଗୋଟିଏ କଅଁଳ କଢ଼ିକୁ ମୋର ରକ୍ଷା କରିପାରିଲନି, ରାକ୍ଷସ ଗୁଡ଼ାକ ଛିଣ୍ଡାଇ ନେଲେ, ତୁମେ ଯୁଦ୍ଧ

ଭୂମିରେ ଥିଲ କାହିଁକି ? ତୁମ ପାର୍ଥ ପାରିଲେନିକି, ତାଙ୍କ ସାରଥିବି ପାରିଲେନି । ଏ ନାଁ ଗୁଡ଼ାକର କି ମୂଲ୍ୟ ଅଛି । ଦେଖୁଛ କି ନାହିଁ, ତୁମ ସାମନାରେ ଛିଡାହୋଇଛି କିପରି ଅଲକ୍ଷ୍ମୀ ବେଶରେ ତୁମର ଲକ୍ଷ୍ମୀ ବଧୂ । ତା ବିବାହ ବେଦିର ଅଳତା ପାଦରୁ ଲିଭିନି ଅଥଚ ସୀମନ୍ତର ସିନ୍ଦୁର ଦାଗ ଆଜିଠୁ ଲିଭିଗଲା । ସୁକୁମାରୀ ବାଳିକା ବୋହୂଟାର ଦୀର୍ଘ ଜୀବନ ପଡ଼ିଛି । ବୈଧବ୍ୟ ଯନ୍ତ୍ରଣା ଭିତରେ ସାରାଜୀବନ ତାକୁ ଦୁଃଖ ଭୋଗିବାକୁ ପଡ଼ିବ । ତୁମେ ଯୁଦ୍ଧରେ ଜୟଲାଭ କରି ପାଣ୍ଡବମାନଙ୍କୁ ହୁଏତ ରାଜ୍ୟଦେଇ ପାରିବ କିନ୍ତୁ ମୋ ପିଲାକୁ ମୋତେ ଫେରାଇଦେଇ ପାରିବ କି ? ଏଇ ହତଭାଗିନୀ କୁଳବଧୂ, ତା ସ୍ୱାମୀକୁ ଆଉ ଫେରି ପାଇବ କି ? ଦେଖୁଛକି ନାହିଁ, ପ୍ରତିମୁହୂର୍ତ୍ତରେ ସେ ମୂର୍ଚ୍ଛିତ ହୋଇ ଯାଉଛି । ଏଦୁଃଖ ସେ ସହିବ କିପରି, ମୁଁ ସହିବି କିପରି ? ଉତ୍ତରା କହୁଛି, ସେ ସହମରଣ ଭୋଗ କରିବ । ହୁଁକାର ତୋଳି ଯେଉଁମାନେ ମୋ ସନ୍ତାନକୁ କୋଳରୁ ଟାଣିନେଇ ରଣବେଦିରେ ବଳିପକାଇଲେ, ସେମାନଙ୍କୁ କୁହ ଚିତାଗ୍ନି ପ୍ରସ୍ତୁତ କରନ୍ତୁ । ଭାଇତୁମେ ସବୁ ବ୍ୟବସ୍ଥା କରିଛ, ଏ ବ୍ୟବସ୍ଥା ଶୀଘ୍ର କର । ଦିଇଟା କଅଁଳ କଢ଼ି ବଡ଼ମାନଙ୍କ ଖିଆଲର ଖୋରାକ ଯୋଗାଇ ପାଉଁଶ ହୋଇ ଯାଆନ୍ତୁ ।''

ସୁଭଦ୍ରାକୁ ଆଉ ସମ୍ଭାଳି ହେଲାନି ।

ଦ୍ରୌପଦୀ କାନ୍ଦିକାନ୍ଦି ତାକୁ କୋଳକୁ ଆଉଜାଇ ନେଲେ । ଉତ୍ତରାକୁ ଛାତିରେ ଜଡ଼ାଇ ନେଲେ । ଲୁହ ପୋଛି ପ୍ରବୋଧନା ଦେଲେ ।

ଶ୍ରୀକୃଷ୍ଣଙ୍କ ଆଖିରୁ ଝରିଆସିଲା ଅବାରିତ ଅଶ୍ରୁଧାର । ସେ ମଧ୍ୟ ନିଜକୁ ପ୍ରକୃତିସ୍ଥ କରି ପାରିଲେ ନାହିଁ । ଆସି ପହଞ୍ଚିଲେ ଅର୍ଜୁନ । ଅଶ୍ରୁ ଭଉଁରି ଭିତରେ ନିଜର ସତ୍ତା ହରାଇ ଦେଲେ ।

କୋହ ସମ୍ବରଣ କରି ଶ୍ରୀକୃଷ୍ଣ କହିଲେ,''ଭଉଣୀ ମୋର ! ସତରେ, ସବୁଦୋଷ ମୋର, ଏକାନ୍ତ ଭାବରେ ମୋର । ଦୁଷ୍ଟଦଳନ ସମୟରେ ଅନେକ ନିରୀହ ନିଷ୍ପାପ ଜୀବ ଦଳି ହୋଇ ଯାଆନ୍ତି । ଅଭିମନ୍ୟୁ ମୋ ହୃଦୟର ଧ୍ରୁବତାରା । ତାକୁହରାଇ ତୁମେ ଏକାନୁହଁ, ଆମେ ସମସ୍ତେ ଦିଗହରା । ବୀର କ୍ଷତ୍ରିୟର ପୁଣ୍ୟଗତି ପାଇଛନ୍ତି ଅଭିମନ୍ୟୁ । ଯେ ରଣଭୂମିରେ ଯେତେ ଶୀଘ୍ର ସେଇ ଆଶୀର୍ବାଦ ଲାଭକରେ ସେ ସେତେ ଭାଗ୍ୟବାନ । ଭଉଣୀ ! ତୁମେ ବୀରର ଜନନୀ । ତଥାପି ତୁମେ ଏତେ ବ୍ୟାକୁଳ ହେଉଛ । ମନେରଖ, ମୁଁ ସ୍ପଷ୍ଟ ଭାବରେ ଦେଖି ପାରୁଛି, ଅଭିମନ୍ୟୁ ପରମପଦ ଲାଭ କରିଛନ୍ତି । ସେ ହେଉଛନ୍ତି ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ରୋଗଯନ୍ତ୍ରଣା ଭୋଗ କରି ଦୀର୍ଘ ଜୀବନ ପାଇ ଥିଲେ କି ଲାଭ ହୋଇଥାନ୍ତା, ଭଉଣୀ ।''

ଠିକ୍ ଏତିକି ବେଳେ ଆସି ପହଞ୍ଚିଲେ ବ୍ୟାସଦେବ ।

ସମସ୍ତଙ୍କୁ ଆଶ୍ୱାସନା ଦେଇ କହିଲେ,''ଉତ୍ତରା ସତୀ ହେବାର ପ୍ରଶ୍ନ ଉଠୁନି । ଆଉଏକ ମହାନ୍ କର୍ତ୍ତବ୍ୟ ପାଳନ କରିବା ପାଇଁ ତାକୁ ବଞ୍ଚିରହିବାକୁ ପଡ଼ିବ । ସେ କୁରୁବଂଶର କୁଳରକ୍ଷା କରିବାର ସୌଭାଗ୍ୟ ପାଇଛନ୍ତି । ଅଭିମନ୍ୟୁଙ୍କ ସଂତକ ହେବ କୁରୁବଂଶର ବଂଶବୀଜ ।''

ସମସ୍ତେ ପ୍ରଣାମ ଜଣାଇଲେ । ବିଦାୟ ନେଲେ ବ୍ୟାସଦେବ । ଦ୍ରୌପଦୀ ସମସ୍ତଙ୍କୁ ନେଇ ଉପପ୍ଲବ୍ୟ ନଗରକୁ ଫେରିଆସିଲେ ।

# ।। କ୍ରିୟା ପ୍ରତିକ୍ରିୟା ।।

ଅର୍ଜୁନଙ୍କର ଆଗ୍ନେୟ ଶପଥ ଗୁପ୍ତଚର ମାଧ୍ୟମରେ କୌରବ ଶିବିରରେ ପ୍ରଚାରିତ ହୋଇଗଲା । କୌଶଳ ପ୍ରସ୍ତୁତି ପାଇଁ ସମସ୍ତେ ଚିନ୍ତିତ । ଦୁର୍ଯ୍ୟୋଧନଙ୍କ ଆଖିରେ ନିଦ ନାହିଁ । ଜୟଦ୍ରଥଙ୍କୁ କୌଣସି ମତେ ବଞ୍ଚାଇ ରଖାଯାଇ ପାରିଲେ ଦୁଇଟି ଲକ୍ଷ୍ୟ ପୂରଣ ହୋଇ ପାରିବ । ପ୍ରଥମତଃ ଅର୍ଜୁନ ଅପମାନରେ ଆତ୍ମବିସର୍ଜନ କଲେ ପାଣ୍ଡବପକ୍ଷ ଦୁର୍ବଳ ହୋଇଯିବ ଓ ସେମାନଙ୍କର ବିଜୟ ସୁନିଶ୍ଚିତ । ଦ୍ୱିତୀୟରେ, ମହାଭାରତ ଯୁଦ୍ଧର ଅବସାନ ଘଟିବ ଓ ସେମାନେ ରାଜ୍ୟଲାଭ କରିବେ ।

ଦୁର୍ଯ୍ୟୋଧନ, ଦ୍ରୋଣାଚାର୍ଯ୍ୟ, ଅଶ୍ୱତ୍ଥାମା, କର୍ଣ୍ଣ, ଶକୁନି ପ୍ରଭୃତିଙ୍କୁ ଡାକି କ'ଣ କରାଯିବ ସେଥିପାଇଁ ଆଲୋଚନା କଲେ । ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସେମାନଙ୍କର ମନ୍ତ୍ରଣା ଚାଲିଥିଲା । ଜୟଦ୍ରଥ କହିଲେ,''ଅର୍ଜୁନ ମତେ ମାରିବା ପାଇଁ ଚରମ ଶପଥ ନେଇଥିବା ଅସମ୍ଭବ ନୁହେଁ, ତେବେ ମୋତେ ଏକାକି କାହିଁକି ? ମୁଁ ତ ଅଭିମନ୍ୟୁକୁ ମାରିନାହିଁ । ତାଙ୍କଠାରୁ ଅନେକ ଦୂରରେ ବ୍ୟୁହ ପଥ ଜଗିରହିଥିଲି । ଯେଉଁମାନେ ମାରିଛନ୍ତି ସେମାନେ ରକ୍ଷାପାଇଯିବେ ଆଉ ମୁଁ ବଳି ପଡିବି ! ଠିକ୍ ଅଛି, ମୁଁ ଏଇ ବର୍ତ୍ତମାନ ମୋ ରାଜ୍ୟକୁ ଫେରି ଯାଉଛି । ମୁଁ ଆଉ ଯୁଦ୍ଧ କରିବି ନାହିଁ ।''

ଦୁର୍ଯ୍ୟୋଧନ କହିଲେ, ସିନ୍ଧୁରାଜ ! କ୍ଷତ୍ରିୟ ହୋଇ ଏତେ ଅଭିମାନ କାହିଁକି ? ମୃତ୍ୟୁ କ୍ଷତ୍ରିୟର ପରମ ସାଥୀ, ସେଥିପାଇଁ ଏତେ ବ୍ୟସ୍ତ କାହିଁକି ? ତୁମେ କୁରୁକ୍ଷେତ୍ରଛାଡି ଚାଲିଗଲେ ମଧ୍ୟ ରକ୍ଷାପାଇଯିବ ବୋଲି ମନେକର ନାହିଁ । ତୁମେ ତିନିପୁର ମଧ୍ୟରେ ଯେଉଁଠାରେ ଥିବ, ସେ ତୁମକୁ ଖୋଜି ବାହାର କରିଦେବ । ଆମଭିତରେ ଲୁଚିରହିଲେ ତୁମର ସୁରକ୍ଷା ପାଇଁ ସମସ୍ତେ ନିଜକୁ ଉତ୍ସର୍ଗ କରିବେ । ତୁମେ ରକ୍ଷାପାଇଯିବ । ଆମର ମହାରଥୀମାନେ ତୁମକୁ ଜଗି ରହିବେ । ତୁମର ଆତ୍ମରକ୍ଷା ସହିତ କୌରବ କୁଳର ଜୀବନ ସତ୍ତା ମିଶିକରି ରହିଛି । ଆମର ମାନ, ସମ୍ମାନ, ବିଜୟ ସବୁ ତାରି ଉପରେ ନିର୍ଭର କରେ । ତୁମେ ବ୍ୟସ୍ତ ହୁଅନାହିଁ, ଆମେ ତୁମକୁ ସୁରକ୍ଷା ଦେବୁ ।

ଦ୍ରୋଣାଚାର୍ଯ୍ୟ ଜୟଦ୍ରଥଙ୍କୁ ମଧ୍ୟ ବୁଝାଇଲେ । ''ହେ ରାଜନ୍ ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆମେ ସମସ୍ତେ ଆପଣଙ୍କୁ ସୁରକ୍ଷା ଦେବୁ । ଆମ ବ୍ୟୁହର କେନ୍ଦ୍ରରେ ରହିବେ ଆପଣ ଏବଂ ସୂର୍ଯ୍ୟ ମଧ୍ୟ ଆପଣଙ୍କୁ ଦେଖି ପାରିବେ ନାହିଁ । ଆବଶ୍ୟକ ହେଲେ କାଲିଆମେ ଜୀବନ ଦେବୁ କେବଳ ଆପଣଙ୍କପାଇଁ । ଉଠନ୍ତୁ, ଜାଗ୍ରତ ହୁଅନ୍ତୁ, ମୃତ୍ୟୁକୁ ଭ୍ରୂକ୍ଷେପ କରନ୍ତୁ ନାହିଁ ।''

ସିନ୍ଧୁରାଜ ଉଲ୍ଲସିତ ହୋଇ କହିଲେ,''ମୁଁ ରଣଭୂମି ତ୍ୟାଗ କରିବି ନାହିଁ । ସମସ୍ତଙ୍କ ଉପରେ ମୋର ଆସ୍ଥା ଅଛି ।''

କୌରବ ପକ୍ଷ ବ୍ୟୁହ ରଚନା କରି କୌଶଳ ନିର୍ଣ୍ଣୟ କରୁଥାନ୍ତି । ଦ୍ରୋଣାଚାର୍ଯ୍ୟ ପରୀକ୍ଷା, ନିରୀକ୍ଷା ଓ ପ୍ରୟୋଗରେ ବ୍ୟସ୍ତ ଥାଆନ୍ତି ।

ସମସ୍ତେ ଚାଲିଗଲାପରେ, ଶ୍ରୀକୃଷ୍ଣ ଅର୍ଜୁନଙ୍କ ପାଖକୁ ଆସି ସଂଧ୍ୟା ଉପାସନା ପାଇଁ ତାଙ୍କୁ ଅନୁରୋଧ କଲେ । ସେ ନିଜ ହାତରେ ବେଦି ଉପରେ କୁଶ ବିଛେଇ ଦେଲେ । ଅର୍ଜୁନ ସେଇ କୁଶଶଯ୍ୟା ଉପରେ ଶୋଇବେ । ତା' ପୂର୍ବରୁ ସମସ୍ତ ପୂଜା ସାମଗ୍ରୀ ସଜକରାଗଲା । ଅର୍ଜୁନ ଶିବଙ୍କୁ ଆରାଧନା କରି ପୂଜାସାମଗ୍ରୀ ଅର୍ପଣ କଲେ । ଅର୍ପିତ ପୂଜାଉପକରଣ ଟେକି ଦେଲେ ଶ୍ରୀକୃଷ୍ଣଙ୍କ ହାତରେ । ଉଚ୍ଚାରଣ କଲେ...

''ଏତତ୍ ସର୍ବଂ ଅସ୍ୟୋପାସନାଫଳଂ ଚ ଶ୍ରୀକୃଷ୍ଣୋର୍ପଣ ମସ୍ତୁ ।''

ଶ୍ରୀକୃଷ୍ଣ କହିଲେ, ''ତୁମର ମଙ୍ଗଳ ହେଉ । ତୁମେ ଆଜିରାତିଟି ଏଇ ତୃଣ ଶଯ୍ୟାରେ ଶିବଙ୍କ ଆରାଧନାକରି ଶୋଇବ । ଏହା ତୁମର ସବୁ ଦୁଃଖ ହରଣ କରିବ ଓ କାଲିପାଇଁ ତୁମେ ନୂତନ ଶକ୍ତି ଏହା ମଧ୍ୟରୁ ଆହରଣ କରିବ ।''

ଶ୍ରୀକୃଷ୍ଣ ନିଜ କକ୍ଷକୁ ଚାଲିଆସିଲେ ।

ଅର୍ଜୁନଙ୍କ ନିରାପତ୍ତା ପାଇଁ ସୁଦକ୍ଷ ସଶସ୍ତ୍ର ପ୍ରହରୀ ମାନଙ୍କୁ ନିଯୁକ୍ତ କରାଗଲା ।

ଶ୍ରୀକୃଷ୍ଣ ବିଶ୍ରାମ ପାଇଁ ଚାଲିଗଲେ ସିନା ଆଖିରେ ପଲକ ପଡ଼ିଲା ନାହିଁ । ସେ କିଛି ସମୟ ଏପାଖ ସେ ପାଖ ହୋଇ ଡାକିଲେ ତାଙ୍କର ସାରଥି ଦାରୁକଙ୍କୁ । ପାଖରେ ବସାଇ କହିଲେ, ''ଦାରୁକ ! ତୁମେତ ଅର୍ଜୁନଙ୍କ ଶପଥ ଶୁଣିଲ । ସେ ଶପଥ ପୂର୍ଣ୍ଣହେବା ଆବଶ୍ୟକ । ଜୟଦ୍ରଥ ଶିବଙ୍କ ବରପ୍ରାପ୍ତ ହୋଇଛି । ତାକୁ ସୁରକ୍ଷିତ ଅବସ୍ଥାରେ ସ୍ୱୟଂ ଇନ୍ଦ୍ର ମଧ ମାରିଦେବା ସମ୍ଭବ ନୁହେଁ । ଅର୍ଜୁନ ମାରିନପାରିଲେ ପାଣ୍ଡବ ପକ୍ଷ ପ୍ରଳୟର ସମ୍ମୁଖୀନ ହେବେ । ଶେଷ ମୁହୂର୍ତ୍ତରେ ମୁଁ ଅସ୍ତ୍ର ଧାରଣା କରିବା ବ୍ୟତୀତ ଅନ୍ୟ କୌଣସି ଉପାୟ ନାହିଁ । ଏହା ନୀତି ବିରୁଦ୍ଧ ହେଲେ ମଧ, କୌରବ ପକ୍ଷ ଯୁଦ୍ଧନୀତି ପରିହାର କରି ନିରସ୍ତ୍ର ଅଭିମନ୍ୟୁକୁ ଅନ୍ୟାୟ ଉପାୟରେ ହତ୍ୟା କରିଛନ୍ତି । ଅନ୍ୟାୟ କଣ୍ଟାକୁ ଅନ୍ୟାୟ କଣ୍ଟାରେ ବାହାର କରିବାକୁ ହେବ । ଆବଶ୍ୟକ ହେଲେ ଜୟଦ୍ରଥକୁ ମାରିବା ପାଇଁ ଦ୍ରୋଣ, କୃପ, କର୍ଣ୍ଣ ପ୍ରଭୃତି ମହାରଥୀ ମାନଙ୍କର ସଂହାରଲୀଳା ସଂଘଟନ କରିବାକୁ ମୁଁ ପଛାଇବି ନାହିଁ । ଅର୍ଜୁନ ବିନା ଏ ସଂସାର ମୋ ପାଇଁ ମରୁଭୂମି । ତୁମେ ଟିକିଏ କଷ୍ଟ ସ୍ୱୀକାର କର ଦାରୁକ ।''

ଆଜିରାତିରେ ମୋ ରଥକୁ ସଜାଇଦିଅ । ମୁଁ ନିଜେ ମୋର ପ୍ରିୟ ଅଶ୍ୱ ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପକ ଓ ବଳା ହର ଯତ୍ନ ନେବି । ସେମାନଙ୍କୁ ତାଲିମ କରିବି । ରଥରେ ସଜାଇରଖ ମୋର ଗଦା କୌମୁଦକୀ, ମୋଧନୁ ଶାରଙ୍ଗ, ଶଙ୍ଖ, ଚକ୍ର ଶକ୍ତି ଆଦି ସମସ୍ତ ଅସ୍ତ୍ର ଶସ୍ତ୍ର । ମୋ ନନ୍ଦକ ଖଡ୍ଗମଧ ତା ଭିତରେ ରଖ । ତୁମେ ସ୍ନାନସାରି ଉତ୍ତମ କବଚ ପିନ୍ଧିବ । ଯୁଦ୍ଧକ୍ଷେତ୍ରରେ ତୁମେ ସଜାଗ ଓ ସତର୍କ ହୋଇ ରହିବ । ମୁଁ ତିନିଥର ଶଙ୍ଖନାଦ କଲେ ତୁମେ ରଥ ନେଇ ମୋ ପାଖକୁ ଆସିବ ।

ଦାରୁକ ଯୋଡ଼ ହସ୍ତରେ ମୁଣ୍ଡଲୁଆଁଇ ଆଦେଶ ଗ୍ରହଣ କଲେ । ନମ୍ର କଣ୍ଠରେ କହିଲେ, ''ପ୍ରଭୁ ! ଆପଣ ସର୍ବମୟ କର୍ତ୍ତା । ଆପଣଙ୍କର ମଙ୍ଗଳଇଛା ପୂର୍ଣ୍ଣହେଉ ।''

ଦାରୁକ ବିଦାୟ ନେଲେ ।

ଶ୍ରୀକୃଷ୍ଣ ଧ୍ୟାନସ୍ଥହେଲେ । ଏପାଖେ ଅର୍ଜୁନ ସ୍ୱପ୍ନ ଦେଖୁଛନ୍ତି । ସେ ସୌରମଣ୍ଡଳ ଅତିକ୍ରମକରି ଶିବଙ୍କ ପାଖରେ ପହଞ୍ଚିଛନ୍ତି । ଆଶ୍ଚର୍ଯ୍ୟ କଥା, ଶିବଙ୍କ ପାଖରେ ଅଛନ୍ତି ଶ୍ରୀକୃଷ୍ଣ । ସେ ଯେଉଁ ପୂଜାସାମଗ୍ରୀ ଶିବଙ୍କୁ ଅର୍ପଣ କରିଥିଲେ ସେ ସବୁ ସେଠାରେ ରଖା ଯାଇଛି । ଅର୍ଜୁନ ଭକ୍ତି ଗଦ୍ ଗଦ୍ ହୋଇ ସ୍ତୁତି କଲେ । ଶିବ ଆଶୀର୍ବାଦ ମୁଦ୍ରାରେ ପାଶୁପତ ଅସ୍ତ୍ର ପ୍ରଦାନ କରି ଅର୍ଜୁନଙ୍କୁ ହସି ହସି ଅଭୟ ଦେଲେ । ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ ଅର୍ଜୁନ । ନିଦ ଭାଙ୍ଗିଗଲା । ଆଖିରୁ କିନ୍ତୁ ସ୍ୱପ୍ନର ଆବେଶ ତୁଟିନି । ସେ ସାମନାରେ ଦେଖୁଛନ୍ତି ସ୍ମିତାଧର ଶିବ ଓ ଶ୍ରୀକୃଷ୍ଣଙ୍କୁ । ମାନସ ତୂଣୀରରେ ଅଛି ପାଶୁପତ ଅସ୍ତ୍ର । କିଛି ସମୟପରେ ସ୍ୱପ୍ନାବେଶ ତୁଟିଗଲା । ସେ ବାସ୍ତବତା ଭିତରୁ ଫେରିଆସିଲେ ।

# ।। ଚତୁର୍ଦ୍ଦଶ ଦିନ ଯୁଦ୍ଧ ।।

ଆଜି ମହାଭାରତ ଯୁଦ୍ଧର ଚତୁର୍ଦ୍ଦଶ ଦିବସ । ଏହା ପ୍ରତିଜ୍ଞା ଓ ପ୍ରତିଶୋଧର ଦିବସ । ଅର୍ଜ୍ଜୁନ ନିଜର ପ୍ରତିଜ୍ଞା ରକ୍ଷାକରି ଚିତାଗ୍ନିରେ ଆତ୍ମ ବିସର୍ଜ୍ଜନ କରିବେ କିମ୍ବା ପୁତ୍ରହନ୍ତା ଜୟଦ୍ରଥ ଉପରେ ଚରମ ପ୍ରତିଶୋଧ ନେବେ ।

ରଥଅଶ୍ୱର ସ୍ନାନ ମାର୍ଜ୍ଜନ କରି ଶ୍ରୀକୃଷ୍ଣ ରଥରେ ଅଶ୍ୱ ଯୋଚିଲେ । ଶୋକ ସନ୍ତପ୍ତ ଅର୍ଜ୍ଜୁନ ଖୁବ୍ ଗମ୍ଭୀର ଦେଖାଯାଉଥାନ୍ତି । ସତେଯେପରି ବର୍ଷଣ ମୁଖର ଘନକୃଷ୍ଣ ମେଘଖଣ୍ଡ । ତାଙ୍କର ପ୍ରଳୟ ରୂପ ସମସ୍ତଙ୍କୁ ଭୟାର୍ତ୍ତ କରିଛି । ସେ ହେଲେ ରଥାରୂଢ଼ ।

ଯୁଧିଷ୍ଠିର ଓ ଅନ୍ୟମାନେ ପ୍ରାତଃ ପୂଜା ସାରି ପ୍ରସ୍ତୁତ ହୋଇଗଲେଣି । ସୂର୍ଯ୍ୟୋଦୟ ପୂର୍ବରୁ ପାଣ୍ଡବ ସୈନ୍ୟଗଣ ଯୁଦ୍ଧଭୂମିରେ ଉପସ୍ଥିତ ହେଲେ । ଅର୍ଜ୍ଜୁନ, ସାତ୍ୟକି, ଭୀମ, ଓ ଧୃଷ୍ଟଦ୍ୟୁମ୍ନ ପ୍ରଭୃତିଙ୍କୁ କହିଲେ, ''ଧର୍ମରାଜଙ୍କୁ ଜଗିରହିବା ତୁମ ମାନଙ୍କର ସବୁଠାରୁ ବଡ଼ କାମ । ଟିକିଏ ଶିଥିଳ ହେଲେ ଦ୍ରୋଣାଚାର୍ଯ୍ୟ ଚିଲପରି ତାଙ୍କୁ ଝାମ୍ପି ନେବେ । କୌଣସି ମତେ ସେ ନିଜର ଶପଥ ପୂରଣ କରି ରାଜା ଦୁର୍ଯ୍ୟୋଧନଙ୍କ ପାଖରେ ସଚୋଟତାର ପରିଚୟ ଦେବେ । ତାଙ୍କର ଲକ୍ଷ୍ୟ, 'ଧର୍ମରାଜ ବନ୍ଦୀ ହେବେ, ମୁଁ ମୋ ଲକ୍ଷ୍ୟପୂରଣ କରି ନପାରି ଚିତାଗ୍ନିରେ ଆତ୍ମ ବିସର୍ଜ୍ଜନ କରିବି । ପାଣ୍ଡବ ପକ୍ଷର ପତନ ହେବ ।' ଜୟଦ୍ରଥଙ୍କ ଆତ୍ମରକ୍ଷା ଲାଗିଦ୍ରୋଣାଚାର୍ଯ୍ୟ ଚିନ୍ତିତ ଏ ବଂ ତାଙ୍କର ସମସ୍ତ ଶକ୍ତି ସେଠାରେ ଠୁଳ ବୋଲି ଭାବିବା ସମ୍ପୂର୍ଣ୍ଣ ଭୁଲ । ମନ ଭିତରେ ଭ୍ରମ ସୃଷ୍ଟି କରାଇ, ଶତ୍ରୁପକ୍ଷକୁ ବିଚଳିତ କରି, ସାମରିକ ଫାଇଦା ଉଠାଇବା ସେମାନେ ଚାହାନ୍ତି । ମୁଁ ତାହା କରାଇ ଦେବିନାହିଁ । ଆଜି ଜୟଦ୍ରଥ ମରିବ କିଂବା ମୁଁ ଆତ୍ମ ବିସର୍ଜ୍ଜନ କରିବି । ଧର୍ମରାଜଙ୍କର ସୁରକ୍ଷା ଦାୟିତ୍ୱ ତୁମ ସମସ୍ତଙ୍କର ।

କଥାଟା ସମସ୍ତଙ୍କ ମନକୁ ପାଇଲା । ଯୁଧିଷ୍ଠିରଙ୍କ ସୁରକ୍ଷା ଦାୟିତ୍ୱ ଉପରେ ସବୁରି ଧ୍ୟାନ ଆକର୍ଷିତ ହେଲା । ଅର୍ଜ୍ଜୁନଙ୍କୁ ରକ୍ଷାକରିବାର ଭାର ଶ୍ରୀକୃଷ୍ଣଙ୍କର । ଅନ୍ୟମାନେ ନିମିତ୍ତ ମାତ୍ର । କୌରବପକ୍ଷ ଜୟଦ୍ରଥଙ୍କୁ ଲୁଚାଇ ଜଗିରହିଲେ । ପାଣ୍ଡବ ପକ୍ଷ ଯୁଧିଷ୍ଠିରଙ୍କୁ ଜଗି ରହିଲେ ଖୋଲା ଖୋଲି ଭାବରେ ।

କୌରବ ପକ୍ଷର ସୈନ୍ୟ ବ୍ୟୂହ ତିନିଭାଗରେ ସଜାଯାଇଛି । ପାଣ୍ଡବମାନଙ୍କ ମୁହାଁ ମୁହିଁ ବ୍ୟୂହ ରଥାକାର ଦେଖା ଯାଉଛି । ତା ପଛରେ ଥିବା ବ୍ୟୂହ ପଦ୍ମାକାର । ଶେଷ ବ୍ୟୂହଟି ଛୁଞ୍ଚିପରି ଲମ୍ୱିଯାଇଛି ଦୀର୍ଘପଥ । ଛୁଞ୍ଚିର ଆଖି ତୋଳା ପାଖରେ ଲୁଚାଇ ରଖାଯାଇଛି ସିନ୍ଧୁରାଜ ଜୟଦ୍ରଥଙ୍କୁ । ତାଙ୍କୁ ବେଢ଼ି ରହିଛନ୍ତି କୌରବ ପକ୍ଷର ଦୁର୍ଦ୍ଦାନ୍ତ ବୀରଗଣ । କୃପାଚାର୍ଯ୍ୟ, କର୍ଣ୍ଣ, ଶଲ୍ୟ, ଅଶ୍ୱତ୍ଥାମା, ଭୂରିଶ୍ରବା ଓ ବୃଷସେନ ପ୍ରଭୃତି । ଅସୁମାର ସୈନ୍ୟ, ଚାରିପାଖରେ ମାରଣାସ୍ତ୍ର ସଜ୍ଜିତ ହୋଇ ବେଢ଼ି ରହିଛନ୍ତି । ଦ୍ରୋଣାଚାର୍ଯ୍ୟ ଦେଖାଯାଉଛନ୍ତି ଧବଳମୟ ବେଶ, ପୋଷାକ, ପଗଡ଼ି ଜୋତା, ସବୁଧଳା ।

ଦ୍ରୋଣ ରଥବ୍ୟୂହର ପ୍ରବେଶ ପଥ ଜଗିଛନ୍ତି । ସେଠାରୁ ସୂଚିବ୍ୟୂହର କେନ୍ଦ୍ର ପର୍ଯ୍ୟନ୍ତ ବହୁଦୀର୍ଘପଥ ଜଣେ କେହି ଯୋଦ୍ଧା ସକାଳୁ ସନ୍ଧ୍ୟାଭିତରେ ବିପୁଳ ବାଧା ଅତିକ୍ରମ କରି ଯାଇପାରିବେ ନାହିଁ । ତେଣୁ ସେମାନଙ୍କର ଧାରଣା, ଅର୍ଜ୍ଜୁନ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ଜୟଦ୍ରଥଙ୍କୁ ହତ୍ୟାକରିବା ସମ୍ଭବ ନୁହେଁ । ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କ ମୁହଁକୁ ଚାହିଁଲେ ।

ଶ୍ରୀକୃଷ୍ଣ କହିଲେ, ତୁମେ ତୁମ ଗାଣ୍ଡୀବ ଧନୁର ଗୁଣକୁ ବାରମ୍ବାର ଟାଣି ଟଙ୍କାର ଧ୍ୱନି ବଢ଼ାଇ ଦିଅ । ଅର୍ଜ୍ଜୁନଙ୍କ ଧନୁ ଟଙ୍କାରରେ ରଣସ୍ଥଳୀ ବିଦୀର୍ଣ୍ଣ ହେଲା । ଶ୍ରୀକୃଷ୍ଣ ତାଙ୍କର ପାଞ୍ଚଜନ୍ୟ ଶଙ୍ଖ ଫୁଙ୍କିବାକୁ ଆରମ୍ଭ

କଲେ । ଶଙ୍ଖଧ୍ୱନି ଓ ଧନୁର ଟଙ୍କାର ମିଶି ଏପରି ପ୍ରଚଣ୍ଡ ଶବ୍ଦ ତରଙ୍ଗ ସୃଷ୍ଟିକଲା, ଯାହାଫଳରେ ଗଜ ଓ ଅଶ୍ୱମାନଙ୍କର କର୍ଣ୍ଣ ପଟଳ ଫାଟିଯାଇ ରକ୍ତସ୍ରାବ ହେଲା । ସୈନ୍ୟମାନଙ୍କର ମୁଣ୍ଡ ଘୂରିବାକୁ ଲାଗିଲା । ଅନେକ ଅସ୍ତ୍ର ଫୋପାଡ଼ି ଦେଇ ରଥରୁ ଖସି ପଡ଼ିଲେ । କିଏ ପାଗଳଙ୍କ ପରି ହୋଇଗଲା । ପ୍ରଥମ ବ୍ୟୂହ ସମ୍ମୁଖରେ ଜଗିଥିବା ବୀରମାନେ ଅଧିକ ଆକ୍ରାନ୍ତ ହେଲେ । ଯୁଦ୍ଧ ଆରମ୍ଭରୁ ଅସ୍ଥିରତା ସୃଷ୍ଟି ହୋଇଗଲା । ଭୟାର୍ତ୍ତ ଅଶ୍ୱ ମାନେ ରଥ ନେଇ ଏଣେତେଣେ ପଳାଇଲେ । ଅର୍ଜ୍ଜୁନଙ୍କ ରଥ ଆଖିପିଛୁଳାକେ ବ୍ୟୂହ ଭେଦକରି ବିଜୁଳି ବେଗରେ ଆଗକୁ ମାଡ଼ିଗଲା । ଯୁଦ୍ଧ ଆରମ୍ଭ ରେ, ଶବ୍ଦବାଣ ଶତ୍ରୁପକ୍ଷକୁ ବିପର୍ଯ୍ୟସ୍ତ କରିଦେଲା ।

ଦ୍ରୋଣାଚାର୍ଯ୍ୟଙ୍କୁ ଅତିକ୍ରମ କରି ଅର୍ଜ୍ଜୁନଙ୍କ ରଥ ଆଗକୁ ଆଗେଇଲା । ଦ୍ରୋଣ ପଛରୁ ଅନୁଧାବନ କରି ଅସ୍ତ୍ରନିକ୍ଷେପ କଲେ । ଅର୍ଜ୍ଜୁନ ସେ ଅସ୍ତ୍ରକୁ ବିଫଳ କରିଦେଇ ପବନ ବେଗରେ ଆଗକୁ ଗଲେ । ବହୁତ ଦୂରରେ ରହିଗଲେ ଦ୍ରୋଣ । ଅନ୍ୟମାନେ ତାଙ୍କର ଅଗ୍ରଗତିକୁ ବାଧା ଦେଲେ ।

କୃତବର୍ମା ଅର୍ଜ୍ଜୁନଙ୍କୁ ଅଟକାଇଦେଲେ । ଅର୍ଜ୍ଜୁନ, ତୀରମାଡ଼ରେ, ରଥଭାଙ୍ଗି ଦେଇ ତାଙ୍କୁ ମୂର୍ଚ୍ଛିତ କରି ଆଗେଇଗଲେ । କମ୍ବୋଜର ରାଜା ଶ୍ରୁତାୟୁଧ ଓ ତାଙ୍କର ଭାଇମାନେ ଆସି ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧକଲେ କିନ୍ତୁ ସେମାନେ ଖୁବ୍ ଅଳ୍ପସମୟ ମଧ୍ୟରେ ନିହତ ହେଲେ । ବାଟ ପରିଷ୍କାର ହୋଇଗଲା । ସମୟ ଅଳ୍ପ, ଅଥଚ ଅତିକ୍ରମ କରିବାକୁ ପଥ ଦୀର୍ଘ । ସବୁ ବାଧା ବିଘ୍ନ ଏଡ଼ି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ପଡ଼ିବ କିମ୍ବା ଅଗ୍ନିଶଯ୍ୟାରେ ଶୟନ କରିବାକୁ ହେବ ।

ଅର୍ଜ୍ଜୁନ ପଦ୍ମବ୍ୟୂହ ଭାଙ୍ଗି ଦେଲେଣି ।

ତ୍ରିଗର୍ତ୍ତ ରାଜାଙ୍କର ଗଜସେନା ସାତ୍ୟକିଙ୍କ ଅଗ୍ନିବାଣରେ ଭସ୍ମହୋଇସାରିକଲେଣି । ଯାଦବ ମହାରଥୀ କୃତବର୍ମାଙ୍କ ସହିତ ସାତ୍ୟକିଙ୍କର ସଂଗ୍ରାମ ଅତ୍ୟନ୍ତ ଭୟଙ୍କର । ସେ ସେମାନଙ୍କୁ ପରାଜିତ କଲେଣି । ଦ୍ରୋଣାଚାର୍ଯ୍ୟ ପହଞ୍ଚିଗଲେଣି ତାଙ୍କୁ ସାହାଯ୍ୟ କରିବାପାଇଁ କିନ୍ତୁ ସାହାଯ୍ୟ ନେବାପାଇଁ ଆଉ କେହି ନାହାନ୍ତି ।

ଦୁର୍ଯୋଧନ ଦ୍ରୋଣାଚାର୍ଯ୍ୟଙ୍କୁ ତିରସ୍କାର କରି କହିଲେ, ଆପଣ ଆମକୁ ସଂକଟମୟ ମୁହୂର୍ତ୍ତରେ ଯେପରି ଆଘାତ ଦେଉଛନ୍ତି, ତାହା ମୋ ପକ୍ଷରେ ଅସହ୍ୟ ହୋଇ ଉଠିଲାଣି । ଏଥିପାଇଁ ଆପଣଙ୍କୁ ମୂଲ୍ୟ ଦେବାକୁ ପଡ଼ିବ ।''

ଦ୍ରୋଣ ହସି ହସି କହିଲେ, ''ଜୀବନକୁ ମୂଲ୍ୟରୂପେ ଯେ ଦେଇସାରିଛି ତା'ଠାରୁ ଅଧିକ ମୂଲ୍ୟ ଆଉ କଣ ଆଶା କରାଯାଏ ? ତୁମ ଅସ୍ତ୍ର କିମ୍ବା ପାଣ୍ଡବଙ୍କର ଅସ୍ତ୍ରର କ୍ଷୁଧା ସମାନ । ଖାଦ୍ୟ ପ୍ରସ୍ତୁତ ଅଛି ଖାଦକର ଭୋଜନ ପାଇଁ । ହଁ ଶୁଣ, ଅର୍ଜ୍ଜୁନ ଆଗେଇଛନ୍ତି ତାଙ୍କ ଶିକାର ଖୋଜିବା ପାଇଁ । ବର୍ତ୍ତମାନ ଯୁଧିଷ୍ଠିରଙ୍କ ପାଖରେ ଅଛନ୍ତି ଭୀମ ଓ ସାତ୍ୟକି । ସେମାନେ ମଧ୍ୟ ସେଠିକି ଚାଲିଗଲେଣି । ଦେଖ, ଅନତି ଦୂରରେ ଅର୍ଜ୍ଜୁନ କୌରବ ପକ୍ଷର ମହାରଥୀଙ୍କ ଦ୍ୱାରା ଅବରୁଦ୍ଧ ହୋଇଗଲେଣି । ଚାଲିଆସିବାକୁ ବାଟ ପାଉନାହାନ୍ତି । ଅନ୍ୟମାନଙ୍କୁ ନେଇ ସେଠାରେ ଅବରୋଧକୁ ଶକ୍ତିଶାଳୀ କର । ଅର୍ଜ୍ଜୁନଙ୍କୁ ରକ୍ଷା କରିବା ପାଇଁ ଭୀମ ଓ ସାତ୍ୟକି ଚାଲିଆସିଲେ, ସେଇ ଦୁର୍ବଳ ମୁହୂର୍ତ୍ତରେ ମୁଁ ଯୁଧିଷ୍ଠିରଙ୍କୁ ନିଶ୍ଚୟ ବନ୍ଦିକରି ନେଇ ଆସିବି । ମୋ ଶପଥ ମୁଁ ନିଶ୍ଚୟ ପୂରଣ କରିବି ।

''ସେ ଶପଥ ପୂରଣ କରିବାର କି ଅର୍ଥ ଅଛି ? ସମସ୍ତଙ୍କୁ ଯଦି ସେଠାରୁ ନେଇ ଆସି ପାରିବୁ, ଧର୍ମରାଜଙ୍କୁ କଣ ବନ୍ଦିକରି ପାରିବୁନି ? ଆପଣ ନିଜ ପରାକ୍ରମରେ ନିଜ ଶପଥ ପୂରଣ କରନ୍ତୁ । ମୁଁ ଯାଉଛି ''କ୍ରୋଧ କଣ୍ଠରେ କହିଲେ ଦୁର୍ଯ୍ୟୋଧନ ।

ଦ୍ରୋଣଙ୍କୁ କଥାଟା ବହୁତ ଆଘାତ ଦେଲା । ସେ ଜୟଦ୍ରଥଙ୍କ ଜୀବନରକ୍ଷାଲାଗି ଆଉ ବିଶେଷ ଧ୍ୟାନ ଦେଲେନାହିଁ । ତାଙ୍କର ଏକମାତ୍ର ଧ୍ୟାନ ଯୁଧିଷ୍ଠିରଙ୍କୁ ବନ୍ଦିକରିବା । ପାଣ୍ଡବମାନେ ଏ ଦିଗରେ ଯଥେଷ୍ଟ ସତର୍କତା ଅବଲମ୍ବନ କରିଛନ୍ତି ।

ଭୀମଙ୍କ ସହିତ ଦ୍ରୋଣାଚାର୍ଯ୍ୟଙ୍କର ଭୀଷଣ ଲଢ଼େଇ ହେଲା । ଭୀମ ଗୋଟି ଗୋଟି କରି ଦ୍ରୋଣଙ୍କର ଆଠଟି ରଥ ଭାଙ୍ଗି ଦେଲେ ।ଧୃତ ରାଷ୍ଟ୍ରଙ୍କର ଏଗାର ଜଣ ପୁଅଙ୍କୁ ମାରି ଦେଲେ । କୌରବ ସେନା ଭୟରେ ପଛେଇଗଲେ ପଛକୁ ।

କର୍ଣ୍ଣମାଡ଼ି ଆସିଲେ ଭୀମଙ୍କ ସହିତ ଲଢ଼ିବାପାଇଁ । ଭୀମ କର୍ଣ୍ଣ ଯୁଦ୍ଧ ବଡ଼ ଭୟଙ୍କର । କର୍ଣ୍ଣ ଥରକୁ ଥର ପରାଜିତ ହୋଇ ପଳାଇ ଯାଉଥାନ୍ତି ପୁଣି ଫେରିଆସି ଲଢୁଥାନ୍ତି । କର୍ଣ୍ଣ ଶେଷରେ ଭୀମଙ୍କ ରଥ ଭାଙ୍ଗି ଦେଲେ । ଅର୍ଜୁନ ଜାଣିପାରି ରଥ ଫେରାଇଲେ ତାଙ୍କ ଆଡ଼କୁ । ଭୀମଙ୍କୁ ରଥ ଉପରକୁ ନେଇଗଲେ । ଭୀମ ଅର୍ଜୁନ ଓ କର୍ଣ୍ଣଙ୍କ ଭିତରେ ଭୟଙ୍କର ଯୁଦ୍ଧ । ଆସି ପହଞ୍ଚିଲେ ସାତ୍ୟକି । ତାଙ୍କ ଅସ୍ତ୍ରାଘାତରେ ଭୂରିଶ୍ରବା ନିହତ ହେଲେ ।

ଠିକ୍ ଏତିକି ବେଳେ ପାଞ୍ଚଜନ୍ୟ ଶଙ୍ଖ ଫୁଙ୍କିଦେଲେ ଶ୍ରୀକୃଷ୍ଣ ।

ଦାରୁକ ତାଙ୍କର ଦିବ୍ୟାସ୍ତ୍ର ସଜ୍ଜିତ ଗରୁଡ଼ ଧ୍ୱଜ ରଥ ନେଇ ଆସିଲେ । ଶ୍ରୀକୃଷ୍ଣଙ୍କ ଇଙ୍ଗିତ ପାଇ ସାତ୍ୟକି ସେ ରଥରେ ଚଢ଼ିଗଲେ । ଦାରୁକଙ୍କର ସାନ ଭାଇ ଆଉ ଏକ ଅସ୍ତ୍ର ସଜ୍ଜିତ ରଥ ଆଣି ପହଞ୍ଚିଗଲେ । ସାତ୍ୟକି ଓ ଭୀମସେନ ଉଭୟେ ସେ ରଥରେ ବସି କୌରବ ସୈନ୍ୟମାନଙ୍କୁ ପୋକମାଛି ପରି ହତ୍ୟା କଲେ ।

ଅର୍ଜୁନ ଦେଖିଲେ, ସୂର୍ଯ୍ୟାସ୍ତ ହେବାକୁ ସମୟ ଅଳ୍ପ ଅଛି । ଏ ପର୍ଯ୍ୟନ୍ତ ଜୟଦ୍ରଥ ମରିନାହିଁ । ଦୁର୍ଯ୍ୟୋଧନ ଆନନ୍ଦିତ । ଅଳ୍ପସମୟ ଭିତରେ ଅର୍ଜୁନ ତାଙ୍କୁ ମାରି ପାରିବେ ନାହିଁ । ଅର୍ଜୁନ ଭାବିଲେ ତାଙ୍କ ଚାରିପାଖରେ ଘେରି ରହିଥିବା ଶଲ୍ୟ, କର୍ଣ୍ଣ, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା ପ୍ରଭୃତି ମହାରଥୀମାନେ ନ ମରିବା ପର୍ଯ୍ୟନ୍ତ, ଜୟଦ୍ରଥଙ୍କୁ ମାରିବା ସମ୍ଭବ ନୁହେଁ । ସେମାନେ ତାଙ୍କୁ ସୁରକ୍ଷା ଦେଉଛନ୍ତି । ଦୁର୍ଯୋଧନ ମଧ୍ୟ ସେଠାରେ ଆସି ପହଞ୍ଚି ଗଲେଣି ।

ଜୟଦ୍ରଥଙ୍କ ପାଖରେ ରଥ ପହଞ୍ଚାଇ ଦେବାକୁ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କହିଲେ । ଏହା କଣ ଏତେ ସହଜ କଥା । ତାଙ୍କ ଉପରେ ଚତୁର୍ଦ୍ଦିଗରୁ କୌରବ ସୈନ୍ୟମାନେ ବାଣବର୍ଷଣ କରୁଛନ୍ତି ।

ହଠାତ୍ ଦେଖାଗଲା, ଆକାଶ ଅନ୍ଧକାର । ପଶ୍ଚିମ ଆକାଶରେ ସୂର୍ଯ୍ୟଙ୍କର ସୂଚନା ବି ମିଳୁନି । କୌରବମାନେ ଆନନ୍ଦରେ ଅଧୀର । ସେମାନେ ଅର୍ଜୁନଙ୍କ ବେଗ ପ୍ରତିହତ କରିବାପାଇଁ ବ୍ୟଗ୍ର । ଦୁର୍ଯ୍ୟୋଧନ ଭାବିଲେ ଜୟଦ୍ରଥଙ୍କର ଜୀବନ ରକ୍ଷା ହୋଇଗଲା । ସ୍ୱପ୍ନ ତାଙ୍କର ସଫଳ ହେଲା । ଆଉ ବିଳମ୍ବ କଲେ ବିପତ୍ତି ମାଡ଼ିଆସିପାରେ । ସେ ଆନନ୍ଦରେ ବିହ୍ୱଳ ହୋଇ ଯୁଦ୍ଧ ବିରତି ଘୋଷଣା କଲେ ।

ଦ୍ରୋଣାଚାର୍ଯ୍ୟ ଶଂଖ ଧ୍ୱନି ଶୁଣିଲେ । ଆଶ୍ଚର୍ଯ୍ୟ ହୋଇଗଲେ ଦୁର୍ଯ୍ୟୋଧନଙ୍କ ନିର୍ବୋଧତା ପାଇଁ । କେତେ ବଡ଼ ଭୁଲ କରିଦେଲେ । ସାମରିକ ଶୃଙ୍ଖଳା ଶିଥିଳ ହୋଇଗଲା । ଦୁର୍ଯ୍ୟୋଧନଙ୍କୁ ବୁଝାଇବାକୁ ଯାଇ ପାରୁନାହାନ୍ତି କି ବ୍ୟୂହଦ୍ୱାରା ଛାଡ଼ି ପାରୁନାହାନ୍ତି । କୌରବ ସୈନ୍ୟମାନେ ବିରତିରେ ବିଭୋର ହୋଇ ଇତସ୍ତତ ହୋଇଗଲେଣି । ସମସ୍ତଙ୍କ ମଧ୍ୟରେ ଗଭୀର ଆନନ୍ଦ,ଅର୍ଜୁନଙ୍କ ପରି ଯେଉଁ ମହାକାଳଙ୍କୁ ରଣଭୂମିରୁ ଏପର୍ଯ୍ୟନ୍ତ ହଟାଇ ଦିଆଯାଇ ପାରୁନଥିଲା, ସେ ବର୍ତ୍ତମାନ ନିଜେ ଚିତାଗ୍ନିରଚି ତା ମଧ୍ୟରେ ପ୍ରବେଶ କରିବ ।

ଅର୍ଜ୍ଜୁନ ମଧ୍ୟ ଏ ରହସ୍ୟ ଭେଦ କରି ପାରିଲେ ନାହିଁ । ଦୁର୍ଯ୍ୟୋଧନ ଆସି ଅର୍ଜ୍ଜୁନଙ୍କୁ କହିଲେ, ''ହାତରେ ଗାଣ୍ଡୀବ ଧନୁପରା ଧରିଛ । ସେଇ ଧନୁକୁ ଦେଖାଇ ସମସ୍ତଙ୍କୁ ଭୟଭୀତ କରୁଥିଲ । ଏ ଗର୍ବ କେତେ ଦିନ ରହିଲା । ତୁମ ଶ୍ରୀକୃଷ୍ଣ ପରା ପ୍ରଭୁ ପାଲଟି ଯାଇଥିଲେ, ତାଙ୍କ ପ୍ରଭୁପଣିଆ ଗଲା କୁଆଡ଼େ ? ଏବେ ତାଙ୍କ କରାମତି ଦେଖାଉ ନାହାନ୍ତି ।''

ଅର୍ଜ୍ଜୁନ ଗର୍ଜ୍ଜନ କରି କହିଲେ, ''ଦୁର୍ଯ୍ୟୋଧନ, ସଂଯତ ହୋଇ କଥାବାର୍ତ୍ତା କର । ମୁଁ ତୁମର ଉପହାସକୁ ଭ୍ରୂକ୍ଷେପ କରେନାହିଁ କିନ୍ତୁ ତୁମେ ଯଦି ପରମ ସଖା ଶ୍ରୀକୃଷ୍ଣଙ୍କୁ କିଛି କହିବ, ତା' ହେଲେ ତମ ମୁଣ୍ଡଟା ମୋ ଗାଣ୍ଡୀବ ଧନୁର ଶେଷ ପୂଜା ପାଇଁ ଅର୍ପଣ କରିଦେଇଯିବ ।

ପ୍ରସ୍ତୁତ ହୁଅ ଦୁର୍ଯ୍ୟୋଧନ । ଚିତାଗ୍ନିରେ ପ୍ରବେଶ ପୂର୍ବରୁ ମଁ ଶରପୂଜା କରିବି । ଦୁର୍ଯ୍ୟୋଧନ ତ୍ରସ୍ତ କାତର । ଶ୍ରୀକୃଷ୍ଣ ହସି ହସି ହାତ ଉଠାଇ ବାରଣ କଲେ । ଅର୍ଜ୍ଜୁନ ନିଜର କବଚ, ଶିରସ୍ତ୍ରାଣ, ଧନୁ ଓ ତୂଣୀର ବାହାରକରି ତଳେ ରଖିଲେ । ନିକଟରେ ଚିତା ସଜ୍ଜା ହୋଇ ଗଲାଣି । ଦୁଃଶାସନ ଅଗ୍ନି ସଂଯୋଗ କରିବାପାଇଁ ପ୍ରସ୍ତୁତ ହେଉଛନ୍ତି ।

କୃଷ୍ଣ କହିଲେ,''ମହାବୀର ସବ୍ୟସାଚୀ ! ତୁମେ କ'ଣ ବିଧବା ପରି ସମସ୍ତ ଅଙ୍ଗ ଭୂଷଣ ତ୍ୟାଗ କରି ଚିତାଗ୍ନିରେ ସତୀ ହେବାପାଇଁ ଚିନ୍ତା କରିଛ । କି ଆଶ୍ଚର୍ଯ୍ୟ କଥା, କୌଣସି ବିଧବା ନାରୀ ବି ଏହା କରେନାହିଁ । ତୁମେ ବୀର  ତୁମର ସମସ୍ତ ଭୂଷଣ ସହ ତୁମେ ବୀରଗତି ଲାଭ କରିବ । କବଚ ପିନ୍ଧ, ଗାଣ୍ଡିବ ଧନୁକୁ ଧରି ଅସ୍ତ୍ର ନିକ୍ଷେପ ଢ଼ଙ୍ଗରେ ଛିଡ଼ାହୁଅ । ମୁଁ ତାକୁ ଅଭିମନ୍ତ୍ରିତ କରିବି । ତୁମେ ଅଗ୍ନିଙ୍କୁ ତୀର ନିକ୍ଷେପ କରି ବିରୋଚିତ ଢ଼ଙ୍ଗରେ ପ୍ରଣାମ କରିବ । ତା'ପରେ ଶଙ୍କରଙ୍କୁ ସ୍ମରଣ କରି ଅଗ୍ନିରେ ପ୍ରବେଶ କରିବ ।

ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶ ଅନୁସାରେ କବଚ ପିନ୍ଧିଲେ, ହାତରେ ଗାଣ୍ଡୀବ ଧନୁ  ଧରି ତାର ଜ୍ୟାକୁ ଟାଣି ଟଙ୍କାର ନାଦ କଲେ । ସେନାଦ ଥିଲା ଅତ୍ୟନ୍ତ ଗମ୍ଭୀର । ଶ୍ରୀକୃଷ୍ଣ ଶର ପୂଜା କରି ତାଙ୍କ ହାତକୁ ବଢ଼ାଇ ଦେଲେ । ଦୁଃଶାସନ ବିପୁଳ ଆନନ୍ଦରେ ଚିତାରେ ଅଗ୍ନି ସଂଯୋଗ କଲେ । ହୁତୁହୁତୁ ହୋଇ ଜଳି ଉଠିଲା ଅଗ୍ନି । ଅର୍ଜ୍ଜୁନ ଧନୁ ଉଠାଇ ତୀରତ୍ୟାଗ କରିବାକୁ ଉଦ୍ୟତ ହେଉଥିଲେ ଅଗ୍ନିଙ୍କୁ ସାମରିକ ପ୍ରଣାମ ଜଣାଇ ବା ପାଇଁ ।

ହଠାତ୍ ଆକାଶରେ ଅସ୍ତମୁଖୀ ସୂର୍ଯ୍ୟଙ୍କର କିରଣ ବିଛେଇ ହୋଇଗଲା । କୁରୁକ୍ଷେତ୍ର ଉଜ୍ଜ୍ୱଳି ଉଠିଲା ।

ଶ୍ରୀକୃଷ୍ଣ ଚିତ୍କାର କରି କହିଲେ, ''ଅର୍ଜ୍ଜୁନ ! ସୂର୍ଯ୍ୟ ଅସ୍ତ ହୋଇନାହାନ୍ତି । ତଥାପି କିଛି ସମୟ ବାକି ଅଛି । ହେଇ ଦେଖ, ତୁମ ସାମନାରେ କାହା ପଛରେ ଲୁଚି ଛିଡ଼ା ହୋଇଛି ଜୟଦ୍ରଥ । ତୁମର ଅଗ୍ନି ପ୍ରବେଶ ଉପଭୋଗ କରିବାପାଇଁ ଗାତ ଭିତରୁ ମୁଣ୍ଡ ଟେକିଛି । ସୂର୍ଯ୍ୟାସ୍ତ ପୂର୍ବରୁ ସେ ମୁଣ୍ଡଟାକୁ ଉଡାଇ ଦିଅ । ଶପଥ ଯଜ୍ଞର ପୂର୍ଣ୍ଣାହୁତି ପଡୁ ।

ଜୟଦ୍ରଥ ପ୍ରାଣ ବିକଳରେ ପଳାଇଲେ । ତାଙ୍କୁ ଅନୁଧାବନ କଲା ଅର୍ଜ୍ଜୁନଙ୍କ ଶର । ସେ  ଭଗ୍ନବ୍ୟୁହ ଭିତରେ ଆତ୍ମଗୋପନ କରିବା ପୂର୍ବରୁ ଶର ତାଙ୍କ ଶିରଛେଦନ କଲା । ହାହାକାର ପଡ଼ିଗଲା  କୌରବ ଶିବିରରେ । ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ଦୁର୍ଯ୍ୟୋଧନ ହତବାକ୍ ହୋଇଗଲେ । କୃଷ୍ଣଙ୍କ କରାମତି ଦେଖିବାପାଇଁ ଆହ୍ୱାନ ଦେଉ ଦେଉ, ତାହା କାର୍ଯ୍ୟରେ ପରିଣତ ହୋଇଗଲା ।

ଶ୍ରୀକୃଷ୍ଣ କହିଲେ, ''ଅର୍ଜୁନ ! ଜୟଦ୍ରଥର ଶିରକୁ ଭୂଲୁଣ୍ଠିତ କରନାହିଁ । ଶରମାରି ତାକୁ ଆକାଶ ମାର୍ଗରେ ଝୁଲାଇ ରଖ । ପ୍ରୟୋଗ କର ପାଶୁପତ ଅସ୍ତ୍ର । ତାକୁ ମନ୍ତ୍ରାଜ୍ଞା ଦିଅ । ସେ ଛିନ୍ନ ମସ୍ତକକୁ ନେଇ ଜୟଦ୍ରଥଙ୍କ ପିତାକ୍ଷତ୍ରଙ୍କ କୋଳରେ ଆକସ୍ମିକ ଭାବରେ ପକାଇ ଦେଉ । ସେ ବର୍ତ୍ତମାନ ସ୍ୟମନ୍ତ ପଞ୍ଚକରେ ଆଶ୍ରମ ତୋଳି ସେଠାରେ ତପସ୍ୟା କରୁଛନ୍ତି । ସେ ଧ୍ୟାନ ମଗ୍ନ ଅବସ୍ଥାରେ ଅଛନ୍ତି ।''

ଅର୍ଜୁନ କିଛି ବୁଝି ପାରିଲେ ନାହିଁ ଏ ରହସ୍ୟ । ପ୍ରଶ୍ନଭରା ନୟନରେ ଶ୍ରୀକୃଷ୍ଣଙ୍କ ମୁହଁକୁ ଚାହିଁ ରହିଲେ ।

''ମୁଁ ବୁଝୁଛି ତୁମର ଜିଜ୍ଞାସା । ତୁମେ ପ୍ରଥମେ ଏ ଦାୟିତ୍ୱ ତୁଲାଇ ଦିଅ । ତଳେ ଛିନ୍ନ ମୁଣ୍ଡଟି ପଡ଼ିଗଲେ ତୁମ ମୁଣ୍ଡମଧ୍ୟ ଖଣ୍ଡ ଖଣ୍ଡ ହୋଇଯିବ ।''

ମନ୍ତ୍ରାଜ୍ଞା ଦେଇ, ଆଖି ପିଛୁଳାକେ ଅର୍ଜୁନ ପାଶୁପତ ଅସ୍ତ୍ର ନିକ୍ଷେପ କଲେ । ଛିନ୍ନ ମସ୍ତକ ଯାଇ ଧ୍ୟାନମଗ୍ନ ରାଜା ବୃଦ୍ଧକ୍ଷତ୍ରଙ୍କ କୋଳରେ ପଡ଼ିଲା । ମୁଣ୍ଡଟି ଛିଞ୍ଚାଡ଼ିଦେଇ ଚମକି ପଡ଼ି ସେ ଠିଆ ହୋଇ ଗଲେ । ତଳେ ମୁଣ୍ଡଟି ଗଡ଼ିଲାକ୍ଷଣି ରାଜାଙ୍କର ମୁଣ୍ଡ ଫାଟ ଯାଇ ଭୂଲୁଣ୍ଠିତ ହେଲା । ପିତା ପୁତ୍ର ଉଭୟଙ୍କର ପ୍ରାଣ ପ୍ରୟାଣ ହେଲା ।

ଶ୍ରୀକୃଷ୍ଣ କହିଲେ, ''ସଖା ! ତୁମେ ଏରହସ୍ୟ ବୋଧହୁଏ ଭେଦକରିପାରୁନ । ରାଜା ବୃଦ୍ଧ କ୍ଷତ୍ର, ପୁତ୍ର ଜୟଦ୍ରଥର ଜନ୍ମ ସମୟରେ ଏକ ଆକାଶବାଣୀ ଶୁଣିଥିଲେ । ଏ ସନ୍ତାନ କୁଳ, ଶୀଳ, ଶୌର୍ଯ୍ୟରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିବ । କିନ୍ତୁ କୌଣସି ମହାଯୁଦ୍ଧରେ ଜଣେ କ୍ଷତ୍ରୀୟ ବୀର ତାର ଶିରଚ୍ଛେଦ କରିବେ ।

ରାଜା, ପୁତ୍ର ଜୟଦ୍ରଥଙ୍କୁ ତରୁଣ ବୟସରେ ଧୃତରାଷ୍ଟ୍ରଙ୍କ କନ୍ୟା ଦୁଃଶଳା ସହିତ ବିବାହ କରାଇଥିଲେ । ମହାଭାରତ ଯୁଦ୍ଧ ଆରମ୍ଭ ହେବାରୁ ପିତାଙ୍କ ମନରେ ସେ ଆଶଙ୍କା ଦୃଢ଼ୀଭୂତ ହେଲା । ସେ ପୁତ୍ରର ମଙ୍ଗଳ କାମନା କରି ଯୁଦ୍ଧ ଆରମ୍ଭ ଦିନଠାରୁ ତପସ୍ୟାରେ ବସିଛନ୍ତି । ବର ପାଇଛନ୍ତି, ଯେ ଜୟଦ୍ରଥ ମୁଣ୍ଡକୁ ତଳେ ଗଡ଼ାଇ ଦେବ ତାର ମୁଣ୍ଡମଧ୍ୟ ଫାଟିଯାଇ ତଳେ ପଡ଼ିଯିବ । ଆକାଶବାଣୀ ଅନୁସାରେ ତୁମେ ତାର ଶିରଚ୍ଛେଦନ କରିଛ । ଭୂଇଁରେ ଗଡ଼ାଇନାହଁ । ତାଙ୍କ ବାପା କଟାମୁଣ୍ଡକୁ ଭୂଇଁରେ ଗଡ଼ାଇ ନିଜ ଅସ୍ତ୍ରରେ ନିଜେ ନିହତ ହୋଇଛନ୍ତି ।''

ଆଶ୍ଚର୍ଯ୍ୟ ହୋଇଗଲେ ଅର୍ଜୁନ ଓ ସମବେତ ପାଣ୍ଡବଗଣ । ପାଣ୍ଡବଙ୍କ ଜୟ ନାଦରେ ରଣସ୍ଥଳୀ ପ୍ରକମ୍ପିତ ହେଲା । ଜୟଦ୍ରଥଙ୍କର ମୃତ୍ୟୁ ସମ୍ବାଦ ସଂଜୟଙ୍କଠାରୁ ଶୁଣିଲାକ୍ଷଣି ଧୃତରାଷ୍ଟ୍ର ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ପୁଣି ସଜ୍ଞା ଲାଭ କରି ଚିତ୍କାର କଲେ, ''ହାଃ ଜୟଦ୍ରଥ ... ହା ଦୁଃଶଳା... ମୋତେ ଏଇ ସମ୍ବାଦ ଶୁଣିବାକୁଥିଲା । ଭାଗ୍ୟ...ଭାଗ୍ୟ...! ତୁମର କୁତ୍ସିତ କର୍ମ ସବୁକଣ ମୋରି ପାଇଁ ଅଭିପ୍ରେତ । ସଂଜୟ ! ଆଉ ସେ ମୃତ୍ୟୁ ବିବରଣୀ ମୋତେ ଶୁଣାଅ ନାହିଁ ।

''ରାଜନ୍ ! ଧୈର୍ଯ୍ୟ ଧରନ୍ତୁ । ସେତେବେଳେ ଶାନ୍ତିପ୍ରସ୍ତାବ ଗ୍ରହଣ କରିନେଇଥିଲେ ଦୁର୍ଯୋଗକୁ ଦୂରେଇ ଦେଇ ପାରିଥାନ୍ତେ, ଏବେ ବା କଣ କରିପାରିବା । ବର୍ତ୍ତମାନ ମୁହୂର୍ତ୍ତରେ ଘଟଣା ପ୍ରବାହକୁ ସ୍ୱୀକାର କରିନେବା ବ୍ୟତୀତ ଆମର ଆଉ କୌଣସି ପନ୍ଥା ନାହିଁ ।

# ।। ନିଶା ଯୁଦ୍ଧ ।।

ଜୟଦ୍ରଥଙ୍କ ବଧ ପରେ, ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନେଇ ଧର୍ମରାଜଙ୍କ ପାଖ୍କୁ ଆସିଲେ । ତାଙ୍କୁ ଦୂରରୁ ଦେଖି, ରଥରୁ ଓହ୍ଲାଇ ଅଭିବାଦନ ଜଣାଇଲେ ।ଉଲ୍ଲସିତ କଣ୍ଠରେ କହିଲେ, '' ହେ ରାଜଧିରାଜ ! ଆପଣ ଭାଗ୍ୟବାନ । ପୁରୁଷ ଶ୍ରେଷ୍ଠ ଅର୍ଜୁନଙ୍କର 'ପରଂତପ' ନାମ ସାର୍ଥକ ହୋଇଛି । ସେ ତାଙ୍କର ଆଗ୍ନେୟ ଶପଥ ପୂରଣ କରିଛନ୍ତି । ଜୟଦ୍ରଥଙ୍କୁ ଯମାଳୟକୁ ପଠାଇ ଦିଆଯାଇଛି ।''

ଯୁଧିଷ୍ଠିରଙ୍କ ନୟନ ଆନନ୍ଦାଶ୍ରୁରେ ଆର୍ଦ୍ର ହୋଇଗଲା । ଭାବାବେଗ ଭିତରେ ସେ ହଠାତ୍ କିଛି କହି ପାରିଲେ ନାହିଁ । ନିଜକୁ ସମ୍ଭାଳି ନେଇ କିଛି ସମୟପରେ ଅର୍ଜୁନଙ୍କୁ ବୁକୁରେ ଚାପିରଖି ପିଠି ଥାପୁଡ଼େଇଲେ । ମୁଣ୍ଡ ଆଉଁଶିଲେ, କାନ୍ଦି କାନ୍ଦି କହିଲେ, ମୋ ଅଭିମନ୍ୟୁ ତଥାପି ଆଉ ଫେରିବ ନାହିଁ । ଅର୍ଜୁନଙ୍କ ଆଖି ଲୁହ ଛଳ ଛଳ ହୋଇଗଲା । ଉଦଗଦ୍ ଲୁହକୁ ଚାପି ନେଇ ଭାଇଙ୍କ ପଦଯୁଗରେ ପ୍ରଣାମ ଢ଼ାଳିଲେ । ପରିସ୍ଥିତିର ପରିବର୍ତ୍ତନ ପାଇଁ ଶ୍ରୀକୃଷ୍ଣ କଥାର ମୋଡ଼ ବଦଳାଇ, ଅର୍ଜୁନଙ୍କ ବୀରତାର ଉଚ୍ଛ୍ୱସିତ ପ୍ରଶଂସାକଲେ ।

ସେ ପାଖେ ଦୁର୍ଯ୍ୟୋଧନ ଚିନ୍ତା ଚିତାରେ ଦଗ୍ଧୀଭୂତ । ଆଜି ଦିନର ଯୁଦ୍ଧ ସବୁଠାରୁ ବଳି ପ୍ରଳୟଙ୍କର, ଲୋମହର୍ଷଣକାରୀ । ଯୁଦ୍ଧ ଆରମ୍ଭ ବେଳେ କୌରବ ସେନା ପାଣ୍ଡବଙ୍କ ଅପେକ୍ଷା ଚାରି ଅକ୍ଷୌହିଣୀ ଅଧିକ ଥିଲେ । ଆଜି ଯୁଦ୍ଧରେ ଅର୍ଜୁନ ଏକା ଆଠ ଅକ୍ଷୌହିଣୀ ସେନାଙ୍କୁ ମାରିଛନ୍ତି । ପ୍ରାଣ ଠାରୁ ପ୍ରିୟତର ଭଉଣୀ ଦୁଃଶଳା, ବିଧବା ହୋଇ ଯାଇଛି । ଜୟଦ୍ରଥଙ୍କ ପରି ମହାଯୋଦ୍ଧାର ମହାପ୍ରୟାଣ ପରେ ତାଙ୍କର ଜୟଲାଭ କରିବାର ସ୍ୱପ୍ନ ମଉଳି ଯାଇଛି । ଯେଉଁ ସଂଖ୍ୟାବଳକୁ ନେଇ ସେ ଯୁଦ୍ଧ କରୁଥିଲେ ତାହା ଆଶାତୀତ ଭାବରେ ହ୍ରାସ ପାଉଛି । ବର୍ତ୍ତମାନ ପାଣ୍ଡବମାନେ ସୈନ୍ୟବଳରେ ଅଧିକ ବଳିୟାନ୍ । ଶହେ ଭାଇଙ୍କ ଭିତରୁ ଅଧିକାଂଶ ଭୀମଙ୍କ ହାତରେ ନିହତ ହେଲେଣି । ଯେଉଁ ମହାରଥୀ, ଅତିରଥମାନଙ୍କ ଶକ୍ତି ଓ ଆନ୍ତରିକତା ଉପରେ ଆସ୍ଥାରଖି ସେ ଯୁଦ୍ଧ ଆରମ୍ଭ କଲେ, ସେମାନେ ନିଜର ପ୍ରଚ୍ଛନ୍ନ ସ୍ୱରୂପ ପ୍ରକାଶ କରିଛନ୍ତି । ଆଉ କାହାକୁ ନେଇ ଯୁଦ୍ଧ କରିବେ । କାହିଁକି ବା ଯୁଦ୍ଧ କରିବେ !! ମନରେ ଅଶାନ୍ତ ଝଡ଼ ।

ଦୁର୍ଯ୍ୟୋଧନ ଦୁଃଖ ଜର୍ଜରିତ ହୃଦୟରେ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଯାଇ କହିଲେ,''ଆପଣ ଜାଣି ଜାଣି ଆଜି ଜୟଦ୍ରଥଙ୍କୁ ମୃତ୍ୟୁ ମୁହଁକୁ ଠେଲି ଦେଇଛନ୍ତି । ଅର୍ଜୁନ ଆପଣଙ୍କର ପ୍ରିୟଶିଷ୍ୟ, ତାଙ୍କୁ ସୁଯୋଗ ଦେଇଛନ୍ତି ବ୍ୟୂହ ଭେଦ କରିବାକୁ । ସେଥିପାଇଁ ବୋଧହୁଏ ବ୍ୟୂହର ପ୍ରବେଶ ପଥରେ ଜଗିରହିଥିଲେ । ବିଶ୍ୱାସ ଘାତକତାର ସୀମା ଅଛି । ଆପଣଙ୍କ ପରି ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କୁ ମୁଁ ଆଉ ଅଧିକ କଣ କହିବି ।''

କଥାଟା ଦ୍ରୋଣାଚାର୍ଯ୍ୟଙ୍କୁ ବହୁତ ବାଧିଲା । ମର୍ମ ସ୍ଥଳକୁ କ୍ଷତାକ୍ତ କରି ଦେଲା । ସେ କହିଲେ, ''ରାଜନ୍ ! ମୁଁ ବୃଦ୍ଧ, ସ୍ୱଚ୍ଛ ଦୃଷ୍ଟିଶକ୍ତି ସମ୍ପନ୍ନ, ଶକ୍ତିହୀନ,ତଥାପି ପ୍ରାଣପାତ ଯୁଦ୍ଧ କରିଛି, କେବେହେଲେ ବିଶ୍ୱାସଘାତକତା କରିନାହିଁ । କୁରୁରାଜଙ୍କ ପ୍ରତି ଅନୁରକ୍ତି ଆଜି ମଧ୍ୟ ଅତୁଟ । ମୋର ସଫଳତା କିମ୍ବା

ବିଫଳତା ଦୈବାଧୀନ । ଯେଉଁ ପାଣ୍ଡବମାନଙ୍କ ସପକ୍ଷରେ ଦୈବୀ ଶକ୍ତି କାମକରୁଛି, ତାହାକୁ କୌଣସି ଅସ୍ତ୍ର ପ୍ରତିହତ କରି ପାରିବନାହିଁ । ସେ କୌଣସି ଶପଥକୁ ସମ୍ମାନ ଦିଏ ନାହିଁ । କାହାର ଭାବପ୍ରବଣତା କିମ୍ବା ସ୍ୱର୍ଶ କାତରତାକୁ ଭ୍ରୂକ୍ଷେପ କରେ ନାହିଁ । ମୋ ଶପଥ ବିଫଳ ହେବାର ତାହାହିଁ କାରଣ, ପକ୍ଷପାତୀତା ନୁହେଁ । ଆପଣ ଯେ ମୋତେ ଅବିଶ୍ୱାସ କରିଛନ୍ତି ତାହାହିଁ ଦ୍ରୋଣାଚାର୍ଯ୍ୟର ମୃତ୍ୟୁ ଘଣ୍ଟି ବୋଲି ବିଶ୍ୱାସ କରନ୍ତୁ । ମୁଁ ବଜ୍ର କଣ୍ଠରେ କହୁଛି, ଆଜି ମୁଁ ପ୍ରାଣ ବିନିମୟରେ ପାଣ୍ଡବ ମାନଙ୍କୁ ଜୟ କରିବି କିମ୍ବା ପାଣ୍ଡବମାନଙ୍କ ହାତରେ ପ୍ରାଣ ବିସର୍ଜନ କରିବି । ଆପଣ ଅବିଶ୍ୱାସ କରିବା ପାଇଁ କିଂବା ମୋତେ ବାରବାର ଆଘାତ କରି ବିଦୀର୍ଣ୍ଣ କରିବାକୁ ସୁଯୋଗ ଦେବିନାହିଁ । ଆଜି ଯୁଦ୍ଧ ବନ୍ଦ ହେବ ନାହିଁ । ଆପଣଙ୍କର ପ୍ରଶ୍ନର ସମାଧାନ ହେବ ।

ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ ଅନ୍ୟମାନଙ୍କ ଆଖିରେ ଲୁହ ଛକେଇ ଆସିଲା । ଦୁର୍ଯ୍ୟୋଧନ ଅନୁତପ୍ତ କଣ୍ଠରେ କହିଲେ, ହେ ଗୁରୁଶ୍ରେଷ୍ଠ ! ମୋତେ କ୍ଷମାଦେବେ । ଜୟଦ୍ରଥଙ୍କ ବଧରେ ମୁଁ ଦୁଃଖାଭିଭୂତ ହୋଇ ଅନୁଚିତ କଥା କହିଦେଇଛି ।''

ଅନ୍ଧକାର ଭିତରେ ପୁଣି ଯୁଦ୍ଧ ଆରମ୍ଭ ହେଲା ।

ବାଜି ଉଠିଲା ରଣ ନିର୍ଘୋଷ ।

ପ୍ରବଳ ପରାକ୍ରାନ୍ତ ପାଣ୍ଡବ ସୈନ୍ୟମାନେ କୌରବ ସୈନ୍ୟମାନଙ୍କ ଆକ୍ରମଣର କଠୋର ଜବାବ ଦେଲେ । ଦୁର୍ଯ୍ୟୋଧନଙ୍କର ଆଦେଶରେ ପ୍ରଦୀପ ଜଳାଇ ଯୁଦ୍ଧ ଭୂମିକୁ ଆଲୋକିତ କରାଗଲା । ପାଣ୍ଡବ ପକ୍ଷ ମଶାଲ ଜାଳି ନିଜ ପାଖ ଆଲୋକିତ କଲେ । ତେବେ ସେ ମଶାଲର ଆଲୋକ ଥିଲା ନୀଳାଭ ।

ସାରାରାତି ଚାଲିଲା ପ୍ରଚଣ୍ଡ ଯୁଦ୍ଧ । ରଣନୀତି ଆଜିଠାରୁ ଭଙ୍ଗ ହେଲା । ଘଟୋତ୍କଚ ସହିତ କର୍ଣ୍ଣଙ୍କର ଯୁଦ୍ଧ ଖୁବ୍ ଭୟଙ୍କର । ସେ ଛଦ୍ମବେଶରେ କର୍ଣ୍ଣଙ୍କୁ ଘୋର ଅସୁବିଧାରେ ପକାଇଲା । କର୍ଣ୍ଣ ତୀକ୍ଷ୍ଣ, ଶରାଘାତରେ ତାର ବିଭିନ୍ନ ଛଦ୍ମରୂପକୁ ଜର୍ଜରିତ କଲେ । ଘଟୋତ୍କଚ ପ୍ରଳୟରୂପନେଇ କୁରୁସେନାକୁ ଧ୍ୱଂସକଲେ । ସତେଯେପରି ପଦ୍ମବନରେ ମତ୍ତ ହସ୍ତୀର ଉନ୍ମତ୍ତତା । କେତେ ଯେ କୁରୁସୈନ୍ୟ ମରି ପଡ଼ିଗଲେ ତାର ହିସାବ ନାହିଁ । ବିବ୍ରତ ଓ ବ୍ୟସ୍ତ ହୋଇ ଉଠିଲେ କର୍ଣ୍ଣ ତଥା ଦୁର୍ଯ୍ୟୋଧନ । କୌଣସି ପାରମ୍ପରିକ ଅସ୍ତ୍ର ସାହାଯ୍ୟରେ ସେଇ ରାକ୍ଷସୀ ଶକ୍ତିକୁ ପ୍ରତିରୋଧ କରାଯାଇ ପାରିଲା ନାହିଁ । ବିଷମ ଚିନ୍ତାରେ ପଡ଼ିଗଲେ ସେମାନେ । କ'ଣ କରିବେ, କିଛି ସ୍ଥିର କରି ପାରିଲେ ନାହିଁ । ଆଉ କିଛି ସମୟ ଏ ପ୍ରକାର ଯୁଦ୍ଧ ଚାଲିଲେ, ଆଜି ରାତି ଭିତରେ କୌରବ ସୈନ୍ୟ ଶେଷ ହୋଇଯିବେ ।

ଦୁର୍ଯ୍ୟୋଧନ ଅନୁରୋଧ କଲେକର୍ଣ୍ଣଙ୍କୁ, ''ହେ ବନ୍ଧୁ ! ଆପଣ ବର୍ତ୍ତମାନ ଆମର ଆଶାଭରସା । ଦୟାକରି ଦିବ୍ୟାସ୍ତ୍ର ପ୍ରୟୋଗ କରନ୍ତୁ । ଏ ଆସୁରୀ ଶକ୍ତିର ଅବସାନ ହେଉ ।''

କର୍ଣ୍ଣ ନିଜର କବଚ କୁଣ୍ଡଳ ବିନିମୟରେ ଇନ୍ଦ୍ରଙ୍କଠାରୁ ଲାଭ କରିଥିବା ଶକ୍ତି ଅସ୍ତ୍ର, ସୁରକ୍ଷିତ କରି ରଖିଥିଲେ ଅର୍ଜୁନଙ୍କ ଉପରେ ଶେଷ ମୁହୂର୍ତ୍ତରେ ପ୍ରୟୋଗ କରିବେ ବୋଲି । ଦୁର୍ଯ୍ୟୋଧନ ବାଧ୍ୟ କଲେ ସେଇ ବୈଜୟନ୍ତୀ ଶକ୍ତି ଅସ୍ତ୍ରକୁ ଘଟୋତ୍କଚ ଉପରେ ନିକ୍ଷେପ କରିବାକୁ । ପ୍ରଚଣ୍ଡତର ରୂପ ନେଉଥିବା

ଘଟୋତ୍କଚ ଉପରେ ତାହା ପ୍ରୟୋଗ କରାଗଲା ଏଇ ଅସ୍ତ୍ରର ଅକଳ୍ପନୀୟ ଶକ୍ତିକୁ ପ୍ରତିରୋଧ କରି ପାରିଲେନାହିଁ ଘଟୋତ୍କଚ । ତାଙ୍କର ବକ୍ଷ ବିଦୀର୍ଣ୍ଣ ହୋଇଗଲା । ସେ ତାଙ୍କ ଶରୀରକୁ ଏପରି ଫୁଲାଇ ଦେଲେ ଯେ, ଅସୁମାର କୌରବ ସୈନ୍ୟ ତା ତଳେ ପେଶି ହୋଇମରିଗଲେ । ଘଟୋତ୍କଚ ମୃତ୍ୟୁବରଣ କଲେ ।

ପାଣ୍ଡବ ପକ୍ଷରେ ଦୁଃଖର ଛାୟା ଖେଳିଗଲା । ଯୁଧିଷ୍ଠିର ଭୀମ, ଅର୍ଜୁନ ପ୍ରଭୃତି ଦୁଃଖାବେଗରେ ଅଧୀର ହୋଇ ଉଠିଲେ । କୃଷ୍ଣଙ୍କ ଭିତରେ ଦୁଃଖର ପ୍ରତିକ୍ରିୟା ଟିକିଏ ମଧ୍ୟ ନାହିଁ । ବରଂ ସମସ୍ତେ ଅଶ୍ରୁ ମୁଞ୍ଚନ କରିବା ସମୟରେ ସେ ହର୍ଷୋତଫୁଲ୍ଲ ଦେଖା ଯାଉଥିଲେ ।

ଏ ରହସ୍ୟ କେହି ବୁଝି ପାରିଲେ ନାହିଁ ।

ପରମ ପୁରୁଷ ଶ୍ରୀକୃଷ୍ଣ ଠିକ୍ ଭାବରେ ବୁଝିଥିଲେ, ଅର୍ଜୁନଙ୍କ ଉପରୁ ସଙ୍କଟ ଦୂର ହୋଇଗଲା । ଅର୍ଜୁନଙ୍କୁ ସେ ଆଉ ସ୍ପର୍ଶ କରି ପାରିବେ ନାହିଁ । ସେ ଆଜି ଶକ୍ତିହୀନ । ସାଧାରଣ ସୈନିକଟିଏ । ଯେପର୍ଯ୍ୟନ୍ତ ସେଇ ମହାନ ଅସ୍ତ୍ର କର୍ଣ୍ଣଙ୍କ ପାଖରେ ଥିଲା, ସେ ପର୍ଯ୍ୟନ୍ତ ଶ୍ରୀକୃଷ୍ଣ ସୁଖନିଦ୍ରା ପାଇପାରୁନଥିଲେ ।

ଅନ୍ୟ ପାଖରେ ଦ୍ରୋଣାଚାର୍ଯ୍ୟ, ରାଜା ଦ୍ରୁପଦ ଓ ରାଜା ବିରାଟଙ୍କୁ ହତ୍ୟାକଲେ । ସହଦେବ କର୍ଣ୍ଣଙ୍କୁ ଆକ୍ରମଣ କରି ନିଜର ରଥ ଓ ସାରଥିକୁ ହରାଇଲେ । କର୍ଣ୍ଣ କୁନ୍ତୀକୁ ଦେଇଥିବା ପ୍ରତିଶ୍ରୁତି ଅନୁସାରେ ସହଦେବଙ୍କୁ ମାରିଲେନାହିଁ । କହିଲେ, ଅର୍ଜୁନଙ୍କୁ କହିଦେବୁ, ମୁଁ ତୋତେ ନମାରି ଛାଡ଼ି ଦେଇଛି ।''

ଅର୍ଜୁନ ଘୋଷଣା କଲେ, ''ଆଜି ରାତିର ଯୁଦ୍ଧ ଏଇଠି ଥାଉ । କାଲି ପ୍ରତ୍ୟୁଷରୁ ପୁଣି ଯୁଦ୍ଧ କରିବା ।'' କ୍ଳାନ୍ତ କୌରବ ପକ୍ଷ ଏକମତ ହୋଇ ଯୁଦ୍ଧରୁ ବିରତ ହେଲେ । ସେ ରାତିର ଯୁଦ୍ଧ ସମାପ୍ତ ହେଲା । ରଣକ୍ଳାନ୍ତ ଉଭୟପକ୍ଷ ଆନନ୍ଦିତ ହେଲେ । ନିଜ ନିଜର ଶିବିରକୁ ଫେରି ନଯାଇ କିଏ ରଥ ଉପରେ , କିଏ ହାତୀ, ଘୋଡ଼ା ଉପରେ ଆଉ କିଏ ତଳେ ଗଡ଼ି ପଡ଼ିଲେ । ସମସ୍ତେ ନିଦ୍ରାଭିଭୂତ । ରଣବେଦିରେ ସମସ୍ତେ ଶୋଇଥାନ୍ତି ପ୍ରତ୍ୟୁଷକୁ ଅଭିନନ୍ଦନ ଜଣାଇବାପାଇଁ ।

ପଚିଶ

# ।। ପଞ୍ଚଦଶ ଦିନ ଯୁଦ୍ଧ ।।

ସୂର୍ଯ୍ୟ ଉଦୟ ହେବାପରେ ଯୁଦ୍ଧ ପୁଣି ଆରମ୍ଭ ହେଲା । ସତେ ଯେପରି ସାଗର ବିକ୍ଷୁବ୍ଧ ହୋଇ ଉଠିଛି । ଉଭୟ ପକ୍ଷ ମଧ୍ୟରେ ପୁଣି ତୁମୁଳ ଯୁଦ୍ଧ । ପାଣ୍ଡବମାନେ ବିଜୟ ଉଲ୍ଲାସରେ ଉନ୍ମାଦିତ । ଦ୍ରୋଣାଚାର୍ଯ୍ୟ, ଦ୍ରୁପଦ ଓ ବିରାଟ ରାଜଙ୍କୁ ମାରି ଦେବା ପରେ ଭୀଷଣ ଭାବରେ ଅରଣା ହୋଇ ଉଠିଛନ୍ତି । ତାଙ୍କର କ୍ରୋଧ, ସମସ୍ତ ସମର ନୀତିକୁ ଆଜି ଲଂଘନ କରିଛି । ସେ ରଣ ମର୍ଯ୍ୟାଦା ଭୁଲି ଯାଇଛନ୍ତି । ସାମାନ୍ୟ ସୈନିକକୁ ସଂହାର କରିବା ପାଇଁ ସେ ଦିବ୍ୟାସ୍ତ୍ର ଏବଂ ବ୍ରହ୍ମାସ୍ତ୍ର ମଧ୍ୟ ପ୍ରୟୋଗ କରୁଛନ୍ତି । ପାଣ୍ଡବ ମାନଙ୍କର ଶତସହସ୍ର ସୈନ୍ୟ ମୃତ୍ୟୁ ବରଣ କଲେଣି । ସେ ମଧ୍ୟ ଅର୍ଜୁନ ଓ ଯୁଧିଷ୍ଠିରଙ୍କ ଉପରକୁ ଦିବ୍ୟାସ୍ତ୍ର ପ୍ରୟୋଗ କରିବାକୁ ପଛାଇଲେ ନାହିଁ । ଅର୍ଜୁନ ତାହା ଶାନ୍ତ କରି ଦେଲେ କିନ୍ତୁ ଏ ଆଚରଣରେ ବିବ୍ରତ ହେଲେ ।

ଶ୍ରୀକୃଷ୍ଣ ଚିନ୍ତିତ । ତାଙ୍କର ଆଶ୍ରିତ ପାଣ୍ଡବମାନଙ୍କର ଅବସ୍ଥା ବର୍ତ୍ତମାନ ବିପଦ ପୂର୍ଣ୍ଣ । ସେ ଯୋଗବଳରେ ଆଚାର୍ଯ୍ୟଙ୍କ ମନକଥା ଜାଣିଗଲେଣି । ତାଙ୍କର ପୂର୍ବ ପ୍ରତିଶ୍ରୁତି, ପାଣ୍ଡବ ପ୍ରୀତି ଓ ସଦିଚ୍ଛା ନେଇଛି ସଂହାର ରୂପ । ସେ ବର୍ତ୍ତମାନ ନିଜର ଓ ନିଜ ପୁତ୍ରର ଆତ୍ମରକ୍ଷାପାଇଁ ଦୃଢ଼ ପରିକର । ଦୁର୍ଯ୍ୟୋଧନଙ୍କର କର୍କଶ ବାଣୀ ତାଙ୍କୁ ଦୁର୍ଦ୍ଧର୍ଷ କରି ଦେଇଚି । ସେ ପାଣ୍ଡବମାନଙ୍କୁ ସଂହାର କରିବେ ନତୁବା ତାଙ୍କ ହାତରେ ପ୍ରାଣ ବସର୍ଜନ କରିବେ । ତାଙ୍କ ହାତରେ ଦିବ୍ୟାସ୍ତ୍ର ଥିବା ପର୍ଯ୍ୟନ୍ତ ସେ ସୁରକ୍ଷିତ ।

ଯୁଧିଷ୍ଠିର, ଅର୍ଜୁନ, ଭୀମ, ପ୍ରଭୃତି ଶ୍ରୀକୃଷ୍ଣଙ୍କ ସହିତ ଆଲୋଚନା କଲେ । ଆଚାର୍ଯ୍ୟ ଦ୍ରୋଣ ସଂହାର ରୂପ ନେଇଛନ୍ତି । ତାଙ୍କୁ ପ୍ରତିହତ କରିବାର କିଛି ଉପାୟ ମିଳୁନି । ଶ୍ରୀକୃଷ୍ଣ ଗମ୍ଭୀର ହୋଇ କହିଲେ, ‘‘ଗୋଟାଏ ନିଶ୍ଚିତ ଉପାୟ ଅଛି, କିନ୍ତୁ ତାହା କେତେ ଦୂର ଆମେ କାର୍ଯ୍ୟରେ ପରିଣତ କରି ପାରିବା, ତାହାହିଁ ବିଚାର୍ଯ୍ୟ ।’’

ଯୁଧିଷ୍ଠିର କହିଲେ, ‘‘ପାଣ୍ଡବ ମାନଙ୍କର ମୃତ୍ୟୁ ଯେତେବେଳ ଆସନ୍ନ, ପ୍ରଭୁ ଯେଉଁ ଆଦେଶ ଦେବେ ସେମାନେ ତାହା ନିଶ୍ଚୟ ପାଳିବେ । ତେବେ ତାଙ୍କପରି ଆମେ ନୀତି ନିୟମ ଲଂଘନ କରିବା ବୋଧହୁଏ ସମୀଚୀନ ହେବନାହିଁ । ଆପଣ କହନ୍ତୁ, କଣ କରାଯାଇ ପାରିବ ।’’

ମୁଁ ଭଲରୂପେ ଜାଣେ, ଦ୍ରୋଣାଚାର୍ଯ୍ୟ ଅଶ୍ୱତ୍ଥାମାଙ୍କ ପାଇଁ ପାଗଳ । ତାଙ୍କର ଏକମାତ୍ର ପ୍ରାଣପ୍ରିୟ ପୁତ୍ରକୁ ରକ୍ଷାକରିବା ପାଇଁ ସେ ମହାଭାରତ ଯୁଦ୍ଧରେ ଅସ୍ତ୍ରଧାରଣ କରିଛନ୍ତି, ବିଶେଷତଃ ବ୍ରାହ୍ମଣ ହୋଇ କ୍ଷତ୍ରିୟର କାମ କରୁଛନ୍ତି । ଅଶ୍ୱତ୍ଥାମାଙ୍କୁ ସହଜରେ ବଧ କରାଯାଇ ପାରିବ ନାହିଁ । କେବଳ ଏତିକି କରାଯାଇ ପାରିବ, ଅଶ୍ୱତ୍ଥାମା ମରିଗଲେ ବୋଲି ତାଙ୍କୁ କହିଦେଲେ ସେ ମାନସିକ ଭାରସାମ୍ୟ ହରାଇ ଯୁଦ୍ଧ ଭୂମିରେ ଅସ୍ତ୍ର ଫୋପାଡ଼ି ଦେବେ । ପୁତ୍ର ଶୋକରେ ଅସ୍ଥିର, ନିରସ୍ତ୍ର ଦ୍ରୋଣଙ୍କୁ ବିନାବାଧାରେ ହତ୍ୟା କରାଯାଇ ପାରିବ । ବର୍ତ୍ତମାନ ତାଙ୍କ ପୁତ୍ର ବହୁ ଦୂରରେ ଯୁଦ୍ଧ କରୁଛନ୍ତି ।

ଅର୍ଜୁନ କହିଲେ, ''ପ୍ରଭୁ ! ମୁଁ ଅସତ୍ୟ ସମ୍ବାଦ ପରିବେଷଣ କରି, ଏପରି ଅନୀତି କାର୍ଯ୍ୟ କରି ପାରିବି ନାହିଁ । ସେ ମୋର ପ୍ରିୟ ସମ୍ମାନିତ ଗୁରୁ, ତାଙ୍କୁ ହତ୍ୟା କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।''

''ତୁମ ଶ୍ୱଶୁର ପାଞ୍ଚାଳରାଜ ଦ୍ରୁପଦକଣ ତୁମର ପ୍ରିୟ ଓ ସମ୍ମାନନୀୟ ନୁହଁନ୍ତି ? ସେ ତାଙ୍କୁ ହତ୍ୟାକଲେ, ମତ୍ସ୍ୟରାଜ ବିରାଟ ତୁମମାନଙ୍କୁ ସଙ୍କଟ କାଳରେ ଆଶ୍ରୟ ଦେଇ ଜୀବନରକ୍ଷା କରିଥିଲେ । ସେ ମଧ୍ୟ ତୁମର ଆତ୍ମୀୟ, ତାଙ୍କୁ ମଧ୍ୟ ଦ୍ରୋଣ ହତ୍ୟା କରିଛନ୍ତି । ଏବେ ତୁମ ଉପରକୁ ଦିବ୍ୟାସ୍ତ୍ର ପ୍ରୟୋଗ କରିବା ଆରମ୍ଭ କରି ଦେଲେଣି । ନାରାୟଣୀ ଅସ୍ତ୍ର ଯଦି ପ୍ରୟୋଗ କରିବେ, ତୁମମାନଙ୍କର ସର୍ବାଲୋପ ହୋଇଯିବ । ତୁମେ ତାହା ଶାନ୍ତ କରିବାର ଗୂଢ଼ ତତ୍ତ୍ୱ ଜାଣିଛକି ? ସେ ସେଇ କୌଶଳ ଶିଖାଇଛନ୍ତି ପୁତ୍ର ଅଶ୍ୱତ୍ଥାମାଙ୍କୁ ଅଥଚ ତୁମେ ତାଙ୍କର ପ୍ରିୟ ଶିଷ୍ୟ, ସେ ତୁମର ପ୍ରିୟ ଗୁରୁ । ବୀର ହୋଇ, ଶବ୍ଦ ଗୁଡ଼ାକର କୁହୁକ ଜାଲରେ ଏତେ ଛନ୍ଦି ହେଉଛ କାହିଁକି ? ଧର୍ମରାଜଙ୍କ ମତ କଣ ?''

''ମୁଁ ସତ୍ୟର ଅପଳାପ କରି ପାରିବି ନାହିଁ ପ୍ରଭୁ ! ଆପଣ ସବୁ ଜାଣିମଧ୍ୟ ଆମକୁ ଧର୍ମ ସଙ୍କଟରେ ପକାଉଛନ୍ତି କାହିଁକି ?''

''ହେ ଧର୍ମରାଜ ! ମୁଁ ଆପଣଙ୍କର ମାନସିକ ଦ୍ୱନ୍ଦ୍ୱ ଠିକ୍ ଭାବରେ ବୁଝିପାରୁଛି । ଆପଣ ସତ୍ୟ ଅସତ୍ୟ ଶବ୍ଦର ସଂକୀର୍ଣ୍ଣ ବ୍ୟାଖ୍ୟାକରି ଅସୁବିଧାରେ ପଡ଼ିଛନ୍ତି । ଆପଣ ଯେଉଁ କଥାକୁ ଯେପରି ଭାବରେ ଜାଣିଛନ୍ତି, ତାକୁ ଠିକ୍ ସେଇପରି ଭାବରେ କହିଦେବାଟା ସତ୍ୟ ବୋଲି ଭାବିବା ଉଚିତ ନୁହେଁ । ଆପଣ ଜାଣିଥିବା ସତ୍ୟ ହୁଏତ ସଂପୂର୍ଣ୍ଣ ଅସତ୍ୟ ହୋଇପାରେ ।''

ମନେ ରଖନ୍ତୁ, ଯେଉଁ କଥାରେ ବହୁ ପ୍ରାଣୀଙ୍କର ଅଶେଷ ହିତ ସାଧିତ ହୋଇଥାଏ ତାହା ଯେତେ ଅସତ୍ୟ ଓ ଅଶୁଭ ଜଣା ପଡୁଥିଲେ ମଧ୍ୟ, ପ୍ରକୃତସତ୍ୟ ବୋଲି ତାହାକୁ ଗ୍ରହଣ କରିବାକୁ ହେବ । ତାହା ସେ କ୍ଷେତ୍ରରେ ଅଧର୍ମ ନୁହେଁ ବରଂ ପ୍ରକୃତ ଧର୍ମ । ସେଥିପାଇଁ ମନେ ରଖନ୍ତୁ ।

''ନ ସତ୍ୟବନଂ ସତ୍ୟଂ ନା ସତ୍ୟ ବଚନଂ ମୃଷା ।
ଯୋ ଭୂତି ହିତ ମତ୍ୟନ୍ତ ତଂ ସତ୍ୟଂ କବୟୋ ବିଦୁଃ ।।

ଯୁଧିଷ୍ଠିର ହାତଯୋଡ଼ି କହିଲେ, ''ପ୍ରଭୁଙ୍କର ଇଚ୍ଛା ପୂରଣ ହେଉ । ଭୀମସେନ କହିଲେ, ''ମୁଁ ଏଇସଦ୍ୟ, ମାଳବ ରାଜା ଇନ୍ଦ୍ରବର୍ମାଙ୍କ ବିରାଟକାୟ ହସ୍ତୀ ଅଶ୍ୱତ୍ଥମାକୁ ଗଦା ମାଡ଼ରେ ହତ୍ୟାକରି ଆସିଛି । ତେବେ ଯାଉଛି, ଅଶ୍ୱତ୍ଥମାର ମୃତ୍ୟୁ ସମ୍ବାଦ ଦ୍ରୋଣାଚାର୍ଯ୍ୟଙ୍କୁ ଦେଇଦେବି । ଶ୍ରୀକୃଷ୍ଣ ହସିଲେ । ଯୁଧିଷ୍ଠିର ଅର୍ଜୁନ ପ୍ରଭୃତି ମୁଣ୍ଡ ପାତି ନୀରବସମ୍ମତି ଦେଲେ । ଭୀମ ସେନ ଦୌଡ଼ି ଦୌଡ଼ି ଯାଇ ଯୁଦ୍ଧରତ ଦ୍ରୋଣଙ୍କୁ କହିଲେ, ''ହେ ମହାନ ଆଚାର୍ଯ୍ୟ ଅଶ୍ୱତ୍ଥାମାଙ୍କୁ ମୁଁ ହତ୍ୟା କରିଛି ।''

ବିସ୍ମୟ ବିମୂଢ଼ ହୋଇଗଲେ ଦ୍ରୋଣାଚାର୍ଯ୍ୟ ।

ହାତରୁ ଅସ୍ତ୍ର ଖସି ପଡ଼ିଲା । ସେ ଏତେ ମର୍ମାହତ ହୋଇପଡ଼ିଲେ ଯେ ସତ୍ୟାସତ୍ୟ କିଛି ସ୍ଥିର କରି ପାରିଲେ ନାହିଁ । କିଛି ସମୟପରେ ପ୍ରକୃତିସ୍ଥ ହୋଇ କହିଲେ, ''ଭୀମ ! ତୁମେ ମିଥ୍ୟାବାଦୀ । ମୁଁ ତୁମ କଥାକୁ ଆଦୌ ବିଶ୍ୱାସ କରି ପାରୁନାହିଁ । ଅଶ୍ୱତ୍ଥାମା ଅଜେୟ । ତାକୁ ମାରିବ କିଏ !''

''ଠିକ୍ ଅଛି ମୁଁ ତ କହିଲି, ମୁଁ ମାରିଛି । କର୍ତ୍ତବ୍ୟ ଦୃଷ୍ଟିରୁ ଆପଣଙ୍କୁ ସମ୍ବାଦଟା ଦେଇ ଦେବା ଉଚିତ ମନେ କରି କହିଲି । ଆପଣ ଗ୍ରହଣ କରି ନପାରନ୍ତି । ଆପଣଙ୍କୁ ଏ ସମ୍ବାଦ ଦେଇ ମୁଁ ଭୁଲ କରିଛି । କ୍ଷମା ଦେବେ ।

ଦ୍ରୋଣାଚାର୍ଯ୍ୟ ବ୍ୟଥିତ କଣ୍ଠରେ କହିଲେ, ଅ...ଶ୍ୱ...ତ୍...ଥାମା, ଚାଲି...ଗଲା...? ଏ ଦାରୁଣ ସମ୍ବାଦ ଶୁଣିବାକୁ ମୋତେ ଥିଲା ।

ଏହା କହି, ଅତ୍ୟନ୍ତ ଉଦ୍‌ବେଗ ଓ ଆବେଗ ମଧ୍ୟରେ ଦ୍ରୋଣ ଦଉଡ଼ି ଆସିଲେ ଯୁଧିଷ୍ଠିରଙ୍କ ପାଖକୁ । ବିକଳ କଣ୍ଠରେ ପଚାରିଲେ, ''ଧର୍ମ ରାଜ ! ଆପଣ ତ ସତ୍ୟର ଅବତାର । ଠିକ୍ କରି କହନ୍ତୁ, ସତରେ କଣ ଅଶ୍ୱତ୍‌ଥାମାଙ୍କୁ ହତ୍ୟା କରାଯାଇଛି ?''

ଯୁଧିଷ୍ଠିର ଖୁବ୍ ବଡ଼ ପାଟିରେ କହିଲେ, ''ଅଶ୍ୱତ୍‌ଥାମାକୁ ବଧ କରାଯାଇଛି । ଆଉ କଣ କହୁଥାନ୍ତି ଠିକ୍ ଏଇ ସମୟରେ ପାଞ୍ଚଜନ୍ୟ ଶଙ୍ଖଫୁଙ୍କି ଦେଲେ ଶ୍ରୀକୃଷ୍ଣ । ଭୀଷଣ ଶବ୍ଦ ଭିତରେ ଯୁଧିଷ୍ଠିରଙ୍କ ବାକି କଥା ସେ ଶୁଣି ପାରିଲେ ନାହିଁ ।

ଦ୍ରୋଣାଚାର୍ଯ୍ୟ ରଥକୁ ଫେରିଯାଇ ସବୁ ଅସ୍ତ୍ର ଫୋପାଡ଼ି ଦେଇ ଧ୍ୟାନରେ ବସିପଡ଼ିଲେ । ଆଖି ପିଛୁଳାକେ ପଞ୍ଚାଳ ରାଜପୁତ୍ର ଧୃଷ୍ଟଦ୍ୟୁମ୍ନ, ବ୍ୟାଘ୍ର ପରି ତାଙ୍କ ଉପରକୁ ଲମ୍ଫ ଦେଇ, ମସ୍ତକ ଛିନ୍ନ କରି ଦେଲେ । ହଠାତ୍ ତାଙ୍କ ଶରୀରରୁ ବାହାରିଆସିଲା ଏକ ଉଜ୍ଜ୍ୱଳ ଉଭାସ । ମହାଶୂନ୍ୟରେ ଲୀନ ହୋଇଗଲା ।

ଧୃଷ୍ଟଦ୍ୟୁମ୍ନ ଚିତ୍କାର କରି ଉଠିଲେ ହାଃ..ହାଃ...ହାଃ... । ଦ୍ରୋଣଙ୍କୁ ସଂହାର କରିବା ପାଇଁ ମୋର ଜନ୍ମ । ତାହା ଆଜି ସାର୍ଥକ ହେଲା । ପଞ୍ଚାଳର ଚିରଶତ୍ରୁକୁ ମୁଁ ଆଜି ଶେଷ ଦୀକ୍ଷା ଦେଇ ପାରିଲି ।

ଅର୍ଜୁନ, ''ଧୃଷ୍ଟଦ୍ୟୁମ୍ନ ଓ ଭୀମଙ୍କ ଉପରେ ବିରକ୍ତ ହୋଇ କହିଲେ, ''କିଛି ଗୋଟାଏ ଭଲକାମ କରାଗଲା ନାହିଁ । ଅଶ୍ୱତ୍‌ଥାମା ପିତୃହତ୍ୟାର ଚରମ ପ୍ରତିଶୋଧ ନେବେ । ଆଗକୁ ଚରମ ଦୁର୍ଗତିର ଦୃଶ୍ୟ ଦେଖିବାକୁ ବାକି ରହିଲା ।''

ଦ୍ରୋଣଙ୍କର ମୃତ୍ୟୁ ସମ୍ବାଦ ଅଶ୍ୱତଥାମାଙ୍କ ପାଖରେ ପହଞ୍ଚିଗଲା । ସେ ନିଜ କାନକୁ ବିଶ୍ୱାସ କରି ପାରିଲେନାହିଁ । 'ବିଶ୍ୱର ଅପ୍ରତିହତ ବୀରଙ୍କୁ ହତ୍ୟା କରାଯାଇ ପାରିଲା । ମୁଁ ପ୍ରତିଜ୍ଞା କରୁଛି, ପିତୃହତ୍ୟାର ଚରମ ପ୍ରତିଶୋଧ ନେବି ।'

ଦ୍ରୋଣାଚାର୍ଯ୍ୟଙ୍କ ମୃତ୍ୟୁପରେ ସମସ୍ତ କୌରବ ସୈନ୍ୟ ଦୂରେଇ ଗଲେ । ଦୁର୍ଯ୍ୟୋଧନ ବିଦୀର୍ଣ୍ଣ କଣ୍ଠରେ କହିଲେ, '' ଅଶ୍ୱତ୍‌ଥାମା ! ଏ କ୍ରୋଧାଗ୍ନି ଉପଶମ ହେବା ପୂର୍ବରୁ , ଧର୍ମଦ୍ରୋହୀ ପାଣ୍ଡବମାନଙ୍କୁ ପୂର୍ଣ୍ଣାହୁତି ଦିଅ ।''

ଅଶ୍ୱତ୍‌ଥାମା ତାଙ୍କର ନାରାୟଣଅସ୍ତ୍ର ହାତରେ ଧରି କହିଲେ, ''ରାଜନ୍ ! ଏହି ଅସ୍ତ୍ରର ମାହାତ୍ମ୍ୟ ଓ ଉପଯୋଗ ବିଷୟରେ ପାଣ୍ଡବ ପକ୍ଷର କେହି ଅବହିତ ନୁହଁନ୍ତି । ମୁଁ ଏହାକୁ ବର୍ତ୍ତମାନ ପ୍ରୟୋଗ କରି ପ୍ରକୃତରେ ମହାପ୍ରଳୟର ପୂର୍ଣ୍ଣାହୁତି ଦେବି ।''

ଅଶ୍ୱତ୍‌ଥାମା ପାଣ୍ଡବ ପକ୍ଷର ସମସ୍ତଙ୍କ ଉପରକୁ କ୍ରୋଧାକୁଳିତ ହୋଇ ଶର ନିକ୍ଷେପ କଲେ । ଏତିକି ବେଳେ ଶ୍ରୀକୃଷ୍ଣ ପାଣ୍ଡବ ପକ୍ଷର ସମସ୍ତଙ୍କୁ ସତର୍କ କରିଦେଇ କହିଲେ, ତୁମେ ସମସ୍ତେ ଅସ୍ତ୍ର ତଳେ ଥୋଇ ଦେଇ ଶୋଇଯାଅ । ସମସ୍ତେ ଆଖିପିଛୁଳାକେ ଅସ୍ତ୍ର ତ୍ୟାଗ କରି ଭୂଇଁରେ ଶୋଇଗଲେ । ନାରାୟଣାସ୍ତ୍ର ସେମାନଙ୍କ ମୁଣ୍ଡ ଉପରେ ଚକ୍କର କାଟି ପୁଣି ଫେରିଗଲା ଅଶ୍ୱତ୍‌ଥାମାଙ୍କ ତୂଣୀରକୁ । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । କୃଷ୍ଣଙ୍କ ଇଙ୍ଗିତରେ ପାଣ୍ଡବ ସୈନ୍ୟମାନେ ଏଥର ଉଠି ପୁଣି ଅସ୍ତ୍ର ଧାରଣ କଲେ । ଶ୍ରୀକୃଷ୍ଣ ଯେ ନାରାୟଣାସ୍ତ୍ରର ଅଧିଦେବତା ଏବଂ ତାହାକୁ ଶାନ୍ତ କରି ଦେବାର କୌଶଳ ତାଙ୍କୁ ଜଣା, ଏକଥା ଅଶ୍ୱତ୍‌ଥାମାଙ୍କୁ ଜଣାନଥିଲା ।

ଦୁର୍ଯ୍ୟୋଧନ ଚରମ ହତୋତ୍ସାହ ମଧ୍ୟରେ ଭାଙ୍ଗିପଡ଼ି ବ୍ୟଥିତ କଣ୍ଠରେ କହିଲେ, ଅପେକ୍ଷାକର, ସେମାନଙ୍କ ଅସତର୍କ ମୁହୂର୍ତ୍ତରେ ପୁଣିଥରେ ନାରାୟଣାସ୍ତ୍ରକୁ ପାଣ୍ଡବ ମାନଙ୍କ ଉପରକୁ ନିକ୍ଷେପ କରିବ ।

ଅଶ୍ୱତ୍ଥାମା ଆର୍ଦ୍ରକଣ୍ଠରେ କହିଲେ, ''ଆଉ ସେ ଅସ୍ତ୍ରର ଉପଯୋଗ କରାଯାଇ ପାରିବ ନାହିଁ । ଦ୍ୱିତୀୟଥର ତାହା ପ୍ରୟୋଗ କଲେ, ପ୍ରୟୋଗକାରୀ ତାଦ୍ୱାରା ନିହତ ହୁଏ । ଶ୍ରୀକୃଷ୍ଣ ଥିବାପର୍ଯ୍ୟନ୍ତ ସେ ଅସ୍ତ୍ରକୁ ପ୍ରୟୋଗ କରି ଲାଭନାହିଁ ।

ଦୁର୍ଯ୍ୟୋଧନ କହିଲେ, ''ଅଶ୍ୱତ୍ଥାମା ! ତୁମେ ଅନ୍ୟ କୌଣସି ଅମୋଘ ଅସ୍ତ୍ର ପ୍ରୟୋଗ କର ।'' ଠିକ୍ ଏତିକିବେଳେ ତାଙ୍କ ସମ୍ମୁଖ ଭାଗରେ ଦେଖାଗଲେ, ତାଙ୍କର ପିତୃହନ୍ତା ଧୃଷ୍ଟଦ୍ୟୁମ୍ନ । ସେ ତାଙ୍କୁ ଆକ୍ରମଣ କରି ବିବଶ କରି ଦେଲେ । ସାତ୍ୟକି ଓ ଭୀମ ମଧ୍ୟ ଚରମ ପରାଭବ ପାଇଲେ । ଅର୍ଜ୍ଜୁନ ସେମାନଙ୍କୁ ରକ୍ଷାକଲେ । ଏତିକିବେଳେ ସେ ନିକ୍ଷେପକଲେ ଅଭିମନ୍ତ୍ରିତ ଆଗ୍ନେୟାସ୍ତ୍ର ପାଣ୍ଡବ ସେନା ବାହିନୀ ଉପରକୁ ।

କୁରୁକ୍ଷେତ୍ର ରଣଭୂମିରେ ଦିଗହଜା ଅଗ୍ନିର ତାଣ୍ଡବଲୀଳା । ପାଣ୍ଡବ ପକ୍ଷର ଏକ ଅକ୍ଷୌହିଣୀ ସୈନ୍ୟ ଭସ୍ମ ହୋଇଗଲେ । ଅର୍ଜ୍ଜୁନ ବରୁଣାସ୍ତ୍ର ପ୍ରୟୋଗ କରି ଅଗ୍ନି ଶାନ୍ତ କଲେ ।

ସଂଜୟଙ୍କ ଠାରୁ ଦ୍ରୋଣଙ୍କ ନିଧନ ସମ୍ବାଦ ଶୁଣି ଧୃତରାଷ୍ଟ୍ର କାନ୍ଦି କାନ୍ଦି କହିଲେ, ''ସଂଜୟ ! ଭୀଷ୍ମଦେବ ଗଲେ, ଦ୍ରୋଣାଚାର୍ଯ୍ୟ ଗଲେ, ଆଉ କାହାବଳରେ ଦୁର୍ଯ୍ୟୋଧନ ଯୁଦ୍ଧ କରୁଛି । ହେ ଭଗବାନ୍ ! କି ଦାରୁଣ ସମ୍ବାଦ ମୋତେ ଶୁଣାଉଛ । ଧର୍ମରାଜ ଶେଷରେ ଏତେ ଅଧର୍ମକଲେ ?'' ସଂଜୟ ଆଶ୍ୱାସନା ଦେଲେ । ମନ କିନ୍ତୁ ବୁଝିଲାନାହିଁ ।

ଦ୍ରୋଣାଚାର୍ଯ୍ୟଙ୍କ ମୃତ୍ୟୁପରେ ଧର୍ମରାଜଙ୍କ ନାଁରେ କଳଙ୍କ ଲେପିତ ହେଲା । ସେ ସତ୍ୟ କହିବାର ଅଭିନୟ କରି ମିଥ୍ୟା ମାଧ୍ୟମରେ ନିଜର ମହାନ ଅସ୍ତ୍ରଗୁରୁଙ୍କୁ ହତ୍ୟାକଲେ । ନିଜ ସୁନାମର ସୁଯୋଗ ନେଇ ସଂହାର ଲୀଳା ସଂଘଟନକଲେ ।

ସତ୍ୟ ଓ ଧର୍ମର ଅବତାର ଭାବରେ ତାଙ୍କ ରଥ ଚକ ମାଟିଠାରୁ ଚାରିଆଙ୍ଗୁଳ ଉଚ୍ଚରେ ସର୍ବଦା ଚାଲେ । ଏହି ଅଧର୍ମ ଓ ଅନ୍ୟାୟ ପାଇଁ, ତାଙ୍କ ରଥଚକ ଭୂମି ସ୍ପର୍ଶ କଲା । ତାଙ୍କ ଅସାଧାରଣତ୍ୱର ଅବସାନ ହେଲା ।

# ।। ଷୋଡ଼ଶ ଦିନ ଯୁଦ୍ଧ ।।

ଆଜି ମହାଭାରତ ଯୁଦ୍ଧର ଷୋଡ଼ଶ ଦିବସ । ଦୁର୍ଯ୍ୟୋଧନ ଅଶ୍ୱତଥାମାଙ୍କୁ କହିଲେ, ''ପିତାମହ ଭୀଷ୍ମ ଚାଲିଗଲେ, ଗୁରୁଦ୍ରୋଣାଚାର୍ଯ୍ୟ ଚିର ବିଦାୟ ନେଲେ । ତୁମେ ହେଉଛ ଉପଯୁକ୍ତ ପିତାଙ୍କର ଉପଯୁକ୍ତ ସନ୍ତାନ । ସେମାନଙ୍କ ବିଦାୟ ପରେ ତୁମେ କୌରବ ପକ୍ଷର ଆଶାଭରସା । ମୋର ଅନୁରୋଧ, ତୁମେ ସେନା ବାହିନୀର ନେତୃତ୍ୱ ନିଅ ।''

''ହେ କୁରୁ ରାଜ ! ଆପଣଙ୍କର ଉଦାରତା ପାଇଁ ମୁଁ କୃତଜ୍ଞ । ମୋ ମତରେ ମହାବୀର କର୍ଣ୍ଣ ସର୍ବପ୍ରଧାନ ସେନାପତି ହେବା ପାଇଁ ଯୋଗ୍ୟ । ତାଙ୍କର ଅମାପ ଶକ୍ତି, ଅନନ୍ୟ ସାମରିକ ଦକ୍ଷତା, କୁରୁ ସିଂହାସନ ପ୍ରତି ଆନୁଗତ୍ୟ ଓ ଆପଣଙ୍କ ପ୍ରତି ଉତ୍ସର୍ଗୀକୃତ ମନୋଭାବର ପଟାନ୍ତର ନାହିଁ । ମୋ ମତରେ

ଆମ ସେନା ବାହିନୀର ଦାୟିତ୍ୱ ବର୍ତ୍ତମାନ ପରିସ୍ଥିତିରେ ସେ ଗ୍ରହଣ କଲେ ସୈନ୍ୟ ମାନଙ୍କର ମନୋବଳ ଦୃଢ଼ ହେବ ।''

ଦୁର୍ଯ୍ୟୋଧନ ଅଶ୍ୱତ୍ଥାମାଙ୍କର ଉଦାର ଦୃଷ୍ଟିଭଙ୍ଗୀରେ ମୁଗ୍ଧ ହୋଇ ଗଲେ । ସେ ଭାବିନଥିଲେ, କର୍ଣ୍ଣଙ୍କ ପ୍ରତି ବିମୁଖ ଅଶ୍ୱତ୍ଥାମା, କର୍ଣ୍ଣଙ୍କ ସୁଗୁଣକୁ ଏତେ ସମ୍ମାନ ଦେବେ ।

ଉଭୟେ ଯାଇ ପହଞ୍ଚିଲେ, କର୍ଣ୍ଣଙ୍କ ପାଖରେ ।

ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ମହା ସେନାପତି ହେବାପାଇଁ ଅନୁରୋଧ କଲେ । କହିଲେ, ''ହେ ବନ୍ଧୁ ! ଆମେ ଦୁଇଜଣ ଅଜେୟ ବୀରଙ୍କୁ ଆମ ପକ୍ଷରେ ପାଇଥିଲେ ନେତୃତ୍ୱ ନେବାପାଇଁ । ସେମାନେ ନିଶ୍ଚିତ ଭାବରେ ଉଲ୍ଲେଖନୀୟ ସଫଳତା ହାସଲ କରିଛନ୍ତି । ସେମାନଙ୍କର ପାଣ୍ଡବମାନଙ୍କ ପ୍ରତି ଥିବା ପ୍ରଚ୍ଛନ୍ନ ଆଶୀର୍ବାଦ, ଚରମ ସଫଳତା ହାସଲ ଦିଗରେ ଅନ୍ତରାୟ ହେଲା । ତୁମେ ନିଶ୍ଚିତ ଭାବରେ ନିରପେକ୍ଷ । ମୁଁ ତୁମକୁ ମହା ସେନାପତି ପଦରେ ଅଭିଷେକ କରୁଛି । ଆଶା, ତୁମେ ମୋର ସ୍ୱପ୍ନ ସାକାର କରିବ ।''

କର୍ଣ୍ଣ ଆନନ୍ଦରେ ନିଜର ସ୍ୱୀକୃତି ଦେଲେ ।

କହିଲେ, ''ହେ ରାଜନ୍ ! ମୋ ସ୍ୱପ୍ନ ସଫଳ କରିବା ପାଇଁ ଆପଣ ସୁଯୋଗ ଦେଇଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି । ମୁଁ ନିଶ୍ଚୟ ଅର୍ଜୁନଙ୍କୁ ରଣଭୂମିରେ ହତ୍ୟା କରିବି । ଏହାହିଁ ମୋ ଜୀବନର ଏକମାତ୍ର ସ୍ୱପ୍ନ । ପର୍ଶୁରାମ ଯେଉଁ ''ବିଜୟ ବାଣ'' ସାହାଯ୍ୟରେ ପୃଥିବୀକୁ ଏକୋଇଶି ବାର ନିକ୍ଷତ୍ରିୟ କରିଥିଲେ, ମୁଁ ସେଇ ମହା ଅସ୍ତ୍ରର ଅଧିକାରୀ । ଅର୍ଜୁନଙ୍କ ଗାଣ୍ଡୀବଧନୁ ଅପେକ୍ଷା ଏହା ଅଧିକ ଶକ୍ତିଶାଳୀ ।

ଦୁର୍ଯ୍ୟୋଧନ ଆନନ୍ଦରେ ବିଭୋର ହୋଇଗଲେ । କର୍ଣ୍ଣ କହିଲେ, '' ଶୁଣନ୍ତୁ ରାଜନ୍ ! ଅର୍ଜୁନଙ୍କ ରଥ ଦିବ୍ୟରଥ । ଏହା କୌଣସି ପରିସ୍ଥିତିରେ ଭାଙ୍ଗିଯିବ ନାହିଁ । ଏହାର ଅଶ୍ୱମାନେ ମନଠାରୁ ଆଉରି ବେଗବାନ୍ । ଯୁଦ୍ଧରେ ଗୋଟିଏ ଅଶ୍ୱ ମରିଗଲେ ମନକୁ ମନ ଆଉ ଗୋଟିଏ ଅଶ୍ୱଆସି ଯୋଡ଼ି ହୋଇଯିବ । ଅଗ୍ନିଦେବତାଙ୍କ ପ୍ରଦତ୍ତ ଏ ରଥ ପାଇଁ ସେ ଯୁଦ୍ଧ ଭୂମିରେ ଅସୁବିଧାର ସମ୍ମୁଖୀନ ହୁଅନ୍ତି ନାହିଁ । ଏ ସୁଯୋଗ ଆମର କାହାରି ପାଖରେ ନାହିଁ । ମୋ ରଥ ଭାଙ୍ଗି ଯିବାପରେ ଆଉ ଗୋଟିଏ ରଥ ମୋତେ ମିଳିବାର ବ୍ୟବସ୍ଥା କରି ଦେଲେ ଯୁଦ୍ଧର ଧାରା ବ୍ୟାହତ ହେବନି । ଯୁଦ୍ଧକ୍ଷେତ୍ରରେ ପ୍ରତ୍ୟେକ ମୁହୂର୍ତ୍ତର ମୂଲ୍ୟ କେତେ ଅଧିକ ଆପଣ ଜାଣନ୍ତି ।''

ଦୁର୍ଯ୍ୟୋଧନ କହିଲେ, '' ରଥ ପାଇଁ ଆଦୌ ବ୍ୟସ୍ତ ହେବାର କିଛି ନାହିଁ । ଯେତେ ରଥ ଆବଶ୍ୟକ ହେବ ସେତେ ଯୋଗାଇ ଦିଆଯିବ । ଆଉ କଣ ଅସୁବିଧା ଅଛି କହନ୍ତୁ ।''

ଅସୁବିଧାତ ଆଦୌ ନାହିଁ । କେବଳ ଯୁଦ୍ଧକୁ ଆଉରି ଗୁଣାତ୍ମକ କରିବା ପାଇଁ ମୁଁ ଏସବୁ କରୁଛି । ଆମର ସଂଖ୍ୟାବଳ କମିଗଲା, ଏବେ ଦକ୍ଷତା ହିଁ ଆମର ପୁଞ୍ଜି । ରଥୀ, ମହାରଥୀ ମାନଙ୍କର ଦକ୍ଷତା ନିର୍ଭର କରେ ନିଜର ସାରଥି ଉପରେ । ଯେ ଯେତେ ଦକ୍ଷ ହୁଅନ୍ତୁନା କାହିଁକି, ସାରଥିଙ୍କ ସମର କୌଶଳ ଉପରେ ତାଙ୍କ ସଫଳତା ନିର୍ଭରକରେ । ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କୁ ସାରଥି କରି, ସେ ଆଶୀର୍ବାଦ ଲାଭକରିଛନ୍ତି । ଆମ ଭିତରେ ବି ଶ୍ରୀକୃଷ୍ଣଙ୍କ ସମକକ୍ଷ ସାରଥି ଅଛନ୍ତି । କୌଣସି ଦିଗରେ ସାରଥିତ୍ୱରେ ସେ କୃଷ୍ଣଙ୍କଠାରୁ କମ୍ ନୁହଁନ୍ତି । ତାଙ୍କୁ ମୋ ରଥର ସାରଥିକଲେ, ସେ ଦିଗଟା ଆମର ସୁଦୃଢ଼ ହୋଇ ଯାଆନ୍ତା ।''

''ତେବେ କୁହନ୍ତୁ ସେ କିଏ । ତାଙ୍କୁ ଅନୁରୋଧ କରିବା ।''

''ମଦ୍ର ଅଧିପତି ଶଲ୍ୟ କେବଳ ଶ୍ରୀକୃଷ୍ଣଙ୍କ ସମକକ୍ଷ ।''

''ଠିକ୍ ଅଛି ବଂଧୁ ! ମୁଁ ଯାଇ ତାଙ୍କୁ ଅନୁରୋଧ କରୁଛି । ତା'ପରେ ଦୁର୍ଯ୍ୟୋଧନ ଶଲ୍ୟଙ୍କ ପାଖକୁ ଯାଇ ଏ ପ୍ରସ୍ତାବ ଉଦ୍‌ଥାପନ କଲେ । ଶୁଣୁ ଶୁଣୁ ଶଲ୍ୟ କ୍ରୋଧ ଜର୍ଜରିତ ହୋଇ କହିଲେ, ''ରାଜନ୍ ! ଆପଣ ଏକି ଅବାସ୍ତବ ଅସମ୍ଭବ ପ୍ରସ୍ତାବ ଦେଉଛନ୍ତି । ମୁଁ ସୂତପୁତ୍ର କର୍ଣ୍ଣଙ୍କର ସାରଥି ହେବି ? ଆପଣ ମୋତେ ଏତେ ଅପମାନ ଦେଉଛନ୍ତି । କେଉଁ ଦୃଷ୍ଟିରୁ କର୍ଣ୍ଣ ମୋଠାରୁ ଉତ୍କର୍ଷ ଯେ ମୁଁ ତାଙ୍କର ସାରଥି ହେବି ବୋଲି କହୁଛନ୍ତି । ମୁଁ ଫେରି ଯାଉଛି ।''

ଦୁର୍ଯ୍ୟୋଧନ କହିଲେ, ''ସର୍ବଶକ୍ତିବାନ୍ ଶ୍ରୀକୃଷ୍ଣତ ପୁଣି ସାମାନ୍ୟ ଅର୍ଜୁନଙ୍କର ସାରଥି ହୋଇଛନ୍ତି । ସାରଥିତ୍ୱରେ ଆପଣ କୃଷ୍ଣଙ୍କ ଠାରୁ ଶ୍ରେଷ୍ଠ । କର୍ଣ୍ଣ ଅସ୍ତ୍ରଜ୍ଞାନରେ ଅର୍ଜୁନଠାରୁ ଶ୍ରେଷ୍ଠ । ଆପଣ ଦୟାକରି ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ମୋ କଥାରେ ସମ୍ମତ ହୁଅନ୍ତୁ । ସାରଥି, ରଥୀଠାରୁ ଶ୍ରେଷ୍ଠ ।''

ଶଲ୍ୟ ନିଜ ପ୍ରଶଂସାରେ ଆନନ୍ଦିତ ହୋଇ କହିଲେ, ''ହେ ରାଜନ୍ ! ମୁଁ ଆପଣଙ୍କର ଏପ୍ରସ୍ତାବ ଗ୍ରହଣ କରୁଛି । ତେବେ ମନେରଖନ୍ତୁ, କର୍ଣ୍ଣ ନିଜର ବିଚାର ବୁଦ୍ଧି ଦ୍ୱାରା ପରିଚାଳିତ ନ ହୋଇ ବରଂ ଭାବପ୍ରବଣତା ଦ୍ୱାରା ଅଧିକ ପରିଚାଳିତ । ଯୁଦ୍ଧ ଭୂମିରେ ଉପସ୍ଥିତ ବିଚାରବୁଦ୍ଧିର ଆବଶ୍ୟକତା ଅଧିକ । ମୁଁ ସେ ପରିସ୍ଥିତିରେ, କଠୋର ବାକ୍ୟ ପ୍ରୟୋଗ କଲେ, ସେ ଯଦି ଅବିଚଳିତ ରହିବେ, ତେବେ ଏ ପଦ ଗ୍ରହଣପାଇଁ ମୋର ଆପତ୍ତି ନାହିଁ ।

କର୍ଣ୍ଣ ସେ ସର୍ତ୍ତ ଗ୍ରହଣ କଲେ ।

କର୍ଣ୍ଣ ନିଜରଥର ଧ୍ୱଜା ଉଡ଼ାଇ କୌରବ ପକ୍ଷର ସୈନ୍ୟମାନଙ୍କୁ ନେଇ କୁରୁକ୍ଷେତ୍ର ରଣଭୂମିରେ ଉପସ୍ଥିତ ହେଲେ । ମହାବୀର କର୍ଣ୍ଣଙ୍କ ଜୟନାଦରେ ଗଗନ ପବନ ପ୍ରକମ୍ପିତ ହେଲା ।

ସୂର୍ଯ୍ୟଙ୍କ ଉଦୟ ଉତ୍ସବ ସହିତ ଆରମ୍ଭ ହେଲା ରଣ ଉତ୍ସବ । ଉଭୟ ପକ୍ଷ ମୁହାଁ ମୁହିଁ । ଭୀମ ଓ ଅଶ୍ୱତ୍‌ଥାମାଙ୍କ ମଧ୍ୟରେ ପ୍ରଥମେ ଯୁଦ୍ଧ ଆରମ୍ଭ ହେଲା । ଅଶ୍ୱତ୍‌ଥାମାଙ୍କ ବାଣ ବିଦ୍ଧ କଲା ଭୀମଙ୍କ କପାଳକୁ । ଭୀମଙ୍କର ଲାଗ ଲାଗ ତିନିଟା ଶର ଅଶ୍ୱତ୍‌ଥାମାଙ୍କ ଶିରରେ ଆଘାତ କଲା ।

ଆଉ ଗୋଟିଏ ପାଖରେ ଦୁଃଶାସନ ଓ ସହଦେବ ସଂଗ୍ରାମରତ । ଅଳ୍ପ ସମୟ ମଧ୍ୟରେ ସହଦେବ ଦୁଃଶାସନଙ୍କୁ ପରାସ୍ତ କଲେ । ଧୃଷ୍ଟଦ୍ୟୁମ୍ନ କୃପାଚାର୍ଯ୍ୟଙ୍କୁ ଆକ୍ରମଣ କରି ତାଙ୍କ ରଥ ଭାଙ୍ଗିଦେଲେ । ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିର ଗୋଟିଏ ପାଖରେ ଭୀଷଣ ଲଢ଼େଇରେ ମାତିଥାନ୍ତି ।

ସଂଶପ୍ତକ ସୈନ୍ୟମାନଙ୍କ ଭିତରେ ଆଉ ବାକି ଯେଉଁମାନେ ଥିଲେ ସେମାନେ ଅର୍ଜୁନଙ୍କୁ ଆହ୍ୱାନ ଦେଲେ ସଂଗ୍ରାମ ପାଇଁ । ଅର୍ଜୁନ ସେମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ରହିଲେ ।

ନକୁଳ କର୍ଣ୍ଣଙ୍କୁ ଆଘାତ କଲେ ।

କର୍ଣ୍ଣ ନକୁଳଙ୍କର ଶରକୁବ୍ୟର୍ଥ କରିଦେଲେ ଥରକୁ ଥର । ଶେଷରେ ନକୁଳଙ୍କ ସାରଥିକୁ ସେ ମାରିଦେଲେ । ନକୁଳ ରଥରୁ ତଳକୁ ଡେଇଁ ପଡ଼ି ଛିଡ଼ା ହୋଇଗଲେ ନିଜର ଖଡ୍ଗଧରି । କର୍ଣ୍ଣ ତାହା ମଧ୍ୟ ଖଣ୍ଡ ଖଣ୍ଡ କରିଦେଲେ ।

ବର୍ତ୍ତମାନ ନିରସ୍ତ୍ର କର୍ଣ୍ଣ, ଅସ୍ତ୍ର ପ୍ରୟୋଗ କରି ତାଙ୍କୁ ବାନ୍ଧି ପକାଇଲେ । ଅସହାୟ ନକୁଳ କିଛି କରିପାରିଲେନାହିଁ । କର୍ଣ୍ଣ କହିଲେ, ''ଉଦ୍ଧତ ଯୁବକ, ମୁଁ ତୁମକୁ ବର୍ତ୍ତମାନ ହତ୍ୟା କରି ପାରିଥାନ୍ତି କିନ୍ତୁ ତୁମକୁ ଜୀବନ ଫେରାଇ ଦେଉଛି । ତୁମେ ମୋର ସମକକ୍ଷ ଯୋଦ୍ଧା ନୁହଁ । ତୁମେ ଆଜି ମୋ ମୁହଁରୁ ଜୀବନ ନେଇ ଫେରିଯାଅ । ତୁମ ଭାଇ ଅର୍ଜୁନଙ୍କୁ ପଠାଅ, ସେ କାଲି ମୋ ସାଥିରେ ଯୁଦ୍ଧ କରିବ ।''

ଆଉ ଗୋଟିଏ ପାଖରେ, ରଣଭୂମିରୁ ପ୍ରତିବାଦକରି ଚାଲି ଯାଇଥିବା ଯୁଯୁତ୍ସୁ, ଫେରିଆସି ଶକୁନିଙ୍କ ପୁତ୍ର ଉଲ୍ଲୁକ ସହିତ ଭୀଷଣ ଯୁଦ୍ଧରେ ବ୍ୟସ୍ତ ଅଛନ୍ତି । ଶ୍ରୁତକର୍ମା ଓ ସତାନିକଙ୍କ ଭିତରେ ଭୀଷଣ ଲଢ଼ାଇ ଚାଲିଛି । ଶକୁନିଙ୍କ ସହିତ ଯୁଦ୍ଧରତ ଅଛନ୍ତି ଶ୍ରୁତସୋମ ।

ଦୁର୍ଯ୍ୟୋଧନ ସଜ୍ଞାଲାଭକରି ଫେରିଛନ୍ତି ପୁଣିଥରେ । ଯୁଧିଷ୍ଠିରଙ୍କ ସହିତ ତାଙ୍କର ପୁଣି ଯୁଦ୍ଧ ହୋଇଛି । ଯୁଧିଷ୍ଠିର ଶରଜର୍ଜରିତ ଶରୀରରେ ପଛେଇଯିବା ସମୟରେ, ଭୀମଆସି ତାଙ୍କୁ ସହାୟତା ଦେଇଛନ୍ତି । ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା । ଉଭୟ ପକ୍ଷରୁ ବହୁସୈନ୍ୟ ହତାହତ ହେଲେ । ମହାବୀର କର୍ଣ୍ଣଙ୍କର ବୀରପଣିଆର ସୂଚନା ବିଶେଷକିଛି ମିଳିଲାନାହିଁ । ଯୁଦ୍ଧ ସମ୍ପୂର୍ଣ୍ଣ ଗତାନୁଗତିକ ।

# ।। ସପ୍ତଦଶ ଦିନ ଯୁଦ୍ଧ ।।

ଆଜି ମହାଭାରତ ଯୁଦ୍ଧର ସପ୍ତଦଶ ଦିବସ । ଏ ଦିବସଟି ବହୁ ଦିଗରୁ ତାତ୍ପର୍ଯ୍ୟପୂର୍ଣ୍ଣ । ମଣିଷ ମନ, ବହୁଆବେଗ, ଅନୁଭୂତି ଚିନ୍ତା ଓ ଚେତନାର ଚାରଣ ଭୂମି । ଆଜି ଦିନର ସଂଘଟନକୁ ଗଭୀର ଭାବରେ ଅନୁଧ୍ୟାନ କଲେ, ମଣିଷ ମନରେ ଅସୁମାର ଅନୁଦ୍‌ଘାଟିତ ଦିଗ ଉଦ୍‌ଘାଟିତ ହୋଇଯିବ । କୁରୁସଭାରେ ମହିୟସୀ ଦ୍ରୌପଦୀଙ୍କ ବସ୍ତ୍ର ହରଣ ସମୟରେ ମଣିଷର ମଣିଷ ପଣିଆର ସଂଜ୍ଞା ବଦଳିଯାଇଥିଲା । ଆଜି କିନ୍ତୁ ପ୍ରତିଶୋଧ ପର୍ବରେ ମଣିଷ ପଣିଆର ସତ୍ତା ଲିଭିଯିବ ।

କର୍ଣ୍ଣଙ୍କ ରଥରେ ଶଲ୍ୟ ଆଜି ସାରଥିତ୍ୱ କରୁଛନ୍ତି । ସେ ନକୁଳ ସହଦେବଙ୍କ ମାମୁ । ମାତା ମାଦ୍ରୀଙ୍କର ଭାଇ । ପରିସ୍ଥିତି ଚାପରେ ସେ ବିରୋଧ ଭୂମିକାରେ ଅଭିନୟ କରୁଛନ୍ତି । ତେବେ ଯୁଧିଷ୍ଠିରଙ୍କୁ ସେ କଥା ଦେଇଥିଲେ, ମହାଭାରତ ଯୁଦ୍ଧରେ କର୍ଣ୍ଣ ଓ ଅର୍ଜୁନଙ୍କ ଭିତରେ ଯୁଦ୍ଧହେଲେ ସେ ଅର୍ଜୁନଙ୍କୁ ସାହାଯ୍ୟ କରିବେ । ରଥରେ ବସିଲା କ୍ଷଣି ଅବଚେତନ ମନ ଭିତରୁ ସେଇ କଥାଟା ବାହାରି ଆସି କାନେ କାନେ ପ୍ରତିଧ୍ୱନିତ ହେଲା । ଦୁର୍ଯ୍ୟୋଧନଙ୍କର ସମସ୍ତ ପ୍ରଶସ୍ତି ଓ ଚାଟୁକଥା କୁଆଡ଼େ ଅପସରି ଗଲା । ତଥାପି ସେ ସଚେତନ, କୌରବ ମାନଙ୍କ ସଫଳତା ପାଇଁ ସାରଥିତ୍ୱ କରୁଛନ୍ତି ।

କର୍ଣ୍ଣ ତାଙ୍କର ବିରାଟ ରଥରେ ସମାସୀନ । ସାରଥିତ୍ୱରେ ଧୂରୀଣ ଶଲ୍ୟ ତାଙ୍କ ରଥର ସାରଥି । ତାଙ୍କ ପାଖରେ ଅନେକ ଦିବ୍ୟ ଅସ୍ତ୍ର ଅଛି । ଅବଶ୍ୟ ବୈଜୟନ୍ତୀ ଶକ୍ତି ଅସ୍ତ୍ର ତାଙ୍କ ହାତରୁ ଖସି ଯାଇଛି, ଯାହାଥିଲା ଅର୍ଜୁନଙ୍କ ପାଇଁ ଅଭିପ୍ରେତ । ସେ ମା' କୁନ୍ତୀଙ୍କୁ କଥା ଦେଇଛନ୍ତି, ଏକା ଅର୍ଜୁନଙ୍କୁ ମାରିବେ । ଅନ୍ୟ ପାଣ୍ଡବମାନଙ୍କୁ ହତ୍ୟା କରିବେ ନାହିଁ । ଏ ପାଖେ ଦୁର୍ଯ୍ୟୋଧନ ପ୍ରଧାନ ସେନାପତିତ୍ୱ ତାଙ୍କୁଅର୍ପଣ କରିଛନ୍ତି, ସେ ନିରପେକ୍ଷବୋଲି । ଅର୍ଜୁନ ଯଦି ନମରିବେ, ପାଣ୍ଡବମାନଙ୍କୁ ଯଦି ନ ମାରିବେ କେବଳ ନିରୀହ ସୈନ୍ୟମାନଙ୍କୁ ମାରିବାକୁ ସେ ରଣଭୂମିକୁ ଯାଉଛନ୍ତି । ମନ ଭିତରେ ଗଭୀର ସଂଘାତ । ତଥାପି ଗୁରୁ ଗର୍ଜନ କରି ସେ ଉଦ୍ଦଣ୍ଡ ରଣ ନିର୍ଘୋଷ ଭିତରେ, ରଣଭୂମିକୁ ଆଗେଇ ଗଲେ ।

ଏ କଣ ??

ଏତେ ଅଶୁଭ ଶକୁନ କାହିଁକି ? ବିନା ମେଘରେ ଅକାଳ ବଜ୍ରପାତ, କଂପିତ ପୃଥିବୀ । ଶୁଣାଯାଉଛି ଭୀଷଣ ଶବ୍ଦ । ଚତୁର୍ଦ୍ଦିଗରେ ଦେଖାଯାଉଛି ଅଗ୍ନିଶିଖା । ସତରେ କଣ ଅଗ୍ନିଶିଖା ନା ଏହା ଭ୍ରମଦୃଷ୍ଟି । ପ୍ରବଳ ବେଗରେ ବାତ୍ୟା ପ୍ରବାହିତ ହେଉଛି । ପଶୁପକ୍ଷୀମାନେ ତ୍ରସ୍ତକାତର ହୋଇ ଏଣେତେଣେ ଧାଉଁଛନ୍ତି । କିଛି ବୁଝି ହେଉନି, ଏ ସବୁ କାହିଁକି ? ଏଇତ, ରଥର ଧ୍ୱଜା ଛିନ୍ନ ହୋଇଗଲାଣି । ରଥଯୁକ୍ତ ଅଶ୍ୱମାନଙ୍କ ଆଖିରୁ ଅଶ୍ରୁଧାର ବହି ଯାଉଛି ।

କର୍ଣ୍ଣ କହିଲେ,''ମହାରାଜା ଶଲ୍ୟ! ଏସବୁ ଶୁଭ ସୂଚନା ବୋଲି ମୁଁ ଭାବୁନି । ଶଲ୍ୟ କହିଲେ, '' ହେ ରାଜନ୍ ! ଆଉ ଶୁଭାଶୁଭ ବିଚାରର ପ୍ରଶ୍ନ କାହିଁକି ଉଠୁଛି । ପ୍ରଳୟଯଜ୍ଞ ସରିବା ଉପରେ । ଯେତେଶୀଘ୍ର ପୂର୍ଣ୍ଣାହୁତି ପଡ଼ିଯିବା ଦରକାର । ଆପଣତ ସେ ଯଜ୍ଞର ପୁରୋଧା । ଅଶୁଭ ଶକୁନକୁ ଏତେ ଭୟ କାହିଁକି । ମନେରଖନ୍ତୁ । ଆପଣ ଏପ୍ରକାର ବିଶ୍ୱବିଜୟୀ ବୀର ଯେ ପ୍ରକୃତିମଧ୍ୟ ଆପଣଙ୍କୁ ସ୍ୱାଗତ ଜଣାଉଛି ।

ଉଭୟଙ୍କ ମଧ୍ୟରେ କିଛି ସମୟ ପାଇଁ ବାକ୍ୟ ବିନିମୟ ହେଲା । ଦୁର୍ଯ୍ୟୋଧନ ଆସି ଉଭୟଙ୍କୁ ଶାନ୍ତକଲେ ।

ପାଣ୍ଡବ ପକ୍ଷର ସୈନ୍ୟମାନଙ୍କ ସମ୍ମୁଖ ଭାଗରେ ଆଜିଅଛି ଅର୍ଜୁନଙ୍କ ରଥ । ଶ୍ରୀକୃଷ୍ଣ ରଣଭୂମିକୁ ରଥ ଚଳାଇଲେ । ରଣ ନିର୍ଘୋଷ ଗଗନ ପବନରେ ତରଙ୍ଗାୟିତ ହେଲା । ଯୁଦ୍ଧ ବାଦ୍ୟ ବାଜି ଉଠିଲା । ପାଞ୍ଚଜନ୍ୟ ଓ ଦେବଦତ୍ତ ଶଙ୍ଖ ସହିତ ଅନେକ ଶୁଭ ଶକୁନ ଦେଖିବାକୁ ମିଳିଲା ।

ପ୍ରଥମେ ଯୁଦ୍ଧ ଆରମ୍ଭ ହେଲା ଯୁଧିଷ୍ଠିର ଓ କର୍ଣ୍ଣଙ୍କ ମଧ୍ୟରେ । ପଞ୍ଚାଳ ସୈନ୍ୟ ମାନେ ଆସି ଯୁଧିଷ୍ଠିରଙ୍କ ସହିତ ସହଯୋଗ କଲେ । କର୍ଣ୍ଣ ପାଞ୍ଚଜଣ ପଞ୍ଚାଳ ରାଜପୁତ୍ରଙ୍କୁ ମାରିଦେଲେ ।ଧୃଷ୍ଟଦ୍ୟୁମ୍ନ ପରାସ୍ତ ହୋଇ ପଳାୟନ କଲେ । କର୍ଣ୍ଣ ଯୁଧିଷ୍ଠିରଙ୍କ ରଥରକ୍ଷକମାନଙ୍କୁ ମାରିଦେଲେ । ତାଙ୍କର ଧନୁ ଓ କବଚ କାଟିଦେଲେ । କବଚ କଟି ଗଲାପରେ ଯୁଧିଷ୍ଠିର ବାଣଆଘାତରେ ରକ୍ତାକ୍ତ ହୋଇଗଲେ । ଯୁଧିଷ୍ଠିରଙ୍କ ରଥ ମଧ୍ୟ ଭାଙ୍ଗିଗଲା । ଅନ୍ୟ ଏକ ରଥରେ ଚଢ଼ି ଯୁଧିଷ୍ଠିର ପଳାଇଗଲେ । ଅବଶ୍ୟ ସେ ତାଙ୍କୁ ବନ୍ଦି କରି ପାରିଥାନ୍ତେ କିଂବା ହତ୍ୟା କରି ଥାନ୍ତେ, କିନ୍ତୁ ତାହା କଲେନି । କଠୋର କଣ୍ଠରେ କହିଲେ, '' ତୁମ ବୀରତା ଜଣାପଡ଼ିଗଲା । ପ୍ରାଣଭୟରେ ରଣଭୂମି ଛାଡ଼ି ପଳାଉଛ । ତୁମକୁ ଆଜି ଛାଡ଼ି ଦେଲି । ତପସ୍ୟା କରିବାକୁ ବଣକୁ ପଳାଅ । ରାଜ୍ୟ ଚଳାଇବା ପାଇଁ ତୁମେ ସଂପୂର୍ଣ୍ଣ ଅଯୋଗ୍ୟ । ମାଇଚିଆ ଅର୍ଜୁନଙ୍କୁ ମୋ ପାଖକୁ ପଠାଅ ।

ଯୁଧିଷ୍ଠିର ଏପରି ଆଘାତ ପ୍ରାପ୍ତ ହୋଇଥିଲେ ଯେ ପୁଣି ଯୁଦ୍ଧ କରିବାକୁ ଶକ୍ତି ସଞ୍ଚୟ କରିପାରିଲେ ନାହିଁ । କର୍ଣ୍ଣଙ୍କର ବାକ୍ୟବାଣ ତାଙ୍କୁ ଆଉରି ବିବ୍ରତ କରି ପକାଇଥିଲା । ଅପମାନ ଜର୍ଜରିତ ଲାଞ୍ଛିତ ଯୁଧିଷ୍ଠିର, ମାନସିକ ଭାରସାମ୍ୟ ହରାଇଲେ ।

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ଭୀମସେନ ଆଗେଇ ଆସି କୌରବ ସୈନ୍ୟମାନଙ୍କର ଅଗ୍ରଗତି ବନ୍ଦ କରି ଦେଲେ । ତାଙ୍କ ପ୍ରଚଣ୍ଡ ଗଦାମାଡ଼ରେ ଆହତ ହେଲେ କର୍ଣ୍ଣ । ସେ ମୂର୍ଚ୍ଛିତ ହୋଇଗଲେ । ଶଲ୍ୟ ତାଙ୍କୁ ଦୂରକୁ ନେଇଗଲେ ଭୀମଙ୍କ ଆକ୍ରମଣରୁ ରକ୍ଷାକରିବାପାଇଁ ।

ଅର୍ଜୁନ ସଂଶପ୍ତକ ସୈନ୍ୟମାନଙ୍କ ସହିତ ଯୁଦ୍ଧ କରୁଥିଲେ । ଯୁଧିଷ୍ଠିରଙ୍କୁ ରଣଭୂମିରେ ନଦେଖି ସନ୍ଦେହରେ ଫେରିଆସିଲେ ଶିବିରକୁ । ତାଙ୍କୁ ଦେଖିଲା କ୍ଷଣି ଅପମାନ ଦଗ୍ଧ ଯୁଧିଷ୍ଠିର କହିଲେ, ''ତୁମେ ପରା ପ୍ରତିଜ୍ଞା କରିଥିଲ କର୍ଣ୍ଣଙ୍କୁ ଯୁଦ୍ଧ ଭୂମିରୁ ବିଦାୟ ଦେବବୋଲି । ଏ ପର୍ଯ୍ୟନ୍ତ ବିଦାୟ ଦେଇ ପାରିଲନି, ଏ ଗାଣ୍ଡୀବଧନୁ ତାହେଲେ ଧରିଛ କାହିଁକି ? ତାହା ଫୋପାଡ଼ି ଦିଅ । ସେ ପାଗଳ ବିଲୁଆଟା, ପାଣ୍ଡବ ଶିବିରରେ ପଶି ଉତ୍ପାତ କରୁଥାଉ ।''

ଉଦ୍‌ଫଣ ସର୍ପ ଆଘାତ ପାଇଲେ ଯେପରି ଗର୍ଜିଉଠେ, ଅର୍ଜୁନ ସେପରି ଗର୍ଜି ଉଠିଲେ, କଣ କହିଲ ? ଖଣ୍ଡା କୋଷ ମୁକ୍ତ କରି ଯୁଧିଷ୍ଠିରଙ୍କ ଆଡ଼କୁ ମାଡ଼ିଗଲେ । ବାଧା ଦେଲେ ଶ୍ରୀକୃଷ୍ଣ । କହିଲେ, ''ତୁମେ କଣ କରିବାକୁ ଯାଉଛ ଅର୍ଜୁନ ! ଧର୍ମରାଜଙ୍କ ଉପରକୁ ଖଡ୍ଗ ଉତ୍ତୋଳନ କରୁଛ ।''

''ହଁ.... ଗାଣ୍ଡୀବଧନୁକୁ ଯେ ଅପମାନିତ କରେ ମୁଁ ତାକୁ ଧ୍ୱଂସ କରିଦେବାକୁ ସଂକଳ୍ପ ବଦ୍ଧ । ମୁଁ କ୍ଷତ୍ରିୟ । ସଂକଳ୍ପରକ୍ଷା କରିବା ମୋର ଧର୍ମ । ମୋତେ ଏଇ ସଂକଳ୍ପ ରକ୍ଷା କରିବାପାଇଁ ସୁଯୋଗ ଦିଅ ସଖା । ମୁଁ ତାଙ୍କୁ ହତ୍ୟା କରିବି ।''

ଯୁଧିଷ୍ଠିର କହିଲେ, ଆପଣବାଧା ଦିଅନ୍ତୁ ନାହିଁ ଅଚ୍ୟୁତ । ଅର୍ଜୁନଙ୍କୁ ସୁଯୋଗ ଦିଅନ୍ତୁ । ସେ ମୋତେ ହତ୍ୟା କରନ୍ତୁ । ମୁଁ ଏଇ ପାପ ଯୁଦ୍ଧରୁ ତ୍ରାହି ପାଇଯାଏ । ମୋ ଉପରେ ଏ ଯୁଦ୍ଧ ଲଦି ଦିଆଯାଇଛି । ଅର୍ଜୁନଙ୍କର ନାଁ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହୁ ଯେ ସେ ଏକ ସାମାନ୍ୟ ସୂତପୁତ୍ରକୁ ଯୁଦ୍ଧରେ ହତ୍ୟାକରି ନପାରି, ନିଜର ବଡ଼ ଭାଇଙ୍କୁ ହତ୍ୟା କରିଛନ୍ତି ।''

ଆଖିରୁ ଧାର ଧାର ଲୁହ ଗଡ଼ି ଆସିଲା ।

ତଥାପି ଅର୍ଜୁନଙ୍କର କ୍ରୋଧ ଶାନ୍ତ ହେଲାନାହିଁ । ସେ କହିଲେ, ''ତୁମେ ଯେତେ ଅପରାଧ କରିଛ, ତମର ମୃତ୍ୟୁ ହେଲେ କ୍ଷତିକଣ । ଅତି ନୀଚ କୋଟିର ଲୋକଙ୍କ ପରି ପଶାଖେଳି ରାଜ୍ୟ ହରାଇଲ । ଏବେ କହୁଛ ଯୁଦ୍ଧ ଲଦି ଦିଆଯାଇଛି । ରାଜବଧୂ ଦ୍ରୌପଦୀ ତମରିପାଇଁ କୁରୁରାଜ ସଭାରେ ଏତେ ଅପମାନିତ ହେଲେ । ତାଙ୍କର ଇଜ୍ଜତ ତମରି ସାମନାରେ ଲୁଣ୍ଠନ କରାଗଲା । ସେତେବେଳେ ତ ବୀରପଣିଆ ଦେଖାଇ ପାରିଲ ନାହିଁ । ଯେ ନିଜ ସ୍ତ୍ରୀ ପ୍ରତି ଅନୁଗତ ଓ ବିଶ୍ୱସ୍ତ ନୁହେଁ ତାଙ୍କୁ ଧର୍ମରାଜ କହିବାର କି ଅର୍ଥ ଅଛି !

ତମରି ଅଯୋଗ୍ୟତା ପାଇଁ, ଏତେ ବୀରଙ୍କର ମା କୁନ୍ତୀ, ଆଜି ଦୁଃସହ ଦୁଃଖ ଯନ୍ତ୍ରଣା ଭୋଗୁଛନ୍ତି ।

ତମରି ସନ୍ତୋଷ ବିଧାନ ପାଇଁ ଭୀମର ସମସ୍ତ ଶକ୍ତି ନିଶେଷ ହୋଇଛି, ନକୁଳ ସହଦେବ କିଙ୍କର ପରି ଖଟିଛନ୍ତି । ତମ ଆଖିରେ ଅର୍ଜୁନ ଆଉ ଅର୍ଜୁନ ହୋଇ ନାହିଁ ।

ଆଜି ମୋ ଅଭିମନ୍ୟୁ ତମରି ଦୁର୍ବୁଦ୍ଧି ପାଇଁ, ତମ ଅବିବେକିତାର ଯୂପକାଠରେ ବଳି ପଡ଼ିଛି । ହେ ଅଚ୍ୟୁତ ଆପଣ କହନ୍ତୁ ପ୍ରଥମେ ସେ ଶାସ୍ତି ପାଇବା ପାଇଁ ଯୋଗ୍ୟକି ନୁହଁନ୍ତି ?''

''ମୁଁ ତ ଶାସ୍ତି ମାଗି ନେଇଛି, ଅର୍ଜୁନ ! ସେଥିପାଇଁ ମୁଁ ବିଚଳିତ ନୁହେଁ । ମୁଁ ଅସ୍ୱୀକାର କରୁନି, ସବୁ ଅନର୍ଥର ମୂଳ ହେଉଛି ଏଇ ପାପିଷ୍ଠ ଯୁଧିଷ୍ଠିର । କିନ୍ତୁ ମନେ ରଖ, ତୁମେ ନିଜକୁ ବହୁତ ବଡ଼ ବୀର ବୋଲି ମନେକର । ମୋ ଉପରକୁତ ଖଣ୍ଡା ଉଞ୍ଚାଉଛ କିନ୍ତୁ କହିଲ, ଏତେ ଦିନର ଯୁଦ୍ଧ ଭିତରେ କେତେଜଣ ରଥୀ ମହାରଥୀଙ୍କୁ ମାରିଛ .ସ୍ତ ? ଜଣକର ନାଁ କୁହ।ଭୀଷ୍ମ ଦୃଶ୍ୟପଟରୁ ଦୂରେଇ ଯାଇଛନ୍ତି କେବଳ ଶିଖଣ୍ଡୀଙ୍କ ପାଇଁ । ଦ୍ରୋଣାଚାର୍ଯ୍ୟ ତୁମ ଦ୍ୱାରା ପରାଜିତ ହୋଇନାହାନ୍ତିକି ତୁମ ପରାକ୍ରମରେ ତାଙ୍କର ମୃତ୍ୟୁ ହୋଇନି । ଧୃଷ୍ଟଦ୍ୟୁମ୍ନ, ଭୀମ ସେ ଗୌରବର ଅଧିକାରୀ । ସୈନ୍ଧବ ରାଜ ଜୟଦ୍ରଥଙ୍କୁ ବଧକରିଛ ବୋଲି ବାହାସ୍ଫୋଟ ମାରୁଛ କିନ୍ତୁ ଶ୍ରୀକୃଷ୍ଣଙ୍କ ସହଯୋଗ ମିଳି ନଥିଲେ, ତାଙ୍କୁ ବଧ କରିପାରିନଥାନ୍ତ । ତୁମେ ଏଡ଼େ ବୀର ଯେ ସାମାନ୍ୟ ସୂତପୁତ୍ରକୁ ହତ୍ୟା କରିପାରୁନ । ତୁମେ କୃଷ୍ଣଙ୍କ କୃପାରୁ ବଡ଼ ହୋଇଛ । ସେ ବଡ଼ ପଣିଆର ମୂଲ୍ୟ କିଛି ନାହିଁ ।

ମୁଁ ମୁଣ୍ଡ ପାତିଛି । ଯେତେଶୀଘ୍ର ପାର ଅସ୍ତ୍ରପ୍ରୟୋଗ କର । ଏତେ ଛଳନା ଅପମାନ ଓ ପାପାବର୍ତ୍ତଭିତରେ ମୁଁ ବଞ୍ଚିରହିବାକୁ ଚାହେଁନି । ଯେଉଁଠାରେ ଭାଇ ଭାଇକୁ ଗ୍ରହଣ କରିବାକୁ ବିମୁଖ, ସେ କ୍ଷେତ୍ରରେ ଆଉ ବଞ୍ଚିବାର କି ସ୍ୱାଦଅଛି ।''

ଶ୍ରୀକୃଷ୍ଣ ଅର୍ଜୁନଙ୍କ ପିଠି ଥାପୁଡ଼େଇ ଦେଲେ । ଅର୍ଜୁନ ଯୁଧିଷ୍ଠିରଙ୍କ ପଦସ୍ପର୍ଶ କରି ପ୍ରଣାମ କଲେ । କହିଲେ, ''ମୋତେ କ୍ଷମାଦିଅନ୍ତୁ ରାଜନ୍ ! ମୁଁ କ୍ରୋଧା ବେଶ ମଧ୍ୟରେ ଅମାର୍ଜନୀୟ ଅପରାଧ କରି ଦେଇଛି । ଧର୍ମ, ଶାନ୍ତି, ପ୍ରୀତି ମୈତ୍ରୀର ଅବତାର ଧର୍ମରାଜ, ମୋତେ କ୍ଷମା ଦିଅନ୍ତୁ ।''

ଯୁଧିଷ୍ଠିର ଲୋତକାପ୍ଳୁତ ନୟନରେ ଅର୍ଜୁନଙ୍କୁ ଉଠାଇ ନିଜ ଛାତିରେ ଆଉଜାଇ ଦେଲେ । ପିଠି ଥାପୁଡ଼େଇ କହିଲେ, ''ମୋତେ ମଧ୍ୟ କ୍ଷମା ଦେବଅର୍ଜୁନ । ମୁଁ ଶରୀର ହେଲେ ତୁମେ ମୋର ହୃଦୟ । ମୋ ହୃଦୟକୁ ମୁଁ ଆଘାତ ଦେଇ କେତେ ଯନ୍ତ୍ରଣା ମୋ ଭିତରେ ଭୋଗ କରୁଛି, ତୁମେ ନିଶ୍ଚୟ ଅନୁଭବ କରୁଥିବ । ଆଶୀର୍ବାଦ ଦେଉଛି, ତୁମେ ବିଜୟୀହୁଅ ।

ଅର୍ଜୁନ ଶ୍ରୀକୃଷ୍ଣ ଯୁଦ୍ଧଭୂମିକୁ ଫେରିଆସିଲେ ।

ଏଥି ଭିତରେ ଯୁଦ୍ଧ ଭୂମିରେ ଭୀମ, କର୍ଣ୍ଣଙ୍କ ପୁତ୍ର ସତ୍ୟସେନଙ୍କୁ ମାରି ଦେଲେଣି । କର୍ଣ୍ଣ ଭାର୍ଗବାସ୍ତ୍ର ପ୍ରୟୋଗ କରି ଅନେକ ପାଣ୍ଡବ ସୈନ୍ୟଙ୍କୁ ପାଉଁଶରେ ପରିଣତ କରି ଦେଇଛନ୍ତି । ପ୍ରଳୟର ଧ୍ୱଂସସ୍ତୂପ ଆକାଶକୁ ଉଠିଛି ।

ଅର୍ଜୁନ ଦେଖିଲେ ବର୍ତ୍ତମାନ ଭୀମ ଦୁଃଶାସନଙ୍କ ଭିତରେ ଭୟଙ୍କର ସଂଗ୍ରାମ ଚାଲିଛି । ଧୃଷ୍ଟଦ୍ୟୁମ୍ନ ଓ ସାତ୍ୟକି କର୍ଣ୍ଣଙ୍କ ଅଗ୍ରଗତିକୁ ଅଟକାଇ ଦେଇଛନ୍ତି ।

ଭୀମ ଦୁଃଶାସନଙ୍କ ଗଦାଯୁଦ୍ଧ ଅତୀବ ଭୟଙ୍କର । ଭୀମ ତାଙ୍କ ରଥକୁ ଭାଙ୍ଗିଦେଲେଣି, ସାରଥି ଓ ଅଶ୍ୱମାନଙ୍କୁ ମାରି ଦେଲେଣି । ଦୁଃଶାସନ ମଧ୍ୟ ଭୀମଙ୍କ ରଥର ଅଶ୍ୱ ମାନଙ୍କୁ ହତ୍ୟାକଲେ ।

ଗଦାଯୁଦ୍ଧରେ ପ୍ରବୀଣ ଭୀମ, ଦୁଃଶାସନଙ୍କୁ ମୂର୍ଚ୍ଛିତ କରି ତଳେ ଗଡ଼ାଇଦେଲେ । ଏବଂ ତାଙ୍କ ଛାତି ଉପରେ ବସି ଦକ୍ଷିଣ ବାହୁକାଟି ଫୋପାଡ଼ି ଦେଲେ । ଗର୍ଜନ କରି କହିଲେ, ତୁ ତୋର ଏଇହାତରେ ପରା ଦ୍ରୌପଦୀଙ୍କ କେଶ ଆକର୍ଷଣ କରିଥିଲୁ । ବର୍ତ୍ତମାନ ତା'ର ପୁରସ୍କାର ପାଇଯା । ଯେଉଁମାନେ ସେଦିନ ତୋତେ ଅଭୟ ଦେଇଥିଲେ ସେମାନଙ୍କୁ ଡାକ । ତୋତେ ରକ୍ଷାକରନ୍ତୁ । ଏହା କହି ଦୁଃଶାସନର ବକ୍ଷରେ ଏକ ଶାଣିତ ଅସ୍ତ୍ର ବିଦ୍ଧକଲେ । ପୀଚ୍ ପୀଚ୍ ରକ୍ତ ଉପରକୁ ଉଠିଲା ।

ବଡ଼ ଭୟଙ୍କର ସେ ଦୃଶ୍ୟ । ପାଣ୍ଡବପକ୍ଷର ସୈନ୍ୟମାନେ ମଧ୍ୟ ରକ୍ତମୁଖା ଭୀମଙ୍କୁ ଦେଖି ଡରିଗଲେ । କୌରବ ସୈନ୍ୟମାନେ ଛତ୍ରଭଙ୍ଗ ଦେଲେ । ଭୀମ, ଅନେକ କୁରୁ ରାଜ ପୁତ୍ରଙ୍କୁ ମାରିଦେଲେ ।

ବର୍ତ୍ତମାନ ଯୁଦ୍ଧ ଭୂମିରେ ମହାସେନାପତି କର୍ଣ୍ଣ ନିଃସଙ୍ଗ ।

ସଂଜୟ ଏତିକି କହୁ କହୁ ଧୃତରାଷ୍ଟ୍ର ଚିତ୍କାର କରି ଉଠିଲେ, ''ମୋ ଦୁଃ..ଶା..ସ..ନ. ଚାଲିଗଲା । ମୂର୍ଚ୍ଛିତ ହୋଇତଳେ ପଡ଼ିଗଲେ କୁରୁରାଜ । ସଂଜୟ ରାଜବୈଦ୍ୟଙ୍କୁ ଖବର ଦେଲେ । କିଛି ସମୟପରେ ତାଙ୍କ ଚେତା ଫେରିଆସିଲା । କାନ୍ଦି କାନ୍ଦି କହିଲେ, ''ମୁଁ ଭାବିଥିଲି ଅର୍ଜୁନ ବୋଧହୁଏ ଯୁଧିଷ୍ଠିରଙ୍କ ମୁଣ୍ଡକାଟି ଦେଇ ମହାଭାରତ ଯୁଦ୍ଧର ଅବସାନ କରିବେ । କିନ୍ତୁ ସବୁ ଓଲଟ ପାଲଟ ହୋଇଗଲା । କେହି ଜଣେବି ସେ ଭୀମଟାକୁ କାଟି ଦେଇ ପାରୁନାହାନ୍ତି । ସଂଜୟ ଆଶ୍ୱାସନା ଦେଲେ ରାଜା ଧୃତରାଷ୍ଟ୍ରଙ୍କୁ ।

''ରାଜନ୍ ! ଶୁଣନ୍ତୁ, ଏଇତ ପୁଣି ଯୁଦ୍ଧ ଆରମ୍ଭ ହୋଇଗଲାଣି କର୍ଣ୍ଣ ଏବଂ ଅର୍ଜୁନଙ୍କ ଭିତରେ । ଆଗେଇ ଆସିଛନ୍ତି କର୍ଣ୍ଣଙ୍କ ପୁତ୍ର ବୃଷସେନ । ଅର୍ଜୁନ ତାଙ୍କୁ ଦେଖିଲାକ୍ଷଣି ତାଙ୍କର ମନେପଡ଼ିଲା ପ୍ରାଣପ୍ରିୟ ଅଭିମନ୍ୟୁ କଥା । କର୍ଣ୍ଣନିର୍ବିଚାର ଭାବରେ ନିରସ୍ତ୍ର ଅଭିମନ୍ୟୁଙ୍କୁ ଅନ୍ୟମାନଙ୍କ ସହିତ ହତ୍ୟା କରିଥିଲେ । ସେ କ୍ରୋଧ ସମ୍ବରଣ କରି ନପାରି ବୃଷସେନ ଉପରକୁ ଛାଡ଼ିଲେ ଏକ ଅବ୍ୟର୍ଥ ଶର । ଆଖି ପିଛୁଳାକେ ଭୂଇଁରେ ଲୋଟି ପଡ଼ିଲେ ବୃଷସେନ ।

ପୁତ୍ରଶୋକରେ ଅଧୀର ହୋଇ କର୍ଣ୍ଣ ଅର୍ଜୁନଙ୍କ ଉପରକୁ ମାଡ଼ି ଆସିଲେ । ପୃଥିବୀ, ଆକାଶ ଥରି ଉଠିଲା । କି ଭୟଙ୍କର ଯୁଦ୍ଧ । ଅସୁମାର ସୈନ୍ୟ ମୃତାହତ ହେଲେ । ରଣଭୂମି ରକ୍ତ ସ୍ରୋତରେ କର୍ଦ୍ଦମାକ୍ତ ହେଲା । ଅର୍ଜୁନଙ୍କ ରଥ ଆଗକୁ ବିନାବାଧାରେ ମାଡ଼ି ଚାଲିଥାଏ । ହଠାତ୍ କର୍ଣ୍ଣଙ୍କର ରଥଚକ କାଦୁଅ ଭିତରେ ଅଟକି ଗଲା । ତାଙ୍କର ଗତିରୋଧ ହୋଇଗଲା । ସେ ବ୍ୟସ୍ତ ବିବ୍ରତ ହୋଇ ଉଠିଲେ ।

ଅର୍ଜୁନଙ୍କର ଲୋମହର୍ଷଣକାରୀ ଯୁଦ୍ଧ ଦେଖି ଦୁର୍ଯ୍ୟୋଧନ ଭୟାର୍ତ୍ତ ହୋଇ ଉଠିଥିଲେ । ଦ୍ରୋଣ ପୁତ୍ର ଅଶ୍ୱତ୍ଥାମା ମଧ୍ୟ କମ୍ ଭୟଭୀତ ନୁହଁନ୍ତି । ସେ ଗମ୍ଭୀର କଣ୍ଠରେ କହିଲେ, ''ରାଜନ୍ ! ଆପଣତ ଦେଖୁଛନ୍ତି କିପରି ସଂହାର ଲୀଳା ଚାଲିଛି । ଏହାକୁ ଆଉ ରୋକାଯାଇ ପାରିବ ନାହିଁ । ଆମପାଇଁ ଭାଗ୍ୟ ପ୍ରତିକୂଳ । ମୋର ବିନୀତ ଅନୁରୋଧ, ଆପଣ ପାଣ୍ଡବମାନଙ୍କ ସହିତ ସନ୍ଧି ସ୍ଥାପନ କରନ୍ତୁ । ତାଙ୍କୁ ତାଙ୍କ ରାଜ୍ୟ ଫେରାଇ ଦିଅନ୍ତୁ । ନହେଲେ କେହି ରକ୍ଷାପାଇବେ ନାହିଁ । ସବୁ ଧ୍ୱଂସ ହୋଇଯିବ । ଶେଷ ମୁହୂର୍ତ୍ତ ହେଲେବି, କୁରୁକୁଳ ରକ୍ଷା କରନ୍ତୁ ।''

ଦୁର୍ଯ୍ୟୋଧନ ଗମ୍ଭୀର ହୋଇ ସବୁ ଶୁଣିଲେ । ବ୍ୟଥିତ କଣ୍ଠରେ କହିଲେ, ''ସେ ସମୟଟା ଅତିକ୍ରାନ୍ତ ହୋଇଯାଇଛି ବୀର, ଅତିକ୍ରାନ୍ତ ହୋଇ ଯାଇଛି । ବର୍ତ୍ତମାନ ସନ୍ଧି ପ୍ରସ୍ତାବ ଦେବା କାପୁରୁଷତାର ଚିହ୍ନ । ଯାହା କଲେବି, ସେ କାଳପୁରୁଷ ଭୀମଟା କଣ ମୋତେ ଛାଡ଼ିଦେବ । ନା ଅର୍ଜୁନ କର୍ଣ୍ଣଙ୍କୁ ଛାଡ଼ିଦେବ । ସନ୍ଧିକରି ପ୍ରାଣରକ୍ଷା କଲେ, ମୃତ୍ୟୁସହିତ ସନ୍ଧିକରି ବଞ୍ଚିବା ପରି ହେବ । ଯୁଦ୍ଧ ସବୁ ସମସ୍ୟାର ସମାଧାନ କରୁ ।

ବହୁଚେଷ୍ଟା କରି ମଧ୍ୟ କର୍ଣ୍ଣ ଉପାୟହୀନ । ସେ କାତର ହୋଇ ଅର୍ଜୁନଙ୍କୁ କହିଲେ, ''ଧନଞ୍ଜୟ ! ତୁମେ ମହାନ୍‌ବୀର ଓ ସତ୍ୟ ଧର୍ମର ଉପାସକ । ଧର୍ମ ଯୁଦ୍ଧରେ ଧର୍ମକୁ ରକ୍ଷାକର । ମୋ ଉପରକୁ ବର୍ତ୍ତମାନ ଅସ୍ତ୍ରନିକ୍ଷେପ କରନାହିଁ । ମୁଁ ରଥଚକ କାଦୁଅରୁ ଉଠାଇଦିଏ । ତା'ପରେ ଯୁଦ୍ଧ କରିବା । ତୁମେ ଦିବ୍ୟାସ୍ତ୍ର ଧରି ରଥ ଉପରେ ଅଛ, ମୁଁ ନିରସ୍ତ୍ର ହୋଇ ତଳେ ଛିଡ଼ା ହୋଇଛି । ମୋର କବଚକୁଣ୍ଡଳ ଛିଣ୍ଡି ଯାଇଛି । ମୋତେ ଆକ୍ରମଣ କରିବା ଉଚିତ ହେବନି ।''

ଶ୍ରୀକୃଷ୍ଣ କହିଲେ, '' ହେ ସୂତ ପୁତ୍ର ! ତୁମକୁ ଅଶେଷ ଧନ୍ୟବାଦ । ଯାହା ହେଉ ଏତେଦିନ ପରେ ମନରେ ଚେତା ପଶିଲା । ଏହା ହେଉଛି ଧର୍ମର ଭାଗ୍ୟ ଯେ ତୁମେ ତାକୁ ଅସହାୟ ଅବସ୍ଥାରେ ମନେପକାଇଛ । ଆଚ୍ଛା, ତୁମର ଅତୀତ ପାପକର୍ମ ଗୁଡ଼ାକ ଏବେ ମନେ ପଡ଼ୁଛିକି ନାହିଁ । ଯେଉଁମାନଙ୍କୁ ଏପରି ଅସହାୟ ଅବସ୍ଥାରେ ମାରିଛ ସେମାନଙ୍କ ପାଇଁ ତ ଧର୍ମକୁ ଟିକିଏ ମନେ ପକାଇ ନଥିଲ । ପାଣ୍ଡବମାନଙ୍କୁ ତଳିତଳାନ୍ତ କରିବାପାଇଁ, ଯେଉଁ ଧର୍ମ ହୀନ ପାପିମାନେ ଚକ୍ରାନ୍ତକରି ଏ ଅବସ୍ଥାକୁ ଆଣି ପାରିଲେ, ସେମାନେ କେବେ ଧର୍ମକୁ ମନେ ପକାଇଛନ୍ତି ? ତେବେ ଆଜି କାହିଁକି ? ଧର୍ମ ଉଚ୍ଚାରଣ କରିବାକୁ ତମକୁ ଅଧିକାର ଦେଲାକିଏ ? ତୁମେ ଦୟାର ପାତ୍ର ନୁହଁ ।

କର୍ଣ୍ଣ କାତର ନୟନରେ ଶ୍ରୀକୃଷ୍ଣଙ୍କୁ ଚାହିଁ ରହିଥିଲେ । ଆଖିରେ ପଲକ ପଡୁନଥିଲା । ଅବଶ୍ୟ କହି ହେବନି, ତାହା ତାଙ୍କର ଭୟାବସ୍ଥାର କାତରତା, କି ଅନ୍ତିମ ମୁହୂର୍ତ୍ତରେ ଅନନ୍ତ ଶକ୍ତିର ଆଧାର ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ତାଙ୍କ ପଦରେ ତଦ୍ ଲୀନତା ।

କର୍ଣ୍ଣ ସତେ ଯେମିତି ନିଶ୍ଚଳ, ନିର୍ବିକଳ୍ପ । ତାଙ୍କର ଏଥିପାଇଁ କିଛି ଉତ୍ତର ନାହିଁ । ସେ ଲଜ୍ଜାରେ ମଥାନତ କରି ଛିଡ଼ା ହୋଇ ରହିଲେ । ଅର୍ଜୁନ କ୍ରୋଧାବେଗରେ ତାଙ୍କୁ ଚାହିଁଥାନ୍ତି । ଇଙ୍ଗିତ ମିଳିଲେ ସେ ଆହୁତି ଦେବେ ଅଗ୍ନି ଦେବଙ୍କୁ ।

''ଅର୍ଜୁନ ! ତୁମେ ବି ତାଙ୍କ କଥାରେ ସ୍ତବ୍ଧ ହୋଇଗଲ ! ଦିବ୍ୟାସ୍ତ୍ର ପ୍ରୟୋଗକର । ଗୋଟାଏ ବିଷାକ୍ତ ପାପକୀଟର ବିନାଶ ପାଇଁ ଏତେ ଦ୍ୱିଧା କାହିଁକି ?''

କର୍ଣ୍ଣ ରଥ ଉପରକୁ ଚଢ଼ିଯାଇ କିଛି ସମୟ ପାଇଁ ଅର୍ଜୁନଙ୍କ ସହିତ ଯୁଦ୍ଧ କଲେ । ଅର୍ଜୁନ ତାଙ୍କ ଉପରକୁ ''ଅଞ୍ଜଳିକ'' ନାମକ ଏକ ମହା ଶକ୍ତିଶାଳୀ ଅସ୍ତ୍ର ପ୍ରୟୋଗ କଲେ । କର୍ଣ୍ଣ ଶେଷ ମୁହୂର୍ତ୍ତରେ ଦିବ୍ୟାସ୍ତ୍ର ପ୍ରୟୋଗ ମନ୍ତ୍ର ଭୁଲିଗଲେ । ତାଙ୍କ ମସ୍ତକ ଛିନ୍ନ ହୋଇ ଭୂତଳଶାୟୀ ହେଲା । ତାଙ୍କ ଶରୀରରୁ ଏକ ଦିବ୍ୟ ଜ୍ୟୋତି ବାହାରି ଯାଇ ସୂର୍ଯ୍ୟମଣ୍ଡଳରେ ଲୀନ ହୋଇଗଲା ।

ଶ୍ରୀକୃଷ୍ଣ ଓ ଅର୍ଜୁନ ଶଙ୍ଖନାଦ କଲେ । ଯୁଦ୍ଧ ବନ୍ଦହେଲା । ପାଣ୍ଡବ ମାନଙ୍କ ଭୟରେ ଦୁର୍ଯ୍ୟୋଧନ ସରସ୍ୱତୀ ନଦୀ କୂଳର ବିଶ୍ରାମ ଶିବିରକୁ ଚାଲିଆସିଲେ, ନିରାପଦରେ ରାତ୍ରି ଯାପନ ପାଇଁ । କର୍ଣ୍ଣଙ୍କ ମୃତ୍ୟୁ ପରେ ଦୁର୍ଯ୍ୟୋଧନ ଦୁଃଖାବେଗରେ ଭାଙ୍ଗି ପଡ଼ିଲେ । ସେ ନିଜ ଶିବିରରେ ଗମ୍ଭୀର ଓ ଚିନ୍ତାକୁଳିତ ହୋଇ ବସିଥାନ୍ତି । ମନୋରଞ୍ଜନ କାର୍ଯ୍ୟକ୍ରମ ବନ୍ଦ କରି ଦିଆଯାଇଥାଏ । ସମସ୍ତେ ପିନ୍ଧିଥାନ୍ତି ଶୋକ ପୋଷାକ । ଦୁର୍ଯ୍ୟୋଧନ ଏକାବସିଥାନ୍ତି । ଦୃଶ୍ୟପଟରେ ନାଚୁଥାଏ ଦୁଃଶାସନଙ୍କ ବକ୍ଷ ବିଦାରଣ ର ବିଭତ୍ସ ଦୃଶ୍ୟ । ପରମ ବନ୍ଧୁ କର୍ଣ୍ଣଙ୍କର କରୁଣ ବିଦାୟ ।

ପ୍ରହରୀ ଆସି ନୀରବତା ଭଙ୍ଗ କଲା ।

''ରାଜନ୍ ! ଆଚାର୍ଯ୍ୟ କୃପ, ଅଶ୍ୱତ୍ଥାମା, ମଦ୍ରରାଜ ଶଲ୍ୟ ଓ କୃତବର୍ମା ପ୍ରଭୃତି ଆପଣଙ୍କୁ ସାକ୍ଷାତ କରିବାକୁ ଆସିଛନ୍ତି ।''

''ଆସନ୍ତୁ ।''

''ଅଭିବାଦନ ଓ ପ୍ରତି ଅଭିବାଦନ ପରେ, ଶଲ୍ୟ କହିଲେ, ''ହେ କୁରୁ ରାଜ ! ଆପଣଙ୍କ ଦୁଃଖରେ ଆମେ ସମସ୍ତେ ସମଦୁଃଖୀ ! ଆପଣ ଧୈର୍ଯ୍ୟ ହରାନ୍ତୁ ନାହଁ । ଆପଣଙ୍କ ମନୋବଳ ହିଁ ଆମ୍ଭମାନଙ୍କୁ ଶକ୍ତିଦାନ କରିବ । ଭୀମଙ୍କର ଆଚରଣ ଏତେ ଗର୍ହିତ ହେବ ବୋଲି କିଏ ବା ଭାବିଥିଲା । କର୍ଣ୍ଣଙ୍କର ମୃତ୍ୟୁ ହେଲେ ମଧ୍ୟ ତାଙ୍କର ନୈତିକତାର ବିଜୟ ହୋଇଛି । ଭାଗ୍ୟର ପ୍ରତିକୂଳତା ପାଇଁ ତାଙ୍କୁ ମୃତ୍ୟୁ ଭୋଗିବାକୁ ପଡ଼ିଲା ।''

କୃପାଚାର୍ଯ୍ୟ କହିଲେ, '' ମଦ୍ରରାଜ ଠିକ୍ କହୁଛନ୍ତି ରାଜନ୍ ! ଭାଗ୍ୟ ପାଣ୍ଡବମାନଙ୍କ ପାଇଁ ଅନୁକୂଳ । ସେମାନେ ଦୈବୀ ଶକ୍ତିର ଅଧିକାରୀ । ଆମର ସମସ୍ତ ସାମରିକ ପ୍ରଚେଷ୍ଟା ଅତି ଉଚ୍ଚକୋଟିର ହୋଇମଧ୍ୟ ସଫଳତା ମିଳିଲା ନାହିଁ । କାହାରି ଆଶୀର୍ବାଦ ଓ ଅତିରିକ୍ତ ସୁଯୋଗକୁ ଅତିକ୍ରମ କରିବା ସମ୍ଭବ ନୁହେଁ । ମୋର ଶେଷ ଅନୁରୋଧ, ଆପଣ ଏ ପରିସ୍ଥିତିରେ ପାଣ୍ଡବ ମାନଙ୍କ ସହିତ, ଶାନ୍ତିଚୁକ୍ତି କରନ୍ତୁ । ଯୁଦ୍ଧରୁ ଆମକୁ କିଛି ଲାଭ ମିଳିଲା ନାହିଁ, ତେବେ ବଞ୍ଚିରହିବାର ଆଶୀର୍ବାଦ ଭିତରେ ଅନାଥ ପ୍ରଜାକୁଳର କିଛି ଲାଭ ହେଲେ ହେଉ । ଯନ୍ତ୍ରଣା ଦଗ୍ଧ ବୃଦ୍ଧ ପିତାମାତାଙ୍କର ସେବା କରିବାର ସୁଯୋଗ ଅନ୍ତତଃ ମିଳିବ ।''

ଦୁର୍ଯ୍ୟୋଧନ କିଛି ସମୟ ଗମ୍ଭୀର ହୋଇ ରହିବାପରେ କହିଲେ, ଗୁରଦେବ ! ଆପଣଙ୍କ ଶୁଭେଚ୍ଛା ପାଇଁ ମୁଁ ଧନ୍ୟବାଦ ଦେଉଛି । ଜୀବନରେ ଆଉ କେଉଁ ଶାନ୍ତି ମିଳିବ ଯେ ଶାନ୍ତି ଚୁକ୍ତି କରାଯିବ । କାହା ପାଇଁ ମଧ୍ୟ କରାଯିବ ଶାନ୍ତିଚୁକ୍ତି କିଏ ଆଉ ଅଛି ? ଯେଉଁ ଭୀମ ମୋ ଭାଇର ବକ୍ଷବିଦାରଣ କରିଛି ରାକ୍ଷସପରି, ସେମାନଙ୍କର ହୃଦୟ ଅଛି ଯେ ମୁଁ ଶାନ୍ତି ଭିକ୍ଷାକରିବି । ସେ କାଳଗ୍ରହ ମୋତେ କ'ଣ କେବେ ଶାନ୍ତି ଦେବ ! ମୋର ଏତେ ଭାଇକଣ ଆଉ ଫେରି ଆସିବେ । ମୁଁ ମୃତ୍ୟୁ ମାଗି ନେଇଛି ଗୁରୁଦେବ ! ସେ ମୋର ପଛେ ପଛେ ଚାଲିଛି । କାଲି ବୋଧହୁଏ ହେବ କାଳଗ୍ରାସ ଦିବସ । ସେଥିପାଇଁ ଆମକୁ ପ୍ରସ୍ତୁତ ହେବାକୁ ପଡ଼ିବ । ମହା ମହିମ ମଦ୍ରରାଜ ଶଲ୍ୟଙ୍କୁ ମୁଁ ମହାସେନାପତି ପଦରେ ବରଣ କରୁଛି । ସେ ତାହା ଗ୍ରହଣ କରନ୍ତୁ ।'' ଶଲ୍ୟ କୌରବ ସୈନ୍ୟମାନଙ୍କର ସେନାପତିତ୍ୱ ଗ୍ରହଣକଲେ ।

———————— ଛବିଶ

# ।। ଅଷ୍ଟାଦଶ ଦିନର ଯୁଦ୍ଧ ।।

ଆଜି ପ୍ରଳୟ ଯଜ୍ଞର ପୂର୍ଣ୍ଣାହୁତି ଦିବସ । ଆର୍ଯ୍ୟାବର୍ତ୍ତର ସମସ୍ତ କ୍ଷତ୍ରିୟ ବୀର ଓ ରାଜା ମହାରାଜା ମାନଙ୍କର ଜୀବନ ଆହୁତି ପଡ଼ିଛି । କୁରୁ ପାଣ୍ଡବ ବଂଶର ସର୍ବନାଶ ହୋଇଛି ସେଇ ସର୍ବଗ୍ରାସୀ ଆହୁତି ଭିତରେ । ଆହୁତି ପଡ଼ିଛି ଶକୁନିଙ୍କ କପଟତା, କର୍ଣ୍ଣଙ୍କ ଅବିମୃଶ୍ୟକାରିତା, ଦୁର୍ଯ୍ୟୋଧନଙ୍କ ଗର୍ବ, ଅଭିମାନ, ଔଦ୍ଧତ୍ୟ, ଅହଂକାର ଓ ଦୁଃଶାସନଙ୍କ ଦୁରାଚାରିତା ତଥା ଅବିବେକତା ।

ଧର୍ମ ରାଜାଙ୍କର ଧାର୍ମିକତାର ଆହୁତି ପଡ଼ିଛି । ପଡ଼ିଛି ମଧ୍ୟ ଭୀମ ସେନଙ୍କର ଭୀମତ୍ୱର ଆହୁତି । ଦ୍ୱୀତିକୃଷ୍ଣ ଅର୍ଜୁନ ଧର୍ମରକ୍ଷା ନାମରେ ଧର୍ମକୁ, ନୀତି ନିୟମ ଓ କର୍ତ୍ତବ୍ୟକୁ ଆହୁତି ଦେଇଛନ୍ତି । ନକୁଳ ସହଦେବ ବାକି ପଡ଼ିନାହାନ୍ତି । ନକୁଳ ନିଜର ନିଜତ୍ୱ ଓ ସହଦେବ ତାଙ୍କର ସମତାକୁ ଆହୁତି ପକାଇଛନ୍ତି । ସର୍ବୋପରି ଧୃତରାଷ୍ଟ୍ର । ସେ ଆହୁତି ପକାଇଛନ୍ତି ତାଙ୍କର ଅନ୍ତର୍ଦୃଷ୍ଟିକୁ । ଶ୍ରୀକୃଷ୍ଣ ଏ ଯଜ୍ଞର ଯାଜକ । ସେ ନିଜ ଦେବତ୍ୱର ଆହୁତି ପକାଇ ସର୍ବସାଧାରଣ ପରି ଗାନ୍ଧାରିଙ୍କ ଅଭିଶାପ ବରିନେଲେ । ତାଙ୍କ କପଟ କୃତିର ଫଳଶ୍ରୁତି ହେଲା ଯଦୁବଂଶ ନାଶ ।

ସୁର୍ଯ୍ୟୋଦୟ ପୂର୍ବରୁ ଦୁର୍ଯ୍ୟୋଧନ ସରସ୍ୱତୀ ନଦୀରେ ସ୍ନାନାଦି ସମାପନ କରି କୁରୁକ୍ଷେତ୍ର ରଣ ପ୍ରାଙ୍ଗଣକୁ ଅଭିଯାନ ଆରମ୍ଭ କଲେ । ପାଣ୍ଡବମାନେ ବିଜୟ ଦର୍ପରେ ଉନ୍ମାଦିତ ହୋଇ ରଣବାଦ୍ୟରେ ଆକାଶ ଫଟାଇ ଦେଲେ । ଦୁଃଖ ଜର୍ଜରିତ ରାଜାଧୃତରାଷ୍ଟ୍ର ନିସ୍ପୃହ ଓ ନିର୍ବାକ ହୋଇ ବସିଥାନ୍ତି ।

ସଂଜୟ କହିଲେ, ''ରାଜନ୍ ! ଯୁଦ୍ଧ ଆରମ୍ଭ ହୋଇଗଲା । ଶଲ୍ୟଙ୍କର ଦୃଷ୍ଟି ଭୀମ ଓ ଅର୍ଜୁନଙ୍କ ଉପରେ । ଆଜିର ପରିବର୍ତ୍ତିତ ପରିସ୍ଥିତିରେ ଦୁର୍ଯ୍ୟୋଧନଙ୍କୁ ପ୍ରାଣଦେଇ ସାହାଯ୍ୟ କରିବାକୁ ହେବ । ତାଙ୍କ ସମର୍ପଣର ସମ୍ମାନ ସେ ରକ୍ଷାକରିବେ । ପାଣ୍ଡବମାନଙ୍କର ରକ୍ଷାକର୍ତ୍ତା ହିସାବରେ ଶ୍ରୀକୃଷ୍ଣ ତ ଅଛନ୍ତି । ମୋତେ ସେଇ ଦାୟିତ୍ୱ ଅର୍ପଣ କରାଯାଇଛି । ଯୁଦ୍ଧାରମ୍ଭ ପୂର୍ବରୁ ମୁଁ ଯୁଧିଷ୍ଠିରଙ୍କୁ ଯେଉଁ ପ୍ରତିଶ୍ରୁତି ଭାବପ୍ରବଣତା ଭିତରେ ଦେଇଛି ତାହା ମୋ କର୍ତ୍ତବ୍ୟ ସମ୍ପାଦନରେ ପ୍ରତିବନ୍ଧକ ନହେଉ । ପାଣ୍ଡବମାନଙ୍କ ବିରୁଦ୍ଧରେ ମଦ୍ରରାଜଙ୍କ ହାତ, ଧନୁର ଗୁଣକୁ ଟାଣିବା ବେଳେ, ମନ ସେମାନଙ୍କ ସପକ୍ଷରେ ସ୍ନେହ ରଜ୍ଜୁକୁ ଟାଣୁଥାଏ ।

ମାନସିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ଭିତରେ ଶଲ୍ୟ ସଂଗ୍ରାମ ଆରମ୍ଭ କଲେ ।

ଯୁଦ୍ଧାରମ୍ଭର ପ୍ରଥମ ପାହାଚରେ ଭୀମ ବାକିଥିବା କୁରୁରାଜ ପୁତ୍ରମାନଙ୍କୁ ଆକ୍ରମଣ କରି ମାରିଦେଲେ । ଶେଷକୁ ରହିଲେ ଦୁର୍ଯ୍ୟୋଧନ ।

ସହଦେବ ଶକୁନିଙ୍କ ପୁତ୍ର ଉଲୁକକୁ କଠୋର ସଂଗ୍ରାମ ଭିତରେ ହତ୍ୟା କଲେ । ନକୁଳ କର୍ଣ୍ଣଙ୍କର ପୁତ୍ର ଚିତ୍ରସେନ, ସତ୍ୟସେନ ଓ ସୁଶର୍ମାଙ୍କୁ ହତ୍ୟାକଲେ । ମହା ଧନୁର୍ଦ୍ଧର ଶଲ୍ୟ ଏବଂ ଯୁଧିଷ୍ଠିରଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇ ଯାଇଛି । ମହାରଥୀ ଦ୍ରୁମସେନ ଶଲ୍ୟଙ୍କୁ ସାହାଯ୍ୟ କରୁଛନ୍ତି । ଅଳ୍ପ ସମୟପରେ ସେ ଧର୍ମରାଜଙ୍କ ଶରମାଡ଼ରେ ପ୍ରାଣତ୍ୟାଗ କଲେ ।

ଠିକ୍ ଏତିକି ବେଳେ ଦେଖାଗଲା ସହଦେବ ଆକ୍ରମଣ କରିଛନ୍ତି, ଶକୁନିଙ୍କୁ । ତାଙ୍କୁ ସହାୟତା ଦେବାକୁ ଯେଉଁ ସୈନ୍ୟମାନେ ଥିଲେ ସେମାନେ ଶେଷ ହୋଇଗଲେଣି । ଶକୁନି, ଏକା ତାଙ୍କର ପୂର୍ବାଭିପ୍ରେତ ହତ୍ୟାକାରୀ ସହିତ ଯୁଦ୍ଧ ଭୂମିରେ ଲଢୁଛନ୍ତି । ବିକଳ ହୋଇ ଚାହିଁଛନ୍ତି ଦୁର୍ଯ୍ୟୋଧନଙ୍କୁ । ସେ ସେତେବେଳେ ଥିଲେ ଦୃଶ୍ୟ ପଟର ବହୁ ଦୂରରେ । ତାଙ୍କର ସନ୍ତାନମାନେ ସମସ୍ତେ ପ୍ରାଣବଳି ଦେଲେଣି । ଶକୁନି ଭାବୁଛନ୍ତି ନିଜ ଅପକର୍ମର ଅନ୍ତିମ ଦୃଶ୍ୟ ଦେଖିବାର ସୁଯୋଗ ବୋଧହୁଏ ଏଇଠାରେ ଶେଷ ହୋଇଯିବ, ସେ ଶେଷ ଯବନିକା ଟାଣିବେ । ଚତୁର୍ଦ୍ଦିଗ ଶୂନ୍ୟ ଶୂନ୍ୟ, ମହାଶୂନ୍ୟ । ସହଦେବଙ୍କର ଗୋଟାଏ ନିର୍ଘାତ ଶରଆସି ଶକୁନିଙ୍କର ବକ୍ଷ ଭେଦ କଲା । ସେ ସେଇଠାରେ ଟଳିପଡ଼ିଲେ ।

ସହଦେବ ଅଟ୍ଟହାସ ତୋଳିଲେ, ହାଃ.....ହାଃ....ହାଃ.... ପୁରସ୍କାର ମିଳିଗଲା । ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ଶକୁନି କ୍ଷୀଣ କଣ୍ଠରେ କହିଲେ, ''ଯାହାଙ୍କଠାରୁ ଏ ପୁରସ୍କାରଟା ଶକୁନି ଆଶା କରିଥିଲା ତାଙ୍କଠାରୁ ମିଳିଲାନାହିଁ, ସହଦେବ । ଅବଶୋଷ ନେଇ ବିଦାୟ ନେଉଛି । ମୃତ୍ୟୁ ମିଳିଲା, କିନ୍ତୁ ମହାମୃତ୍ୟୁ ମିଳିଲାନାହିଁ ।

ଯୁଧିଷ୍ଠିର ଏ ସମ୍ବାଦ ଶୁଣି ଆଉରି ବୀରଦର୍ପରେ ଆକ୍ରମଣ କଲେ ଶଲ୍ୟଙ୍କୁ । ଶଲ୍ୟ କିନ୍ତୁ ତାଙ୍କ ରଥ ଭାଙ୍ଗିଦେଲେ । ଭୀମ ଉଠାଇ ନେଲେ ନିଜ ରଥ ଉପରକୁ । ଭୀମ ଓ ଶଲ୍ୟଙ୍କ ମଧ୍ୟରେ ଭୀଷଣ ଲଢ଼େଇ ଚାଲିଲା । ଏତିକିବେଳେ ଯୁଧିଷ୍ଠିରଙ୍କୁ ଆଉ ଏକ ନୂଆରଥ ଓ ବହୁ ମାରାତ୍ମକ ଅସ୍ତ୍ର ମିଳିଗଲା । ଯୁଧିଷ୍ଠିର ପୁଣି ବାଣ ବର୍ଷଣ କଲେ । ଏକ ଶକ୍ତି ଅସ୍ତ୍ର ପ୍ରୟୋଗ କଲେ ଶଲ୍ୟଙ୍କ ଉପରକୁ । ଶଲ୍ୟ ସେଇଠାରେ ରଥ ଉପରୁ ଟଳି ପଡ଼ି, ଶେଷ ନିଶ୍ୱାସ ତ୍ୟାଗକଲେ ।

କୌରବ ସୈନ୍ୟମାନଙ୍କର ଅନ୍ତିମ ସେନାପତି ଶଲ୍ୟ, ପ୍ରଭାତର ପ୍ରଥମପ୍ରହର ଶେଷ ନହେଉଣୁ, ମହାଭୂମିରୁ ମହାଯାତ୍ରା ଆରମ୍ଭ କଲେ । ପାଣ୍ଡବ ମାନେ ଆନନ୍ଦରେ ମାମୁଙ୍କମୃତ ଶରୀର ଚାରିପାଖରେ ପରିକ୍ରମା କରୁଥିବା ସମୟରେ ଦୁର୍ଯ୍ୟୋଧନ ରଥରୁ ଓହ୍ଲାଇ ଗଦା ହସ୍ତରେ ଚାଲି ଚାଲି ପଳାଇଗଲେ ରଣଭୂମିରୁ ଆତ୍ମଗୋପନ କରିବା ପାଇଁ ।

ଏଇ ସମୟରେ ଅତର୍କିତ ଭାବରେ ମଦ୍ରରାଜାଙ୍କ ସାନଭାଇ ଓ ତାଙ୍କର କେତେକ ଅନୁଗତ ସୈନ୍ୟ ଆସି ଆକ୍ରମଣ କଲେ ପାଣ୍ଡବ ମାନଙ୍କୁ । ଅନେକ ସମୟଧରି ଯୁଦ୍ଧ ହେଲା । ଶେଷରେ ଧୃଷ୍ଟଦ୍ୟୁମ୍ନ ତାଙ୍କୁ ହତ୍ୟା କଲେ ।

ପ୍ରାୟ ମଧ୍ୟାହ୍ନ ସମୟ ପର୍ଯ୍ୟନ୍ତ ରଣ ଭୂମିରେ କାଁ ଭାଁ କେତେକ ସ୍ଥାନରେ ଯୁଦ୍ଧ ଚାଲିଥିଲା । ତାପରେ ଆପେ ଆପେ ବନ୍ଦ ହୋଇଗଲା । କୌରବ ପକ୍ଷରୁ ମୋଟ ଚାରିଜଣ ବଞ୍ଚିଛନ୍ତି, ଦୁର୍ଯ୍ୟୋଧନ, କୃପାଚାର୍ଯ୍ୟ, କୃତବର୍ମା ଅଶ୍ୱତ୍ଥାମା । ପାଣ୍ଡବମାନେ ଅନ୍ୟମାନଙ୍କୁ ଆକ୍ରମଣ ନ କରି ବର୍ତ୍ତମାନ ଖୋଜୁଛନ୍ତି ଦୁର୍ଯ୍ୟୋଧନଙ୍କୁ । ସେ ହେବେ ପ୍ରଳୟ ଯଜ୍ଞର ଶେଷ ଆହୁତି ।

ଧୃତରାଷ୍ଟ୍ରଙ୍କ ଦାସୀପୁତ୍ର ଯୁଯୁତ୍ସୁ ପ୍ରଥମରୁ ପାଣ୍ଡବମାନଙ୍କ ସପକ୍ଷରେ ଯୁଦ୍ଧକରୁଥିଲେ । ସେ କେବଳ ବଞ୍ଚିଥିଲା । ଯୁଧିଷ୍ଠିର କହିଲେ, ''ଯୁଯୁତ୍ସୁ ! ତୁମର ନୀତି ସମ୍ମତ କର୍ତ୍ତବ୍ୟ ନିଷ୍ଠା ପାଇଁ ମୁଁ ଧନ୍ୟବାଦ ଦେଉଛି । କୌରବ ଶିବିରରେ ଥିବା ଅନ୍ତପୁରର ମହିଳାମାନଙ୍କୁ ନେଇ ତୁମେ ହସ୍ତିନା ଫେରିଯାଅ ।

ଦୁର୍ଯ୍ୟୋଧନଙ୍କ ସାରା ଶରୀର କ୍ଷତାକ୍ତ । କ୍ଷତ ଜ୍ୱାଳାରେ ସେ ଅସ୍ଥିର । ସେ ଚାହାନ୍ତି ସାମାନ୍ୟ ବିଶ୍ରାମ, ଜ୍ୱାଳା ଉପଶମ ପାଇଁ । ଭୀମର ଭୋକିଲା ଆଖିଚାରିଆଡ଼େ ଖୋଜୁଛି । ଆତ୍ମଗୋପନ କରିବା

ପାଇଁ ସ୍ଥାନଟିକିଏ ନାହିଁ । ସେ ପ୍ରାଣ ବିକଳରେ ଦ୍ୱୈପାୟନ ହ୍ରଦ ଆଡ଼କୁ ମୁହାଁଇଲେ । ଜଳ ସ୍ତମ୍ଭନ ବିଦ୍ୟା ବଳରେ ସେ ପାଣି ଭିତରେ ଆଶ୍ରୟ ନେଲେ । ତାଙ୍କର ଆତ୍ମଗୋପନର ଦୃଶ୍ୟ ଦେଖିଥିଲେ କେତେକ ବନଚାରୀ ବ୍ୟାଧ । ଦୁର୍ଯ୍ୟୋଧନଙ୍କର ଧାରଣା, କେହି ତାଙ୍କୁ ଦେଖିନାହାନ୍ତି ।

ଦୁର୍ଯ୍ୟୋଧନ ଜଳ ଶଯ୍ୟାରେ ବସି ଆଖିଆଗରେ ଦେଖୁଛନ୍ତି ଅତୀତର ସମସ୍ତ ଦୃଶ୍ୟ । ନିଷ୍କଳଙ୍କ ରାଜ୍ୟ ଭୋଗ କରିବାକୁ ଆଶାରଖି, ଶେଷରେ ନିଜ ରାଜ୍ୟରେ ବସିବାକୁ ତାଙ୍କୁ ଥାନଟିକିଏ ମିଳିଲା ନାହିଁ । ପାଣି ତଳେ ଲୁଚିବାକୁ ପଡ଼ିଲା । ପାଣ୍ଡବମାନଙ୍କୁ ଛୁଞ୍ଚି ମୂନରେ ମୂନେ ଜାଗା ଦେବାକୁ ମନାକରି, ତାଙ୍କୁ ଏବେ ସେତିକି ମଧ୍ୟ ମିଳିଲା ନାହିଁ । ତାଙ୍କ ପରାଜୟ ପାଇଁ ପୌରୁଷ ନୁହେଁ ଭାଗ୍ୟ ଦାୟୀ ।

ଶେଷ ମୁହୂର୍ତ୍ତରେ ମଧ୍ୟ ଭାଗ୍ୟ ଦାଉ ସାଧିଲା । ମା ଗାନ୍ଧାରୀଙ୍କ ସମ୍ବାଦ ପାଇ, ରାତି ଅର୍ଦ୍ଧରେ ସବୁରି ଦୃଷ୍ଟି ଏଡ଼ାଇ ତାଙ୍କୁ ସାକ୍ଷାତ କରିବାକୁ ଗଲାବେଳେ, ପୁଣି ସେଇ କୃଷ୍ଣଙ୍କ ହାବୁଡ଼ରେ ପଡ଼ିବାକୁ ହେଲା । ସେତ ଏତେ କପଟୀ, ମୁଁ ତାଙ୍କୁ କାହିଁକି ସବୁ ସତକଥା କହିଲି ? ମା ଅନ୍ଧପୁଟୁଳୀ ଖୋଲି, ମୋତେ ନିରାଭରଣ ଶରୀରରେ ଦେଖିଦେଇଥିଲେ ମୋ ଶରୀର ବଜ୍ର ହୋଇଯାଇଥାନ୍ତା । ମୋର କେହି କିଛି କରି ପାରି ନଥାନ୍ତେ ।''

କପଟୀ କୃଷ୍ଣ କଥାଟା ଶୁଣୁ ଶୁଣୁ କହିଲେ, ''ତୁମେ ତରୁଣ ଯୁବକ । ମା ତୁମକୁ ପିଲାରୁବି ଲଙ୍ଗଳା ରୂପରେ ଦେଖିନାହାନ୍ତି । ଏବେ ଯୁବାବସ୍ଥାରେ ନଗ୍ନ ହୋଇ ମା'ଙ୍କୁ ସାକ୍ଷାତ କରିବା ଆଦୌ ସମୀଚୀନ ନୁହେଁ । ବରଂ କାଛା ଟିଏ ପିନ୍ଧି ଲଜ୍ଜା ନିବାରଣ କରି ସାକ୍ଷାତ କର । ଏହା କଣ କପଟୀ କୃଷ୍ଣଙ୍କର ଆନ୍ତରିକତାର ଅଭୟବାଣୀ ଥିଲା ? ମୁଁ ବୋକା, ତାଙ୍କ କଥା ମାନି କାଛା ପିନ୍ଧି ଗଲି କାହିଁକି ? ମନ୍ତ୍ର ଦୃଷ୍ଟିରେ, ମା ମୋ ସାରା ଶରୀରକୁ ବଜ୍ରକଠିନ କରି ଦେଲେ । ଆବୃତ ଅଂଶ ଦୁର୍ବଳ ହୋଇ ରହିଗଲା । କପଟ ଯୁଦ୍ଧରେ କୃଷ୍ଣଙ୍କୁ ଜିତିବ କିଏ । ଏବେ ମଧ୍ୟ ମୋର ଶ୍ରଦ୍ଧା ଭକ୍ତି ଓ ସମ୍ମାନ ଭିତରେବି, ସେ କୁଟନୀତି ଖେଳିଲେ । ମୁଁ ବୋକା ବୁଝିପାରିଲିନି, ମା'ଙ୍କର ମନ୍ତ୍ର ଦୃଷ୍ଟିର ଆବରଣ ତଳେ ମୋର ନଗ୍ନତା ଲୁଚି ଯାଇଥାନ୍ତା, ମାତୃଦୃଷ୍ଟି ପାଖରେ ତା ସନ୍ତାନର ନଗ୍ନତା ନଥାଏ । ହାଃ..ଭାଗ୍ୟ ! ବଜ୍ର କଠିନ ଶରୀର ଭିତରେ ଉରୁ ଭାଗ ମୋର ଦୁର୍ବଳ ରହିଗଲା ।'

ପାଣ୍ଡବମାନେ ଦୁର୍ଯ୍ୟୋଧନଙ୍କୁ ଖୋଜି ଖୋଜି ଅଥୟ ହେଲେଣି । କୌଣସି ଠାରୁ ସଂଧାନ ପାଇଲେ ନାହିଁ । ତନ୍ନ ତନ୍ନ କରି ଆଖ ପାଖ ସବୁ ଖୋଜି ସାରିଲେଣି । ଯେ ସଂଧାନ ଦେଇପାରିବ, ପୁରସ୍କୃତ ହେବ ବୋଲି ଘୋଷଣା କରାଗଲା । ସେଇ ବ୍ୟାଧଠାରୁ ସଂଧାନ ମିଳିଗଲା । ପାଣ୍ଡବମାନେ ଯାଇ ପହଞ୍ଚିଲେ ଦ୍ୱୈପାୟନ ହ୍ରଦକୂଳରେ । ସାଙ୍ଗରେ ଅଛନ୍ତି ଶ୍ରୀକୃଷ୍ଣ ।

ଯୁଧିଷ୍ଠିର ଦନ୍ଧ ଉପରେ ଛିଡ଼ା ହେଇ ଡାକରା ଦେଲେ । 'ସୁଯୋଧନ ! ଯୁଦ୍ଧ ଭୂମିରେ ନିଜର ଭାଇ ବନ୍ଧୁ ଆତ୍ମୀୟ ସ୍ୱଜନ ସମସ୍ତଙ୍କ ପ୍ରାଣନାଶ କରି ନିଜେ ପ୍ରାଣଭୟରେ ପାଣି ଭିତରେ ଲୁଚିଲେ କଣ ରକ୍ଷାପାଇଯିବ ? ବାହାରି ଆସି, ଯୁଦ୍ଧକର । ତମ ବୀର ଦର୍ପ, ଅଭିମାନ କୁଆଡ଼େ ଗଲା ? ତୁମକୁ ଟିକିଏ ଲଜ୍ଜା ଲାଗୁନି କାପୁରୁଷ ! ଚୋର ପରି ଲୁଚିଛ ।''

ଦୁର୍ଯ୍ୟୋଧନ ନମ୍ର କଣ୍ଠରେ କହିଲେ ''ଧର୍ମପୁତ୍ର ! ମୁଁ ପ୍ରାଣ ଭୟରେ ଏଠାରେ ଲୁଚିନାହିଁ । କେବଳ କିଛି ସମୟ ପାଇଁ ବିଶ୍ରାମ ନେଇଛି । ମୁଁତ ସମସ୍ତଙ୍କୁ ହରାଇଛି ଆଉ କାହାପାଇଁ ଯୁଦ୍ଧ କରିବି । ଆପଣଙ୍କୁ ମଁ ମୋର ରାଜ ମୁକୁଟ ଅର୍ପଣ କରୁଛି । ଆପଣ ସମଗ୍ର କୁରୁ ସାମ୍ରାଜ୍ୟର ଅଧିଶ୍ୱର ହୋଇ ରାଜ୍ୟ ଭୋଗ କରନ୍ତୁ ।''

ଯୁଧିଷ୍ଠିର ହସି ହସି କହିଲେ, '' ଚମତ୍କାର ସୁଯୋଧନ ! ଚମତ୍କାର । ଏ ବୁଦ୍ଧିଟା ସେତେବେଳେ ଉଦୟ ହୋଇଥିଲେ ଆଜି ତୁମକୁ ଏତେ ଦୁଃଖ ଭୋଗିବାକୁ ପଡ଼ିନଥାନ୍ତା । ପାଞ୍ଚଭାଇ ଅତିକମ୍‌ରେ ପାଞ୍ଚ ଖଣ୍ଡ ଗାଁ ମାଗିଥିଲୁ, ସେତିକି ମଧ୍ୟ ଦେଇଥିଲେ ଏ ମହାପ୍ରଳୟ ଘୋଟିନଥାନ୍ତା । ଯେ ଛୁଞ୍ଚି ମୁନରେ ମୁନେ ଜାଗା ବିନାଯୁଦ୍ଧରେ ଦେଉନଥିଲା, ସେ ଆଜି ସାରା ରାଜ୍ୟ ଦେଇ ଦେଉଛି, ମହାଦାନୀ ପାଲଟି । ରାଜ୍ୟ ଆଉ ତୁମର ନୁହେଁ ...ଆମର... ଅମର । ତଥାପି ମୁଁ କହୁଛି, ଯଦି ପାଣିରୁ ବାହାରି ଆସି ଆମ ଭିତରୁ ଯେକୌଣସି ଭାଇ ସହିତ ଯୁଦ୍ଧ କରି ଜିତିଯିବ, ତେବେ ତୁମକୁ ଅଧାରାଜ୍ୟ ନିଶ୍ଚୟ ଫେରାଇ ଦେବି ।''

କ୍ରୋଧରେ ଆଖି ଲାଲ ହୋଇଗଲା ଶ୍ରୀକୃଷ୍ଣଙ୍କର । ଯାହାଙ୍କୁ ସେ ଅତ୍ୟନ୍ତ ସମ୍ମାନ ଦେଉଥିଲେ, ତାଙ୍କୁ ନାଲିଆଖି ଦେଖାଇ ଭର୍ତ୍ସନା କଲେ । ଅର୍ଜୁନ, ଭୀମ, ସମସ୍ତେ ଭିତରେ ଭିତରେ ବିଗିଡ଼ିଗଲେ । ଧର୍ମରାଜଙ୍କର ଏଇ ବାଚାଳତା ପାଇଁ ଏତେ ଦୁଃଖ ଭୋଗିବାକୁ ପଡ଼ିଲା, ତଥାପି ତାଙ୍କର ଚେତାପଶିନି !

ଦୁର୍ଯ୍ୟୋଧନ କହିଲେ, ''ଧର୍ମରାଜ ! ମୋ ପାଖରେ କୌଣସି ଅସ୍ତ୍ର ଶସ୍ତ୍ର ନାହିଁ, ରଥନାହିଁ କି ସାରଥି ନାହିଁ । ମୋ ଶରୀରରେ କବଚ ନାହିଁ । ମୋର ମଧ୍ୟ ସୈନ୍ୟବଳ ନାହିଁ, କାହାକୁ ନେଇ, କାହା ସାଥିରେ ଆଉ ଯୁଦ୍ଧ କରିବି ।''

ବ୍ୟସ୍ତ ହେବାର କିଛି ନାହିଁ, ସୁଯୋଧନ । ମୁଁ ସବୁ ଦେବାକୁ ପ୍ରସ୍ତୁତ ଅଟେ । ତୁମେ ଆସି ଅସ୍ତ୍ର, ରଥ, ଅଶ୍ୱ, କବଚ, କୁଣ୍ଡଳ ସବୁ ନିଜ ହାତରେ ବାଛି ନିଅ । ପାଣି ଭିତରୁ ଚାଲିଆସି ଯୁଦ୍ଧ କର ।

ଏତିକିବେଳେ ଭୀମ ରଡ଼ି ଛାଡ଼ି ଆହ୍ୱାନ ଦେଲେ । ଆରେ ପଳାତକ କୁକୁର । ଲାଙ୍ଗୁଡ଼ ଗୁଞ୍ଜି ପାଣି ଭିତରେ ଲୁଚିଲେ କଣ ରକ୍ଷା ପାଇଯିବୁ । ଆସିବୁନା...ମୁଁ ପଶିବି ?? ପାଣି ଭିତରୁ ବାହରି ଆସିଲେ ଦୁର୍ଯ୍ୟୋଧନ ।

ଯୁଧିଷ୍ଠିରଙ୍କୁ ଲକ୍ଷ୍ୟକରି ସେ କହିଲେ, ''ମୁଁ ଏ ଆହ୍ୱାନ ଗ୍ରହଣ କରୁଛି । ମୋ ହାତରେ ମୋର ଗଦା ଅଛି, ମୁଁ କୌଣସି ଅସ୍ତ୍ର ଶସ୍ତ୍ର ଆଉ ଆବଶ୍ୟକ କରେନାହିଁ ।''

ଠିକ୍ ଏତିକି ବେଳେଆସି ପହଞ୍ଚିଗଲେ ବଳରାମ । ତାଙ୍କ ତୀର୍ଥାଟନ ସରିଯାଇଛି । ସମସ୍ତେ ଅଭିବାଦନ ଜଣାଇଲେ । ଏକା ଜଣାଇଲେ ନାହିଁ ଦୁର୍ଯ୍ୟୋଧନ । ସେ ତାଙ୍କର ଗଦାଯୁଦ୍ଧ ଶିକ୍ଷାର ଗୁରୁ । ଭୀମଙ୍କର ମଧ୍ୟ । ଦୁର୍ଯ୍ୟୋଧନଙ୍କର ଅଭିମାନ, ଶ୍ରୀକୃଷ୍ଣ ପାଣ୍ଡବମାନଙ୍କର ପକ୍ଷ ସମର୍ଥନ କରି ସେମାନଙ୍କୁ ସହାୟତା ଦେଲେ । ବଳରାମ କୌରବ ପକ୍ଷ ସମର୍ଥନ ନକରି ତୀର୍ଥ କରିବାକୁ ଚାଲିଗଲେ । ତେବେ ଆଜି ଏଇ ସର୍ବନାଶ ବେଳରେ ଆସିଛନ୍ତି କାହିଁକି ?

ବଳରାମ ବାଧା ଦେଲେ ଭୀମ ସେନଙ୍କୁ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ନ ହେବା ପାଇଁ କେତେ ବୁଝାଇଲେ । ଶ୍ରୀକୃଷ୍ଣଙ୍କୁ ମଧ୍ୟ ଉପଦେଶ ଦେଲେ ଭୀମଙ୍କୁ ନିବର୍ତ୍ତାଇବା ପାଇଁ । ଶ୍ରୀକୃଷ୍ଣ ଭୀମଙ୍କର ପଦକ୍ଷେପକୁ ସମର୍ଥନ କରି ବଳରାମଙ୍କୁ ପ୍ରତ୍ୟେକ ଘଟଣା ଜଣାଇଲେ । ବଳରାମ ଅଶାନ୍ତ ମନନେଇ ସେଠାରୁ ଚାଲିଆସିଲେ ।

ଭୀମ ଓ ଦୁର୍ଯ୍ୟୋଧନଙ୍କ ଭିତରେ ଭୟଙ୍କର ଗଦାଯୁଦ୍ଧ ଆରମ୍ଭ ହେଲା । ଦୁର୍ଯ୍ୟୋଧନ ଗଦାଯୁଦ୍ଧରେ ଧୁରୀଣ, ଅଧିକ ଦକ୍ଷ ଭୀମଙ୍କ ଠାରୁ । ଭୀମ କିନ୍ତୁ ଅଧିକ ଶକ୍ତିଶାଳୀ ଦୁର୍ଯ୍ୟୋଧନଙ୍କଠାରୁ । ଦୁମୁନ୍ଦ ସଂଘର୍ଷ ଭିତରେ କେହି କାହାକୁ ପରାଜିତ କରିବା ସମ୍ଭବ ହେଉନି । ଠିକ୍ ଏତିକିବେଳେ ଭୀମ ଚାହିଁଲେ

ଅର୍ଜୁନଙ୍କ ମୁହଁକୁ । ଅର୍ଜୁନ ଶ୍ରୀକୃଷ୍ଣଙ୍କ ଠାରୁ ଇଙ୍ଗିତ ପାଇ ସବୁରି ଅଲକ୍ଷ୍ୟରେ ନିଜର ଊରୁ ପ୍ରଦେଶରେ ଅବଲୀଳା କ୍ରମେ ଆଘାତ କଲେ । ଭୀମ ଇଙ୍ଗିତର ଅର୍ଥ ବୁଝିଗଲେ । ସେ ଭୀଷଣ ଭାବରେ ଗଦା ପ୍ରହାର କଲେ ଦୁର୍ଯ୍ୟୋଧନଙ୍କ ଊରୁ ପ୍ରଦେଶରେ । ସଙ୍ଗେ ସଙ୍ଗେ ଦୁର୍ଯ୍ୟୋଧନଙ୍କ ଊରୁ ଦ୍ୱୟ ଭାଙ୍ଗି କଲା । ସେ ତଳେ ପଡ଼ିଗଲେ ରକ୍ତାପ୍ଲୁତ ହୋଇ ।

ଧୃତରାଷ୍ଟ୍ର ଏ ସମ୍ବାଦ ଶୁଣି ମୂର୍ଚ୍ଛିତ ହୋଇଗଲେ । ଗାନ୍ଧାରୀ ସଂଜ୍ଞାହୀନା । ସେମାନଙ୍କ ସଂସାର ସରିଗଲା । ଯୁଦ୍ଧର ଧାରାବିବରଣୀ ବନ୍ଦ ହୋଇଗଲା ।

ଯୁଧିଷ୍ଠିର ଅଟକାଇ ଦେଲେ ଭୀମଙ୍କୁ ଆଉ ଆକ୍ରମଣ ନକରିବା ପାଇଁ । ଅଶ୍ରୁପ୍ଲୁତ ନୟନରେ ଦୁର୍ଯ୍ୟୋଧନଙ୍କ ପାଖରେ ଯାଇ ବସିଲେ । ଠିକ୍ ଏତିକିବେଳେ ଭୀମ ଗୋଟାଏ ଗୋଇଠା ପକାଇଲେ ଦୁର୍ଯ୍ୟୋଧନଙ୍କ ମୁଣ୍ଡ ଉପରେ । ଅର୍ଜୁନ, ଯୁଧିଷ୍ଠିର, ଶ୍ରୀକୃଷ୍ଣ ସମସ୍ତେ କ୍ରୁଦ୍ଧ । ଏପ୍ରକାର ଅନୁଚିତ ବ୍ୟବହାର କାହାକୁ ଭଲ ଲାଗିଲାନାହିଁ ।

ଦୁର୍ଯ୍ୟୋଧନ କମ୍ପିତ କଣ୍ଠରେ କହିଲେ, ''ଧର୍ମରାଜ ! ଭୀମକୁ ବାରଣ କରନ୍ତୁ ନାହିଁ । ଭୀମକୁ ସୁଯୋଗ ଦିଅନ୍ତୁ, ଆଉ ଅଳ୍ପ ସମୟପରେ ମୋ ପ୍ରାଣବାୟୁ ଉଡ଼ିଯିବ । ଅନ୍ତତଃ ଏତିକି ସମୟ ସେ ମୋ ମୁଣ୍ଡରେ ଗୋଇଠାମାରି ଟିକିଏ ଶାନ୍ତି ପାଉ । ତା' ମନର ଅବଶୋଷ ମେଣ୍ଟିଯାଉ । ଅଳ୍ପ ସମୟପରେ ଏ ମୁଣ୍ଡକୁ କୁଆ, ଚିଲ, ଗୃଧ୍ର, କୁକୁର, ବିଲୁଆ ମାନେ ଟାଣି ଛିନ୍ନ ଭିନ୍ନ କରିବେ । ଭୀମର ଆନନ୍ଦ ଟିକକ କମାଉଛନ୍ତି କାହିଁକି ?

ଶ୍ରୀକୃଷ୍ଣ ସେତେବେଳେ ପାଖକୁ ଗଲେ । ଉଦାସ ଚାହାଣୀ । ତଥାପି କହିଲେ, ''ବୀର ! ତୁମେ ବୀରଗତି ଲାଭ କରିଛ ।''

ଦୁର୍ଯ୍ୟୋଧନ କ୍ଷୀଣ କଣ୍ଠରେ କହିଲେ, ''ହେ ଯାଦବ ଶ୍ରେଷ୍ଠ, କେବଳ ଆପଣଙ୍କ ଆଶୀର୍ବାଦରୁ ଏହା ସମ୍ଭବ ହେଲା । ନ ହେଲେ ମୋତେ ନର୍କଗତି ଭୋଗକରିବାକୁ ପଡ଼ିଥାନ୍ତା । ଆଜି ଯୁଦ୍ଧରେ ଆପଣ ନିୟମ ଲଂଘନ କରିବାକୁ ଭୀମକୁ ଇଙ୍ଗିତ ଦେଲେ । ଆପଣ ମୋ ଦୁର୍ବଳତା ଜାଣିଥିଲେ ବୋଲି ତାର ସୁଯୋଗ ନେବାକୁ ପଛେଇଲେ ନାହିଁ । ଭୀମ ଆପଣଙ୍କ ଇଙ୍ଗିତ ପାଇ ମୋର ଊରୁ ଭଙ୍ଗ କଲେ । ଗଦାଯୁଦ୍ଧର ନିୟମ କଣ ଏଇଆ । ଶରୀରର ନିମ୍ନ ଭାଗକୁ ସ୍ପର୍ଶ କରିବାର ବିଧି ଗଦାଯୁଦ୍ଧର ଅଛି ? ସବୁ ଅନର୍ଥ ଓ ଅପକର୍ମର ମୂଳ ଆପଣ ।''

ଭୀମସେନ ବାଧା ଦେଇ କହିଲେ, ମୁଁ ପରା ଶପଥ ନେଇ ଥିଲି ତୋର ଊରୁ ଭଙ୍ଗ କରିବି ବୋଲି । ତାହା ପୂରଣ ହେଲା । ଶ୍ରୀକୃଷ୍ଣଙ୍କୁ ଦୋଷ ଦେଇ ଲାଭକଣ ? ଉଷୁଅ ରାଗରେ ତାଟିଆ କାମୁଡୁଛୁ କାହିଁକି ? ଚୁପ୍ ଚାପ୍ ଶୋଇଯା... ନତୁବା ମୋତେ କହ, ମୁଁ ଶୁଆଇ ଦେବି ଖୁବ୍ ଶାନ୍ତିରେ ।''

ଦୁର୍ଯ୍ୟୋଧନ ଭୀମଙ୍କ କଥା ନ ଶୁଣି ତାଙ୍କର ଶେଷ କଥା କହିଚାଲିଥାନ୍ତି । ବୁଝିଲେ ଦ୍ୱାରକାପତି ! ଆପଣ ପ୍ରଭୁପଣର ଢ଼ାଲଟା ଧରି ରାକ୍ଷସ ପାଲଟି ଥିଲେ । ଆପଣଙ୍କ ଇଙ୍ଗିତରେ ଅର୍ଜୁନ ପିତାମହ ଭୀଷ୍ମଙ୍କୁ ବିଦାୟ ଦେଲା । ଅସ୍ତ୍ରଗୁରୁ ଦ୍ରୋଣଙ୍କୁ ମାରିବାକୁ, ଧର୍ମପୁତ୍ରଙ୍କ ମୁହଁରେ ମିଛ କୁହାଇ, ତାଙ୍କୁ ମରାଇଲେ । ଧର୍ମରାଜଙ୍କ ସୁନାମରେ କଳଙ୍କ ଲାଗିଲା । ସେଇଥିପାଇଁ ତାଙ୍କ ରଥ ଭୂମି ସ୍ପର୍ଶ କଲା । କର୍ଣ୍ଣ, ରଥଚକ ସଜାଡୁ ଥିବାବେଳେ ଅର୍ଜୁନଙ୍କୁ ଉତ୍ତେଜିତ କରାଇ ତାଙ୍କୁ ମାରିଲେ । ପାଣ୍ଡବମାନଙ୍କ ପାପ କୂପଟି ଆପଣ ଖୋଳିଛନ୍ତି । ଧନ୍ୟ ଆପଣ ... ଧନ୍ୟ ଆପଣଙ୍କ ପ୍ରଭୁପଣିଆ । ହଁ, ମନେ ରଖନ୍ତୁ ।

ମୁଁ ମୋ କାମପାଇଁ ଆଦୌ ଅନୁଶୋଚନା କରୁନି । ଠିକ୍ ଭାବରେ ରାଜ୍ୟପାଳନ କରିଛି । ମୁଁ ଶାନ୍ତିରେ ମୋର ମହାଯାତ୍ରା ବାଢୁଛି । ପାଣ୍ଡବମାନେ ଯେଉଁ ବିଜୟ ହାସଲ କରିଛନ୍ତି, ତାହା ଅପବିତ୍ର, କଳୁଷିତ ଓ ଅଧର୍ମର ପୁଞ୍ଜିରେ ପରିପୁଷ୍ଟ । ଆପଣ ସେ ପୁଞ୍ଜିର ମହାଜନ । ଦେଖିବେ, କେତେ ଦିନ ତାହା ଠିକ୍ ଭାବରେ ଚାଲିବ ।''

ଆକାଶରୁ ପୁଷ୍ପ ବୃଷ୍ଟି ହେଲା, ଦୁର୍ଯ୍ୟୋଧନଙ୍କ ଉପରେ । ସମସ୍ତେ ଆଶ୍ଚର୍ଯ୍ୟ ବିସ୍ଫାରିତ ନୟନରେ ସେଇ ଆଡ଼କୁ ଚାହିଁଲେ । ଚାହିଁଲେ ଭୀମସେନ, ଧର୍ମରାଜ, ଶ୍ରୀକୃଷ୍ଣ ଓ ଦ୍ୱିତୀକୃଷ୍ଣ । ସେତେବେଳେ ସେମାନେ ନିଜକୁ ବହୁତ ଛୋଟ ମନେକଲେ ।

# ।। ସେ ରାତ୍ରି କି ଭୟଙ୍କର ଥିଲା ।।

ସେତେବେଳକୁ ସୂର୍ଯ୍ୟାସ୍ତ ହୋଇଗଲାଣି । ଶ୍ରୀକୃଷ୍ଣ କହିଲେ ନିକଟରେ ବହିଯାଉଛି ପବିତ୍ର ପାବନୀ ଓଘାବତୀ ନଦୀ । ମୁଁ ଭାବୁଛି, ଆଜି ରାତିଟା, ସେଇଠାରେ ଆମେ ବିଶ୍ରାମ ନେବା । ତା ପୂର୍ବରୁ କୌରବ ଶିବିରକୁ ଯାଇ, ତାହା ନିଜ ଅକ୍ତିଆରକୁ ଆଣି ପକାଇବା ଉଚିତ ।

ସମସ୍ତେ ରଥରେ ଚଢ଼ି ଶିବିର ଅଭିମୁଖରେ ଯାତ୍ରାକଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ରଥର ସାରଥିତ୍ୱ କଲେ ପୂର୍ବପରି । ସେଠାରେ ପହଞ୍ଚି ଦେଖିଲେ, କୌରବ ଶିବିର ଶ୍ରୀହୀନ, ଶାନ୍ତ । କେବଳ କେତେକ ଅନୁଚର ଅଛନ୍ତି । ଅମାପ ଧନରତ୍ନ ଭରି ରହିଛି । ପାଣ୍ଡବମାନଙ୍କୁ ଦେଖିଲାକ୍ଷଣି ସେଠାରେ ଥିବା ବୃଦ୍ଧ ପାତ୍ରମନ୍ତ୍ରୀ ଆଉ ଅନୁଚର ବର୍ଗ ଛିଡ଼ା ହୋଇ ଆତ୍ମସମର୍ପଣ କଲେ ।

ଅନ୍ୟ ରଥରୁ ସାରଥି ଓ ପାଣ୍ଡବମାନେ ଓହ୍ଲାଇ ଗଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଲେ, ''ତୁମେ ଆଗ ଏ ରଥରୁ ଓହ୍ଲାଇ ଯାଅ ।'' ସେ ରଥ ତ୍ୟାଗ କରିବା ପରେ, ଶ୍ରୀକୃଷ୍ଣ ରଥରୁ ଡେଇଁ ପଡ଼ିଲେ । ଆଖି ପିଛୁଳାକେ ରଥରେ ନିଆଁ ଲାଗିଗଲା ଓ ନିମିଷକ ମଧ୍ୟରେ ତାହା ପୋଡ଼ି ଭସ୍ମ ହୋଇଗଲା । ରଥର ଧ୍ୱଜ ଦଣ୍ଡରେ ବସିଥିବା ହନୁମାନ ଆକାଶକୁ ଲମ୍ଫ ଦେଇ ଅନ୍ତର୍ହିତ ହୋଇଗଲେ ।

ପାଣ୍ଡବମାନେ ପ୍ରଶ୍ନଭରା ନୟନରେ ଶ୍ରୀକୃଷ୍ଣଙ୍କୁ ଚାହିଁଲେ । ଶ୍ରୀକୃଷ୍ଣ କହିଲେ, ''ଦ୍ରୋଣାଚାର୍ଯ୍ୟ, ଦିବ୍ୟ ଆଗ୍ନେୟାସ୍ତ୍ର ପ୍ରୟୋଗ କରି ଏହାକୁ ସେ ଦିନୁ ଭସ୍ମ କରି ଦେଇଥିଲେ । ମୁଁ ତୁମର ଲକ୍ଷ୍ୟ ପୂରଣ ପାଇଁ ମୋର ସଂକଳ୍ପ ବଳରେ ଏହାକୁ ଅଟକାଇ ରଖିଥିଲି । ତୁମ କାମ ଶେଷ ହୋଇଗଲା, ଏବଂ ଏହି ଦିବ୍ୟ ରଥ ଭସ୍ମ ହୋଇଗଲା ।''

ତା'ପରେ ସେମାନେ ନିଜ ଶିବିରକୁ ଗଲେ । କିଛି ସମୟ ସମସ୍ତଙ୍କ ଗହଣରେ ବିତାଇବା ପରେ ବାହାରିଲେ ଓଘାବତୀ ନଦୀ କୂଳକୁ । ଶ୍ରୀକୃଷ୍ଣ, ସାତ୍ୟକି ଓ ପଞ୍ଚପାଣ୍ଡବ । ସେଠାରେ ତମ୍ବୁ ପକାଇ ରାତ୍ରି ଯାପନ କଲେ ।

ଅନ୍ୟ ପାଖର ଦୃଶ୍ୟ ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ କୃତବର୍ମା ସୂର୍ଯ୍ୟାସ୍ତପରେ ଶିବିରକୁ ଫେରିବାପରେ ଦେଖିଲେ, ପାଣ୍ଡବମାନେ ମହା ଉଲ୍ଲାସରେ ଶିବିର ଅଧିକାର କରୁଛନ୍ତି । ସେମାନେ

ଭାବିଲେ, ରାତ୍ରି ଯାପନ କରିବା ପାଇଁ ସେମାନଙ୍କ ସ୍ଥାନ ଆଉ ସେଠାରେ ନାହିଁ । ଆତଙ୍କିତ ହୋଇ, ରଥନେଇ ସେମାନେ ଚାଲିଆସିଲେ ସେଇ ଅନ୍ଧକାର ଭିତରେ । ରଣକ୍ଳାନ୍ତ ଶରୀର । ସେଥିରେ ପୁଣି ପଥଶ୍ରାନ୍ତ । ଘନ ଜଙ୍ଗଲ ଭିତରେ ଅନ୍ଧାରରେ ଆଗକୁ ଆଗେଇବା ପାଇଁ ମନ ହେଲାନି । ଦେଖିଲେ, ନିକଟରେ ଗୋଟିଏ ବିଶାଳ ବରଗଛ । ତା'ତଳେ ରାତ୍ରି ଯାପନ କରିବା ପାଇଁ ସେମାନେ ସ୍ଥିରକଲେ ।

ରଥରୁ ଓହ୍ଲାଇ ତନି ହେଁ ଶଯ୍ୟା ପ୍ରସ୍ତୁତ କରି ଶୋଇଲେ । ଆସିବା ସମୟରେ ସେମାନେ ରଣଭୂମିରେ ମୁମୂର୍ଷୁ ଅବସ୍ଥାରେ ଦୁର୍ଯ୍ୟୋଧନଙ୍କୁ ଦେଖିଥିଲେ । ଅଶ୍ୱତ୍ଥାମା ଶୋକାକୁଳିତ, କଣ୍ଠରେ କହିଲେ, ''ରାଜନ୍ ! ମୁଁ ଏହାର ପ୍ରତିଶୋଧ ନେବି ।'' ଦୁର୍ଯ୍ୟୋଧନ ନିଜ ହାତର ରକ୍ତରେ ବିଜୟ ତିଳକ ମାଖିଦେଲେ ତାଙ୍କ କପାଳରେ । କ୍ଷୀଣ କଂଠରେ କହିଲେ, ''ମୁଁ ତୁମକୁ ମହା ସେନାପତି ପଦରେ ଆଜି ବରରଣ କଲି । ତୁମେ ବିଜୟ ହାସଲ କଲେ ମୁଁ ଶାନ୍ତିରେ ମରି ପାରିବି । ଅନ୍ତତଃ ଏତିକି ଆଶ୍ୱାସନା ପାଇବି, ମୁଁ ଯାହା କରି ନପାରିଲି, ଅଶ୍ୱତ୍ଥାମା ତାହା ପୂରଣ କଲେ ।'' ସେମାନେ ବିଦାୟ ନେଇ ଆସିଲେ ବିଶ୍ରାମ ପାଇଁ । ଗଛର ସୁଲୁସୁଲୁ ପବନରେ କୃପାଚାର୍ଯ୍ୟ ଓ କୃତବର୍ମାଙ୍କର ନିଦ ହୋଇଗଲା । ଅଶ୍ୱତ୍ଥାମା ଯେତେ ଚେଷ୍ଟା କଲେ ମଧ୍ୟ ଶୋଇ ପାରିଲେ ନାହିଁ । ମନ ଓ ଶରୀରରେ ପ୍ରତିଶୋଧ ଅଗ୍ନିର ଉତ୍ତାପ ।

ରାତ୍ରି ଦ୍ୱିତୀୟ ପ୍ରହର ।

ବରଗଛର ଗହଳ ଶାଖା ପତ୍ର ମଧ୍ୟରେ କୁଆମାନଙ୍କର ପ୍ରବଳ କୋଳାହଳ ଶୁଣାଗଲା । କା...କା...କା... । ଅନ୍ଧାରରେ କିଛି ସ୍ପଷ୍ଟ ଜଣା ପଡୁନଥାଏ । ରାତିରେ ଅନ୍ଧ କୁଆ ଗୁଡ଼ାକ ଉଡ଼ି ପଳାଇ ପାରୁ ନାହାନ୍ତି । ବସା ଚାରି ପାଖରେ ଚକ୍କର କାଟୁଥାନ୍ତି । ଅଶ୍ୱତ୍ଥାମା ନିରୀକ୍ଷଣ କଲେ । ଗୋଟାଏ ପେଚା ନୀଡ଼ ଭିତରେ ପଶି କୁଆ ଛୁଆ ଗୁଡ଼ିକୁ ଖାଇଯାଉଛି । ଅନ୍ଧକାର ଭିତରେ ସେମାନଙ୍କ ଶୋଇବାର ସୁଯୋଗ ନେଇଛି ଘାତକ ପେଚା ।

ଚିତ୍କାର କରି ଉଠିଲେ ଅଶ୍ୱତ୍ଥାମା ।

''ବାଟ ମିଳିଗଲା.....ବାଟ ମିଳିଗଲା... ମୁଁ ତାହା ହିଁ କରିବି । ତାହାହିଁ କରିବି । ପାଣ୍ଡବ ଶିବିରରେ ସମସ୍ତେ ମହା ଆନନ୍ଦରେ ବିଜୟ ନିଦ୍ରା ଉପଭୋଗ କରୁଥିବେ । ଅନ୍ଧକାର ଭିତରେ ଶିବିରରେ ପଶି ସମସ୍ତଙ୍କୁ ହତ୍ୟା କରିବି । ଭୀମ କି ପ୍ରତିଶୋଧ ନେଇଛି, ତା'ଠାରୁ ଆଉରି ଭୟଙ୍କର ପ୍ରତିଶୋଧ ନେବି, ମୁଁ...ମୁଁ.... ଅଜେୟ ଅଶ୍ୱତ୍ଥାମା । ପିତୃହତ୍ୟାର ପ୍ରତିଶୋଧ ନେବି ।

ମାମୁ, ମାମୁ ! କୃତବର୍ମା ! କୃତବର୍ମ୍ମା, ଉଠନ୍ତୁ । ମହାକାଳ ଆମକୁ ଡାକୁଛି ।

ସମସ୍ତେ ଚମକି ଉଠିଲେ । କ'ଣ ହେଲା ।

ମୁଁ ନିଶ୍ଚୟ ପ୍ରତିଶୋଧ ନେବି । ବର୍ତ୍ତମାନ ପାଣ୍ଡବ ଶିବିରରେ ସମସ୍ତେ ମହା ଆନନ୍ଦରେ ଶୋଇଥିବେ । ଚାଲନ୍ତୁ ଯିବା, ମୁଁ ସମସ୍ତଙ୍କୁ ହତ୍ୟା କରିବି ।''

''ଏ କଣ କହୁଛ ଅଶ୍ୱତ୍ଥାମା ! ଏ କାଳ କଥାଗୁଡ଼ାକ କାହିଁକି ପାଟିରେ ଧରୁଛ । ସୁପ୍ତ ନିରସ୍ତ୍ର ସୈନିକଙ୍କୁ ହତ୍ୟା କରିବା ମହା ଅପରାଧ । ତୁମେ ମହାତେଜା ବିଶ୍ୱବିଖ୍ୟାତ ଦ୍ରୋଣାଚାର୍ଯ୍ୟଙ୍କର ପୁତ୍ର । ତୁମ ନାଁରେ କଳଙ୍କ ରଟିବ । ତୁମ ପିତା ଶାନ୍ତି ପାଇବେନାହିଁ । ଏ ମହା ଅପରାଧରୁ କ୍ଷାନ୍ତ ହୁଅ ଅଶ୍ୱତ୍ଥାମା । ପବିତ୍ର ସୈନିକ ପଦରୁ ଘୃଣ୍ୟ ହତ୍ୟାକାରୀ ପଦକୁ ଓହ୍ଲାଇ ଆସନାହିଁ । ସର୍ବ ସମ୍ମାନନୀୟ ସୈନିକ ହୋଇ ରୁହ । ତୁମେ ଯେଉଁ ନୀଚ ଅପରାଧ କରିବାକୁ ଯାଉଛ, କ୍ଷତ୍ରିୟମଧ୍ୟ ତାହା କରିବ ନାହିଁ । ଆମେ ବ୍ରାହ୍ମଣ,

ଏ ପ୍ରକାର ଚିନ୍ତା ଆମ ମନକୁ ସ୍ପର୍ଶ କରିବା ଉଚିତ ନୁହେଁ । ଦୁର୍ଯ୍ୟୋଧନ ନିଜ କୃତକର୍ମର ଫଳ ପାଇଛନ୍ତି । ଏ ଯୁଦ୍ଧ ପାଇଁ ତୁମ ପିତା, ଭୀଷ୍ମଦେବ, ମୁଁ ଓ ଅନ୍ୟମାନେ କେହି ଚାହୁଁ ନଥିଲୁ । ସେତ ଆତ୍ମାଭିମାନ ନେଇ କାହାରି ସଦ୍‌ଚ୍ଛା ଓ ସତ୍ ପରାମର୍ଶକୁ ସମ୍ମାନ ଦେଇନାହାନ୍ତି । ଫଳାଫଳ ପାଇଁ ଏତେ ବ୍ୟସ୍ତ କାହିଁକି ? କହିଲେ କୃପାଚାର୍ଯ୍ୟ ।

ବ୍ୟସ୍ତତା ମୋ ପିତାଙ୍କ ପାଇଁ । ମାମୁ ! ପାଣ୍ଡବମାନେ ଯେଉଁ ନୀଚ କର୍ମ କରିଛନ୍ତି, ଯୁଦ୍ଧ ଇତିହାସରେ ତାର ପଟାନ୍ତର ନାହିଁ । କଣ୍ଟାକୁ କଣ୍ଟାରେ କେବଳ କଢ଼ା ଯାଇପାରିବ । ମୁଁ ତାହାହିଁ କରୁଛି । ନୀତି ନିୟମ ଲଂଘନ କରୁଛି ବୋଲି ଭାବୁଛନ୍ତି କାହିଁକି ? ପିତୃ ଋଣ ପରିଶୋଧ କରିବାକୁ ମୁଁ ଚାହେଁ ।''

ଏତିକି କହି ସେ ରଥରେ ବସି ଅନ୍ଧାର ମଧ୍ୟରେ ଯାତ୍ରା ଆରମ୍ଭ କଲେ । ତାଙ୍କ ପଛେ ପଛେ ଗଲେ କୃପାଚାର୍ଯ୍ୟ ଓ କୃତବର୍ମା ।

ସମସ୍ତେ ପହଞ୍ଚିଲେ ପାଣ୍ଡବ ମାନଙ୍କ ଶିବିରରେ । କୃପାଚାର୍ଯ୍ୟ ଓ କୃତବର୍ମ୍ମା ଦ୍ୱାରଦେଶରେ ଜଗିରହିଲେ । ଧୃଷ୍ଟଦ୍ୟୁମ୍ନ ତାଙ୍କର ଅସ୍ତ୍ର ସବୁ ରଖି ଦେଇ ସୁଖ ନିଦ୍ରାରେ ଶୋଇଛନ୍ତି ନିଜ ତମ୍ବୁ ଭିତରେ । ଅଶ୍ୱତ୍ଥାମା ପାଦ ଚିପି ଚିପି ଯାଇ ସେ ନିଦ୍ରିତ ଅବସ୍ଥାରେ ତାଙ୍କୁ ହତ୍ୟାକଲେ । ପ୍ରହରୀମାନେ ପଳାଇବାକୁ ଗଲାବେଳେ ଦ୍ୱାର ଦେଶରେ କୃପାଚାର୍ଯ୍ୟ ଓ କୃତବର୍ମ୍ମା ସେମାନଙ୍କୁ ହତ୍ୟାକଲେ । ଶିଖଣ୍ଡୀ ଓ ଦ୍ରୌପଦୀଙ୍କ ପାଞ୍ଚ ପୁଅଙ୍କ ନିଦ ଭାଙ୍ଗିଗଲା । ସେମାନେ ଅଶ୍ୱତ୍ଥାମାଙ୍କ ସହିତ ଯୁଦ୍ଧ କଲେ କିନ୍ତୁ ଅଶ୍ୱତ୍ଥାମା ସେମାନଙ୍କୁ ଜଣ ଜଣ କରି ହତ୍ୟାକଲେ । ଶେଷରେ ସେମାନେ ବାହାରକୁ ବାହାରି ଆସି ତମ୍ବୁରେ ନିଆଁ ଲଗାଇ ଦେଲେ । ସେ ରାତିରେ ମହା ସଂହାରଲୀଳା ସଂଘଟିତ ହେଲା ।

ସୁପ୍ତ ସୈନ୍ୟମାନେ ଅନେକ ମଲେ । କେତେକ ପ୍ରାଣ ବିକଳରେ ପଳାଇବା ସମୟରେ ଅଶ୍ୱତ୍ଥାମା ତାଙ୍କୁ ହତ୍ୟା କଲେ । ପଞ୍ଚାଳମାନେ ସମସ୍ତେ ପ୍ରାଣ ହରାଇଲେ । ଦ୍ରୁପଦଙ୍କ ବଂଶନାଶ ହୋଇଗଲା । ଦ୍ରୌପଦୀଙ୍କ ପାଞ୍ଚଟି ଯାକ ପିଲା ବିଦାୟ ନେଲେ । ପାଣ୍ଡବ ବଂଶର ବଂଶ ବୃଦ୍ଧି ପାଇଁ କେହି ରହିଲେ ନାହିଁ । କେବଳ ଧୃଷ୍ଟଦ୍ୟୁମ୍ନଙ୍କ ସାରଥି । ସେମାନଙ୍କ ଦୃଷ୍ଟି ଏଡ଼ାଇ କୌଣସି ମତେ ବଞ୍ଚିଗଲା । ସେ ଅନ୍ଧାର ଭିତରେ ଲୁଚି ଲୁଚି ଓଘାବତୀ ନଦୀ କୂଳରେ ଥିବା ପାଣ୍ଡବମାନଙ୍କୁ ଖବର ଦେବାକୁ ଚାଲିଗଲେ ।

ଅଶ୍ୱତଥାମା, କୃତବର୍ମ୍ମା, କୃପାଚାର୍ଯ୍ୟ , ଦୁର୍ଯ୍ୟୋଧନଙ୍କ ପାଖକୁ ସେଇ ରାତ୍ରିର ଘନ ଅନ୍ଧକାର ମଧ୍ୟରେ ଫେରିଗଲେ । କୁରୁକ୍ଷେତ୍ରରେ ସେତେବେଳେ ଶ୍ୱାନ ଶିବା ମାନଙ୍କର ସଭା ବସିଥିଲା । ପ୍ରତି ଶବ ପାଖରେ । ଦୁର୍ଯ୍ୟୋଧନ ସେତେବେଳେ ସଂଘର୍ଷ କରୁଥାନ୍ତି ଶ୍ୱାନ ଓ ଶିବାଙ୍କ ସହିତ ନିଜର ବଞ୍ଚିଥିବାର ପ୍ରମାଣ ଦେଇ । ସ୍ୱଚ୍ଛ ଆଲୋକ ଭିତରେ ସେମାନେ ଶବରାଶି ଆଡ଼େଇ ଆଡ଼େଇ ଯାଇ ପହଞ୍ଚିଲେ ଦୁର୍ଯ୍ୟୋଧନଙ୍କ ପାଖରେ । ରଥରୁ ଡେଇଁ ପଡ଼ି ଅଶ୍ୱତଥାମା କହିଲେ, ''ରାଜନ୍ ! ଆପଣ ଏପର୍ଯ୍ୟନ୍ତ ବଞ୍ଚିଛନ୍ତି । ଶୁଭସମ୍ବାଦ ଶୁଣନ୍ତୁ । ସବୁ ପାଞ୍ଚାଳ ମାନଙ୍କୁ ହତ୍ୟା କରାଯାଇଛି । ଏବଂ ପାଞ୍ଚାଳୀଙ୍କର ପାଞ୍ଚପୁତ୍ରଙ୍କୁ ମଧ୍ୟ ଶେଷ କରି ଦିଆଯାଇଛି । ତାଙ୍କର ସବୁ ସୈନ୍ୟ ସଂହାର ହୋଇଛନ୍ତି । ପାଣ୍ଡବ ପକ୍ଷରେ ବଞ୍ଚିଛନ୍ତି ମୋଟ ସାତଜଣ । ପାଞ୍ଚ ପାଣ୍ଡବ, ଶ୍ରୀକୃଷ୍ଣ ଓ ସାତ୍ୟକି । ଆମ ପକ୍ଷରୁ ଆମେ ତିନିଜଣ ରକ୍ଷାପାଇ ଯାଇଛୁ ।''

ଦୁର୍ଯ୍ୟୋଧନ ବହୁକଷ୍ଟରେ ଆଖିଖୋଲି ଅସ୍ପଷ୍ଟ ସ୍ୱରରେ କହିଲେ, ''ତୁମେ ମୃତ୍ୟୁ ପୂର୍ବରୁ ମୋତେ ଏଇ ଶୁଭ ସମ୍ବାଦ ଦେଇ ଶାନ୍ତିରେ ମରିବାକୁ ଦେଇଛ । ତୁମର ମଙ୍ଗଳ ହେଉ । ମୋତେ ବିଦାୟ ଦିଅ ।'' ଶୂନ୍ୟ ଆକାଶକୁ ଚାହିଁ, ଆଖି ତାଙ୍କର ସ୍ଥିର ହୋଇଗଲା । କୁରୁ ସାମ୍ରାଜ୍ୟର ସେଇ ମହାଶକ୍ତିର ମହାପ୍ରୟାଣ ହେଲା ।

———————————ସତେଇଶ

# ।। ପ୍ରଳୟ ପରେ ।।

ପ୍ରଳୟସୃଷ୍ଟି ପରେ ଦୁର୍ଯ୍ୟୋଧନଙ୍କ ଠାରୁ ବିଦାୟ ନେଇ କୃପାଚାର୍ଯ୍ୟ ଚାଲିଗଲେ ହସ୍ତିନା ପୁରକୁ । କୃତବର୍ମା, ଶ୍ରୀକୃଷ୍ଣଙ୍କ ନାରାୟଣୀ ସେନାର ସେନାପତି ଭାବରେ, ଦୁର୍ଯ୍ୟୋଧନଙ୍କ ପ୍ରତି କର୍ତ୍ତବ୍ୟ କରିବାକୁ ସମର୍ପିତ ହୋଇଥିଲେ । ତାଙ୍କ ସୈନ୍ୟମାନଙ୍କର ଅନ୍ତିମ ବିସର୍ଜନ ହୋଇଛି, ତାଙ୍କ କର୍ତ୍ତବ୍ୟ ସରି ଯାଇଛି । ଦୁର୍ଯ୍ୟୋଧନ ନିହିତ ହୋଇଛନ୍ତି । ସେ ଏକା ଫେରିଗଲେ ଦ୍ୱାରକା ପୁରକୁ । ବାକି ରହିଲେ ଅଶ୍ୱତ୍ଥାମା । ସେ ଯିବେ କୁଆଡେ ? ହସ୍ତିନାପୁରକୁ ଫେରିଯିବା ବାଟ ବନ୍ଦ ହୋଇଯାଇଛି ଚିରଦିନ ପାଇଁ । ସେ ଭଲରୂପେ ଜାଣନ୍ତି, ପାଣ୍ଡବମାନେ ନିଜ ଶିବିରକୁ ଫେରିବା ପରେ, ତାଙ୍କୁ ଖୋଜା ଚାଲିବ ଶାସ୍ତିବିଧାନ ପାଇଁ । ସେମାନେ କେବେହେଲେ ତାଙ୍କୁ କ୍ଷମା ଦେବେ ନାହିଁ । ସେ ନିଜ ରଥରେ, ରାତ୍ରିର ସେଇ ଘନ ଅନ୍ଧକାର ମଧ୍ୟରେ ଯେତେଦୂର ପଳାଇ ଯାଇ ପାରିବେ,ପଳାଇଗଲେ ।

ଏପାଖେ ଧୃଷ୍ଟଦ୍ୟୁମ୍ନଙ୍କ ସାରଥି ଯାଇ ପହଞ୍ଚିଲା ପାଣ୍ଡବ ଶିବିରରେ । ଧର୍ମରାଜଙ୍କୁ କହିଲା,''ପ୍ରଭୁ ! ଏଇ ରାତିରେ ଆଚାର୍ଯ୍ୟଙ୍କ ପୁତ୍ର ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟଙ୍କୁ ସାଥିରେ ନେଇ ଆମ ଶିବିରରେ ନିଆଁ ଲଗାଇ ସବୁ ଧ୍ୱଂସ କରିଦେଇଛନ୍ତି । ସମସ୍ତେ ଶୋଇଥିଲେ । ସତର୍କ, ସଜାଗ ହୋଇପାରିଲେ ନାହିଁ, ଅଗ୍ନିଶିଖା ମଧ୍ୟରେ ଭସ୍ମହୋଇଗଲେ । ମହାରାଣୀ ଦ୍ରୌପଦୀଙ୍କର ସନ୍ତାନଗଣ ବଧ ହୋଇଛନ୍ତି । ପଞ୍ଚାଳ ଯୁବରାଜ ଧୃଷ୍ଟଦ୍ୟୁମ୍ନ ଓ ରାଜପୁତ୍ର ଶିଖଣ୍ଡୀଙ୍କୁ ଅଶ୍ୱତ୍ଥାମା ହତ୍ୟା କରିଛନ୍ତି ।''

ଯୁଧିଷ୍ଠିର ସେଇଠାରେ ମୂର୍ଚ୍ଛିତ ହୋଇ ତଳେ ପଡିଗଲେ । ଭୀମ, ଅର୍ଜୁନ, ନକୁଳ, ସହଦେବ, ଶ୍ରୀକୃଷ୍ଣ, ସମସ୍ତେ ବ୍ୟଥାତୁର । କିଏବା କାହାକୁ ଆଶ୍ୱାସନା ଦେବ । ଶ୍ରୀକୃଷ୍ଣ କମ୍ପିତ କଣ୍ଠରେ କହିଲେ, ଆମେ ରାତିରେ ସେଠାରେ ବିଶ୍ରାମ ନେଇଥିଲେ ବୋଧହୁଏ ଏ' ଅଘଟଣ ଘଟିନଥାନ୍ତା । ଅଗ୍ନି ମୁଖରୁ ରକ୍ଷା ପାଇ ଆମେମାନେ, ଯାଇଥିଲେ ମଧ୍ୟ ତାର ଧୂମଶିଖାରେ ବର୍ତ୍ତମାନ ଅତିଷ୍ଠ ହେବାକୁ ପଡ଼ିଲା ।

ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସାତ୍ୟକି ଚାଲିଯାଇଥିଲେ ଉପପ୍ଲବ୍ୟ''ଶିଖରକୁ । ସେଠାରେ ଅଛନ୍ତି ପାଣ୍ଡବ ରମଣୀ ଗଣ । ସେ ଏହି ଦୁଃସମ୍ବାଦ ଜଣାଇ ସମସ୍ତଙ୍କୁ ନେଇ ଆସିଲେ ପାଣ୍ଡବମାନଙ୍କ ଭସ୍ମୀଭୂତ ଶିବିରକୁ ।

ବିଷାଦମଥିତ ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ଗହଣରେ ଆସି ପହଞ୍ଚିଲେ ନିଜ ଶିବିରରେ ।

ଯୁଧିଷ୍ଠିର, ନିଜର ସୈନ୍ୟ ସାମନ୍ତ ଆତ୍ମୀୟ ପରିଜନ ମାନଙ୍କର ଧ୍ୱଂସ ଦୃଶ୍ୟ ଦେଖି ମାନସିକ ଭାରସାମ୍ୟ ରକ୍ଷାକରି ପାରିଲେ ନାହିଁ । ଅଶ୍ରୁଗଦ୍‌ଗଦ୍ ନୟନରେ, କମ୍ପିତ କଣ୍ଠରେ କହିଲେ,''ବିଜୟଲାଭର ମଙ୍ଗଳ ମୁହୂର୍ତ୍ତରେ ଆମକୁ ପରାଜିତ ହେବାକୁ ପଡିଲା । ପରାଜିତ କୌରବ ପକ୍ଷ ନିଃଶ୍ଚିହ୍ନ ହୋଇଯିବା ବେଳେ, ସେମାନଙ୍କୁ ବିଜୟ ମିଳିଗଲା । ତାହା ଉପଭୋଗ କରିବାକୁ ସେମାନଙ୍କର ଆଉ କେହି ନାହାନ୍ତି

କିନ୍ତୁ ଏ ଦୁର୍ଦ୍ଦଶା ଭୋଗିବା ପାଇଁ ଆମେ ଭାଇ ପାଞ୍ଚଟା ବଞ୍ଚିରହିଛୁ । ଚଣ୍ଡାଳ ଅଶ୍ୱତ୍ଥାମା ଆମକୁ ହେଲେ ମାରି ଦେଇଥାନ୍ତା । ପାଣ୍ଡବ ମାନଙ୍କର ତରୁଣ ବଂଶ ବୃକ୍ଷ ଗୁଡିକୁ କାଟିଦେଲା ।''

ଦ୍ରୌପଦୀ କାନ୍ଦିକାନ୍ଦି ଅଧୀର ହେଲେ । ତାଙ୍କୁ କେହି ଆଶ୍ୱାସନା ଦେଇପାରୁ ନଥାନ୍ତି । ଭୀମ, ଗର୍ଜ୍ଜନ କରି କହିଲେ, ''ଦେବି ! କାନ୍ଦ ନାହିଁ । ମୁଁ ସେ କୁକୁରଟାକୁ ମାରିଦେବି । ତିନିଭୁବନରେ ଯେଉଁଠାରେ ରହିଲେ ମଧ ମୁଁ ତାକୁ ଆଉ ବଞ୍ଚିବାକୁ ଦେବି ନାହିଁ । ଏଇ ବାହାରିଲି ।''

ଭୀମ ଆଖି ପିଛୁଳାକେ ରଥରେ ବସି ଚାଲିଆସିଲେ । ତାଙ୍କ ପଛେ ପଛେ ଗଲେ ଶ୍ରୀକୃଷ୍ଣଙ୍କ ସହିତ ଅନ୍ୟ ପାଣ୍ଡବ ଭାଇମାନେ । ସେ କାଳ କେତୁକୁ କବଳିତ କରିବେ । ଗଙ୍ଗା କୂଳେ କୂଳେ ଆଗ୍ନେୟ ମନଟାକୁ ନେଇ ଚାଲିଥାନ୍ତି ।

ସେମାନେ ଖୋଜିଖୋଜି ଯାଇ ପହଞ୍ଚିଲେ ବ୍ୟାସଦେବଙ୍କ ଆଶ୍ରମରେ । ସମସ୍ତେ ତାଙ୍କୁ ପ୍ରଣାମ ଜଣାଇଲେ । ବ୍ୟାସଦେବଙ୍କ ସମ୍ମୁଖରେ ବସିଛନ୍ତି ଋଷିମଣ୍ଡଳୀ, ତାଙ୍କର ଶିଷ୍ୟଗଣ । ଭୀମଙ୍କ ଦୃଷ୍ଟି ଖୋଜି ବୁଲୁଥିଲା ଅଶ୍ୱତ୍ଥାମାଙ୍କୁ । ଗୈରିକ ବସନ ପିନ୍ଧି, ସାରା ଶରୀରରେ ଭସ୍ମଲୋପନ କରି, ମୁଖରେ ଶ୍ମଶ୍ରୁ ଲମ୍ବାଇ, ଛଦ୍ମବେଶରେ ବସିଥିବା ଅଶ୍ୱତ୍ଥାମାକୁ ଭୀମ ଚିହ୍ନିପାରି ଚିତ୍କାର କଲେ, ''ଏଇ ସେଇ ହତ୍ୟାକାରୀ, ଏଇଠେ ଲୁଚିଛି ।''

ଆଖି ପିଛୁଳାକେ ଭୀମ ତାଙ୍କ ମୁହଁରୁ ଦାଢି ମୁଛଟାଣିଦେଲେ । ଗଦା ଉଞ୍ଚାଇଲେ ମାରିବା ପାଇଁ । ଅଶ୍ୱତ୍ଥାମା ତଳୁ ଦୂବଘାସ ଖଣ୍ଡେ ଛିଣ୍ଡାଇ, ତା' ଭିତରେ ସର୍ବନାଶ ଶକ୍ତି ଆରୋପକରି, ଅଭିମନ୍ତ୍ରିତ କରି ଛାଡିଦେଲେ ପାଣ୍ଡବ କୁଳ ଧ୍ୱଂସ କରିବା ପାଇଁ । ତାର ଏକ ଅଂଶ ଯାଇ ଉତ୍ତରାଙ୍କ ଗର୍ଭରେ ଥିବା ଅଭିମନ୍ୟୁଙ୍କ ସନ୍ତାନକୁ ହତ୍ୟା କରିଦେଲା ଶ୍ରୀକୃଷ୍ଣ ତାହା ଜାଣିପାରି ନରାୟଣୀ ଶକ୍ତିବଳରେ ସେ ଶିଶୁକୁ ପୁନର୍ଜ୍ଜୀବିତ କରିଦେଲେ । ଅନ୍ୟ ଅଂଶଟି ଧାବିତ ହେଲା ପାଣ୍ଡବମାନଙ୍କୁ ନିଧନ କରିବା ପାଇଁ ।

ଶ୍ରୀକୃଷ୍ଣଙ୍କ ଇଙ୍ଗିତପାଇ ଅର୍ଜୁନ ବ୍ରହ୍ମଶର ଅସ୍ତ୍ର ନିକ୍ଷେପକଲେ ସେ ଅସ୍ତ୍ର ଶକ୍ତିକୁ ପ୍ରତିହତ କରିବା ପାଇଁ । ଗୋଟିଏ ଶକ୍ତି ସ୍ରୋତ ଯାଇ ଅଶ୍ୱତ୍ଥାମାର ଶିର ମୁକୁଟରୁ ମଣିଟିକୁ ଖସାଇ ଦେଲା । ତାଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲାବେଳେ, ବ୍ୟାସଦେବ ଓ ଦେବର୍ଷି ନାରଦ ବାଧା ଦେଇ ଅଟକାଇ ଦେଲେ, କହିଲେ, ଏ ଅସ୍ତ୍ରର ପ୍ରଭାବରେ ସାରା ପୃଥିବୀ ଧ୍ୱଂସ ହୋଇଯିବ । ଏହାକୁ ଫେରାଇ ନିଅ । ବିଶ୍ୱରକ୍ଷା ପାଉ । ଉଭୟେ ଏହାକୁ ଫେରାଇ ନେଲେ ।''

ବ୍ୟାସଦେବ କହିଲେ,''ମୁଁ ଉଭୟ ପକ୍ଷକୁ ଅନୁରୋଧ କରୁଛି । ମୋ କଥା ମାନ । ଅଶ୍ୱତ୍ଥାମାଙ୍କୁ ହତ୍ୟା କରନାହିଁ । ସେ ମୋ'ର ଶରଣାପନ୍ନ । ମୁଁ ତୁମର ପିତାମହ, ଅଶ୍ୱତ୍ଥାମା ଉତ୍ତରାଙ୍କ ଗର୍ଭନଷ୍ଟକରି ମଧ ସଫଳତା ହାସଲ କରି ପାରିଲେ ନାହିଁ । ପରମ କାରୁଣିକ ଶ୍ରୀକୃଷ୍ଣ ତୁମର ସହାୟକ ହେଲେ । ପାଣ୍ଡବ ବଂଶର ବଂଶବୀଜ ରହିଗଲା । ସେ ବଂଶଲତା ଲତାୟିତ ହେବ । ଆଚାର୍ଯ୍ୟ ପୁତ୍ର ବର୍ତ୍ତମାନ ତୁମପାଖରେ ନିଜର ପରାଜୟ ସ୍ୱୀକାର କରିବେ । ବିଜୟର ଚିହ୍ନ ସ୍ୱରୂପ, ତୁମେ ତାଙ୍କମସ୍ତକର ଦିବ୍ୟ ମଣିଟି ଲାଭ କରିବ । ସେଇ ମଣିହିଁ ଥିଲା ତାଙ୍କ ବୀରତା, ପଣ ଓ ପ୍ରତିଷ୍ଠାର ଜୀବନାଧାର । ଏବେ ତାହା ହରାଇବା ପରେ ସେ ମୃତ ସହିତ ସମାନ । ମାରିଦେଲେ ବିଶେଷ ଲାଭ କିଛି ହେବନି ।''

ଶ୍ରୀକୃଷ୍ଣଙ୍କ ମନକୁ ଏକଥା ଖୁବ୍ ସ୍ପର୍ଶକଲା । ପାଣ୍ଡବମାନେ ଅନୁପ୍ରାଣିତ ହେଲେ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଏଥିରେ ଏକମତ ହେଲେ ପାଣ୍ଡବମାନେ ।

ବ୍ୟାସଦେବ ଅଶ୍ୱତ୍ଥାମାଙ୍କୁ ନିର୍ଦ୍ଦେଶଦେଲେ, ମୁକୁଟମଣିଟି ଭୀମ ସେନାଙ୍କ ହାତରେ ଅର୍ପଣ କରିବାକୁ । ଅଶ୍ୱତ୍ଥାମା ନିଜ ପ୍ରାଣର ପ୍ରାଣ ସେଇ ମୁକୁଟ ମଣିଟି ଆଣି, ଶିରନତକରି ଭୀମଙ୍କ ହାତରେ ଉତ୍ସର୍ଗ କଲେ । ତା'ପରେ ସେ ନତମୁଖରେ ଏକ ମୁହାଁହୋଇ, ଅରଣ୍ୟର ଅନନ୍ତ ଅବଧି ଭିତରେ ନିଜକୁ ହଜାଇ ଦେଲେ । ତାଙ୍କର ଲକ୍ଷ୍ୟ,ହିମାଳୟରେ ତପସ୍ୟା କରି, ଯୋଗ ଯଜ୍ଞରେ ଜୀବନର ଶେଷ ଆହୁତି ଢ଼ାଳିବେ । ଏହାହିଁ ଏକମାତ୍ର ମହାନ ମାର୍ଗ ।

ଚାଲିଯାଉଥିବା ଅଶ୍ୱତ୍ଥାମାଙ୍କୁ ଦେଖି, ଭୀମଙ୍କ ପାଟିରୁ ବାହାରି ପଡିଲା, ''ଅଶ୍ୱତ୍ଥାମାର ଚଳନ୍ତା ଶବଟା ଚାଲିଚାଲି ପଳାଉଛି ।'' ସେ ମଣିଟିକୁ ନେଇ ଆସି ଦ୍ରୌପଦୀଙ୍କୁ ଅର୍ପଣ କଲେ । କହିଲେ ''ଅଶ୍ୱତ୍ଥାମାର ଜୀବନ୍ତ ମୃତ୍ୟୁ ହୋଇଛି ।'' ଦ୍ରୌପଦୀ ଭାବାବେଗ ଭିତରେ ମଣିଟିକୁ ନେଇ ଯୁଧିଷ୍ଠିରଙ୍କୁ ଦେଲେ ତାଙ୍କ ମୁକୁଟରେ ଶୋଭା ପାଇବା ପାଇଁ । ବିଷାଦ ବିବିକ୍ତ ମାଆ ମନର ଦହନକୁ ତାହା ଶାନ୍ତ କରିପାରିଲା ନାହିଁ ।

ମହାଭାରତ ମହାଯୁଦ୍ଧର ମହାପ୍ରୟାଣ ହେଲା ନିଷ୍ଫଳତା ଭିତରେ । କେହି ବିଜୟୀ କିମ୍ୱା ବିଜିତ ନୁହଁନ୍ତି । କେହିକିଛି ଲାଭ କରିପାରିଲେ ନାହିଁ । ସମସ୍ତଙ୍କର ସର୍ବନାଶ ହିଁ ସାରହେଲା । ଶ୍ରୀକୃଷ୍ଣଙ୍କ ଦୟାରୁ ପାଣ୍ଡବମାନଙ୍କ ବଂଶର ଏକ ମାତ୍ର ସନ୍ତକ ରହିଗଲା ଉତ୍ତରାଙ୍କ ଗର୍ଭରେ । ସେ ପରେ ଜନ୍ମନେଲା । ତାଙ୍କ ନାଁ ହେଲା ପରୀକ୍ଷିତ । ସମୟକ୍ରମେ ସେ ହସ୍ତିନା ସିଂହାସନରେ ଯୁଧିଷ୍ଠିରଙ୍କ ଦ୍ୱାରା ଅଭିଷିକ୍ତ ହେଲେ ଏବଂ ପାଣ୍ଡବମାନେ ଆଶ୍ରମଜୀବନ ଯାପନ କରିବା ପାଇଁ ବନଗମନ କଲେ ।

# ।। ପ୍ରତିଶୋଧ ନିଆଁ ତଥାପି ଲିଭିଲାନି ।।

ଯୁଦ୍ଧ ସରିଗଲା । ଯୁଦ୍ଧର ଧାରା ବିବରଣୀ ବନ୍ଦ ହୋଇଯାଇଛି ଦୁର୍ଯ୍ୟୋଧନଙ୍କ ଉରୁ ଭଙ୍ଗ ପରଠାରୁ । ବ୍ୟାସଦେବଙ୍କ କୃପାରୁ ସଞ୍ଜୟ ଯେଉଁ ଆଲୌକିକ ଶକ୍ତିର ଅଧିକାରୀ ହୋଇଥିଲେ, ତାଙ୍କର ସେ ଶକ୍ତି ଉଭେଇଗଲା । ସେ ନିଜ ମାନସିକ ସ୍ଥିତିରେ ପୂର୍ବ ପରିସ୍ଥିତିକୁ ଫେରି ଆସିଲେ ।

ବର୍ତ୍ତମାନ ହସ୍ତିନା ପୁରରେ ଶୋକର ସାଗର ଉଦ୍‌ବେଳିତ । ଆବାଳ ବୃଦ୍ଧ ବନିତା ସମସ୍ତେ ଶୋକାକୁଳ । କ୍ରନ୍ଦନର ଆର୍ତ୍ତନାଦ ଚାରିଆଡେ ଖେଳି ଯାଉଛି । ଧୃତରାଷ୍ଟ୍ର ବାହୁନି ବାହୁନି କାନ୍ଦୁଛନ୍ତି । ରାଜପୁରର ସବୁ ମହିଳା କ୍ରନ୍ଦନାତୁର । କିଏ ବା କାହାକୁ ଆଶ୍ୱାସନା ଦେବ । ସମସ୍ତେ ଶୋକାବର୍ତ୍ତରେ ପଡି ଆର୍ତ୍ତଚିତ୍କାର କରୁଛନ୍ତି । ସହସ୍ର ସହସ୍ର ବିଧବା ମହିଳାଙ୍କ କ୍ରନ୍ଦନ ଧ୍ୱନି, ସ୍ଥିତପ୍ରଜ୍ଞ ବିଦୁରଙ୍କୁ ମଧ୍ୟ ଚହଲାଇ ଦେଲା, ତାଙ୍କ ଆଖିରେ ମଧ୍ୟ ଲୁହର ଝରଣା ।

ସଞ୍ଜୟ ବହୁତ ବୁଝାଇଲେ । କହିଲେ, ''ରାଜନ୍ ! ବର୍ତ୍ତମାନ ବିଗତାତ୍ମାମାନଙ୍କ ପାଇଁ କାନ୍ଦିବାର ସମୟ ନୁହେଁ । ସେମାନଙ୍କର ମର ଶରୀରର ସଂସ୍କାର ପାଇଁ ବିହିତ ବ୍ୟବସ୍ଥା କରିବା ଆବଶ୍ୟକ । ଯେ

ଯାଇଛି, ତା ପାଇଁ ଅନୁଶୋଚନା କରିବାର ଆବଶ୍ୟକତା ଆଉ ନାହିଁ । ସେମାନେ ଯୁଦ୍ଧ ଭୂମିରେ ଯାଇଛନ୍ତି । କ୍ଷତ୍ରିୟ ଗତିଲାଭ କରିଛନ୍ତି । ମଣିଷର ମୃତ୍ୟୁପରେ ପାର୍ଥିବ ସମ୍ପର୍କ ବିଛିନ୍ନ ହୁଏ । ଏଣିକି ସମ୍ପର୍କକୁ ଆଧାରକରି, ବିଳାପ କରିବାର ଆବଶ୍ୟକତା ନାହିଁ । ଆପଣ ନିର୍ଦ୍ଦେଶ ଦିଅନ୍ତୁ, ନିଜେ ପ୍ରସ୍ତୁତ ହୁଅନ୍ତୁ । କୁରୁକ୍ଷେତ୍ର ତୀର୍ଥ ଭୂମିକୁ ଯାଇ ସଂସ୍କାର ବ୍ୟବସ୍ଥା କରାଯିବ ।

ଠିକ୍ ଏତିକି ବେଳେ ଆସି ପହଞ୍ଚିଲେ ବ୍ୟାସଦେବ ।

ଶୋକାର୍ତ୍ତ ଧୃତରାଷ୍ଟ୍ରଙ୍କୁ କୋମଳ କଣ୍ଠରେ କହିଲେ, ''ବସ୍ ! ଆଜିର ଏଇ ଦୁଃଖଦ ପରିସ୍ଥିତିରେ ମୁଁ ତୁମକୁ କି ଆଶ୍ୱାସନା ଦେବି ! କେଉଁ ଭାଷାରେ କଣ କହି ବୁଝାଇବି । ତୁମେବା ନଜାଣିଛ କ'ଣ ! ମଣିଷ ମାତ୍ରେଇ ମରଣଶୀଳ, ଦିନେ ନା ଦିନେ ମରିବେ । ଏ ମହାସତ୍ୟକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଯେଉଁମାନେ ମରିଛନ୍ତି, କର୍ତ୍ତବ୍ୟ ପୀଠରେ, ସେମାନେ ମହାମରଣ ଆମନ୍ତ୍ରଣ କରିଛନ୍ତି । ତୁମେ କ'ଣ ଜାଣିନଥିଲ ଏଇଆ ଘଟିବ ବୋଲି । ଘଟିବା ପରେ, ମନକୁ ଏତେ ଅସ୍ଥିର କରୁଛ କାହିଁକି ? ବର୍ତ୍ତମାନ ତୁମର ତାଙ୍କ ପ୍ରତି କିଛି କର୍ତ୍ତବ୍ୟ କରିବାର ବେଳ ଆସିଛି । ତାହା ସମ୍ପାଦନ କର । ଧୈର୍ଯ୍ୟଧର । ବାସ୍ତବତାକୁ ସ୍ୱୀକାର କରିନିଅ । ଯୁଧିଷ୍ଠିର ତୁମର ସନ୍ତାନ । ସେ ଧର୍ମପ୍ରାଣ ଓ ତୁମେ ତାଙ୍କଠାରୁ ଯଥାଯୋଗ୍ୟ ସେବା, ସମ୍ମାନ ଓ ଭକ୍ତି ପାଇବ । ତୁମେ ପାଣ୍ଡବମାନଙ୍କୁ ନିଜର ପୁଅରୂପେ ଗ୍ରହଣକରି, ବିଦାୟ ନେଇଥିବା ସନ୍ତାନ ମାନଙ୍କ ସ୍ମୃତିରେ ଜର୍ଜରିତ ହୁଅ ନାହିଁ । ପିତାଙ୍କ ସ୍ନେହ, ଶ୍ରଦ୍ଧା, ପ୍ରେମ, ଆଶିର୍ବାଦ, ଶୁଭେଚ୍ଛା ସବୁ ପାଣ୍ଡବମାନଙ୍କୁ ଅର୍ପଣ କର । ଜୀବନର ଯନ୍ତ୍ରଣା ଓ ଦୁଃଖାବେଗକୁ ସହିଯିବାକୁ ମନଟାକୁ ପ୍ରସ୍ତୁତ କରିନିଅ ।''

କିଛି ସମୟପରେ ଆସି ପହଞ୍ଚିଲେ ଶ୍ରୀକୃଷ୍ଣ । ସେ ବ୍ୟାସଦେବ ଓ ଧୃତରାଷ୍ଟ୍ରଙ୍କୁ ସମ୍ମାନ ଜଣାଇଲେ । କହିଲେ,''ମୁଁ ବ୍ୟକ୍ତିଗତ ଭାବରେ ମୋ ତରଫରୁ ଓ ପାଣ୍ଡବମାନଙ୍କ ତରଫରୁ ଦେବୀ ଗାନ୍ଧାରୀଙ୍କୁ ଓ ରାଜା ଧୃତରାଷ୍ଟ୍ରଙ୍କୁ ସମବେଦନା ଜ୍ଞାପନ କରିବାକୁ ଆସିଛି । ଆପଣ ଧୈର୍ଯ୍ୟର ସହିତ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତୁ ।''

''ହେ କେଶବ । ମୋର ଏହି ଦୁର୍ଭାଗ୍ୟ ପାଇଁ ମୁଁ ଆପଣଙ୍କୁ ଦାୟୀ କରୁନି । ପାଣ୍ଡବ ମାନଙ୍କୁ ମଧ୍ୟ ଦୋଷ ଦେଉନାହିଁ । ଆପଣତ ଶାନ୍ତି ସ୍ଥାପନ ପାଇଁ ଆମକୁ ଅନୁରୋଧ କରିଥିଲେ । ତାହା ଗୃହୀତ ହୋଇଥିଲେ, ଏ ବିପର୍ଯ୍ୟୟ ଘଟି ନଥାନ୍ତା । ମୁଁ ହତଭାଗ୍ୟ, ଏତେ ଦୁଃଖ ମୋତେ ଭୋଗିବାକୁ ଥିଲା ।''

''ତାହାହିଁ ଭାଗ୍ୟର ଗତି । ଆପଣ ମନକୁ ବୁଝାଇଦିଅନ୍ତୁ । ଧର୍ମପୁତ୍ର ରାଜାହିସାବରେ ଅଭିଷିକ୍ତ ହେବେ କିନ୍ତୁ ସେ ରାଜ୍ୟ ଶାସନ କରିବେ ଆପଣଙ୍କ ପ୍ରତିନିଧି ଭାବରେ । ଆପଣଙ୍କର ରାଜକୀୟ ଅଧିକାର କ୍ଷୁଣ୍ଣ କରାଯିବ ନାହିଁ । ଗାନ୍ଧାରୀ ଓ ଆପଣଙ୍କର ଅନୁଗତ ପୁତ୍ର ହିସାବରେ ସେ ଆପଣମାନଙ୍କର ସେବା କରିବେ । ଆପଣଙ୍କ ନିଷ୍ପତ୍ତି ସବୁ କ୍ଷେତ୍ରରେ କାର୍ଯ୍ୟକାରୀ ହେବ । ପାଣ୍ଡବମାନେ ଆପଣଙ୍କ ଆଶୀର୍ବାଦ ନେବାକୁ ଆସୁଛନ୍ତି ।''

ଯୁଧିଷ୍ଠିର ତାଙ୍କ ଭାଇମାନଙ୍କୁ ନେଇ ଉପସ୍ଥିତ ହେଲେ । ବିଧବା ରମଣୀ ମାନଙ୍କର କରୁଣ ବିଳାପରେ ହସ୍ତିନାପୁରୀ ଉଚ୍ଛୁଳି ଉଠୁଛି । ତାଙ୍କ ଆଖିରୁ ଧାରଧାର ଲୁହ ଗଡ଼ି ଆସିଲା । ସେ ମୁଣ୍ଡପାତି ନିଜର ନାମ ଉଚ୍ଚାରଣ କରି ଧୃତରାଷ୍ଟ୍ରଙ୍କୁ ପ୍ରଣାମ କଲେ ।

ପୁତ୍ରଶୋକରେ ଅସ୍ଥିର ଧୃତରାଷ୍ଟ୍ର ଅତି ଉଦାସୀନ ଭଙ୍ଗୀରେ ଧର୍ମରାଜଙ୍କୁ ଆଲିଙ୍ଗନ କଲେ । ତାଙ୍କ ଆଖିରେ ଭୀଷଣ କ୍ରୋଧର ଲାଲିମା କିନ୍ତୁ ଓଠରେ ସହାନୁଭୂତି ଓ ସ୍ନେହର ହାସ୍ୟରେଖା । କପାଳରେ ଘୃଣାର କୁଂଚିତ ଗାର । ଏ ପ୍ରତିକ୍ରିୟା ଶ୍ରୀକୃଷ୍ଣଙ୍କ ଆଖିକୁ ଏଡାଇ ପାରି ନଥିଲା । ସେ ଜାଣନ୍ତି, ଏହାର ପ୍ରଚଣ୍ଡ ପ୍ରଭାବ ପଡିବ ଭୀମଙ୍କ ଉପରେ । ଧର୍ମରାଜ ଓ ଧୃତରାଷ୍ଟ୍ର ଶ୍ରଦ୍ଧା ସମ୍ଭାଷଣ ବିନିମୟ କରୁଥିବା ବେଳେ, ଶ୍ରୀକୃଷ୍ଣ ତାଙ୍କ ସାରଥି ଦାରୁକଙ୍କୁ କହିଲେ, ''ରଥରୁ ଭୀମଙ୍କର ଲୌହମୂର୍ତ୍ତିଟିକୁ ନେଇ ଆସ ।'' ଦୁର୍ଯ୍ୟୋଧନ ଏ ମୂର୍ତ୍ତିଟିକୁ ଠିକ୍ ଭୀମଙ୍କ ଆକୃତିରେ ଗଢ଼ି, ପ୍ରତିଦିନ ତା' ଉପରେ ଗଦାମାଡ କରୁଥିଲେ । ଶ୍ରୀକୃଷ୍ଣ ତାହା ନେଇଯାଇଥିଲେ ଉଆସର ପ୍ରବେଶ ଦ୍ୱାରରୁ । ରଥରେ ନେଇ ରଖିଥିଲେ ।

ଭୀମ ଅଭିବାଦନ ଜଣାଇବାକୁ ଗଲାବେଳେ ଶ୍ରୀକୃଷ୍ଣ ତାଙ୍କୁ ଅଟକାଇ ଦେଲେ ଓ ପଠାଇଲେ ଅର୍ଜୁନଙ୍କୁ । ତା'ପରେ ପରେ ଗଲେ ନକୁଳ ସହଦେବ ଓ ସାତ୍ୟକି, ତାଙ୍କୁ ପ୍ରଣାମ ଜଣାଇବାକୁ ।

ଧୃତରାଷ୍ଟ୍ର ସମସ୍ତଙ୍କୁ ଆଲିଙ୍ଗନ କରି ଆଶୀର୍ବାଦ ଦେଲେ । ତାପରେ ଅତ୍ୟନ୍ତ କୋମଳ କଣ୍ଠରେ କହିଲେ,''ମୋ ଭୀମସେନ କଣ ନାହାନ୍ତି କି ?''

''ହଁ ଅଛନ୍ତି, ଏଇ ଆପଣଙ୍କ ପାଖକୁ ଯାଉଛନ୍ତି ।'' ଏତିକି କହି ଶ୍ରୀକୃଷ୍ଣ ଭୀମସେନଙ୍କୁ ସେଇ ଲୌହମୂର୍ତ୍ତିଟିକୁ ଧୃତରାଷ୍ଟ୍ରଙ୍କ ପ୍ରସାରିତ ବାହୁବଳୟକୁ ଠେଲିଦେଲେ । ଧୃତରାଷ୍ଟ୍ର ଏତେ କ୍ରୋଧାନ୍ଧ ଥିଲେ ଯେ ମଣିଷ ଓ ଲୌହର ସ୍ପର୍ଶମଧ ବାରି ପାରିଲେ ନାହିଁ ।

ସେ ଗଭୀର ଆନନ୍ଦ ଛଳନାକରି କ୍ରୋଧାବେଗରେ ଏପରି ଆଲିଙ୍ଗନ କଲେଯେ, ଲୌହମୂର୍ତ୍ତିଟି ଭାଙ୍ଗି ଖଣ୍ଡଖଣ୍ଡ ହୋଇଗଲା । ଯେଉଁ ମୂର୍ତ୍ତି ଦୁର୍ଯ୍ୟୋଧନଙ୍କ ଗଦାମାଡ ଖାଇ ଟିକିଏବି ବିକୃତ ହୋଇନଥିଲା, ତାହା ଭାଙ୍ଗିଯିବାର ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ବୃଦ୍ଧ ଧୃତରାଷ୍ଟ୍ରଙ୍କ ଭିତରେ ଏତେ ଶକ୍ତି ସଞ୍ଚିତ ଥିଲା, ନା ପ୍ରତିଶୋଧ ନେବା ବେଳେ ଶକ୍ତି ବହୁଗୁଣିତ ହୋଇଯାଇଥିଲା !

ଧୃତରାଷ୍ଟ୍ର ଚମକି ପଡି ଚିତ୍କାର କଲେ,''ଆହାଃ, ମୁଁ କଣ କଲି ! ମୁଁ ହତଭାଗ୍ୟ କଣକଲି ! ମୁଁ ମୋ ପରାକ୍ରମୀ ପୁତ୍ରକୁ ଅନନ୍ଦ ଆବେଗ ଭିତରେ ଆଲିଙ୍ଗନ କରି ହତ୍ୟାକରିଦେଲି । ଶତ ଧିକ୍କାରମୋତେ ଏ ଘୃଣ୍ୟ ଜୀବନକୁ ବଞ୍ଚାଇ ରଖି ଆଉକି ଲାଭ ? ମୁଁ ଏବେ କଣ କରିବି ?''

''ବ୍ୟସ୍ତ ଆଉ ବ୍ୟଥିତ ହୁଅନ୍ତୁ ନାହିଁ କୁରୁଶ୍ରେଷ୍ଠ ! ମୁଁ ଆପଣଙ୍କ ଭିତରେ ପ୍ରଳୟ ପ୍ରତିହିଂସାର ଆଭାସ ପାଇଥିଲି । ଭୀମସେନ ଆପଣଙ୍କୁ ଅଭିନନ୍ଦନ ଜଣାଇବାକୁ ଗଲାବେଳେ ମୁଁ ତାଙ୍କୁ ଅଟକାଇ ଦେଇଥିଲି । ଜାଣିଥିଲି, ଆପଣଙ୍କ ବାହୁବଳ ପାଖରେ ଭୀମଙ୍କର ଭୀମବଳ ହାର ମାନିବ । ଭୀମ ଜୀବିତ ଫେରିବେ ନାହିଁ । ଆପଣଙ୍କୁ ଅଧିକ ମନସ୍ତାପ ଓ ମୃତ୍ୟୁଦୁଃଖ ଦେବିନାହିଁ ବୋଲି ଭାବିଲି । ଦୁର୍ଯ୍ୟୋଧନ ଭୀମଙ୍କର ଯେଉଁ ଲୌହ ମୂର୍ତ୍ତିଟି ଉପରେ ପ୍ରତିଦିନ ଗଦାମାଡ କରୁଥିଲେ ତାହାଆଣି ଆପଣଙ୍କ ପାଖରେ ହାବୁଡେଇ ଦେଇଥିଲି । ଆପଣ ପ୍ରକୃତିସ୍ଥ ନଥିଲେ ବୋଲି, ସ୍ପର୍ଶଭ୍ରମ ସୃଷ୍ଟି ହେଲା । ମୋର ଧୃଷ୍ଟତା ମାଫ କରିବେ ରାଜନ୍ । ଶାନ୍ତ ହୁଅନ୍ତୁ । ଆପଣଙ୍କ ସୌଭାଗ୍ୟ ଓ ଧର୍ମବଳରୁ ଭୀମସେନ ବଞ୍ଚିଯାଇଛନ୍ତି । ଲୌହମୂର୍ତ୍ତି ଭାଙ୍ଗି ଯାଇଛି । ପୁତ୍ରଶୋକରେ ବିଚଳିତ ହୋଇ ଆପଣ ଏପରିକରି ଦେଲେ । ଏଥିପାଇଁ ନିଜକୁ ମଧ ଅପରାଧୀ ବୋଲି ମନେ କରନ୍ତୁ ନାହିଁ ।

ଧୃତରାଷ୍ଟ୍ର କ୍ରନ୍ଦିତକଣ୍ଠରେ କହିଲେ,''ସମସ୍ତେ ମଲେ, ଅଥଚ ମୋ ଭିତରର ଅସୁରଟା ଏପର୍ଯ୍ୟନ୍ତ ମରିନି । କାହିଁ...କାହିଁ ମୋ ଭୀମ ?''

ଭୀମସେନ ତାଙ୍କ ପାଖକୁ ଯାଇ ପାଦଛୁଇଁ ପ୍ରଣାମ କଲେ ଓ ଧୃତରାଷ୍ଟ୍ର ତାଙ୍କୁ ବୁକୁରେ ଲଗାଇ ଅଲିଙ୍ଗନ କଲେ । ଆଶୀର୍ବାଦ ଦେଇ କହିଲେ, ''ତୁମ ସମସ୍ତଙ୍କର ମଙ୍ଗଳ ହେଉ ।''

ଗାନ୍ଧାରୀଙ୍କ ମନରେ ପାଣ୍ଡବମାନଙ୍କ ପାଇଁ କମ୍ କ୍ରୋଧ ନଥିଲା । ସେ ମଧ୍ୟ ଆହତ ସର୍ପିଣୀପରି ବିଚଳିତ ଥିଲେ । ବ୍ୟାସଦେବ ତାଙ୍କ ପାଖକୁ ଯାଇ ବୁଝାଇଲେ,''ରାଜରାଣୀ ! ତୁମେ ପାଣ୍ଡବମାନଙ୍କ ଉପରେ କ୍ରୋଧ ପ୍ରକାଶ କରନାହିଁ । ତୁମେତ ଆଶୀର୍ବାଦ ଛଳରେ ଯୁଦ୍ଧଆରମ୍ଭ ପୂର୍ବରୁ ଦୁର୍ଯ୍ୟୋଧନଙ୍କୁ କହିଥିଲ,''ଯତୋଧର୍ମ, ତତୋଜୟ'' ବୋଲି । ଆଜି ତାହାହିଁ ହୋଇଛି । ଅତୀତର ଘଟଣାକୁ ମନରେ ସ୍ଥାନ ଦେଇ ବ୍ୟଥିତ କିମ୍ବା ପ୍ରତିକ୍ରିୟା ଶୀଳ ହେବା ଉଚିତ୍ ନୁହେଁ । ମନରୁ କ୍ରୋଧ ପରିହାର କର । ବାସ୍ତବତାକୁ ସତ୍ୟ ବୋଲି ସ୍ୱୀକାର କରି ମନକୁ ସ୍ଥିର କରିନିଅ ।''

''ହେ ମହର୍ଷି ! ହେ ପିତା ! ମୁଁ ପାଣ୍ଡବମାନଙ୍କର ବିଜୟଲାଭ ପାଇଁ ଆଦୌ ଈର୍ଷାଳୁ ନୁହେଁ । ଯୁଦ୍ଧ ନାମରେ ସେମାନେ ଯେଉଁ କପଟ କରି ଅନ୍ୟାୟର ଆଶ୍ରୟନେଇ ମୋର ସର୍ବନାଶ କରିଛନ୍ତି, ତାହାମୁଁ ଭୁଲିବି କିପରି ? ଶ୍ରୀକୃଷ୍ଣ ପରା ନ୍ୟାୟର ଅବତାର । ସେ ଭଲରୂପେ ଜାଣିଥିଲେ ଯେ, ଦୁର୍ଯ୍ୟୋଧନ ଗଦାଯୁଦ୍ଧରେ ଭୀମଙ୍କଠାରୁ ଅଧିକ ଶକ୍ତିଶାଳୀ । କେବେହେଲେ ଭୀମ ତାଙ୍କୁ ଯୁଦ୍ଧରେ ପାରିବେ ନାହିଁ, ତେଣୁ ନାଭିରନିମ୍ନ ଅଂଶରେ ଆଘାତ କରିବା ପାଇଁ ତାଙ୍କୁ ଇଙ୍ଗିତ ଦେଲେ । ଗଦାଯୁଦ୍ଧର ନୀତିନିୟମ ଉଲଂଘନ କରାଗଲା । ଅନ୍ୟାୟ ଭାବରେ ଦୁର୍ଯ୍ୟୋଧନଙ୍କର ଉରୁଭଙ୍ଗ କରି ତାଙ୍କୁ ହତ୍ୟା କଲେ । ଏହା ବାସୁଦେବଙ୍କର ଏହା କେଉଁ ପ୍ରଭୁପଣିଆ । ସେ କ୍ଷମଣୀୟ ନୁହନ୍ତି ।''

ଭୀମ ଏହାଶୁଣି ହାତଯୋଡି ପାଦରେ ପ୍ରଣାମଢାଳି କହିଲେ, ''ମା ! ମୋତେ କ୍ଷମାଦିଅନ୍ତୁ । ମୁଁ ମୋର ଆତ୍ମରକ୍ଷା ପାଇଁ ଏ ଅନ୍ୟାୟପନ୍ଥାର ଆଶ୍ରୟ ନେଲି । ଏଥିରେ ବାସୁଦେବଙ୍କୁ ଭର୍ତ୍ସନା କରିବାର କିଛି ନାହିଁ । ଆପଣତ ଜାଣନ୍ତି, କୁରୁ ରାଜସଭାରେ ଯେଉଁ ଦିନ ଦୁର୍ଯ୍ୟୋଧନ, ଏତେ ଗୁରୁଜନ ଓ ସଭାସଦଙ୍କ ସମ୍ମୁଖରେ କୁଳବଧୂ ଦ୍ରୌପଦୀଙ୍କୁ, ଦୁଃଶାସନ ହାତରେ, ଚୁଟି ଧରାଇ ଟାଣିଟାଣି ଆଣିଲେ, ଏବଂ ଉରୁବାଡେଇ ତାଙ୍କୁ ଆଲିଙ୍ଗନ କରିବାକୁ ଅଶ୍ଳିଳ ଇଙ୍ଗୀତ ଦେଲେ, ସେଇଦିନ ମୁଁ ତାଙ୍କୁ ସେଇଠାରେ ମାରି ଦେଇଥାନ୍ତି । ଅବଶ୍ୟ ସେଦିନ ତାଙ୍କୁ ନମାରି, ତା'ର ମୃତ୍ୟୁ ଅଭିଷେକ କରି ଦେଇଥିଲି । ସେଇଦିନ ଠାରୁ ଦୁର୍ଯ୍ୟୋଧନଙ୍କର ମୃତ୍ୟୁ ହୋଇଯାଇଥିଲା । ଗଦାଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ଜୀଅନ୍ତା ସବଟାକୁ ମାରି, ମୋ ପ୍ରତିଜ୍ଞା ପୂରଣ କରିଛି ।''

''ତେବେ ମୋର ଅନ୍ୟ ଶହେ ପୁଅ ତୁମର କିକ୍ଷତି କରିଥିଲେ ? ତାଙ୍କ ଭିତରୁ ଯଦି ଜଣକୁ ବଞ୍ଚାଇ ରଖିଥାନ୍ତ ତାହେଲେ ଏ ବଂଶରକ୍ଷା ହୋଇଥାନ୍ତା । ସେ ତାର ବୃଦ୍ଧ ପିତାମାତାଙ୍କ ଶେଷ ମୁହୂର୍ତ୍ତରେ, ସହାୟକ ହୋଇଥାନ୍ତା ।

ଧର୍ମପୁତ୍ର ଯୋଡ଼ ହସ୍ତରେ ମାଙ୍କୁ ପ୍ରମାଣକରି କହିଲେ,''ମା ! ଆପଣଙ୍କର ଅଧମପୁତ୍ର ଯୁଧିଷ୍ଠିର । ଏ ମହା ପ୍ରଳୟର ସ୍ରଷ୍ଟା । ଆପଣଙ୍କର ସମସ୍ତ ପୁତ୍ର ମୋରି ପାଇଁ ନିହତ ହୋଇଛନ୍ତି । ମୁଁ ହେଉଛି ମହାପାପୀ । ମୋ ପାପ ପ୍ରକ୍ଷାଳନ ପାଇଁ ସୃଷ୍ଟିର ସାଗର ଜଳମଧ୍ୟ ଯଥେଷ୍ଟ ନୁହେଁ । ମୋ ନିଜକୁ ମୁଁ କ୍ଷମା ଦେଇ ପାରୁନି । ଆପଣଙ୍କଠାରୁ କ୍ଷମା ମାଗିବାକୁ ମୋ ହୃଦୟ କହୁନି । ମୋର ସମସ୍ତ ପ୍ରିୟଭାଇ ବନ୍ଧୁ, ଗୁରୁଜନ ଓ ରାଜନ୍ୟମଣ୍ଡଳୀ ହରାଇ, ମୁଁ ଆଉ ରାଜପଣ କରିବାକୁ ଆଦୌ ଇଚ୍ଛା କରୁନାହିଁ । ମୁଁ ଚାହେଁ ଆପଣଙ୍କର କଠୋର ଅଭିଶାପ... ସେ ଅଭିଶାପ ମୋତେ ଦିଅନ୍ତୁ ମାଆ । ମୁଁ ପୋଡି ଭସ୍ମ

ହୋଇଯାଏ । ଏ ଅଧର୍ମ ରାଜ୍ୟର ଭସ୍ମ ସବୁରି ଭସ୍ମ ସହିତ ମିଶି ଏକ ହୋଇଯାଉ । ତଥାପି ଯଦି ବଞ୍ଚିବାର ଅଧିକାର ମିଳିବ, ତା'ହେଲେ ଆପଣ ଦୁହିଁଙ୍କର ପବିତ୍ର ଚରଣ ସେବାରେ, ଏ ଅଧମ ନିଜକୁ ଉତ୍ସର୍ଗ କରିବ । ଗୋଟିଏ ପୁଅ ପାଇଁ ଏତେ ବ୍ୟସ୍ତ କାହିଁକି ? ଆମେ ପାଞ୍ଚଟା ପୁଅଅଛୁ ।''

ଗାନ୍ଧାରୀଙ୍କ ମନ ତରଳିଗଲା । କ୍ରୋଧର ବରଫ ପାହାଡଟା ଶିତଳ ହୋଇଗଲା । ଗାନ୍ଧାରୀ ଦୀର୍ଘ ଶ୍ୱାସ ନେଲେ । କିଛି ସମୟ ପାଇଁ ନିର୍ବାକ ହୋଇ ଛିଡାହେଲେ । ମୁହଁ ବୁଲାଇ ନେବାବେଳେ ପଟିସନ୍ଧିରୁ ଯୁଧିଷ୍ଠିରଙ୍କ ପାଦ ଆଙ୍ଗୁଳିର ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା ଓ ସଙ୍ଗେ ସଙ୍ଗେ ଶୁଭ୍ର ନଖ ଗୁଡିକ କଳାହୋଇଗଲା ।

ଅର୍ଜ୍ଜୁନ, ନକୁଳ ସହଦେବ ପ୍ରଭୃତି ଏହା ଲକ୍ଷ୍ୟକରି ଭୟରେ ଶ୍ରୀକୃଷ୍ଣଙ୍କ ପଛରେ ଲୁଚିଗଲେ । ଗାନ୍ଧାରୀ ସେମାନଙ୍କୁ ଆଶ୍ୱାସନା ଦେଇ ଆଶୀର୍ବାଦ ଦେଲେ । ଯୁଧିଷ୍ଠିର ଭାଗ୍ୟବାନ୍, ଗାନ୍ଧାରୀଙ୍କ ଅଗ୍ନିଦୃଷ୍ଟିରେ ସେ ଜଳିଯାଇଥାନ୍ତେ, ରକ୍ଷାପାଇଗଲେ । ଭୀମ ମଧ କମ ଭାଗ୍ୟବାନ ନୁହଁନ୍ତି ଧୃତରାଷ୍ଟ୍ରଙ୍କ କ୍ରୁର କବଳରୁ ତାଙ୍କୁ ରକ୍ଷାମିଳିଗଲା ।

ଏହି ସମୟରେ ଦ୍ରୌପଦୀ ଆସି ଗାନ୍ଧାରୀଙ୍କୁ ପ୍ରଣାମ କଲେ । ଗାନ୍ଧାରୀ ଦ୍ରୌପଦୀଙ୍କ ଆଖିର ଲୁହ ପୋଛି ପ୍ରବୋଧନା ଦେଇ କହିଲେ, ''ପାଞ୍ଚାଳୀ ! ମାଆ ମୋର ! ତୁମ ଦୁଃଖରେ ମୁଁ ସମଦୁଃଖିନୀ । ନିଜକୁ ନିଜେ ଆଶ୍ୱାସନା ଦେବାବ୍ୟତୀତ ଆଉ ଅନ୍ୟକିଛି ନାହିଁ । ତୁମେ ଆଉ ମୁଁ ହତଭାଗିନୀ, ଆମେ ଆମର ସମସ୍ତ ପୁତ୍ରମାନଙ୍କୁ ହରାଇଛେ ।''

ତାପରେ ପାଣ୍ଡବମାନେ ମା କୁନ୍ତୀଙ୍କ ପାଖକୁ ଗଲେ । କୁନ୍ତୀ ସେତେବେଳେ ହସ୍ତିନାରେ ଥିଲେ । ଯୁଦ୍ଧ ସମୟରେ ମଧ ସେ ହସ୍ତିନାରେ ରହୁଥିଲେ । ନିଜର ସନ୍ତାନ ମାନଙ୍କୁ ହରାଇ ଦ୍ରୌପଦୀ ଓ ଶୁଭଦ୍ରା ପ୍ରଭୃତି ବୋହୂମାନେ କାନ୍ଦୁଥାନ୍ତି । କାନ୍ଦୁଥାନ୍ତି ବିଧବା ବଧୂଗଣ । କୁନ୍ତୀ ମୁହଁ ରେ ଲୁଗାକାନି ଘୋଡାଇ କାନ୍ଦୁଥାନ୍ତି । ସେ କାହାକୁ ବା କି ଆଶ୍ୱାସନା ଦେବେ । ତାଙ୍କୁ ମଧ କିଏ ଆଶ୍ୱାସନା ଦେବ !

ପାଣ୍ଡବ ପୁତ୍ରଗଣ ସାଶ୍ରୁନୟନରେ ଆସି ମାଆଙ୍କୁ ପ୍ରଣାମ କଲେ । କୁନ୍ତୀ କାନ୍ଦି କାନ୍ଦି ସବୁରି ପିଠି ଆଉଁଶୁଥାନ୍ତି । ଏତେ ଅଶ୍ରୁଭିତରେ ବି କେତେ ଆନନ୍ଦ । ପୁତ୍ରମାନଙ୍କର ଶିର ଚୁମ୍ବନ କଲେ । ଆଶୀର୍ବାଦ ଦେଇ କମ୍ପିତ କଣ୍ଠରେ କହିଲେ,''ତୁମେମାନେ ଆଜନ୍ମ ଦୁଃଖୀ । ଏ ବିଜୟକୁ ସ୍ୱାଗତ ଜଣାଉଛି ।''

ପୁତ୍ରବଧୂମାନେ ପ୍ରଣାମ ଜଣାଇ ବିକଳ ହୋଉଥାନ୍ତି । ଗାନ୍ଧାରୀ ଆସି ସମସ୍ତଙ୍କୁ କହିଲେ,''ମାଆ ମୋର । ତୁମେ ସବୁ ମୋତେ ଟିକିଏ ଦେଖ । ତୁମ ମାନଙ୍କପରି ମୁଁ ମଧ ପୁତ୍ରହୀନା । କିଏ କାହାକୁ ଧୈର୍ଯ୍ୟ ଦେଇ ପାରିବା । ଏ ସବୁ କାଳର ଗତି ବୋଲି ମନେକର । ମୋର ଅପରାଧ ପାଇଁ ଏତେବଡ଼ କୁଳ ଧ୍ୱଂସ ହୋଇଗଲା । ସବୁ କ୍ରୋଧ ଅଭିଶାପ ମୁଁ ମୋ ଉପରକୁ ବରି ନେଉଛି ।

ଭଗବାନ ବ୍ୟାସ ଦେବଙ୍କ ନିର୍ଦ୍ଦେଶ ଅନୁସାରେ ମହାରାଜା ଧୃତରାଷ୍ଟ୍ର, ପାଣ୍ଡବଗଣ, ସମବେତ ମହିଳାଗଣ ଓ ଶ୍ରୀକୃଷ୍ଣ ପ୍ରଭୃତି କୁରୁକ୍ଷେତ୍ର ଯୁଦ୍ଧଭୂମିକୁ ଗଲେ । ବିଧବା ବଧୂମାନେ ନିଜର ପତି, ପିତା, ଭାଇ, ପୁତ୍ର ପ୍ରଭୃତିଙ୍କର ଶବଦେଖି ଚିତ୍କାର କରି ଉଠିଲେ । ଶ୍ୱାନ, ଶୃଗାଳ, ଶାର୍ଗୁଣାମାନେ ସେମାନଙ୍କ ଶରୀରର ମେଦ ମାଂସ ମହା ଆନନ୍ଦରେ ଭକ୍ଷଣ କରୁଥାନ୍ତି । କି ବିକଟାଳ ସେ ଦୃଶ୍ୟ । ମୃତ ମଣିଷ ପାଖରେ ମରିପଡିଛନ୍ତି ଅଜସ୍ର ଅଶ୍ୱଗଜ । ଛିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଏଣେତେଣେ ବିକ୍ଷିପ୍ତ ହୋଇ ପଡିଛି । କାହାର ଶରୀରରେ ମସ୍ତକ ନାହିଁ କେବଳ ପଡିଛି କବନ୍ଧ । ସ୍ତ୍ରୀ ଲୋକମାନେ ସେ କବନ୍ଧର ବିକୃତ ଅସ୍ୱାଭାବିକ

ରୂପଦେଖି ଚିହ୍ନି ପାରୁନାହାନ୍ତି । ମୁଣ୍ଡମାଳ ଗଡୁଛି । କେତେଯେ ମୁକୁଟ ଶିରସ୍ତ୍ରାଣ ପଡ଼ିଛି ତାର ସୀମା ନାହିଁ ।

ବିଧବା ମହିଳାମାନେ ଉନ୍ମାଦିନୀ ହୋଇ ଦଉଡୁଥାନ୍ତି । କିଏ ଝୁଣ୍ଟିପଡ଼ି ରୁଧିରାକ୍ତ । କାହାର ପାଦଚଳୁନି, ସତେ ଯେପରି ନିର୍ଜୀବ । କିଏ ନିଜର ପତି ବା ପୁତ୍ରର କଟାମୁଣ୍ଡପାଇ କୋଳରେ ଧରି ବାହୁନି ବାହୁନି କାନ୍ଦୁଛି । କାହାକୁ କେବଳ କଟା ଶରୀରଟା ମିଳିଛି କିନ୍ତୁ ମୁଣ୍ଡଟା ମିଳିନାହିଁ । ଯେଉଁ ରାଜ ବଧୂମାନଙ୍କୁ ସୂର୍ଯ୍ୟମଧ ଦିନବେଳେ ଦେଖିପାରି ନଥିଲେ, ଆଜି ସେମାନେ ବିଧବା ବେଶରେ ମୁକ୍ତ ଆକାଶ ତଳେ ମୁଣ୍ଡପିଟିପିଟି କାନ୍ଦୁଛନ୍ତି । ଏ ଦାରୁଣ ଦୃଶ୍ୟ ବର୍ଣ୍ଣନାତୀତ ।

ସେବକମାନେ ସମସ୍ତଙ୍କ ପାଇଁ ଗୋଟିଏ ଚିତା ପ୍ରସ୍ତୁତ କଲେ । ବ୍ୟକ୍ତିଗତ ଚିତା ସମ୍ଭବପର ନୁହେଁ । ଶତ୍ରୁ, ମିତ୍ର ସମସ୍ତଙ୍କୁ ସମାନ କରି ଦେଇଛି ମୃତ୍ୟୁର ଶୀତଳହସ୍ତ । ପର ଅପର ଭେଦଭାବର ବହଳ ପର୍ଦାଟି ଚିରି ଉଡି ଯାଇଛି । ଜୀବନ, ସମସ୍ତଙ୍କୁ ନିଜନିଜଠାରୁ ଦୂରେଇ ନେଇଥିଲା ସିନା, ମୃତ୍ୟୁ, କିନ୍ତୁ ସମସ୍ତଙ୍କୁ ଆବେରି ନେଲା ଗୋଟିଏ କୋଳକୁ ।

ଗାନ୍ଧାରୀଙ୍କୁ ନିଆଗଲା ଦୁର୍ଯ୍ୟୋଧନଙ୍କ ପାଖକୁ । ସେ ଏବଂ ଧୃତରାଷ୍ଟ୍ର ପୁତ୍ରର ଶରୀରକୁ ଅଣ୍ଡାଳି ଅଣ୍ଡାଳି ସେଇଠାରେ ମୂର୍ଚ୍ଛିତ ହୋଇଗଲେ । ଦୁର୍ଯ୍ୟୋଧନଙ୍କ ପାଇଁ ଏକ ସ୍ୱତନ୍ତ୍ର ଚିତା ପ୍ରସ୍ତୁତ ହୋଇଥିଲା ।

ସମସ୍ତେ ତିଳତର୍ପଣ କଲେ । ସଂସ୍କାର କର୍ମ କରାଗଲା । କୁନ୍ତୀ କର୍ଣ୍ଣଙ୍କ ଜନ୍ମ ରହସ୍ୟ ପ୍ରକାଶକରି ତାଙ୍କୁ ଅର୍ଘ୍ୟଦାନ କରିବାକୁ କହିଲେ । ଆଶ୍ଚର୍ଯ୍ୟ ହୋଇଗଲେ ପାଣ୍ଡବମାନେ । ସମସ୍ତେ କାନ୍ଦି ଉଠିଲେ । ଗାନ୍ଧାରୀ କୃଷ୍ଣଙ୍କୁ କହିଲେ,''ହେ ଅଚ୍ୟୁତ ! ଆମ ଦୁହିଁଙ୍କର ଅନ୍ଧତ୍ୱ ଆଜି ଆଶୀର୍ବାଦରେ ପରିଣତ ହୋଇଛି । ଏହି ପ୍ରଳୟ ପ୍ରାନ୍ତରର କାଳଗ୍ରାସୀ ଦୃଶ୍ୟ, ଆମେ ଦେଖି ପାରୁନୁ କିନ୍ତୁ ଅନୁଭବ କରୁଛୁ । ମୁଁ ମୋ କନ୍ୟା ଦୁଃଶଳା ଓ ଅନ୍ୟ ରାଜବଧୂମାନଙ୍କର କ୍ରନ୍ଦନ ସ୍ୱର ବାରି ପାରୁଛି । ମୋର ଅନ୍ତର୍ଦାହ ଏପରି ହେଉଛି ଯେ ମୁଁ ତୁମକୁ କ୍ଷମା ଦେଇ ପାରିବି ନାହିଁ । ମୁଁ ଅଭିଶାପ ଦେଉଛି ।

''ତୁମେ ଜାଣିଜାଣି ମୋ ବଂଶକୁ ବିନାଶ କରିଛ । ତୁମବଂଶ ଏଇପରି ନିଜନିଜ ଭିତରେ ଲଢ଼ାଇ କରି ନାଶ ହେବ । ତୁମେ ନିଜେ ନିଜହାତରେ ସେମାନଙ୍କୁ ସଂହାର କରିବ । କୁଳସ୍ତ୍ରୀମାନେ ବିଧବା ହୋଇ ଏଇପରି ଦୁଃଖ ଭୋଗ କରିବେ । ତୁମେ ନିଜେ ଏଇପରି ଅସ୍ତ୍ରାଘାତରେ ମୃତ୍ୟୁବରଣ କରିବ । ମୋ ଅଭିଶାପ ଅନ୍ୟଥା ହେବନି ଶ୍ରୀକୃଷ୍ଣ ।''

ମଧୁସୂଦନ ମୁଣ୍ଡପାତି ଏହି ଅଭିଶାପ ବର ବରଣ କରିନେଲେ ନିର୍ଦ୍ଦିଷ୍ଟ ତିଥିରେ ଦଶାହକର୍ମ ଓ ଅନେଷ୍ଟିକର୍ମ ସମାପ୍ତ ହେଲା ।

## ଅଠେଇଶ

# ।। ପାଣ୍ଡବଗଣ ହସ୍ତିନାକୁ ଫେରିଲେ ।।

ଧର୍ମରାଜ ଯୁଧିଷ୍ଠିର, ବ୍ୟାସଦେବ ଓ ଶ୍ରୀକୃଷ୍ଣଙ୍କର ଆଜ୍ଞା ପାଳନ କରି ହସ୍ତିନାପୁରରେ ପ୍ରବେଶକଲେ । ସାଥିରେ ଥିଲେ ଭାଇମାନେ । ହସ୍ତିନା ନଗର ସ୍ୱାଗତ ଦୀପାଳିରେ ସଜ୍ଜିତ ହେଇଛି । ଘରେ ଘରେ ଦୀପାଲୋକର ଉତ୍ସବ । ହସ୍ତିନାପୁର ମଧ କୂଳଖିଆ ବଢ଼ିଲା ନଈପରି ଭୀମକାନ୍ତ ଦେଖାଯାଉଛି । ଗୋଟିଏ ପାଖରେ ସୌନ୍ଦର୍ଯ୍ୟର ରୋଶଣି ଓ ଅନ୍ୟ ପାଖରେ ଶୂନ୍ୟତାର କରୁଣ କବିତା । ଶାନ୍ତି ଓ ପ୍ରଳୟର ସମ୍ମିଳିତ ସ୍ୱର ସ୍ୱାକ୍ଷର ବହନକରିଛି ହସ୍ତିନାପୁର ।

ନିଜର ବନ୍ଧୁ ବାନ୍ଧବ, ଜ୍ଞାତିକୁଟୁମ୍ବ, ଆତ୍ମୀୟ ସ୍ୱଜନ ମାନଙ୍କୁ ସଂହାର କରି, ହସ୍ତିନାର ଶୂନ୍ୟପୁରିକୁ ଫେରିବାରେ ଯୁଧିଷ୍ଠିରଙ୍କ ମନରେ ଟିକିଏ ବି ଉଲ୍ଲାସ ନାହିଁ । ଅନ୍ତର ଭିତରେ ବ୍ୟଥାର ଗୁଞ୍ଜନ, ବାହାରେ ରାଜକୀୟ ମର୍ଯ୍ୟାଦା ପାଳନର ଅନାସକ୍ତ ଅଭିନୟ । ବିଧବା ମହିଳାମାନଙ୍କର ମର୍ମନ୍ତୁଦ କରୁଣ କ୍ରନ୍ଦନ, କାନେ କାନେ ଧ୍ୱନିତ ହେଉଥାଏ । ସେ ଏଇ, ରକ୍ତସ୍ନାତ ଅଶ୍ରୁସିକ୍ତ ଅଭିନନ୍ଦନ ଗ୍ରହଣ କରିବାକୁ, ତାପଦଗ୍ଧ ମନକୁ ପ୍ରସ୍ତୁତ କରି ପାରୁନାହାଁନ୍ତି । ବିଦୀର୍ଣ୍ଣ କଣ୍ଠରେ କହିଲେ,

''ହେ ଦ୍ୱୀତୀୟ ପାଣ୍ଡବ ! ମୁଁ ରାଜପୁରୀକୁ ଶ୍ମଶାନ କରି ଦେଇଛି । ରାଜପଣ କରିବାକୁ ମୋତେ ଶାନ୍ତି ମିଳୁ ନାହିଁ । ମୋ ଭିତରେ ପାପ ଓ ଅପରାଧବୋଧ ସୃଷ୍ଟି ହୋଇଛି । ଏହାକୁ ଜୟକରିବା ପାଇଁ ଅସ୍ତ୍ରବଳ ମୋତେ ସାହାଯ୍ୟ କରିପାରିବ ନାହିଁ । ହତାଶାର କାଳଚକ୍ର ମୋତେ ଘୋଡାଇଛି । ପାପ ପ୍ରକ୍ଷାଳନ ପାଇଁ ଅନୁଶୋଚନା କରିବାକୁ, ମୋତେ ସୁଯୋଗ ଦିଅ । ନିଭୃତରେ ଅଶ୍ରୁମୋଚନ କରିବାକୁ, ମୋତେ ଶାନ୍ତ ନିର୍ଜନ ଅରଣ୍ୟ ଡାକୁଛି । ମୁଁ ବନବାସ କରିବାକୁ ଚାହେଁ । ତପସ୍ୟାକରି ମୋ ମନ ଓ ଶରୀରର ପ୍ରଚଣ୍ଡ ସ୍ରୋତକୁ ସୁଖାଇ ଦେବାମୋର ଇଚ୍ଛା । ତୁମେ କୁରୁସିଂହାସନ ଆରୋହଣ କର । ଆନନ୍ଦରେ ରାଜ୍ୟ ଶାସନ କର ।ମୋତେ ବିଦାୟ ଦିଅ ।''

ଭୀମସେନ କହିଲେ,''ରାଜନ୍ ! ଆପଣ ସେନାପତି, ଆମେସବୁ ଆପଣଙ୍କର ସୈନ୍ୟ । ନେତୃତ୍ୱ ଆପଣ ଦେବେ, ଆମେ ପଥ ଲଂଘନ କରିପାରିବୁ ନାହଁ ! ମୁଁ ମାରିଜାଣେ, ତାରି ଜାଣେନାହିଁ । ଆପଣ ମାରଣ ଓ ତାରଣ ଉଭୟ ମନ୍ତ୍ର ଶିଖିଛନ୍ତି । ମାରଣପର୍ବ ସରିଗଲା ଏବେ ତାରଣକୁ ତପସ୍ୟା ରୂପେ ଗ୍ରହଣ କରି ରାଜଗାଦି ମଣ୍ଡନ କରନ୍ତୁ । ପ୍ରଜାପାଳନ ଆପଣଙ୍କର ତପସ୍ୟା ହେଉ । ଆମେତ ଆଜ୍ଞା ପାଳନ କରିବାକୁ ତତ୍ପର । ଯେ କ୍ଷାତ୍ରଧର୍ମ ପାଳନ କରେ, ସମର ଶ୍ମଶାନକୁ ସମୃଦ୍ଧ କରିବା ତାର ଏକକାମ । ଆପଣ ତାହା କରିଛନ୍ତି ଏତେ ଅନୁଶୋଚନା କାହିଁକି ? ଏବେ ରାଜଧର୍ମ ପାଳନ କରନ୍ତୁ ।''

ଅର୍ଜୁନ ! ତୁମେ ପୃଥିବୀର ଅଦ୍ୱିତୀୟବୀର । ରାଜଧର୍ମ ପାଳନ କରିବାର ସାମର୍ଥ୍ୟ ଓ ଦକ୍ଷତା ତୁମର ସବୁଠାରୁ ଅଧିକ । ତୁମେ ରାଜସିଂହାସନରେ ଅଭିଷିକ୍ତ ହୋଇ । ମୋତେ ବନବାସ ପାଇଁ

ସୁଯୋଗଦିଅ । ଯୁଦ୍ଧ ଆରମ୍ଭରେ ତୁମେ ଯେପରି ମୋହାଗ୍ରସ୍ତହୋଇ କର୍ତ୍ତବ୍ୟକୁ ଭୁଲିଯାଇଥିଲ, ମୁଁ ସେପରି ଶୋକ ସନ୍ତପ୍ତ ହୋଇ କର୍ତ୍ତବ୍ୟ ଏଡ଼ାଇ ଦେଉଛି ବୋଲି ଭାବ ନାହିଁ । ମୋ ମନ ଓ ଶରୀର ଏତେ କ୍ଳାନ୍ତଯେ, ରାଜପଣ ବୋଝ ବୋହିବା ପାଇଁ ସମ୍ପୂର୍ଣ୍ଣ ଅସମର୍ଥ । ମୋ ଅନୁରୋଧକୁ ଆଦେଶ ବୋଲି ଗ୍ରହଣ କର ଅର୍ଜୁନ ! ସିଂହାସନ ଗ୍ରହଣ କର ।'' କରୁଣ କଣ୍ଠରେ କହିଲେ ଯୁଧିଷ୍ଠିର ।

''ହେ ଧର୍ମରାଜ ! ଆପଣଙ୍କ ଅନୁରୋଧ ମୋ ପାଇଁ ସର୍ବଦା ପବିତ୍ର ଆଦେଶ । ସେହି ଭାବରେ ମୁଁ ଏକା ନୁହେଁ ଭାଇମାନେ ମଧ୍ୟ ଗ୍ରହଣ କରିଆସୁଛନ୍ତି । ମୁଁ ମଧ ଗ୍ରହଣ କରୁଛି । ଆପଣ କଣ ମୋ ଭିତରେ କିଛି ତ୍ରୁଟି ଦେଖିଲେ, ଯାହାଫଳରେ ଆଦେଶ ପାଳନ କର୍ତ୍ତବ୍ୟଟାକୁ ଚେତାଇ ଦେଉଛନ୍ତି ? ତେବେ ଏପର୍ଯ୍ୟନ୍ତ ଯେଉଁ ରାଜାଦେଶ ପାଳନ କରି ଆସିଛି, ଆଜି ତାହା ପାଳନ କରି ପାରିବି ନାହିଁ, ରାଜନ୍ । ଧୃଷ୍ଟତା ପାଇଁ ଶାସ୍ତି ମାଗି ନେଉଛି । ଧର୍ମରାଜ ସବୁ ପ୍ରଜାଙ୍କର ହୃଦୟ ସିଂହାସନରେ ଅଭିଷିକ୍ତ ହୋଇସାରିଛନ୍ତି, ଇଚ୍ଛାକଲେ କେହିତାଙ୍କୁ ତଳକୁ ଖସାଇ ପାରିବେ ନାହିଁ, କି ନିଜେ ଖସି ଆସି ପାରିବେ ନାହିଁ । ହୃଦୟାଭିଷେକ ପାଇଁ, କୌଣସି ଉତ୍ସବର ଆବଶ୍ୟକତା ନଥାଏ ।''

ଯୁଧିଷ୍ଠିର, ନକୁଳ ସହଦେବଙ୍କୁ ମଧ ରାଜଗାଦି ଅର୍ପଣ କଲେ । ସେମାନେ ମଧ ସେଇପରି କହି ନିଜର ଅକ୍ଷମତା ପ୍ରକାଶ କଲେ ।

ମହର୍ଷି ବ୍ୟାସଦେବ ଯୁଧିଷ୍ଠିରଙ୍କୁ ଧର୍ମନୀତି ଓ କର୍ତ୍ତବ୍ୟ ବିଷୟରେ ବହୁକଥା ବୁଝାଇଲେ । ମନର ମ୍ଳାନିମା କିଛି ପରିମାଣରେ ଦୂରହେଲା । ଠିକ୍ ଏତିକି ବେଳେ ପାଖରେ ଆସି ଅହଞ୍ଚିଲେ ଶ୍ରୀକୃଷ୍ଣ । ପାଣ୍ଡବମାନଙ୍କର ଏକମାତ୍ର ସହାୟକ । ସବୁ ସଙ୍କଟ ମୁହୂର୍ତ୍ତରେ ସେ ସହାୟତା ପ୍ରଦାନ କରିଛନ୍ତି । ଆଜିର ମାନସିକ ସଂକଟ ତାଙ୍କୁ ବ୍ୟସ୍ତ କରିଛି । ସେ ଧର୍ମରାଜଙ୍କୁ ବୁଝାଇ କହିଛନ୍ତି,''ହେ ପାଣ୍ଡବ ଶ୍ରେଷ୍ଠ ! ଚିତ୍ତ, ବୁଦ୍ଧି ଓ ମାନସ ଶରୀରକୁ ବିଭ୍ରାନ୍ତ କରୁଥିବା ଶୋକସଙ୍କଟ ଆପଣ ପରିହାର କରନ୍ତୁ । ଯାହା ବିଧି ପ୍ରେରିତ ତାହାହିଁ ସଂଘଟିତ ହୋଇଛି । ଆପଣ ନିମିତ୍ତମାତ୍ର । ଆପଣଙ୍କ ଶୋକ, ମୃତ ବ୍ୟକ୍ତିକୁ ଜୀବିତ କରି ପାରିବ ନାହିଁ । ଆପଣ ତପସ୍ୟା କଲେ ଅସରନ୍ତି ବିଧବା ସ୍ତ୍ରୀ ନିଜର ସ୍ୱାମୀ ଓ ପୁତ୍ରମାନଙ୍କୁ ଫେରି ପାଇବେ ନାହିଁ । ଯେଉଁ ମାନଙ୍କ ଦୁଃଖରେ ଆପଣ ଏତେ ବିବ୍ରତ, ତାଙ୍କର କଣ ଉପକାର ହେବ କହନ୍ତୁ । ତପସ୍ୟା କରିବାକୁ ଯଦି ଇଚ୍ଛା, ତେବେ ରାଜପଣହିଁ ଆପଣଙ୍କ ପାଇଁ ଉପଯୁକ୍ତ ତପସ୍ୟା । ତାରି ମାଧ୍ୟମରେ ଆପଣ ଦୁର୍ଗତମାନଙ୍କର ପାଳନ, ପୋଷଣ ଓ ରକ୍ଷଣର ବ୍ୟବସ୍ଥାକରି ସେମାନଙ୍କର ଦୁଃଖ ଦୂରକରନ୍ତୁ । ତାହାହେବ ପାପର ପ୍ରାୟଶ୍ଚିତ୍ତ, ଶାନ୍ତି ଦାୟକ ମଧ୍ୟ । ଅପରାଧ ବୋଧରୁ ରକ୍ଷା ପାଇବାର ଉପଯୁକ୍ତ ମାଧମ । ଆପଣ ଏ ସାମ୍ରାଜ୍ୟର ସମ୍ରାଟ । ସମୂହର ମଙ୍ଗଳପାଇଁ, ଆପଣଙ୍କର ବ୍ୟକ୍ତିସତ୍ତା ଲୋପପାଉ ଆପଣ ପ୍ରଜାମାନଙ୍କ ହିତ ଦୃଷ୍ଟିରୁ, ସବୁ କିଛି ଚିନ୍ତା କରିବା ଉଚିତ ।''

ଯୁଧିଷ୍ଠିର କମ୍ପିତ କଣ୍ଠରେ କହିଲେ,''ପ୍ରଭୁ ! ମୁଁ ଆପଣଙ୍କର ଆଜ୍ଞାବହ । ଆପଣଙ୍କର ଆଜ୍ଞା ପାଳନ କରିବି ।''

ତା'ପରେ ପାଣ୍ଡବମାନେ ଯୁଧିଷ୍ଠିରଙ୍କ ରାଜ୍ୟାଭିଷେକ ପାଇଁ ବ୍ୟବସ୍ଥା କଲେ । ସାରା ରାଜ୍ୟରେ ଅଭିଷେକ ଉତ୍ସବ ପାଇଁ ଗଭୀର ଉନ୍ମାଦନ ଖେଳିଗଲା । ପ୍ରଜାମାନଙ୍କର ବହୁପ୍ରତିକ୍ଷିତ ଧର୍ମରାଜ ଯୁଧିଷ୍ଠିର, ଧର୍ମତଃ, ନ୍ୟାୟତଃ ରାଜଗାଦି ଗ୍ରହଣ କରିବେ । ପ୍ରଜାକୁଳ ଶାନ୍ତିରେ ନିଶ୍ୱାସ ମାରିଲେ ।

# ।। ଯୁଧିଷ୍ଠିରଙ୍କ ଅଭିଷେକ ଉତ୍ସବ ।।

ହସ୍ତିନାର ନାଗରିକ ମାନେ ପାଣ୍ଡବମାନଙ୍କୁ ଅଭୂତପୂର୍ବ ସମ୍ବର୍ଦ୍ଧନା ଜ୍ଞାପନକଲେ । ଅତୀତର ସବୁ ଦୁଃଖ ପାସୋର ହୋଇଗଲା । ପ୍ରଜା ମାନଙ୍କର ଏତେ ସ୍ନେହ, ଶ୍ରଦ୍ଧା, ଏତେ ଭକ୍ତି । ସବୁ ହୃଦୟ ନିଗଡା, ଟିକିଏବି କୃତ୍ରିମତା ନାହିଁ ।

ଯୁଧିଷ୍ଠିର ସୁବର୍ଣ୍ଣରଥରେ ହାତଯୋଡି ଛିଡାହୋଇଥାନ୍ତି । ଗ୍ରହଣ କରୁଥାନ୍ତି ପ୍ରଜାକୁଳର ପ୍ରୀତିଚର୍ଚ୍ଚିତ ଅଭିନନ୍ଦନ ଓ ଅନ୍ୟଭାଇମାନେ ନିଜ ନିଜ ରଥରେ ଯୋଡ ହସ୍ତରେ ଅଭିନନ୍ଦନ ଗ୍ରହଣ କରୁଥାନ୍ତି । ଲୋକମାନେ ତାଙ୍କ ଉପରେ ପୁଷ୍ପବୃଷ୍ଟି କରୁଥାନ୍ତି । ସ୍ତ୍ରୀ ଲୋକମାନଙ୍କର ଆଲ୍ଲୋଳିକା ଧ୍ୱନିରେ ରାଜପଥ ଉଚ୍ଛୁଳି ପଡୁଥାଏ । ବାଜୁଥାଏ ଘଣ୍ଟ ଶଙ୍ଖ, ମର୍ଦ୍ଦଳ, କାହାଳୀ ସମସ୍ତଙ୍କ ଉପରେ ସିଞ୍ଚିତ ହେଉଥାଏ ବାସଜଳ । ରାଜନର୍ତ୍ତକୀମାନେ ସମ୍ମୁଖ ଭାଗରେ ନାଚିନାଚି ଚାଲିଥାନ୍ତି । ବ୍ରାହ୍ମଣ, ବେଦଜ୍ଞ ପଣ୍ଡିତ, ଓ ଋଷିମାନେ ବେଦମନ୍ତ୍ର ଗାନ କରୁଥାନ୍ତି । ଶୋଭାଯାତ୍ରା ଧୀରେ ଧୀରେ ଆଗକୁ ଆଗାଉ ଥାଏ । ସବୁତୀର୍ଥରୁ ଜଳ ଆଣି ଅନୂଢ଼ା ତରୁଣୀମାନେ ଅଭିଷେକ କଳସ ମୁଣ୍ଡରେ ଧରି ଆଗେ ଆଗେ ଚାଲିଥାନ୍ତି ।

ଏଦୃଶ୍ୟ ଦେଖିବାପାଇଁ କୌରବ ବଂଶର କେହିଜଣେ ମଧ ପୁରୁଷ ଲୋକ ନଥିଲେ । ଅନ୍ଧ ଧୃତରାଷ୍ଟ୍ରଙ୍କ ହୃଦୟରେ ମୂର୍ଚ୍ଛିତ ହାହାକାର । ବିଧବା ରାଜବଧୂମାନେ ଅକଥନୀୟ ଆତ୍ମଯନ୍ତ୍ରଣା ଭିତରେ ଏଦୃଶ୍ୟ ଦେଖୁଥିଲେ ।

ଯୁଧିଷ୍ଠିର ନିଜର ପ୍ରିୟ ପ୍ରଜାମାନଙ୍କୁ ମୁଦ୍ରିତ ହସ୍ତରେ ଏବଂ ବିନମ୍ର କଣ୍ଠରେ କହିଲେ,''ମୁଁ ପ୍ରତ୍ୟେକଙ୍କୁ ମୋର ଶ୍ରଦ୍ଧା ଓ ସହାନୁଭୂତିଭରା କୃତଜ୍ଞତା ଜ୍ଞାପନ କରୁଚି । ଆପଣମାନଙ୍କର ସ୍ୱାଗତ ସମ୍ବର୍ଦ୍ଧନା ମୋତେ ଅଭିଭୂତ କରିଛି । ମୁଁ ସମମସ୍ତଙ୍କଠାରୁ ସମ୍ମତି ଓ ଅନୁମତି ଭିକ୍ଷାକରେ ରାଜ୍ୟାଭିଷେକ ପାଇଁ । ଆପଣମାନେ ଆଶୀର୍ବାଦ ଦିଅନ୍ତୁ, ପ୍ରଜାମାନଙ୍କର ସେବା ଓ ମଙ୍ଗଳ ବିଧାନ ମୋର ପରମ କର୍ତ୍ତବ୍ୟ ହେଉ । ତାହାହିଁ ହେଉ ମୋର ମହାନ୍ ବ୍ରତ ।''

ସମବେତ ପ୍ରଜାକୁଳ ଏକ କଣ୍ଠରେ କହି ଉଠିଲେ,''ଧର୍ମରାଜ ଯୁଧିଷ୍ଠିରଙ୍କୁ ଆମେ ଆମର ପ୍ରିୟ ସମ୍ରାଟ ରୂପେ ବରଣ କରି ସାରିଛୁ । ଧର୍ମ ରାଜଙ୍କର ଜୟହେଉ ! ଶ୍ରୀକୃଷ୍ଣଙ୍କର ଜୟ ହେଉ !! ପାଣ୍ଡବମାନଙ୍କର ଜୟ ହେଉ !!! ପୃଥିବୀର ମଙ୍ଗଳ ହେଉ ।''

ଶୋଭାଯାତ୍ରା ସମାପ୍ତ ହେଲା ।

ରାଜା ଯୁଧିଷ୍ଠିର ବିହିତ ବିଧିବିଧାନ ଭିତରେ ଅଭିଷିକ୍ତ ହେଲେ ରାଜା ପଦରେ । ମହାରାଜ ଯୁଧିଷ୍ଠିର ଓ ମହାରାଣୀ ଦ୍ରୌପଦୀ ରାଜମୁକୁଟ ଧାରଣ କଲେ ବୈଦିକ ରୀତିରେ । ବ୍ରାହ୍ମଣ ଓ ଯାଚକ ମାନଙ୍କୁ ଅସୁମାର ଦାନ ଦକ୍ଷିଣା ଦିଆଗଲା । ମହାଭାରତ ଯୁଦ୍ଧର ହତଭାଗିନୀ ନାରୀମାନଙ୍କୁ ସେ ଅଭୟ ଦାନକଲେ । ସେମାନଙ୍କର ସୌଭାଗ୍ୟ, ସୁରକ୍ଷା ଓ ରାଜକୀୟ ସମ୍ମାନ ଲାଭ ପାଇଁ ପ୍ରତିଶ୍ରୁତି ଦିଆଗଲା । ବର୍ତ୍ତମାନ କୁରୁସାମ୍ରାଜ୍ୟର ସାର୍ବଭୌମ ସମ୍ରାଟ ଧର୍ମରାଜ ଯୁଧିଷ୍ଠିର । ନିଜର ପୁରୋଭାଗରେ ଧୃତରାଷ୍ଟ୍ରଙ୍କୁ ସ୍ଥାପନ କରି ଯୁଧିଷ୍ଠିର କହିଲେ,'' ମନେରଖନ୍ତୁ, ମହାରାଜ ଧୃତରାଷ୍ଟ୍ର ଆମର ପ୍ରକୃତ ଅଧିପତି । ଆମର କୁଳ ଶ୍ରେଷ୍ଠ । ତାଙ୍କ ଇଙ୍ଗିତରେ ରାଜ୍ୟ ପରିଚାଳିତ ହେବ । ସେ ଶାସନ ମୁଖ୍ୟ ଏବଂ ତାଙ୍କର ପ୍ରତିନିଧି ଭାବରେ ମୁଁ ରାଜ୍ୟ ଶାସନ କରିବି ।

ନିଜର ଅଭିଷେକ ପରେ ଯୁଧିଷ୍ଠିର ଭୀମସେନଙ୍କୁ ଯୁବରାଜ ପଦରେ ଅଭିଷେକ କଲେ । ବିଦୁର ମହାମନ୍ତ୍ରୀ ଓ ସଂଜୟମନ୍ତ୍ରୀ ପଦରେ ନିଯୁକ୍ତ ହେଲେ । ଏହା ବ୍ୟତୀତ ଅନ୍ୟଭାଇମାନଙ୍କୁ ରାଜକାର୍ଯ୍ୟର ଦାୟିତ୍ୱପୂର୍ଣ୍ଣ ବିଭାଗସବୁ ଅର୍ପଣ କଲେ । ରାଜପୁରୀର ବ୍ରାହ୍ମଣମାନଙ୍କର ବୃତ୍ତି ବ୍ୟବସ୍ଥା କରିଦେଲେ ।

ଭାଇମାନେ ରହିବାପାଇଁ ରାଜପୁରୀର ବିଭିନ୍ନ ଭବନ ବାଣ୍ଟି ଦେଲେ । ଧୃତରାଷ୍ଟ୍ରଙ୍କ ଅନୁମତିକ୍ରମେ ଭୀମସେନ ରହିଲେ ଦୁର୍ଯ୍ୟୋଧନଙ୍କ ରାଜ ଭବନରେ । ଦୁଃଶାସନ ଙ୍କ ରାଜଭବନ ଅର୍ପିତ ହେଲା ଅର୍ଜୁନଙ୍କୁ । ନକୁଳ ସହଦେବ, ଦୁର୍ମୁଖ ତଥା ଦୁର୍ଜୟଙ୍କ ରାଜପୁରୀରେ ରହିଲେ । ଏହିସବୁ ରାଜଭବନ ସ୍ୱର୍ଣ୍ଣଖଚିତ । ଏଥିରେ ଭରିରହିଥିଲା, ବିପୁଳ ସମ୍ପତ୍ତି ।

ଶ୍ରୀକୃଷ୍ଣ ସାତ୍ୟକିଙ୍କ ସହିତ ଅର୍ଜୁନଙ୍କ ରାଜଭବନରେ ରହିଲେ । ଯୁଧିଷ୍ଠିର, ଧୃତରାଷ୍ଟ୍ର, ଗାନ୍ଧାରୀ ଓ ବିଦୁରଙ୍କୁ ପରମ ସମ୍ମାନ ଦେଉଥିଲେ । ପ୍ରତ୍ୟେକ ବିଷୟରେ ସେ ଏମାନଙ୍କର ମତାମତ ନେଉଥିଲେ । ଧୃତରାଷ୍ଟ୍ର ଏତେ ସମ୍ମାନ ଓ ଆଦର ପାଉଥିଲେ, ଯାହା ନିଜ ପୁଅମାନଙ୍କଠାରୁ ପାଇବା ସମ୍ଭବ ନଥିଲା ।

ରାଜକାର୍ଯ୍ୟ ପରିଚାଳନା ପାଇଁ ସମସ୍ତ ବିଧି ବ୍ୟବସ୍ଥା କରି ସାରିବା ପରେ, ଯୁଧିଷ୍ଠିର ଶନ୍ତିଲାଭ କଲେ । ସାରାରାତି ସେ କାର୍ଯ୍ୟବ୍ୟସ୍ତ ଅଛନ୍ତି । ବ୍ରାହ୍ମମୁହୂର୍ତ୍ତ ହୋଇଗଲା । ସେ ସ୍ନାନ ତର୍ପଣାଦି ସାରି ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ କରିବା ପାଇଁ ଅର୍ଜୁନଙ୍କ ଭବନକୁ ଗଲେ ।

ଶ୍ରୀକୃଷ୍ଣ ଶୋଇଥିଲେ ରତ୍ନାଲଂକୃତ ସ୍ୱର୍ଣ୍ଣଶଯ୍ୟା ଉପରେ । ନିକଟରେ ଜଳୁଥିଲା ରତ୍ନଦୀପ । ତାଙ୍କର ନବଘନ ସୁନ୍ଦର ଶ୍ରୀଅଙ୍ଗ, ଆକର୍ଷଣୀୟ ଦେଖା ଯାଉଥିଲା । ଧର୍ମରାଜଙ୍କ ଆସିବାର ସମ୍ବାଦ ପାଇ ସେ ଶଯ୍ୟା ତ୍ୟାଗକଲେ । ଅତିଥି ଭବନରେ କିଛି ସମୟ ଅପେକ୍ଷା କଲେ ଯୁଧିଷ୍ଠିର ।

ଶ୍ରୀକୃଷ୍ଣ ପ୍ରାତଃ ପାର୍ଥନା, ସ୍ନାନ ତର୍ପଣ ସାରି ଉଠିଗଲେ ଯୁଧିଷ୍ଠିରଙ୍କୁ ପାଛୋଟି ଆଣିବା ପାଇଁ । ଉଭୟେ ଆସି ବସିଲେ । ଶ୍ରୀକୃଷ୍ଣ କହିଲେ,''ଟିକିଏ ବିଳମ୍ବ ହୋଇଗଲା ମୋ ଉଠିବାରେ ମହାତପାଃ ଭୀଷ୍ମଦେବ ମତେ ଦେଖିବାପାଇଁ ଚାହୁଁଛନ୍ତି । ତାଙ୍କ ସହିତ ଟିକିଏ ଯୋଗାଳାପ କରୁଥିଲି । ଧର୍ମାତ୍ମା ଭୀଷ୍ମଦେବଙ୍କ ସହିତ ଧର୍ମସୂର୍ଯ୍ୟ ଅସ୍ତ ହେବାକୁ ଯାଉଛି । ଆପଣ ତାଙ୍କ ଚରଣରେ ଅଭିଷେକ ପରର ପ୍ରାଣାମ ଜଣାଇ ଆଶୀର୍ବାଦ ଗ୍ରହଣ କରନ୍ତୁ । ସେତ ନିକଟରେ ସଦ୍‌ଗତି ଲାଭ କରିବେ । ଏହା ପୂର୍ବରୁ ରାଜନୀତି, ଧର୍ମ, ଅନୁଶାସନ, ଅର୍ଥନୀତି, ସମାଜନୀତି ପ୍ରଭୃତି ବିବିଧ ବିଷୟରେ ତାଙ୍କୁ ଆପଣ ପ୍ରଶ୍ନ ପଚାରି ନିଜର ସନ୍ଦେହ ମୋଚନ କରନ୍ତୁ । ସେ ଦିଗରେ ଆପଣ ଦିଗ୍ ଦର୍ଶନ ଲାଭ କରିବେ । ନିଜକୁ ମାନସିକ ଦିଗରେ ସମୃଦ୍ଧ କରନ୍ତୁ ।

ଯୁଧିଷ୍ଠିର କହିଲେ,'' ହେ କେଶବ ! ହେ କରୁଣାମୟ ! ଦୟାକରି ଆପଣମଧ ମୋ ସହିତ ଚାଲନ୍ତୁ । ଆପଣଙ୍କ ଗହଣରେ ମୁଁ ଭାଇମାନଙ୍କୁ ନେଇ ପିତାମହ ଭୀଷ୍ମଙ୍କୁ ଦର୍ଶନ କରିବାକୁ ଚାହେଁ ।

ଶ୍ରୀକୃଷ୍ଣ ଏକ ମତ ହେଲେ ।

# ।। ଶରଶଯ୍ୟାରେ ଭୀଷ୍ମଙ୍କ ନୀତିଶିକ୍ଷା ।।

ଧର୍ମରାଜ ଯୁଧିଷ୍ଠିର ନିଜଭାଇମାନଙ୍କୁ ନେଇ ଶ୍ରୀକୃଷ୍ଣଙ୍କ ସହିତ ଭୀଷ୍ମଦେବଙ୍କ ପାଖରେ ପହଞ୍ଚିଲେ । କୁରୁକ୍ଷେତ୍ର ସମୀପସ୍ଥ ଓଘାବତୀ ନଦୀକୂଳରେ ଶରଶଯ୍ୟାରେ ଶାୟିତ ଥିଲେ ଜ୍ଞାନୀ ଶ୍ରେଷ୍ଠ ଭୀଷ୍ମଦେବ । ତାଙ୍କ ଚତୁଃପାର୍ଶ୍ୱରେ ବହୁବିଶିଷ୍ଟ ମୁନିଋଷି ଘେରି ବସିଥିଲେ । ସେ ଶରଶଯ୍ୟା ରେ ଶୟନ କରି ଭଗବାନ ବାସୁଦେବଙ୍କ ସ୍ତୁତି ପାଠକରୁଥିଲେ । ଏ ଅବସ୍ଥାରେ ମହାତ୍ମା ଭୀଷ୍ମଙ୍କୁ ଦେଖି, ସମସ୍ତେ ଦୂରରୁ ରଥ ଉପରୁ ଓହ୍ଲାଇଲେ । ତା'ପରେ ପାଖକୁ ଯାଇ ପ୍ରଥମେ ଉପସ୍ଥିତ ମୁନିମଣ୍ଡଳୀଙ୍କୁ ପ୍ରଣାମକଲେ । ପିତାମହଙ୍କ ପାଦ ପାଖରେ ଛିଡାହେଲେ ଶ୍ରୀକୃଷ୍ଣ, ଯୁଧିଷ୍ଠିର ଓ ତାଙ୍କ ଭାଇମାନେ ।

ଭୀଷ୍ମଦେବ ଚକ୍ଷୁ ଉନ୍ମୀଳନ କଲେ ।

ପାଣ୍ଡବଗଣ ପଦ ସ୍ପର୍ଶ କରି ପ୍ରଣାମ ଜଣାଇଲେ । ଶ୍ରୀକୃଷ୍ଣ ଅଭିବାଦନ ଜଣାଇ କହିଲେ, ''ଆପଣଙ୍କ ଦର୍ଶନ ପାଇଁ ମୁଁ ପାଣ୍ଡବ ମାନଙ୍କୁ ସାଥିରେ ନେଇ ଆସିଛି ।''

ଭୀଷ୍ମଦେବ ଯୋଡ଼ହସ୍ତରେ କହିଲେ, ''ହେ ପ୍ରଭୁ ! ଆପଣ ଦୟାମୟ ଭକ୍ତ ବତ୍ସଳ । ମୁଁତ ଆପଣଙ୍କ ସ୍ତବପାଠ କରୁଥିଲି । ଆପଣ ସ୍ୱୟଂ ଚାଲି ଆସିଲେ ମୋ ପରି ଅସମର୍ଥକୁ ଦର୍ଶନ ଦେବାପାଇଁ । ହେ ପରମ ପାଳକ ! ହେ ବିଶ୍ୱବନ୍ଦ୍ୟ ପୁରୁଷୋତ୍ତମ ! ଆପଣଙ୍କୁ ମୁଁ ଅନ୍ତିମ ଶଯ୍ୟାରେ ପ୍ରଣାମ କରୁଛି ।''

ଶ୍ରୀକୃଷ୍ଣ ଆଶୀର୍ବାଦ ମୁଦ୍ରାରେ କହିଲେ, ''ହେ ଧର୍ମଜ୍ଞ ସତ୍ୟ ସ୍ୱରୂପ ! ଆପଣ ମର୍ତ୍ତ୍ୟଲୋକରେ ନିଜର କର୍ତ୍ତବ୍ୟ ଦେବୋପମରୀତିରେ ସମାହିତ କରିଥିବାରୁ ମୁଁ ଅତ୍ୟନ୍ତ ପ୍ରୀତ । ଆପଣ ନ୍ୟାୟ, ଧର୍ମ, ସତ୍ୟର ମୂର୍ତ୍ତିମନ୍ତ ପ୍ରତୀକ । ଜ୍ଞାନର ଅତଳ ସମୁଦ୍ର । ଆପଣ ଆଉକିଛିଦିନ ଏଇ ଶରଶଯ୍ୟାରେ ରହିବେ ସୂର୍ଯ୍ୟଦେବତାଙ୍କ ଉତ୍ତରାୟଣ ପର୍ଯ୍ୟନ୍ତ । ମର୍ତ୍ତଲୋକରୁ ଆପଣ ବଦାୟ ନେବାପରେ ସମସ୍ତ ଜ୍ଞାନ ଲୁପ୍ତ ହୋଇଯିବ । ଏଠାରେ ସମସ୍ତ ମୁନିଋଷି ଉପସ୍ଥିତ ଅଛନ୍ତି । ଦୟାକରି ଧର୍ମରାଜଙ୍କୁ ଧର୍ମ, ରାଜନୀତି, ସମାଜନୀତି ଦର୍ଶନ ପ୍ରଭୃତି ବିଭିନ୍ନ ବିଷୟରେ କିଛି ଉପଦେଶ ଦିଅନ୍ତୁ । ଏହା ଦ୍ୱାରା ସମସ୍ତେ ଉପକୃତ ହେବେ ।''

ଭୀଷ୍ମଦେବ ହାତଯୋଡି କହିଲେ, ''ପ୍ରଭୁ ! ଆପଣଙ୍କ ସମକ୍ଷରେ ମୁଁ ପୁଣି ଉପଦେଶ ଦେବି ! ଆପଣ ଏକଣ କହୁଛନ୍ତି । ବରଂ ଆପଣ ଯୁଧିଷ୍ଠିରଙ୍କୁ କିଛି ଉପଦେଶ ଦେଲେ ତାହା ଅନ୍ତିମ ମୁହୂର୍ତ୍ତରେ ମୋ କାନରେ ପଡ଼ିବ । ମୋ ଜୀବନ ସାର୍ଥକ ହେବ । ଧର୍ମର ନିଗୂଢ଼ ତତ୍ତ୍ୱ ଆପଣହିଁ କେବଳ ଜାଣନ୍ତି । ଦୟାକରି ଆପଣ ସମସ୍ତଙ୍କୁ କିଛି ମହତ୍‌ବାଣୀ ଶୁଣାଇ ପବିତ୍ର କରନ୍ତୁ । ମୁଁ ବେଦନା ଜର୍ଜ୍ଜରି ଓ କ୍ଳାନ୍ତ ।''

ଶ୍ରୀକୃଷ୍ଣ କହିଲେ, ''ହେ ମହାତ୍ମା ! ଆପଣ ମୋ କଥା ରକ୍ଷାକରନ୍ତୁ । ଏଇ ମୁହୂର୍ତ୍ତରୁ ଆପଣଙ୍କୁ ଶାରୀରିକ ଯନ୍ତ୍ରଣା, ଦାହ, ମୂର୍ଚ୍ଛା, କ୍ଷୁଧା ତୃଷାକଷ୍ଟ ସ୍ପର୍ଶ କରିବ ନାହିଁ । ଶାରୀରିକ ଓ ମାସସିକ ସାମର୍ଥ୍ୟ ଲାଭ କରିବେ । ଆଗ୍ରହ ଉଦ୍ଦୀପିତ ହେବ । ଜ୍ଞାନ ବୁଦ୍ଧି ଦୀପ୍ତିମନ୍ତ ହେବ । ଚିତ୍ତ ଶୁଦ୍ଧ ସତ୍ତ୍ୱଗୁଣରେ ନିମଜ୍ଜିତ ରହିବ ।''

ମୁନିଋଷିମାନେ ଆନନ୍ଦରେ କେଶବଙ୍କ ସ୍ତୁତି ପାଠକଲେ । ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ସ୍ଥିରହେଲା, କାଲିଠାରୁ ଯୁଧିଷ୍ଠିର ପ୍ରତିଦିନ ଆସି ଭୀଷ୍ମଙ୍କ ଅମୃତ ବାଣୀ ଶ୍ରବଣ କରିବେ ।

## କୁରୁକ୍ଷେତ୍ରରେ କୃଷ୍ଣପକ୍ଷ

ପରଦିନ ଧର୍ମରାଜ ଭୀଷ୍ମଦେବଙ୍କ ପାଖକୁ ଗଲେ । ସାଥିରେ ଥିଲେ ଶ୍ରୀକୃଷ୍ଣ ଓ ଭାଇମାନେ । ସୈନ୍ୟସାମନ୍ତ ନିଆଗଲା ନାହିଁ । ପହଞ୍ଚିବା ପରେ ଶ୍ରୀକୃଷ୍ଣ ଭୀଷ୍ମଦେବଙ୍କ ଶାରୀରିକ, ମାନସିକ, ଓ ବୌଦ୍ଧିକ ସୁସ୍ଥତା ବିଷୟରେ ବୁଝି ଖୁସି ହେଲେ । ସେ ଆଜି ସବୁ ଦିଗରୁ ସମର୍ଥ । ଭୀଷ୍ମଦେବ, ଶ୍ରୀକୃଷ୍ଣଙ୍କ ମହାନ୍ ବାଣୀ ନିଜ ଉପଦେଶ ଛଳରେ ସମବେତ ମୁନିମଣ୍ଡଳୀ ଓ ଧର୍ମରାଜଙ୍କୁ ଶୁଣାଇଲେ । ସେଥିରୁ କେତୋଟି ନିମ୍ନରେ ଦିଆଗଲା । ଏସବୁ ମହାଭାରତର ମହାନ୍ ଅଂଶ ।

* ଶରୀରରୁ ପ୍ରାଣ ଚାଲିଗଲାପରେ ଏହା ଅଗ୍ନିର ଆହୁତିରେ ପରିଣତ ହୁଏ । ଶରୀରର ସ୍ମାରକୀ କିମ୍ବା ସ୍ମୃତି ସୁରକ୍ଷିତ କରି ରଖିବାର ଆବଶ୍ୟକତା କିଛି ନାହିଁ । ଶରୀର ସହିତ ତା'ର ସ୍ମୃତି ଅବଶେଷର ପୂର୍ଣ୍ଣବିସର୍ଜନ ଆବଶ୍ୟକ ।
* ଜୀବନର କର୍ମ ବନ୍ଧନ ହେଉଛି, ପୁନର୍ଜନ୍ମ । ମଣିଷ ଏଥିରୁ ରକ୍ଷା ପାଇବାକୁ ଚାହେଁ । ନିର୍ବାଣ ଏହାର ଚରମ ଉଦ୍ଦେଶ୍ୟ । ନିର୍ବାଣର ଅର୍ଥ ହେଉଛି ନାମ ଓ ରୂପ ସହିତ ବ୍ୟକ୍ତି ସତ୍ତାର ସମାପ୍ତି ।
* କ୍ଷତ୍ରିୟର କର୍ତ୍ତବ୍ୟ ହେଉଛି ସେ ଯୁଦ୍ଧ କ୍ଷେତ୍ରରେ ମରିବ କିମ୍ବା ପ୍ରତିପକ୍ଷକୁ ମାରିବ । ଏହା ହେଉଛି ପ୍ରକୃତ ବୀରପୂଜା । ଏଥିପାଇଁ ଅନୁଶୋଚନା କରିବାର ଆବଶ୍ୟକତା ନାହିଁ । ସଂଗ୍ରାମ କ୍ଷେତ୍ରରେ ଶର, ପୁଷ୍ପର ସ୍ଥାନ ଗ୍ରହଣ କରେ । ଏଠାରେ ଶରବୃଷ୍ଟି ଅର୍ଥ ବୀର ଉପରେ ପୁଷ୍ପବୃଷ୍ଟି ।
* ସଂସାରର ଅସୁମାର ନୟନରେ ସେଇ ଗୋଟିଏ ସୂର୍ଯ୍ୟ ସମସ୍ତଙ୍କୁ ଦେଖାଯାନ୍ତି । ପ୍ରତ୍ୟେକ ଦେହଧାରୀର ହୃଦୟରେ, ପ୍ରାଣସ୍ୱରୂପ ସେଇ ଏକ ପୁରୁଷୋତ୍ତମ ବିଜେ କରୁଛନ୍ତି ।
* ମଣିଷର ପ୍ରିୟ ହେଉଛି ତାର ଆରାଧ ରୂପ । ଅନ୍ତିମ ସମୟରେ ଏହି ଆରାଧ୍ୟ ରୂପକୁ ଚିତ୍ତରେ ସ୍ଥାନ ଦେବାପାଇଁ ଚିନ୍ତା କରିବା ଉଚିତ । ଏହା ସଦ୍‌ଗତି ପ୍ରଦାନରେ ସହାୟକ ହୁଏ ।
* ଅନ୍ୟକେହି, ତୁମ ପ୍ରତି ଯେଉଁ ଆଚରଣ ନକରୁ ବୋଲି ତୁମେ ଚାହଁ, ତୁମେ ସେ ପ୍ରକାର ଆଚରଣ ଅନ୍ୟକୁ ପ୍ରଦର୍ଶନ ନକରିବା ହେଉଛି ପ୍ରକୃତ ମାନବଧର୍ମ ।
* ଆତ୍ମୋପଲବ୍ଧି ପାଇଁ କୌଣସି ଏକ ନିର୍ଦ୍ଦିଷ୍ଟ ପଥ ନାହିଁ । ସଂସାରର ପ୍ରତ୍ୟେକ କର୍ମମଧ୍ୟରେ ଆତ୍ମୋପଲବ୍ଧିର ସୁଯୋଗ ଅଛି । ଭୋଗ, ତ୍ୟାଗ, ତପସ୍ୟା, କର୍ମ, ଜ୍ଞାନ, ସେବା, ଦାନ, ଭକ୍ତି, ଗୃହକର୍ମ ଓସନ୍ୟାସ - ଏ ସବୁଭିତରେ ଆତ୍ମୋପଲବ୍ଧିର ସୂତ୍ର ନିହିତ ଅଛି ।

ଏ ପରି ସେ ନିଗୂଢ଼ ଧର୍ମତତ୍ତ୍ୱ ବିଷୟରେ ବହୁ ଉପଦେଶ ଦେଇଛନ୍ତି ।

ଯୁଧିଷ୍ଠିର ତାଙ୍କୁ ବିଭିନ୍ନ ବିଷୟରେ ନାନାପ୍ରଶ୍ନ ପଚାରିଛନ୍ତି । ଭୀଷ୍ମଦେବ ନାନା ଉଦାହରଣ, ଆଖ୍ୟାନ, କଥା,ଉପକଥାର ଆଶ୍ରୟ ନେଇ ପ୍ରଶ୍ନର ଉତ୍ତର ସବୁ ସମାଧାନ କରିଛନ୍ତି । ଆମେ ଜାଣୁ, ମହାଭାରତ ଯୁଦ୍ଧ ମାର୍ଗଶିର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ଆରମ୍ଭ ହୋଇଥିଲା । ଦଶମଦିନ ଭୀଷ୍ମଦେବଙ୍କ ପତନ ହେଲା ଏବଂ ସେ ପଞ୍ଚଚାଳିଶ ଦିନ ଶରଶଯ୍ୟାରେ ଶୋଇ ରହିଲେ । ଛୟାଳିଶ ଦିନ, ମାଘ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ, ତାଙ୍କର ମହାପ୍ରୟାଣ ହେଲା । ଏହି ଦିବସଟି ଭୀଷ୍ମାଷ୍ଟମୀ ନାମରେ ପରିଚିତ । ସେ ଦିନ ହିନ୍ଦୁମାନେ ସେଇ ମହାମାନବଙ୍କର ଶ୍ରାଦ୍ଧ ଦିବସ ପାଳନ କରନ୍ତି । ଯୁଧିଷ୍ଠିର ପ୍ରତ୍ୟେକ ଦିନ ଆସି ଶରଶଯ୍ୟା ସମୟରେ ତାଙ୍କ ଠାରୁ ଉପଦେଶ ଗ୍ରହଣ କରୁଥିଲେ ।

ଯୁଧିଷ୍ଠିରଙ୍କ ପ୍ରଶ୍ନର ଉତ୍ତର କ୍ରମରେ, ଭୀଷ୍ମଦେବ ପ୍ରଥମେ ରାଜଧର୍ମ ବର୍ଣ୍ଣନାରୁ ଆରମ୍ଭ କରିଥିଲେ । ରାଜାଙ୍କର ନୀତିପୂର୍ଣ୍ଣବ୍ୟବହାର, ରାଜ୍ୟଶାସନର ସଫଳସୂତ୍ର । ତେଣୁ ସେ ନୀତିଶାସ୍ତ୍ର, ରାଜଧର୍ମ, ରାଜାଙ୍କ କର୍ତ୍ତବ୍ୟ, ରାଜାଙ୍କ ବିଶେଷଗୁଣ, ରାଜା ଓ ପୁରୋହିତ ସମ୍ପର୍କ, ମିତ୍ର ଓ ଅମିତ୍ରର ଲକ୍ଷଣ, ମନ୍ତ୍ରୀଙ୍କ କାର୍ଯ୍ୟର ସମୀକ୍ଷା, ସଭାସଦଲକ୍ଷଣ, ନଗର ଓ ନାଗରିକର ଆଦର୍ଶ, ରାଷ୍ଟ୍ରରକ୍ଷା, ଯୁଦ୍ଧନୀତି, ଧର୍ମପାଳନ ବିଧି, ସୈନ୍ୟଚାଳନାରୀତି, ଯୋଦ୍ଧାଲକ୍ଷଣ, ବିଜୟ ଚିହ୍ନ, ଅସହାୟ ସ୍ଥିତିରେ ଶାସକର କର୍ତ୍ତବ୍ୟ ଓ କୂଟନୀତି ପ୍ରଭୃତି ବହୁ ବିଷୟରେ ବିସ୍ତାରିତ ଭାବରେ ବର୍ଣ୍ଣନା କଲେ ।

ଗୃହସ୍ଥ ଧର୍ମ ପ୍ରସଙ୍ଗରେ ସେ ମାତା, ପିତା, ଗୁରୁସେବା, ଶୀଳ ନିରୂପଣ, ମଣିଷର ସ୍ୱଭାବ ଚିହ୍ନିବାର ଉପାୟ, ଶରଣାଗତରକ୍ଷା, ଶିଷ୍ଟ ପୁରୁଷର ଲକ୍ଷଣ, ଇନ୍ଦ୍ରିୟଦମନ, ସତ୍ୟ, ଧର୍ମ ଓ ତପର ମହିମା, ଅଧ୍ୟାତ୍ମଜ୍ଞାନ, କାମ କ୍ରୋଧଦୋଷ, ପାପ ଓ ପ୍ରାୟଶ୍ଚିତବିଧି, ମିତ୍ରଲକ୍ଷଣ, ପ୍ରଭୃତି ବିବିଧ ବିଷୟରେ ବୁଝାଇଥିଲେ ।

ସମାଜ ନୀତି ପ୍ରସଙ୍ଗରେ ସେ ନାଗରିକର କର୍ତ୍ତବ୍ୟ, ସୁଖଦୁଃଖ ବିବେଚନା, ତ୍ୟାଗର ମହିମା, ଚଳଣି ଓ ଆଚରଣ ବିଧି, ଧର୍ମ ଧାରଣା, ଅପରପ୍ରତି କର୍ତ୍ତବ୍ୟ, ସୁସ୍ଥ ସମାଜ ଗଠନ, ସାମାଜିକ ସଂସ୍କୃତି, ସାମାଜିକ ବିଧି ବିଧାନ, ସମାଜ ଓ ବ୍ୟକ୍ତି, ସମାଜ ସୁରକ୍ଷା, ପ୍ରଭୃତି ବିଷୟରେ ବିବିଧ ଧାରଣା ଦେଇଥିଲେ ।

ଧର୍ମସଂକ୍ରାନ୍ତରେ ସେ କହିବାକୁ ଯାଇ, ସ୍ତ୍ରୀଧର୍ମ, ରାଜଧର୍ମ, ପ୍ରଜାଧର୍ମ, ବର୍ଣ୍ଣାଶ୍ରମଧର୍ମ, ଆପଦ୍‌ଧର୍ମ, ଗୃହସ୍ଥଧର୍ମ ପ୍ରଭୃତି ବିଭିନ୍ନ ଧର୍ମ ବିଷୟରେ ଧାରଣା ଦେଇଥିଲେ । ତତ୍ତ୍ୱଜ୍ଞାନ ପ୍ରସଙ୍ଗରେ ସେ ସଖ୍ୟ, କ୍ଷର-ଅକ୍ଷର ବିବେକ, ଆତ୍ମା ଅନାତ୍ମା,ବିବେକ, ମୋକ୍ଷ ସାଧନ ମାର୍ଗ, ଭଗବଦ୍‌ଭକ୍ତି, ବ୍ରହ୍ମସ୍ୱରୂପ ସଂକ୍ରାନ୍ତରେ ବହୁ ତତ୍ତ୍ୱକଥା କହିଥିଲେ ।

ଅନ୍ତିମ ଦିବସରେ ସେ ଶ୍ରୀକୃଷ୍ଣଙ୍କ ଆରାଧ୍ୟ ସ୍ୱରୂପ ଚିତ୍ତରେ ସ୍ଥାପନ କରି, ଶ୍ରୀକୃଷ୍ଣଙ୍କ ମର୍ତ୍ତ୍ୟରୂପ ସମ୍ମୁଖରେ ଦର୍ଶନକରି, ଏବଂ ତାଙ୍କର ପ୍ରେମାପ୍ଲୁତ ବାଣୀ କଣ୍ଠରେ ଭଜନ କରି, ଇଚ୍ଛାମୃତ୍ୟୁ ବରଣ କଲେ । ଆକାଶରୁ ପୁଷ୍ପବୃଷ୍ଟି ହେଲା ।

ମୁନିଗଣ ନିଜନିଜ ଆଶ୍ରମକୁ ବିଦାୟ ନେଲେ ।

ଯୁଧିଷ୍ଠିର ଭୀଷ୍ମଙ୍କର ଉତ୍ତରକ୍ରିୟା ବିଧିସମ୍ମତ ରୀତିରେ ପାଳନ କଲେ । ପରମପୁରୁଷ ଶ୍ରୀକୃଷ୍ଣ ଭୀଷ୍ମଙ୍କ ପାଇଁ ତିଳତର୍ପଣ କଲେ । ଭୀଷ୍ମଦେବଙ୍କର ପୁତ୍ର ପରିବାର ନଥିଲେ ମଧ୍ୟ ଆଜି ସେ ସମଗ୍ର ହିନ୍ଦୁ ସମାଜର ପିତୃପୁରୁଷ ରୂପେ ଶ୍ରାଦ୍ଧ ଦିବସରେ ଶ୍ରଦ୍ଧାଞ୍ଜଳି ପାଉଛନ୍ତି । ଭୀଷ୍ମଙ୍କୁ ଶ୍ରଦ୍ଧାଞ୍ଜଳି ନଦେଇ କୌଣସି ଶ୍ରାଦ୍ଧ ସମ୍ପନ୍ନ କରାଯାଏନାହିଁ ।

## ଅଣତିରିଶ

# ।। ଅଶ୍ୱମେଧ ଯଜ୍ଞ ।।

ସେଦିନ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ କଥାବାର୍ତ୍ତା ହେଉଥାନ୍ତି । ଶ୍ରୀକୃଷ୍ଣ କହିଲେ, ''ଧନଞ୍ଜୟ ! ତୁମମାନଙ୍କ ଗହଣରେ ରହିଲେ ନିର୍ଜ୍ଜନ ବନ ମଧ ମୋତେ ଆନନ୍ଦ ଦାୟକ ହୋଇଥାଏ । ଏଠାରେତ ମୁଁ ବହୁତ ଦିନହେଲା ରହିଲିଣି, ଦ୍ୱାରକାରୁ ଖବର ଆସିଲାଣି ଫେରିବା ପାଇଁ, ମୁଁ ଏଥର ଯିବି । ଧର୍ମରାଜଙ୍କୁ କୁହ, ସେ ମୋତେ ଅନୁମତି ଦିଅନ୍ତୁ ।

ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ କହିଲେ, ''ସଖା ! ଆପଣ ମୋତେ ଯୁଦ୍ଧ ଆରମ୍ଭରେ କେତେ ନୀତି କଥା କହି ଅନୁପ୍ରାଣିତ କରିଥିଲେ । ସେ ସବୁ ମୁଁ ଅନେକାଂଶରେ ଭୁଲି ଯାଇଛି । ଦୟାକରି ଆଉଥରେ କୁହନ୍ତୁ । ଶ୍ରୀକୃଷ୍ଣ ବେଦ, ଉପନିଷଦ ପ୍ରଭୃତିର ମହାନବାଣୀ ପୁଣିଥରେ ତାଙ୍କୁ ଶୁଣାଇଲେ । ମଣିଷ ମନ ଓ ପଞ୍ଚେନ୍ଦ୍ରିୟ, ଆତ୍ମାର ପ୍ରକୃତି, ଦାର୍ଶନିକ ରାଜା ଜନକ ଏବଂ ଧର୍ମ ଦେବତାଙ୍କ ମଧରେ କଥାବାର୍ତ୍ତା, ସତ୍ୟନୀତି ପ୍ରଭୃତି ବିଷୟରେ ତାଙ୍କୁ ସୂଚନା ଦେଇଥିଲେ ।

ସମସ୍ତଙ୍କଠାରୁ ବିଦାୟ ନେବା ପରେ ସେ ପ୍ରତ୍ୟାବର୍ତ୍ତନ କଲେ ଦ୍ୱାରକାକୁ । ପାଣ୍ଡବମାନେ ବର୍ତ୍ତମାନ ଅନୁଭବ କରୁଛନ୍ତି ଶ୍ରୀକୃଷ୍ଣଙ୍କର ଅନୁପସ୍ଥିତି । ଯୁଧିଷ୍ଠିର ଭାଇମାନଙ୍କ ସହିତ ରାଜପଣ କଲେ । ସମଗ୍ର ଭାରତ ବର୍ଷରେ ଶାନ୍ତି ସୁଖ, ସୌହାର୍ଦ୍ଦ୍ୟ ଓ ଉତ୍ତମ ବୁଝାମଣାର ନୂତନ ଯୁଗ ଆରମ୍ଭ ହୋଇଛି । ଧୃତରାଷ୍ଟ୍ର ଓ ଗାନ୍ଧାରୀ ସମ୍ମାନର ଶୀର୍ଷରେ ଅଛନ୍ତି । ସବୁ ଭାଇମାନେ ଅତ୍ୟନ୍ତ ଅନୁଗତ । ଭୀମ କିନ୍ତୁ ଧୃତରାଷ୍ଟ୍ରଙ୍କୁ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରନ୍ତି ବାହାରେ । ଘରେ ବ୍ୟକ୍ତିଗତ ଆଚରଣରେ ସେ ତାଙ୍କୁ ମାନସିକ ଆଘାତ ଦିଅନ୍ତି ସବୁରି ଅଲକ୍ଷ୍ୟରେ । ଧର୍ମରାଜ ଓ ଅନ୍ୟମାନେ କେହି ଏକଥା ଜାଣନ୍ତି ନାହିଁ କିମ୍ବା ଧୃତରାଷ୍ଟ୍ର ଧର୍ମରାଜଙ୍କ କାନକୁ ଏକଥା ଆଣନ୍ତି ନାହିଁ । ଏଥି ଭିତରେ ରାଜବଧୂ ଉତ୍ତରା ଏକ ଶିଶୁ ସନ୍ତାନ ଜନ୍ମ ଦେଇଛନ୍ତି । ଅଶ୍ୱତଥାମାଙ୍କ ଦିବ୍ୟାସ୍ତ୍ର ଏ ଶିଶୁକୁ ଗର୍ଭରେ ହତ୍ୟା କରିଥିଲା ଓ ଶ୍ରୀକୃଷ୍ଣ ତାକୁ ନିଜ ଶକ୍ତି ବଳରେ ଜୀବନ ଦାନ କରିଥିଲେ । ବ୍ୟାସଦେବ ନବୀନ ଶିଶୁଟିର ନା 'ଦେଇଥିଲେ 'ପରୀକ୍ଷିତ' । ଏହାର ଅର୍ଥ ଯାହାର ପ୍ରାଣକୁ ରକ୍ଷା କରାଯାଇଛି, ସେ ସୁରକ୍ଷିତ ।

ଅନ୍ତପୁରରେ ଆନନ୍ଦର ବନ୍ୟା । ଅର୍ଜ୍ଜୁନ ଆନନ୍ଦରେ ବିମୋହିତ । ଯୁଧିଷ୍ଠିର ଶୁଭ ସମ୍ବାଦ ପାଇ ବିହ୍ୱଳ ହୋଇ ଉଠିଲେ । ରାଜସିଂହାସନ ପାଇବା ପରଠାରୁ ତାଙ୍କ ମନରେ ସେତେ ଆନନ୍ଦ ନଥିଲା । ସେ ସର୍ବଦା ନିଜର ଆତ୍ମୀୟ ସ୍ୱଜନଙ୍କ ବିୟୋଗରେ ବ୍ୟଥିତ ଥିଲେ । ନିଜ ଭିତରେ ଅପରାଧ ବୋଧ ତାଙ୍କୁ ସର୍ବଦା ଅଥୟ କରୁଥିଲା । ଏତେଦିନ ପରେ ସେ ଆଜି ଆନନ୍ଦରେ ଟିକିଏ, ବିଭୋର ହୋଇଛନ୍ତି ।

ବେଦବ୍ୟାସଙ୍କ ଆଶୀର୍ବାଦ ତାଙ୍କୁ ମିଳିଛି । ସେ ଦିନେ ତାଙ୍କୁ ଏକାନ୍ତରେ କହିଲେ, ''ଯୁଧିଷ୍ଠିର ! ତୁମକୁ ଭୀଷ୍ମଦେବ, ଶ୍ରୀକୃଷ୍ଣ, ମୁଁ ଓ ଅନ୍ୟ ଶୁଭେଚ୍ଛୁମାନେ ଏତେ ବୁଝାଇଲୁ, ତଥାପି ତୁମ ମନରୁ ଗ୍ଲାନି ଦୂର ହେଉନାହିଁ । ସବୁବେଳେ ତୁମେ ଦୁଃଖ ଓ ଅନୁତାପ ମଧରେ ଦଗ୍ଧ ହେଉଛ । ଏହା ରାଜ୍ୟବାସୀ ତଥା ତୁମ ନିଜ ପାଇଁ ଶୁଭଦାୟକ ନୁହେଁ । ଯୁଦ୍ଧ ଜନୀତ ପାପର ପ୍ରାୟଶ୍ଚିତ୍ତ ହେଉଛି ଅଶ୍ୱମେଧ ଯଜ୍ଞ । ତୁମର

ପୂର୍ବପୁରୁଷମାନେ ଏହାକରିଛନ୍ତି । ଇନ୍ଦ୍ରଦେବ ମଧ୍ୟ ବୃତ୍ରବଧର ପ୍ରାୟଶ୍ଚିତ୍ତ ପାଇଁ ଏହି ବ୍ୟବସ୍ଥା କରିଥିଲେ । ତୁମେ ଅଶ୍ୱମେଧ ଯଜ୍ଞକର । ସବୁପାପ ଦୂରହେବ । ଧର୍ମରାଜ ଯୁଧିଷ୍ଠିର କହିଲେ,''ମୁଁ ଏକମତ କିନ୍ତୁ ଏଥିପାଇଁ ଆବଶ୍ୟକ ପ୍ରଭୂତ ଅର୍ଥ ମୋ ପାଖରେ ନାହିଁ । ମୁଁ ରାଜ୍ୟ ଚଳାଇବା ପାଇଁ ଯାହା ରଖିଛି ତାକୁ ଯଜ୍ଞରେ ଖର୍ଚ୍ଚକରି ପାରିବି ନାହିଁ । ଯୁଦ୍ଧରେ ବହୁ ଅପବ୍ୟୟ ହୋଇଛି । ଯୁଦ୍ଧ ପରର ଥଇଥାନ ପାଇଁ ଅଜସ୍ର ଅର୍ଥ ଆବଶ୍ୟକ । ଯୁଦ୍ଧରେ ଅନାଥ ହୋଇଥିବା ବିଧବା, ଶିଶୁମାନଙ୍କର ପାଳନ ପୋଷଣ ଓ ରକ୍ଷଣ ପାଇଁ ରାଜକୋଷ ଉପରେ ପ୍ରବଳ ଚାପ ପଡୁଛି । ଯଜ୍ଞ ବିଧାନ ପାଇଁ ଅର୍ଥ ବ୍ୟବସ୍ଥା କରିବାର କୌଣସି ସୁଯୋଗ ନାହିଁ ।

ବ୍ୟାସଦେବ ଏହାଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ଯୁଧିଷ୍ଠିରଙ୍କ କର୍ତ୍ତବ୍ୟ ବୋଧକୁ ପ୍ରଶଂସା କଲେ । କହିଲେ,''ରାଜନ ! ମନ ଥିଲେ ଧନର ଅଭାବ ଘଟିବ ନାହିଁ । ପୂର୍ବେ ରାଜା ମରୁତ, ଅଶ୍ୱମେଧ ଯଜ୍ଞ କରିଥିଲେ ଓ ସେ ଏତେ ଧନ, ରତ୍ନ, ସୁବର୍ଣ୍ଣ ପାଇଥିଲେ ଯେ ତାହା ବାଣ୍ଟିସାରି ମଧ୍ୟ ବଳି ପଡ଼ିଲା । ସେ ସେଇ ଧନକୁ ହିମାଳୟ ପର୍ବତ ଗହ୍ୱରରେ ଲୁଚାଇ ରଖିଛନ୍ତି । ତାହା ଏପର୍ଯ୍ୟନ୍ତ ସେଠାରେ ସୁରକ୍ଷିତ ହୋଇ ସାରିଛି । ମୁଁ ତାର ସଂଧାନ ଦେବି, ତୁମେ ତାହା ଆଣି ଯଜ୍ଞ କାମରେ ଲଗାଅ । ଯଜ୍ଞ ଲବ୍ଧ ସମ୍ପଦ, ଯଜ୍ଞକର୍ମରେ ଲାଗି, ଯଥାର୍ଥ ବିନିଯୋଗ ହେଉ ।

ଯୁଧିଷ୍ଠିର ଭାଇମାନଙ୍କୁ ନେଇ ହିମାଳୟକୁ ଗଲେ । ବିଦୁରଙ୍କୁ କହିଗଲେ, ଶ୍ରୀକୃଷ୍ଣଙ୍କୁ ନିମନ୍ତ୍ରଣ କରିବା ପାଇଁ । ସେମାନେ ସେହି ବିପୁଳ ଧନ ରାଶି ନେଇ ଫେରି ଆସିଲେ । ବର୍ତ୍ତମାନ ଧନଧାନ୍ୟ, ମଣିମୁକ୍ତା, ସୁବର୍ଣ୍ଣରେ ଭରପୂର ହସ୍ତିନାପୁର । ଯଜ୍ଞର ଆୟୋଜନ କରାଗଲା । ପୁରୋହିତ ଧୌମ୍ୟ ଓ ବେଦ ବ୍ୟାସ ଏହାର ଆନୁଷଙ୍ଗିକ ବ୍ୟବସ୍ଥା କଲେ ।

ଯଜ୍ଞ ଅଶ୍ୱକୁ ନେଇ ଅର୍ଜୁନ ସ୍ୱୟଂ ସୈନ୍ୟଗଣ ସହିତ ବାହାରିଲେ । ଅଶ୍ୱ ନିର୍ବିଘ୍ନରେ ଫେରି ଆସିଲେ ଯଜ୍ଞ ଆରମ୍ଭ ହେବ । ଯୁଧିଷ୍ଠିର ଅର୍ଜୁନଙ୍କୁ କହିଲେ, ''ଆମେ ରଣକ୍ଲାନ୍ତ, ମୋର ଇଚ୍ଛା, ତୁମେ ବିନାରକ୍ତ ପାତରେ ବିଜୟୀ ହୋଇ ଫେରି ଆସିବ । ମୁଁ ଆଲୋକ ଚାହେଁ କିନ୍ତୁ ଜ୍ୱଳନର ଜ୍ୱାଳା ଚାହେଁ ନାହିଁ ।

ପାଣ୍ଡବ ମାନଙ୍କ ଦ୍ୱାରା ପରାଭବ ପାଇଥିବା ଦେଶର ରାଜାମାନେ ଯଜ୍ଞ ଅଶ୍ୱକୁ ବାଧା ଦେଇଥିଲେ ଓ ଯୁଦ୍ଧରେ ପରାସ୍ତ ହୋଇ ଅଧୀନତାସ୍ୱୀକାର କଲେ । ତାଙ୍କୁ ନିମନ୍ତ୍ରଣ କରାଗଲା ଯଜ୍ଞରେ ଯୋଗ ଦେବାପାଇଁ । କେତେକ ପ୍ରତିରୋଧ ନକରି ନିମନ୍ତ୍ରଣ ରକ୍ଷାକଲେ ।

ତ୍ରିଗର୍ତ୍ତର ରାଜା ଭଗଦତ୍ତଙ୍କ ପୁତ୍ର ବଜ୍ରଦତ୍ତ ସହଜରେ ପରାଧୀନତା ସ୍ୱୀକାର କଲେ ନାହିଁ । ଯଜ୍ଞ ଅଶ୍ୱକୁ ବାନ୍ଧି ନେଇ ଗଲେ । ତୁମୁଳ ସଂଘର୍ଷ ହେଲା ଓ ଶେଷରେ ସେ ପରାଜୟ ସ୍ୱୀକାର କରି ଯଜ୍ଞ ନିମନ୍ତ୍ରଣ ରକ୍ଷା କଲେ ।

ତାପରେ ଅର୍ଜୁନ ଆସି ପହଞ୍ଚିଲେ ଜୟଦ୍ରଥଙ୍କ ରାଜ୍ୟସିନ୍ଧୁ ପ୍ରଦେଶରେ । ଅର୍ଜୁନ ମହାଭାରତ ଯୁଦ୍ଧରେ ଜୟଦ୍ରଥଙ୍କୁ ମାରି ଥିବାରୁ ତାଙ୍କୁ ସିନ୍ଧୁ ସୈନ୍ୟମାନେ ପ୍ରବଳ ପ୍ରତିରୋଧ କଲେ । ସେମାନଙ୍କ ଆକ୍ରମଣରେ ଅର୍ଜୁନ ଅତିଷ୍ଠ ହୋଇ ଉଠିଲେ । ଶେଷରେ ତାଙ୍କୁ ଅଧିକ ରୁକ୍ଷହେବାକୁ ପଡ଼ିଲା । ତାଙ୍କର ଶରାଘାତରେ ସିନ୍ଧୁ ସୈନ୍ୟମାନେ ତ୍ରାହିତ୍ରାହି ଡାକ ଛାଡିଲେ । ଦୁର୍ଯ୍ୟୋଧନଙ୍କ ଭଉଣୀ ଦୁଃଶଳା, ପୁତ୍ର ସୁରଥର ବାଳକ ପୁତ୍ରକୁ ରଥରେ ବସାଇ ରଣଭୂମିକୁ ଆସିଲେ । କାନ୍ଦି କାନ୍ଦି କହିଲେ,''ଭାଇ ! ତୁମ ନାଁ ଶୁଣି ମୋ ପୁତ୍ର ସୁରଥ ଏତେ ତ୍ରସ୍ତ କାତର ହୋଇପଡିଲା ଯେ ହଠାତ୍ ତାର ପ୍ରାଣବାୟୁ ଚାଲିଗଲା । ତା ଶବକୁ ପକାଇ ଦେଇ ମୁଁ

ତୁମ ପାଖକୁ ଆସିଛି । ଏ ଛେଉଣ୍ଡ ଛୁଆଟାକୁ ରକ୍ଷାକର । ସେ ମଧ୍ୟ ତୁମର ନାତି ।

ଅର୍ଜ୍ଜୁନ ଅଭୟ ପ୍ରଦାନ କରି ଭଉଣୀକୁ ଆଶ୍ୱାସନା ଦେଲେ । ସଂସ୍କାର କାର୍ଯ୍ୟରେ ମଧ୍ୟ ସହଯୋଗ କଲେ । ଏ ଘଟଣା ତାଙ୍କ ମନରେ ଗଭୀର ଆଘାତ ଦେଲା । ସେ ନିୟନ୍ତ୍ରଣ ଜଣାଇ ବିଦାୟ ନେଲେ ।

ଅର୍ଜ୍ଜୁନ ଯଜ୍ଞଅଶ୍ୱକୁ ନେଇ ଅହଞ୍ଚିଲେ ମଣିପୁରରେ ।

ମଣିପୁରର ନରେଶ ବଭ୍ରୁବାହନ ତାଙ୍କ ପୁତ୍ର । ରାଜମାତା ଚିତ୍ରାଙ୍ଗଦା, ପୁତ୍ରକୁ ପିତାଙ୍କର ଆଗମନ ବାର୍ତ୍ତା ଜଣାଇଲେ । ବଭ୍ରୁବାହନ ସ୍ୱାଗତ ସମ୍ଭାର ନେଇ ପିତାଙ୍କ ପାଖକୁ ଗଲେ । ଅର୍ଜ୍ଜୁନ କହିଲେ, "ମୁଁ ଯଜ୍ଞ ଅଶ୍ୱ ନେଇ ଆସିଛି । ତୁମେ କ୍ଷତ୍ରୀୟ ବୀରର ସନ୍ତାନ । ଯୁଦ୍ଧ ଦାନ କରି ସ୍ୱାଗତ ସମ୍ଭାଷଣ ଜଣାଅ ।"

ବଭ୍ରୁବାହନ ଫେରିଆସି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଅର୍ଜ୍ଜୁନଙ୍କ ଆସିବା ଖବର ପାଇ ତାଙ୍କର ଅନ୍ୟପତ୍ନୀ ନାଗକନ୍ୟା ଉଲୂପୀ ପାତାଳ ପୁରରୁ ଆସି ପହଞ୍ଚିଥିଲେ ମଣିପୁରରେ ।

ପିତା ପୁତ୍ରଙ୍କ ମଧ୍ୟରେ ଭୟଙ୍କର ସଂଗ୍ରାମ ହେଲା । ଅର୍ଜ୍ଜୁନଙ୍କର ସମସ୍ତ ସମର କୌଶଳ ବ୍ୟର୍ଥ ହେଲା ପୁତ୍ର ବଭ୍ରୁବାହନ ପାଖରେ । ତାର ଶର ମାଡ଼ରେ ସେ ଯୁଦ୍ଧ ଭୂମିରେ ଟଳି ପଡିଲେ । ଏପାଖେ ଅର୍ଜ୍ଜୁନଙ୍କ ଅସ୍ତ୍ରାଘାତରେ ବଭ୍ରୁବାହନ ଆହତ ଓ ମୂର୍ଚ୍ଛିତ ହୋଇ ପଡ଼ିଲେ ।

ଉଲୂପୀ ପିତାପୁତ୍ରଙ୍କର ଏହି ଦଶା ଦେଖି ପାଖରେ ଥିବା ନାଗମଣି ପ୍ରଭାବରେ ଉଭୟଙ୍କୁ ମୃତ୍ୟୁ ମୁଖରୁ ବଞ୍ଚାଇ ଦେଲେ । ପିତା ନିଜର ପରାକ୍ରମୀ ପୁତ୍ରକୁ ବୁକୁରେ ଜଡାଇ ଗଭୀର ଆଲିଙ୍ଗନ ଦେଲେ । ବଭ୍ରୁବାହନ ପିତାଙ୍କର ବିପୁଳ ସତ୍କାର କଲେ । ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ ଚିତ୍ରାଙ୍ଗଦା ।

ଅର୍ଜ୍ଜୁନ ଏହାପରେ ଅନ୍ୟ ରାଜ୍ୟମାନଙ୍କୁ ଯଜ୍ଞ ଅଶ୍ୱ ସହିତ ଗଲେ । ସେମାନେ ବଶତା ସ୍ୱୀକାର କରି ନିୟନ୍ତ୍ରଣ ରକ୍ଷାକଲେ । ଏହା ପରେ ସେ ଫେରି ଆସିଲେ ହସ୍ତିନାପୁରକୁ ।

ପୂର୍ବରୁ ଶ୍ରୀକୃଷ୍ଣ ହସ୍ତିନାକୁ ଆସି ସାରିଥିଲେ । ତାଙ୍କଠାରୁ ଯୁଧିଷ୍ଠିର ଅର୍ଜ୍ଜୁନଙ୍କର ଶୁଭ ପ୍ରତ୍ୟାବର୍ତ୍ତନ ସମ୍ବାଦ ପାଇଲେ । ଆଚାର୍ଯ୍ୟ, ଋଷି, ବ୍ରାହ୍ମଣ, ଏବଂ ଆଗତ ସବୁ ରାଜାଙ୍କ ସହିତ ଯୁଧିଷ୍ଠିର ଯାଇ ଯଜ୍ଞ ଅଶ୍ୱକୁ ସ୍ୱାଗତ ଜଣାଇଲେ ।

ଯଜ୍ଞର ଆଚାର୍ଯ୍ୟ ହେଲେ ଯାଜ୍ଞବଲ୍କ ଓ ଭଗବାନ ବ୍ୟାସଦେବ । ସବିଧିରେ ନିର୍ବିଘ୍ନରେ ଯଜ୍ଞ ସମ୍ପନ୍ନ ହେଲା । ଧର୍ମରାଜ ବ୍ରାହ୍ମଣ, ଆଚାର୍ଯ୍ୟ, ଋଷି, ରାଜା, ପ୍ରଜା ସମସ୍ତଙ୍କୁ ବିପୁଳ ଅର୍ଥ ଦାନ ଦେଲେ । ସମସ୍ତେ ସନ୍ତୁଷ୍ଟ ଓ ପରିତୃପ୍ତ । ପ୍ରଥମଥର ପାଇଁ ଅର୍ଜ୍ଜୁନଙ୍କ ଦୁଇପତ୍ନୀ ଉଲୂପୀ ଓ ଚିତ୍ରାଙ୍ଗଦା ହସ୍ତିନାପୁରକୁ ଆସିଥିଲେ । ବଭ୍ରୁବାହନ ଆଜି ସବୁ ମାଆଙ୍କର ନୟନ ପିତୁଳା । ସବୁରି ହୃଦୟମଣି । ଅମାପ ସ୍ନେହ ଶ୍ରଦ୍ଧାର ଅଧିକାରୀ ବଭ୍ରୁବାହନ । ସୁଭଦ୍ରା କିଛି ସମୟ ପାଇଁ ପୁତ୍ର ଶୋକ ଭୁଲିଗଲେ ।

# ।। ସୁବର୍ଣ୍ଣ ନେଉଳ ।।

ଅଶ୍ୱମେଧ ଯଜ୍ଞର ବିଶେଷ ଘଟଣା ହେଉଛି ସୁବର୍ଣ୍ଣ ନେଉଳ କଥା । ନିମନ୍ତ୍ରିତ ଅତିଥି ଓ ରାଜା ମହାରାଜାମାନେ ଯଜ୍ଞ ମଞ୍ଚରେ ବସିଛନ୍ତି । ହଠାତ୍ ଗୋଟିଏ ସୁବର୍ଣ୍ଣ ନେଉଳ କେଉଁଠାରୁ ଚାଲିଆସି ଏପାଖ ସେପାଖ ଚାରି ଆଡେ ଦୌଡିଲା । ସମସ୍ତଙ୍କର କୌତୂହଳ ସୃଷ୍ଟିହେଲା ତାକୁ ଦେଖିବା ପାଇଁ । କିଛି ସମୟ ପରେ ସେ ମଞ୍ଚ ମଝିକୁ ଚାଲିଆସି ମଣିଷପରି ହସି ଉଠିଲା । ଭୂଇଁରେ ଗଡେଇ ତଡେଇ ହେଲା । ତା' ଠୋ....ଠୋ ହସ ସମସ୍ତଙ୍କୁ ସ୍ତବ୍ଧ କରିଦେଲା । ସମସ୍ତେ ଭାବିଲେ, ଏଇଟା ବୋଧହୁଏ ଗୋଟାଏ ଅଶୁଭ ଆତ୍ମା, ଯଜ୍ଞର ପବିତ୍ରତା ନଷ୍ଟ କରିବାକୁ ଆସିଛି ।

ନେଉଳ ତା' ଦୁଇ ଗୋଡ଼ରେ ଠିଆ ହୋଇ ସଭାମଞ୍ଚର ସମସ୍ତଙ୍କୁ ଲକ୍ଷ୍ୟକରି ମଣିଷ ପରି କହିଲା, ''ହେ ସମବେତ ସଜ୍ଜନ ମଣ୍ଡଳୀ ! ମୋ କଥାଟିକିଏ ଶୁଣନ୍ତୁ । ଆଜିଏହି ଅଶ୍ୱମେଧ ଯଜ୍ଞର ମହନୀୟତା ମାପିବା ପାଇଁ ମୁଁ ଆସିଛି । ମୁଁ ଅସୁମାର ଯଜ୍ଞର ଫଳାଫଳ ପରୀକ୍ଷା କରିଛି । ଯଜ୍ଞ ସମ୍ପାଦନ କରି, କେଉଁ ସମ୍ରାଟ କେତେ ସମ୍ମାନ ବା ସଫଳତା ପାଇଛନ୍ତି, ତାହା ଅନୁଧ୍ୟାନ କରିଛି । ଆପଣଙ୍କର ଏହି ଯଜ୍ଞ ଖୁବ୍ ଆଡ଼ମ୍ବର ସହକାରେ ସମ୍ପାଦିତ ହେଲା । ବହୁ ଦାନ ପୁଣ୍ୟ ଭିତରେ ଧର୍ମରାଜ କେତେ ପୁଣ୍ୟ ଅର୍ଜନ କରିଛନ୍ତି, ତାହା ସେମାନଙ୍କୁ ଏପର୍ଯ୍ୟନ୍ତ ସ୍ପର୍ଶ କରିନାହିଁ । ମୁଁ କୌଣସି ଅଶୁଭ ଆତ୍ମାନୁହେଁ । ମୋ କହିବା ଅର୍ଥ କୁରୁକ୍ଷେତ୍ରର ସେଇ ଅନାମଧେୟ ବ୍ରାହ୍ମଣର ଦାନ ଯଜ୍ଞ ତୁଳନାରେ ଧର୍ମରାଜଙ୍କ ଏଇ ଦାନଯଜ୍ଞର ମହତ୍ତ୍ୱ ବିଶେଷ କିଛି ନାହିଁ ।''

ସମସ୍ତେ କ୍ରୋଧରେ ତାକୁ ଚାହିଁ ରହିଲେ ।

ସ୍ୱର୍ଣ୍ଣ ନକୁଳ କହିଲା, ''ମୋ କଥା ଆପଣଙ୍କୁ ଶୁଣିବାକୁ ଭଲ ଲାଗୁନାହିଁ ବୋଧହୁଏ । ମୁଁ ତାହାହେଲେ ଯାଉଚି । ମନେରଖନ୍ତୁ, ଧର୍ମରାଜଙ୍କ ପ୍ରତି ମୋର ଗଭୀର ସମ୍ମାନ ଓ ଭକ୍ତି ଅଛି । ମୁଁ ଈର୍ଷାଳୁ ହୋଇ ତାଙ୍କୁ ସମାଲୋଚନା କରୁନାହିଁ । ମୋ ଅନ୍ତର କଥା ସମସ୍ତଙ୍କୁ କହିଦେଉଛି । ସେ ବ୍ରାହ୍ମଣ ଧର୍ମରାଜଙ୍କ ଠାରୁ ମଧ୍ୟ ଉଚ୍ଚରେ ।

ଯୁଧିଷ୍ଠିର ହାତଯୋଡି ନମ୍ର ମଧୁର କଣ୍ଠରେ କହିଲେ, ''ନକୁଳ ! ମୁଁ ତୁମ କଥାରେ ଆଦୌ ବ୍ୟଥିତ କିମ୍ବା ବିଚଳିତ ନୁହେଁ । ଦୟାକରି ସେହି ଧାର୍ମିକ ବ୍ରାହ୍ମଣଙ୍କ ବିଷୟରେ ଆମକୁ କୁହ ।''

ନକୁଳ କହିଲା, ''ସେ ବ୍ରାହ୍ମଣଙ୍କର ନାଁ ହେଉଛି ''ଶକ୍ତୁପ୍ରସ୍ଥ'' । ସେ କୁରୁକ୍ଷେତ୍ରରେ ନିଜର ପରିବାର ସହିତ ରହୁଥିଲେ । ପରିବାର କହିଲେ ନିଜେ, ତାଙ୍କ ସ୍ତ୍ରୀ ଓ ପୁଅବୋହୂ । ବଡ଼ ଗରିବ ସେ । ବହୁ କଷ୍ଟରେ ଭରଣ ପୋଷଣ କରନ୍ତି । ଯେଉଁ ଦିନ ଯାହାମିଳେ ସେତିକିରେ ଚଳନ୍ତି । କିଛିବଳି ପଡିଲେ ସଞ୍ଚୟ କରନ୍ତି ନାହିଁ । ଅନ୍ୟମାନଙ୍କୁ ତାହା ଦେଇଦିଅନ୍ତି । ଏହା ତାଙ୍କ ଜୀବନର ବ୍ରତ ।

ସେମାନେ ଭିକ୍ଷା ନକରି ପରିଶ୍ରମ କରି ଖାଦ୍ୟ ସଂଗ୍ରହ କରନ୍ତି । ଖାଇବା ପାଇଁ ବଞ୍ଚିବା ତାଙ୍କର ଲକ୍ଷ୍ୟ ନୁହେଁ, ଲକ୍ଷ୍ୟ ହେଉଛି ବଞ୍ଚିବା ପାଇଁ ଖାଇବା । ଦିନଭିତରେ କେବଳ ମଧ୍ୟାହ୍ନରେ ସେମାନେ ବକତେ ଖାଆନ୍ତି । ତାଙ୍କର ସମ୍ପତ୍ତି କିଛି ନଥାଏ କିମ୍ବା ସେମାନେ ପରଦିନ ପାଇଁ ଚିନ୍ତା କରନ୍ତି ନାହିଁ ।

ଦିନେ ଦିନେ ସେମାନେ ଖାଇବାକୁ ନପାଇ କେବଳ ପାଣି ପିଇ ରହିଯାନ୍ତି । ଅନେକ ବର୍ଷଯାଏ ସେମାନେ ସେଠାରେ ଏଇପରି କଠୋର ଜୀବନ ଯାପନ କଲେ ।

ଦିନକର ଘଟଣା !

ବ୍ରାହ୍ମଣ ଦି'ଦିନ ଉପବାସ ପରେ ଦିନେ କିଛି ମକାଚୂନା ନେଇ ଘରକୁ ଫେରିଲେ । ସେଥିରେ ଖାଦ୍ୟ ପ୍ରସ୍ତୁତ କରାଗଲା ଓ ଚାରିଜଣଙ୍କ ମଧ୍ୟରେ ତାହା ବାଣ୍ଟି ଦିଆଗଲା । ସମସ୍ତେ ଆନନ୍ଦରେ ଖାଇବାକୁ ଯାଉଛନ୍ତି ଠିକ୍ ଏତିକି ବେଳେ, ଦାଣ୍ଡ ଦୁଆରେ ଶୁଣାଗଲା ଜଣେ ଅତିଥିଙ୍କ ଡ଼ାକ । ସମସ୍ତେ ଉଠିଯାଇ ଅତିଥିଙ୍କୁ ସମ୍ଭାଷଣ ଜଣାଇଲେ । ଅତିଥି କହିଲେ,''ମୁଁ କ୍ଷୁଧାର୍ତ୍ତ, ମୋତେ କିଛି ଖାଇବାକୁ ଦିଅନ୍ତୁ ।''

ବ୍ରାହ୍ମଣ ମହା ଆନନ୍ଦରେ ନିଜ ଖାଇବାତକ ଆଣି ଅତିଥିଙ୍କୁ ଦେଲେ । ତଥାପି ତାଙ୍କର ଭୋକ କମିଲାନାହିଁ । ବ୍ରାହ୍ମଣୀ ମଧ୍ୟ ନିଜର ଖାଦ୍ୟତକ ଆଣି ତାଙ୍କୁ ଆନନ୍ଦରେ ପରଷି ଦେଲେ । ବ୍ରାହ୍ମଣ ଅତିଥି ସେତକ ଖାଇସାରି ଉଠିଲେ ନାହିଁ । ପୁଣି କ୍ଷୁଧାର୍ତ୍ତ ନୟନରେ ଚାହିଁ ରହିଲେ ।

ବ୍ରାହ୍ମଣ କ'ଣ କରିବେ କିଛି ଭାବି ପାରିଲେ ନାହିଁ । ଅତିଥି ଅସନ୍ତୁଷ୍ଟ ହୋଇ ଉଠିଗଲେ କେତେକ୍ଷତି ହେବ । ଠିକ୍ ଏତିକି ବେଳେ ପୁଅ ନିଜର ଖାଦ୍ୟତକ ମା'ଙ୍କ ହାତକୁ ବଢାଇଦେଲେ ଅତିଥିଙ୍କୁ ଦେବାପାଇଁ । ମା' ପୁଅ ମୁହଁ ଟିକୁ ଟିକିଏ ଚାହିଁ ଆନନ୍ଦରେ ଅତିଥିଙ୍କୁ ସେତକ ଦେଲେ ତଥାପି ଭୋକ ମେଣ୍ଟିଲା ନାହିଁ । ବୋହୂ ନିଜ ଖାଦ୍ୟତକ ଶାଶୂଙ୍କ ହାତକୁ ବଢାଇ ଦେଇ ହସି ହସି କହିଲେ, ବ୍ରାହ୍ମଣ ଗୋସାଇଁ ସନ୍ତୁଷ୍ଟ ହୁଅନ୍ତୁ । ତାଙ୍କର ଆଶୀର୍ବାଦ ଓ ସନ୍ତୋଷ ଆମର ସମ୍ପତ୍ତି ।

ଅତିଥି ସେତକ ପାଇ ସାରିବାପରେ ତୃପ୍ତିର ଆବାଜ କରି କହିଲେ,''ଆଃ...କି ଶାନ୍ତି । ଏ ଭୋଜନ ମୋତେ ଅନନ୍ତ ତୃପ୍ତି ଦେଇଛି । ବ୍ରାହ୍ମଣ ଭୂରି ଭୋଜନ ପାଇ ଯେତିକି ପରିତୃପ୍ତି ହୋଇଥାନ୍ତେ ତାଙ୍କ କଥା, କ୍ଷୁଧାର୍ତ୍ତ ପରିବାରକୁ ତା'ଠାରୁ ଅଧିକ ତୃପ୍ତି ଓ ଆନନ୍ଦ ଦେଲା ।

ଅତିଥି ଆନନ୍ଦିତ ହୋଇ ସେମାନଙ୍କୁ ଆଶୀର୍ବାଦ ଦେଇ କହିଲେ, 'ତୁମର ଆତିଥ୍ୟ ଅନନ୍ୟ । ଏହା ପଛରେ, କିଛି ଲାଭ କରିବା ପାଇଁ ତୁମର କାମନା ନାହିଁ । ତୁମେ ପରମ ଅତିଥ୍ୟ ସ୍ୱୀକାର କରିଛି । ତୁମ ଉପରେ ଦେବତାମାନେ ମଧ୍ୟ ସନ୍ତୁଷ୍ଟ । ଦେଖ, ଆକାଶରୁ ପୁଷ୍ପବୃଷ୍ଟି ହେଉଛି । ବିଶ୍ୱବିଧାତା ତୁମ ତ୍ୟାଗ ପାଇଁ ପ୍ରୀତ ହୋଇ ତାଙ୍କ ଦିବ୍ୟରଥ ପଠାଇଛନ୍ତି । ତୁମେ ସେଥିରେ ବସି ସ୍ୱର୍ଗକୁ ଯାଅ । ମୁଁ ତୁମକୁ ପରୀକ୍ଷା କରିବା ପାଇଁ ଆସିଥିଲି । ମୁଁ ହେଉଛି ଧର୍ମ ଦେବତା ।'' ଏହା କହି ସେ ଉଭେଇଗଲେ ।

ବ୍ରାହ୍ମଣ ନିଜର ପରିବାର ସହିତ ରଥରେ ବସି ସ୍ୱର୍ଗକୁ ସ୍ୱଦେହରେ ଗଲେ । ନିଜର ନିଷ୍ଠା ଓ ତ୍ୟାଗ ପାଇଁ ଦେବଲୋକରେ ସ୍ଥାନ ପାଇଲେ । ।

ନକୁଳ କହିଲା, ''ହେ ଧର୍ମରାଜ ! କ୍ଷମା ଦିଅନ୍ତୁ ମୋର ଧୃଷ୍ଟତା ପାଇଁ । ମୁଁ ଚେତାଇଦେବାକୁ ଚାହେଁ, ଗୋଟିଏ ନିରୀହ, ଦୁର୍ବଳ, ନିରସ୍ତ୍ର ପଶୁକୁ ବଳି ଦେଇଦେଲେ ତାହା ତ୍ୟାଗର ଶୁଭଫଳ ଦିଏ ନାହିଁ । ଅଧର୍ମ ସଂଚିତ ଧନକୁ ଦାନ କରି, କେହି ଦାନୀର ସମ୍ମାନ ପାଏ ନାହିଁ । ନିଃସ୍ୱାର୍ଥ ତ୍ୟାଗହିଁ ପ୍ରକୃତ ତ୍ୟାଗ । ଆପଣ ଯେଉଁ ଅଶ୍ୱମେଧ ଯଜ୍ଞ କଲେ ଓ ପୂର୍ବରୁ ଯେଉଁ ମାନେ କରିଛନ୍ତି ତାହା ଏହି ଦରିଦ୍ର ବ୍ରାହ୍ମଣର ସ୍ୱାର୍ଥ ଯଜ୍ଞଠାରୁ କୌଣସି ଗୁଣରେ ଅଧିକ ନୁହେଁ । ମଣିଷ ନିଜ ସଫଳତାର ଶୀର୍ଷରେ ପହଞ୍ଚିବା ପରେ, ଏଇ ପରି ଅପକର୍ମ, ଧର୍ମ ନାମରେ କରିବା ଅନୁଚିତ । କ୍ଷମାଦେବେ, ମୁଁ ଯାଉଛି ।'' ସେ ଅନ୍ତର୍ହିତ ହୋଇଗଲେ । ମହର୍ଷି ଜମଦଗ୍ନି ନେଉଳ ବେଶରେ ଆସି ଏହି ମହାଶିକ୍ଷା ଦେଇଥିଲେ ଧର୍ମରାଜଙ୍କୁ ।

# ।। ଧୃତରାଷ୍ଟ୍ରଙ୍କ ବାନପ୍ରସ୍ଥ ।।

ଅଶ୍ୱମେଧ ଯଜ୍ଞପରେ ଯୁଧିଷ୍ଠିର ସମଗ୍ର ଆର୍ଯ୍ୟବର୍ତ୍ତର ହେଲେ ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ । ରାଜାମାନେ ତାଙ୍କର ଆନୁଗତ୍ୟ ସ୍ୱୀକାର କରିଛନ୍ତି । ସେ ଧର୍ମାନୁମୋଦିତ ନୀତିରେ ରାଜ୍ୟଶାସନ କଲେ । ସତେ ଯେପରି ଅତୀତର ରାମରାଜ୍ୟ ପ୍ରତିଷ୍ଠା ହେଲା । ପାଣ୍ଡବମାନେ ବିଜୟ ଲାଭ କରିବା ପରେ, ଯେଉଁ ଆନନ୍ଦ ପାଇବେ ବୋଲି ଆଶା କରିଥିଲେ ସେ ଆନନ୍ଦ ତାଙ୍କୁ ମିଳିଲା ନାହିଁ । କିଛି ଗୋଟାଏ ଅହେତୁକ ଅଭାବ ସେମାନେ ସବୁବେଳେ ଅନୁଭବ କରୁଥିଲେ ।

ଧୃତରାଷ୍ଟ୍ର ଓ ଗାନ୍ଧାରୀ ପାଣ୍ଡବମାନଙ୍କର ପରମ ସମ୍ମାନ ଲାଭ କରୁଥିଲେ । ଯୁଧିଷ୍ଠିର ରାଜକାର୍ଯ୍ୟର ପ୍ରତ୍ୟେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଧୃତରାଷ୍ଟ୍ରଙ୍କର ବିଜ୍ଞ ପରାମର୍ଶ ଗ୍ରହଣ କରୁଥିଲେ । ଧୃତରାଷ୍ଟ୍ର ଅନୁଭବ କରୁଥିଲେ, ସତେ ଯେପରି ସେ ଆଜି ମଧ କୁରୁ ସମ୍ରାଟ ଓ ରାଜ୍ୟର ସର୍ବମୟ କର୍ତ୍ତା । ରାଜମାତା କୁନ୍ତୀ ଗାନ୍ଧାରୀଙ୍କର ସେବା ସର୍ବଦା କରୁଥିଲେ । ସତେ ଯେପରି କାୟା ପାଖରେ ଛାୟା । ପାରିବାରିକ ସଙ୍କଟ ତାଙ୍କର ଗାନ୍ଧାରୀଙ୍କ ପ୍ରତି ଥିବା ଅତୁଟ ସ୍ନେହ ଶ୍ରଦ୍ଧାକୁ ମଳିନ କରିପାରି ନଥିଲା । ସବୁ ଭିତରେ ଭୀମସେନ ଥିଲେ, ବ୍ୟତିକ୍ରମ । ପରୋକ୍ଷରେ ଧୃତରାଷ୍ଟ୍ରଙ୍କ ପ୍ରତି ସେ ଉଦାସୀନ ଥିଲେ । ସମୟେ ସମୟେ ଆଘାତ ଦେଉଥିଲେ ମଧ୍ୟ । ସେ ଭୁଲି ପାରିନଥିଲେ ଅତୀତର ଆଘାତ ସବୁକୁ । ପରିସ୍ଥିତି ସହିତ ଖାପ ଖୁଆଇ ସଫଳ ଅଭିନୟ କରିପାରି ନଥିଲେ ଭୀମସେନ ।

ଦ୍ରୌପଦୀ, କୁନ୍ତୀ ଓ ଗାନ୍ଧାରୀଙ୍କୁ ସମଦୃଷ୍ଟିରେ ଦେଖୁଥିଲେ । ଶ୍ରଦ୍ଧା, ଭକ୍ତି ସମ୍ମାନ ଓ ସେବା ଉଭୟେ ସମାନ ଭାବରେ ପାଉଥିଲେ ପାଞ୍ଚାଳୀଙ୍କଠାରୁ । ଦ୍ରୌପଦୀ ଆଜି ପରିବର୍ତ୍ତିତ ପରିସ୍ଥିତିର ଏକ ନୂତନ ମଣିଷ । ମମତାର ମନ୍ଦାକିନୀ ।

କୃପାଚାର୍ଯ୍ୟ ଧୃତରାଷ୍ଟ୍ରଙ୍କ ପାଖେ ପାଖେ ଥାଆନ୍ତି । ଯୁଧିଷ୍ଠିର ତାଙ୍କର ସମସ୍ତ ଦୋଷ। ଦୋଷ କ୍ଷମା ଦେଇଛନ୍ତି । ସେ ଅନ୍ଧରାଜାଙ୍କୁ ସୈଖ୍ୟ ଦାନ କରନ୍ତି । ବ୍ୟାସଦେବ ମଝିରେ ମଝିରେ ଆସି ତାଙ୍କ ମାନସିକ ଗ୍ଲାନି ଦୂର କରିବାକୁ ବହୁ ନୀତିକଥା କୁହନ୍ତି । ଯୁଧିଷ୍ଠିର ଥିଲେ ତାଙ୍କର ପରମ ସେବକ । ସେ ବର୍ତ୍ତମାନ କୁରୁକୁଳର କୁଳବୃଦ୍ଧ ଓ ପାଣ୍ଡବମାନଙ୍କର ପିତୃ ପ୍ରତିମ ଅଭିଭାବକ । ଏହିପରି ପନ୍ଦର ବର୍ଷ କଟିଗଲା ।

ଦିନେ ଧୃତରାଷ୍ଟ୍ର, ଯୁଧିଷ୍ଠିର ଓ ଅନ୍ୟମାନଙ୍କୁ ଡାକି କହିଲେ ବତ୍ସ ! ତୁମେ ବିପୁଳ ସ୍ନେହ ସମାଦର ଭିତରେ ମୋତେ ଓ ଗାନ୍ଧାରୀଙ୍କୁ ସମ୍ମାନିତ କରିଛ । ପରିଣତ ବୟସରେ ରାଜପୁରୀର ସମ୍ଭୋଗ ପରିତ୍ୟାଗ କରି, ବାନପ୍ରସ୍ଥାଶ୍ରମ କରିବା ଶାସ୍ତ୍ର ସମ୍ମତ ରାଜଧର୍ମ । ମୁଁ ମୋ ଜୀବନର ଏଇ ଶେଷ ସନ୍ଧ୍ୟାରେ, ସେଇ ମହାନ୍ ଆର୍ଯ୍ୟ ସଂସ୍କୃତି ପାଳନ କରିବାକୁ ଚାହେଁ । ମତେ ଅନୁମତି ଦିଅ । ମୁଁ ବନ ଗମନ କରିବି ।''

ଯୁଧିଷ୍ଠିର ବିସ୍ମିତ ହୋଇଗଲେ । ହଠାତ୍ ସେ କିଛି କହିପାରିଲେ ନାହିଁ । କିଛି ସମୟର ମୌନତା ପରେ କହିଲେ, ''ତାତ ! ଏପ୍ରକାର କଠୋର ସିଦ୍ଧାନ୍ତ ମୋତେ ବଡ଼ ଆଘାତ ଦେଉଛି । ଆପଣତ ଏ

ରାଜ୍ୟର ସର୍ବମୟ କର୍ତ୍ତା । ମୁଁ ଆପଣଙ୍କୁ ଅନୁମତି ଦେବାର ପ୍ରଶ୍ନ ଉଠୁଛି କେଉଁଠୁ । ଆମେ ସବୁ ଆପଣଙ୍କର ସ୍ନେହପୁଷ୍ଟ ସନ୍ତାନ । ରାଜମାତା ଗାନ୍ଧାରୀ ଓ କୁନ୍ତୀ ଆମର ପରମ ସମ୍ମାନନୀୟା ମାଆ । ଆପଣ ବନ ଗମନ କଲେ ମୁଁ ମଧ ଯିବି । ଆମେ ଯଦି କିଛି ଅପରାଧ ଓ ତ୍ରୁଟୀ କରିଛୁ ଦୟାକରି କ୍ଷମା ଦିଅନ୍ତୁ ।''

ଧୃତରାଷ୍ଟ୍ର ଆନନ୍ଦିତ ହୋଇ କହିଲେ, ''ଆମେ ଯେଉଁ ସ୍ନେହ ଶ୍ରଦ୍ଧା ଓ ସମ୍ମାନ ପାଇଛୁ ତାହା ଜୀବନର ଅଭୁଲା ଅଧ୍ୟାୟ । ଦୋଷ ତ୍ରୁଟୀର ପ୍ରଶ୍ନ ଉଠୁନାହିଁ । ଏହା ରାଜ ପରମ୍ପରା ଓ ଆର୍ଯ୍ୟ ସଂସ୍କୃତିର ବିଧାନ । ମୁଁ ମୋ ମନକୁ ସ୍ଥିର କରି ସାରିଛି । ସିଦ୍ଧାନ୍ତ ମୋର ଅଟଳ । ମୁଁ ଆଜି ଗାନ୍ଧାରୀଙ୍କୁ ନେଇ ବଣକୁ ଯିବି ।

ଠିକ୍ ଏତିକିବେଳେ ଆସି ପହଞ୍ଚିଲେ ବେଦବ୍ୟାସ । ସେ ସମସ୍ତ କଥାଶୁଣି ଧୃତରାଷ୍ଟ୍ରଙ୍କର ମନୋଭାବକୁ ପ୍ରଶଂସା କଲେ । ଯୁଧିଷ୍ଠିରଙ୍କୁ କହିଲେ, ''ତାଙ୍କ ଜୀବନକୁ କଠୋର ତପସ୍ୟାରେ ପରିଶୁଦ୍ଧ କରିବାର ସମୟ ଆସିଛି, ତୁମେ ଅନୁମତି ଦିଅ''

ତାହାହିଁ ହେଲା । ସେଦିନ କାର୍ତ୍ତିକ ପୂର୍ଣ୍ଣିମା ।

ଧୃତରାଷ୍ଟ୍ର, ଯୁଧିଷ୍ଠିର ଓ ଅନ୍ୟମାନଙ୍କୁ ଡାକି ଆଶୀର୍ବାଦ ଦେଲେ । ରାଜପୋଷାକ ଖୋଲି ଦେଇ ଗୈରିକ ବସ୍ତ୍ର ପରିଧାନ କଲେ । ଗାନ୍ଧାରୀଙ୍କ ସହିତ ବଣକୁ ଯିବାପାଇଁ କୁନ୍ତୀମଧ ପ୍ରସ୍ତୁତ ହେଲେ । ଭୀମ ଏ ଦୃଶ୍ୟ ସହ୍ୟ କରିପାରିଲେ ନାହିଁ, ''କହିଲେ, ମା ! ତୁମେ କାହିଁକି ଆମ ସମସ୍ତଙ୍କୁ ଛାଡି ଚାଲିଯିବ ! ମୁଁ ତୁମକୁ ଛାଡିବିନାହିଁ ।''

କୁନ୍ତୀ କହିଲେ, ''ଧନ ମୋର ! ଜୀବନର ସେହି ବାତ୍ସଲ୍ୟ ସମୟଟା ବିତି ଯାଇଛି । ଆସିଛି କଠୋର କର୍ମମୟ ଜୀବନ, ନିଷ୍ଠୁର ବାସ୍ତବତା ଓ ପବିତ୍ର କର୍ତ୍ତବ୍ୟର ଡାକରା । ଦେଖୁଛୁ ତୋ ବଡ଼ ମାଙ୍କ ଅବସ୍ଥା । ସେ ବାଟ ଦେଖି ପାରିବେ ନାହିଁ । ତାଙ୍କର ସେବା ଶୁଶ୍ରୂଷା କରିବ କିଏ ? ତାଙ୍କୁ ବାଟକଢ଼ାଇବ କିଏ ? ସେ କାୟା ମୁଁ ଛାୟା । କାୟାକୁ ଛାଡି ଛାୟାକଣ ରହିପାରେ ।''

ଏହା ଶୁଣି ଧୃତରାଷ୍ଟ୍ରଙ୍କ ଆଖିରୁ ଲୋତକ ଝରି ଆସିଲା । ଭୀମଙ୍କର ଆଖି ମଧ ଓଦା ହୋଇଗଲା । ଯୁଧିଷ୍ଠିର ଅନ୍ୟଭାଇମାନେ ମାଙ୍କ ମନ ପରିବର୍ତ୍ତନ କରିପାରିଲେ ନାହିଁ ।

ଯିବା ପୂର୍ବରୁ କୁନ୍ତୀ ଯୁଧିଷ୍ଠିରଙ୍କୁ କହିଲେ, ''ବତ୍ସ ! ମୁଁ ଆଶୀର୍ବାଦ ଦେଉଛି, ତୁମେ ଶାନ୍ତି, ସତ୍ୟ ଓ ଧର୍ମନୀତି ଅନୁସାରେ ରାଜ୍ୟ ଶାସନ କର । ମୋର ଶେଷ ମିନତି ରକ୍ଷାକରିବ ନିଶ୍ଚୟ । 'ସହଦେବ ମୋର ଅମାୟିକ, ସର୍ବଦା ନିସ୍ପୃହ । ତାଙ୍କୁ ସ୍ନେହ ଆଦର ଭିତରେ ମିତାପରି ପାଳନ କରିବ । ଭୀମଙ୍କପ୍ରତି କେବେହେଲେ ଅବିଚାର କରିବ ନାହିଁ । ସେ ଜୀବନରେ ବହୁ ଅବିଚାର ଭୋଗ କରିଛନ୍ତି । ଅର୍ଜୁନ ସ୍ୱାଭିମାନୀ । ତାଙ୍କ ସ୍ୱାଭିମାନ ଉପରେ ଆଘାତ ଦେବନାହିଁ । ନକୁଳ ସ୍ପର୍ଶକାତର । ତାଙ୍କୁ ଶ୍ରଦ୍ଧାରେ ବଶୀଭୂତ କରିବ ।''

'ହଁ, ମନେରଖ, କର୍ଣ୍ଣ ବଡ଼ଭାଇ । ତାଙ୍କର ସ୍ତ୍ରୀ ଓ ପିଲାମାନଙ୍କର ଉନ୍ନତି, ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ସର୍ବଦା ସଜାଗ ରହିବ । ଶେଷରେ କହୁଛି, ମା' ଦ୍ରୌପଦୀଙ୍କୁ ରାଜଲକ୍ଷୀଙ୍କର ଅବତାର ବୋଲି ଭାବିବ ।

ସେ ଆଜନ୍ମ ଦୁଃଖିନୀ । ତାଙ୍କର କିଛି କ୍ଷତି ହେଲା ପରି କୌଣସି କାମ କରିବ ନାହିଁ । ସେ ତୁମକୁ ପଥପ୍ରଦର୍ଶନ କରାଇବେ ।''

ଭାଇମାନଙ୍କ ସହ ଯୁଧିଷ୍ଠିର ଅଶ୍ରୁସଜଳ ନୟନରେ ଆସି, ସମସ୍ତଙ୍କୁ ପ୍ରଣାମଜଣାଇଲେ ରାଜବଧୂମାନେ ପ୍ରଣାମକଲେ । ସମସ୍ତଙ୍କ ଠାରୁ ବିଦାୟ ନେଇ ସେମାନେ ବନଯାତ୍ରା ଆରମ୍ଭ କଲେ, ନଗର ବାସୀ ଅଶ୍ରୁପ୍ଳୁତ ନୟନରେ ବିଦାୟ ଦେଲେ । ଆଗେ ଆଗେ ମହିମାମୟୀ, କୁନ୍ତୀ, ତାଙ୍କର ହାତ ଧରିଥାନ୍ତି ଗାନ୍ଧାରୀ ଓ ତାଙ୍କ ପିଠିରେ ହାତ ପକାଇଥାନ୍ତି ଅର୍ଦ୍ଧନମିତ ଅନ୍ଧ ଧୃତରାଷ୍ଟ୍ର । ସେମାନଙ୍କ ଆଗ ପଛରେ ବିଦୁର ଓ ସଞ୍ଜୟ ରହି, ବେଦଗାନ କରି ଚାଲିଥାନ୍ତି । ଏ ଦୃଶ୍ୟଥିଲା ଅତୀବ ବେଦନା ଦାୟକ ।

ବହୁ ପଥ ଅତିକ୍ରମ କରିବା ପରେ, ସେମାନେ ଯାଇ ପହଞ୍ଚିଲେ ଭାଗୀରଥି ନଦୀ କୂଳରେ । ସେଠାରେ ଆଶ୍ରମ ସ୍ଥାପନ କରି ରହିଲେ । ଭୂମି ଉପରେ କୁଶ ଶଯ୍ୟା ପ୍ରସ୍ତୁତ କରି ଶୁଅନ୍ତି । ଫଳମୂଳ ଖାଇ କଠୋର ତପସ୍ୟାରେ ମଗ୍ନ ରହନ୍ତି । ଏପରି ତିନିବର୍ଷ ବିତିଗଲା । ଏଥିଭିତରେ ପାଣ୍ଡବ ଭାଇମାନେ ଆସି ସେମାନଙ୍କୁ ଦେଖିଯାଉଥାନ୍ତି ।

ବିଦୁର କିଛିଦିନ ପରେ ଗଭୀର ବନ ପ୍ରଦେଶକୁ ଯାଇ ଅନାହାରରେ କଠୋର ତପସ୍ୟା କରି ଦେହ ତ୍ୟାଗ କଲେ ।

ଦିନେ ଧୃତରାଷ୍ଟ୍ର ସଂଧ୍ୟା ପ୍ରାର୍ଥନା ସାରି ଆଚମନ ତର୍ପଣ କରୁଛନ୍ତି ହଠାତ୍ ବଣରେ ନିଆଁ ଲାଗିଗଲା । ଖୁବ୍ ଜୋରରେ ପବନ ବହିଲା । ଆଖିପିଛୁଳାକେ ଚତୁର୍ଦିଗରେ ବନାଗ୍ନି ମାଡିଗଲା । ଧୃତରାଷ୍ଟ୍ର ସଞ୍ଜୟଙ୍କୁ ବାଧକଲେ, ଆତ୍ମରକ୍ଷା ପାଇଁ ପଳାଇଯିବାକୁ । ସଞ୍ଜୟ କଥା ମାନି ଚାଲିଗଲେ ।

କୁନ୍ତୀ, ଗାନ୍ଧାରୀ ଓ ଧୃତରାଷ୍ଟ୍ର, କୁଶାସନ ଉପରେ ପୂର୍ବାଭିମୁଖୀ ହୋଇ ଦେବମନ୍ତ୍ର ଉଚ୍ଚାରଣ ପୂର୍ବକ ଶାନ୍ତ ସମାହିତ ଅବସ୍ଥାରେ ବସିଗଲେ । ଆଖିପିଛୁଳାକେ ତିନୋଟି ମହାଜ୍ୟୋତି ମହାନଳ ଭିତରେ ଲୀନ ହୋଇଗଲା ।

ଦେବର୍ଷି ନାରଦ ଏ ଦୁଃଖଦ ସମ୍ବାଦ ହସ୍ତିନାପୁରରେ ଯୁଧିଷ୍ଠିରଙ୍କୁ ଦେଲେ । ଧର୍ମରାଜ ସମସ୍ତ ପରିବାର ସହିତ ଶୋକାକୁଳିତ ହୋଇ, ଶେଷକୃତ୍ୟ ସମ୍ପନ୍ନ କଲେ ।

ସଞ୍ଜୟ ଜୀବନର ଶେଷଭାଗରେ ସନ୍ୟାସୀ ହୋଇ, ହିମାଳୟର ଘନ ଅରଣ୍ୟ ଭିତରେ ଜୀବନ ଅତିବାହିତ କଲେ ।

# ।। ଯଦୁବଂଶ ନାଶ ।।

କୁରୁକ୍ଷେତ୍ର ଯୁଦ୍ଧ ଶେଷ ହେବାପରେ ଶ୍ରୀକୃଷ୍ଣ ଅନେକ ବର୍ଷ ଦ୍ୱାରକାରେ ରାଜୁତି କରିଥିଲେ । କୃଷ୍ଣ ବଳରାମ ଯେଉଁ ଯାଦବ ବଂଶରେ ଜନ୍ମଗ୍ରହଣ କରିଥିଲେ ସେ ବଂଶର ଯାଦବମାନେ ବିପୁଳ ଭୋଗ ବିଳାସ ଭିତରେ ମଗ୍ନ ଥିଲେ, ଅଧିକାଂଶ ଯାଦବ ଥିଲେ ସୁରାସକ୍ତ । ସେମାନେ ସଂଯମତା ଓ ସମ୍ଭ୍ରମତା ହରାଇଥିଲେ । ନିଜନିଜ ଭିତରେ ଅନବରତ ଦ୍ୱନ୍ଦ୍ୱ ଓସଂଘର୍ଷ ଲାଗି ରହିବା ଫଳରେ ଏକତା ବିପର୍ଯ୍ୟସ୍ତ ହୋଇଥିଲା ।

ଦିନେ ବିଶ୍ୱାମିତ୍ର, କନ୍ୱ, ଦେବର୍ଷି ନାରଦ ଓ ଅନ୍ୟକେତେକ ମୁନି ଋଷି, ଶ୍ରୀକୃଷ୍ଣଙ୍କୁ ଦେଖିବାପାଇଁ ଦ୍ୱାରକାକୁ ଆସିଲେ । ଯାଦବମାନେ ମଜା ଦେଖିବାପାଇଁ ଗୋଟାଏ କାମ କଲେ । ତାଙ୍କ ଭିତରୁ ଜଣେ ଯୁବକକୁ ସଜାଇ ଦେଲେ ସ୍ତ୍ରୀ ବେଶରେ । ସତେଯେମିତି ଗର୍ଭବତୀ ମହିଳାଟିଏ । ତାକୁ ଆଣି ମୁନିମାନଙ୍କୁ ଦେଖାଇ ପଚାରିଲେ,''ଏ ସ୍ତ୍ରୀ ଗର୍ଭରୁ କି ପ୍ରକାର ସନ୍ତାନ ଜନ୍ମହେବ । ପୁଅ ନା ଝିଅ ?''

ମୁନିମାନେ ଯାଦବ ମାନଙ୍କର ମୁରୁକି ହସରୁ ସେମାନଙ୍କ ମନକଥା ଜାଣି ପାରିଲେ । ରାଗିଯାଇ କହିଲେ, ''ତାଗର୍ଭରୁ ଗୋଟିଏ ଲୌହ ମୂଷଳ ଜନ୍ମ ହେବ ଏବଂ ସେଇ ମୂଷଳ ହେବ ଯଦୁବଂଶର କାଳ । ସେ ତମ ଯଦୁବଂଶକୁ ଧ୍ୱଂସ କରିବ ।''

କିଏ ଭାବିଥିଲା ଏପରି ଏକ ଅଘଟଣା ଘଟିବ ବୋଲି । ଯାଦବମାନଙ୍କର ଚେତା ପଶିଲା । ଲେଡ଼ିଗୁଡ କହୁଣିକୁ ବହିଗଲାଣି । କରିବେ କଣ । ଋଷିମାନଙ୍କ ସହିତ ମଜାରେ ଥଟା ଖେଳିବାର ଫଳ ହେଲା ଭୟାନକ । ସମସ୍ତେ ଯାଇ ଶ୍ରୀକୃଷ୍ଣଙ୍କୁ ଗୁହାରି କଲେ । ଶ୍ରୀକୃଷ୍ଣ ଦେଖିଲେ ତାଙ୍କରି ପୁତ୍ର ଶାମ୍ବ ଏ ଅଭିଶାପ ମୁଣ୍ଡାଇଛି । ସେ କହିଲେ, ''ତୁମେ ତୁମ ସ୍ୱାଧୀନତାର ଅପବ୍ୟବହାର କଲ ଫଳ ଆଉକିଏ ଭୋଗିବ । ମୁଁ ଅତ୍ୟନ୍ତ ମର୍ମାହତ । ତୁମେ ସବୁ ମୁନିଋଷିମାନଙ୍କୁ ବିଦ୍ରୂପ କଲ । ଅପେକ୍ଷାକର କଣ ହେଉଛି । ମୁନି ଋଷିଙ୍କ ଅଭିଶାପକୁ ମୁଁ ବା' କଣ କରିପାରିବି !''

ଯତକୁ ସତ ନାରୀ ବେଶରେ ଯାଇଥିବା ଶାମ୍ବଙ୍କର ଗର୍ଭ ଉଦୟ ହେଲା । କି ଅପୂର୍ବ ଘଟଣା ! ପୁରୁଷର ଗର୍ଭ ଉଦୟ ହୋଇଛି ଋଷିମାନଙ୍କ ଅଭିଶାପରେ । ଯାଦବମାନେ ତ୍ରସ୍ତ କାତର ହୋଇ ଉଠିଲେ । ତାଙ୍କ କାଳ ଆସିଗଲା । ନିକଟରେ ସେମାନଙ୍କର ବଂଶ ନାଶ ହେବେ । କିଛିଦିନ ପରେ ଶାମ୍ବ ଗୋଟାଏ ଲୌହ ମୂଷଳ ଜନ୍ମ ଦେଲେ । ଯାଦବମାନେ ତାହା ଦେଖି ଛାନିଆ । ଶ୍ରୀକୃଷ୍ଣଙ୍କ ପରାମର୍ଶ କ୍ରମେ, ସେମାନେ ସେ ମୂଷଳଟିକୁ ବାଡେଇ ଛେଚି ଗୁଣ୍ଡକରିଦେଲେ । ତାକୁ ନେଇ ପକାଇ ଦେଲେ ସମୁଦ୍ରରେ । ବେଶ୍, ମୂଷଳର ମୃତ୍ୟୁ ହେଲା । ଯାଦବଙ୍କ ମନରୁ ମୃତ୍ୟୁ ଭୟ ଦୂର ହେଲା । ମନରେ ଅମାପ ଆନନ୍ଦ । ଋଷିମାନଙ୍କ ଅଭିଶାପକୁ ସେମାନେ ଭୁଲିଗଲେ । ଭୁଲିଗଲେ ସେଇ ଲୌହ ମୂଷଳକୁ । ଶ୍ରୀକୃଷ୍ଣଙ୍କ ଅନୁମତି

ନେଇ ଥରେ ଦ୍ୱାରକାର ଯାଦବଗଣ ପ୍ରଭାସ ତୀର୍ଥକୁ ଗଲେ । ସେଠାରେ ସମୁଦ୍ରକୂଳରେ ସେ ଗୋଟାଏ ବିରାଟ ଭୋଜିର ଆୟୋଜନ କଲେ । ପାନ ଭୋଜନର ବ୍ୟବସ୍ଥା ହେଲା । ଯଦୁକୁଳର ସବୁଲୋକ ଏଥିରେ ଯୋଗ ଦେଲେ । ଖିଆ ପିଆ, ମଉଜ ମଜଲିସର ସୁଅ ଛୁଟିଲା । ସେମାନେ ଏତେ ସୁରାପାନ କରିଥାନ୍ତିଯେ, ସମସ୍ତେ ନିଶାରେ ଉବୁଟୁବୁ । କାହାରି ଆୟତ୍ତ ନାହିଁ । କିଏ କାହାକୁ କଣ କହୁଛନ୍ତି ବୁଝିପାରୁ ନାହାନ୍ତି ।

ମହାଭାରତ ଯୁଦ୍ଧ କୋଉଦିନୁ ସରିଗଲାଣି । ସେଥିରୁ ବଞ୍ଚି ଫେରି ଆସିଥିଲେ କୃତବର୍ମ୍ମା ଯେକି ପାଣ୍ଡବମାନଙ୍କ ବିରୁଦ୍ଧରେ କୌରବ ସପକ୍ଷରେ ସେନାପତି ଭାବରେ ନାରାୟଣୀ ସେନା ପରିଚାଳନା କରି ଲଢୁଥିଲେ । ଆଉଜଣେ ଫେରିଥିଲେ ସାତ୍ୟକି । ସେ ଲଢୁଥିଲେ ପାଣ୍ଡବ ମାନଙ୍କ ସପକ୍ଷରେ । ପୁରୁଣା ଘା କୁଣ୍ଡାଇ ହୋଇ ରକ୍ତାକ୍ତ ହେଲାପରି, ଘଟଣା ଘଟିଲା । କୃତବର୍ମା ସାତ୍ୟକିଙ୍କୁ ଅପମାନ ଦେଉଥାନ୍ତି, ଯାଦବ ସୈନ୍ୟମାନଙ୍କୁ ମାରିଲେ ବୋଲି । ସାତ୍ୟକି କୃତବର୍ମାଙ୍କୁ ଅପମାନ ଦେଉଥାନ୍ତି ପାପୀ ଦୁର୍ଯ୍ୟୋଧନ ତରଫରେ ରହି ଯୁଦ୍ଧ କଲେ ବୋଲି । ମଦମତ୍ତ ଯାଦବ ମାନଙ୍କ ମଧ୍ୟରୁ ଦଳେ ସାତ୍ୟକିଙ୍କୁ ସମର୍ଥନ ଜଣାଥିଲେ ଆଉ ଦଳେ ପକ୍ଷଭୁକ୍ତ ହେଲେ କୃତବର୍ମାଙ୍କ ସହିତ ।

ଯୁକ୍ତିତର୍କ ବାଦବିବାଦ ଘନେଇ ଉଠିଲା । ଆରମ୍ଭ ହୋଇଗଲା ପୁଣିଥରେ ମହାଭାରତ ଯୁଦ୍ଧ । ପ୍ରଭାସତୀର୍ଥ କୁରୁକ୍ଷେତ୍ରରେ ପରିଣତ ହେଲା । ମରାମରି, ହଣାହଣି, ଏମିତି ଚାଲିଲାଯେ ସମମୁଦ୍ରର ବେଳାଭୂକୁ ହେଲା ରକ୍ତ ରଞ୍ଜିତ । ଯାଦବମାନେ ଦେଖିଲେ, ନିକଟରେ ଅଛି ଏକ ନଳ ବଣ । ସେଠାରୁ ମୋଟା ମୋଟା ବାଡ଼ି ସଂଗ୍ରହ କରି ଅସ୍ତ୍ରରୂପେ ବ୍ୟବହାର କଲେ । କି ଆଶ୍ଚର୍ଯ୍ୟ କଥା, ସେ ମୋଟା ବାଡ଼ି ଗୁଡାକ ଲୌହ ମୂଷଳରେ ପରିଣତ ହୋଇଗଲା । ନିଶାଗ୍ରସ୍ତ ଯାଦବ ଭାବିଲେ ଠାକୁରଙ୍କ ଦୟାରୁ ଓଜନିଆ ଅସ୍ତ୍ର ସେମାନଙ୍କୁ ମିଳି ଯାଇଛି । ମୂଷଳ ମାଡରେ ସମସ୍ତଙ୍କ ମୁଣ୍ଡ ଛତୁ ହେଲା ।

ସାତ୍ୟକିଙ୍କୁ ସାହାଯ୍ୟ କରିବାକୁ ଆସି ପହଞ୍ଚିଗଲେ ଶ୍ରୀକୃଷ୍ଣଙ୍କ ପୁଅ ପ୍ରଦ୍ୟୁମ୍ନ । ସାତ୍ୟକି ନିଜ ଖଣ୍ଡାରେ କୃତବର୍ମ୍ମାଙ୍କ ମୁଣ୍ଡ ଗଣ୍ଡି ଅଲଗା କରିଦେଲେ । କ୍ରୋଧ ଜର୍ଜରିତ ହୋଇ କହିଲେ,''ପାଣ୍ଡବ ଶିବିରରେସୁପ୍ତସୈନ୍ୟ ମାନଙ୍କୁ ମାରିଥିବା ମହାପାପୀ କୃତବର୍ମ୍ମାର ସଂହାର ପର୍ବ ଶେଷ ହେଲା.. ହାଃ...ହାଃ...ହାଃ ....।।

କୃତବର୍ମ୍ମାଙ୍କ ସପକ୍ଷ ଯାଦବ ମାନେ ମେଳି ହୋଇ ସାତ୍ୟକି ଏବଂ ପ୍ରଦ୍ୟୁମ୍ନଙ୍କୁ ହତ୍ୟାକଲେ । ଉଭୟ ପକ୍ଷ ମଧ୍ୟରେ ହତ୍ୟାର ତାଣ୍ଡବଲୀଳା ଚାଲିଲା ଦୀର୍ଘ ସମୟ ପାଇଁ । ଗାନ୍ଧାରୀ ଓ ମୁନି ମାନଙ୍କର ଅଭିଶାପ କାର୍ଯ୍ୟରେ ପରିଣତ ହେଲା । ମହାଭାରତ ମହାଯୁଦ୍ଧରେ କୌରବବଂଶ ନାଶ ହୋଇଥିଲେ । ପାଣ୍ଡବ ବଂଶର ଟିକିଏ ଛିଟିକା ଧ୍ୱଂସ ମୁଖରୁ ରହିଯାଇଛି । ବାକିଥିଲା ମହାଭାରତ ଯୁଦ୍ଧର ମହାନାୟକ ଶ୍ରୀକୃଷ୍ଣଙ୍କ ଯଦୁବଂଶ, ତାହାମଧ ଆଜି ଧ୍ୱଂସ ହେଲା । ସେ ଅଗ୍ନିଝୁଲ ଯେଉଁଠାରେ ପଡ଼ିଛି, ସେ ପରିବେଶକୁ ଜାଳି ପୋଡି ପାଉଁଶ କରିଦେଇଛି ।

ବଳରାମ ଏହି ପ୍ରଳୟ ଦୃଶ୍ୟଦେଖି ଦୁଃଖରେ ଭାଙ୍ଗିପଡ଼ିଲେ । ଗଭୀର ଆତ୍ମଦାହ ଭିତରେ ସେ ଦ୍ୱାରକା ଛାଡି ବଣକୁ ପଳାଇଗଲେ । ଶ୍ରୀକୃଷ୍ଣ ଆସି ଦେଖିଲେ ଯଦୁକୁଳ ଧ୍ୱଂସ ହୋଇଛି । ତାଙ୍କ ପ୍ରିୟ ସନ୍ତାନ ପ୍ରଦ୍ୟୁମ୍ନଙ୍କର ପ୍ରାଣପୁଷ୍ପ ମଉଳି ଯାଇଛି । ସେ ଉଦ୍‌ଗତ ଆତ୍ମଯନ୍ତ୍ରଣା ସହ୍ୟ କରିପାରିଲେ ନାହିଁ । ଭାବିଲେ, ଗାନ୍ଧାରୀଙ୍କ ଅଭିଶାପ ଆଜି ରୂପ ନେଲା ।

ନୈରାଶ୍ୟ, ଅର୍ନ୍ତର୍ଦାହ ଓ ଗଭୀର ଅନୁଶୋଚନା ଭିତରେ ଶ୍ରୀକୃଷ୍ଣ ବୁଡିଗଲେ ।ଜାଣିଲେ, ତାଙ୍କର ଶେଷ ମୁହୂର୍ତ୍ତମଧ ପହଞ୍ଚିଗଲାଣି । ତାଙ୍କୁ ଏଥର ବିଦାୟ ନେବାକୁ ହେବ ।

ବଳରାମଙ୍କୁ ଖୋଜିବାକୁ ଯାଇ ଘନ ଅରଣ୍ୟ ମଧରେ ଦେଖିଲେ, ସେ ଗଭୀର ତପୋମଗ୍ନ ଅବସ୍ଥାରେ ବସିଛନ୍ତି । ତାଙ୍କ ମସ୍ତକରୁ ଏକ ଅଖଣ୍ଡ ଆଲୋକ ସ୍ରୋତ, ସର୍ପପରି ବକ୍ରିଳ ଗତିରେ ବାହାରିଆସି ଅନନ୍ତ ସାଗର ଜଳରେ ମିଶିଗଲା । ସେ ବର୍ତ୍ତମାନ ସମାଧିସ୍ଥ ।

ବଳରାମଙ୍କର ମର୍ତ୍ତ୍ୟ ଲୀଳା ସମାପ୍ତ ହୋଇଛି । ଶ୍ରୀକୃଷ୍ଣ ସେଇ ନିର୍ଜନ ବନରେ ଏକାକୀ କିଛି ସମୟ ବିଚରଣ କରିବାପରେ, ଗଛଲତା ଗୁଳ୍ମ ଘେରା ଭୂମିଶଯ୍ୟାରେ ସେ ଶରୀର ପଖାଳି ଦେଲେ । ଆଖିରେ ନାଚିଉଠିଲା ଅତୀତର କରାଳ ଛାୟା । କୁରୁକ୍ଷେତ୍ରର ବିଭତ୍ସ ଦୃଶ୍ୟ । ପ୍ରଭାସତୀର୍ଥରେ ପ୍ରିୟଜନ ମାନଙ୍କର ରକ୍ତ ହୋଳି । ଆସ୍ତେ ଆସ୍ତେ ସାରା ଶରୀର ନିଶ୍ଚଳ ହୋଇ ଆସିଲା । ସତେ ଯେପରି ସେ ଯୋଗାରୂଢ଼ । ରକ୍ତିମ ପଦ ଦୁଇଟିରେ କେବଳ ସଂଚଳନର ସାମୟିକ ତରଙ୍ଗ ।

ଜରା ନାମକ ବ୍ୟାଧ ବଣରେ ବୁଲୁଥିଲା ମୃଗୟା ପାଇଁ । ସେ ବ୍ୟର୍ଥ ମନୋରଥ ହୋଇ ଫେରୁଛି, ଦେଖିଲା ଦୁଇଟି ରକ୍ତିମ କାନ ଉପରକୁ ଦେଖାଯାଉଛି ଗଛଲତା ଗହଳିଭିତରୁ । ଶ୍ରୀକୃଷ୍ଣଙ୍କ ପଦଯୁଗଳକୁ ମୃଗକାନ ବୋଲି ତା ମଧ୍ୟରେ ଭ୍ରମ ଧାରଣା ସୃଷ୍ଟ ହେଲା । ଆଖି ପିଛୁଳାକେ ସେ କଲା ଶରବିଦ୍ଧ । ପରମପୁରୁଷ ଶ୍ରୀକୃଷ୍ଣଙ୍କର ମାନବ ଶରୀର ମହାଗତି ଲାଭକଲା । ସମାପ୍ତ ହେଲା ତାଙ୍କର ମର୍ତ୍ତ୍ୟଲୀଳା ।

ସାରଥି ଦାରୁକଠାରୁ ସମ୍ବାଦ ପାଇ ଅର୍ଜ୍ଜୁନ ଦ୍ୱାରକା ଆସିଲେ । ଅଶ୍ରୁକାତର ଭାବବିହ୍ୱଳ ଅର୍ଜ୍ଜୁନ ବସୁଦେବ, ଦେବକୀ, ଓ ଯଦୁବଂଶର ସମସ୍ତ ବିଧବା ନାରୀ ତଥା ବାଳକ ବାଳିକା ମାନଙ୍କୁ ହସ୍ତିନା ନେଇ ଆସିଲେ । ବାଟରେ ଦସ୍ୟୁମାନେ ଆକ୍ରମଣ କଲେ ଅର୍ଜ୍ଜୁନଙ୍କୁ । ଯେଉଁ ଅର୍ଜ୍ଜୁନ ମହାଭାରତ ଯୁଦ୍ଧରେ ପ୍ରଳୟପୁରୁଷ ରୂପେ ସଂହାର ଲୀଳା ସୃଷ୍ଟି କରିଥିଲେ ସେ ସେତେବେଳେ ଭୁଲିଗଲେ ଅସ୍ତ୍ର ପ୍ରୟୋଗ କୌଶଳ, ସାମାନ୍ୟ ଦସ୍ୟୁକୁ ମଧ ଆୟତ୍ତ କରି ପାରିଲେ ନାହିଁ । ତାଙ୍କ ଆଖି ଆଗରେ ତରୁଣୀ ଯାଦବ ବଧୂ ମାନଙ୍କୁ ସେମାନେ ଅପହରଣ କରିନେଲେ । ପରାହତ ପାର୍ଥ ବିସ୍ମୟ ବିମୂଢ଼ ହୋଇ ଚାହିଁ ରହିଲେ ନିଜ ବିଫଳତାର ବିଦୀର୍ଣ୍ଣ ରୂପକୁ ।

ହସ୍ତିନାରେ ପହଞ୍ଚିଲେ । ଯୁଧିଷ୍ଠିରଙ୍କୁ ସବୁ କହିଲେ ।

ଦେବବ୍ୟାସ ଏହି ମାନସିକ ସଙ୍କଟ ମୁହୂର୍ତ୍ତରେ ଆସି ପହଞ୍ଚିଲେ । ସବୁ ଶୁଣି ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, ସମୟ ବଳବାନ୍, ମଣିଷ ନୁହେଁ । ମଣିଷ ସମୟକୁ ନେଇ ତା ଶକ୍ତି ସ୍ୱରୂପ ପ୍ରକାଶକରେ । କୃଷ୍ଣଙ୍କର କର୍ତ୍ତବ୍ୟ ସରିଯାଇଛି, ସେ ବିଦାୟ ନେଲେ । ତୁମମାନଙ୍କର ସମୟ ଏଠାରେ ଶେଷ ହୋଇଛି । ମହାପ୍ରସ୍ଥାନର ବ୍ୟବସ୍ଥାକର ।

―――――――――――――ଏକତିରିଶ

# ।। ପାଣ୍ଡବଙ୍କର ମହାପ୍ରସ୍ଥାନ ।।

ଶ୍ରୀକୃଷ୍ଣଙ୍କର ମର୍ତ୍ତ୍ୟ ବିଦାୟ ହସ୍ତିନାପୁରରେ ଶୋକରଛାୟା ଖେଳାଇଦେଲା । ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କୁ ହରାଇ ନିଜର ଜୀବନ ହରାଇଲା ପରି ଅନୁଭବ କଲେ । ସାଂସାରିକ ସୁଖ ସ୍ୱଚ୍ଛନ୍ଦ୍ୟ, ରାଜସୁଖ, ବିଭବ ସେମାନଙ୍କୁ କିଛି ଭଲ ଲାଗିଲାନାହିଁ ।

ବ୍ୟାସଦେବଙ୍କ ଉପଦେଶ ଅନୁସାରେ ସେମାନେ ରାଜ୍ୟ ଛାଡି ମହାପ୍ରସ୍ଥାନ ପାଇଁ ବ୍ୟବସ୍ଥା କଲେ । ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତଙ୍କୁ ହସ୍ତିନାର ରାଜଗାଦିରେ ଅଭିଷେକ କରାଗଲା । ଏହି ଉତ୍ସବ ସମାହିତ ହେଲା ବିପୁଳ ଆନନ୍ଦ ଉତ୍ସାହ ଓ ଆଡ଼ମ୍ବର ମଧ୍ୟରେ । ଧୃତରାଷ୍ଟ୍ରଙ୍କ ପୁତ୍ର ଯୁଯୁତ୍ସୁଙ୍କୁ ପ୍ରଧାନ ସେନାପତି ପଦରେ ନିଯୁକ୍ତ କରାଗଲା । କୃପାଚାର୍ଯ୍ୟଙ୍କୁ ବରଣ କରାଗଲା ଆଚାର୍ଯ୍ୟ ପଦରେ । ତାଙ୍କୁ ବିପୁଳଧନ ଦାନ କରାଗଲା ।

ପଞ୍ଚପାଣ୍ଡବ ଦ୍ରୌପଦୀଙ୍କ ସହିତ ତୀର୍ଥଯାତ୍ରାରେ ବାହାରିଲେ । ଧର୍ମରାଜ ସେତେବେଳେ ସୁଭଦ୍ରାଙ୍କୁ କହିଲେ,"ତୁମକୁ ମୁଁ ଗୋଟାଏ ଗୁରୁଦାୟିତ୍ୱ ସମ୍ପାଦନ କରିବା ପାଇଁ ଦେଉଛି । ବର୍ତ୍ତମାନ ତୁମ ନାତି ପରୀକ୍ଷିତ ହସ୍ତିନାରରାଜା । ତୁମ ଭାଇ ଶ୍ରୀକୃଷ୍ଣଙ୍କ ନାତି 'ବଜ୍ର' ଦେଉଛନ୍ତି ଇନ୍ଦ୍ରପ୍ରସ୍ଥର ରାଜା । ତୁମେ ବର୍ତ୍ତମାନ ପରିସ୍ଥିତିରେ ପାଣ୍ଡବ ଓ ଯାଦବ କୁଳର ଏକମାତ୍ର ଅଭିଭାବକ । ଉଭୟ ରାଜା, ରାଜ୍ୟ ଓ ପ୍ରଜାକୁଳର ମଙ୍ଗଳଦୃଷ୍ଟିରୁ ତୁମକୁ ଏଠାରେ ରହିବାକୁ ପଡ଼ିବ । ଆମମାନଙ୍କୁ ବିଦାୟ ଦିଅ ।"

ସୁଭଦ୍ରା ମୁଣ୍ଡପାତି ଏ ଆଦେଶ ଗ୍ରହଣକଲେ ।

ପାଣ୍ଡବମାନେ ବହୁଧନ ରତ୍ନ ଗୁରୁବ୍ରାହ୍ମଣ, କୁଳ ପୁରୋହିତ ଓ ଯାଚକ ମାନଙ୍କୁ ଦାନକରି ବାନପ୍ରସ୍ଥରେ ବାହାରିଲେ । ସମସ୍ତେ ରାଜ ପୋଷାକ ପରିହାର କରି ସାଧାରଣ ପୋଷାକ ପରିଧାନ କରିଛନ୍ତି । ହସ୍ତିନାର ପୁରବାସୀ ଓ ପ୍ରଜାମାନଙ୍କଠାରୁ ବିଦାୟ ନେଇ ସେମାନେ ଯାତ୍ରା ଆରମ୍ଭ କଲେ । ଯୁଯୁତ୍ସୁ ଅନ୍ୟମାନଙ୍କ ଗହଣରେ ଗଙ୍ଗାନଦୀ ପର୍ଯ୍ୟନ୍ତ ସେମାନଙ୍କ ସଙ୍ଗରେ ଗଲେ । ସେଠାରୁ ସେମାନେ ଅଶ୍ରୁତର୍ପଣ କରି ପ୍ରତ୍ୟାବର୍ତ୍ତନ କଲେ ହସ୍ତିନା ପୁରକୁ । ପାଣ୍ଡବମାନେ ତୀର୍ଥ ପଥରେ ଆଗେଇଗଲେ । ଆଶ୍ଚର୍ଯ୍ୟ କଥା, ଗୋଟିଏ କୁକୁର ସେଇଠାରୁ ସେମାନଙ୍କର ସାଥିହେଲା ।

ସେମାନେ ପଦ ବ୍ରଜରେ ଭାରତର ସମସ୍ତ ତୀର୍ଥସ୍ଥଳୀ ପରିଭ୍ରମଣ କଲେ । ଆସି ପହଞ୍ଚିଲେ ପୂର୍ବ ସାଗର ବେଳା ଭୂମିରେ । ଅଗ୍ନି ଦେବତା ସେମାନଙ୍କୁ ସାକ୍ଷାତ୍ ଦେଇ ଅର୍ଜୁନଙ୍କୁ କହିଲେ,"ପାର୍ଥ ! ତୁମେ, କେବଳ ଗାଣ୍ଡୀବ ଧନୁ ବ୍ୟତୀତ ସଂସାରର ସବୁକିଛି ପରିତ୍ୟାଗ କରିଛ । ଯେ ତୀର୍ଥଯାତ୍ରୀ, ସେ ତାର ଅନ୍ତିମ ମୋହକୁ ପରିତ୍ୟାଗ କରିବା ଉଚିତ । ତୁମ ପାଖରେ ଏ ଯେଉଁ ଶେଷ ସମ୍ବାରଟି ଅଛି, ଏହାକୁ ଏଠାରେ ପରିତ୍ୟାଗ କର । ଏହାକହି ସେ ଅଦୃଶ୍ୟ ହୋଇଗଲେ ।

ଅର୍ଜୁନ, ପ୍ରାଣଠାରୁ ପ୍ରିୟ ଗାଣ୍ଡୀବ ଧନୁକୁ ବରୁଣ ଦେବତାଙ୍କ ଉଦ୍ଦେଶ୍ୟରେ ମନ୍ତ୍ରସିକ୍ତ କରି ବିସର୍ଜନ କଲେ । ସମୁଦ୍ରର ଉତ୍ତାଳ ତରଙ୍ଗରେ ନାଚିନାଚି କେଉଁ ଅତଳ ଗହ୍ୱରରେ ଲୀନ ହୋଇଗଲା ଗାଣ୍ଡୀବଧନୁ ।

ଅନେକଦିନ ପର୍ଯ୍ୟନ୍ତ ତୀର୍ଥାଟନ ଚାଲିଲା । ଶେଷରେ ସେମାନେ ଆସି ପହଞ୍ଚିଲେ ହିମାଳୟର ପାଦଦେଶରେ । ସେଠାରୁ ସେମାନେ ମେରୁ ପର୍ବତ ଆଡକୁ ଆଗେଇଲେ । କୁକୁରଟିକୁ ବାରଣକଲେ ମଧ ସେ ଫେରିଲା ନାହିଁ । ଲାଞ୍ଜହଲାଇ ବରଂ କୃତଜ୍ଞତା ଅର୍ପଣକଲା । ଧର୍ମରାଜ କହିଲେ,''ସଂସାରର ସବୁମମତା ଛାଡିଦେଇ ପାରିଲେ କିନ୍ତୁ କୁକୁରଟିର ମମତା ଆମକୁ ଛାଡି ପାରୁନାହିଁ । ଠିକ୍ ଅଛି, ସେ ଆମ ସହିତ ଯାଉ ।''

ପୁଣି ଆଗକୁ ଆଗେଇଲେ ।

ଦ୍ରୌପଦୀ ପଥଶ୍ରାନ୍ତ । ଅତ୍ୟନ୍ତ କ୍ଳାନ୍ତ ତାଙ୍କ ଶରୀର । ସେ ପର୍ବତ ଉପରକୁ ଉଠିବା ବେଳେ ହଠାତ୍ ଝୁଣ୍ଟିପଡ଼ି ପ୍ରାଣତ୍ୟାଗ କଲେ । ମୋହତ୍ୟାଗର ମହାନ୍ ଅଧାୟ ଆରମ୍ଭ ହେଲା । ସେମାନେ ତାଙ୍କ ପାଇଁ ବ୍ୟଥିତ ହେଲେ ନାହିଁ । ଯାହା ଘଟିବାର ଅଛି ସମସ୍ତଙ୍କ ପାଇଁ, ନିର୍ଦ୍ଦିଷ୍ଟ ସମୟରେ ତାହା ଘଟିବ । ସେମାନେ ମଧ ସେହି ମହାସଂଘଟନର ସମ୍ମୁଖୀନ ହେବେ ।

ଭୀମସେନ ପଚାରିଲେ,''ଧର୍ମରାଜ ! ଦ୍ରୌପଦୀଙ୍କ ପରି ପୁଣ୍ୟଶୀଳଦେବୀ ପ୍ରଥମେ ମୃତ୍ୟୁର ସମ୍ମୁଖୀନ ହେଲେ କାହିଁକି ?''

''ହଁ ସେ ନିଶ୍ଚିତ ଭାବରେ ପୁଣ୍ୟଶୀଳା କିନ୍ତୁ ନିର୍ଦ୍ଦୋଷ ନୁହନ୍ତି ସଂସାରି ମଣିଷ ପରି । ତାଙ୍କର ଏକମାତ୍ର ଦୋଷ ହେଉଛି, ସେ ଅର୍ଜୁନଙ୍କ ପ୍ରତି ମାନସିକ ସ୍ତରରେ ଅଧିକ ଅନୁରକ୍ତ ଥିଲେ ।'' ଏ ଉକ୍ତି ଭୀମଙ୍କ ମନରେ କୌଣସି ପ୍ରଭାବ ପକାଇ ପାରି ନଥିଲା ।

ପୁଣି ସେମାନେ ଆଗେଇଲେ । ଅନେକ ପଥଅତିକ୍ରମ କରିବା ପରେ ସହଦେବଙ୍କର ଦେହାନ୍ତ ହୋଇଗଲା । ଭୀମ ପୁଣି ସେଇ ପ୍ରଶ୍ନ ପଚାରିଲେ । ଯୁଧିଷ୍ଠିର କହିଲେ, ''ସହଦେବ ସର୍ବଗୁଣ ସମ୍ପନ୍ନ । ତାଙ୍କଭିତରେ କିନ୍ତୁ ପ୍ରଚ୍ଛନ୍ନ ଆତ୍ମଗର୍ବଥିଲା ନିଜର ବିଜ୍ଞତା ପାଇଁ, ସେଥିପାଇଁ ତାଙ୍କୁ ମୃତ୍ୟୁଦଣ୍ଡ ଭୋଗିବାକୁ ପଡ଼ିଲା ।'' ଏଥିରେ ମଧ ସେ ପ୍ରତିକ୍ରିୟା ହୀନ ।

ଯାତ୍ରା ପୁଣି ଆରମ୍ଭ ହେଲା ।

ଯାଉଯାଉ କିଛିବାଟ ପରେ ନକୁଳ ମୃତ୍ୟୁ ବରଣ କଲେ । ଏଥର ଭୀମଙ୍କର ସେଇ ଏକମାତ୍ର ପ୍ରଶ୍ନ । ନକୁଳ, ଚାଲିଗଲେ କାହିଁକି ?

ଯୁଧିଷ୍ଠିର କହିଲେ,'' ନକୁଳଙ୍କ ଭିତରେ ନିଜର ଅସମାନ୍ୟ ସୌନ୍ଦର୍ଯ୍ୟ ପାଇଁ ଅହେତୁକ ଅଭିମାନ ଥିଲା । ତାହାହିଁ ତାଙ୍କ ପତନର କାରଣ । ଭୀମ ପ୍ରଶ୍ନ ଭରା ନୟନରେ ଚାହିଁଲେ ।

ତାପରେ ପଡ଼ିଲା ଅର୍ଜୁନଙ୍କ ପାଳି । ସେ ପଥମଧରେ ଶେଷ ନିଶ୍ୱାସ ତ୍ୟାଗକଲେ । ଭୀମ, ଧର୍ମରାଜଙ୍କୁ ପୁଣି ସେଇପ୍ରଶ୍ନ ପଚାରିଲେ । ଯୁଧିଷ୍ଠିର କହିଲେ, ଅର୍ଜୁନଙ୍କର ଗଭୀର ଆତ୍ମାଭିମାନ ଥିଲା । ସେ ଭାବୁଥିଲେ ସଂସାରରେ ତାଙ୍କ ସମକକ୍ଷବୀର ଆଉକେହି ନାହାନ୍ତି । ତାହା ମଧ୍ୟ ତାଙ୍କ ପତନର କାରଣ ।'' ଭୀମ କହିଲେ, ''ଏହାକୁ ଅସ୍ୱୀକାର କରିବ କିଏ । ଧର୍ମରାଜ ଉଦାସ କଣ୍ଠରେ କହିଲେ, ''ମୃତ୍ୟୁ କରିଛି'' ।

ଭୀମ କହିଲେ ଯାତ୍ରା ପଥରେ ଆଗେଇଛନ୍ତି ଯୁଧିଷ୍ଠିର, ଭୀମ ଆଉ ସେଇ କ୍ଳାନ୍ତି ହୀନ କୁକୁରଟି । କିଛିପଥ ଅତିକ୍ରମ କରିବାପରେ ଭୀମସେନ ତଳେ ଖସିପଡିଲେ । ଅର୍ଦ୍ଧମୃତ ଅବସ୍ଥାରେ ପଚାରିଲେ,''ଭାଇ ! ହେ ମହାନ୍ ଆତ୍ମା ! ମେତେଦୟା କରି କୁହନ୍ତୁ ମୋର ତ୍ରୁଟିକଣ ?''

ଯୁଧିଷ୍ଠିର କହିଲେ, ପ୍ରାଣାଧିକ ଭାଇମୋର ! ତୁମର କୌଣସି ତ୍ରୁଟି ମୁଁ ଲକ୍ଷ୍ୟ କରିନାହିଁ, ଏକମାତ୍ର ଅପରାଧ, ତୁମ ଦେହବଳପ୍ରତି ତମର ଅତ୍ୟଧିକ ଆସ୍ଥା, ଅନେକ ସ୍ୱାଭାବିକ ପରିସ୍ଥିତିକୁ ଅସ୍ୱାଭାବିକ କରି ପକାଇଛି । ଭୀମ, ମ୍ଳାନ ହସଟିଏ ଟାଣି ଆଖି ବୁଜିଲେ ।

ବର୍ତ୍ତମାନ ଯୁଧିଷ୍ଠିର ନିଃସଙ୍ଗ । ଯାତ୍ରାପଥରେ ଏକାଚାଲିଛନ୍ତି । ଅବଶ୍ୟ ସାଥିରେ ଅଛି ସେଇ କୁକୁରଟି । ସେ କୌଣସି ମତେ ପହଞ୍ଚିଲେ ମେରୁପର୍ବତରେ । ଦେଖିଲେ ସ୍ୱର୍ଗର ଦେବରାଜ ଇନ୍ଦ୍ର ତାଙ୍କୁ ପାଛୋଟି ନେବାପାଇଁ ଆସୁଛନ୍ତି । ସେ କହିଲେ,''ମୁଁ ତୁମକୁ ଅଭିନନ୍ଦନ ଜଣାଉଛି ଧର୍ମରାଜ । ତୁମେ ମୋ ରଥରେ ବସ, ମୁଁ ତୁମକୁ ସ୍ୱର୍ଗକୁ ନେଇଯିବି ।''

ଯୁଧିଷ୍ଠିର କହିଲେ,''ହେ ଦେବରାଜ ! ମୁଁ ମୋର ଭାଇମାନଙ୍କୁ ଓ ଧର୍ମଶୀଳା ଦ୍ରୌପଦୀଙ୍କୁ ଛାଡି ସ୍ୱର୍ଗକୁ ଏକା ଯିବାକୁ ଇଛା କରେ ନାହିଁ । ମୋତେ କ୍ଷମା ଦିଅନ୍ତୁ । ଇନ୍ଦ୍ର କହିଲେ, ସେମାନେ ମୃତ୍ୟୁପରେ ସ୍ୱର୍ଗଲାଭ କରିଛନ୍ତି । ଆପଣ ଗଲେ ସମସ୍ତଙ୍କୁ ଭେଟିବେ ।''

ତେବେ ଠିକ୍ ଅଛି, ମୁଁ ମୋ ନିଃସଙ୍ଗ ଜୀବନର ଏଇ ମୌନ ଅତିଥିଟିକୁ ଏଠାରେ ଏକା ଛାଡ଼ି ଦେଇ, ଆପଣଙ୍କ ସାଥିରେ ଯିବିକିପରି ? ସେ ମୋ ସାଥିରେ ଯାଇ ପାରିବ କି ?''

''ନାଁ ତା' କିପରି ହେବ । ଗୋଟାଏ କୁକୁରର ସ୍ୱର୍ଗରେ ସ୍ଥାନ ନାହିଁ । ସେ ଯିବ କିପରି ?''

ତା'ହେଲେ ମୁଁ ମଧ ମୋ ଆଶ୍ରିତକୁ ତ୍ୟାଗକରି ସ୍ୱର୍ଗକୁ ଯିବାକୁ ଚାହେଁ ନାହିଁ । ତାକୁ ଏ ଘୋର ନିର୍ଜନତା ଭିତରେ ଅସହାୟ ଅବସ୍ଥାରେ ଛାଡି ଚାଲିଯିବା ଠିକ ହେବ ନାହିଁ ।

ଧର୍ମପୁତ୍ରଙ୍କର କର୍ତ୍ତବ୍ୟ ବୋଧ ଓ ଧର୍ମାନୁଶୀଳନ ଇନ୍ଦ୍ରଦେବଙ୍କୁ ଅଭିଭୂତ କଲା । ଆଖିପିଛୁଳାକେ କୁକୁରଟି କୁଆଡେ ଅନ୍ତର୍ହିତ ହୋଇଗଲା । ସମ୍ମୁଖରେ ସେ ଦେଖିଲେ ଧର୍ମ ଦେବତାଙ୍କୁ । ଧର୍ମଦେବ କହିଲେ,''ଧର୍ମରାଜ ! ମୁଁ ତୁମର ଧର୍ମ ନିଷ୍ଠାକୁ ପରୀକ୍ଷା କରୁଥିଲି । ତୁମକୁ ଆନ୍ତରିକ ଅଭିନନ୍ଦନ ଜଣାଉଛି । ତୁମେ ଦେବରାଜଙ୍କ ସହିତ ସ୍ୱର୍ଗକୁ ଯାଅ । ମୁଁ ଶ୍ୱାନ ବେଶରେ ତୁମର ସାଥୀ ଥିଲି ।

ଯୁଧିଷ୍ଠିର ଇନ୍ଦ୍ରଙ୍କ ସହିତ ତାଙ୍କ ରଥରେ ଆରୋହଣ କରି ସ୍ୱର୍ଗକୁ ଗଲେ । ସେଠାରେ ପହଞ୍ଚିଲାକ୍ଷଣି ଏକ ଅଦ୍ଭୁତ ଦୃଶ୍ୟ ତାଙ୍କର ଦୃଷ୍ଟି ଆକର୍ଷଣ କଲା ।

''ଏଁ... ଏକଣ ! ଦୁର୍ଯ୍ୟୋଧନ ଏକ ସ୍ୱର୍ଣ୍ଣ ସିଂହାସନରେ ବସିଛନ୍ତି । ତାଙ୍କର ଭାଇମାନେ ଓ ସୈନ୍ୟଗଣ ତାଙ୍କ ଚାରିପାଖରେ ବେଢ଼ି ରହିଛନ୍ତି । ସମସ୍ତଙ୍କ ଚତୁଃପାର୍ଶ୍ୱରେ ଏକ ଦିବ୍ୟ ଜ୍ୟୋତିରେଖା ବେଷ୍ଟିତ ହୋଇଛି । ଯୁଧିଷ୍ଠିରଙ୍କ ପାଟିରୁ ଏକ ମୃଦୁଗୁଞ୍ଜନ ବାହାରି ଆସିଲା, ''ଯୁଦ୍ଧଖୋର ଦୁର୍ଯ୍ୟୋଧନ ସ୍ୱର୍ଗ ସମ୍ମାନ ଲାଭ କରିଛନ୍ତି ।''

ନିକଟରେ ଛିଡାହୋଇଥିଲେ ଦେବର୍ଷି ନାରଦ । ସେ ହସିହସି କହିଲେ ଧର୍ମରାଜ ! ଏଠାରେ ମର୍ତ୍ତ୍ୟର ମାପକାଠିରେ ମଣିଷର ପାପପୁଣ୍ୟ ମପାଯାଏ ନାହିଁ । ସ୍ୱର୍ଗର ସମୀକ୍ଷା ହେଉଛି ଭିନ୍ନ ପ୍ରକାରର । ଏଠାରେ ମର୍ତ୍ତ୍ୟର ସାଧୁ ମଧ ନର୍କ ଗାମୀ ହୁଏ ଓ ଶଇତାନ ସ୍ୱର୍ଗ ସମ୍ମାନ ଲାଭ କରିପାରେ ।''

ଯୁଧିଷ୍ଠିର ଏ ବିଚିତ୍ରତାର ରହସ୍ୟ ଭେଦକରି ପାରିଲେ ନାହିଁ । ନିଜର ଭାଇ ମାନଙ୍କୁ ଓ ଦ୍ରୌପଦୀଙ୍କୁ ଦେଖିବାକୁ ଇଛାକଲେ ।

ଜଣେ ଦେବଦୂତ ଆସି ତାଙ୍କୁ ନେଇଗଲା । ତା' ପଛେ ପଛେ ଗଲେ ଧର୍ମରାଜ । ଇସ୍‌କି ଅନ୍ଧକାର ସେ ପଥ, ରକ୍ତ, ମାଂସ, ହାଡ଼ରେ ପୂରିଛି । ଗନ୍ଧ ନାକ ଫଟାଇ ଦେଉଛି, କୀଟ ପତଙ୍ଗରେ ଭରପୂର ସେ ରାସ୍ତା । ଆଗକୁ ଆଉ ଆଗେଇ ହେଉନି । ସେମାନେ ତାହେଲେ କ'ଣ ନର୍କଭୋଗ କରୁଛନ୍ତି !! କାହିଁକି ? ଏତେ ପୁଣ୍ୟର କଣ ଏଇଥା ପରିଣତି !!

ମନତାଙ୍କର ବିଦ୍ରୋହି ହୋଇ ଉଠିଲା । ''ଏଇଟା କଣ ସ୍ୱର୍ଗର ରୀତି ଓ ମଣିଷ ଏଇ ସ୍ୱର୍ଗ ଲାଭ ପାଇଁ ଏତେ ପାଗଳ । ଏ ପ୍ରକାର ସ୍ୱର୍ଗଲାଭ ପାଇଁ ମୁଁ ଲାଳାୟିତ ନୁହେଁ ।'' ମୁଁ ଫେରିଯିବାକୁ ଚାହେଁ ମୋର ମର୍ତ୍ତ୍ୟ ମାଟିକୁ ।

ଠିକ୍ ଏତିକି ବେଳେ କ୍ଷୀଣ କଣ୍ଠର ସ୍ୱର ସେଇ ଅନ୍ଧକାର ବୁକୁଚିରି ବାହାରି ଆସିଲା । ''ଧର୍ମରାଜ ! ଆପଣ ଯାଆନ୍ତୁ ନାହିଁ । ଅନ୍ତତଃ ଆଉ କିଛି ସମୟ ରହନ୍ତୁ । ଆପଣଙ୍କ ଶରୀରର ମଧୁଗନ୍ଧ ଆମକୁ ଆନନ୍ଦ ଦେଉଛି । ପୂତିଗନ୍ଧ ଆମକୁ ଅଣନିଶ୍ୱାସି କରି ପକାଇଲାଣି ।''

''ତୁମେ ସବୁ କିଏ ? ମୋତେ କାହିଁକି ଅଟକାଉଛ ?''

''ଆମେ ? ? ନା..ନା ମୁଁ ହେଉଛି ଅର୍ଜୁନ ।

''ଆଉ ମୁଁ ? ହଁ.. ମୁଁ ହେଉଛି ଭୀମ ।''

''ଆମେ ଦୁହେଁ ? ହଁ, ଆମେ ଦୁହେଁ ତୁମର ନକୁଳ ସହଦେବ ।''

''ମୋ କଥା ପଚାରୁଛ ? ମୁଁ ହେଉଛି ତୁମ ଭାଇ କର୍ଣ୍ଣ... କର୍ଣ୍ଣ ।''

ଏକ ନାରୀକଣ୍ଠର ସ୍ୱର ଶୁଣାଗଲା....''ମୁଁ ...ମୁଁ ହେଉଛି ଅଭାଗିନୀ ଦ୍ରୌପଦୀ ।''

''ନା...ନା... ମୋତେ ନେଇଯାଅ । ମୁଁ ମୋ ମର୍ତ୍ତ୍ୟଚାହେଁ.... ମୋର ଏ ପ୍ରକାର ସ୍ୱର୍ଗର ଆବଶ୍ୟକତା ନାହିଁ । ଏଠାରେ ସବୁଓଲଟା । ନୀତି, ନ୍ୟାୟ, ବିଚାର ସବୁ ବିଭ୍ରାନ୍ତି କର ।''

ଠିକ୍ ଏତିକି ବେଳେ ଆସି ପହଞ୍ଚିଲେ ଇନ୍ଦ୍ରଦେବ । ସାଥିରେ ଦେବର୍ଷି ନାରଦ । ସେ ଯୁଧିଷ୍ଠିରଙ୍କର ଭାବାବେଗ ଦେଖି ତାଙ୍କୁ ସାନ୍ତ୍ୱନା ଦେଇ କହିଲେ,''ଧର୍ମରାଜ ! ଆପଣ ବିଜ୍ଞ, ବିଚାରଶୀଳ । ମୁଁ ଅଧିକ କଣ ବୁଝାଇବି । ସଂସାରର ଯେତେବଡ଼ ରାଜା, ମହାରାଜା ସାଧୁ ସନ୍ଥ ହେଲେ ମଧ ସେ ଦୋଷ ମୁକ୍ତ ନୁହନ୍ତି ତେଣୁ ତାଙ୍କୁ ନିଶ୍ଚିତ ଭାବରେ ନର୍କଦ୍ୱାର ଦେଖିବାକୁ ପଡ଼ିବ । ଆପଣ ମଧ ବ୍ୟତିକ୍ରମ ନୁହଁନ୍ତି । ସେଥିପାଇଁ ଏହି ନର୍କପୁରୀକୁ କିଛି ସମୟ ପାଇଁ ଆସିଲେ । ଏହାର ଜ୍ୱାଳାମୟ ଅନୁଭୂତି ଗ୍ରହଣ କଲେ । ଆପଣଙ୍କ ଭାଇମାନେ ଓ ଦ୍ରୌପଦୀ ନିଜର ମାନବିକ ତ୍ରୁଟୀ ବିଚ୍ୟୁତିପାଇଁ ନର୍କବାସ ଭୋଗ କରୁଛନ୍ତି ।''

''ହେ ଦେବରାଜ ! ତା ହେଲେ ମୋତେ ସେମାନଙ୍କ ସାଥିରେ ନର୍କଭୋଗ କରିବାକୁ ସୁଯୋଗ ଦିଅନ୍ତୁ । ଯେତେ ଦୀର୍ଘ ହେଲେ ମଧ ମୁଁ ତାହା ଭୋଗ କରିବି ।''

''ସେ ପ୍ରଶ୍ନ ଉଠୁନି ଧର୍ମରାଜ । ମହାଭାରତ ଯୁଦ୍ଧରେ ପଦିଏ ମିଛ କହିଥିଲେ ବୋଲି ଯେତିକି ସମୟ ନର୍କ ଯନ୍ତ୍ରଣା ଭୋଗିବାର କଥା, ଭୋଗୀ ସାରିଲେଣି । ସେମାନଙ୍କର ସମୟ ମଧ ମପାଚୁପା । ଆପଣ ମନ୍ଦାକିନୀର ପବିତ୍ର ଜଳରେ ଆବଗାହନ କରନ୍ତୁ । ସମସ୍ତ ପାର୍ଥିବ ସତ୍ତା ଆପଣଙ୍କର ଲୋପ ହେବ ଓ ଦେବତାର ଆସନରେ ଚିର ସ୍ୱର୍ଗ ସମ୍ମାନ ଲାଭ କରିବେ ।''

ଯୁଧିଷ୍ଠିର ପ୍ରଶ୍ନଭରା ନୟନରେ ଚାହିଁଲେ ଇନ୍ଦ୍ରଦେବଙ୍କୁ । ଠିକ୍ ସେତିକି ବେଳେ ଧର୍ମ ଦେବତା ଆସି କହିଲେ,''ରାଜନ୍ ! ଆପଣ ପ୍ରକୃତରେ ଧର୍ମଜ୍ଞ ଓ ଧର୍ମରାଜଙ୍କର ପାର୍ଥିବ ପାପର ଅବସାନ ହୋଇଛି । ନିଜକୁ ପ୍ରସ୍ତୁତ କରନ୍ତୁ ସ୍ୱର୍ଗର ଆସନ ପାଇଁ ।''

ଯୁଧିଷ୍ଠିର କରୁଣ ନୟନରେ ପୁଣି ଚାହିଁଲେ ଉଭୟଙ୍କ ମୁହଁକୁ । ଦେବରାଜ କହିଲେ,''ମୁଁ ଆପଣଙ୍କ ମନର ନିଭୃତ କଥା ବୁଝି ପାରୁଛି ଓ ଯନ୍ତ୍ରଣାକୁ ଅନୁଭବ କରି ପାରୁଛି । ଦେଖନ୍ତୁ, ସ୍ୱର୍ଗର ନିୟମ ହେଲା, ଅଳ୍ପ ସମୟ ନିମିତ୍ତ ଜୀବନକୁ ଯାହା ଭୋଗକରିବାକୁ ଥାଏ, ସେ ପ୍ରଥମେ ସେଇଟା ଭୋଗ କରେ । ଦୁର୍ଯ୍ୟୋଧନ ସେହି ନ୍ୟାୟରେ ଅନ୍ୟମାନଙ୍କ ସହିତ ଅଳ୍ପ ସମୟ ପାଇଁ ସ୍ୱର୍ଗସୁଖ ଭୋଗ କରୁଛନ୍ତି । ତା' ପରେ ସେମାନେ ନର୍କ ଭୋଗ କରିବେ । ଆପଣଙ୍କ ଭାଇମାନେ ଓ ଦେବୀ ଦ୍ରୌପଦୀ ଅଳ୍ପସମୟ ପାଇଁ ନର୍କ ଭୋଗ କରୁଛନ୍ତି ତାପରେ ସେମାନେ ସ୍ୱର୍ଗସୁଖ ଭୋଗ କରିବେ । 'ଅଳ୍ପ' ଆଗ ସରେ ଏବଂ 'ଅଧିକ' ପଛକୁ ରହେ ।''

ଯୁଧିଷ୍ଠିରଙ୍କର ମଳିନ ମୁଖ ଏଥର ଉଜ୍ଜ୍ୱଳ ହୋଇ ଉଠିଲା ।

ସେ ମନ୍ଦାକିନୀର ପବିତ୍ର ଜଳଧାରରେ ଅବଗାହନ କରି ପାର୍ଥିବ ସତ୍ତା ଲୋପ କଲେ । ଏବଂ ବ୍ରହ୍ମପଦରେ ଲୀନ ହୋଇଗଲେ ।

''ନ ଜାତୁ କାମାଦ୍ ନ ଭୟାଦ୍ ନ ଲୋଭାଦ୍
ଧର୍ମଂ ତ୍ୟଜେଜ୍ ଜୀବିତସ୍ୟାପି ହେତୋଃ
ନିତ୍ୟୋଧର୍ମଃ ସୁଖ-ଦୁଃଖ ତ୍ୱନିତ୍ୟୋ
ଜୀବୋ ନିତ୍ୟୋ ହେତୁରସ୍ୟ ତ୍ୱନିତ୍ୟଃ ।''

ମନୁଷ୍ୟ କାମ,ଲୋଭ, ଓ ଭୟରେ ମଧ୍ୟ ଧର୍ମକୁ ତ୍ୟାଗ କରିବା ଉଚିତ୍ ନୁହେଁ । ଜୀବନ ବିନିମୟରେ ଧର୍ମର ସୁରକ୍ଷା ଆବଶ୍ୟକ କାରଣ ଏହା ନିତ୍ୟ ଏବଂ ଏ ସଂସାରର ସୁଖ ଦୁଃଖ ଓ ଅନ୍ୟ ଯାହାକିଛି, ସବୁ ଅନିତ୍ୟ ।ଜୀବନ ଧର୍ମ ସତ୍ୟ ଓ ଚିରନ୍ତନ ହୋଇଥିବାରୁ ଏହାକୁ ରକ୍ଷାକରିବା ଉଚିତ୍ ।



## ପରିଶିଷ୍ଟ

# କିଛି ମତ ଓ ତଥ୍ୟ....

(କ) ଐତିହାସିକ 'ହଣ୍ଟର' ସାହେବ ତାଙ୍କ ଇତିହାସ ପୁସ୍ତକ Palm leaf Records of Jagannath (A Chroniclesof the kings of Orissa from 3101 B.C. to 1871 A.D) ଦର୍ଶାଇଛନ୍ତି । ଯୁଧିଷ୍ଠିର ଖ୍ରୀ. ପୂ ୩୧୦୧ ରୁ ୩୦୮୯ ପର୍ଯ୍ୟନ୍ତ ମୋଟ ୧୨ ବର୍ଷ ରାଜୁତି କରିଥିଲେ ।

(ଖ) 'ମାକ୍ସ ଡଙ୍କର' ଯୁଧିଷ୍ଠିରଙ୍କ କାଳ ନିର୍ଣ୍ଣୟ ପ୍ରସଙ୍ଗରେ କହିଛନ୍ତି, ''ବିକ୍ରମାଦିତ୍ୟ ରାଜାଙ୍କ ରାଜତ୍ୱ କାଳର ୩୦୪୪ବର୍ଷ ପୂର୍ବେ, ଅର୍ଥାତ୍ ଖ୍ରୀ.ପୂ. ୩୧୦୦ରେ ଯୁଧିଷ୍ଠିର ବିଦ୍ୟମାନଥିଲେ । (ଭାରତ ଗୌରବ)

(ଗ) ଅନ୍ୟ ଏକ ମତ ଅନୁସାରେ

ଯୁଧିଷ୍ଠିରଙ୍କ ଜନ୍ମ ଖ୍ରୀ.ପୂ. ୩୧୭୪ଜ୍ୟେଷ୍ଠ ପୂର୍ଣ୍ଣିମା, ଶତ ଶୃଙ୍ଗ ପର୍ବତରେ ।ସେ ଖ୍ରୀ.ପୂ. ୩୦୬୫ରେ ସ୍ୱର୍ଗାରୋହଣ କଲେ । ତାଙ୍କର ଜୀବନକାଳ ୧୦୯ ବର୍ଷ ।

ଭୀମ ଏବଂ ଦୁର୍ଯ୍ୟୋଧନ ଚୈତ୍ର ଶୁକ୍ଳ ତ୍ରୟୋଦଶୀ ତିଥିରେ ଖ୍ରୀ.ପୂ. ୩୧୭୩ରେ ଜନ୍ମଗ୍ରହଣ କରିଥିଲେ ।

ଖ୍ରୀ.ପୂ. ୩୧୭୨ ଫାଲ୍‌ଗୁନ ପୂର୍ଣ୍ଣିମାଦିନ ଅର୍ଜୁନ ଜନ୍ମଗ୍ରହଣ କରିଥିଲେ ।

ଖ୍ରୀ.ପୂ. ୩୧୫୧ରେ ଶ୍ରୀକୃଷ୍ଣଙ୍କର ଜନ୍ମ ଏବଂ ମୃତ୍ୟୁ ୩୧୦୨ ମତାନ୍ତରେ ତାଙ୍କ ଜନ୍ମ ଖ୍ରୀ.ପୂ. ୩୧୧୨ ଭାଦ୍ରବ କୃଷ୍ଣ ଅଷ୍ଟମୀ (ଏନସିଏଣ୍ଟ ଇଣ୍ଡିଆ)

(ଘ) ମହାଭାରତ ଯୁଦ୍ଧ ଖ୍ରୀ.ପୂ. ୩୧୦୧ ମାର୍ଗଶିର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ହୋଇଥିଲା ।

(ଙ) ମତାନ୍ତରେ, ମହାଭାରତ ଯୁଦ୍ଧ ଖ୍ରୀ.ପୂ. ୩୧୦୫ କାର୍ତ୍ତିକ ମାସ ଅମାବାସ୍ୟାରେ ସଂଘଟିତ ହୋଇଥିଲା । (Ancient India Dr. N. Mahalingam)

(ଚ) ବଙ୍ଗଳାର ବିଖ୍ୟାତ କବି ବଙ୍କିମ ଚନ୍ଦ୍ରଙ୍କ ମତରେ କୁରୁକ୍ଷେତ୍ରଯୁଦ୍ଧ ଖ୍ରୀ.ପୂ. ୧୫୩୦ ଓ ୧୪୩୦ର ମଧ୍ୟବର୍ତ୍ତୀ ସମୟରେ ହୋଇଥିଲା ।

(ଛ) ବାଳଗଙ୍ଗାଧର ତିଳକ ଏବଂ ଯୋଗେଶଚନ୍ଦ୍ର ରାୟଙ୍କ ମତରେ ଖ୍ରୀ.ପୂ. ୧୪୦୦ ଆଗରୁ କୁରୁକ୍ଷେତ୍ର ଯୁଦ୍ଧ ହୋଇଥିଲା ।

(ଜ) ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ରଚିତ ''ଭାରତ ଦର୍ପଣ'' ପୁସ୍ତକ ଅନୁସାରେ ମହାଭାରତ ଯୁଦ୍ଧ ଖ୍ରୀ.ପୂ. ୨୪୪୮ ରେ ହୋଇଥିଲା ।

(ଝ) ଜ୍ୟୋତିର୍ବିଦ୍ଦ ପ୍ରଫେସର କେ.ଏସ. ରାଘବାନ୍‌ଙ୍କ ଗଣନା ଅନୁସାରେ ମହାଭାରତ ଯୁଦ୍ଧ ମାର୍ଗଶିର ମାସଶୁକ୍ଳପକ୍ଷ ଏକାଦଶୀ ଶୁକ୍ରବାର ଖ୍ରୀ.ପୂ. ୩୦୬୭ରେ ଆରମ୍ଭ ହୋଇଥିଲା । (ଖ୍ରୀ.ପୂ. ୨୨-୧୧-୩୦୬୭)

## ।। ମହାଭାରତ ରଚନା ଓ କ୍ରମବିକାଶ ।।

ସଂସ୍କୃତଭାଷାର ମହାନ୍ ବ୍ୟାକରଣକର ପାଣିନୀଙ୍କର ଅନୁସାରେ, ''ଭାରତ''ଶବ୍ଦର ଅର୍ଥ ହେଉଛି ''ଯୁଦ୍ଧ'' । ମହାଭାରତ ଅର୍ଥ ମହାଯୁଦ୍ଧ । ପାଶ୍ଚାତ୍ୟ ଗବେଷକ Wrinternitz ଙ୍କ ରଚିତ History of India Literature ଅନୁସାରେ, ମହାଭାରତ କୌଣସି ଜଣେ ଲେଖକଙ୍କର କଳାକୃତି ନୁହେଁ । ମହାଭାରତରେ ଥିବା ବିଭିନ୍ନ ଉପାଦାନ ଓ ଆଖ୍ୟାନ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସମୟର ନୁହେଁ । କିମ୍ବା ଏହି ବିଶାଳ କାବ୍ୟକୁ କେହି ଜଣେ ସମ୍ପାଦନ କରିନାହାନ୍ତି ।

ବ୍ୟାସ ଦେବଙ୍କ ରଚିତ '' ଜୟ'' କାବ୍ୟକୁ ମୂଳ ମହାଭାରତ ରୂପେ ଗ୍ରହଣ କରାଯାଏ । ଏହା ମହାଭାରତରଆଦ୍ୟ ଉତ୍ସ । ବ୍ୟାସଦେବଙ୍କ ଶିଷ୍ୟ ବୈଶମ୍ପାୟନ ଋଷି, ଗୁରୁଙ୍କ ଆଦେଶକ୍ରମେ ମୂଳ ମହାଭାରତରେ ନିଜର କିଛି ତଥ୍ୟ ତତ୍ତ୍ୱ, କାହାଣୀ ଯୋଗ କରି ଆଉ ଏକ ମହାଭାରତ ରଚନା କରିଥିଲେ । ଏହା ମହାଭାରତର ଦ୍ୱିତୀୟ ପ୍ରକାଶ ଏବଂ ଏହା ରାଜ ଜନ୍ମେଜୟଙ୍କ ସର୍ପଯଜ୍ଞରେ ଆବୃତ୍ତି କରାଯାଇଥିଲା । (ଖ୍ରୀ.ପୂ. ୧୪୦୦-୧୨୦୦) ମଧ୍ୟରେ ।

ମହର୍ଷି ଲୋମହର୍ଷଣଙ୍କ ପୁତ୍ର ଉଗ୍ରସର୍ବା ମହାଭାରତକୁ ମାର୍ଜିତ ଓ ମଣ୍ଡିତ କରି,ରାଜା ଶୌନକଙ୍କ ଦ୍ୱାରା, ନୈମିଷାରଣ୍ୟରେ ଅନୁଷ୍ଠିତ ସୋମଯଜ୍ଞରେ ଆବୃତ୍ତି କରିଥିଲେ । ଏହା ହେଉଛି ମହାଭାରତର ତୃତୀୟ ପ୍ରକାଶ ।

ଏହା ବ୍ୟତୀତ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଗୁପ୍ତଯୁଗରେ ମହାଭରତକୁ ମାର୍ଜିତ ଓ ମଣ୍ଡିତ କରି ପରିବର୍ଦ୍ଧିତ କରାଗଲା । ଏଥିରେ ଜ୍ଞାନର ସମସ୍ତ ଦିଗ ଉନ୍ମୋଚନ କରାଗଲା । ଫଳରେ ମହାଭାରତ ଭାରତୀୟ ସଭ୍ୟତାର ଜ୍ଞାନକୌଶଳ (Encyclopadia) ରୂପେ ଏଥିରୁ ସ୍ପଷ୍ଟ ଅନୁମେୟ, ଆଜିର ଉପଲବ୍ଧ ମହାଭାରତ ବିବର୍ତ୍ତନ ଧାରାମଧ୍ୟରେ ପରିମାର୍ଜିତ, ପରିବର୍ଦ୍ଧିତ ଓ ପ୍ରକାଶିତ ହୋଇ ଏହି ବିପୁଳତାକୁ ଲାଭ କରିଛି ।

ବ୍ୟାସଦେବଙ୍କ ମୂଳ ମହାଭାରତ ଜୟର ଶ୍ଳୋକ ସଂଖ୍ୟାଥିଲା ମାତ୍ର ୨୪୦୦୦ । ସେତେବେଳର ରାଜାମାନେ ଯୁଦ୍ଧଯାତ୍ରା କରିବା ପୂର୍ବରୁ 'ଜୟ'କୁ ଆବୃତ୍ତି କରି ଜୟଲାଭ ଆଶାରେ ଅଭିଯାନ ଆରମ୍ଭ କରନ୍ତି । ପାଣ୍ଡବ ମାନଙ୍କର ସାଙ୍କେତିକ ନାମ ଏଇଜୟ ଶବ୍ଦକୁ ନେଇ ଗଠିତ

ଏବଂ ନିଜ ନିଜ ଭିତରେ ସେମାନେଏଇ ସାଙ୍କେତିକ ନାମ ବ୍ୟବହାର କରନ୍ତି । ଯୁଧିଷ୍ଠିର -ଜୟ, ଭୀମ-ଜୟନ୍ତ, ଅର୍ଜୁନ ବିଜୟ ନକୁଳ-ଜୟତ୍‌ସେନ୍ ସହଦେବ- ଜୟଦ୍‌ବଦ୍ (ମହାଭାରତ-ବିଷ୍ଣୁପଦ ଚକ୍ରବର୍ତ୍ତୀ । ଏହା ବ୍ୟତୀତ ପାଣ୍ଡବମାନେ ବିରାଟ ନଗରୀରେ ଥିବା ବେଳେ ଛଦ୍ମନାମ ଭିନ୍ନ ଅଟେ ।

ମହାଭାରତ ଯୁଦ୍ଧର ସଠିକ୍ କାଳନିର୍ଣ୍ଣୟ ଏ ପର୍ଯ୍ୟନ୍ତ ଗବେଷଣା ଗହ୍ବରରେ ଆଗେଇ ଚାଲିଛି । ବହୁ ତଥ୍ୟ ପୁରୁଣା ହୋଇଗଲାଣି, ନୂଆ ତା' ସ୍ଥାନ ଅଧିକାର କରିଛି । କୁରୁକ୍ଷେତ୍ରରେ କୃଷ୍ଣପକ୍ଷ'' ଉପନ୍ୟାସରେ ଦିଆ ଯାଇଥିବା ତଥ୍ୟ,ଗବେଷଣାର ଗହନବନରୁ ଲେଖକ ଗ୍ରହଣ କରିଥିବା ଉକ୍ତିର ଝଲକମାତ୍ର । ଏସବୁ ମଧ୍ୟ ଗବେଷଣା ସାପେକ୍ଷ ।



ଶ୍ରୀ ନରସିଂହ ମିଶ୍ର ଜନ୍ମ : ତା ୨-୬-୧୯୩୨, ଓଡ଼ିଆ ଉପନ୍ୟାସ ସାହିତ୍ୟର ଏକ ବର୍ଣ୍ଣାଢ୍ୟ ପ୍ରତିଭା ।

ମୌଳିକ ସାମାଜିକ ଉପନ୍ୟାସ, ଅନୁବାଦ ଉପନ୍ୟାସ ଏବଂ ପୌରାଣିକ ଉପନ୍ୟାସ ସୃଷ୍ଟି ଦିଗରେ ସେ ମୁଖ୍ୟତଃ ଲେଖନୀ ଚାଳନା କରିଛନ୍ତି । ଏପର୍ଯ୍ୟନ୍ତ ତାଙ୍କର ୧୬ଟି ଉପନ୍ୟାସ ପ୍ରକାଶିତ ହୋଇଛି । ଶକୁନୀ, ଦେବର୍ଷିନାରଦ, ନିଦ୍ରାବତୀ ନଦୀ, ବାଲି ଉର୍ଚ୍ଛାରୀ, ଅମୃତ କୁମ୍ଭ ଓ ଅଭିଦୂର୍ବା, ତା' ମଧ୍ୟରେ ଅନ୍ୟତମ ଓ ବହୁ ଚର୍ଚ୍ଚିତ ।

ଏହା ସହିତ କ୍ଷୁଦ୍ର ଗଳ୍ପ, ଜୀବନୀ, ନାଟକ, ଶିଶୁ ସାହିତ୍ୟ, ଲୋକ ସାହିତ୍ୟ, ପ୍ରବନ୍ଧ ଓ କବିତା ବିଭାଗରେ ତାଙ୍କର ଏ ପର୍ଯ୍ୟନ୍ତ ୭୦ ଖଣ୍ଡ ପୁସ୍ତକ ପ୍ରକାଶିତ । ତାଙ୍କ ଲିଖିତ 'ଆମ ଜଗନ୍ନାଥ' ନ୍ୟାସନ୍ୟାଲ୍ ବୁକ୍ ଟ୍ରଷ୍ଟ, ଦିଲ୍ଲୀ, ଙ୍କ ଦ୍ୱାରା ଜାତୀୟ ସ୍ତରରେ ପୁରସ୍କୃତ ହୋଇଛି । ଏହି ବିପୁଳ ସାରସ୍ୱତ ସ୍ରଷ୍ଟାଙ୍କ ଲେଖନୀ ଏବେ ମଧ୍ୟ ଚଳଚଞ୍ଚଳ ।

